# ସ୍ମୃତିବାସୀ



ଲେଖକ : ବିଷ୍ଣୁ ଚରଣ ମହାନ୍ତି

ପ୍ରକାଶକ : ପଶ୍ଚିମ ଓଡ଼ିଶା ବିକାଶ ପରିଷଦ



## ବିଷ୍ଣୁ ଚରଣ ମହାଂତି

ପିତା– କାଂଗାଳି ଚରଣ ମହାଂତି
ମାତା– କୋକିଳ ଦେବୀ
ଜନ୍ମ– ନଭେମ୍ବର ୧୯୨୨
କଣିଆଁ, ବାଲିକୁଦା, ଜଗତସିଂହପୁର

- ୧୯୪୪ରେ ରେଭେନ୍ସା କଲେଜରୁ ଅର୍ଥନୀତିରେ ଅନର୍ସ ସହିତ ବି.ଏ.। ୧୯୫୬ରେ ବିହାର ବିଶ୍ୱବିଦ୍ୟାଳୟ ଭାଗଲପୁରରୁ ବି.ଏଲ୍.।
- ୧୯୪୬ରେ ସବ୍ ଡେପୁଟି କଲେକ୍ଟର୍ ନିଯୁକ୍ତି। ଓଡ଼ିଶାର ପ୍ରାୟ ସବୁ ପୁରୁଣା ଜିଲ୍ଲାରେ ଶାସନ, ବିଚାର ବିଭାଗର ଓ ସଚିବାଳୟର ଉଚ୍ଚ ପଦ ପଦବିରେ କାର୍ଯ୍ୟ।
- ୧୯୮୦ରେ ଅବସର ଗ୍ରହଣ।
- ଶ୍ରୀ ମହାଂତିଂକର ପ୍ରଥମ ପୁସ୍ତକ 'ରୋମଂଥନ ଏକ ବ୍ୟର୍ଥ ଅତୀତର' ପ୍ରକାଶ ପାଏ ୧୯୮୯ରେ। ତାପରେ 'ପାରଳା ପ୍ରତିଭା' ୧୯୯୧, 'ହନୁମାନ ସହସ୍ରନାମର ଟୀକା' ୧୯୯୩ ଓ ଇଂରାଜୀରେ A Magistrate Speaks, Nothing but the Truth, ଏପ୍ରିଲ୍ ୨୦୦୦, 'ସେକାଳ ଓ ତାପରେ' ୨୦୦୧ ଓ 'ମହାଭାରତର ଷୋହଳଟି ପର୍ବ' ୨୦୦୫।
- ଶ୍ରୀଯୁକ୍ତ ମହାଂତି ଅବସର ପରେ ଏବେ ୪୫୮, ସହିଦ ନଗର, ଭୁବନେଶ୍ୱରରେ ବାସ କରୁଛଂତି।

# ସ୍ମୃତି-ବାସୀ

(ପଶ୍ଚିମ ଓଡ଼ିଶାର କୃତୀ ସଂତାନମାନଂକର ଜୀବନାଲେଖ୍ୟ)

ସଂକଳକ

ବିଷ୍ଣୁଚରଣ ମହାନ୍ତି

ପ୍ରକାଶକ

ପଶ୍ଚିମ ଓଡ଼ିଶା ବିକାଶ ପରିଷଦ



# ଅଭିମତ

ପଶ୍ଚିମ ଓଡ଼ିଶା ବିକାଶ ପରିଷଦ କେବଳ ଏକ ରାଜନୈତିକ ସଂସ୍ଥା ବା ଉନ୍ନୟନ ଯୋଜନା କାର୍ଯ୍ୟକାରିଣୀ ନୁହେଁ, ଏହା ସମଗ୍ର ପଶ୍ଚିମ ଓଡ଼ିଶାବାସୀଙ୍କର ସାଂସ୍କୃତିକ ସ୍ୱତଂତ୍ରତାର ଆବେଗମୟ ପ୍ରତିଧ୍ୱନି। ସେହି ବର୍ଣ୍ଣାଢ୍ୟ ସାଂସ୍କୃତିକ ପୃଷ୍ଠଭୂମିରେ ଅଂକୁରିତ, ପ୍ରତିପାଳିତ ଓ ପରିବର୍ଦ୍ଧିତ ଜୀବନ ହିଁ, ତାର ପରାକାଷ୍ଠାର ପ୍ରମାଣ। ନିକଟ ଅତୀତରେ ଦେହତ୍ୟାଗ କରିଥିବା ପଶ୍ଚିମ ଓଡ଼ିଶାର କେତେ ଜଣ ବିଶିଷ୍ଟ ବ୍ୟକ୍ତିଂକ ଜୀବନ ଆଲେଖ୍ୟକୁ ଅତ୍ୟଂତ ଶ୍ରଦ୍ଧାରେ ଉପସ୍ଥାପନ କରିଛଂତି ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାଂତି। ପଶ୍ଚିମ ଓଡ଼ିଶାରେ ତାଂକର ଚାକିରିକାଳରେ ବିମୁଗ୍ଧ ଲେଖକ ସଂଗ୍ରହ କରଂତି ସେହି ସଂସ୍କୃତିର ଜୀବଂତ ବିଗ୍ରହ, ପ୍ରତିଷ୍ଠ ଜନନାୟକ, ଜନସେବକ, ସାଧୁ, ସାହିତ୍ୟିକ, ବ୍ୟକ୍ତିସମୂହଂକର ଜୀବନଯାତ୍ରାର ତଥ୍ୟ। ସେମାନେ ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ପ୍ରତିନିଧି। ଏଇ କେଇଦିନ ତଳେ ଚଲାବୁଲା ହେଉଥିଲେ ଆମ ମଧ୍ୟରେ, ସେମାନେ ଏବେ ସ୍ୱର୍ଗତ। ମୋର ତଥା ପରିଷଦର ମାନନୀୟ ସଦସ୍ୟମାନଂକର ସୁଚିଂତିତ ପରାମର୍ଶରେ ସେ ପରିବର୍ଦ୍ଧନ କରିଛଂତି ତାଂକର ଆଲେଖ୍ୟ। ସେହି ପରିବେଶରେ ସାଧାରଣ ଶିଶୁଟିଏ କିଭଳି ଅସାଧାରଣ ଆଦର୍ଶରୁ ପୁରୁଷ ବା ନାରୀଟିଏ ହୋଇଯାଏ, ସେଇମାଟିରୁ ଯାହା ପାଏ, ତାହାରି ଶତଗୁଣରେ ତାକୁ ସମୃଦ୍ଧ କରିଥାଏ। ଅସହାୟକୁ ସାହାରା ଦିଏ, ସମସ୍ତ ଅଭାବ ଅସୁବିଧା ସତ୍ତ୍ୱେ ସେ ଆଦର୍ଶ ପଥରୁ ବିଚ୍ୟୁତ ହୁଏନାହିଁ। ଏହି ପୁସ୍ତକରେ ସ୍ଥାନିତ ସମସ୍ତ ବ୍ୟକ୍ତିଂକର ଜୀବନାଲେଖ୍ୟ ଏ ଭଳି ଜୀବନଚର୍ଯ୍ୟାର କାହାଣୀ। ଯେଉଁ ମାଟି ଆଇଜାକ୍ ସାଂତରା ଭଳି ମଣିଷକୁ ମାନବ ସେବାର ମଂତ୍ରରେ ଦୀକ୍ଷିତ କରେ, ଯେଉଁ ମାଟି ରାଜେନ୍ଦ୍ର ନାରାୟଣ ସିଂହ ଦେଓଂକୁ ଏକ ବିଶୁଦ୍ଧ ନିରହଂକାର ରାଜନୀତିର ଅମୃତ ଜନନାୟକ କରେ, ଯେଉଁଠି ଜଣେ ସାଧାରଣ ଚାଷୀ ପୁଅ ପ୍ରହ୍ଲାଦ ପ୍ରଧାନ, ନିଜର ପ୍ରଜ୍ଞା ପ୍ରତିଷ୍ଠାରେ ହିମାଳୟ ଡେଇଁ ଚୀନବାସୀଂକୁ ଚକିତ କରଂତି, ରାଜ୍ୟର ସଂସ୍କୃତ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ହୋଇପାରଂତି, ସାଧାରଣ ନିମ୍ନ ମଧ୍ୟବିତ୍ତ ବିପ୍ଳରାଜ ପ୍ରଶାସନର ସର୍ବୋଚ୍ଚ ସ୍ଥାନରେ ନିର୍ମଳ ଭାବମୂର୍ତ୍ତିର ଉଦାହରଣ ରଖଂତି, ଶ୍ରଦ୍ଧାକର ସୁପକାର ସାହିତ୍ୟ, ରାଜନୀତି, ସମାଜ ସେବାରେ ନିଃସ୍ୱାର୍ଥ ଜୀବନର ଉଦାହରଣ, ଯେଉଁଠି ଭୀମଭୋଇଂକର ଲେଖନୀ 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ' କହେ, ସେହି ମାଟିର ମଣିଷମାନଂକର ଏହି ମାର୍ମିକ କାହାଣୀ ପ୍ରତ୍ୟେକ ପଶ୍ଚିମ ଓଡ଼ିଶାବାସୀଂକ ଆବେଗମୟ ସାଂସ୍କୃତିକ ଐଶ୍ୱର୍ଯ୍ୟର ଉତ୍ତରାଧିକାରୀ।

ନଦୀରେ ବଂଧ ପକାଇ ବିଶାଳ ହୀରାକୁଦ କୃତ୍ରିମ ଝୀଲ କାରିଗର କରିପାରିବେ, ଦୁର୍ଗମ ବନ ଭେଦକାରୀ ରାଜପଥ ନିର୍ମାଣ ହୁଏ, ମଠ ମଂଦିର, ନବଖଂବୀ ପ୍ରାସାଦ, କଳକାରଖାନା ତିଆରି ସଂଭବ ହୁଏ, ମନୁଷ୍ୟର ନିଷ୍ଠାପର ଉଦ୍ୟମରେ। କିଂତୁ, ସମୃଦ୍ଧ ପୁରୁଷାକାର ସମର୍ପିତ ଜୀବନର ରୂପରେଖ, ଭୂମିଜ ସଂସ୍କୃତି ହିଁ ସୃଷ୍ଟି କରେ।

ସମଗ୍ର ପଶ୍ଚିମ ଓଡ଼ିଶାବାସୀଂକୁ ସେମାନଂକର ସ୍ମରଣୀୟ ପୂଜ୍ୟ ଜନଂକର ଜୀବନ ଆଲେଖ୍ୟ ପ୍ରକାଶନରେ ସଂପୃକ୍ତ ହୋଇ ମୁଁ ନିଜକୁ ଧନ୍ୟ ମନେ କରୁଛି।

**ଅଇଁଠୁ ସାହୁ**

**ଅଧ୍ୟକ୍ଷ, ପଶ୍ଚିମ ଓଡ଼ିଶା ବିକାଶ ପରିଷଦ**

# ଉପସ୍ଥାପନା

ପୂଜ୍ୟ ପୂଜା ପରଂପରା, ଆମର ସନାତନ ସଂସ୍କୃତିର ସ୍ୱୀକୃତ ବିଭବ। ପ୍ରତ୍ୟେକ ଶୁଭକର୍ମର ପ୍ରାରଂଭରେ ନାଂଦୀମୁଖୀ ଶ୍ରାଦ୍ଧରେ ପୂର୍ବପୁରୁଷଂକ ଆଶୀର୍ବାଦ ଭିକ୍ଷା କରାଯାଏ। ବ୍ୟକ୍ତିଗତ ଓ ପାରିବାରିକ ପରଂପରା ଭଳି, କୌଣସି ଭୂଖଂଡର ସାଂସ୍କୃତିକ ଧାରାରେ ଏହା ଆହୁରି ତାତ୍ପର୍ଯପୂର୍ଣ।

ପଶ୍ଚିମ ଓଡ଼ିଶାର ଜୀବନଶୈଳୀ ଅତ୍ୟଂତ ନିବିଡ଼ ଏବଂ ତାର ସଂସ୍କୃତିର ସ୍ୱାତଂତ୍ର୍ୟ ଆକର୍ଷଣୀୟ। ନିକଟ ଅତୀତରେ ସେହି ଜୀବନଧାରାକୁ ପରିପୁଷ୍ଟ କରିଥିବା ଅନେକ ମହାନ୍ ଜୀବନ ଆମର ସ୍ମୃତିରେ ସଦା ଅମର। ତାଂକ ଅବର୍ତ୍ତମାନରେ ସେମାନେ ସ୍ମରଣୀୟ 'ସ୍ମୃତି-ବାସୀ'। ଏହି ପୁସ୍ତକ ଏଭଳି କେତେକ ମହାନ୍ ଜନନେତାଂକ ଜୀବନୀ ସଂକଳନ। ପୂଜ୍ୟ ପୂଜାର ଏହି ଅଭିନବ ଆଲେଖ୍ୟ ହିଁ ସେମାନଂକ ପ୍ରତି ଆମର ଶ୍ରଦ୍ଧାଂଜଳି।

ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାଂତି ଏହି ପୁସ୍ତକର ଲେଖକ, ନିଜର ଚାକିରିକାଳ ମଧ୍ୟରେ ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ଜୀବନଯାତ୍ରା ସହ ସଂପୃକ୍ତ ହୋଇ, ଏକନିଷ୍ଠ ସାଧନାରେ, ସ୍ମରଣୀୟ ସ୍ୱର୍ଗୀୟ ବ୍ୟକ୍ତିମାନଂକର ଜୀବନକୁ ସରଳ ଏବଂ ନିରପେକ୍ଷ ଭାବରେ ଅତ୍ୟଂତ ଶ୍ରଦ୍ଧାରେ ସ୍ମରଣ କରିଛଂତି। ଉଭର ବୟସରେ ଏଭଳି ଅସାଧ୍ୟ କୃତିତ୍ୱର ପଟାଂତର ନାହିଁ।

ପଶ୍ଚିମ ଓଡ଼ିଶା ବିକାଶ ପରିଷଦରେ ଏହି ପ୍ରସଂଗ ଉପସ୍ଥାପନ ବେଳେ ମାନ୍ୟବର ସମସ୍ତ ସଭ୍ୟ ଏହାର ପ୍ରକାଶନ ପାଇଁ ଆବେଗମୟ ସ୍ୱୀକୃତି ପ୍ରଦାନ କରି ସୁଚିଂତିତ ପରାମର୍ଶ ଦେଇଥିଲେ। ପରିଷଦର ମାନ୍ୟବର ଅଧ୍ୟକ୍ଷ ବରିଷ୍ଠ ରାଜନୀତିଜ୍ଞ ଏବଂ ପଶ୍ଚିମ ଓଡ଼ିଶାର ସାଂସ୍କୃତିକ ଚେତନାର ଜଣେ ପ୍ରମୁଖ ପୃଷ୍ଠପୋଷକ ଶ୍ରୀଯୁକ୍ତ ଅଇଁଠୁ ସାହୁ ହିଁ ଏହି ପ୍ରକାଶନ ପ୍ରଯୋଜନାର ପ୍ରତ୍ୟକ୍ଷ ପୁରୋଧା।

ଏଇଠି ସ୍ପଷ୍ଟ କରିଦେବା ଉଚିତ ହେବ ଯେ, ଏହା ପଶ୍ଚିମ ଓଡ଼ିଶାର ସମସ୍ତ ସ୍ମରଣୀୟ ଦିବଂଗତ ବ୍ୟକ୍ତିଂକର ଜୀବନୀ ସଂକଳନ ନୁହେଁ। ଶ୍ରୀଯୁକ୍ତ ମହାଂତି ନିଜ ବ୍ୟକ୍ତିଗତ ଉଦ୍ୟମରେ ଯେଉଁମାନଂକର ଜୀବନ ଆଲେଖ୍ୟ ରଚନା କରିଛଂତି ସେମାନେ ହିଁ ଏଇଠି ସ୍ଥାନିତ। ଅନେକ, ବରେଣ୍ୟ ପୁରୁଷ ମଧ୍ୟ ଏଠାରେ ସ୍ଥାନିତ ହୋଇ ନାହାଂତି। ପାଠକେ ଶ୍ରଦ୍ଧାସିକ୍ତ ହୋଇ ସେଭଳି ମହାନ୍ ଜୀବନମାନଂକର ପାର୍ଥିବ ତଥ୍ୟ ପ୍ରଦାନ କଲେ, ପରବର୍ତୀ ସଂସ୍କରଣରେ ସ୍ଥାନିତ ହୋଇପାରିବ।

ଏହାର ପ୍ରଥମ ପାଠ ସଂପାଦନାରେ ବିଶିଷ୍ଟ ସାହିତ୍ୟିକ ଭାଷାବିତ୍ ଏବଂ ପଶ୍ଚିମ ଓଡ଼ିଶାର ଭାଷା ଓ ସଂସ୍କୃତିର ଜଣେ ପ୍ରବାଦ ପୁରୁଷ ଡକ୍ଟର ପ୍ରଫୁଲ୍ଲ କୁମାର ତ୍ରିପାଠୀ ଯେଭଳି ନିସ୍ୱାର୍ଥ ଭାବରେ ପାଠର ବ୍ୟାକରଣୀୟ, ଶୁଦ୍ଧତା, ବିଷୟବସ୍ତୁର ସଂଯତ ସମୀକରଣରେ ସହଯୋଗ କରିଛଂତି, ସେଥିପାଇଁ ମୁଁ ତାଂକ ପାଖରେ କୃତଜ୍ଞ। ତଥାପି ତ୍ରୁଟି ବିଚ୍ୟୁତି ପାଇଁ ପାଠକଂକ ପାଖରେ କ୍ଷମାଭିକ୍ଷା କରୁଛି।

ସର୍ବୋପରି ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଏହି ପ୍ରକାଶନ ଦ୍ୱାରା ପଶ୍ଚିମ ଓଡ଼ିଶାବାସୀଂକ ପ୍ରାଣ ପୁଲକରେ ଏକ ଆବେଗମୟ ସଂସ୍ଥିତି ପ୍ରଦାନ କରିଛଂତି। ଏହି ମହାନ୍ ପୂର୍ବସୂରୀମାନଂକର ଜୀବନୀ ମାଧ୍ୟମରେ ପଶ୍ଚିମ ଓଡ଼ିଶାର ଅମୃତମୟ ଜୀବନ ପ୍ରତ୍ୟେକ ପାଠକଂକୁ ଏକ ଆବେଗମୟ ମୃତ୍ୟୁଂଜୟୀ ଆହ୍ୱାନ ଦେବ। ପୁଣି ଥରେ ସେହି ମହା ମହିମମାନଂକୁ ଗଭୀର ଶ୍ରଦ୍ଧାଂଜଳି ସହ ବିନମ୍ର ଭକ୍ତି ନିବେଦନ କରୁଛି।

**ଉତ୍ତମ କୁମାର ପ୍ରଧାନ**
**ସଂପାଦକ, 'ସ୍ମୃତି-ବାସୀ'**

# ଅବତାରଣା

ଆଂଜୁଳାଏ ପାଣିରେ ସମୁଦ୍ର ଟେକି ହେବ ନାହିଁ। ସେଭଳି ଶ୍ରଦ୍ଧା ଅସୀମ ହେଲେ ହେଁ ଖଂଡେ ପୁସ୍ତକରେ ସମଗ୍ର ପଶ୍ଚିମ ଓଡ଼ିଶାର ବଡ଼ବଡ଼ିଆଁଙ୍କ ଜୀବନଚରିତ ସ୍ଥାନିତ କରିବା ଅସଂଭବ। ସମ୍ମାନନୀୟ ଲେଖକ ଓ ସ୍ୱନାମଧନ୍ୟ ପ୍ରଶାସକ ବିଷ୍ଣୁଚରଣ ମହାଂତି ଏହି ଅନବଦ୍ୟ ଶ୍ରଦ୍ଧାଂଜଳିରେ ମହାନ୍ ଆତ୍ମାମାନଂକର କେତୋଟି କଥା ଶବ୍ଦବଦ୍ଧ କରିଛଂତି।

ସେମାନେ ସମସ୍ତେ କୋଶଲୀ ବା ସଂବଲପୁରୀ ଭାଷାରେ କଥାବାର୍ତା କରୁଥିଲେ। ନୂଆଖାଇରେ ନିଜଠୁଁ ବଡ଼ ସମସ୍ତଙ୍କୁ ଜୁହାର ହେଉଥିଲେ। ନିଜ ନିଜ ଗାଁଆରେ କୁରେଇ ଫୁଲର ଗଜରାଭରା, ଯୁବତୀଂକ ଗୀତ ଶୁଣିଥିଲେ, ନିରୀହ ନିଷ୍ପାପ ନିର୍ମଳ ଆଦିବାସୀଂକର ନିବିଡ଼ ଆତ୍ମୀୟତାରେ ଏକ ଶାଂତ ସାମାଜିକ ସଂହତିରେ ବିଶ୍ୱାସ୍ କରୁଥିଲେ। ସେହି କୋଶଳୀ ମାଟି ମାଆର ବୁକୁରେ ସେମାନେ କୁଳପତି, ଯଂତ୍ରୀ, କବି, ଲେଖକ, ମଂତ୍ରୀ, ମୁଖ୍ୟମଂତ୍ରୀ ହେବାର ଶକ୍ତି ଓ ସାମର୍ଥ୍ୟ ପାଇଥିଲେ।

ବଲ୍ଫୀମାଳୀ ବଳୟରୁ ମୁକ୍ତ ଇଂଦ୍ରାବତୀର ଜଳଧାର, ହାତୀ, ତେଲ, ଶଗଡ଼ାର ନିର୍ମଳ ଝର, ମାଟି ଉଖାରିଲେ ଉକୁଟି ଆସୁଥିବା ମାଣିକର ଭଂଡାର ତିଆରି କଲେ ଭୁବନେଶ୍ୱର ବେହେରା ଭଳି ବିଶାଳ ବ୍ୟକ୍ତିତ୍ୱ। ନୃସିଂହନାଥ ହରିଶଂକର ଗଂଧମାର୍ଦନର ପାଣିପବନରେ ପ୍ରତିପାଳିତ କୃତାର୍ଥ ମାଷ୍ଟର୍ ଲକ୍ଷ୍ୟ କରଂତି ସଂବଲପୁରୀ ରମଣୀର କୁଂଚକାନିରେ ରୂପାକରାଟ ଖୋଷୁଥିବା ହଂସଧଡ଼ି। ସୂକ୍ଷ୍ମ ପାଟସୂତାକୁ ଗଂଠିଳି କରି, କୃଷ୍ଣ ନୀଳ ରଂଗ ମାଟି ପାତ୍ରରେ ବୁଡ଼ାଇ ସପ୍ତରଂଗୀର ସମାସରେ ହଂସ ଧାଡ଼ିକୁ ଟେକି ଧରଂତି ଆଚାର୍ଯ ମାଷ୍ଟ୍ରେ। ସୃଷ୍ଟି ହୁଏ ସହସ୍ର ସଂଭାବନାର ପରିଧାନ - ସଂବଲପୁରୀ ବସ୍ତ୍ରର ଦିଗଂତବିସ୍ତାରୀ ଜୟଯାତ୍ରା।

ମହାବ୍ୟାଧିରେ ପୀଡ଼ିତ ସମାଜରୁ ବହିଷ୍କୃତ ଅସହାୟ କୃଷ୍ଠ ରୋଗୀଂକର କାତର ଡାକରେ ବିହ୍ୱଳିତ କରୁଣାମୟ ହାତ ଅମୃତ ମମତାର ନିବିଡ଼ ଆଶ୍ଳେଷ ନେଇ ଉଭାହୁଅଂତି ଆଇଜାକ୍ ସାଂତରା ନିଃସ୍ୱାର୍ଥ ଜନସେବାର ଚରମ ନିଦର୍ଶନ ରୂପେ। ଆମ ଗାଁର ମୁଖିଆମାନଂକୁ ଆମେ ନୋବେଲ୍ ପୁରସ୍କାର ଦେଇ ନ ପାରୁଁ, କିଂତୁ କହି ପାରିବା ମଦର୍ ଟେରେସାଂକ ଆଗମନର ପଚାଶ ବର୍ଷ ଆଗରୁ ସେହି ଆଦର୍ଶର ମୂର୍ତିମଂତ ମଣିଷ ଥିଲେ ଆମ ଗାଁର ମୁଖିଆ। ଆମ ପିଲାଂକୁ ଏହା ତ ଆମେ କହିପାରିବା।

ସେଭଳି କେତେ କଳାକୁଟରେ ଗଢ଼ା ମଦନ ମୋହନ ପୂଜାରୀ, ଶ୍ରଦ୍ଧାକର ସୁପକାର। ପଶ୍ଚିମ ଓଡ଼ିଶାର ନିଜସ୍ୱ ଏଇମାନେ, ପ୍ରତ୍ୟେକ ଜୀବନ ସ୍ୱାଭିମାନୀର ସଂସ୍କୃତିରେ ପ୍ରସ୍ଫୁଟିତ ପଦ୍ମ। ମୋର ବିଶ୍ୱାସ ଏହା ଏକ ସାଧାରଣ ପୁସ୍ତକ ନୁହେଁ, ପ୍ରତ୍ୟେକ ସ୍ୱାଭିମାନୀ ପଶ୍ଚିମ ଓଡ଼ିଶାବାସୀଂକର ଗର୍ଭଗୃହର ପ୍ରତିଷ୍ଠାଯୋଗ୍ୟ ପୂଜ୍ୟ ପ୍ରତିମା।

ପଶ୍ଚିମ ଓଡ଼ିଶାର ବିଭିନ୍ନ ଅଂଚଳରେ ରାସ୍ତା ତଥା ଗମନାଗମନର ଉନ୍ନତି, ଜଳସେଚନର ସୁବିଧା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଉନ୍ନତି ଇତ୍ୟାଦି ଉନ୍ନୟନମୂଳକ କାର୍ଯ ହାତକୁ ନେବା ସହିତ ସାହିତ୍ୟ ଓ କଳା ଦିଗରେ ମଧ୍ୟ ପ୍ରୋତ୍ସାହନ ପ୍ରଦାନର ଲକ୍ଷ୍ୟ ନେଇ ପରିଷଦ ତରଫରୁ ଏକ ଛୋଟ ପଦକ୍ଷେପ ସ୍ୱରୂପ ଏହି ପୁସ୍ତକର ପ୍ରକାଶନ। ଏଥିରେ ସ୍ଥାନିତ ବରପୁତ୍ରମାନଂକ ଅବତାରଣା, ତଥ୍ୟ ଓ ମଂତବ୍ୟ ପୂର୍ଣ ରୂପେ ସଂକଳକଂକର ନିଜସ୍ୱ ଓ ତା ସହିତ ପରିଷଦର କୌଣସି ସଂପର୍କ ନାହିଁ। ପରିଷଦ କେବଳ ଏହି ପୁସ୍ତକ ପ୍ରକାଶନରେ ସାହାଯ୍ୟ ଦ୍ୱାରା ନିଜର କାର୍ଯକ୍ଷେତ୍ରକୁ ସଂପ୍ରସାରିତ କରିଛି। ଗୁଣୀଲୋକଂକ ସାହାଯ୍ୟ ଓ ଶ୍ରଦ୍ଧା ପାଇଲେ ଭବିଷ୍ୟତରେ ଏମିତି ଆଉ କିଛି ସଂକଳନର ଆଶା କରାଯାଇପାରେ।

**କୃଷ୍ଣ ଗୋପାଳ ମହାପାତ୍ର**
**ମୁଖ୍ୟ କାର୍ଯନିର୍ବାହୀ ଅଧିକାରୀ, ପଶ୍ଚିମ ଓଡ଼ିଶା ବିକାଶ ପରିଷଦ**

# ଗୌର ଚଂଦ୍ରିକା

''କେହି ରହିନାହିଁ ରହିବେ ନାହିଁଟି, ଭବରଂଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି, ବାହୁଡ଼ିବେ କାଳବଳେ''।
*–ରାଧାନାଥ*

ମାତ୍ର ବାହୁଡ଼ିବା ପୂର୍ବରୁ ରଂଗମଂଚରେ ନିଜର କୁଶଳୀ କଳା ପ୍ରଦର୍ଶନ ଦ୍ୱାରା କେତେଜଣ ଜନମାନସରେ ସ୍ମରଣୀୟ ରହଂତି।

''ମନୁଷ୍ୟ ଜୀବନ ନୁହଁଇ କେବଳ
ବର୍ଷମାସ ଦିନ ଦଂଡ
କର୍ମେ ଜିଏଁ ନର କର୍ମ ଏକା ତାର
ଜୀବନର ମାନଦଂଡ''।
*–ଗୋପବଂଧୁ*

ଦୀର୍ଘ କର୍ମମୟ ଜୀବନ ଯାପନ ଓ ନିଷ୍କାମ କର୍ମ ସାଧନ କରି ମଧ୍ୟ କେତେକ ଉପଯୁକ୍ତ ଯଶ ବା ମର୍ଯାଦା ପାଇ ନ ଥାଂତି। ଓଡ଼ିଶାର ଶିକ୍ଷା, ସଂସ୍କୃତି, ରାଜନୀତି ଓ ସମାଜସେବା କ୍ଷେତ୍ରରେ ଏକ ସମୁଜ୍ଜ୍ୱଳ ଜ୍ୟୋତିଷ୍କ ବିଦ୍ୟାବାଚସ୍ପତି ପଂଡିତ ଶ୍ରଦ୍ଧାକର ସୂପକାର ଓଡ଼ିଶାର ସାହିତ୍ୟ, ରାଜନୀତି, ଶିକ୍ଷା ଆଦି ପ୍ରାୟ ସବୁକ୍ଷେତ୍ରରେ ପ୍ରତିଭାର ଆଦର ଜୀବନ କାଳରେ ହୁଏନାହିଁ ବୋଲି କ୍ଷୋଭ ପ୍ରକାଶ କରିଛଂତି। ନିଜ ଆତ୍ମଜୀବନୀର ପ୍ରଥମ ଭାଗ 'ମଧ୍ୟମ ପୁରୁଷ' (୧୯୮୨)ରେ ସେ ଲେଖିଛଂତି ସ୍ଥାନୀୟ ପ୍ରକାଶନର ସୁଯୋଗ ନ ଥିବା ହେତୁ ଓ ଓଡ଼ିଶାର ସବୁ ବଡ଼ ପୁସ୍ତକ ପ୍ରକାଶକ ଓ ବ୍ୟବସାୟୀ କଟକ ସହରବାସୀ ଥିବାରୁ ଲେଖକ ଗ୍ରଂଥକାରମାନଂକର ସାହିତ୍ୟ ପୃଷ୍ଠପୋଷକତା ସେମାନଂକ ହାତରେ ରହିଥାଏ। ସେମାନଂକର ଅନାଦର ଫଳରେ ପ୍ରତିଭା ଅବହେଳିତ ହୁଏ। ପୁଣି ସଂବାଦ ପତ୍ରର ପ୍ରସାର ଦୂର ଜିଲ୍ଲାମାନଂକରେ ସୀମିତଥିବା ହେତୁ ଲୋକପ୍ରିୟ ସାହିତ୍ୟିକ କଳାକାର ଓ ଜନନାୟକମାନଂକର ଅବଦାନ ବିଶାଳ ଉତ୍କଳର ଗାଁ ଗହଳିରେ ପ୍ରଚାରର ସୁଯୋଗ ନ

ଥାଏ । କାଳକ୍ରମେ ସ୍ଥାନୀୟ ଲୋକମାନେ ଏହି ପ୍ରତିଭାଧର ପୁରୁଷମାନଂକୁ ମଧ୍ୟ ଭୁଲିଯାଆଂତି । ଖାଲି ମନେପଡ଼େ ୧୮୯୨ରେ କବିବର ରାଧାନାଥଂକର ଲେଖାପଦ -

"କ୍ଷୁଦ୍ର ସୀପ୍ରା ସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ
ସ୍ୱରୂପା ଅଂଶୁପା ଲୋକେ ଅଗୋଚର
ପୃଚ୍ଛାସ୍ପଦ ହେଲା ଗୋଷ୍ପଦ ପୁଷ୍କର"

ଏହି ପରିପେକ୍ଷୀରେ ଅବିଭକ୍ତ ସଂବଲପୁର, ବଲାଂଗୀର ଓ କଳାହାଂଡି ଜିଲ୍ଲାଗୁଡ଼ିକର ୧୮୩ ଜଣ କବି, ସାହିତ୍ୟିକ, କଳାକାର, ସମାଜସେବୀ, ଜନନେତା, ଶିକ୍ଷାବିତ୍‌ଂକର ସଂକ୍ଷିପ୍ତ ପରିଚୟ ଏହି ପୁସ୍ତିକାରେ ଦିଆଯିବାକୁ ଉଦ୍ୟମ କରାଯାଇଛି । ବୃହତ୍ତର ଓଡ଼ିଶାରେ ସେମାନେ ଅଜ୍ଞାତ ବା ସ୍ୱଳ୍ପଜ୍ଞାତ ରହିବା ଓ ନିଜ ପ୍ରତିଭାର ସଂପୂର୍ଣ ବିକାଶ ନିମିତ୍ତ ସୁଯୋଗ ନ ପାଇଥିବା ଅତ୍ୟଂତ ଦୁର୍ଭାଗ୍ୟଜନକ: ସେମାନଂକର ସ୍ମୃତିକୁ ଜାଗ୍ରତ କରିବା ଏହି ପୁସ୍ତକ ପ୍ରକାଶନର ଉଦ୍ଦେଶ୍ୟ । ବର୍ତମାନ ସମାଲୋଚନାର ଊର୍ଦ୍ଧ୍ୱକୁ ଯାଇଥିବା କେବଳ ଗତାୟୁମାନଙ୍କୁ ଏହି ସ୍ମରଣୀୟ ପ୍ରତିଭା କ୍ରମରେ ଅଂତର୍ଭୁକ୍ତ କରାଯାଇଅଛି । ବର୍ଣିତ ବ୍ୟକ୍ତିମାନଂକର କାର୍ଯକାଳ ବିଂଶ ଶତାବ୍ଦୀରେ ସୀମିତ, ମାତ୍ର ଏହାର ବ୍ୟତିକ୍ରମ ରୂପେ ସୁପରିଚିତ ସଂଥ ଭୀମଭୋଇ ସଂବଲପୁରର ୧୮ଶ ଶତାବ୍ଦୀର କବି ଗୋପାଳ ତେଲେଂଗା, କଂଧ କବି ଯୋଗୀ ଦାସ, ଭୁଲିଆ ସାଧୁ, ରତ୍ନାକର ଦାସ, ବରଗଡ଼ର ଓ ଖଡ଼ିଆଳର ନିର୍ଗୁଣ ମାହାତ୍ମ୍ୟର ଲେଖକ ୧୭ଶ ଶତାବ୍ଦୀର ଚୈତନ୍ୟ ଦାସଙ୍କୁ ଅଂତର୍ଭୁକ୍ତ କରାଯାଇଅଛି । ସେମାନେ ବିଶେଷ ଲୋକପ୍ରିୟତା ଅର୍ଜନ ନ କରିଥିବା ଦୃଷ୍ଟେ ସଦ୍ୟତମ ଗବେଷଣା ଉପରେ ଆଧାରିତ ସେମାନଂକ ସଂକ୍ଷିପ୍ତ ଜୀବନ ଚରିତ ଏଥିରେ ପରିବେଷିତ ହୋଇଛି ।

ଏକଦା ବିଶିଷ୍ଟ ବ୍ରିଟିଶ୍ ଚିଂତକ କାର୍‌ଲାଇଲ୍ (ଖ୍ରୀ ୧୭୯୫-୧୮୮୧) କହିଥିଲେ, 'ଇତିହାସ ଅସଂଖ୍ୟ ଜୀବନ ଚରିତର ସାରାଂଶ ମାତ୍ର ।' ସେହିପରି ଆମେରିକାର ପ୍ରାବଂଧିକ ଏମରସନ୍ (ଖ୍ରୀ: ୧୮୦୩ - ୧୮୮୨) 'ପ୍ରକୃତରେ ଇତିହାସ ବୋଲି କିଛି ନାହିଁ, ସେ ସବୁ କେବଳ ଜୀବନ ଚରିତ' ବୋଲି ଶୁଣାଇଥିଲେ । ବର୍ଣିତ ପ୍ରତିଭାଧରମାନଂକର ଜୀବନ ଚରିତରୁ ପଶ୍ଚିମ ଓଡ଼ିଶାର ବିଂଶ ଶତାବ୍ଦୀର ଅର୍ଥନୈତିକ ସାମାଜିକ ଓ ରାଜନୈତିକ ଚିତ୍ର ବିଶଦଭାବରେ ମିଳିପାରିବ ବୋଲି ମୋର ବିଶ୍ୱାସ ।

ସ୍ଥାନୀୟ କେତେକ ସ୍ମରଣୀୟ ପ୍ରତିଭା ଏହି ସଂକଳନରେ ବାଦ ପଡ଼ି ଥିବା ବିଷୟରେ ମୁଁ ସଚେତନ ଅଛି । ସଂବଲପୁର ପ୍ରେମୀ ବାଲ୍ୟବଂଧୁ ବାଣିଜ୍ୟ ଅଧ୍ୟାପକ ଡକ୍ଟର

ସୂର୍ଯକାଂତ ଦାସ ଏହାକୁ 'ହ୍ୱାୟ ନଟ୍ ଦି ବେଷ୍ଟ' କରି ପ୍ରକାଶନ ନିମିତ୍ତ ଉତ୍ସାହ ଦେଉଥିଲେ ହେଁ ସେ ଗତ ୨୦୦୩ ନଭେଂବର ୨୫ ତାରିଖରେ ଇହଧାମରୁ ବିଦାୟ ନେବାପରେ ମୁଁ ବୟାଅଶୀ ବର୍ଷ ବୟସରେ 'ନାହିଁ ମାମୁଠାରୁ କଣା ମାମୁ ଭଲ' ନ୍ୟାୟରେ ଏହାର ପ୍ରକାଶନ ତ୍ୱରାନ୍ୱିତ କଲି। ସୁଧୀ ସମାଜରେ ତ୍ରୁଟି ମାର୍ଜନା ଆଶା ରଖିଅଛି। ଅଯାଚିତ ଭାବରେ ବନ୍ଧୁ ବଂଧୁ ଓ ଶୁଭେଚ୍ଛୁ ନାନା ପ୍ରକାରେ ସାହାଯ୍ୟ ପ୍ରଦାନ କରିଛଂତି। ସେମାନଂକ ନାମ ଅନ୍ୟତ୍ର ପ୍ରକାଶ କରି ହାର୍ଦିକ କୃତଜ୍ଞତା ଜଣାଉଛି।

ମୋର ସହୃଦୟ ପାଠକମାନଂକ ଠାରୁ ଆଶା

*Be to their fault a little blind*
*Be to their vitrues very kind.*

ସେମାନଂକ ଦୋଷ ପ୍ରତି ବୁଜି ଦେବ ଆଖି
ସେମାନଂକ ଗୁଣାବଳି ମନେ ଥିବ ରଖି।

**ବିଷ୍ଣୁଚରଣ ମହାଂତି**
**ସଂକଳକ, 'ସ୍ମୃତି-ବାସୀ'**

# ସୂଚୀପତ୍ର

## ❑ ଷଷ୍ଠ ଅଧ୍ୟାୟ : ଖଡ଼ିଆଳର ଖଡ଼ିକାର ୫୦୯–୫୩୫



## ❑ ସପ୍ତମ ଅଧ୍ୟାୟ : କଳାହାଂଡିର କଲ୍ଲୋଳ ୫୩୯–୫୭୨

# SAMBALPUR DISTRICT



## ସଂବଲପୁର

| | |
|---|---|
| ଆୟତନ | ୬୭୦୨ ବର୍ଗ କି.ମି. |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୯,୨୮୮୯ |

''ଚିର ବଂଦିତା ବଂଦିନୀ ମାଆ
ବଂଧନ ଫେଇ ବାରେ
ସଂବଲପୁର ସଂବଳବୀର
ଦଂଭ କି ନାହିଁ ଧରେ।''

''ଜାଗ ଦୁର୍ବଳ, ଛିନ୍ନ ଶୃଂଖଳ, ଉଠ କଂକାଳ ଆଜି
ଉଠୁ ଗତ ଗୌରବ, ହୃତଗୌରବ, ମୃତଗୌରବ ରାଜି ।।''

– କବି ଗୋଦାବରୀଶ ମହାପାତ୍ର

କୌଶଳ ଜନକ ଜ୍ଞାନ ଅଟେ ସିନା  ଜନମି ନ ପାରେ ଜ୍ଞାନ ଭାଷା ବିନା
ଭାଷା ଯୋଗୁ ସିନା ଦମି ଜୀବଗଣ  ମାନବ କରଇ ବିଶ୍ୱେ ରାଜପଣ
ଯା ଭାଷା ଦୁର୍ବଳ ସେ ନିଶ୍ଚେ ଅଧମ  କାହିଁ ହେବ ଆନେ ପ୍ରତିରୋଧେ କ୍ଷମ ।

– 'ଉଦ୍‌ବୋଧନ' ଗଂଗାଧର

# ସଂବଲପୁରରେ ଭାଷା ଆଂଦୋଳନ ଓ ଏହାର ମହାରଥୀଗଣ

ଇଂରେଜମାନେ ବିଭିନ୍ନ ସମୟରେ ଖଂଡ ଖଂଡ କରି ଓଡ଼ିଶା ଦଖଲ କରିଥିଲେ। ଓଡ଼ିଶାରୁ ଫାଳେ ଉପକୂଳ ଅଂଚଳ ବଂଗ ପ୍ରଦେଶରେ, ଗଂଜାମ ଓ ଜୟପୁର ଜମିଦାରିକୁ ନେଇ ଆଉ ଫାଳେ ମାଂଦ୍ରାଜ ପ୍ରଦେଶରେ ଓ ପଶ୍ଚିମାଂଶ ସଂବଲପୁର ଅଂଚଳ ମଧ୍ୟପ୍ରଦେଶରେ ରହି ଶାସିତ ହେଉଥିଲା। ଉପକୂଳ ଅଂଚଳରୁ ବିଚ୍ଛିନ୍ନ ଥିବା ଅଂଚଳକୁ ବିଚ୍ଛିନ୍ନାଂଚଳ ବୋଲି କୁହାଗଲା। କୌଣସି ଗୋଟିଏ ପ୍ରଦେଶରେ ମଧ୍ୟ ପ୍ରଶାସନରେ ନିର୍ଣ୍ଣୟାତ୍ମକ ଭୂମିକା ଗ୍ରହଣର ସୁଯୋଗ ନ ଥିବାରୁ ବ୍ରିଟିଶ ଉପନିବେଶବାଦର ଚକ୍ରାଂତ ଓ ନିଷ୍ପେଷଣ ଫଳରେ ବିଭାଜିତ ଓଡ଼ିଆଭାଷୀ ଅଂଚଳମାନ ବିଭିନ୍ନ ପ୍ରଦେଶର ଉପାଂତରେ ଝୁଲିରହିଥିବା ଅଦରକାରୀ ଉପାଂଗ ଭଳି ପଡ଼ିରହିଥିଲା।

ଗଡ଼ଜାତଗୁଡ଼ିକର ଅବସ୍ଥା ମଧ୍ୟ ସେମିତି ଥିଲା। ୧୮୦୫ରେ କେତେକ ଦେଶୀୟ ରାଜ୍ୟ ଓଡ଼ିଶା ଡିଭିଜନ ସହିତ ମିଶିଲା ଓ ଓଡ଼ିଶା ଡିଭିଜନର କମିସନର ଏହାର ତତ୍ତ୍ୱାବଧାରକ ରହିଲେ। ୧୮୦୩ରେ ଇଂରେଜମାନଂକର ଓଡ଼ିଶା ଦଖଲ ପରେ ଅଠରଟି ରାଜ୍ୟ ଟ୍ରିବ୍ୟୁଟରୀ ମାହାଲ ଯଥା – ଆଠଗଡ଼, ଢେଂକାନାଳ, ନରସିଂହପୁର, ଅନୁଗୁଳ, ତାଳଚେର, ଦଶପଲ୍ଲା, ପାଲଲହଡ଼ା, ବଡାଂବା, ହିଂଦୋଳ, ନୟାଗଡ଼, ବାଂକି, ତିଗିରିଆ, କେଂଦୁଝର, ଆଠମଲ୍ଲିକ, ଖଂଡପଡ଼ା, ନୀଳଗିରି, ରଣପୁର, ବଉଦ, ମୟୂରଭଂଜ ଇଂରେଜ ସରକାରଂକ ସହିତ ଚୁକ୍ତିବଦ୍ଧ ହେଲେ। ପରେ ବାଂକି ଓ ଅନୁଗୁଳର ରାଜାମାନଂକୁ ହଟାଇ ଇଂରେଜମାନେ ଏହାକୁ ଖାସ ଦଖଲକୁ ନେଇ ଶାସନ କଲେ। ଆଉ ସାତଗୋଟି ରାଜ୍ୟ ୧୮୧୯ ଯାଏ ନାଗପୁରର ମରହଟ୍ଟା ଭୌଁସ୍‌ଲା ରାଜାଂକ ଶାସନାଧୀନ ଥାଇ ୧୮୨୬ ପରେ ଇଂରେଜ ସରକାରଂକର ଅଧୀନକୁ ଆସିଥିଲା। ଏହି ସାତୋଟି ରାଜ୍ୟକୁ ସଂବଲପୁର ଗଡ଼ଜାତ କୁହାଯାଉଥିଲା। ୧୮୫୩ରେ ଏସବୁ ସହିତ କଳାହାଂଡି ମିଶିଲା। ଷଢ଼େଇକଳା ଓ ଖରସୁଆଁକୁ ମିଶାଇ ମୋଟରେ ଏମିତି ଛବିଶଟି ଗଡ଼ଜାତ ହେଲା। ଏଇସବୁ ରାଜ୍ୟର ରାଜାମାନେ

ଓଡ଼ିଆ ଥିଲେ। ସେମାନଂକର ମାତୃଭାଷା ଓଡ଼ିଆ ଥିଲା। ମୁଖ୍ୟତଃ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱଳ୍ପବସତିପୂର୍ଣ ବଣଜଂଗଲ ସଂକୁଳ ଅଂଚଳ ଥିଲା। ଇଷ୍ଟଇଂଡିଆ କଂପାନି ଶାସକ ଥାଇ ଦେଶୀୟ ରାଜାମାନଂକର ଦୈନଂଦିନ ଶାସନରେ ହସ୍ତକ୍ଷେପ କରିବାକୁ କୁଂଠିତ ଥିଲେ। ୧୮୫୭ରେ କଂପାନି ଶାସନ ଲୋପ ପାଇଲା। ଇଂଲଂଡର ରାଣୀ ମହାରାଣୀ ଭିକ୍ଟୋରିଆ ଭାରତରେ ସମ୍ରାଜ୍ଞୀ ବୋଲାଇଲେ। ଯେଉଁଠି ଦେଶୀୟ ରାଜ୍ୟକୁ ସଂବଲପୁର ଗଡ଼ଜାତ କୁହାଯାଉଥିଲା, ଏଗୁଡିକ ହେଲା ସଂବଲପୁର, ପାଟଣା, ବାମଂଡା, ସୋନପୁର, ରେଢାଖୋଲ, ଗାଂଗପୁର ଓ ବଣେଇ। ଏହ ରାଜ୍ୟର ରାଜାମାନେ ଇଂରେଜ ସରକାରଂକର ବଶ୍ୟତା ସ୍ୱୀକାର କରି ସେମାନଂକୁ କିଛି ପେସ୍‌କିସ୍ ଦେଇ ଅଭ୍ୟଂତରୀଣ ଶାସନ ନିଜ ଇଚ୍ଛା ଅନୁସାରେ ଚଳାଇଲେ। ନିତାଂତ କୁଶାସନ ବା ରାଜ ବିଦ୍ରୋହ ଦେଖା ନଦେଲେ ଇଂରେଜ ସରକାର ସେମାନଂକ ଶାସନରେ ହସ୍ତକ୍ଷେପ କରୁ ନ ଥିଲେ।

ସଂବଲପୁରର ଶେଷ ରାଜା ନାରାୟଣ ସିଂହ ଅପୁତ୍ରକ ହୋଇ ପ୍ରାଣତ୍ୟାଗ କଲେ। ଲର୍ଡ ଡେଲ୍‌ହାଉସି ବଡ଼ଲାଟ ଥାଇ ରାଜ୍ୟ ସ୍ୱତ୍ୱଲୋପ ନୀତି ପ୍ରୟୋଗ କରି ୧୮୪୯ରେ ଏହି ରାଜ୍ୟଟିକୁ ଇଂରେଜ ଶାସିତ ଅଂଚଳରେ ମିଶାଇଲେ। ଏହା ସଂବଲପୁର ଜିଲ୍ଲା ହୋଇ ଶାସିତ ହେଲା ଓ ମଧ୍ୟପ୍ରଦେଶର ଚିଫ୍ କମିସନର୍ ଏହାର ଶାସନଭାର ସଂଭାଳିଲେ। ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ତଥାକଥିତ ସିପାହି ବିଦ୍ରୋହର ପୂର୍ବରୁ ସଂବଲପୁରର ବୀର ସୁରେଂଦ୍ର ସାଏ ସର୍ବ ପ୍ରଭୁତ୍ୱ ସଂପନ୍ନ ଇଂରେଜ ସରକାର ବିରୌଧରେ ୧୮୨୭ରୁ ଯୁଦ୍ଧ ଘୋଷଣା କରି ଦେଇଥିଲେ। ଗରିଲା ଯୁଦ୍ଧ କରି ସେ ସରକାରଂକୁ ବ୍ୟତିବ୍ୟସ୍ତ କରି ପକାଇଲେ। ବାରଂବାର ପରାସ୍ତ ହୋଇ ଇଂରେଜ ସରକାର ପ୍ରାଶାସନିକ ସୁବିଧା ଦୃଷ୍ଟିରୁ ୧୮୬୦ରେ ଏହି ଅଂଚଳଟିକୁ ମଧ୍ୟ ପ୍ରଦେଶରୁ କାଢ଼ି ନେଇ ଓଡ଼ିଶା ଡିଭିଜନ ଅଂତର୍ଗତ ଥିବା ବଂଗ ପ୍ରଦେଶରେ ମିଶାଇଲେ। ସେଥିରେ ମଧ୍ୟ ଆଇନ ଶୃଂଖଳା ରକ୍ଷାରେ ବିଶେଷ କିଛି ଫଳ ମିଳି ନଥିଲା । ତେଣୁ ପୁଣି ଥରେ ସରକାର ୧୮୬୨ରେ ସଂବଲପୁର ଜିଲ୍ଲାକୁ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରେ ସାମିଲ କଲେ। ମଧ୍ୟ ପ୍ରଦେଶର ସବୁ ଜିଲ୍ଲା ଗୁଡିକରେ ହିଂଦି ଓ ମରାଠୀ ଭାଷୀ ଲୋକମାନେ ଥିଲେ। କେବଳ ଛତିଶଗଡ ଅଂଚଳରେ ସଂବଲପୁର ଓ ପାଖାପାଖି ଜିଲ୍ଲାରେ ଓଡ଼ିଆ ଭାଷାଭାଷୀ ଲୋକ ବାସ କରୁଥିଲେ। ରାଜ କର୍ମଚାରୀମାନେ ଓଡ଼ିଆ ଭାଷା ଜାଣୁନଥିଲେ। କିଛିଦିନ ଓଡ଼ିଆ ଅଂଚଳରେ ରହି ଭାଷା ଶିଖିବା ପରେ ପ୍ରଶାସନର ଆବଶ୍ୟକତା ଦୃଷ୍ଟିରୁ ସେମାନେ ଅନ୍ୟତ୍ର ବଦଳି ହୋଇ ଯାଉଥିଲେ। ତେଣୁ ଓଡ଼ିଆ ଭାଷାଅଜ୍ଞ ରାଜ କର୍ମଚାରୀମାନଂକୁ ଶାସନ ଚଳାଇବା କଷ୍ଟକର ହେଉଥିଲା। ଅମଲାମାନେ କୋର୍ଟ କଚେରିରେ ହିଂଦି ପ୍ରଚଳନ କରି ଏ ଅସୁବିଧା ଦୂର କରିବାକୁ

ସରକାରଂକୁ ପ୍ରଭାବିତ କଲେ । ତତ୍‌କାଳୀନ ଜିଲ୍ଲା ଶାସକ – ସଂବଲପୁରର ଡେପୁଟି କମିସ୍‌ନର୍ ଅମଲାମାନଂକର ଏହି ଦାବି ପ୍ରତି ଅତ୍ୟଧିକ ମାତ୍ରାରେ ସହାନୁଭୂତିଶୀଳ ଥିଲେ । ସେ ବାରଂବାର ସରକାରଂକୁ ଓଡ଼ିଆ ବଦଳରେ ହିଂଦି ପ୍ରଚଳନ ନିମିତ୍ତ ପତ୍ର ଲେଖିଲେ । ସରକାରଂକର ମତିଗତି ଠଉରାଇ ବାମଂଡାରୁ ପ୍ରକାଶିତ ସଂବଲପୁର ହିତୈଷଣୀ ପ୍ରଥମେ ଏ ଦୁଃସଂବାଦ ଲୋକମାନଂକ ଦୃଷ୍ଟିକୁ ଆଣିଲେ । ହିତୈଷିଣୀ ସହିତ ଉତ୍କଳ ଦୀପିକା ମଧ୍ୟ ଏହି ପ୍ରସ୍ତାବିତ ଅନ୍ୟାୟ ଆଦେଶ ବିରୋଧରେ ଜନମତ ପ୍ରକାଶନରେ ନେତୃତ୍ୱ ନେଇଥିଲେ । ଭାଷା ରକ୍ଷା ଦିଗରେ ସଂପୂର୍ଣ ସଚେତନ ଥିବା କବି ଗଂଗାଧର ସଂବଲପୁର ହିତୈଷିଣୀର ତା ୩୦–୧୦–୧୮୯୪ ସଂଖ୍ୟାରେ 'ଭାରତୀ ରୋଦନ' ଶୀର୍ଷକ କବିତା ପ୍ରକାଶ କରିଥିଲେ । ସେ ଲେଖିଥିଲେ –

ଉତ୍କଳ ଭାରତୀ ରୋଦନ କରୁଛି
    କାତରେ ସଂବଲପୁରେ
ସେ ବିକଳ ଧ୍ୱନି କର୍ଣରେ ପଡିଲେ
    ନୟନେ ଲୋତକ ପୂରେ ।
ବୋଲଇ ଦୁଃଖିନୀ କେତେ କେତେ କଷ୍ଟ
    ସହି ମୋ କୋଳରେ ଧରି
କୁମାରଂକୁ ମୋର ପାଳନ କରୁଛି
    ପ୍ରାଣାଧିକ ସ୍ନେହ କରି ।
ପୁତ୍ରମାନେ ମୋର ବଢ଼ି ଆସୁଛଂତି
    ଶୁକ୍ଳପକ୍ଷ ଯଥା ଶଶୀ
ଶ୍ରବଣକୁ ମୋର ତୋଷୁଥାଂତି କହି
    ମୃଦୁବାକ୍ୟେ ହସି ହସି ।
ଫୁଟିଆସୁଅଛି ଆହା କି ସୁଂଦର
    ସୁଂଦର କୁସୁମ ମାନ
କେତେ ବୃକ୍ଷେ ଅବା ଫଳମାନ ଫଳି
    ହୋଇଅଛି ସାନସାନ ।
ଏହି ସୁଖମୟ ସମୟେ ଦଗଧ
    ହେଉଅଛି ଏହି ବନ
ଦେଖି ବିସ୍ମୟରେ ହାହାକାର
    କରୁଛଂତି ମୋ କୁସୁମଗଣ ।

ହିଂଦି ସରସ୍ୱତୀ ମୋ ଛାତିରେ ବସି
କରିବ ପରା ରାଜତ୍ୱ।
ସେ ଆଶା କାନନ ଭସ୍ମରାଶି ହେବ
ତା ନବ ଉଦ୍ୟାନେ ଖତ।
ଉପମାତା ଆସି ଗର୍ଭଧାରିଣୀର
ମସ୍ତକେ ଚରଣ ଦେବ
ଏ ବେଶ ଦେଖିଲେ କେଉଁ ସଂତାନର
ମନରେ ଦୁଃଖ ନ ହେବ।
ତା କୁଂତ ପ୍ରହାରେ ଜୀବନ ନ ଯିବ
ହେଉଥିବ କଲବଲ
ମୋହ ରକ୍ଷା ପାଇଁ ବିକଳ ମୋ ପୁଏ
ମୁଖେ ଦେଉଥିବେ ଜଳ।
କରଯୋଡ଼ି ଏହି ପ୍ରାର୍ଥନା କରୁଛି
କୃପାମୟ ରାଜ ରାଜ
କାହିଁକି ମୋଠାରେ କୃପା ଊଣା ହେଲା
ଏତେ କାଳ ପରେ ଆଜ।
ମୋହ ଜାଣିବାରେ ଶ୍ରୀଛାମୁରେ ମୁହିଁ
କରିନାହିଁ କିଛି ଦୋଷ
ନୀତି ପରାୟଣ କେଉଁ କାରଣରେ
ଅଭାଗିନୀ ପ୍ରତି ରୋଷ।

ଏହି କବିତା ରଚନା ପରେ ଓଡ଼ିଆ ପରିବର୍ତେ ହିଂଦିକୁ ପ୍ରଶାସନିକ ମର୍ଯାଦା ଦିଆଯାଇଥିବା ଆଦେଶ ନଂ ୨୩୭ ତା ୧୫ ଜାନୁଆରି ୧୮୯୫ ପ୍ରକାଶିତ ହେଲା। ମଧ୍ୟପ୍ରଦେଶର ଚିଫ କମିସନର୍ ଉଡବର୍ନଂକର ଏହି ଆଦେଶ ରାଜ୍ୟ ଚିଫ ସେକ୍ରେଟାରିଂକ ଦ୍ୱାରା ତା ୨୫ ଜାନୁଆରି ୧୮୯୫ରେ ପ୍ରଚାରିତ ହେଲା। ଏହି ଅଯୌକ୍ତିକ ନିଦାରୁଣ ଆଦେଶ ପ୍ରକାଶ ପାଇବା ପରେ ଜନମାନସରେ ପ୍ରତିକ୍ରିୟା ସ୍ୱରୂପ ଏକ ବିସ୍ଫୋରଣ ପ୍ରକାଶ ପାଇଲା। ସଂବଲପୁର ହିତୈଷିଣୀ ଓ ଉତ୍କଳ ଦୀପିକାରେ ବହୁ ପ୍ରତିବାଦ ପତ୍ର, କବିତା ଓ ନିବଂଧମାନ ବହୁ ସଂଖ୍ୟାରେ ପ୍ରକାଶ ପାଇବାକୁ ଲାଗିଲା। ପତ୍ରିକାର ସଂପାଦକମାନେ ବିରୋଧୀ ଜନମତ ସୃଷ୍ଟିରେ ସଂପୁର୍ଣ ସମର୍ଥ ହୋଇଥିଲେ। ସ୍ୱଭାବକବି

ଗଂଗାଧର ହିତୈଷିଣୀ ପତ୍ରିକାର ତା ୬ ମାର୍ଚ୍ଚ ୧୮୯୫ ସଂଖ୍ୟାରେ 'ଉତ୍କଳ ଭାରତୀଂକ ନିବେଦନ' ଶୀର୍ଷକ କବିତାରେ ଚିଫ୍ କମିସ୍‌ନର୍ ଉଡବର୍ଂନଂକୁ ଉଚିତ ନ୍ୟାୟ ଦେବାକୁ ଅନୁରୋଧ ଜଣାଇ ଲେଖିଥିଲେ :-

''ଜୟ ଜୟ ଉଡ ବରନ, ଦୟାମୟ ହୃଦୟ
ନ୍ୟାୟ କଳାକାର ସ୍ୱରୂପେ ହୋଇଅଛ ଉଦୟ।
ଭାଷା କୁମୁଦିନୀ ବିକଶି ତୁଂଭ କରୁଣାକରେ
ଚୌଦିଗେ ସୁଲେଖା ସୌରଭ ରାଶି ପ୍ରକଟ କରେ।
ପ୍ରଶସ୍ତ ହୃଦୟ ତୁଂଭର ସର୍ବ ବିଦ୍ୟା ଭଂଡାର
ଶାଂତି ସୁବିଚାର ସାରଲ୍ୟ କ୍ଷମାଦିର ଆଧାର
ଦୁଃଖିନୀ ମୁଁ ଚିର କାଳରୁ ରହି ସଂବଲପୁରେ
ଲାଳିତ ପାଳିତ ନୃପତି ସ୍ନେହେ ନୃପତି ପୁରେ।
ଏହି ରୂପେ ତୁଂଭ ବିଚାର ଜଗତରେ ପ୍ରଥିତ
ଧର୍ମାବତାର ହେ କି ଦୋଷେ ମୁଁ ହେବି ନିର୍ବାସିତ।

ଜାଗ୍ରତ ବୁଦ୍ଧିଜୀବୀ ମାନଂକୁ ଏକତ୍ର ହୋଇ ଏ ଦିଗରେ ଉଦ୍ୟମ କରିବାକୁ ପରାମର୍ଶ ଦେଇ କବି ଲେଖିଥିଲେ –

''ନିର୍ବାସନ ହେବା ପାଇକି ଅଛି ଜନନୀ ଭାଲେ,
ମାତୃହୀନା ଦଶା ଘଟିବା ଅଛି ଥୟ କପାଳେ।
ଭବିତବ୍ୟ ଯାହା ତା ଘଟୁ ବିଧି ଆୟତ୍ତ ସିନା,
ବୋଲି କାପୁରୁଷ ନ ହୁଅ ମୃକ୍ତ ଉଦଯୋଗ ବିନା।

ଆଲୋଡନ ସୃଷ୍ଟି କରିଥିବା ୧୮୯୫ର ଏହି ଘୋଷଣାନାମାର ଦୁଇଟି ବିଷୟର ପ୍ରାସଂଗିକତା ଆଲୋଚନା ଯୋଗ୍ୟ। ଓଡ଼ିଆ ଭାଷା ଉଚ୍ଛେଦ ସଂପର୍କରେ କୁହାଯାଇଥିଲା ଯେ ସଂବଲପୁରରେ ବ୍ୟବହୃତ ଓଡ଼ିଆ ମୂଳ ଓଡ଼ିଆ ଭାଷାର ଅନୁରୂପ ନୁହେଁ। ଏହା ଏକପ୍ରକାର ସ୍ଥାନୀୟ ଭାଷା ଓ ଏଥିରେ ହିଂଦି ଛତିଶଗଡ଼ୀ ବ୍ୟବହୃତ ଶବ୍ଦର ବହୁଳ ପ୍ରୟୋଗ ଅଛି। ସ୍ଥାନୀୟ ଲୋକେ ଛତିଶଗଡ଼ର ଭାଷା ବୁଝିବାରେ ବିଶେଷ ଅସୁବିଧା ଭୋଗ କରି ନ ଥାଂତି। ତେଣୁ ହିଂଦି ଭାଷା ପ୍ରଚଳନ ସାଧାରଣ ଲୋକଂକ ପକ୍ଷରେ ଗ୍ରହଣୀୟ ହେବ। ଆଦେଶ ଅନୁସାରେ ହିଂଦି ଭାଷା ଶିଖିବା ବାଧ୍ୟତା ମୂଳକ ଥିଲା। ଆଉ ଗୋଟିଏ ବିଷୟ ଥିଲା ସଂବଲପୁର ଅଂଚଳରେ ପ୍ରଚଳିତ ମହାପ୍ରସାଦ ବସିବା ପ୍ରଥା।

ବୈବାହିକ ସଂପର୍କ ଏକ ଜାତି ମଧ୍ୟରେ ସୀମିତ ଥିଲା ବେଳେ ଜଗନ୍ନାଥ ସଂସ୍କୃତି ପରଂପରା ଅନୁସାରେ ବିଭିନ୍ନ ଜାତି ଗୋଷ୍ଠୀ ଓ ପାଟକ ମଧ୍ୟରେ ମହାପ୍ରସାଦ ବସି ବଂଧୁତ୍ୱର ଅକାଟ୍ୟ ବଂଧନରେ ଆବଦ୍ଧ ହେବା ପ୍ରଚଳିତ ଥିଲା । ମହାପ୍ରସାଦ ଦେଇ ବଂଧୁଭାବେ ଗ୍ରହଣ କରିଥିଲେ ଏକ ପକ୍ଷ ଅନ୍ୟ ପକ୍ଷର କ୍ଷତି ଘଟାଇବାକୁ କୌଣସି କାର୍ଯ କରିବାକୁ ସର୍ବଦା ପରାଙ୍ମୁଖ ରହୁଥିଲା । ପୁଲିସ୍ କର୍ମଚାରୀମାନେ ଶୃଂଖଳା ରକ୍ଷା କରିବାରେ ଅପରାଧୀମାନଂକୁ ଠାବ କରିବାକୁ ଏହି ପ୍ରଥା ଫଳରେ ବହୁ ପ୍ରକାର କ୍ଷତିଗ୍ରସ୍ତ ହେଉଥିଲେ । ଗୋଟିଏ ଗୋପନୀୟ ତଥ୍ୟ ଏ ପ୍ରକାର ବଂଧନରେ ଆବଦ୍ଧ ବ୍ୟକ୍ତିମାନଂକଠାରୁ ପ୍ରଶାସନ କୌଣସି ପ୍ରକାରେ ପାଇବାକୁ ସକ୍ଷମ ହୋଇପାରୁନଥିଲା । ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ଗେଜେଟରେ ଏହି ମର୍ମରେ ତାଂକର ସ୍ୱତଂତ୍ର ଲେଖା ପ୍ରକାଶ କରିଥିଲେ, ଓଡ଼ିଆ ଭାଷା ସହିତ ଜଗନ୍ନାଥ ସଂସ୍କୃତି ଓ ମହାପ୍ରସାଦ ବସିବା ଘନିଷ୍ଠ ଭାବରେ ଜଡିତଥିବା ହେତୁ ଓଡ଼ିଆ ଭାଷା ଉଚ୍ଛେଦ ନିମିତ୍ତ ଶାସନ ଆଗଭର ହୋଇ ଉଠିଲେ ।

ଏହି ଆଦେଶ ପ୍ରଚାର ଫଳରେ ସଂବଲପୁର ଓ ଏହା ସହିତ ସଂପୃକ୍ତ ଗଡ଼ଜାତ ମାନଂକରେ ମଧ୍ୟ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ସଂବଲପୁରର ସଂତାନ ମଧ୍ୟପ୍ରଦେଶର ଏକ୍ସ୍ଟ୍ରା ଆସିଷ୍ଟାଂଟ କମିସ୍‌ନର୍ ବୈକୁଂଠନାଥ ପୂଜାରୀ ପ୍ରତିବାଦର ସ୍ୱର ଉଠାଇଲେ । ପ୍ରଥମ ପ୍ରତିବାଦ ସଭା, ୧୮୯୫ ଫେବ୍ରୁଆରି ଏଗାର ତାରିଖରେ ବ୍ରହ୍ମପୁରା ମଂଦିରରେ ଧରଣୀଧର ମିଶ୍ରଂକ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ତା ୧୩-୬-୧୮୯୫ ରିଖରେ ସୋମନାଥ ବାବୁଂକ ଅଧ୍ୟକ୍ଷତାରେ ଆଉ ଏକ ସଭା ମଧ୍ୟ ଅନୁଷ୍ଠିତ ହେଲା । ଏହି ସଭାର ଭାଷା ସଂକଟ ସଂପର୍କରେ ପ୍ରତିବାଦ ସ୍ମାରକପତ୍ର ଆକାରରେ ଉପସ୍ଥାପିତ କରାଯାଇଥିଲା । ସହର ତଥା ଗ୍ରାମାଂଚଳରେ କ୍ରମାଗତ ସଭା କରାଯାଇ ୨୩୭୪ ଜଣଂକର ଦସ୍ତଖତ ସଂଗ୍ରହ କରାଗଲା । ସେହିବର୍ଷ ଜୁଲାଇ ପାଂଚ ତାରିଖରେ ଏହା ସ୍ମାରକପତ୍ର ସହିତ ଭାରତର ବଡଲାଟ ଲର୍ଡ ଏଲଗିନ୍‌ଂକ ପାଖକୁ ପଠାଯାଇଥିଲା । ଏହି ସ୍ମାରକ ପତ୍ରରେ କୁହାଯାଇଥିଲା ଯେ ମହାପ୍ରସାଦ ପରି ଏକ ପବିତ୍ର ପ୍ରଥା ବିରୋଧରେ ଅଭିଯୋଗ ଆଣିବା ଦୁର୍ଭାଗ୍ୟଜନକ ଥିଲା । ଏହା ଓଡ଼ିଆମାନଂକର ନିଜସ୍ୱ ସ୍ଥିତିକୁ ବିପନ୍ନ କରୁଥିଲା ଓ ଜଣେ ଉଚ୍ଚ ରାଜ କର୍ମଚାରୀଂକର ଏପ୍ରକାର ମତାମତ ସଂଶ୍ଳିଷ୍ଟ ବିଷୟ ଭିତରକୁ ପ୍ରବେଶ ନ କରି ଉପରଠାଉରିଆ ଆଲୋଚନାର ଏକ ପ୍ରତିକ୍ରିୟା । ସେହିପରି ସଂବଲପୁର ଭାଷା ଓଡ଼ିଆ କି ନୁହେଁ ତାର ବିଚାର ବିଦ୍ୱାନ ଶିକ୍ଷା ବିଭାଗର ପରିଦର୍ଶକ ମାନଂକଠାରୁ ସଂଗ୍ରହ କରିବାକୁ ପରାମର୍ଶ ଦିଆଯାଇଥିଲା । ଦୂରତ୍ୱ ଯୋଗୁ ଭାଷାର ଆଂଚଳିକ ବିଭେଦ ଅବଶ୍ୟଂଭାବୀ ବୋଲି ଦର୍ଶାଯାଇଥିଲା । ସ୍ମାରକପତ୍ରରେ ଦର୍ଶାଯାଇଥିଲା, ଓଡ଼ିଆ ଭାଷା ସୁପାଠ୍ୟ ପ୍ରାଚୀନ

ଓ ଆଧୁନିକ ସାହିତ୍ୟରେ ପରିପୂର୍ଣ୍ଣ। ଶ୍ରୀଯୁକ୍ତ ଜନ ବିମ୍‌ସଂକର ଭାଷା ଗ୍ରଂଥ ବିଷୟକ ପୁସ୍ତକକୁ ମଧ୍ୟ ଏଥିରେ ଏକ ପ୍ରାମାଣିକ ଗ୍ରଂଥ ଭାବେ ଗ୍ରହଣ କରିବାକୁ ନିବେଦନ କରାଯାଇଥିଲା। ଉଲ୍ଲେଖ ଯୋଗ୍ୟ ୧୮୬୨ରେ ସଂବଲପୁର ମଧ୍ୟପ୍ରଦେଶର ଅଂତର୍ଭୁକ୍ତ ହୋଇଥିଲେ ମଧ୍ୟ ୧୮୯୪ ମସିହା ପର୍ଯଂତ ଓଡ଼ିଆ ଭାଷାର ବିଲୋପ ସାଧନ କେବେ କୌଣସିଠାରେ ଚିଂତା କରାଯାଇ ନଥିଲା। ଲର୍ଡ ଏଲଗିନ୍ ମାତ୍ର ସ୍ଥାନୀୟ କର୍ମକର୍ତାମାନଂକର ଏକତରଫା ପରାମର୍ଶ ଗ୍ରହଣ କରି ପ୍ରଦତ୍ତ ସ୍ମାରକପତ୍ରକୁ ପ୍ରତ୍ୟାଖ୍ୟାନ କଲେ। ଫଳତଃ ୧୮୯୬ରୁ ହିଂଦି ପ୍ରଚଳନ କରାଗଲା। ୧୮୯୩ ମସିହାରୁ ବେଂଗଲ ନାଗପୁର ରେଲଲାଇନ ଝାରସୁଗୁଡା ପର୍ଯଂତ ବିସ୍ତାର କରାଯାଇଥିଲା ଓ ୧୮୯୪ରେ ସଂବଲପୁର ଜିଲ୍ଲାର ପଶ୍ଚିମାଂଶ ବୋଡାସଂବର ଫୁଲଝର ଚଂଦ୍ରଗିରି ପଦ୍ମପୁର ଜମିଦାରି ଆଦି ଅଂଚଳରେ ଅନାବୃଷ୍ଟି ହେତୁ ମରୁଡି ପଡିଲା। ୧୯୦୦ରୁ ଏହା ଆହୁରି ଉତ୍କଟ ହେଲା। ଉପକୂଳ ଅଂଚଳର ନଅଂକ ଦୁର୍ଭିକ୍ଷ ପରି ଏହା ଥିଲା 'ଛପନ ସାଲର କଂଗାଲି।' ୧୯୦୦ ମସିହା ଥିଲା ବିକ୍ରମ ଅବ୍ଦର ଛପନ ସାଲ। ସ୍ଥାନୀୟ ଲୋକେ ସରକାରଂକୁ ରିଲିଫ କାମରେ ସାହାଯ୍ୟ କଲେ। ସହରର ଗୋପାଳଜି ମଠର ମହଂତ ବିହାରୀ ଦାସ ଦୁର୍ଭିକ୍ଷ ପୀଡିତ ଲୋକମାନଂକୁ ଅନ୍ନ ଦାନ କରି ପ୍ରାଣରକ୍ଷା ସହିତ ଧର୍ମରକ୍ଷା କଲେ। ଖ୍ରୀଷ୍ଟିଆନ ଧର୍ମ ସଂସ୍ଥାମାନ ଅନ୍ନ ଛତ୍ର ଖୋଲୁଥିଲେ, ଏଥିରେ ଖାଇଲେ ଜାତି ହାନି ହେଉଥିବାରୁ ଅଭାବଗ୍ରସ୍ତ ବ୍ୟକ୍ତିମାନେ ଅନିଚ୍ଛାସତ୍ତ୍ୱେ ଖ୍ରୀଷ୍ଟିଆନ ହୋଇ ଯାଉଥିଲେ। ଭାଷା ଆଂଦୋଳନ ଏହି ସମୟରେ ଝିମେଇ ଯିବା ସ୍ୱାଭାବିକ ଥିଲା। ତଥାପି କବି ଗଂଗାଧରଂକର ଉତ୍କଳ ସମ୍ମିଳନୀ ଉପଲକ୍ଷ୍ୟେ ବୋଧହୁଏ ୧୯୦୦ରେ ରଚିତ ଏକ କବିତା ଏହି ପ୍ରକାର ଥିଲା,

ନିଜ ଘରେ ବସି ନିର୍ବାସନ ଦୁଃଖ
ଆଂଭ କି ଲଲାଟ ଲିଖନ
ମାତୃଭାଷା ମନା ଭାଇ ସଂଗ ବିନା
ବିକଳ ହେଉଛି ଜୀବନ। ।୧।
ଗୁହାରିଲେ ଦୁଃଖ ନୃପତି ଆଗରେ
ତଡ଼ି ଦେଉଛଂତି ଆଂଭଂକୁ ରାଗରେ
ନୁହେଁ ତାଂକ ଦୋଷ ବୁଝଂତି ନାହିଁ ସେ
ଆଂଭର କଥିତ ବଚନ।
ବିଦେଶୀ ସଦସ୍ୟ ଛଂତି ନିକଟରେ
କହି ହେଉଛଂତି ଶ୍ରବଣ ପୁଟରେ

ହସୁଛନ୍ତି ବୋଲି ବୁଝାଉ ଅଛନ୍ତି
କରୁଅଛୁ ଯେବେ ରୋଦନ ।।୨।
ପରଦେଶୁ ଆସି ପରଦେଶ ବାସୀ
ଦେଉଛନ୍ତି ଆମ୍ଭ ଅନ୍ନଜଳ ଗ୍ରାସି
ଭକୁଆ ପରାୟେ ଭକଭକ ଚାହିଁ
ରହିଅଛୁ ତାଂକ ବଦନ । ।୩।
ଆମ୍ଭ ଧନ ଯୋଗେ ଲାଭ କରି ଜ୍ଞାନ
ଆଂଭରି ମସ୍ତକେ ଚରଣ ପ୍ରଦାନ
କରି ଉଠୁଛନ୍ତି ସମ୍ରାଟ ସଭାକୁ
ହରଷେ ବିକାଶି ରଦନ । ।୪।
ଆସିଅଛ ବଡ଼ ସୋଦର ସକଳ
ଦେଖି ଦଶା କର ବୁଦ୍ଧି କଉଶଳ
କୋଟି କଂଠେ ଗୋଟି ସ୍ୱରେ ଉଚ୍ଚେ ଡାକ
କମ୍ପିଯାଉ ରାଜ ସଦନ । ।୫।

ସଂବଲପୁରର ଓଡ଼ିଆମାନେ ୧୮୯୫ରୁ ୧୯୦୫ ପର୍ଯ୍ୟନ୍ତ ନାନା ବାଧାବିଘ୍ନ ସତ୍ତ୍ୱେ ଭାଷା ଆଂଦୋଳନକୁ ଜାଗ୍ରତ ରଖିଥିଲେ, ସଭା ସମିତିରେ ପ୍ରସ୍ତାବମାନ ପାସ କରି ସ୍ମାରକପତ୍ର ପ୍ରସ୍ତୁତ କରି ସେଥିରେ ବହୁ ବିଶିଷ୍ଟ ବ୍ୟକ୍ତିମାନଂକର ସ୍ୱାକ୍ଷର ସଂଗ୍ରହ ଓ ଏହାକୁ ଉଚ୍ଚ କର୍ତ୍ତୃପକ୍ଷମାନଂକ ନିକଟରେ ଉପସ୍ଥାପନ ଆଂଦୋଳନର ମୁଖ୍ୟ ଆୟୁଧ ଥିଲା । ସଂବଲପୁରରୁ ଯେଉଁ ସ୍ମାରକପତ୍ର ଦିଆଯାଇଥିଲା ତାହାକୁ ସମର୍ଥନ କରି କଟକର ଓଡ଼ିଶା ଆସୋସିଏସନ୍ ମଧ୍ୟ ତା ୨୦ ଜୁନ ୧୮୯୫ରେ ଲର୍ଡ ଏଲ୍‌ଗିନକୁ ଏକ ଆବେଦନ ପତ୍ର ପ୍ରଦାନ କରିଥିଲେ । ସବୁ ଆଂଦୋଳନ ବିଫଳ ହେଲା । ଇତିହାସରେ ଏକ ନିର୍ଣ୍ଣାୟକ ମୋଡରେ ୧୯୦୦ ମସିହା ଅକ୍ଟୋବର ୩ୟ ସପ୍ତାହରେ ମଧୁସୂଦନ ଦାସ ସିମଳା ଗଲେ । ବଡଲାଟ ଲର୍ଡ କର୍ଜନ ଉଦାରମନା ଥିଲେ । ତାଂକ ସମକ୍ଷରେ ବିଖଂଡିତ ବିଭାଜିତ ନିଷ୍ପେଷିତ ତଥା ପରିଚୟହୀନ ଓଡ଼ିଆ ଜାତିର ଅଂତର୍ଦାହକୁ ସେ ଅତ୍ୟଂତ ମାର୍ମିକ ଭାବରେ ଉପସ୍ଥାପିତ କରିଥିଲେ । ମଧୁସୂଦନଂକର ନିମଂତ୍ରଣରେ ଲର୍ଡ କର୍ଜନ ଓଡ଼ିଶା ପରିଦର୍ଶନରେ ସେଇ ବର୍ଷ ଆସିଲେ । ପୁରୀ ଭୁବନେଶ୍ୱରର କଳା ଭାସ୍କର୍ଯ୍ୟ ବିମଂଡିତ କୀର୍ତ୍ତିରାଜି ପରିଦର୍ଶନ ପରେ ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ଲାଗି ପ୍ରତିଶ୍ରୁତିବଦ୍ଧ ହେଲେ ।

ଏହିପରି ପରିସ୍ଥିତି ଥିବା ସମୟରେ ୧୯୦୧ରେ ଯେତେବେଳେ ଜନଗଣନା କାର୍ଯ୍ୟ ଆରମ୍ଭ ହେଲା ସେତେବେଳେ ଭାଷା ଆନ୍ଦୋଳନରେ ସମ୍ବଲପୁରର ସାଫଲ୍ୟର ପ୍ରଧାନ ଅନୁକୂଳ ପରିସ୍ଥିତି ଉପୁଜିଲା । ସୌଭାଗ୍ୟକୁ ଲୋକପ୍ରିୟ ଆଣ୍ଡ୍ରୁ ଫ୍ରେଜର ମଧ୍ୟପ୍ରଦେଶର ଚିଫ କମିସ୍‌ନର୍ ଭାବେ ନିଯୁକ୍ତି ପାଇଥିଲେ । ସମ୍ବଲପୁରରେ ହିନ୍ଦି ଭାଷା ଲଦି ଦେବାର ଅଠର ବରଷ ଆଗରୁ ପ୍ରଥମ ଚାକିରିରେ ଫ୍ରେଜର ନୂଆ ଆଇ.ସି.ଏସ୍. ଅଫିସର ଭାବରେ ବରଗଡ ସବ୍‌ଡିଭିଜନର ମୁଖ୍ୟ କର୍ମଚାରୀ ଥିଲେ । ସେହି ସମୟରେ ଦାଶରଥି ପୂଜାରୀ ତାଂକର ପେସକାର ଥିଲେ । ସମ୍ବଲପୁର ଜିଲ୍ଲାର ଲୋକମାନଂକର ରୀତିନୀତି ଚାଲିଚଳନ ଭାଷା ବିଷୟରେ ତାଂକର ସମ୍ୟକ ଧାରଣା ଥିଲା । ଉଡବର୍ନ ଓ ଏଲଗିନ୍‌ଂକର ଭାଷା ସମସ୍ୟା ଉପରେ ନିଷ୍ପତ୍ତି ଦିଆଯାଉଥିବା ସତ୍ୱେ ସେ ବିଷୟର ପୁନର୍ବିଚାର ନିମିତ୍ତ ସମ୍ମତ ହେଲେ ଓ ପରବର୍ତୀ କାଳରେ ଲର୍ଡ କର୍ଜନଂକ ନିଷ୍ପତ୍ତି ତାଂକ ସହାନୁଭୂତି ସୂଚକ ରିପୋର୍ଟ ଉପରେ ପ୍ରତିଷ୍ଠିତ ଥିଲା । ଏଥିରେ ଦ୍ୱିମତର ସ୍ଥାନ ନାହିଁ । ୧୯୦୧ ଜନଗଣନା ଦାୟିତ୍ୱରେ ଥିଲେ ଯୁବକ ଓଡ଼ିଆ କର୍ମଚାରୀ ବୈକୁଂଠନାଥ ପୂଜାରୀ । ସେ ଦିନଯାକ ସରକାରୀ କାର୍ଯ୍ୟ କରି ମଧ୍ୟ ରାତିରେ ଗ୍ରାମ ଗ୍ରାମ ବୁଲି ଓଡ଼ିଆ ଭାଷାଭାଷୀମାନଂକୁ ଏକତ୍ର କରି ସେମାନଂକର ମାତୃଭାଷା ସଠିକ ଭାବରେ ଲିପିବଦ୍ଧ ହେବାରେ ସକ୍ଷମ ହେଲେ । ହିଂଦି ପ୍ରଚଳନ ପକ୍ଷପାତୀ କର୍ମଚାରୀ ମାନଂକର କୌଶଳ ପଂଡ କରିବାକୁ ସେ ଜାଗ୍ରତ ଥିଲେ । ଜନଗଣନା କାର୍ଯ୍ୟ ଓଡ଼ିଆ ଭାଷାରେ ମଧ୍ୟ କରାଇବାକୁ ସରକାରୀ ନିଷ୍ପତ୍ତି ନିଆଯାଇଥିଲା । ୧୯୦୧ ମାର୍ଚ୍ଚ ସୁଦ୍ଧା ଜନଗଣନା କାର୍ଯ୍ୟ ଶେଷ ହେଲା । ଓଡ଼ିଆ ଭାଷାଭାଷୀଂକର ସଂଖ୍ୟା ନିଶ୍ଚିତ ଭାବରେ ଅତ୍ୟଧିକ ଜଣାଯାଇ ଭାଷା ଆଂଦୋଳନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ସମ୍ବଲପୁରରୁ ଆଉ ଏକ ସ୍ମାରକ ପତ୍ର ଚିଫ କମିସନର ଫ୍ରେଜର ଓ ବଡଲାଟ କର୍ଜନଂକ ପାଖକୁ ପଠାଗଲା । ସେଥିରେ କୁହାଯାଇଥିଲା ମଧ୍ୟପ୍ରଦେଶର କେବଳ ଗୋଟିଏ ଜିଲ୍ଲାରେ ଓଡ଼ିଆ ଭାଷା ରଖିବାରେ ଯଦି ଅସୁବିଧା ହେଉଛି ତେବେ ଏହି ଜିଲ୍ଲାକୁ ଓଡ଼ିଶାକୁ ଫେରାଇ ଦିଆଯାଉ । ୧୯୦୧ ଜୁଲାଇରେ ସଂବଲପୁରର ବିଶିଷ୍ଟ ବ୍ୟକ୍ତି ମହଂତ ମହାରାଜ ବିହାରୀ ଦାସ, ବଳଭଦ୍ର ସୂପକାର, ମଦନମୋହନ ମିଶ୍ର ଓ ବ୍ରଜମୋହନ ପଟ୍ଟନାୟକ ନାଗପୁର ଗଲେ । ସେଠାରେ ଆଣ୍ଡ୍ରୁ ଫ୍ରେଜରଂକୁ ସାକ୍ଷାତ କଲେ । ଚିଫ କମିସନର ସେମାନଂକର କଥାଶୁଣି ନିର୍ଭର ପ୍ରତିଶ୍ରୁତି ଦେଲେ ଯେ ସେମାନଂକର ଦୁଃଖ ସେ ବଡଲାଟଂକୁ ଜଣାଇବେ । ଜିଲ୍ଲା ଓ ଅଂଚଳର ପ୍ରଶାସନିକ ସମସ୍ୟା ସେ ଜାଣିଥିଲେ ଓ ଜନଗଣନାର ତଥ୍ୟ ମଧ୍ୟ ସେ ଅନୁଧ୍ୟାନ କରିବାର ସୁଯୋଗ ପାଇ ସାରିଥିଲେ । ବୋଧହୁଏ ସେ ପ୍ରତିନିଧି ଦଳକୁ ନିଜର ସିମଳା ଗସ୍ତ ଜଣାଇଲେ । ତାଂକର ସେହି ଗସ୍ତ କ୍ରମକୁ ଲକ୍ଷ୍ୟ କରି ସେପ୍ଟେମ୍ବର ମାସରେ ସେହି ପାଂଚଜଣ ପ୍ରତିନିଧି ସିମଳା ଯାତ୍ରା କଲେ । ନାଗପୁରରୁ ଫେରି ସେମାନେ ମଧୁସୂଦନ

ଦାସଂକୁ କମିସନରଂକ ସହିତ ସାକ୍ଷାତର ବିବରଣୀ ପଠାଇଲେ ମାତ୍ର ଚିଠିଟି ମଧୁସୂଦନ ରାଓଂକ ପାଖରେ ପହଂଚିଲା ଓ ସେ ମଫସଲରେ ଗସ୍ତ କରୁଥିବାରୁ ଠିକ୍ ସମୟରେ ତାହା ମଧୁସୂଦନଂକୁ ମିଳିପାରିନଥିଲା। ମଧୁବାବୁ ଚିଠିପାଇ ତା ୧୯ ଅଗଷ୍ଟ ୧୯୦୧ରେ ବଡଲାଟଂକ ପାଖକୁ ଏକ ତାରବାର୍ତା ପଠାଇଥିଲେ। ଏଥିରେ ପ୍ରତିନିଧି ଦଳର ଦାବିକୁ ସମଗ୍ର ଓଡ଼ିଶାର ଦାବି ବୋଲି ଗ୍ରହଣ କରି ଓଡ଼ିଶା ପରିଦର୍ଶନରେ ଆସିଥିବା ପ୍ରଥମ ବଡଲାଟ ଭାବରେ ଲଡ କର୍ଜନ ଯଥୋଚିତ ନ୍ୟାୟ ଦେବାକୁ ତାଂକୁ ଅନୁରୋଧ କରାଯାଇଥିଲା। ଉତ୍ତରରେ ବଡଲାଟଂକର ଘରୋଇ ସଚିବ ଜଣାଇଦେଲେ ସଂବଲପୁରରେ ଓଡ଼ିଆ ପ୍ରଚଳନ ପ୍ରସଂଗରେ ମିଷ୍ଟର ଫ୍ରେଜର୍ ଗୋଟିଏ ଆବେଦନ ପତ୍ର ପାଇଥିବାର ଜଣାଯାଏ। ଫ୍ରେଜରଂକ ରିପୋଟ୍ ହସ୍ତଗତ ହେଲେ ବଡଲାଟ ସେଥିପ୍ରତି ଦୃଷ୍ଟି ଦେବେ।

୧୯୦୧ ଗଣେଶ ଚତୁର୍ଥୀର କିଛିଦିନ ଆଗରୁ ସଂବଲପୁରର ସେହି ପ୍ରାତଃ ସ୍ମରଣୀୟ ପାଂଚଜଣ ନେତା ମହଂତ ମହାରାଜ ବିହାରୀଲାଲଂକ ନେତୃତ୍ୱରେ ବଡଲାଟ ଲର୍ଡ କର୍ଜନଂକୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ ସିମଳା ଯାତ୍ରା କଲେ। ରେଲଗାଡ଼ି ସଂବଲପୁର ପର୍ଯଂତ, ଆସିଥିଲେ ମଧ୍ୟ ଝାରସୁଗୁଡ଼ାରୁ ସେମାନେ ମୁଖ୍ୟ ଯାତ୍ରା ଆରଂଭ କଲେ। ଯାତ୍ରାର ଅସୁବିଧା ବର୍ତମାନ କଳ୍ପନା କରିବା କଷ୍ଟକର। ବ୍ରଜମୋହନ ପଟ୍ଟନାୟକଂକ ବ୍ୟତୀତ ଜଣେ ଗୃହତ୍ୟାଗୀ ମଠାଧୀଶ ଓ ଅନ୍ୟ ୩ ଜଣ ଊନବିଂଶ ଶତାବ୍ଦୀର ନୈଷ୍ଠିକ ବ୍ରାହ୍ମଣ ଥିଲେ। ସେମାନେ ଅନ୍ୟର ରଂଧନ ଖାଦ୍ୟ ତ ଦୂରର କଥା, ସ୍ପର୍ଶ ଜଳ ମଧ୍ୟ ଗ୍ରହଣ କରୁ ନ ଥିଲେ। ନାନା ଅସୁବିଧା ମଧ୍ୟଦେଇ ସେମାନେ ଏଲାହାବାଦ୍‌ରେ ପ୍ରୟାଗ ସ୍ନାନ କରି କାଲକା ରେଲଷ୍ଟେସନରେ ଓହ୍ଲାଇଲେ। ସେଠାରୁ ସିମଳା ଗଲେ। ସଂବଲପୁରରୁ ପ୍ରୟାଗ ସେମାନଂକୁ ୩ ଦିନ ଲାଗିଥିଲା। ବହୁତ ଜାଗାରେ ସେମାନେ ଗାଡ଼ି ବଦଳାଇବାକୁ ପଡୁଥିଲା। ପ୍ରୟାଗରେ ସେମାନଂକୁ ଓଡ଼ିଆ ପଂଡାଂକ ଘରେ ଆଶ୍ରୟ ନେଇଥିବା ବେଳେ କାଲ୍‌କା ରେଲଷ୍ଟେସନରେ ସେମାନେ ହରିଦ୍ୱାରର ଏକ ମଠରେ ରହିଥିଲେ। ବଡଲାଟ ସିମଳାରେ ରହୁଥିବାରୁ ଯାତ୍ରୀମାନଂକୁ ରେଲକର୍ମଚାରୀମାନେ ସେମାନଂକର ନାମ ଧାମ ଗଂତବ୍ୟସ୍ଥଳ ଯାତ୍ରାର ଉଦ୍ଦେଶ୍ୟ ଆଦି ପଚାରି ବ୍ୟତିବ୍ୟସ୍ତ କରୁଥିଲେ। କାଲ୍‌କାରୁ ସେମାନେ ଘୋଡ଼ାଗାଡ଼ି (ଟଂଗା) ସାହାଯ୍ୟରେ ସିମଳା ଗଲେ। ସେମାନଂକୁ ଯାତ୍ରାରୁ ନିବୃତ୍ତ କରିବାକୁ ସେଇ ଟଂଗା ଅଫିସର, ଜଣେ କିରାଣି, ଭୁଲ ଖବର ଦେଲା ଯେ ଚିଫ୍ କମିସନର ଫ୍ରେଜର୍ ସାହେବ ମଧ୍ୟପ୍ରଦେଶ ଫେରି ଗଲେଣି ମାତ୍ର ଅଦମ୍ୟ ଉତ୍ସାହର ଅଧିକାରୀ ଏହି ପାଂଚଜଣ ଏଥିରେ ଦବି ନ ଯାଇ ଯାତ୍ରା ଆରଂଭ କଲେ। ସେମାନଂକୁ ସିମଳାରେ ପହଂଚିବାକୁ ଦୁଇଦିନ ସମୟ ଲାଗିଲା। ବଡଲାଟଂକ ସହିତ ସାକ୍ଷାତ କରିବା ଉଦ୍ଦେଶ୍ୟରେ ସେମାନେ

ପ୍ରଥମେ ଫ୍ରେଜର ସାହେବଂକୁ ସାକ୍ଷାତ କରିବାକୁ ବସିଲେ। ଗୋଟିଏ ଶିକ୍ଷା ସମ୍ମିଳନୀ ଚାଲୁଥିବାରୁ ସେ ସେଠାରେ ଉପସ୍ଥିତ ଥିଲେ। ମହଂତ ବିହାରୀ ଦାସ ଓ ବ୍ରଜ ମୋହନ ପଟ୍ଟନାୟକ ଚିଫ୍ କମିସନରଂକ ସେକ୍ରେଟାରୀ କ୍ରାଂପ ସାହେବକୁ ଦେଖାକଲେ। ସେମାନଂକର ସାକ୍ଷାତର ବ୍ୟବସ୍ଥା କରାଯାଇ ପାରିଲା ନାହିଁ ମାତ୍ର କ୍ରାଂପ ସାହେବ ଜଣାଇଲେ ଯେ ଫ୍ରେଜର ଏହି ଉଦ୍ଦେଶ୍ୟରେ ଅତିଶୀଘ୍ର ସଂବଲପୁର ଯିବେ। ସେଠାରୁ ପ୍ରତିନିଧିଦଳ କୁରୁକ୍ଷେତ୍ର ଓ ଦିଲ୍ଲୀ ଦର୍ଶନ କରି ଝାରସୁଗୁଡ଼ା ଫେରିଲେ। ଅତ୍ୟଂତ ସୌଭାଗ୍ୟର ବିଷୟ ଶ୍ରୀପତି ମିଶ୍ର ଏହି ମାନଂକ ଗହଣରେ ଥାଇ ଏହି ଯାତ୍ରାର ସବିସ୍ତୃତ ବିବରଣୀ ନିଜ ରଚିତ 'ସିମଳା ଯାତ୍ରା' ପୁସ୍ତକରେ ଲିପିବଦ୍ଧ କରିଅଛଂତି। ପୁସ୍ତକଟି ୧୯୦୫ରେ ଲେଖାଯାଇ ବହୁ ବିଳଂବରେ ୧୯୧୮ରେ କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଛପାଯାଇ ପ୍ରକାଶିତ ହୋଇଥିଲା। ଭବିଷ୍ୟତ ବଂଶଧରମାନେ ପଂଡିତ ଶ୍ରୀପତି ମିଶ୍ରଂକଠାରେ ଏଥିପାଇଁ ଚିର କୃତଜ୍ଞ। ସେମାନଂକର ଯାତ୍ରାର ଫଳାଫଳ ଜାଣିବାକୁ ସହସ୍ର ସଂଖ୍ୟାରେ ଲୋକ ଅପେକ୍ଷା କରିଥିଲେ। ଝାରସୁଗୁଡ଼ା ଷ୍ଟେସନଠାରୁ ସେମାନେ ନିଜର କାର୍ଯ ବିବରଣୀ ସେମାନଂକୁ ଜଣାଇଲେ।

ସେହିବର୍ଷ ଦଶହରା ସମୟରେ ଚିଫ କମିଶନର ଆଂଡ୍ରୁ ଫ୍ରେଜର କାହାକୁ ଆଗତୁରା ନ ଜଣାଇ ସିମଳାରୁ ସିଧାସଳଖ ସଂବଲପୁର ସହରରେ ପହଂଚିଲେ। ତାଂକୁ ରାଜକୀୟ ଅଭିନଂଦନ ଦିଆଗଲା। ସହସ୍ର ସଂଖ୍ୟାରେ ଲୋକ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ନିମିତ୍ତ ତାଂକ ଆଗରେ ଗୁହାରି ଜଣାଇଲେ। ସେ ସବୁ ବିଷୟ ସୂକ୍ଷ୍ମରୂପେ ଅନୁଧ୍ୟାନ କରି ନିଜର ଅନୁସଂଧାନର ଫଳାଫଳ ସ୍ୱରୂପ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମିତ୍ତ ଭାରତ ସରକାରଂକୁ ଜଣାଇଲେ ଓ ତାଂକର ଏହି ରିପୋର୍ଟ ବିଷୟ ସହରର ଭଦ୍ରବ୍ୟକ୍ତି ମାନଂକ ସମ୍ମୁଖରେ ଘୋଷଣା କଲେ। ଏହା ଚାରିଆଡ଼େ ଆନଂଦର ଢେଉ ଖେଳାଇଦେଲା। ସିମଳା ଯାତ୍ରାରେ ଉଲ୍ଲେଖ ଅଛି ଫ୍ରେଜର ସଂବଲପୁରରେ ପହଂଚିବା ପରେ ବହୁ ସହସ୍ର ଗଣ୍ୟମାନ୍ୟ ବ୍ୟକ୍ତି ତାଂକୁ ଅଭ୍ୟର୍ଥନା କରିଥିଲେ। ଲୋକମାନେ ଦେବାର୍ଚ୍ଚନ ବିଧିରେ ପୂଜା କରୁଥିଲେ ଓ ବ୍ରାହ୍ମଣମାନେ ମଂତ୍ର ଉଚ୍ଚାରଣ କରି ଦୁର୍ବାକ୍ଷତ ସାହାଯ୍ୟରେ ତାଂକର ମଂଗଳ କାମନା କରିଥିଲେ। ଏକାକୀ ଅଶ୍ୱପୃଷ୍ଠରେ ଆରୋହଣ କରି ଫ୍ରେଜର ମଫସଲ ଗସ୍ତକରି ଲୋକମତ ସଂଗ୍ରହ କରିଥିଲେ। ଉନ୍ମୁକ୍ତ ହୃଦୟରେ ଲୋକମାନେ ତାଂକୁ ଏକ ବାକ୍ୟରେ ସଂବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ଓ ଓଡ଼ିଶା ସହିତ ମିଶ୍ରଣ ଜଣାଇଲେ। ଅନୁକୂଳ ରିପୋଟ ଭାରତ ସରକାରଂକୁ ଦେବାକୁ ସେ ସେମାନଂକୁ ପ୍ରତିଶ୍ରୁତି ଦେଲେ। ତାଂକ ରିପୋଟ ଫଳରେ ଯଥାକାଳରେ ସଂବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ହେଲା। କୃତଜ୍ଞ ସଂବଲପୁରବାସୀ ତାଂକର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଫ୍ରେଜର ପ୍ରେସ, ଫ୍ରେଜର କ୍ଲବ ସ୍ଥାପନ କରି ତାଂକୁ

ଚିରଂଜୀବୀ କରି ରଖିଛଂତି। ୧୯୦୨ରେ ପ୍ରକାଶିତ ଘୋଷଣା ଅନୁସାରେ ସଂବଲପୁର ଜିଲ୍ଲାରୁ ହିଂଦି ଭାଷା ଉଠାଇ ନେଇ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ନିଷ୍ପତ୍ତି କାର୍ଯକାରୀ ହେଲା ୧୯୦୩ ମସିହା ଆରଂଭରୁ। ମାତ୍ର ଓଡ଼ିଶା ଡିଭିଜନ ସହିତ ରାଜନୈତିକ ମିଶ୍ରଣ ହେଲା ୧୬ ଅକ୍ଟୋବର ୧୯୦୫ରୁ।

ସଂବଲପୁର ଓଡ଼ିଶାକୁ ଫେରି ଆସିବାରେ ଓଡ଼ିଶାରେ ଯେଉଁ ପରିମାଣରେ ଉଲ୍ଲାସ ଓ ଉନ୍ମାଦନା ଦେଖାଯିବାର କଥା ତାହା ହୋଇ ନଥିଲା ବୋଲି ସ୍ମୃତି ଚାରଣ କରି ଜଣେ ଭୁକ୍ତଭୋଗୀ କଟକର ଛାତ୍ର ଲେଖିଛଂତି। ବଂଗ ଭଂଗ ଦୁଃଖ ଓଡ଼ିଶା ମିଶ୍ରଣର ଆନଂଦକୁ ଗୌଣ କରିଦେଲା। ଓଡ଼ିଶାରେ ବଡଲାଟ କର୍ଜନଂକର ପଦାର୍ପଣ ସମୟରେ ସଂବଲପୁର ରୁ ୧୮୯୫ରୁ ବିତାଡ଼ିତ ଓଡ଼ିଆ ଭାଷା ବିଷୟରେ କ୍ଷୁବ୍ଧ ଓ ମର୍ମାହତ କୌଣସି ବିଶିଷ୍ଟ ବ୍ୟକ୍ତିଂକୁ ପୁରୀ ବା ଭୁବନେଶ୍ୱର ନିମଂତ୍ରଣ ନ କରାଯାଇଥିବା ବିଷୟ ଚିଂତାକଲେ ମନରେ ଗ୍ଲାନି ଆସିଥାଏ। ଅବଶ୍ୟ ତତ୍‌କାଳୀନ ଗମନାଗମନ ଓ ସଂପର୍କ ରକ୍ଷାର ଅସୁବିଧା ଏ କ୍ଷେତ୍ରରେ ବିଚାରଯୋଗ୍ୟ। ବିଂଶ ଶତାବ୍ଦୀର ଆରଂଭରେ ସମଗ୍ର ଭାରତ ବର୍ଷରେ ରାଜନୈତିକ ଅବସ୍ଥା ଯେପରି ନୈରାଶ୍ୟପୂର୍ଣଥିଲା ସେହି ପରିପ୍ରେକ୍ଷୀରେ ଭାଷା ଆଂଦୋଳନର ଗୁରୁତ୍ୱ ବିଶେଷ ପ୍ରଣିଧାନଯୋଗ୍ୟ। ଦୁଃଖର ବିଷୟ ଥିଲା ଯେ ରାଜନୈତିକ କେଂଦ୍ର କଟକଠାରୁ ସଂବଲପୁରର ଅବଦାନ ରାଜନୈତିକ ଇତିହାସ ବା ସମକାଳୀନ ସାହିତ୍ୟରେ ଉପଯୁକ୍ତ ମର୍ଯାଦା ପାଇପାରିନାହିଁ। ସଫଳ ଆଂଦୋଳନର ମୂଳରେ ଥିଲା ସ୍ଥାନୀୟ ନେତାଂକର ତ୍ୟାଗ ଓ ସଂଗଠନ ଶକ୍ତି। ଆଂଡ୍ରୁ ଫ୍ରେଜର ଯଦି ପୂର୍ବରୁ ସଂବଲପୁରରେ ଅବସ୍ଥାପିତ ହୋଇ ନ ଥାଂତେ ସଂବଲପୁରର ବିଶିଷ୍ଟ ବ୍ୟକ୍ତିମାନଂକୁ ଜାଣିବାର ସୁଯୋଗ ପାଇ ନ ଥାଂତେ, ସ୍ଥାନୀୟ ଭାଷା ରୀତିନୀତି ଓ ଚାଲିଚଳନ ସହିତ ଘନିଷ୍ଠ ଭାବରେ ପରିଚିତ ନ ଥାଂତେ, ସେ ତାହାହେଲେ ଏ ହିଂଦିଭାଷୀମାନଂକର ଚକ୍ରବ୍ୟୂହ ଭେଦକରିବାରେ ସକ୍ଷମ ହୋଇ ପାରି ନ ଥାଂତେ ଓ ହୁଏତ ସାର ଜନ ଉଡବର୍ନଂକ ନିଷ୍ପତ୍ତିକୁ ସମ୍ମାନ ଦେବାରେ କୁଂଠିତ ହୋଇ ନ ଥାଂତେ। ସଂବଲପୁରର ଭାଷା ଆଂଦୋଳନ ଓଡ଼ିଆ ଭାଷା ସଂରକ୍ଷଣ ଦିଗରେ ଅଗ୍ରଦୂତ ବୋଲି କୁହାଯାଇପାରେ। ଓଡ଼ିଆ ସାହିତ୍ୟର ଇତିହାସ ପୁସ୍ତକରେ ଲେଖକ ଡକ୍ଟର ନଟବର ସାମଂତରାୟ ଲେଖିଛଂତି ସଂବଲପୁର ଭାଷା ଆଂଦୋଳନ ପରେ ଗଂଜାମର ଲୋକେ ଓଡ଼ିଶା ସହିତ ମିଶ୍ରଣ ପାଇ ଉଦ୍‌ଗ୍ରୀବ ହୋଇ ଉଠିଲେ। ସ୍ୱତଂତ୍ର ଉତ୍କଳ ପ୍ରଦେଶ ଗଠନ ଓ ଗଡ଼ଜାତଗୁଡ଼ିକର ମିଶ୍ରଣ ସେଇ ଆଂଦୋଳନର ଫଳଶ୍ରୁତି । ସେତେବେଳେ ସଂବଲପୁର ଓଡ଼ିଶା ଡିଭିଜନ ସହିତ ମିଶି ନ ଥିଲେ ଉପକୂଳବର୍ତୀ ତିନି ଜିଲ୍ଲା ଓ ଅନୁଗୁଳ ଜିଲ୍ଲାକୁ ନେଇ ପ୍ରଦେଶ ଗଠନ ଦାକ୍ଷିଣାତ୍ୟର କଂଗ୍ରେସ ନେତାମାନଂକର ତୀବ୍ର ବିରୋଧଦୃଷ୍ଟେ ଏକ ସଂଭାବ୍ୟ ଏକକ ବୋଲି ଚିଂତାକରାଯାଇ ପାରିଥାଂତା କି? ଆଜି ଓଡ଼ିଶାର ବୁଦ୍ଧିଜୀବୀମାନଂକର ଏହା ଭାବିବାର କଥା।



ପ୍ରଥମ ଉତ୍କଳ ସମ୍ମିଳନୀ : ରଂଭା – ଖ୍ରୀ. ୧୯୦୩
ଗଂଗାଧର ମେହେର, ରାମନାରାୟଣ ମିଶ୍ରଂକ ସହିତ ସଂବଲପୁରରୁ ୨୫ଜଣ ପ୍ରତିନିଧି ଯୋଗଦେଇଥିଲେ।



# ସିମଳା ଯାତ୍ରା – ଲେଖକ
# ଶ୍ରୀପତି ମିଶ୍ର

ସଂବଲପୁର ଭାଷା ଆଂଦୋଳନର ଏକ ଅନବଦ୍ୟ ପ୍ରାମାଣିକ ପୁସ୍ତକ ସିମଳା ଯାତ୍ରା। ୧୯୦୧ରେ ପଂଚରଥୀଂକରସିମଳା ଯାତ୍ରା ପରେ ଏହା ୧୯୦୫ରେ ଲେଖାଯାଇଥିଲେ ସୁଦ୍ଧା ୧୯୧୮ରେ କଟକ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଛପାଯାଇ ପ୍ରକାଶିତ ହୋଇଥିଲା। ଏହାର ଲେଖକ ଶ୍ରୀପତି ମିଶ୍ର। ସେ ୧୮୭୩ରେ ସଂବଲପୁର ସହରର ପଟନାୟକ ପଡ଼ାରେ ଜନ୍ମଗ୍ରହଣ କରିଥିଲେ। ତାଂକ ପିତା ବଳରାମ ମିଶ୍ର। ମାତା ପାଂଚକଉଡ଼ି। ଅନେକ ଭାଇ ଭଉଣୀ ମରିଯିବାହେତୁ ତାଂକର ଏମିତି ନାମକରଣ ହୋଇଥିଲା। ଶ୍ରୀପତିଂକର ମାତାମହ ଥିଲେ ବିଖ୍ୟାତ ସଂସ୍କୃତ ପଂଡିତ ଚିଂତାମଣି ନଂଦ ବାଣୀଭୂଷଣ। ଭାଷା ଆଂଦୋଳନ ଆରଂଭ ସମୟରେ କବି ଗଂଗାଧର ତାଂକୁ ଲକ୍ଷ୍ୟ କରି ୧୮୯୫ରେ ରଚିତ ତାଂକ ଉତ୍କଳ ଭାରତୀଂକ ନିବେଦନ କବିତାରେ ଲେଖିଥିଲେ।

''ଚିଂତାମଣି ବିଦ୍ୟାଭୂଷଣ ବସିଛଂତି ନିଷ୍କଳେ। ପଚାରିଲେ ତାଂକୁ ମୋ କଥା, ସବୁ କହିବେ ଭଲେ'' ଚିଂତାମଣି ନଂଦ ବଲାଂଗିର ଦରବାରର କର୍ମଚାରୀ। ଏଥିରୁ ତାଂକ ସାହିତ୍ୟ ପ୍ରୀତି ଓ ଭାଷା ପାଂଡିତ୍ୟ ସୁସ୍ପଷ୍ଟ। ଶ୍ରୀପତି ମେଧାବୀ ଛାତ୍ର ଥିଲେ। ସେ ସମୟରେ

ସଂବଲପୁରରେ ଉଚ୍ଚଶିକ୍ଷାର ସୁବିଧା ନ ଥିଲା। ଶ୍ରୀପତି ଜିଲ୍ଲା ସ୍କୁଲରୁ ୧୮୯୧ରେ ମାଟ୍ରିକ୍ (ଏନଟ୍ରାନ୍ସ) ପାସ୍‌କଲେ। ତାଂକ ସହିତ ମଧ୍ୟ ପାସ୍‌କଲେ ସଂବଲପୁରର ଆଦି ଜନସେବକ ଚଂଦ୍ରଶେଖର ବେହେରା ଓ ପାଟଣା ରାଜ୍ୟର ଦେୱାନ ହୋଇଥିବା ଡେପୁଟି କଲେକ୍ଟର ବାଳମୁକୁଂଦ ବହିଦାର। ଝାରସୁଗୁଡ଼ା ପର୍ଯଂତ ରେଲ ଲାଇନ ମଧ୍ୟ ପଡ଼ି ନଥାଏ। ତେଣୁ ଅନ୍ୟ କେଉଁଠାରେ ପଢ଼ିବା ଆଶା ଛାଡ଼ି ଶ୍ରୀପତି ସୋନପୁର ରାଜ୍ୟରେ ଶିକ୍ଷା ପରିଦର୍ଶକ ଚାକିରି କଲେ। କିଛିଦିନ ପରେ ସେ ପୁଣି ସଂବଲପୁର ଆସି ଭାଷା ଆଂଦୋଳନରେ ଯୋଗ ଦେଲେ। ଯେଉଁମାନେ ଏହି ଆଂଦୋଳନରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ – ମହଂତ ବିହାରୀ ଦାସ, ବଳଭଦ୍ର ସୂପକାର ତାଂକ ସମୃଦି ମଦନ ମୋହନ ମିଶ୍ର ଓ ବ୍ରଜମୋହନ ପଟ୍ଟନାୟକ – ସେମାନେ ତାଂକଠାରୁ ବୟସରେ ବଡ଼ ଥିଲେ। ସେମାନେ ହିଂଦି ଓ ଛତିଶିଗଡ ଭାଷା ଜାଣିଥିଲେ ମଧ୍ୟ ଇଂରେଜୀ ଅନଭିଜ୍ଞ ଥିଲେ। ଶ୍ରୀପତିଂକର ଇଂରେଜୀ ଓଡ଼ିଆ ଦୁଇ ଭାଷାରେ ବ୍ୟୁତ୍ପତ୍ତି ଥିବା ଯୋଗୁଁ ଭାଷା ଆଂଦୋଳନ ସମୟର ସବୁ ଲେଖାପଢ଼ା କାମ ତାଂକ ମାଧ୍ୟମରେ ହେଉଥିଲା। ଯେତେବେଳେ ଏହି ବିଶିଷ୍ଟ ବ୍ୟକ୍ତି ଚାରିଜଣ ନାଗପୁରରେ ଚିଫ କମିସନରଂକ ସାକ୍ଷାତ କରିସାରି ବଡଲାଟଂକୁ ଭେଟିବାକୁ ସିମଲା ବାହାରିଲେ ସେତେବେଳେ ସେମାନେ ଶ୍ରୀପତିଂକୁ ସାଂଗରେ ଧରିଲେ। ଏହା ଅତ୍ୟଂତ ଗୁରୁତ୍ୱପୂର୍ଣ ନିଷ୍ପତ୍ତି ବୋଲି ଧରିବାକୁ ହେବ କାରଣ ଶ୍ରୀପତି ନ ଥିଲେ ହୁଏତ ସେମାନଂକର ନାଗପୁର ଯାତ୍ରା ପରି ଏହି ଐତିହାସିକ ଯାତ୍ରାର କୌଣସି ଲିଖିତ ବିବରଣୀ ପରବର୍ତୀ ପୁରୁଷଂକ ପାଇଁ ଉପଲବ୍ଧ ହୋଇପାରି ନ ଥାଂତା।

ସିମଳା ଯାତ୍ରା, ବିଂଶ ଶତାବ୍ଦୀର ଓଡ଼ିଶା ଇତିହାସ ଓ ସାହିତ୍ୟ ସଂପର୍କରେ ଏକ ଅମୂଲ୍ୟ ରତ୍ନ, ଅବଶ୍ୟ ସେମାନଂକର ଯାତ୍ରା ତାରିଖ ବିଭିନ୍ନ ସ୍ଥାନରେ ରହଣି, ବିଭିନ୍ନ ବ୍ୟକ୍ତି ବିଶେଷଂକୁ ସାକ୍ଷାତ ଆଦିର ତାରିଖ ଏଥିରେ ଉଲ୍ଲେଖ ନ ଥିବା ଏକ ତ୍ରୁଟି। ତଥାପି ଏଥିରେ ସେମାନେ ସଂବଲପୁରରୁ ଝାରସୁଗୁଡ଼ା ଯିବା, ବାହାରେ ସେଠାରେ ରୋଷେଇ କରି ଖାଇବା, ମଧୁବାବୁଂକୁ ତାରବାର୍ତା ପଠାଇବା, ବିଳାସପୁର କଟ୍‌ନି ହୋଇ ଆଲାହାବାଦରେ ୩ ଦିନ ପରେ ପହଂଚିବା ବର୍ଣନା କରାଯାଇଛି। ଆଲାହାବାଦରେ ପଂଡାଂକ ଘରେ ରହି ତୀର୍ଥରେ ସ୍ନାନ ଓ ପିଂଡଦାନ କରି କାନପୁର ଆଂବାଲା ଦେଇ କାଲ୍‌କା ଷ୍ଟେସନରେ ସେମାନେ ପହଂଚିଲେ। ସିମଳାକୁ ରେଲଲାଇନ୍ ନଥିଲା । ସେମାନେ ଘୋଡାଗାଡ଼ି (ଟଂଗା) ଧରି ୨ ଦିନରେ ସିମଳାରେ ପହଂଚିବା ମହଂତ ବିହାରୀ ଦାସଂକ ପରିଚିତ ଏକ ମଠରେ ଅତିଥି ହେବା, ବଡଲାଟଂକ ସାକ୍ଷାତ ନ ପାଇବା, ଚିଫ କମିସନର ଆଂଡ୍ରୁ ଫ୍ରେଜର ସଂବଲପୁର ଯାଇ ସବୁ ବିଷୟ ଅନୁଧ୍ୟାନ କରିବାର ପ୍ରତିଶ୍ରୁତି ଦେବା ଆଦି ପୁସ୍ତକରେ ଦର୍ଶାଯାଇଅଛି। ଫେରିବାବେଳେ ସେମାନେ ରେଲଯୋଗେ ଥାନେଶ୍ୱର, ନାଭିକମଳ, ରୁଦ୍ରକର ଓ କୁରୁକ୍ଷେତ୍ର ତୀର୍ଥ ଦର୍ଶନ କରିଥିଲେ। ଏହି ତୀର୍ଥମାନଂକର ମାହାତ୍ମ୍ୟ ମଧ୍ୟ ଶ୍ରୀପତି ବିସ୍ତାରିତ ଭାବରେ

ବର୍ଣ୍ଣନା କରିଅଛଂତି । ବିଭିନ୍ନ ତୀର୍ଥରେ ନାପିତ ଫୁଲବିକାଳୀ ଓ ପଂଡାମାନଂକର ଆଚରଣ, ପୁଣ୍ୟ କ୍ଷେତ୍ରରେ ଗଉଡ଼ ମାନଂକର ଦୁଧରେ ପାଣି ମିଶା ମଧ୍ୟ ସେ ବର୍ଣ୍ଣନା କରିବାକୁ ଭୁଲି ନାହାଂତି । ସିମଳା ଯାତ୍ରା ପୁସ୍ତକର ପାଂଡିତ୍ୟପୂର୍ଣ୍ଣ ଶୈଳୀ ସାଧାରଣ ପାଠକ ପକ୍ଷରେ ସହଜରେ ବୋଧଗମ୍ୟ ନ ହେଲେ ମଧ୍ୟ ଏଥିରୁ ସେ ସମୟରେ ଗଦ୍ୟ ରଚନା ଶୈଳୀ ସ୍ପଷ୍ଟ ଜଣାପଡ଼େ । ଦିଲ୍ଲୀ କୁରୁକ୍ଷେତ୍ର ପ୍ରୟାଗ ଆଦି ତୀର୍ଥର ବର୍ଣ୍ଣନା ମଧ୍ୟ ରମଣୀୟ ଓ ଆକର୍ଷକ । ଯାତ୍ରା ସମୟରେ ପୂର୍ବ ପ୍ରସ୍ତୁତ ଖାଦ୍ୟ ସେବନ ଉପରେ ନିଷେଧାଦେଶ ଫଳରେ ସ୍ୱପାକ ବା ଫଳମୂଳ ଭକ୍ଷଣ ସେ ସମୟର ସାମାଜିକ ଚଳଣିର ପ୍ରମାଣ ଦିଏ ।

ସିମଳା ଯାତ୍ରାର ଫଳ ସ୍ୱରୂପ ଛୋଟଲାଟ ଆଂଡ୍ରୁ ଫ୍ରେଜର ସଂବଲପୁର ଆସିଲେ । ତାଂକ ପ୍ରଦତ୍ତ ରିପୋଟ ଉପରେ ଓଡ଼ିଆ ଭାଷା ପୁନଃପ୍ରଚଳନ ହେଲା । ୧୯୦୫ରେ ସଂବଲପୁରର ଓଡ଼ିଶା ଡିଭିଜନ ସହିତ ମିଶ୍ରଣ ହେବା ପୂର୍ବରୁ ଶ୍ରୀପତି ମିଶ୍ରଂକ ସଂପାଦନରେ ଉତ୍କଳ ଦର୍ପଣ ନାମକ ଏକ ଦ୍ୱିଭାଷୀ ପତ୍ରିକା ପ୍ରକାଶ ପାଉଥିଲା । ଏହା ଉତ୍କଳ ଦର୍ପଣ ପ୍ରେସ୍‌ରେ ଛପା ଯାଇଥିଲା ଓ ସହରର ବିଶିଷ୍ଟ ବ୍ୟକ୍ତି କେତେଜଣ ଏହି ପ୍ରେସ୍‌ଟି ପ୍ରତିଷ୍ଠା କରିଥିଲେ । ନିଜର ତୀବ୍ର ବ୍ୟଂଗ ଓ ଅନୁସଂଧିତ୍ସୁ ରଚନା ପ୍ରକାଶିତ ହେବା ଫଳରେ ପତ୍ରିକାଟି କର୍ତ୍ତୃପକ୍ଷଂକ ବିଷ ଦୃଷ୍ଟିରେ ପଡିଲା ଓ  ଅଳ୍ପଦିନ ପରେ ବଂଦ ହୋଇଯାଇଥିଲା । ୧୯୧୦ ବେଳକୁ ଶ୍ରୀପତି ଗାଂଗପୁର ରାଜାଂକର ନାବାଳକ ପୁତ୍ରର ଶିକ୍ଷକ ଭାବରେ ସୁଂଦରଗଡ଼ ଗଲେ । ସେଠାରେ ମଧ୍ୟ ନିଜର ଧୀସମ୍ପନ୍ନ ଲେଖନୀ ତାଂକୁ ସହାୟକ ହେଲା । ରାଜ୍ୟର ଦେୱାନ ମଧ୍ୟ ତାଂକ ଦ୍ୱାରା ଗୁରୁତ୍ୱପୂର୍ଣ୍ଣ ଦଲିଲ ପତ୍ର ଲେଖାଇଲେ । ତାଂକର ବୁଦ୍ଧି ବିଚକ୍ଷଣତା ଯୋଗୁଁ ଦରବାର ତାଂକୁ ମୁକ୍ତିଆରି କରିବାକୁ ସନଂଦ ପ୍ରଦାନ କଲେ । ଏହି ଅବସରରେ ସେ ଅନ୍ୟ ଦେଶୀୟ ରାଜ୍ୟଗୁଡ଼ିକୁ ଯିବାର ସୁଯୋଗ ପାଇଥିଲେ । ବିଭିନ୍ନ ରାଜ୍ୟ ଭ୍ରମଣର ବିବରଣୀ ସେ 'ନବଯୁଗ' ମାସିକ ପତ୍ରିକାରେ ପ୍ରକାଶ କରିଥିଲେ । ନିଜ ପିତାଂକୁ ହରାଇ ସେ ୧୯୨୨ରେ ସଂବଲପୁର ଫେରି ଆସିଲେ । ତାଂକ ସିମଳା ସହଯାତ୍ରୀ ମହଂତ ବିହାରୀ ଦାସ ତାଂକୁ ସ୍ୱପ୍ରତିଷ୍ଠିତ ଫ୍ରେଜର୍ ପ୍ରେସର ମ୍ୟାନେଜର୍ ଭାବରେନିଯୁକ୍ତି ଦେଲେ ମଧ୍ୟ ଅସୁସ୍ଥତା ବଶତଃ ସେ ଏଥିରେ ଯୋଗଦେଇ ପାରି ନଥିଲେ । ସିମଳା ଯାତ୍ରା ବ୍ୟତୀତ ଶ୍ରୀପତି 'ହରିଶ୍ଚଂଦ୍ର' ନାମକ ଏକ ନାଟକ ରଚନା କରିଥିଲେ ଓ ସଂବଲପୁରରେ ୧୯୦୩ରେ ନାଟ୍ୟ ସଂସଦ ଦ୍ୱାରା ଏହା ପ୍ରଥମ ଅଭିନୀତ ଓଡ଼ିଆ ନାଟକ । ଦୁଃଖର ବିଷୟ ଏହାର ପାଂଡୁଲିପି ଦୁଷ୍ପ୍ରାପ୍ୟ ହୋଇଗଲା ଓ ଏହା ପ୍ରକାଶିତ ହୋଇ ପାରିଲା ନାହିଁ ।

୧୯୪୩ରେ ଜଗଦ୍ଧାତ୍ରୀ ପୂଜା ଦିନ ଶ୍ରୀପତି ଇହଧାମ ତ୍ୟାଗ କଲେ । ଏକମାତ୍ର ପୁସ୍ତକ ରଚନା କରି ସେ ଉଚ୍ଚକୋଟିର ସାହିତ୍ୟିକ ଓ ଇତିହାସ ଲେଖକ ଭାବରେ ସ୍ମରଣୀୟ ହୋଇ ରହିବେ ।





# ସଂବଲପୁରର ଆଦି ନେତା

# ଧରଣୀଧର ମିଶ୍ର

ସଂବଲପୁର ସହରର ମିଶ୍ର ପରିବାରର ଓଡ଼ିଶାର ଶିକ୍ଷା ଓ ସଂସ୍କୃତି ପ୍ରତି ଅବଦାନ ଅବିସ୍ମରଣୀୟ। ଏହି ବଂଶର ପ୍ରଥମ ଉଜ୍ଜ୍ୱଳ ଜ୍ୟୋତିଷ ଧରଣୀଧର ମିଶ୍ର। ସେ ସଂବଲପୁର ଜିଲ୍ଲାର ପ୍ରଥମ ମାଟ୍ରିକ ପାସ ବ୍ୟକ୍ତି। ୧୮୫୦ ସେପ୍ଟେମ୍ବର ୨୭ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ। ତାଂକ ବାପା ଥିଲେ ମାର୍କଂଡ ମିଶ୍ର। ମାଆଂକ ନାମ ରାଇମତି ଦେବୀ। ସଂବଲପୁର ଜିଲ୍ଲା ସ୍କୁଲରେ ସେ ପାଠ ପଢିଥିଲେ ମାତ୍ର ମାଟ୍ରିକ ପରୀକ୍ଷା ଦେବାକୁ ତାଂକୁ କଲିକତା ଯିବାକୁ ପଡିଥିଲା। ସେତେବେଳକୁ ବେଂଗଲ ନାଗପୁର ରେଲଲାଇନ ଝାରସୁଗୁଡା ପର୍ଯଂତ ମଧ୍ୟ ଆସି ନ ଥାଏ। ଧରଣୀଧର ପଦବ୍ରଜରେ ଚକ୍ରଧରପୁର ଗଲେ। ସେଠାରୁ ଟ୍ରେନ ଧରି କଲିକତା ଯାଇ ପରୀକ୍ଷା ଦେଲେ। ପାସ କଲେ। ସେତେବେଳେ ଜିଲ୍ଲା ସ୍କୁଲରେ ପାଠ ୭ମ ଶ୍ରେଣୀ ପର୍ଯଂତ ଥାଏ। ଧରଣୀଧର ଏହି ବିଦ୍ୟାଳୟର ଶିକ୍ଷକ ଓ ପରେ ୧୮୭୩-୭୪ରେ ପ୍ରଧାନ ଶିକ୍ଷକ ପଦରେ କାମ କରିଥିଲେ। ସେତେବେଳେ ଅଳ୍ପ କେତେଜଣ ଶିକ୍ଷିତ ଲୋକ ସରକାରଂକର ବିଭିନ୍ନ ବିଭାଗ ଚଳାଇଥିଲେ । ବିଭାଗ ମାନଂକର ପରିସୀମା ମଧ୍ୟ ନିରୂପିତ ହୋଇ ନ ଥାଏ। ବିଶ୍ଚଂଦ ପଟ୍ଟନାୟକ ସ୍କୁଲ ତତ୍ତ୍ୱାବଧାରକ ଥିଲେ। ସେ ପଦୋନ୍ନତି ପାଇଲେ। ତହସିଲଦାର ହୋଇ ଅନୁଗୁଳ ଗଲେ। ତାଂକ ପଦବୀରେ

ଧରଣୀଧର କାମ କଲେ । ସେତେବେଳେ ଓଡ଼ିଆ ଭାଷାର ଘୋର ଦୁର୍ଦ୍ଦିନ । ଓଡ଼ିଆ ଭାଷା ଶିକ୍ଷା ଦେବାର ସୁବିଧା ମଧ୍ୟପ୍ରଦେଶରେ ଅତି ସୀମିତ । ନିଜ ମାତୃଭାଷା ପ୍ରତି ତାଂକର ମମତା ହେତୁ ସେ ସରକାରଂକୁ ଲୋକମାନଂକର ଅସୁବିଧା ବିଶେଷ ଭାବରେ ଜଣାଇଲେ ମାତ୍ର ଏହା ହିଂଦି ଓ ମରହଟ୍ଟୀ ଭାଷୀ ଅମଲାଂକର ଅସହଯୋଗ ଫଳରେ ରାଜ ଦରବାରରେ ଗୃହୀତ ହେଲା ନାହିଁ । ତାଂକର ଅବଦାନ ଶ୍ରୀପତି ମିଶ୍ରଂକର ସିମଳା ଯାତ୍ରା ପୁସ୍ତକରେ ସ୍ୱୀକୃତ । ଧରଣୀଧରଂକର କର୍ମତତ୍ପରତା ସମକାଳୀନ ଜନସେବୀମାନଂକର ଦୃଷ୍ଟି ଆକର୍ଷଣ କଲା । ସ୍ୱଭାବ କବି ଗଂଗାଧର ବାମଂଡାରୁ ପ୍ରକାଶିତ 'ଉତ୍କଳ ହିତୈଷିଣୀ' ପତ୍ରିକାରେ ତା ୩ ଅକ୍ଟୋବର ୧୮୯୪ରେ 'ଭାରତୀ ରୋଦନ' ଶୀର୍ଷକ କବିତାରେ ତାଂକୁ ଲକ୍ଷ୍ୟ କରି ଲେଖିଥିଲେ ।

''ମହତ ଛାମୁରେ ପ୍ରାର୍ଥନା କରିବା
ପ୍ରଶଂସ୍ୟ ଅଟଇ ସଦା
ଫଳ ଲାଭ ପଛେ ନ ହେଲେ ନ ହେବ
ନୀଚେ ନ ଯାଚିବ କଥା ।
ମୋହ ଲାଗି କେତେ ଯତନ କରୁଛି
ଆହା ମୋ ଧରଣୀଧର,
ତୋତେ ଘେନି ମୁହିଁ ପୁତ୍ରବତୀ ଏକା
ତୁ ମୋର ଯୋଗ୍ୟ କୁମର ।

ପରେ ସେହି ଉତ୍କଳ ହିତୈଷିଣୀର ତା ୬ ମାର୍ଚ୍ଚ ୧୮୯୫ ରିଖ ସଂଖ୍ୟାରେ ''ଉତ୍କଳ ଭାରତୀଂକ ନିବେଦନ'' କବିତାରେ ଧରଣୀଧରଂକ ଉତ୍ସାହ ଓ ନିରଳସ ଉଦ୍ୟମକୁ ଲକ୍ଷ୍ୟ କରି ଏହା ଯେପରି ଶିଥିଳ ନ ହୁଏ ସେଥିପାଇଁ ଉଦ୍‌ବୋଧନ ଦେଇ ଗଂଗାଧର ଲେଖିଥିଲେ ।

''ନ ଘୁଂଚ, ନ ହୁଅ ନିରାଶ, ବାପ ଧରଣୀଧର
ଅବଶ୍ୟ ସୁଫଳ ଫଳିବା ଲାଗି ଯତନ କର ।
ସେହି ରୂପେ ସବୁ ସଂଭ୍ରାଂତ ଲୋକ ମିଳି କରନ୍ତୁ,
ମୋର ହୃଦୟରୁ ସଂତାପ ନିଚୟକୁ ହରନ୍ତୁ ।
ନିର୍ବାସନ ହେବା ପାଇଁକି ଅଛି ଜନନୀଭାଲେ,
ମାତୃହୀନା ଦଶା ଘଟିବା ଅଛି ଥୟ କପାଳେ ।
ଭବିତବ୍ୟ ଯାହା ତା ଘଟୁ ବିଧି ଆୟତ୍ତ ସିନା,
ବୋଲି କାପୁରୁଷ ନ ହୁଅ ମୃଢ଼ ଉଦ୍‌ଯୋଗ ବିନା ।

ହିଂଦି ଭାଷା ପ୍ରବର୍ତ୍ତନର ପ୍ରାକ କାଳରେ ଏହା ଲେଖା ଯାଇଥିଲେ ମଧ୍ୟ ୧୮୯୬ ଜାନୁଆରି ପହିଲାରୁ ହିଂଦି ପ୍ରଚଳନ ଓ ଓଡ଼ିଆ ଭାଷାର ବିଲୋପ ଉଦ୍ୟମର ପ୍ରତିବାଦରେ ୧୮୯୫ ଜୁନ ୧୩ ତାରିଖରେ ସଂବଲପୁରର ଏକ ବିଶାଳ ଜନସଭା ଡକାଯାଇଥିଲା ଓ ଧରଣୀଧର ଏହି ପ୍ରତିବାଦ ସଭାରେ ସଭାପତି ହୋଇଥିଲେ। ଛୋଟଲାଟ ଫ୍ରେଜର ସାହେବଂକ ସୁପାରିଶ ଫଳରେ ଓଡ଼ିଆ ଭାଷାର ପୁର୍ନଚଳନ ସମୟରେ ୧୯୦୨ ମସିହା ସେପ୍ଟେଂବର ମାସରେ ସ୍ମୃତି ରକ୍ଷା ନିମିତ୍ତ ଫ୍ରେଜର ପ୍ରେସ ସଂବଲପୁରରେ ପ୍ରତିଷ୍ଠା କରାଗଲା। ଏହାର ଜଣେ ଅଂଶୀଦାର ଥିଲେ ଧରଣୀଧର। ନିଜର ଅଭିଜ୍ଞତାକୁ ଭିତ୍ତିକରି ଧରଣୀଧର ପରେ ମିଶ୍ର ପ୍ରେସ ନାମରେ ଗୋଟିଏ ପ୍ରେସ ନିଜେ ମାଲିକ ଥାଇ ପ୍ରତିଷ୍ଠା କଲେ। ୧୯୧୯ରେ ପ୍ରକାଶିତ ଏକ ଖବର କାଗଜ ରିପୋଟରୁ ଜଣାଯାଏ ଯେ ୧୯୧୬ରେ ପ୍ରେସର ଲାଭାଂଶରୁ ସିଂହଭୂମ ଜିଲ୍ଲାରେ ଓଡ଼ିଆ ଭାଷା ଶିକ୍ଷା ନିମିତ୍ତ ସେ ଏକଶତ ଟଂକା ଦାନ କରିଥିଲେ। ତାଂକର ଏ ପ୍ରକାର ଦାନ ଅନ୍ୟମାନଂକୁ ମଧ୍ୟ ଏ ଦିଗରେ ଅର୍ଥବ୍ୟୟ କରିବାକୁ ପ୍ରୋତ୍ସାହନ ଦେଇଥିଲା। ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହେବା ପରେ ଧରଣୀଧର ଏଥିରେ ଯୋଗ ଦେଇଥିଲେ। ୧୯୨୧ କଂଗ୍ରେସର ବାର୍ଷିକ ଅଧିବେଶନ ଅହମଦାବାଦରେ ହୋଇଥିଲା। ଧରଣୀଧର ଜିଲ୍ଲା କଂଗ୍ରେସ ସଭାପତି ଥାଇ ଏଥିରେ ଯୋଗଦେବାକୁ ନିମଂତ୍ରିତ ହୋଇଥିଲେ। ୧୯୨୧ରେ ପଂଡିତ ନୀଳକଂଠ ସଂବଲପୁରରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିବା ପରେ 'ସେବା' ନାମକ ଏକ ପତ୍ରିକା ନିଜ ସଂପାଦନରେ ପ୍ରକାଶ କରୁଥିଲେ। ଧରଣୀଧର ନିଜ ପ୍ରେସରୁ ଏହା ଛପାଯାଇ ଲୋକମାନଂକୁ ଦିଆଯିବାର ବ୍ୟବସ୍ଥା କରିଥିଲେ। ସରକାର ଏହାର ଲିଖନ ଶୈଳୀରେ ବିବ୍ରତ ହୋଇ ଅମାନତ ମାଗିଲେ ଓ ତାହା ଦେବାକୁ ଧରଣୀଧର ନିଜେ ଆଗେଇ ଆସି ପତ୍ରିକାର ପ୍ରକାଶନ ଚାଲୁ ରଖିଥିଲେ। ଧରଣୀଧର ଭାଗବତ ଏକାଦଶ ସ୍କଂଧର ସରଳ ଟୀକା, ତତ୍ତ୍ୱବୋଧ ଓ ଆତ୍ମବୋଧର ଅନୁବାଦ ପ୍ରକାଶ କରିଥିଲେ। ନିଜ ପ୍ରେସରେ ଏ ସବୁ ଛପା ଯାଇଥିଲା ଓ ସଂବଲପୁରରେ ୧୯୧୫ ଉତ୍କଳ ସମ୍ମିଳନୀର ଅଧିବେଶନ ସମୟରେ ଏହା କେତେକ ପ୍ରତିନିଧିଂକୁ ବିତରଣ କରାଯାଇଥିଲା। ସହରରେ ଥିବା ମଠ ମଂଦିରଗୁଡ଼ିକର ସୁପରିଚାଳନାର ଅଭାବ ଦେଖି ସେ ମଂଦିରଗୁଡିକର ଦୁରାବସ୍ଥା ପ୍ରତି ଉଚ୍ଚ ସରକାରୀ କର୍ତ୍ତୃପକ୍ଷମାନଂକର ଦୃଷ୍ଟି ଆକର୍ଷଣ କରିଥିଲେ। ଫଳରେ ପରିଚାଳନାଗତ ଉନ୍ନତି ପରିଲକ୍ଷିତ ହୋଇଥିଲା।

ଧରଣୀଧରଂକର ପୁତ୍ର ରାମ ନାରାୟଣ ଜିଲ୍ଲାର ପ୍ରଥମ ଏମ.ଏ.ବି.ଏଲ୍ ପାସ କଲା ବିଦ୍ୱାନ ଥିଲେ। ଅନ୍ୟ ଜଣେ ପୁତ୍ର ଡକ୍ଟର ରାମଚଂଦ୍ର ମିଶ୍ର। କଲିକତାରୁ ଡାକ୍ତରି ପାସ କରି ସରକାରୀ ଚାକିରି କରୁଥିଲେ ମାତ୍ର ଜରୁରି ପାରିବାରିକ କାର୍ଯ ଉପଲକ୍ଷେ ତାଂକୁ ଛୁଟି ନ ମିଳିବାରୁ ସେ ଚାକିରିରୁ ଇସ୍ତଫା ଦେଇ ସଂବଲପୁର ସହରରେ ସ୍ୱାଧିନ ଭାବରେ ଡାକ୍ତରି କଲେ। ଶେଷ ଜୀବନରେ ସେ ଆଧ୍ୟାତ୍ମିକ ଜୀବନ ପ୍ରତି ଆକୃଷ୍ଟ ହୋଇ ଗୀତାଗୁଡିରେ ସମୟ କଟାଉଥିଲେ।

❑ ❑ ❑



# କର୍ମବୀର

# ବୈକୁଂଠନାଥ ପୂଜାରୀ

କର୍ମବୀର ବୈକୁଂଠନାଥ ସଂବଲପୁର ସହର ନିବାସୀ ରାୟ ସାହେବ ଦାଶରଥି ପୂଜାରୀଂକର ୨ୟ ସଂତାନ ଥିଲେ। ଦାଶରଥି ବିଭିନ୍ନ ରାଜ୍ୟର ଦେଓ୍ୱାନ ଥିବା କମଳ ଲୋଚନ ପୂଜାରୀଂକର ସଚ୍ଚୁ ଥିଲେ। ବୈକୁଂଠ ନାଥଂକ ଭାଇମାନେ ହେଲେ ପ୍ରସନ୍ନ କୁମାର। ସେ ଅନେକ ଦିନ ଓଡ଼ିଶାର ବିଭିନ୍ନ ସ୍ଥାନରେ ସବରେଜିଷ୍ଟ୍ରାର ଥିଲେ। ଋଷି ପ୍ରତିମ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଏହି ଭାଇମାନଂକ ମଧ୍ୟରେ ପଂଚମ ଥିଲେ। ଅତି ଅଳ୍ପ ବୟସରେ ବୈକୁଂଠନାଥଂକ ପରି ଶ୍ରୀକାଂତ ଓ ନୀଳକଂଠ ନିଜ ପ୍ରତିଭା ବିକାଶ ପୂର୍ବରୁ ଯମପୁରକୁ ଚାଲିଗଲେ।

୧୮୭୭ ଜାନୁଆରି ଚାରି ତାରଖରେ ବୈକୁଂଠନାଥ ଜନ୍ମ ଗ୍ରହଣ କରିଥିଲେ। ତାଂକ ପିତା ସେତେବେଳେ ବରଗଡ଼ରେ ସରକାରୀ କାର୍ଯ୍ୟ କରୁଥିଲେ। ପରେ ମଧ୍ୟ ପ୍ରଦେଶର ଚିଫ କମିସନର ହୋଇଥିବା ସାର୍ ଆଂଡ୍ରୁ ଫ୍ରେଜରଂକର ଦାଶରଥି ଏକଦା ପେସକାର ଥାଇ ତାଂକର ବିଶ୍ୱାସ ଭାଜନ ହୋଇଥିଲେ ଓ ଏହା ସଂବଲପୁରର ଭାଷା

ଆଂଦୋଳନକୁ ବିଶେଷଭାବେ ପ୍ରଭାବିତ କରି ପାରିଲା । ବୈକୁଂଠନାଥଂକର ବାଲ୍ୟଶିକ୍ଷା ବରଗଡରେ ସମାପ୍ତ ପରେ ସେ ସଂବଲପୁର ଆସିଲେ । ସେଠାରେ ଆତ୍ମୀୟ ମଦନ ମୋହନ ପୂଜାରୀଂକ ତତ୍ତ୍ୱାବଧାନରେ ଜିଲ୍ଲା ସ୍କୁଲରେ ବିଦ୍ୟାଶିକ୍ଷା କଲେ । ୧୮୯୨ରେ ସେ ଜିଲ୍ଲା ସ୍କୁଲରୁ ଏନଟ୍ରାନ୍ସ ପାସ କଲେ । ଏହା ପରେ ଉଚ୍ଚ ଶିକ୍ଷା ନିମିତ୍ତ ସେ ନାଗପୁର ଗଲେ । ସେଠାରେ ପ୍ରସିଦ୍ଧ ହିଲସପ କଲେଜରୁ ଏଫ. ଏ (ଆଇ.ଏ) ଓ ବି.ଏ ପାସ କଲେ । ୧୮୯୬ରେ ରସାୟନ ଶାସ୍ତ୍ରରେ ବିଏ ପାସ କଲା ସମୟରେ ନାଗପୁରରୁ ପାସ ସଂଖ୍ୟା ମଧ୍ୟ ନଗଣ୍ୟ ଥିଲା । ବୈକୁଂଠନାଥ କଲିକତା ଯାଇ ସେଠାରେ ରସାୟନରେ ଏମ.ଏ ପାସ କଲେ । ସେତେବେଳେ କଳା ଓ ବିଜ୍ଞାନ କ୍ଷେତ୍ରରେ ଡିଗ୍ରୀ ଲାଭ କରିବାରେ ଏପରି ତାରତମ୍ୟ ନ ଥିଲା । ସଂବଲପୁରର ବିଖ୍ୟାତ ଜନସେବକ ଚଂଦ୍ରଶେଖର ବେହେରା ବୈକୁଂଠନାଥଂକର ଭଗିନୀ ପତି ଥିଲେ । ତାଂକୁ ସେ ପାଠପଢ଼ା ସମୟରେ ଲେଖିଥିବା ପତ୍ରରୁ ଜଣାଯାଏ ଯେ ବୈକୁଂଠନାଥ ଆଇନ ଶିକ୍ଷା ଶେଷ କରି ସ୍ୱାଧୀନ ଜୀବିକା ଅର୍ଜନରେ ବିଶେଷ ଆଗ୍ରହୀ ଥିଲେ । ମାତ୍ର ସେ ଆଇନ ଓ ଉପାଧ୍ୟୁତ୍ତର ଡିଗ୍ରି ଘେନି ସଂବଲପୁରକୁ ଫେରିବାପରେ ସରକାର ତାଂକୁ ଏକ୍ସଟ୍ରା ଆସିଷ୍ଟାଣ୍ଟ କମିସନର (ଅନ୍ୟତ୍ର ଡେପୁଟି କଲେକ୍ଟର) ପଦରେ ନିଯୁକ୍ତି ଦେଲେ । ତାଂକ ପିତା ରାଜକର୍ମଚାରୀ ଥିଲେ । ପିତୃଭକ୍ତ ବୈକୁଂଠନାଥ ସରକାରୀ ଚାକିରି ଅନିଚ୍ଛାସତ୍ତ୍ୱେ ତାଂକ କଥାରେ ଗ୍ରହଣ କଲେ । ବରଷ ଦୁଇ ଚାକିରି ହେଇନାହିଁ ୧୯୦୧ରେ ଜନଗଣନା ଆରଂଭ ହେଲା । ଭାଷା ଆଂଦୋଳନରେ ଜନଗଣନାର ଗୁରୁତ୍ୱ ଦୂରଦୃଷ୍ଟି ସଂପନ୍ନ ବୈକୁଂଠନାଥ ମୂଳରୁ ବୁଝିପାରିଥିଲେ । ମଧ୍ୟପ୍ରଦେଶର ହିଂଦି ଭାଷୀ କର୍ମଚାରୀମାନେ ମାତୃଭାଷା ହିଂଦି ଭାଷା ଲେଖା ହେଲେ ଲାଭ ଅଛି ଏମିତି ପ୍ରଲୋଭନ ଦେଖାଇ ଓଡ଼ିଆମାନଂକର ମଧ୍ୟ ଉପାଂତ ଅଂଚଳରେ ମାତୃଭାଷା ହିଂଦି ଦେଖାଇବାକୁ ପରୋକ୍ଷ ଉଦ୍ୟମ କଲେ । ନିଜେ ରାଜକର୍ମଚାରୀ ଥାଇ ଓ ଜନଗଣନା କାର୍ଯରେ ସଂପୃକ୍ତ ହେତୁ ବୈକୁଂଠନାଥ ଏହାର ସୁଦୂର ପ୍ରସାରୀ ରାଜନୈତିକ ଓ ସାମାଜିକ ପରିଣାମ ଅନୁଭବ କରି ପାରିଲେ । ଦିନଟାଯାକ ସେ ନିଜର ସରକାରୀ କାମ ସୁଚାରୁରୂପେ ସଂପନ୍ନ କରୁଥିଲେ । ରାତ୍ରି ସମୟରେ ଅଶ୍ୱ ଆରୋହଣ କରି ସେ ମଫସଲକୁ ଯାଉଥିଲେ । ସ୍ଥାନୀୟ ଅଧିବାସୀମାନଂକୁ ସେମାନଂକର ମାତୃଭାଷା ରକ୍ଷାର ଗୁରୁତ୍ୱ ବୁଝାଉଥିଲେ । ନିଜ ଭିଣୋଇ ଚଂଦ୍ରଶେଖର ବେହେରା ସାଧାରଣ କ୍ଷେତ୍ରରେ ଏଦିଗରେ କାର୍ଯ କରୁଥିବାରୁ ତାଂକୁ ସେ ଆବଶ୍ୟକୀୟ ତଥ୍ୟମାନ ମଧ୍ୟ ଯୋଗାଇ ଦେଉଥିଲେ । ଫଳରେ ହିଂଦିଭାଷୀ କର୍ମଚାରୀମାନଂକର ଷଡ଼ଯଂତ୍ର ପଂଡ ହେଲା ଓ ସଂବଲପୁର ଜିଲ୍ଲା ସହିତ ଫୁଲଝର ରାୟପୁର ଆଦି ଅଂଚଳରେ ଓଡ଼ିଆ ଭାଷା ନିଜର ମାନ୍ୟତା ରକ୍ଷାକରି ପାରିଲା । ଦିନକର କଠିନ ପରିଶ୍ରମ ପରେ ଅକ୍ଲାଂତ ଭାବରେ ରାତି ପରେ ରାତି ଦେଶ କାର୍ଯରେ ଲାଗି ଅନିଦ୍ରା,

ନିଜର ଖାଦ୍ୟ ଓ ବିଶ୍ରାମ ପ୍ରତି ସଂପୂର୍ଣ୍ଣ ଉଦାସୀନ ରହି ସେ ରୁଗ୍ଣ ହୋଇପଡ଼ିଲେ। ହିଂଦି ଭାଷୀମାନଂକ ପ୍ରତି ସହାନୁଭୂତିଶୀଳ ଡେପୁଟି କମିସନର ତାଂକ ବିରୁଦ୍ଧରେ ପ୍ରତିକୂଳ ମଂତବ୍ୟ ଦେଲେ। ସରକାର ତାଂକୁ ଦୂର ଜବଲପୁର ଅଂଚଳକୁ ସ୍ଥାନାଂତର କଲେ। ସେଠାରେ ସେ କାର୍ଯରେ ଯୋଗଦାନ କରିବା ପରେ ତାଂକ ସ୍ୱାସ୍ଥ୍ୟର ବିଶେଷ ଅବନତି ଘଟିଲା। ସେ ଯକ୍ଷ୍ମାରୋଗ ଗ୍ରସ୍ତ ବୋଲି ଜଣାପଡ଼ିଲା। ସେତେବେଳେ ଏହି ରୋଗର ଚିକିତ୍ସା ଦୁଃସାଧ୍ୟ ଥିଲା। ଦୀର୍ଘ ଛୁଟିନେଇ ସେ ସଂବଲପୁର ଫେରି ଆସିଲେ ଓ ଚିକିତ୍ସାଧିନ ଥିବା ସମୟରେ ମାତ୍ର ଛବିଶ ବର୍ଷ ବୟସରେ ୧୯୦୩ ଅକ୍ଟୋବର ୧୫ ତାରିଖରେ ଶେଷନିଶ୍ୱାସ ତ୍ୟାଗ କଲେ। ତାଂକରର ଲିଖିତ ପତ୍ରାବଳୀ 'ବୈକୁଂଠ ଏଂଡ୍ ହିଜ୍ ଲେଟର୍ସ' ନାମରେ ପ୍ରକାଶିତ ହେଲା। ଏଥିରୁ ତାଂକର ନିଃସ୍ୱାର୍ଥ ଦେଶପ୍ରେମର ପ୍ରଭୂତ ପ୍ରମାଣ ମିଳେ। କବିବର ରାଧାନାଥଂକର ଭାଷାରେ ତାଂକ ମରଦେହ ଶ୍ମଶାନରେ ଜାଳି ଦିଆଯାଇଥିଲେ ମଧ୍ୟ ଯଶୋଦେହରେ ତାଂକ ପୂତାତ୍ମା ଓଡ଼ିଆ ଜାତିର ପ୍ରତ୍ୟେକ ସଚେତନ ନାଗରିକର ଶରୀରରେ ବିଦ୍ୟମାନ ରହି ସେ ସ୍ମରଣୀୟ ଅଟଂତି।



ଜନମଭୂମି ଯେ ମାଟି ପଥରର ଜନନୀ କି ବଳି ବଡ଼,<br>
ସେ ଜନମଭୂମି ସେବା ଯେ କରଇ ଧନ୍ୟ ନର ଜନ୍ମ ତା'ର।<br>
ହ୍ରଦ ନଦୀ ବନ ପ୍ରାଂତର ପର୍ବତ ବଡ଼ ଏ ସକଳ ଯେତେ,<br>
ପ୍ରତି ପ୍ରାଣେ ବହେ ଜନନୀ ରକତ ଜୀବଂତ ପରାଏ ସତେ।<br>
ସରଗୁଁ ବଳି ଏ ଜନମ ଭୂଇଁର ହେଲେ ତିଳେ ଅପମାନ,<br>
ସିଂହ ଗରଜନେ ଉଠିବେଟି ମାତି କୋଟି କୋଟି ତା ସଂତାନ।

–ଗୋଦାବରୀଶ ମିଶ୍ର

''ଜିଇଁ ରହେ ନାହିଁ କେହି,
ଧରାତଳେ ଯେହୁ କୀରତି ରଖଇ
ସେଇ ଏକା ଜିଇଁ ଥାଇ ।''
–କାନ୍ତ କବି ଲକ୍ଷ୍ମୀକାନ୍ତ

# ଦାନଶୀଳ
# ମଦନ ମୋହନ ମିଶ୍ର

ଭାଷା ଆଂଦୋଳନର ବିଶିଷ୍ଟ ଜନନାୟକ ମଦନମୋହନ ମିଶ୍ରଂକର ଫଟୋ ବା ବିଶେଷ ବିବରଣୀ ସଂଗୃହୀତ ହୋଇ ପାରିନାହିଁ। ତାଂକର ଦୁଇ ଝିଅ ମଧ୍ୟରୁ ଜଣେ ତାଂକ ସହକର୍ମୀ ବଳଭଦ୍ର ସୁଆରଂକ ପୁତ୍ର ରାୟ ସାହେବ ପ୍ରଦ୍ୟୁମ୍ନ ସୁପକାରଂକୁ ବିବାହ କରିଥିଲେ। ଆଉ ଜଣେ ବିଶିଷ୍ଟ କ୍ଷିପ୍ର ଲେଖକ କମିସନରଂକ ବ୍ୟକ୍ତିଗତ ସଚିବ ରାଜୀବଲୋଚନ ପୂଜାରୀଂକ ସାନଭାଇ ବିଶ୍ବକସେନ ପୂଜାରୀଂକୁ ବିବାହ କରିଥିଲେ। ମଦନମୋହନ ୧୮୮୭ରେ ଜନ୍ମଗ୍ରହଣ କରିଥିବାର ଅନୁମାନ କରାଯାଉଛି। ସେମାନେ ସିମଳା ଯାତ୍ରା ସମୟରେ ଏହି ଗଣନା ଅନୁସାରେ ତାଂକୁ ବୟସ ମାତ୍ର ଚଉଦ ବରଷ ହେବ। ଶ୍ରୀପତି ମିଶ୍ରଂକୁ ସର୍ବ କନିଷ୍ଠ ଯାତ୍ରୀ ଧରାଯାଉଥିବାରୁ ଏହି ତାରିଖ ତ୍ରୁଟି ପୂର୍ଣ ଜଣାପଡେ। ତାଂକର ପିତା ଥିଲେ ବୈଦ୍ୟନାଥ ମିଶ୍ର। ସେ ଅନେକ ଦିନ ଧରି ପୌର ସଭା ଓ ଲୋକାଲବୋର୍ଡର ସଭ୍ୟ ଥିଲେ। ୧୮୮୭ରେ ମହରାଣୀ ଭିକ୍ଟୋରିଆଂକର ସୁବର୍ଣ ଜୁବିଲି (୫୦ ବର୍ଷ ପୂର୍ତ୍ତି) ଉପଲକ୍ଷେ ମହାନଦୀ କୂଳରେ ବାଲିବଂଧାଠାରେ ଭିକ୍ଟୋରିଆ ଘାଟ ଓ ସ୍ତଂଭ (ଟାୱାର) ନିର୍ମାଣ କରାଯାଇଥିଲା। ଏହି ସମୟରେ ବୈଦ୍ୟନାଥ ମିଶ୍ର ଓଭରସିଅର ଥିଲେ ଓ ତାଂକର ତତ୍ତ୍ବାବଧାନରେ ଏହା ନିର୍ମାଣ ହୋଇଥିବା ବିଷୟ ସେଠାରେ ରହିଥିବା ଫଳକରୁ ଜଣାଯାଏ। ଅବଶ୍ୟ ସେତେବେଳର ବ୍ୟବସ୍ଥା ଅନୁସାରେ କର୍ମଚାରୀମାନେ

ମଧ୍ୟ ସ୍ୱାୟତ୍ତ ଶାସନ ଅନୁଷ୍ଠାନରେ ସଭ୍ୟହେବାରେ କୌଣସି ବାଧା ନ ଥିଲା । ମଦନମୋହନ ମଧ୍ୟ ପୌରସଭାର ସଭ୍ୟ ଥିଲେ । ପିତାଂକ ଦ୍ୱାରା ଆରଂଭ କାର୍ଯ ସେ ପୂର୍ଣ କରିଥିଲେ । ମିଶ୍ର ଘାଟ ନାମରେ ପରିଚିତ ମହାନଦୀର ଝାଡୁଆପଡ଼ାର ଘାଟ ତାଂକର କୀର୍ତି । ସେ ସମୟରେ ବ୍ରାହ୍ମଣ ଘରର ଝିଅ ବୋହୂମାନଂକର ସର୍ବସାଧାରଣରେ ଉନ୍ମୁକ୍ତ ସ୍ନାନ ସମାଜ ବିରୋଧୀ ଥିବାରୁ ସେ ଉକ୍ତ ଘାଟ ଉପରେ ଦ୍ୱାରଯୁକ୍ତ ଏକ କାଂଥ ନିର୍ମାଣ କରିଥିଲେ । ସେହି କାଂଥରେ ଅଳ୍ପ ଦୂରରେ ସେ ଗୋଟିଏ ବେଦି ତିଆରି କରିଥିଲେ । ଏହା ଫଳରେ ସେଠାରେ ନିଜ ପରିବାର କୁଟୁଂବ ଓ ପଡୋଶୀମାନଂକର ବିବାହ ବ୍ରତ ଆଦି ଶୁଭକର୍ମ ସୁବିଧାରେ ସଂପନ୍ନ ହୋଇ ପାରୁଥିଲା । ମଦନ ମୋହନ ବିସ୍ତର ଭୂସଂପତ୍ତିର ମାଲିକ ଥିଲେ । ଶାସନ ଥାନା ଅଂତର୍ଗତ ଫଟା ବାହାଲ ଓ ହଫରିଆବାହାଲରେ ତାଂକର ଜମି ଥିଲା । ସେ ନିଜ ଆୟକୁ ସର୍ବସାଧାରଣ ଉଦ୍ଦେଶ୍ୟରେ ବ୍ୟୟ କରୁଥିବାରୁ ଅନେକ ଲୋକହିତକର କାର୍ଯରେ ସଂପୃକ୍ତ ଥିଲେ । ୧୯୦୧ରେ ସେ ନିଜ ସମୁଦି ବଳଭଦ୍ର ଓ ଅନ୍ୟମାନଂକ ସହିତ ନାଗପୁର ଯାତ୍ରା କରି ଛୋଟଲାଟଂକୁ ସାକ୍ଷାତ କରିଥିଲେ । ପରେ ସିମଲା ଯାତ୍ରାରେ ମଧ୍ୟ ସେ ସହଯାତ୍ରୀ ଥିଲେ ।

ବିଭବଶାଳୀ ଥାଇ ମଧ୍ୟ ମଦନମୋହନ ଅମିତବ୍ୟୟୀ ଥିଲେ । ଦାନ ଖଇରାତ, ବଂଧୁବାଂଧବ ମାନଂକୁ ସଂଖୋଳିବା ଓ ସାଧାରଣ କାର୍ଯରେ ସେ ବହୁତ ବ୍ୟୟ କରିବା ଫଳରେ ଜୀବନର ଶେଷ ବେଳକୁ ସେ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇଥିଲେ, ମାତ୍ର ତାଂକର ମରଣ ଅତିଶୟ ସୁଖପ୍ରଦ ଓ ଧର୍ମାଚରିତ ଥିଲା । ତାଂକର ଜ୍ୟେଷ୍ଠ ଭଉଣୀ ବାଉଁଶେନ ମୁରା ଗୌଂତିଆଂକୁ ବିବାହ କରିଥିଲେ । ୧୯୧୦ରେ ମଦନ ମୋହନ ତାଂକୁ ସଂଖୋଳିବାକୁ ଯାଇଥିଲେ । ସ୍ନାନସାରି ତୁଳସୀ ଚଉରାରେ ଜଳଦେବା ସମୟରେ ସେ ସେଠାରେ ଟଳି ପଡି ପ୍ରାଣ ହରାଇଥିଲେ । ଏହି ପୁଣ୍ୟକର୍ମା ବ୍ୟକ୍ତିଂକର ଜୀବନ ସ୍ମରଣୀୟ ହୋଇ ରହିବ ।



ବଡ଼ହେଲେ ହେଁ ଯେ ନୀଚ ହୃଦୟ
କେବେ ହୋଇଛି କି ପରେ ସଦୟ ।

—ସ୍ୱଭାବକବି ଗଂଗାଧର



# ଖାଜାଂଚି
# ବ୍ରଜମୋହନ

ଭାଷା ଆଂଦୋଳନର ଅନ୍ୟତମ ନାୟକ ବ୍ରଜମୋହନ ପଟ୍ଟନାୟକଂକ ବିଷୟରେ ମଧ୍ୟ ଏଯାବତ୍ ଅତି ଅଳ୍ପ ତଥ୍ୟ ସଂଗୃହୀତ ହୋଇ ପାରିଛି। ସଂବଲପୁରରେ ତାଂକର ଜନ୍ମ। ସଂବଲପୁର ରାଜାଂକର ତାଂକ ପିତାମହ ଜଗବନ୍ଧୁ ପଟ୍ଟନାୟକ ଦେଓ୍ୱାନ ଥିଲେ। ଇଂରେଜ ସରକାର ସଂବଲପୁର ଦଖଲ କଲାପରେ ତାଂକ ବିରୋଧରେ ରାଜଦ୍ରୋହ ମକଦ୍ଦମା ଆଣିଥିଲେ। ସେଥିରେ ସେ ଦୋଷୀ ସାବ୍ୟସ୍ତ ହୋଇ ଫାଶି ପାଇଥିଲେ। ତାଂକର ସମସ୍ତ ସଂପତ୍ତି ମଧ୍ୟ ବାଜ୍ୟାପ୍ତ କରାଯାଇଥିଲା। ବାଳମୁକୁଂଦ ଜଗବଂଧୁଂକର ପୁତ୍ର ଥିଲେ। ସଂବଲପୁରର ଶେଷ ସ୍ୱାଧୀନ ରାଜା ନାରାୟଣ ସିଂହଂକର ମୃତ୍ୟୁ ଉତ୍ତାରେ ଯେଉଁମାନେ ସଂବଲପୁର ଗାଦି ପାଇବାକୁ ଦାବିଦାର ଥିଲେ ସେମାନଂକ ମଧ୍ୟରେଥିଲେ ନାରାୟଣ ସିଂହଂକର ଭାଇ ଫକୀର ସିଂହ। ଫକୀର ସିଂହଂକର ଦାବି ଉପସ୍ଥାପିତ କରିବାକୁ ବାଳମୁକୁଂଦ ତାଂକୁ ପାଂଚଶହଟଂକା ସାହାଯ୍ୟ ଦେଇଥିଲେ। ସୁରେଂଦ୍ର ସାଏଂକର ବିପ୍ଳବ ସମୟରେ ବିପ୍ଳବୀମାନେ ବାଳମୁକୁଂଦଂକ ଘରେ ଅଂତତଃ ଦୁଇଥର ଏକଜୁଟ ହୋଇଥିଲେ ଓ ବାଳମୁକୁଂଦ ସୁରେଂଦ୍ରସାଏଂକୁ ପଚାଶଟଂକା ଅର୍ଥ ଦେଇଥିବା କଥା ବୀର ସୁରେଂଦ୍ର ସାଏଂକର ସ୍ୱର୍ଗତଃ

ଅନିରୁଦ୍ଧଦାଶଙ୍କ ଲିଖିତ ଜୀବନୀରେ ଉଲ୍ଲେଖ ଅଛି। ବାଳମୁକୁନ୍ଦ ସରକାରଙ୍କ ଅଧିନରେ ନାଏବ ତହସିଲଦାର କାମ କରୁଥିଲେ। ତାଂକ ପକ୍ଷରେ ବିପ୍ଳବୀ ନେତାଂକୁ ସାହାଯ୍ୟକରିବା ଓ ଆଶ୍ରୟ ଦେବା ଏକ ଅସାଧାରଣ ସାହସ ଓ ପ୍ରଶଂସାର କାର୍ଯଥିଲା। ସଂଭବତଃ ଜିଲ୍ଲାରେ ବ୍ରିଟିଶ ଶାସନ ଆରଂଭରେ ବାଳମୁକୁଂଦଂକର ପୁତ୍ର ବ୍ରଜମୋହନ ଜନ୍ମଗ୍ରହଣ କରିଥିଲେ। ତାଂକ ମାତାଂକର ନାମ ଥିଲା ପଦ୍ମତୋଳା। ବ୍ରଜମୋହନ ସାଧାରଣ ଶିକ୍ଷା ସହିତ ସାମାନ୍ୟ ଇଂରାଜୀ ମଧ୍ୟ ପଢ଼ିଥିଲେ। ହୀରାକୁଦ ବଂଧ ଫଳରେ ବୁଡ଼ିଯାଇଥିବା ମୁରା ଥାନାର କଲମି ଗ୍ରାମରେ ତାଂକର ଜମିବାଡ଼ି ଥିଲା। ତେଣୁ ତାଂକର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା। ବାଳମୁକୁଂଦ ଜିଲ୍ଲା ଅଫିସର ଟ୍ରେଜରିର ଖଜଣାଖାନାର ଖାଜାଂଚି ହେଲେ। ସେ ଅନେକ ଦିନ ଧରି ପୌର ସଭାର ସଭ୍ୟଥିଲେ। ୧୮୯୫ରେ ସେ ବଳଭଦ୍ର ସୁଆରଂକ ସହିତ ମିଶି ନଂଦପଡ଼ା ଘାଟରେ କେବଳ ମହିଳାମାନଂକ ନିମିତ୍ତ ଏକ ପାଇଖାନା ତିଆରି ପାଇଁ ପ୍ରସ୍ତାବ ଦେଇଥିଲେ। ତାଂକରି ଉଦ୍ୟମରେ ପଟ୍ଟନାୟକ ପଡ଼ାରେ ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ହେଇଥିଲା। ପରବର୍ତ୍ତୀକାଳରେ ଏହା ତାଂକର ନାମରେ ନାମିତ ହୋଇଅଛି। ସେ ମୁନିସିପାଲଟି ତରଫରୁ ବାଲିବଂଧ ଠାରେ ଏକ ଘାଟ କେବଳ ମହିଳାମାନଂକ ପାଇଁ ନିର୍ମାଣ କରିବାକୁ ପ୍ରସ୍ତାବ ଦେଲେ। ସେହି ସମୟରେ ଚିଟ୍‌ନବିସ୍ ନାମରେ ଜଣେ ମରହଟ୍ଟା ବ୍ରାହ୍ମଣ ସଂବଲପୁରର ଡେପୁଟି କମିସନର ଥିଲେ। ବ୍ରଜମୋହନଂକ ତତ୍ତ୍ୱାବଧାନରେ ଏହି ଘାଟ ନିର୍ମାଣ କରାଗଲା। ୧୯୦୫ରେ ସମ୍ପୂର୍ଣ ଏହି ଘାଟ ଚିତଟ୍‌ନବିସ୍‌ଂକ ନାମରେ ନାମିତ ଓ ଏହାର ନାମଫଳକ ସେଠାରେ ସୁରକ୍ଷିତ ଅଛି।

୧୯୧୨ରେ ପ୍ରକାଶିତ 'କବିତା' କଲ୍ଲୋଳ ପୁସ୍ତକର ସୋମନାଥ ବିଜୟ କବିତାରେ ସ୍ୱଭାବ କବି ଗଂଗାଧର ସୋମନାଥ ମଂଦିର ଓ ଏହି ଘାଟକୁ ଲକ୍ଷ୍ୟ କରି ଲେଖିଥିଲେ –

''ଭିକ୍ଟୋରିଆ ଘାଟ ଚିଟନବିସଂକ ଘାଟ
 ହୋଇଛି ଯା ସୁମଂଜୁଳ ସୋପାନେ ସଜ୍ଜିତ
ମହାନଦୀ ମେଳ ପାଇଁ ଏ ସୁଗମ ବାଟ
 ହେବ ପରା ଥିଲା ତୁଂଭ ମାନସେ ସଂଚିତ।
କୈଳାଶ ବିହାର ସଧ ମେଂଟାଇବା ପାଇଁ
 ସଜ୍ଜିତ ହୋଇଛି ପାଖେ ବୁରୁଜ ମସ୍ତକ
ସୁଗମ ସୋପାନ ପଥେ ଉଠି ଦେବ ସାଇଁ
 ବସି ତହିଁ ପଢୁଥାଅ ପ୍ରକୃତି ପୁସ୍ତକ
ପାରିବେ ଦର୍ଶନକରି ତୁଂଭ ଶ୍ରୀଚରଣ
 ରାଜଘାଟ ଶ୍ମଶାନରୁ ତୁଂଭ ଭୂତଗଣ।''

ଭାଷା ଆଂଦୋଳନରେ ବ୍ରଜମୋହନ ଅନ୍ୟତମ ମୁଖ୍ୟ ଉଦ୍‌ଯୋକ୍ତା ଥିଲେ। ୧୯୦୧ରେ ସେ ଅନ୍ୟ ତିନିଜଣ ମଦନମୋହନ, ବଳଭଦ୍ର ଓ ମହଂତ ବିହାରୀ ଦାସଂକ ସହିତ ନାଗପୁର ଯାଇ ସେଠାରେ ଛୋଟଲାଟଂକୁ ଓଡ଼ିଆ ଭାଷା ସଂରକ୍ଷଣ ସଂକ୍ରାଂତରେ ସାକ୍ଷାତ କରିଥିଲେ। ପରେ ସେମାନେ ଶ୍ରୀପତି ମିଶ୍ରଂକ ସହିତ ସିମଳା ଯିବା ସେଠାରେ ମହଂତ ବିହାରୀ ଦାସ ଓ ବ୍ରଜମୋହନ ପଟ୍ଟନାୟକ ଚିଫ କମିସନର ଫ୍ରେଜର ସାହେବଂକ ବ୍ୟକ୍ତିଗତ ସଚିବଂକୁ ସାକ୍ଷାତ କରିବାକୁ ସକ୍ଷମ ହେବା ଶ୍ରୀପତିଂକର ସିମଳା ଯାତ୍ରା ପୁସ୍ତକରେ ଲିପିବଦ୍ଧ ହୋଇଅଛି। ଅନ୍ୟ ସହଯାତ୍ରୀମାନଂକ ସହିତ ସେମାନଂକର ତୀର୍ଥଯାତ୍ରା ଓ ଭାଷା ସଂରକ୍ଷଣ ନିମିତ୍ତ ଉଦ୍ୟମ ଏହି ପୁସ୍ତକରେ ବିଶଦ ଭାବରେ ବର୍ଣ୍ଣିତ।

୧୯୦୩ ଡିସେଂବର ୩୦ ତାରିଖରେ କଟକରେ ଉତ୍କଳ ସମ୍ମିଳନୀ ବସିଥିଲା। ଓଡ଼ିଶାର ଚାରିଆଡୁ ରାଜା, ଜମିଦାର ଓ ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ଏଥିରେ ଯୋଗ ଦେଇଥିଲେ। ଅମୃତବଜାର ପତ୍ରିକାର ସଂପାଦକ ମୋତିଲାଲ ଘୋଷ ମଧ୍ୟ ଏଥିରେ ଯୋଗ ଦେଇଥିଲେ। ତାଂକ କାଗଜରେ ପ୍ରକାଶ ପାଇଥିଲା ୧୮୮୬ରେ ବଂଗଳାରେ ଆୟୋଜିତ ରୟତ ସମ୍ମିଳନୀ ପରେ ଏହା ସମଗ୍ର ଭାରତ ବର୍ଷରେ ଥିଲା ଦ୍ୱିତୀୟ ସର୍ବଜନୀନ ସମାବେଶ। ଏହି ସମ୍ମିଳନୀର ସର୍ବପ୍ରଥମ ପ୍ରସ୍ତାବରେ ଓଡ଼ିଆ ଭାଷାଭାଷୀ ଅଂଚଳମାନଂକର ଏକତ୍ରୀକରଣ ପ୍ରସ୍ତାବ ପାଇଁ ଭାଇସରୟ ଲର୍ଡ କର୍ଜନଂକୁ ଓଡ଼ିଆ ଜାତିର ସକୃତଜ୍ଞ ଧନ୍ୟବାଦ ଅର୍ପଣ କରାଯାଇଥିଲା। କେଂଦୂଝରର ମହାରାଜା ଏହି ପ୍ରସ୍ତାବ ଆଗତ କରିଥିଲେ। ଖଲିକୋଟର ରାଜା ଏହା ସମର୍ଥନ କଲାପରେ ଉତ୍କଳ ସାହିତ୍ୟର ସଂପାଦକ ବିଶ୍ୱନାଥ କର, ବାଲେଶ୍ୱରର ରାଜା ବୈକୁଂଠନାଥ ଦେ ବାହାଦୁର, ସଂବଲପୁରର ବାବୁ ବ୍ରଜମୋହନ ପଟ୍ଟନାୟକ ଏହାକୁ ଯଥାବିଧି ଅନୁମୋଦନ କରିଥିଲେ। ଭାଷା ଆଂଦୋଳନରେ ଓଡ଼ିଶାରେ ବ୍ରଜମୋହନଂକର ଗୁରୁତ୍ୱ ଏଥିରୁ ସ୍ପଷ୍ଟ ଜଣାଯାଏ। ବ୍ରଜମୋହନ ମ୍ୟୁନିସିପାଲିଟି ଡିଷ୍ଟ୍ରିକ୍ଟ କାଉନସିଲର ସଭ୍ୟ ଥିଲେ। ୧୯୦୭ରେ କଲିକତାରେ ଅନୁଷ୍ଠିତ ଏକ ସ୍ୱାୟତ୍ତ ଶାସନ ସମ୍ମିଳନୀରେ ଯୋଗ ଦେବାକୁ ସେ ଯାଇଥିଲେ। ସେଠାରେ ସେ ମାରାତ୍ମକ କଲେରା ରୋଗରେ ଆକ୍ରାଂତ ହୋଇ ପ୍ରାଣ ହରାଇଲେ। ତାଂକର ଏହି ଦାରୁଣ ମୃତ୍ୟୁ ସଂବାଦ ତାର ଯୋଗେ ସଂବଲପୁରରେ ପହଂଚିବା ପରେ ଚାରିଆଡେ ଶୋକର ଛାୟା ଖେଳିଯାଇଥିଲା। ତାଂକ ମୃତ୍ୟୁପରେ ତାଂକର ଜଣେ ପୁଅ ରାମପ୍ରସାଦ ମ୍ୟୁନିସିପାଲିଟି ସଭ୍ୟ ଥାଇ ୧୯୧୭ରେ ବାଲିବଂଧ ନିକଟରେ ପୌରସଭା ତରଫରୁ ଏକ ପାର୍କ ପ୍ରତିଷ୍ଠା କରିଥିଲେ ଓ ଏହା ତାଂକ ନାମରେ ନାମିତ ହୋଇଛି।

ବ୍ରଜମୋହନଂକର ଜୀବନର ସଂପୂର୍ଣ୍ଣ ବିବରଣୀ ମିଳୁ ନଥିଲେ ମଧ୍ୟ କେବଳ ସିମଳା ଯାତ୍ରା ପୁସ୍ତକରେ ଲିପିବଦ୍ଧ ତାଂକର ଅବଦାନ ହେତୁ ସେ ଦେଶରେ ସ୍ମରଣୀୟ ହୋଇ ରହିବେ।





# ଦେଶପ୍ରାଣ
# ବଳଭଦ୍ର ସୂପକାର

ସଂବଲପୁର ସହରରେ ମହାନଦୀ କୂଳରେ ବ୍ରହ୍ମପୁରା ମଂଦିର ପାଖରେ ଝାଡୁଆ ବ୍ରାହ୍ମଣମାନଂକର ବସତି । ବେହେରା, ମିଶ୍ର, ପୂଜାରୀ, ସୁଆର, ପଂଡା ଆଦି ବର୍ଗର କେତେକ ବ୍ରାହ୍ମଣ ପରିବାର ବଡ଼ ସଡ଼କର ଦୁଇ କଡ଼ରେ ଓ ଗଳି ଭିତରେ ଘର କରି ରହିଥିଲେ । ସଂବଲପୁର ଅବା ହୀରାଖଂଡ ସାମ୍ରାଜ୍ୟର ଯେଉଁ ପୁରାତନ ବଂଶଗୁଡ଼ିକ ବିଭବ ମର୍ଯାଦା ଓ ସଂଭ୍ରମରେ ସୁପ୍ରତିଷ୍ଠିତ ହୋଇପାରିଥିଲେ ସେ ଗୁଡ଼ିକ ମଧ୍ୟରେ ସୂପକାର ବଂଶ ଅନ୍ୟତମ । ଏହି ବଂଶ ଯେଉଁ ବ୍ରାହ୍ମଣ ସମାଜର ଅଂତର୍ଗତ ଥିଲା ତାକୁ ପରବର୍ତ୍ତୀ କାଳରେ ପୁରୀ ପ୍ରଭୃତି ଅଂଚଳରୁ ଆଗତ ବ୍ରାହ୍ମଣମାନେ ଆରଣ୍ୟକ ବ୍ରାହ୍ମଣ ଆଖ୍ୟା ଦେଇଥିଲେ । ଉତ୍କଳୀୟ ବ୍ରାହ୍ମଣମାନଂକଠାରୁ ପାର୍ଥକ୍ୟ ଏଥିରୁ ସୂଚିତ ହେଉଥିଲା । ପୁରୁଷୋତ୍ତମ ସୁଆର ତାଂକ ଭିତରୁ ଜଣେ । ତାଂକ ବଡ଼ଭାଇ ତ୍ରିଲୋଚନ ନିଜର ବିଦ୍ଵତ୍ତା ଓ ଶିକ୍ଷାପ୍ରେମ ନିମିତ୍ତ ରାଜପରିବାରରେ ବ୍ରହ୍ମା ଉପାଧି ପାଇଥିଲେ । ସେ ପଦ୍ୟାକାରରେ ସତ୍ୟନାରାୟଣ ବ୍ରତ କଥା ଲେଖିଥିଲେ । ଯଥେଷ୍ଟ ଜମିବାଡ଼ି ଥାଇ ସେ ଜଣେ ସ୍ୱଚ୍ଛଳ ଗୃହସ୍ଥ ଥିଲେ । ୧୮୫୫ରେ ତାଂକ ୨ୟ ପୁତ୍ର ବଳଭଦ୍ର ଜନ୍ମଗ୍ରହଣ କରିଥିଲେ । ସେ ଯୁଗରେ ଉଚ୍ଚ ଶିକ୍ଷା ଓଡ଼ିଆ

ଭାଗବତ, ପୁରାଣ, ମହାଭାରତ, ରାମାୟଣ, ହରିବଂଶ ଆଦି ପାଠରେ ସୀମିତ ଥିଲା। ଏହି ପୋଥି ସବୁଥିଲା ଜ୍ଞାନର ଭଂଡାର। ମାତ୍ର ବ୍ୟକ୍ତିଗତ ଆଚରଣ ବିଷୟରେ ସେମାନେ ବିଶେଷ ସଚେତନ ଥିଲେ। ସେମାନେ ଜାଣୁଥିଲେ ଆଚାରେ ଶୁଚି, ବିଚାରେ ପଂଡିତ।' ପ୍ରତିଦିନ ନିଜ ଘରେ ଠାକୁରଂକର ନିୟମିତ ପୂଜା, ଭୋଗ, ସ୍ୱପାକ ଭୋଜନ, ନିୟମିତ ଧର୍ମଗ୍ରଂଥ ପାଠ (ସ୍ୱାଧ୍ୟାୟ) ଅତିଥି ଅଭ୍ୟାଗତମାନଂକର ସତ୍‌କାର, ଭିକ୍ଷୁକମାନଂକୁ ଦାନ ପର୍ବ ପର୍ବାଣିରେ ନବବସ୍ତ୍ର ପରିଧାନ ସହିତ ବାଲ୍ୟ ବିବାହ ବ୍ରାହ୍ମଣ୍ୟ ଧର୍ମର ପବିତ୍ର କର୍ତବ୍ୟ ବୋଲି ଧରାଯାଉଥିଲା। ଦଲାଇପଡ଼ାରେ ସହରର ଏକମାତ୍ର ଆଂଗ୍ଲୋ-ଭର୍ନାକୁଲାର ବିଦ୍ୟାଳୟ ଥିଲା। ସାତବର୍ଷ ବୟସରେ ବଳଭଦ୍ର ସେଠାରେ ନାମ ଲେଖାଇଥିଲେ। ପାଠ ସେଇଠି ସରିଲା। ତାଂକର ସମକାଳୀନ ଧରଣୀଧର ମିଶ୍ର କଲିକତା ଯାଇ ଏନ୍‌ଟ୍ରାନ୍‌ସ ପାସ୍ କଲେ। ବଳଭଦ୍ରଂକର ସତର ବର୍ଷ ବୟସରେ ବିବାହ ହୁଏ। ଶ୍ୱଶୁର ସତ୍ୟବାଦୀ ପାଢ଼ୀ ତହସିଲଦାର ଥିଲେ। ସଂବଲପୁରକୁ ଛପାବହି ସେତେବେଳକୁ ଆସିଲାଣି। ଶ୍ୱଶୁର ମଗାଉଥିବା ଅନେକ ବଂଗଳା, ହିଂଦି, ପାରସୀ ଓ ଇଂରେଜୀ ବହି ଓ ମାସିକ, ସାପ୍ତାହିକ ପତ୍ର ପତ୍ରିକା ପଢ଼ିବାରେ ସେ ବିଶେଷ ଆଗ୍ରହୀ ହେଲେ। ଜଣେ ଆଦର୍ଶ ଗୃହସ୍ଥ ଭାବରେ ପ୍ରତ୍ୟହ ଅତିଥି ଅଭ୍ୟାଗତ ଚର୍ଚ୍ଚା ତାଂକର କାର୍ଯ ଥିଲା। ୧୮୯୯ରେ ସଂବଲପୁର ଜିଲ୍ଲାରେ ଅନାବୃଷ୍ଟି ଫଳରେ ଦୁର୍ଭିକ୍ଷ ପଡ଼ିଲା। 'ନଅଂକ ଦୁର୍ଭିକ୍ଷ' ପରି ଏହା ଛପନ ସାଲର 'କଂଗାଲି' ବା 'ଛପନ ସାଲ' ବୋଲି ପରିଚିତ। ଏହି ସମୟରେ ସରକାର ଓ ଖ୍ରୀଷ୍ଟିଆନ ମିସନାରିମାନେ ଅନ୍ନଛତ୍ର ଖୋଲି କଂଗାଳିମାନଂକୁ ଖୁଆଉଥିଲେ। ବଳଭଦ୍ର ଏହି ସମୟରେ ଏକ ଅନ୍ନଛତ୍ର ସ୍ଥାପନ କଲେ। ପ୍ରାଣରକ୍ଷା ସହିତ ବିଧର୍ମୀମାନଂକ ଖାଦ୍ୟଖାଇ ଧର୍ମ ହାନିରୁ ରକ୍ଷା କରିବା ଉଦ୍ଦେଶ୍ୟ ଥିଲା। ଦାନ କରିବାକୁ ବଳଭଦ୍ର ଶତହସ୍ତ ଥିଲେ। ବିଦ୍ୟାଦାନ ଅନ୍ନଦାନ ଓ ଜଳଦାନ ଆଦି ସାଧାରଣ କାର୍ଯରେ ଅର୍ଥ ବ୍ୟୟରେ ମଧ୍ୟ ସେ ମୁକ୍ତ ହସ୍ତ ଥିଲେ। ବିଦ୍ୟାର୍ଥୀମାନଂକୁ ଖାଦ୍ୟ ପୁସ୍ତକ ଓ ବେତନ ଯୋଗାଇ ସେ ବିଦ୍ୟାଦାନ କରୁଥିଲେ। ଅଂତତଃ ପାଂଚଜଣ ଅତିଥିଂକୁ ଅନ୍ନ ଭୋଜନ ପ୍ରତ୍ୟହ ନ କରାଇଲେ ସେ ନିଜେ ଖାଉ ନଥିଲେ। ଖରାଦିନେ ରାସ୍ତାରେ ଯାଉଥିବା ବାଟୋଇମାନଂକ ତୃଷା ନିବାରଣ ନିମିତ୍ତ ସେ ପଥଧାରରେ କୂପ ଓ ପୁଷ୍କରିଣୀ ଖୋଳାଇଥିଲେ ଓ କେତେକ ପୁରାତନ ଜଳାଧାରର ଜୀର୍ଣ ସଂସ୍କାର କରାଇଥିଲେ। ବୈଶାଖ ଜ୍ୟେଷ୍ଠମାସରେ ପାନୀୟ ଜଳ ଯୋଗାଇଦେବାକୁ ସେ ବିଶାଳ ବୃକ୍ଷ ଦେଖି ଛାୟାତଳେ ଜଳଛତ୍ର ଖୋଲୁଥିଲେ। ମହାନଦୀରେ ଘାଟ ନିର୍ମାଣ ବ୍ୟତୀତ ବ୍ରହ୍ମପୁର ମଂଦିରର ସଂସ୍କାର ପାଇ ସେ ଅର୍ଥ ଦାନ କରିଥିବାର ଜଣାଯାଏ। ପରଣଗାଁରେ ଦେବ ମଂଦିର ନିର୍ମାଣ, ଭୁଲକାରେ ପୁଷ୍କରିଣୀ ଖନନ, ପଦ୍ମପୁର ଚଂଦ୍ରପୁର ମାନେଶ୍ୱର ହୁମା ଆଦି ସ୍ଥାନରେ ମଂଦିରର ଜୀର୍ଣ ସଂସ୍କାର ତାଂକ କୀର୍ତ୍ତିର ମୂକ ସାକ୍ଷୀ। ରେଢ଼ାଖୋଲ ରାଜ୍ୟ ଜିଲ୍ଲା ବାହାରେ। ସେଠାରେ ସାପକୁରୀ ଗ୍ରାମରେ ସେ ସବୁରି ଅଜ୍ଞାତରେ ଏକ

ପୁଷ୍କରିଣୀ ଖୋଳାଇଥିଲେ। ଏହା ଗୁପ୍ତଦାନର ଉଦାହରଣ। ତାଂକ ମୃତ୍ୟୁପରେ ଏହା ଜଣାପଡିଲା।

୧୯୮୫ରେ ଯେତେବେଳେ ସଂବଲପୁର ଜିଲ୍ଲାରୁ ଓଡ଼ିଆ ଭାଷା ଉଠାଇ ଦେବାର ଉଦ୍ୟମ ହେଲା ଏହାର ଘୋର ପ୍ରତିବାଦ ଓ ଆଂଦୋଳନ ନିମିତ୍ତ ସେ ଅନ୍ୟ କେତେଜଣ ସଚେତନ ଧନାଢ଼୍ୟ ବ୍ୟକ୍ତିଂକ ସହିତ ସାମିଲ ହେଲେ। ସେ ମଧ୍ୟ ଥିଲେ ଜଣେ ସିମଳା ଯାତ୍ରୀ। ଅନେକ ଶିକ୍ଷାପ୍ରୟାସୀ ଛାତ୍ରଂକୁ ସେ ନିଜ ଘରେ ରଖି ପାଠ ପଢ଼ିବାର ସୁଯୋଗ ଦେଉଥିଲେ।

ବଳଭଦ୍ରଂକର ତିନିପୁଅ। ଜନାର୍ଦ୍ଦନ ସଂବଲପୁରର ସାଂସଦ ଶ୍ରଦ୍ଧାକରଂକର ପିତା ଥିଲେ । ରାୟସାହେବ ପ୍ରଦ୍ୟୁମ୍ନ ସୁପକାର ତାଂକର ୨ୟ ପୁତ୍ର। ପ୍ରଦ୍ୟୁମ୍ନଂକର ବିବାହ ପରେ ମଦନମୋହନ ମିଶ୍ର ବଳଭଦ୍ରଂକର ସମୁଧି ହେଲେ। ଦୀର୍ଘଦିନ ଧରି ପ୍ରଦ୍ୟୁମ୍ନ ମୁନିସିପାଲଟିର ସଭ୍ୟ ଓ ଭାଇସ୍ ଚେୟାରମେନ୍ ଥିଲେ। ସଂବଲପୁରକୁ ସେ ପ୍ରଥମେ ପେଟ୍ରୋମାକ୍ସ ଆଲୁଅ ଓ ମୋଟର୍ ସାଇକଲ୍ ଆଣିଥିଲେ। ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ସଂବଲପୁରରେ ଡକାଇବାକୁ ବଳଭଦ୍ର ଉଦ୍ୟମ କଲେ। ଚଂଦ୍ରଶେଖର ବେହେରା ତାଂକୁ ସମର୍ଥନ କଲେ। ୧୯୧୪ରେ ସମ୍ମିଳନୀ ପାରଳାଖେମୁଂଡିରେ ବସିଥିଲା। ଏହି ବାର୍ଷିକ ଅଧିବେଶନରେ ସଂବଲପୁରର ପ୍ରତିନିଧିମାନଂକ ମଧ୍ୟରୁ ଦାଶରଥି ମିଶ୍ର ସଂବଲପୁରର ଏହି ନିମଂତ୍ରଣ ଦେଲେ ଓ ଏହା ଗୃହୀତ ହେଲା। ୧୯୧୫ ଡିସେଂବର ୨୭ ଓ ୨୮ ତାରିଖରେ ସଂବଲପୁରରେ ବୁଢ଼ାରାଜା ନିକଟରେ ବିଶେଷ ବ୍ୟବସ୍ଥା କରାଯାଇ ସମ୍ମିଳନୀ ଅଧିବେଶନ ବସିଲା। ତାଂକ ଉଦ୍ୟମର ସଫଳତା ନିମିତ୍ତ ସେ ଅତ୍ୟଂତ ଖୁସି ହୋଇ ଗୋଟିଏ ଦିନ ବ୍ରହ୍ମପୁରା ମଂଦିରରେ ବିଶେଷ ଭୋଗ ପ୍ରସ୍ତୁତ କରି ସେଥିରେ ପ୍ରତିନିଧିମାନଂକୁ ଆପ୍ୟାୟିତ କଲେ। ୨୯ ତାରିଖ ଦିନ ଛାତ୍ର ସମ୍ମିଳନୀ ବସିଲା। ପୂର୍ବାହ୍ଣରେ ସେ ନିଜର ଦୈନଂଦିନ ସେବାପୂଜା ପୂର୍ବାଚରିତ ନିୟମରେ କଲେ। ଲିଆଖାଇ ମଂଦିରଟି ଦଲେଇ ପଡ଼ାରେ। ଏହାର ସେବକ ତାଂକୁ ତୁଳସୀ ଓ ପାଦୁକ ଦେବାକୁ ପହଂଚିଲେ। ତାହା ସେବନ କରି ବଳଭଦ୍ର ନିଜ ପୁତ୍ରମାନଂକୁ ପାଖକୁ ଡାକି ସେମାନଂକୁ ଉପଦେଶ ଦେଲେ ଓ ନିଜର ପ୍ରାଣତ୍ୟାଗ ଆସନ୍ନ ବୋଲି ଜଣାଇଲେ। ଜପମାଳି ଧରି ମାଳା ଗଡ଼ାଉଥିବାବେଳେ 'ହେ ଜଗନ୍ନାଥ ହେ ରଘୁପତି ରାମ' ଉଚ୍ଚାରଣ କରି ହିଂଦୁର ଚିର ଇପ୍‌ସିତ ବିନା କ୍ଳେଶରେ ମରଣ ବରଣ କଲେ। ତାଂକ ଉପଦେଶ ଅନୁସାରେ ତାଂକ ବିଧବା ପତ୍ନୀ ଓ ପୁତ୍ରମାନେ ଅନାଥ ଓ ଭିକ୍ଷୁକ ସେବା ସହିତ ଅତିଥି ଚର୍ଚ୍ଚା ଜାରି ରଖିଥିଲେ। ଜଣେ ଧର୍ମାତ୍ମା ଓ ଭାଷା ପ୍ରେମୀ ଭାବରେ ସେ ନିଜ କାର୍ଯ୍ୟପାଇଁ ସ୍ମରଣୀୟ ହୋଇ ରହିଲେ।





# ମହଂତ ମହାରାଜ
# ବିହାରୀ ଦାସ

ଭାଷା ଆଂଦୋଳନର ନେତୃସ୍ଥାନୀୟ ବ୍ୟକ୍ତିମାନଂକ ମଧ୍ୟରେ ଥିଲେ ଗୋପାଳଜି ମଠର ମହଂତ ମହାରାଜ ବିହାରୀ ଦାସ। ୧୮୬୫ ଶ୍ରାବଣ କୃଷ୍ଣ ପଂଚମୀ ଦିନ ସେ ଜନ୍ମଗ୍ରହଣ କରିଥିଲେ। ତାଂକର ପୂର୍ବାଶ୍ରମର ନାମ ଥିଲା ଶତ୍ରୁଘ୍ନ ତ୍ରିପାଠୀ। ଘରଥିଲା ସଂବଲପୁର ସଦରଥାନାର ଇବନଦୀ କୂଳର ଲରବଂଗା ଗ୍ରାମରେ। ପିତା ଦୁର୍ଗାନଂଦ ଓ ମାତାଂକ ନାମ ପ୍ରତିମା ଦେବୀ। ଶତ୍ରୁଘ୍ନ ବାପା ମାଆଂକର ତୃତୀୟ ସଂତାନ। ଦୁର୍ଗାନଂଦ ବାଲ୍ୟ କାଳରୁ ସଂତାନମାନଂକର ଶିକ୍ଷା ଓ ଚରିତ୍ର ଗଠନ ଦିଗରେ ବିଶେଷ ମନୋନିବେଶ କରୁଥିଲେ। ଅଷ୍ଟମ ବର୍ଷ ବୟସରେ ଶତ୍ରୁଘ୍ନଂକର ବ୍ରତ ଉପନୟନ ସମାପ୍ତ ହେଲା। ଏହା ପରେ ସହରର ଗୋପାଳଜି ମଠର ମହଂତ ଗୋପାଳ ଦାସଂକ ଠାରୁ ସେ ଦୀକ୍ଷା ଗ୍ରହଣ କଲେ ଓ ତାଂକର ଶିଷ୍ୟ ହୋଇ ମଠରେ ରହିଲେ । ସଂବଲପୁର ଜିଲ୍ଲା ସ୍କୁଲରେ ସେ ବିଦ୍ୟା ଅଧ୍ୟୟନ କଲେ। ମହଂତଂକ ବୈକୁଂଠ ପ୍ରାପ୍ତି ଉତ୍ତାରେ ଶତ୍ରୁଘ୍ନ ମଠର ଗାଦିରେ ବସିଲେ ଓ ତାଂକର ନାମ ବିହାରୀ ଦାସ ରଖାଗଲା। ଗୋପାଳଜି ମଠର ମହଂତମାନେ ନିଂବାର୍କ ସଂପ୍ରଦାୟ ଭୁକ୍ତ ଥିଲେ। ମହଂତ ବିହାରୀ ଦାସ ମଠର ଶିଷ୍ୟ ପରଂପରା ଅନୁସାରେ

ଦଶମ ମହଂତ ଥିଲେ। ମଠର ମୂଳ ସ୍ଥାପୟିତାଂକ ନାମ ମଧ୍ୟ ବିହାରୀ ଦାସ ଥିବାର ଜଣାଯାଏ। ମହଂତ ହେବା ପରେ ବିହାରୀ ଦାସ ମଠର ବଂଶ ପରଂପରା ନିଜ ଲିଖିତ ଅଧ୍ୟାତ୍ମ୍ ସାହିତ୍ୟରେ ବର୍ଣନା କରିଅଛଂତି। ସେ ଲେଖିଛଂତି ''କହିଲି ଦ୍ୱିତୀୟ ଜଣ ଶ୍ରୀ ବିହାରୀ ଦାସ। ମଠ ସଂସ୍ଥାପକ ହୋଇ ପ୍ରାପ୍ତ କଲେ ବାସ

ଯେ ପୁରୁଷ ନିଂବଅର୍କ ପାନେ ହୋଇ ତୋଷ
ସାରୂପ୍ୟଭକ୍ତିରେ ମୁକ୍ତି ଦ୍ୱାରକୁ ପ୍ରକାଶ
ସେ ମୁକ୍ତି ପସରା ପ୍ରକାଶିଲେ ଏ ସଂସାର
ନିଂବାର୍କ ସଂପ୍ରଦା ବହୁହେଲା ସେ ପ୍ରଚାର''

ମହଂତ ବିହାରୀ ଦାସ ଜୀବଦ୍ଦଶାରେ କେତେଖଂଡ ଅଧ୍ୟାତ୍ମ ସାହିତ୍ୟ କବିତା ଆକାରରେ ରଚନା କରିଥିଲେ। ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଂକର ଗଭୀର ଅନୁରାଗ ଏଥିରୁ ପ୍ରତିଭାତ ହୁଏ। ତାଂକର ପ୍ରଥମ କବିତା ପୁସ୍ତକ ଅଧ୍ୟାତ୍ମ ଚିଂତା ୧୯୦୨ରେ ସଂବଲପୁରର ଫ୍ରେଜର ପ୍ରେସରେ ଛପାଯାଇ ପ୍ରକାଶିତ ହେଲା। ମାନବ ସମାଜର ଆଧ୍ୟାତ୍ମ୍ୟ ଚିଂତାର ବହୁଳ ପ୍ରଚାର ମଠାଧୀଶମାନଂକର ପରମ କର୍ତବ୍ୟ। ମହଂତ ବିହାରୀ ଦାସ ତାଂକର ୩୭ ବର୍ଷ ବୟସରୁ ଏ ଦିଗରେ ମତି ବଳାଇ ୧୯୦୨ ରୁ ୧୯୨୪ ମଧ୍ୟରେ ଅନେକ ଭକ୍ତି ମୂଳକ, ବୈରାଗ୍ୟସୂଚକ କବିତା ଓ ସଂଗୀତ ରଚନା କରିଥିଲେ। ପୁସ୍ତିକାକାରରେ ଏହି ସଂଗୀତ ଓ କବିତା ମାନ ତାଂକ ଜୀବନକାଳ ମଧ୍ୟରେ ପ୍ରକାଶିତ ହୋଇଥିଲା। ଏଥିରେ ନିହିତ ଗୁଢ ଭାବ ଓ ତତ୍ତ୍ୱାର୍ଥ ଅତ୍ୟଂତ କ୍ଲିଷ୍ଟ ଥିବାରୁ ଏହା ଲୋକପ୍ରିୟ ହୋଇ ପାରି ନଥିଲା। ତାଂକ ମୃତ୍ୟୁ ପରେ ଏହି ଅମୂଲ୍ୟ ସାହିତ୍ୟ କୃତି ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଛି। କବି ନିଜେ କବିତା ବା ସଂଗୀତରେ ଗୂଢ଼ାର୍ଥ ସୂଚକ ଅର୍ଥର ବାଖ୍ୟା ଦେଇଥିଲେ ହୁଏତ ଏହା ସୁଖପାଠ୍ୟ ଓ ଲୋକପ୍ରିୟ ହୋଇ ପାରିଥାଂତା।

''ସୁଜନେ ହୋ, ବାଲିରେଣୁ ମହାବଂଧ
ଦୋମୁହାଁ ସର୍ପକୁ ଭୟ ନ କରିଣ ବେଂଗ ଚଢ଼େ ଗଜ କଂଧ।
ଅଂଡିରା ହଂସ ଯେ ଡିଂବେକ ପାରିଛି
ତା ମଧ୍ୟେ ଯୋଡ଼ିଏ ଛୁଆ।
ଆଡ଼କରେ ଜଳ ଆଡ଼କେ ଅନଳ
ଦେଖିହେଲି ଅଚାହୁଆ ।।୧।।
ତଂତୀ ବାପୁଡ଼ାକୁ ତଂତ ଗିଳିଗଲା
ଚଷାକୁ ଗିଳେ ଲଂଗଳ
ସପତ ସମୁଦ୍ର କୂର୍ମ ଗିଳିଗଲା
ବୃକ୍ଷକୁ ଗିଳିଲା ଫଳ।

ଷଡ଼ମୁଖୀ ଗାଈ ଦୁଧ ପହ୍ନାଉଛି
ବାଛୁରୀ ପିଉଛି ଲାଂଜ,
ସାତ ପୋଏ ସ୍ତିରୀ ନାମ ନ ପଡ଼ିଲା
ସଂସାର ବୋଲୁଛି ବାଂଝ।
ଜାଣିବା ଲୋକକୁ ଦାଂତ ପଡ଼ିଅଛି
ନ ଜାଣିବା ଲୋକ ଅଂଧ,
ଭାବରେ ଭଣିଲେ ଶ୍ରୀ ଅଚ୍ୟୁତ ଦାସ
ଦୟା କଲେ ଆଦିକଂଦ।''

ମହଂତ ବିହାରୀ ଦାସ ସେହିପରି ତାଂକର ଆଧ୍ୟାତ୍ମ ସାହିତ୍ୟରେ ଅନେକ ଦାର୍ଶନିକ ପ୍ରହେଳିକା ସୃଷ୍ଟି କରି ଅଛଂତି ଯାହାର ଅର୍ଥ ପାରିପାର୍ଶ୍ୱିକ ବ୍ୟାଖ୍ୟା ବିନା ବୁଝିବା ଓ ହୃଦୟଂଗମ କରିବା ଅସଂଭବ।

ସୌରମଂଡଳର ଦ୍ୱାଦଶ ରାଶିକୁ ଲଗାଇ ମହଂତ ମହାରାଜ 'ଉପଦେଶ' କବିତାରେ ଲେଖିଛଂତି ।

ମେଷ ମୁଂଡପ୍ରାୟ ତୁଂଡ ତୁଂଭ ହୁଏ
ବୃଷ ପ୍ରାୟ ବହିଅଛ ମତି
ମିଥୁନରେ ମାତି ଥାଇ ଦିବାରାତି
କକଡା ରସକୁ କରି ଆଶ
ସିଂହ ପ୍ରାୟ ବଳ ଦେଖାଅ ସକଳ
କନ୍ୟାରେ ଲଗାଉଛ ମାନସ
ତୁଳ ଭାବକୁ ଯେ ଦେଖି ଉଲ୍ଲସାଉ ଥାଅ ବୁକୁ
ବିଛା ଯେ କନ୍ଦର୍ପ ଭାଂଗି ତୁଂଭ ଦର୍ପ
ବଢ଼ାଉଛି ସେ ନିଜ ଭାବକୁ
ଧନୁର ପ୍ରଚାର ଭାବିଲେ ମୋହର
ସଂଶୟ ହେଉଥାଏ ଯେ ମନ
x x x x
କୁଂଭକୁ ଯେ ଦେଖ କରିଣ ବିବେକ
କୁଂଭ ଜଳପୂର୍ଣ ରହୁଥାଏ
ଢଳି ଗଲେ ଜଳ ହେଲେ ରସାତଳ
ଆଉ କି ସେ କୁଂଭ ଶୋଭାପାଏ।

ଏହି ଜୀବନ ଯେ କୁଂଭେ ଜଳ ପୂର୍ଣ ପ୍ରାୟେ ଜାଣ
ଯେବେ ଢଳିଯିବ ଆଉ କି ଚାହିଁବ
ଦେଖି ମାୟା ଏ ଭୁବନ।

ସଂଗୀତ ରଚନାରେ ମହଂତ ମହାରାଜାଂକର ଅନୁରାଗ ହେତୁ ସେ ବନ ବିହାର ଚଂପୁ ଗୀତିକବିତା ରଚନା କରିଥିଲେ। କବିସୂର୍ଯ ବଳଦେବ ଯେପରି ରାଧାକୃଷ୍ଣଂକର ପ୍ରେମ ବର୍ଣନା କରିବାକୁ କିଶୋର ଚଂଦ୍ରାନଂଦ ଚଂପୂ ରଚନା କରିଥିଲେ, ଓ ପ୍ରତି ଅକ୍ଷରରେ ଏକ ସଂଗୀତ 'କ' ଠାରୁ 'କ୍ଷ' ଅକ୍ଷର ଯାଏ ଲେଖିଥିଲେ ସେ ସେହିପରି ବନବିହାରଚଂପୂକୁ ରଚନା କରିଥିଲେ। ଗଦ୍ୟ ପଦ୍ୟାଂଶ୍ରିତ କବିତା ଚଂପୂ ନାମରେ ଖ୍ୟାତ ମାତ୍ର ମହଂତ ମହାରାଜାଂକର ଚଂପୂରେ ଗଦ୍ୟାଂଶ ଆଦୌ ରଖାଯାଇନାହିଁ ମାତ୍ର ଏହା ''କ' ଅକ୍ଷରରେ ଆରଂଭ ହୋଇ 'କ୍ଷ' ଅକ୍ଷରରେ ଶେଷ କରାଯାଇଅଛି। କିଶୋର ଚଂଦ୍ରାନଂଦ ଚଂପୂର ସଂଗୀତ ଲୋକପ୍ରିୟ କରିବାରେ ଆକାଶବାଣୀର ଉଦ୍ୟମ ପ୍ରଶଂସନୀୟ, ମାତ୍ର ବନବିହାରଚଂପୂର ଗୀତମାନ ଏ ପର୍ଯଂତ ଗାନ କରାଯାଇ ଆକାଶବାଣୀ ଜରିଆରେ ବା ଅନ୍ୟସୂତ୍ରେ ପ୍ରଚାରିତ ହୋଇ ନ ଥିବା ଦୁର୍ଭାଗ୍ୟଜନକ।

୧୯୨୪ରେ ମହଂତ ମହାରାଜଂକର 'ଚଉତିଶା ହାର' ପ୍ରକାଶିତ ହେଲା। ଏହି ହାରରେ ନଅଟି ଚଉତିଶା ଗ୍ରଂଥାଯାଇଅଛି। ଜଗନ୍ନାଥ ପୁରୀ ଚଉତିଶା ଆଦି ଏହି ଚଉତିଶା ହାରରେ ରଖାଯାଇଅଛି। କେବଳ ଗୋସେବା ଚଉତିଶାକୁ ଛାଡିଦେଲେ ଅନ୍ୟଗୁଡିକ ଭକ୍ତି ମୂଳକ ରଚନା। ଗୋସେବା ଚଉତିଶାରେ ଗୋପାଳନ ଓ ଗୋହତ୍ୟା ନିରୋଧ ବର୍ଣନା କରାଯାଇଅଛି। ନିଶାଖୋର ଚଉତିଶାରେ ମଦ, ଗଂଜେଇ, ଭାଂଗ, ଅଫିମ ଆଦି ନିଶାଦ୍ରବ୍ୟ ସେବନ କଲେ ନିଶାସେବନକାରୀର କି ଦୁର୍ଦଶା ହୁଏ ତାହା ଦର୍ଶାଯାଇ ଏହା ସେବନ ନ କରିବାକୁ ସତର୍କ କରାଯାଇଅଛି। ଏହି କାର୍ଯ୍ୟ ବର୍ଣନାକୁ ନିଶା ନିବାରଣ ଚଉତିଶା ନାମ ବିଶେଷ ସମୀଚୀନ ହୋଇଥାଆଂତା। ମହଂତ ମହାରାଜ ହନୁମାନ ଚାଳିଶା, ନରସିଂହ ଗୀତା ଆଦି ଆଉ କେତେଖଂଡ କବିତା ପୁସ୍ତକ ଲେଖିଥିଲେ। ତାଂକର ସାହିତ୍ୟିକ କୃତି ବିଶେଷ ପ୍ରଚାରିତ ନହୋଇ ରହିଗଲା। ଏହାର ପ୍ରଧାନ କାରଣ ଓଡ଼ିଶାର ତତ୍‌କାଳୀନ ସାହିତ୍ୟ ଚର୍ଚ୍ଚାର କେଂଦ୍ର କଟକ ସହରଠାରୁ ସେ ଦୂରରେ ରହୁଥିଲେ।

୧୮୯୯ ଓ ୧୯୦୦ ରେ ସଂବଲପୁର ଜିଲ୍ଲାରେ ଯେଉଁ ଛପନ ସାଲର କଂଗାଲି (ଦୁର୍ଭିକ୍ଷ) ଦେଖାଯାଇଥିଲା ସେତେବେଳେ ମହଂତ ମହାରାଜାଂକର ଆନୁଷ୍ଠାନିକ ଭାବେ ଅନ୍ନଛତ୍ର ଖୋଲି ଦରିଦ୍ର ପୀଡ଼ିତ ଜନସାଧାରଣଂକର ସେବା ସ୍ମରଣୀୟ। ଖାଲି ଜିଲ୍ଲାରୁ ନୁହେଁ ପାର୍ଶ୍ୱବର୍ତୀ ଗଡ଼ଜାତମାନଂକରୁ ମଧ୍ୟ ଲୋକେ ଅନ୍ନଦାନର ସୁବିଧା ଜାଣି ସହରକୁ

ଧାଇଁ ଆସିଲେ। କଂଗାଳି ସହିତ କୁଖାଦ୍ୟ ଓ ଅଖାଦ୍ୟ ସେବନ, ଦୂଷିତ ଜଳପାନ ଫଳରେ କଲେରା ମହାମାରୀ ଦେଖାଗଲା। ମିସନାରିମାନେ ସାହାଯ୍ୟ ଦେବାକୁ ଆଗେଇ ଆସିଥିଲେ ମାତ୍ର ଏହା ଫଳରେ କୁଳ ଧର୍ମ ଓ ସମାଜ ତ୍ୟାଗର ଭୟ ରହିଥିଲା। ମାନବିକତାରେ ଅନୁପ୍ରାଣୀତ ହୋଇ ମହଂତ ମହାରାଜ ନିଜ ଉଦ୍ୟମରେ ଅନ୍ନଛତ୍ର ମାନ ଖୋଲି ସେଠାରେ ଲୋକମାନଂକର ଖାଦ୍ୟ ଓ ପାନୀୟ ବ୍ୟବସ୍ଥା କରି ସମସ୍ତଂକର କୃତଜ୍ଞତାର ପାତ୍ର ହୋଇଥିଲେ। ଫଳରେ ସେ ସଂବଲପୁରର ଜଣେ ନିସ୍ୱାର୍ଥ ଅପ୍ରତିଦ୍ୱଂଦ୍ୱୀ ଜନସେବକ ଭାବରେ ପରିଗଣିତ ହେଲେ। ଭାଷା ଆଂଦୋଳନରେ ତାଂକୁ ନେତାରୂପେ ଗ୍ରହଣ କରାଗଲା। ୧୯୦୧ରେ ନାଗପୁର ଓ ପରେ ସିମଳା ଯିବା ପ୍ରତିନିଧି ଦଳର ସେ ନେତୃତ୍ୱ ଗ୍ରହଣ କରିଥିଲେ। ଜଣେ ଗୃହତ୍ୟାଗୀ ସନ୍ୟାସୀ ଥାଇ ମଧ୍ୟ କେବଳ ପରଜନ୍ମର ଚିଂତା ବା ଭଗବଦ୍ ଆଲୋଚନା ଗ୍ରଂଥପାଠ ଓ ଚର୍ଚାରେ ନିଜକୁ ନିୟୋଜିତ ନକରି ଦରିଦ୍ରମାନଂକରେ ଆର୍ତହରଣରେ ଭଗବାନଂକର ଉତ୍କୃଷ୍ଟ ସେବା ହୋଇପାରେ ଏହି ଜ୍ଞାନ ତାଂକୁ ବିଶେଷ ସାମାଜିକ ପ୍ରତିଷ୍ଠା ଓ ପ୍ରତିପତ୍ତି ଆଣିଥିଲା। ସମଗ୍ର ପ୍ରାକୃତିକ ଓଡ଼ିଶାର ଏପ୍ରକାର ଚିଂତାଧାରା ସଂପୂର୍ଣ ନୂତନ ଥିଲା। ଗୋପାଳଜି ମଠର ଏହି ପରଂପରା ପରବର୍ତୀ କାଳରେ ମଧ୍ୟ ଅକ୍ଷୁର୍ଣ ରହିଛି।

ଶ୍ରୀପତି ମିଶ୍ର ସିମଳା ଯାତ୍ରାର ସବିଶେଷ ବିବରଣୀ ସହିତ ପ୍ରତିନିଧିମାନଂକ ମଧ୍ୟରୁ ମହଂତ ମହାରାଜ ବ୍ରଜମୋହନ ପଟ୍ଟନାୟକ କେବଳ ଚିଫ୍ କମିସନର ଆଂଡ୍ରୁ ଫ୍ରେଜରଂକ ବ୍ୟକ୍ତିଗତ ସଚିବଂକୁ ସାକ୍ଷାତ କରି ତାଂକର ସଂବଲପୁର ଆଗମନର ଶୁଭ ସଂବାଦ ଆଣିଥିଲେ ଏହା ବର୍ଣନା କରିଛଂତି। ପ୍ରତିନିଧି ମାନେ ସମସ୍ତେ ସ୍ୱଚ୍ଛଳ ଗୃହସ୍ଥ ଥିଲେ। ଏ ଦିଗରେ ମହଂତ ମହାରାଜାଂକର ଅର୍ଥବ୍ୟୟ ସେହିପରି ଯୁଗାଂତକାରୀ ଥିଲା।

ଫ୍ରେଜର ସାହେବଂକୁ କୃତଜ୍ଞତା ଜଣାଇ ସଂବଲପୁର ସହରରେ ଫ୍ରେଜର କ୍ଲବ ଓ ଫ୍ରେଜର ପ୍ରିଣ୍ଟିଂ କଂପାନି ଆନୁକୂଲ୍ୟରେ ଫ୍ରେଜର ପ୍ରେସ ସ୍ଥାପନ କରାଯାଇଥିଲା। ଉଭୟ ଅନୁଷ୍ଠାନରେ ଜଣେ ମୁଖ୍ୟ ଉଦ୍‌ଯୋକ୍ତା ଥିଲେ ମହଂତ ବିହାରୀ ଦାସ। ଫ୍ରେଜର ପ୍ରେସର ସେ ମୁଖ୍ୟ ଅଂଶୀଦାର ଥିଲେ ଓ ଦୀର୍ଘଦିନ ଧରି ଏହାର ଡିରେକ୍ଟର ଥାଇ ଏହାର ବିସ୍ତାର ନିମିତ୍ତ ଉଦ୍ୟମ କରିଥିଲେ। ୧୯୦୪ରେ କଟକରୁ ପ୍ରକାଶ ପାଉଥିବା ଉତ୍କଳ ସାହିତ୍ୟ ମାସିକ ପତ୍ରିକାରେ ସଂବଲପୁରରେ ଓଡ଼ିଆ ପ୍ରେସ ଓ ସଂବାଦ ପତ୍ର ଅଭାବର ସମାଲୋଚନା କରାଯାଇଥିଲା। ଫ୍ରେଜର ପ୍ରେସ ୧୯୦୨ରେ ସ୍ଥାପିତ ହୋଇଥିଲେ ମଧ୍ୟ କୌଣସି ସଂବାଦପତ୍ର ସଂବଲପୁରରୁ ପ୍ରକାଶିତ ହେଉ ନଥିଲା। ୧୯୦୫ ସେପ୍ଟେଂବରରେ ଶୁକଦେବ ପଂଡା, ଶ୍ୟାମସୁଂଦର ପୂଜାରୀ, ନଟବର ପୂଜାରୀ ଆଦି ବିଶିଷ୍ଟ ବ୍ୟକ୍ତିମାନଂକ ଉଦ୍ୟମରେ ଉତ୍କଳ ଦର୍ପଣ ପ୍ରେସ ପ୍ରତିଷ୍ଠା କରାଗଲା ଓ ସେଠାରୁ ଶ୍ରୀପତି ମିଶ୍ରଂକ ସଂପାଦନାରେ

'ଉତ୍କଳ ଦର୍ପଣ' ପ୍ରକାଶ ପାଇଥିଲା । ଏହା ସାପ୍ତାହିକ ପତ୍ରିକା ଥିଲା ଓ ହିଂଦି ଓଡ଼ିଆ ଦୁଇ ଭାଷାରେ ପ୍ରକାଶିତ ହେଉଥିଲା । ମହଂତ ବିହାରୀ ଦାସ ଏହାର ଆର୍ଥିକ ବ୍ୟୟ ଭାର ଆଂଶିକ ବହନ କରି ନିଜର ଭାଇ ବଳରାମ ତ୍ରିପାଠୀଂକୁ ଏହାର ଅଂଶୀଦାର ଭାବେ ରଖିଥିଲେ ଓ ସୁପରିଚାଳନା ପ୍ରତି ଦୃଷ୍ଟି ଦେଉଥିଲେ ।

ସଂବଲପୁର ସହରରେ ୧୯୧୫ ଡିସେଂବର ୨୭ ଓ ୨୮ ତାରିଖରେ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ ଅନୁଷ୍ଠିତ ହେବା ସମୟରେ ସେ ଅଭ୍ୟର୍ଥନା ସମିତିର ମୁଖ୍ୟ ସଭ୍ୟ ଥିଲେ । ସଂବଲପୁର ଜିଲ୍ଲାର ଅନେକ ଜମିଦାର ଓ ମୁଖ୍ୟ ବ୍ୟକ୍ତିମାନେ ତାଂକର ଶିଷ୍ୟ ଥିବାରୁ ସେ ସମ୍ମିଳନୀକୁ ସାଫଲ୍ୟ ମଂଡିତ କରିବାକୁ ସେମାନଂକର ଆର୍ଥିକ ଓ କାୟିକ ସହଯୋଗ ଲାଭରେ ସକ୍ଷମ ହୋଇଥିଲେ । ଏକଷଠି ବର୍ଷ ବୟସରେ ୧୯୨୬ ଜାନୁଆରି ୩୧ ଦିନ ମହଂତ ମହାରାଜ ଇହଲୀଳା ସଂବରଣ କଲେ । ସେ ନିଜ ସହୋଦର ବଳରାମ ତ୍ରିପାଠୀଂକର ପୁତ୍ର ନୀଳାଂବରଂକୁ ଶିଷ୍ୟ ଓ ଉତ୍ତରାଧିକାରୀ ରୂପେ ମନୋନୀତ କରି ତାଂକର ଶିକ୍ଷାର ସୁବଂଦୋବସ୍ତ କରିଥିଲେ । ୧୯୧୭ରୁ ନୀଳାଂବର ମଠରେ ରହି ପାରଂପରିକ ସଂସ୍କୃତ ଓ ଧର୍ମଶିକ୍ଷା ସହିତ ଜିଲ୍ଲା ସ୍କୁଲରେ ପାଠ ପଢିଥିଲେ । ୧୯୨୫ରେ ସେ ମହଂତ ମହାରାଜାଂକର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଉତ୍ତରାଧିକାରୀ ଭାବରେ ମନୋନୀତ ହୋଇଥିଲେ । ପରବର୍ତୀ କାଳରେ ସଂବଲପୁରର ସାମାଜିକ ଓ ସାଂସ୍କୃତିକ ଜୀବନକୁ ତାଂକର ସୁଯୋଗ୍ୟ ଉତ୍ତରାଧିକାରୀ ମଧ୍ୟ ଋଦ୍ଧିମଂତ କରି ରଖିଥିଲେ । ଭାଷା ଆଂଦୋଳନର ନେତୃତ୍ୱ ଆଧ୍ୟାତ୍ମିକ ସାହିତ୍ୟ ରଚନା, ଦୁଃଖୀ ରଂକିଂକର ସେବା ବ୍ୟତୀତ ମହଂତ ବିହାରୀ ଦାସ ଶିକ୍ଷାର ପ୍ରସାର ନିମିତ୍ତ ମଠର ଚାଷ ଗ୍ରାମ ସଂବଲପୁର ସହରର ଉପକଂଠ ରେମେଡ୍ ଗ୍ରାମରେ ୧୯୨୪ର ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏହା କାଳକ୍ରମେ ବୃଦ୍ଧି ଲାଭ କରି ମୁନିସିପାଲଟି ପରିଚାଳିତ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇ ଶିକ୍ଷା ପ୍ରସାରରେ ସହାୟକ ହୋଇ ଆସୁଅଛି । ବିଭିନ୍ନ ସ୍ଥାନରେ ମହଂତ ବିହାରୀ ଦାସ ପୁରାତନ ମଂଦିର ଓ ପୁଷ୍କରିଣୀମାନଂକର ଜୀର୍ଣ ସଂସ୍କାର କରି ଜନ ସେବାର ଆଦର୍ଶ ଦେଖାଇଥିଲେ । ସଂବଲପୁରରେ କ୍ରୀଡ଼ା ବିସ୍ତାର ଦିଗରେ ତାଂକର ଉଦ୍ୟମ ମଧ୍ୟ ସ୍ମରଣୀୟ ।

୧୯୩୪ରେ ମହଂତ ମହାରାଜାଂକର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ତାଂକ ଶିଷ୍ୟ କ୍ରୀଡା ଓ ସାହିତ୍ୟ ପ୍ରେମୀ ମହଂତ ନୀଳାଂବର ବ୍ୟବସ୍ଥା କରିଥିଲେ । ସଂବଲପୁର ଜିଲ୍ଲାସ୍କୁଲରୁ ହାଇସ୍କୁଲ ସାଟିଫିକେଟ ପରୀକ୍ଷାରେ ସଂସ୍କୃତରେ ସର୍ବୋଚ୍ଚ ନଂବର ରଖିଥିବା ଛାତ୍ରଂକୁ ତାଂକ ସ୍ମୃତିରେ ଏକ ପୁରସ୍କାର ପ୍ରଦତ୍ତ ହୋଇ ଆସୁଅଛି ।



''ମାତୃଭୂମି ମାତୃଭାଷାର ବଦନ
ଦୀପ୍ତ କର ଦେଇ ଧନ ଧ୍ୟାନ ମନ।
ଶୁଭ ପଥେ ବିଭୂ କରିବେ ମଙ୍ଗଳ
ଶୁଭକର୍ମେ ହେବ ଜୀବନ ସଫଳ।''
–ଗଙ୍ଗାଧର

# ଦେଶପ୍ରେମୀ
# ଦାଶରଥି ମିଶ୍ର

ସିମଳା ଯାତ୍ରୀର ଲେଖକ ଶ୍ରୀପତି ମିଶ୍ରଂକର ସାନଭାଇ ଥିଲେ ଦାଶରଥି ମିଶ୍ର। ତାଂକର ଜନ୍ମ ୧୮୭୪ରେ। ସଂବଲପୁର ଜିଲ୍ଲା ସ୍କୁଲରୁ ସେ ଏନଟ୍ରାନ୍‌ସ ପାସ କରିଥିଲେ ଓ ଜିଲ୍ଲାର ଡେପୁଟି କମିସନର ଅଫିସରେ କିରାଣି କାମ କରୁଥିଲେ। ଶ୍ରୀପତିଂକ ଠାରୁ ସେ ଦେଶପ୍ରେମ ଶିକ୍ଷା କରିଥିଲେ ଓ କଚେରିରେ କାମ କରିବା ସମୟରେ ହିଂଦି ଭାଷୀଂକର ଦୌରାତ୍ମ୍ୟ ସେ ଉପଲବ୍ଧି କରି ପାରିଥିଲେ। ଅଯୌକ୍ତିକ ଭାବରେ ହିଂଦି ପ୍ରଚଳନ ଫଳରେ ଓଡ଼ିଆମାନେ ନାନା ଅସୁବିଧା ଭୋଗୁଥିଲେ। ସେମାନେ ଜିଲ୍ଲା ପ୍ରଶାସନ ଆଗରେ ଏ ସଂକ୍ରାଂତରେ ଆପତ୍ତି ଦରଜ କରୁଥିଲେ ମାତ୍ର ଏହା ସାହେବ ଡେପୁଟି କମିସନରଂକ ନଜରକୁ ଆସିପାରୁ ନ ଥିଲା ଓ ଅଣ ଓଡ଼ିଆ ଅମଲାମାନେ ଏ କାଗଜସବୁ ଚାପି ଦେଉଥିଲେ। ଦାଶରଥି ନିଜ ବଡ଼ଭାଇ ଶ୍ରୀପତି ଓ ସଂବଲପୁରର ଜାତୀୟତାବାଦୀ ନେତା ଚଂଦ୍ରଶେଖର ବେହେରାଂକୁ ଏହି ଷଡ଼ଯଂତ୍ରର ସୂତ୍ର ଜଣାଇ ଦେଉଥିଲେ। ଫଳରେ ସେମାନଂକର ଚକ୍ରାଂତ ପଂଡ ହେବା ଅଣ ଓଡ଼ିଆ ଅମଲାମାନେ ଉପଲବ୍ଧି କଲେ। ଦାଶରଥିଂକୁ କୈଫିୟତ ତଲବ କରାଗଲା। ସେ ନିଜର ମର୍ଯାଦା ରକ୍ଷାପାଇ ଚାକିରିରୁ ଇସ୍ତଫା ଦେଲେ। ଏହା

ପରେ ସେ ରେଢ଼ାଖୋଲ ରାଜାଂକର ପ୍ରାଇଭେଟ ସେକ୍ରେଟାରୀ ଭାବରେ ନିଯୁକ୍ତି ପାଇଲେ। କିଛିଦିନ ପରେ ଏହି ଚାକିରି ମଧ୍ୟ ସେ ଛାଡ଼ିଦେଲେ ଓ ଜିଲ୍ଲାରେ କାଠ ବ୍ୟବସାୟ ଆରଂଭ କଲେ। ସବୁ ପ୍ରକାର ସାମାଜିକ ଓ ରାଜନୈତିକ ଆଂଦୋଳନରେ ସେ ନିଜକୁ ସାମିଲ କଲେ। ଚଂଦ୍ରଶେଖର ବେହେରାଂକୁ ନିଜର ରାଜନୈତିକ ଗୁରୁ ଭାବରେ ଗ୍ରହଣ କରି ସେ କଂଗ୍ରେସରେ ଯୋଗଦେଲେ ଓ ତାଂକ ସହିତ ଧରଣୀଧର ମିଶ୍ରଂକୁ ଧରି କଂଗ୍ରେସର ୧୯୨୦ ନାଗପୁର ଅଧିବେଶନରେ ଯୋଗଦେଇଥିଲେ। ସେ ଯୁଗରେ ଅତି ଅଳ୍ପ ସଂଖ୍ୟକ ଯୁବକଂକୁ ଏ ପ୍ରକାର ସୌଭାଗ୍ୟ ମିଳିଥିଲା। ୧୯୨୧ରେ କଂଗ୍ରେସର ଅସହଯୋଗ ଆଂଦୋଳନ ସମୟରେ ଦାଶରଥି ଚଂଦ୍ରଶେଖରଂକର ପ୍ରଧାନ ସହକର୍ମୀ ଓ ସମର୍ଥକ ଥିଲେ। ଉତ୍କଳ ସମ୍ମିଳନୀ ସହିତ ମଧ୍ୟ ସେ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ। ନିଜର ବ୍ୟବସାୟ ସଂକ୍ରାଂତରେ ସେ ୧୯୨୪ରୁ ସଂବଲପୁରରେ ଅନୁପସ୍ଥିତ ଥାଇ ପ୍ରଦେଶ ଗଠନ କାର୍ଯରେ ଭାଗ ନେଇ ପାରି ନ ଥିଲେ। ୧୯୩୩ ମସିହା ବେଳକୁ ସେ ସଂବଲପୁରକୁ ଲେଉଟି ଆସି ଗୀତା ଉପନିଷଦ ପାଠ ଓ ଧର୍ମଶାସ୍ତ୍ର ଆଲୋଚନାରେ ନିୟୋଜିତ ରହିଲେ। ୧୯୪୫ ସେପ୍ଟେଂବର ୧୫ ତାରିଖରେ ଏକସ୍ତରିବର୍ଷ ବୟସରେ ତାଂକର ମୃତ୍ୟୁ ହେଲା ଓ ସଂବଲପୁର ଜଣେ ନିଃସ୍ୱାର୍ଥ ଦେଶପ୍ରେମୀ ହରାଇଲା।



ଗାଲୁଆ ଶାଠୁଆ ଚୁଗୁଲି କୁହା ନିଶାଖୋର<br>
ଚୋର ଓଳିଆ ମୁହାଁ ଘରବୁଡ଼ା ଅଲାଜୁକ<br>
ଏମାନଂକୁ ଦୂରୁ ଜୁହାର କରିବୁ<br>
ଅଣ ବିଶ୍ୱାସୀ ଏ ଲୋକ।

—ଲକ୍ଷ୍ମୀକାଂତ



# ହୀରାଖଂଡ ରାଜ୍ୟ ହୀରା

# ଚଂଦ୍ରଶେଖର

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଓ ବିଚ୍ଛିନ୍ନ ଅଂଚଳ ଏକୀକରଣ ଦ୍ୱାରା ସ୍ୱତଂତ୍ର ପ୍ରଦେଶ ଗଠନ ଦିଗରେ ସକ୍ରିୟ ଆଂଦୋଳନ କରିବା ନେତାମାନଂକ ମଧ୍ୟରେ ଚଂଦ୍ରଶେଖର ବେହେରା ଅଗ୍ରଣୀ। ୧୮୭୩ ମଇ ୨୪ ତାରିଖରେ ସହର ନିକଟ ଧନକଉଡ଼ା ଗ୍ରାମରେ ତାଂକର ଜନ୍ମ। ତାଂକ ପିତା ପଦ୍ମନାଭ ଓ ମାତା ପ୍ରତିମା ଦେବୀ। ସଂବଲପୁର ସହର ମଧ୍ୟରେ ତାଂକ ମାମୁଁ ଅଜାଘରକୁ ସେ ପୁଅ ହୋଇଯାଇ ଗୁରୁପଡ଼ା ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ଶେଷ କଲେ। ୧୮୯୨ରେ ବ୍ୟାସକବି ଫକୀରମୋହନଂକ ଲିଖିତ ଓ ପ୍ରକାଶିତ ଉତ୍କଳ ଭ୍ରମଣରେ କବି ଦୁଃଖରେ ଗାଇଥିଲେ –

> ମାତ୍ର ଆହା ଏହି ଦେଶ ହୋଇ ଖଂଡ ଖଂଡ
> ସକଳ ସୌଂଦର୍ଯ୍ୟ ହୋଇଅଛି ଲଂଡଭଂଡ,
> ଦକ୍ଷିଣଟା କମାମାନେ ବସିଛଂତି ମାଡ଼ି
> ଉତ୍ତରଟା ହୋଇଅଛି ବଂଗାଳୀଂକ ଧାଡ଼ି,
> ପଶ୍ଚିମ ଦିଗର କଥା ବୋଇଲେ ନ ସରେ
> ପଡ଼ିଲାଣି ମରହଟ୍ଟା ପଶ୍ଚିମ ଭାଗରେ

ହାକିମ ଓକିଲ ସବୁ ଅଟଂତି ବିଦେଶୀ
ଡାକ ଘର କିରାଣୀଟି ନୁହେଁ ମଧ୍ୟ ଦେଶୀ ।

ଚଂଦ୍ରଶେଖର ସେତେବେଳକୁ ଅଠର ବରଷର ଯୁବକ । ଦେଶ ପ୍ରାଣ ଚଂଦ୍ରଶେଖର ବେହେରାଂକ ଶିକ୍ଷା ସଂବଲପୁରରେ ଆରଂଭ ହୁଏ । ଜିଲ୍ଲା ସ୍କୁଲରୁ ଏନଟ୍ରାନ୍ସ ପାସ୍ କରି ସେ ନାଗପୁରରେ ଏଫ.ଏ. ପାସ୍ କଲେ । ପ୍ରଥମେ ନାଗପୁରରେ ଚାକିରି । ପରେ ଶିକ୍ଷକ ଓ ଆଇନ ପାସ୍ କରି ସେ ୧୯୦୧ରେ ଓକିଲାତି ଆରଂଭ କଲେ । ମଧ୍ୟପ୍ରଦେଶରେ ପଢୁଥିବା ବେଳେ ମଧ ସେ ଓଡ଼ିଆ ଭାଷା ଉଠାଇଦେବାର ପ୍ରତିବାଦ କରି ବୁଦ୍ଧିଜୀବୀମାନଂକ ଦୃଷ୍ଟି ଏଥିପ୍ରତି ଆକର୍ଷିତ କରାଇଥିଲେ । ୧୯୦୩ରେ କଟକରେ ଅନୁଷ୍ଠିତ ପ୍ରଥମ ଉତ୍କଳ ସମ୍ମିଳନୀରେ ଯୋଗଦେଇ ଭାଷା ରକ୍ଷା ନିମିତ୍ତ ଆଂଡ୍ରୁ ଫ୍ରେଜରଂକୁ ଧନ୍ୟବାଦ ଦେବା ପ୍ରସ୍ତାବରେ ସେ ସମର୍ଥକ ଥିଲେ । (ପରେ ଜୟପୁରର ମହାରାଜା) ବିକ୍ରମଦେବ ବର୍ମା ଏହି ପ୍ରସ୍ତାବ ଆଣିଥିଲେ । ଏହି ଦିନୁ ଉତ୍କଳ ସମ୍ମିଳନୀର ସେ ସକ୍ରିୟ କର୍ମଠ କର୍ମକର୍ତା ମଧ୍ୟରୁ ଜଣେ ହୋଇ ରହିଥିଲେ । ୧୯୧୫ ଡିସେଂବରରେ ସଂବଲପୁର ସହରରେ ବୁଢ଼ାରାଜା ପାହାଡ ପାଖରେ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଲା । ବାଲୁଂକେଶ୍ୱର ମିଶ୍ର ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଓ ମଧ୍ୟପ୍ରଦେଶ ଅଂତର୍ଗତ କେରାର ଠାକୁର ରାଜା ଶ୍ରୀ ଲକ୍ଷ୍ମୀନାରାୟଣ ସିଂହ ଦେଓ ଏଥିରେ ସଭାପତି ଥିଲେ । ଫକୀରମୋହନ ଓ ସ୍ୱଭାବ କବି ଗଂଗାଧର ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଏହାର ମୁଖ୍ୟ ଉଦ୍‌ଯୋକ୍ତା ଥିଲେ ଚଂଦ୍ରଶେଖର । ବିଶିଷ୍ଟ ସଂସ୍କାରବାଦୀ ଓ ନିର୍ଭୀକ ବକ୍ତା ଭାବରେ ସୁପରିଚିତ ଥାଇ ସେ ୧୯୧୯ର ପୁରୀ ଓ ୧୯୨୯ ବ୍ରହ୍ମପୁର ଉତ୍କଳ ସମ୍ମିଳନୀ ଅଧିବେଶନରେ ସଭାପତିତ୍ୱ କରିଥିଲେ । ବ୍ରହ୍ମପୁର ଅଧିବେଶନରେ ସେ ସବୁ ଓଡ଼ିଆମାନେ ଏକ ଶାସନାଧୀନ ନ ହେଲେ ଏହାର ପରିଣାମ ବିଷମୟ ହେବ ବୋଲି ସରକାରଂକୁ ସତର୍କ କରିଦେଇଥିଲେ । ଫଳରେ ଫିଲିପ୍ ଡଫ୍ କମିଟି ନିଯୁକ୍ତ କରାଯାଇଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ୧୯୧୯ରେ ଇଂରେଜ ସରକାର ସ୍ୱାୟତ୍ତ ଶାସନ ପ୍ରତିଷ୍ଠା ପରିବର୍ତେ ରାଉଲାଟ ଆଇନ ଆଦି ଦମନମୂଳକ ବ୍ୟବସ୍ଥା ଜାରିକଲେ । ଦେଶବ୍ୟାପୀ ତୀବ୍ର ଉତ୍ତେଜନା ଦେଖାଗଲା । ଜନ ଆଂଦୋଳନ ଫଳରେ ଜାଲିଆନାବାଗ (ଅମୃତସର) ହତ୍ୟାକାଂଡ ଘଟିଲା । ଏହାପରେ ୧୯୨୦ ଡିସେଂବରରେ ଜାତୀୟ କଂଗ୍ରେସ, ଅସହଯୋଗ ଆଂଦୋଳନ ଆରଂଭ ପ୍ରସ୍ତାବ ଦେଲେ । ୧୯୨୧ରୁ ଦେଶବ୍ୟାପୀ ଏହି ଆଂଦୋଳନ ତୀବ୍ରତର ହେଲା । ଘରେ ଘରେ ଅରଟ ଚଳାଇ ହାତକଟା ସୂତାରେ ହାତବୁଣା ଖଦି ପିଂଧିବା ସମସ୍ତେ ଆରଂଭ କଲେ । ସ୍ୱାଧୀନତା ଏକ ବର୍ଷ ମଧରେ ହୋଇଯିବ ବୋଲି ମହାତ୍ମାଗାଂଧି ଘୋଷଣା କଲେ । ବିଲାତରୁ ଆମଦାନି ହୋଇ ଆସୁଥିବା କୋଟି କୋଟି ଟଂକାର ବିଦେଶୀ ଲୁଗା

ବର୍ଜନ ପାଇଁ ଗାଂଧିଜି ଡାକରା ଦେଲେ। ବିଭିନ୍ନ ସଭା ସମିତିରେ ବିଲାତୀ ବସ୍ତ୍ର ଜମା କରାଯାଇ ପ୍ରକାଶ୍ୟରେ ତାହା ପୋଡ଼ି ଦେବାର ବ୍ୟବସ୍ଥା ହେଲା। ଏହି ଦରିଦ୍ର ଦେଶରେ ଏତେ କପଡ଼ା ତୁଚ୍ଛା ପୋଡ଼ିଦେବା ବିରୋଧରେ ବିଶ୍ୱକବି ରବୀଂଦ୍ରନାଥ ପ୍ରତିବାଦ କଲେ ମଧ୍ୟ ଲୋକଂକ ଉପରେ ଏହାର କୌଣସି ପ୍ରଭାବ ପଡ଼ିନଥିଲା। ସଂବଲପୁର ଜିଲ୍ଲା ଏହି ଆଂଦୋଳନରେ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା। ସାଧାରଣ ସେବାରେ ନିଯୁକ୍ତ ବିଶିଷ୍ଟ ଓ ନିର୍ଭୀକ ଦେଶସେବକ ଚଂଦ୍ରଶେଖର ସମଗ୍ର ଜିଲ୍ଲାରେ ଆଂଦୋଳନର ନେତୃତ୍ୱ ନେଇ ଏହାକୁ ଅପ୍ରତ୍ୟାଶିତ ଭାବରେ ସଫଳ କରାଇଥିଲେ। ସଂବଲପୁରରେ ଆଂଦୋଳନ ଓଡ଼ିଶାରେ ସମସ୍ତଂକର ଦୃଷ୍ଟି ଆକର୍ଷଣ କଲା। ନବ ଯୁବକ ବାଗ୍ମୀ ଲକ୍ଷ୍ମୀନାରାୟଣ ମିଶ୍ର ନିଜ ବକ୍ତୃତା ବଳରେ ଜନମତ ପ୍ରଭାବିତ କଲେ। ତୁଂଗ ନେତା ଉତ୍କଳମଣି ଗୋପବଂଧୁ ଓ ପଂଡ଼ିତ ନୀଳକଂଠ ଦାସଂକର ସେ ପ୍ରିୟ ପାତ୍ର ହୋଇପାରିଲେ। ଶ୍ରୀ ନୃସିଂହ ଗୁରୁ ମଧ୍ୟ ନିଜ ନିଷ୍ଠାପରତା ଯୋଗୁଁ ଖ୍ୟାତି ଲାଭ କଲେ। ଫଳରେ ସଂବଲପୁର ସହରରେ ୧୯୨୧ ଜାନୁଆରିରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହେଲା। ଫ୍ରେଜର୍ କ୍ଲବ୍‌ରେ ଏହା ପ୍ରଥମେ ଚାଲୁ ହେଲା। ବର୍ତମାନର ଲେଡି ଲୁଇସ୍ ଗାର୍ଲସ୍କୁଲରେ ସେତେବେଳେ ଜିଲ୍ଲା ସ୍କୁଲ ଚାଲୁଥାଏ। ସରକାରୀ ବିଦ୍ୟାଳୟର ଏତେ ନିକଟରେ ଥିବାରୁ ବିଦ୍ୟାଳୟର ଲୋକପ୍ରିୟତା ଅଭିଭାବକ ମାନଂକ ମନରେ ସଂଦେହ ଆଣିବାର ଥିଲେ ମଧ୍ୟ ନିଜସ୍ୱ ଜାତୀୟ ଚେତନା ଯୋଗୁଁ ବହୁତ ଛାତ୍ର ଜିଲ୍ଲା ସ୍କୁଲ ଛାଡ଼ି ଏଥିରେ ଯୋଗଦେଲେ। ପଂଡ଼ିତ ନୀଳକଂଠ ଏହାର ପ୍ରତିଷ୍ଠାତା-ପ୍ରଧାନ ଶିକ୍ଷକ। ନେତା ଚଂଦ୍ରଶେଖର ବେହେରାଂକ ଦୁଇ ଜାମାତା ଗଣେଶ ପ୍ରସାଦ ପାଢ଼ୀ ଓ ଭାଗୀରଥି ମିଶ୍ର ଓ ଗଣେଶ ପ୍ରସାଦ ପାଢ଼ୀଂକର ଭାଇ ଶଂକର ପ୍ରସାଦ ପାଢ଼ୀଂକ ତତ୍ତ୍ୱାବଧାନରେ ଧଂଦାମୂଳକ ଶିକ୍ଷାଦାନ ଏହି ଜାତୀୟ ବିଦ୍ୟାଳୟର ଏକ ନୂତନ ଆଭିମୁଖ୍ୟ ଥିଲା। ପଂଡ଼ିତ ନୀଳକଂଠ ଗୋଟିଏ ଗୀତ ଲେଖିଲେ –

ସ୍ୱରାଜ୍ୟ ଭାୟା ଅଲବତ ହୋଗା
 ଛୋଡ଼କେ ଆଓ ଗୋଲାମୀ
ଭାରତ ଲଡ଼କା ଗୁଲାମ ହୋକେ
 କାହେ କରୋ ବଦନାମୀ।
ସ୍କୁଲ କଚେରୀ କାଉନସିଲ୍‌କୋ
 ଇୟାଦ ରଖୋ ବାବୁଜୀ
ମାୟା ଏ ସବ ଗୋଲାମୀକା
 ଇସମେ ନାହିଁ ଭୁଲୋଜି।

ଦିନେ ଗୋଟିଏ ଶୋଭାଯାତ୍ରାରେ ସେ ଆଗେ ଆଗେ ଚାଲିଲେ। ସହଯୋଗୀ ଓ ଛାତ୍ରମାନେ ପଛରେ ଚାଲୁଥାଂତି। ଗୀତ ବୋଲି ପାଦ ପକାଇ ଚାଲିବାବେଳେ ଛାତ୍ରମାନେ ଜିଲ୍ଲା ସ୍କୁଲରୁ ହେଡ୍‌ମାଷ୍ଟର ଓ ଅନ୍ୟମାନଂକୁ ନ ମାନି ବାହାରି ଆସି ଶୋଭାଯାତ୍ରାରେ ମିଶିଗଲେ । ଜାତୀୟ ବିଦ୍ୟାଳୟର ଛାତ୍ରମାନେ ରବିବାର ଓ ଛୁଟିଦିନ ମାନଂକରେ ସହର ବିଭିନ୍ନ ରାସ୍ତା ଓ ଗଳିମାନ ବୁଲି ଖଦଡ କପଡ଼ା ବିକ୍ରି କରିବାକୁ କାଂଧରେ ଥାନେ ଦୁଇଥାନ ଖଦି ଲୁଗା ଧରି ବୁଲା ବିକାଳିଂକ ପରି ସ୍ୱଦେଶୀ କପଡା ଡାକି ଡାକି ଯାଉଥିଲେ। ପରେ ପୂଜ୍ୟ ଜନନାୟକ ଡକ୍ଟର ଶ୍ରଦ୍ଧାକର ସୂପକାର ଏହି ବିକାଳିଂକ ସାଂଗରେ ଥିଲେ। ସେ ସେତେବେଳେ ନିମ୍ନ ପ୍ରାଥମିକ ଶ୍ରେଣୀର ଛାତ୍ର ଥାଆଂତି। ପଂଡିତ ନୀଳକଂଠ ସଂବଲପୁର ଛାଡ଼ିଲେ ୧୯୨୧ ଶେଷ ଆଡ଼କୁ । ଅର୍ଥାଭାବ ଫଳରେ ୧୯୨୨ରେ ସଂବଲପୁର ଜାତୀୟ ବିଦ୍ୟାଳୟ ବଂଦ ହୋଇଗଲା। ଚଂଦ୍ରଶେଖରଂକ ସବୁ ଉଦ୍ୟମ ବିଫଳ ହେଲା। ଛାତ୍ରମାନେ ପୁଣି ଜିଲ୍ଲା ସ୍କୁଲରେ ଯାଇ ନାମ ଲେଖାଇଲେ। ୧୯୨୩ ବେଳକୁ ସଂବଲପୁରରେ ଆଉ ଆଂଦୋଳନର ଉତ୍ସାହ ରହିଲା ନାହିଁ।

ସାଇମନ କମିସନ ପରେ ଅଟଲି କମିଟିର ସୁପାରିଶ ଅନୁସାରେ ନୂତନ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ନିମିତ୍ତ ଗଠିତ ଓଡ଼୍‌ନେଲ୍ କମିଟି ଆଗରେ ଓଡ଼ିଆଂକ ପକ୍ଷରେ ସାକ୍ଷୀପ୍ରଦାନ ଓ ତଥ୍ୟ ବିଶ୍ଲେଷଣ ନିମିତ୍ତ ଯେଉଁ କମିଟି ଗଠିତ ହେଲା ତାହାର ଚଂଦ୍ରଶେଖର ସଭାପତି ଥିଲେ।

ତାଂକର ରାଜନୈତିକ ଜୀବନ ଜାତୀୟ କଂଗ୍ରେସ ଆଦର୍ଶରେ ଗଢ଼ାଯାଇଥିଲା। ୧୯୦୧ରେ ଚାକିରି ଛାଡ଼ିଆସି ସଂବଲପୁରରେ ଓକିଲାତି କରିବା ପରବର୍ଷ ସେ ମ୍ୟୁନିସିପାଲଟିର ସଭ୍ୟ ହେଲେ। ଦୀର୍ଘଦିନ ଧରି ମ୍ୟୁନିସିପାଲଟିର ସଭ୍ୟ ଥିଲେ। ସେତେବେଳେ ସ୍ୱାୟତ୍ତ ଶାସନ ସଂସ୍ଥାମାନଂକରେ ସରକାରୀ କର୍ତ୍ତୃତ୍ୱ କଠୋର ଥିଲା ଓ ମଧ୍ୟପ୍ରଦେଶ ମ୍ୟୁନିସିପାଲଟି ଆଇନ ଅନୁସାରେ ଏହା ପରିଚାଳିତ ଥିଲା। କଂଗ୍ରେସ ପ୍ରତି ବିଶେଷ ଅନୁରାଗ ସ୍ୱୀକାର କରି ସେ ସମ୍ମିଳନୀର ଲକ୍ଷ୍ୟକୁ ଗୌଣ କରିଥିଲେ ମଧ ପରବର୍ତ୍ତୀ କାଳରେ ଏହା ସହିତ ସଂଯୋଗ ରକ୍ଷା କଲେ। ସଂବଲପୁର ଜିଲ୍ଲାର କଂଗ୍ରେସ ସଂଗଠନର ସେ ମୁଖ୍ୟ ଥିଲେ ଓ ନିଷ୍ଠାପର ସରଳ କର୍ମୀମାନଂକୁ ସୃଷ୍ଟି କରିବାରେ ତାଂକର ଅବଦାନ ଥିଲା। ଲବଣ ସତ୍ୟାଗ୍ରହ ଓ ଅସହଯୋଗ ଆଂଦୋଳନ ସମୟରେ ମକଦ୍ଦମାରେ ଅଭିଯୁକ୍ତମାନଂକୁ ସେ ନିଜ ଜାମାତା ଭାଗିରଥି ମିଶ୍ରଂକ ସହିତ ମାଗଣାରେ ଆଇନ ସାହାଯ୍ୟ ଯୋଗାଇ ଦେଉଥିଲେ। ପରବର୍ତ୍ତୀ କାଳରେ ସେମାନେ ସ୍ୱାଧୀନତାପ୍ରାପ୍ତି ପରେ ଗୁରୁ ଦାୟିତ୍ୱ ବହନ କରିଥିଲେ। ସାମାଜିକ ଜୀବନରେ ସେ ଓକିଲାତିରେ ଆୟ ଯଥେଷ୍ଟ କରୁଥିଲେ

ମଧ୍ୟ ନିଜର ସରଳ ଜୀବନଯାପନ ପ୍ରଣାଳୀରେ ଅନ୍ୟମାନଙ୍କୁ ପ୍ରଭାବିତ କରିଥିଲେ। ମହକିଲମାନଙ୍କୁ ମଧ୍ୟ ନିଜ ଆଦର୍ଶ ବୁଝାଇ ଦେଉଥିଲେ। ବ୍ରାହ୍ମଧର୍ମ ପ୍ରତି ସେ ନାଗପୁରରେ ପଢ଼ିବା ସମୟରୁ ଆକୃଷ୍ଟ ହୋଇ ନିର୍ଭୀକ ଆଚରଣରେ ଅନ୍ୟମାନଙ୍କୁ ମୁଗ୍ଧ କରୁଥିଲେ। ତାଙ୍କର ବାସ ଭବନରେ ଯେଉଁଠାରେ ମହାତ୍ମା ଗାନ୍ଧି ୧୯୨୮ରେ ଅବସ୍ଥାନ କରିଥିଲେ ସେଠାରେ ତାଙ୍କ ମୃତ୍ୟୁର ବାରବର୍ଷ ପରେ ଭଡ଼ାରେ ରହିବାର ସୁଯୋଗ ଏହି ଲେଖକଙ୍କୁ ମିଳିଥିଲା। ତାଙ୍କର ଦୁଇପୁତ୍ର ଗୌରାଙ୍ଗ ଓ ନିତ୍ୟାନନ୍ଦ। ଜଣେ ହାଇସ୍କୁଲ ଶିକ୍ଷକ, ୨ୟ ନିତ୍ୟାନନ୍ଦ ନୂଆହୋଇ ସୃଷ୍ଟି ହୋଇଥିବା ନୂଆପଡା (ଖଡ଼ିଆଳ) ସବ ଡିଭିଜନରେ ଓକିଲ ଥିଲେ। ଜଣେ ପୁରୁଖା ଓକିଲ ସେଠାରେ କହିବାର ଶୁଣିଛି ଗତ ଶତାବ୍ଦୀର ଦ୍ୱିତୀୟ ଦଶକରେ ସଂବଲପୁରର ଡେପୁଟି କମିସନର ଉଇଲିୟମ ହଥର୍ନ ଲୁଇସ, (ପରେ ଓଡ଼ିଶାର ରାଜ୍ୟପାଳ) ଇଜଲାସରେ ରାଜସ୍ୱ ଓ ଫୌଜଦାରୀ ମାମଲାର ଅପିଲ ଶୁଣାଣି ବେଳେ ପାଇପ ଲଗାଇ ଧୂମପାନ କରନ୍ତି। ସମସ୍ତେ ଏହା ନାପସନ୍ଦ କରୁଥିଲେ ମଧ୍ୟ ଅଖଣ୍ଡ ପ୍ରତାପୀ ଡେପୁଟି କମିସନରଙ୍କ ସମ୍ମୁଖରେ ଏହାର ପ୍ରତିବାଦ ଜଣାଇବାକୁ ପଶ୍ଚାତ୍‌ପଦ। ସବୁ ପ୍ରକାର ଦେୱାନି ଆଇନ ଅପ୍ରଚଳିତ ଅଂଚଳ ହୋଇଥିବାରୁ ତାଙ୍କର ଆଇନଗତ କ୍ଷମତା ମଧ୍ୟ ସମଗ୍ର ଜିଲ୍ଲାରେ ଅମାପ। ଦିନେ ଚନ୍ଦ୍ରଶେଖର ଗୋଟିଏ ଅପିଲ କେଶରେ ଜବାବ ସୁଆଲ କରୁଥାଆନ୍ତି। ମାଦକ ଦ୍ରବ୍ୟଠାରୁ ସେ ସର୍ବଦା ଦୂରରେ। ପାନ ସିଗାରେଟ ଖାଆନ୍ତି ନାହିଁ ସମସ୍ତେ ଜାଣନ୍ତି। ଡେପୁଟି କମିସନର ନିଜ ପାଇପ ଟାଣି ଅପିଲ ଶୁଣୁଥାଆନ୍ତି। ହଠାତ୍ ଚନ୍ଦ୍ରଶେଖର ବାରଣ୍ଡାରେ ବସିଥିବା ଜଣେ ମହକିଲଠାରୁ ଗୋଟାଏ ଝକମକି – (ଦିଆସିଲିର ପ୍ରଚାର ବ୍ୟାପକ ହୋଇନଥାଏ) ଓ ପିକା ଆଣି ପାଟିରେ ଦେଇ କୋର୍ଟକୁ ଅନାଇଲେ। ସାହେବ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଦେଖିବାକୁ ଲାଗିଲେ। ଚନ୍ଦ୍ରଶେଖର ଉତ୍ତରରେ ଶୁଣାଇଲେ ଏହି ମାନନୀୟ ଅଦାଲତର ଏକ ମର୍ଯ୍ୟାଦା ଅଛି। ଏହାର କର୍ତ୍ତା ଭାବେ ଆପଣ ଓ ଆଇନର ଜଣେ କର୍ମଚାରୀ ଭାବେ ମୁଁ, ଏହି ମର୍ଯ୍ୟାଦା ରକ୍ଷା କରିବାକୁ ଦୃଢ଼ବ୍ରତ। ଆପଣ ନିଜେ ଏହା ଭଙ୍ଗ କଲେ ଅନ୍ୟମାନଙ୍କ ଉପରେ ତାହା ଜାହିର କରିବାର ନୈତିକ ଅଧିକାର ଆପଣଙ୍କର ରହୁନାହିଁ। ଅନୁତପ୍ତ ଲୁଇସ୍ ସାଂଗେ ସାଂଗେ ପାଇପ୍ ଫୋପାଡ଼ିଦେଲେ। ତଳକୁ ଓହ୍ଲାଇ ଆସି କରମର୍ଦ୍ଦନ କରି କହିଲେ ବେହେରା, ପ୍ରକୃତରେ ତମେ ମହାନ। ନିଜ ନିର୍ଭୀକ ଆଚରଣ ଯୋଗୁ ସେ ସବୁ ଅଦାଲତରେ ସମ୍ମାନନୀୟ ଥିଲେ। ସମାଜ ସଂସ୍କାର ଦିଗରେ ଯୁବତୀ ବିବାହ, ବାଲ୍ୟବିବାହ ନିରୋଧ, ବିଧବାମାନଙ୍କର ପୁନର୍ବିବାହ, ଅସ୍ପୃଶ୍ୟତା ନିବାରଣ, ହରିଜନ ମଂଗଳ, ବ୍ରାହ୍ମଣ ସମାଜରେ ପ୍ରଚଳିତ କୁସଂସ୍କାର ଦୂରୀକରଣ ନିମିତ୍ତ ସେ ସର୍ବଦା ସଚେଷ୍ଟ ଥିଲେ।

ସଂବଲପୁର ଜିଲ୍ଲାର ଭାଷା ରକ୍ଷା ଓ ଓଡ଼ିଶା ସହିତ ୧୯୦୫ରେ ମିଶ୍ରଣ ଚଂଦ୍ରଶେଖରଂକୁ ସର୍ବୋଚ୍ଚ ନେତାଭାବେ ସମ୍ମାନ ଦେଲା। ଉତ୍କଳ ସମ୍ମିଳନୀ ବାର୍ଷିକ ଅଧିବେଶନରେ ସେ ନିୟମିତ ଯୋଗ ଦେଉଥିଲେ ଓ ସମ୍ମିଳନୀର ପ୍ରସ୍ତାବମାନ କାର୍ଯକାରୀ କରିବାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ। ରାୟଗଡ଼, ସାରଂଗଗଡ଼, ଫୁଲଝର, ଚଂଦ୍ରପୁର ଆଦି ଅଂଚଳ ସେ ବାରଂବାର ଗସ୍ତ କରି ଓଡ଼ିଆ ଭାଷା ସୁରକ୍ଷା ଓ ଓଡ଼ିଶା ସହିତ ମିଶ୍ରଣ ନିମିତ୍ତ ବ୍ରତୀ ଥିଲେ। ଉତ୍କଳ ସମ୍ମିଳନୀର ପ୍ରତିଷ୍ଠିତ ନେତା ଥାଇ ସେ ଜାତୀୟ କଂଗ୍ରେସ ସହିତ ଘନିଷ୍ଠ ସଂପର୍କ ରଖିଥାଆଂତି। ୧୯୨୦ ଡିସେଂବର ମାସରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ଚକ୍ରଧରପୁରଠାରେ ଅନୁଷ୍ଠିତ ହେଲା। ପଂଡିତ ଗୋପବଂଧୁ ଜାତୀୟ ସ୍ରୋତରେ ନିଜକୁ ସାମିଲ କରି ସମ୍ମିଳନୀ ଓ କଂଗ୍ରେସର ଆଦର୍ଶଗତ ଐକ୍ୟ ଅନୁଭବ କଲେ। ଦେଶ ସ୍ୱାଧୀନ ହେଲେ ଉତ୍କଳ ପ୍ରଦେଶ ଗଠନ ସୁନିଶ୍ଚିତ ବୋଲି ଭାବିଲେ। ନାଗପୁର କଂଗ୍ରେସ ପରେ ଗୋପବଂଧୁ, ଚଂଦ୍ରଶେଖର, ଜଗବଂଧୁ ସିଂହ ଆଦି ଆସି ଚକ୍ରଧରପୁର ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗ ଦେଲେ। ନାଗପୁର କଂଗ୍ରେସରେ ଅସହଯୋଗ ଆଂଦୋଳନ ଆରଂଭ ନିମିତ୍ତ ନିଷ୍ପତ୍ତି ନିଆଯାଇଥାଏ। ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତି କଂଗ୍ରେସ ଗ୍ରହଣ କରିଥାଏ। ଜଗବଂଧୁ ସିଂହ ସମ୍ମିଳନୀର ସଭାପତି। ଉତ୍କଳମଣି ଜାତୀୟ କଂଗ୍ରେସ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଉତ୍କଳ ସମ୍ମିଳନୀ ଗ୍ରହଣ କରିନେବାକୁ ଏକ ପ୍ରସ୍ତାବ ଆଗତ କଲେ। ଚଂଦ୍ରଶେଖର ବେହେରା ଏହାକୁ ସମର୍ଥନ କଲେ। ବହୁ ଅଧିକ ଭୋଟରେ ଏହା ଗୃହୀତ ହେଲା। ମାତ୍ର ବିଚ୍ଛିନ୍ନାଂଚଳ ଏକୀକରଣ ଓ ପୂର୍ଣାଂଗ ପ୍ରଦେଶ ଗଠନ ଉଦ୍ୟମରେ ଏହା କୁଠାରାଘାତ କଲା। ସମ୍ମିଳନୀର ନରମପଂଥୀମାନେ ଏହା ଗ୍ରହଣ ନ କରି ସମ୍ମିଳନୀ ବଂଚାଇ ରଖିଲେ। ତଥାପି ଚଂଦ୍ରଶେଖର ଉତ୍କଳ ସମ୍ମିଳନୀ ସହିତ ସଂପର୍କ ସଂପୂର୍ଣ ଛିନ୍ନ କରିନଥିଲେ।

ମହାତ୍ମାଗାଂଧି ଓଡ଼ିଶା ଗସ୍ତ ସମୟରେ ଦୁଇଥର ସଂବଲପୁର ଆସିଥିଲେ। ୧୯୨୮ରେ ସେ ସଂବଲପୁରରେ ସସ୍ତ୍ରୀକ ଶ୍ରୀବେହେରାଂକର ଗୃହରେ ଅବସ୍ଥାନ କରିଥିଲେ। ପରେ ୧୯୩୪ ଗ୍ରୀଷ୍ମ କାଳରେ ଝାରସୁଗୁଡ଼ାରେ ସେ ଗାଡ଼ି ବଦଳାଇ ସଂବଲପୁର ସହରକୁ ଆସିଥିଲେ। ସେଠାରୁ ସେ ଅନୁଗୁଳ ଯାତ୍ରା କଲେ। ତାଂକର ଯାତ୍ରା ହରିଜନ ଆଂଦୋଳନ ସଂପର୍କରେ ଥିଲା। ସମଗ୍ର ଦେଶରୁ ଅସ୍ପୃଶ୍ୟତା ବ୍ୟାଧି ଦୂର କରିବା ପାଇଁ ସେ ପ୍ରଚାରରେ ବାହାରିଥାଆଂତି। ତାର କେତେ ମାସ ଆଗରୁ 'ହରିଜନ' ସାପ୍ତାହିକ ପତ୍ରିକାଟି ପ୍ରଥମ ହୋଇ ପ୍ରକାଶ ପାଉଥାଏ। ହରିଜନମାନଂକର ଦାବି ରକ୍ଷଣଶୀଳ ହିନ୍ଦୁମାନଂକର ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେଉଥାଏ। ସଂବଲପୁରରେ ମହାନଦୀ ବାଲିରେ ଏକ ସଭା ହେଲା। ଏଥିରେ ମହାତ୍ମା ଗାଂଧି ଅସ୍ପୃଶ୍ୟତା କଳଂକ ଦୂର କରିବାକୁ ସମସ୍ତଂକୁ ଅନୁରୋଧ

କଲେ। ହରିଜନ ପାଂଠିପାଇଁ ମଧ୍ୟ ସଭାସ୍ଥଳରେ ଚାଂଦା ସଂଗ୍ରହ କରିଥିଲେ। ଜଣେ ରକ୍ଷଣଶୀଳ ବ୍ରାହ୍ମଣ ତାଂକ ସଭାରେ ଗୋଳମାଳ କରିବାକୁ ଆସି ଅସଫଳ ହେଲେ। ଚଂଦ୍ରଶେଖରଂକ ପ୍ରଭାବ ସମାଜରେ ଅମାପ। ସେତେବେଳେ ସଂବଲପୁର ସହରରେ ଅଛବ ମାନଂକର ଶିକ୍ଷା ନିମିତ୍ତ ଅଲଗା ବିଦ୍ୟାଳୟ ଥାଏ। ମାତ୍ର ଏହା ଉଠାଇ ଦିଆଗଲା। ସାଧାରଣ ଛାତ୍ରମାନଂକ ସହିତ ହରିଜନ ଅଛବ ପିଲାମାନେ ପାଠ ପଢ଼ିଲେ। ହରିଜନ ସେବକ ସଂଘ ତରଫରୁ ସଂବଲପୁର ରୋଡ୍ ଷ୍ଟେସନ ପାଖରେ ପରେ ବିଶିଷ୍ଟ ସାଂସଦ ଶ୍ରଦ୍ଧାକର ସୂପକାରଂକ ଖମାର ଘରେ ଏକ ହରିଜନ ହଷ୍ଟେଲ ଖୋଲାଗଲା। ବିଶିଷ୍ଟ ଗାଂଧିବାଦୀ କର୍ମୀ ପଂଡିତ ନୃସିଂହଗୁରୁ ସ୍ୱାଧୀନତାର ବାର୍ତାବହ ଭାବରେ ସମଗ୍ର ଜିଲ୍ଲାରେ ଅସ୍ପୃଶ୍ୟତା ବିରୋଧରେ ଲୋକମତ ଜାଗ୍ରତ କରିବାକୁ ସମର୍ଥ ହେଉଥିଲେ। ସ୍ୱତଂତ୍ର ପ୍ରଦେଶ ଗଠନ ଦାବି ସହିତ ମହାଭାରତୀୟ ଜୀବନ ସ୍ରୋତରେ ନିଜକୁ ସାମିଲ କଲେ ଚଂଦ୍ରଶେଖର। ପରବର୍ତୀ କାଳର ଜିଲ୍ଲାର ସବୁ ତୁଂଗ ନେତା ତାଂକ ପ୍ରେରଣାରେ ସୃଷ୍ଟ।

ସ୍ୱତଂତ୍ର ଉତ୍କଳ ପ୍ରଦେଶ ଗଠନ, ବିଚ୍ଛିନ୍ନାଂଚଳ ମିଶ୍ରଣ ଦାବିରେ ଏକନିଷ୍ଠ, ସ୍ୱଦେଶ ପ୍ରେମୀ ଚଂଦ୍ରଶେଖର ଜୀବନର ଶେଷ ମୁହୂର୍ତ ପର୍ଯଂତ ଏଦିଗରେ ସକ୍ରିୟ ଅଂଶ ନେଇଥିଲେ। ପ୍ରଦେଶ ଗଠନର ମାତ୍ର ତିନିମାସ ଆଗରୁ ୧୯୩୬ ଜାନୁଆରରେ ମାତ୍ର ୬୩ ବର୍ଷ ବୟସରେ ସେ ପରଲୋକ ଗମନ କଲେ। ସଂବଲପୁର ଜିଲ୍ଲା ସ୍କୁଲ୍ ତାଂକ ନାମରେ ନାମିତ ମାତ୍ର ରାଜ୍ୟ ସ୍ତରରେ ତାଂକୁ କୌଣସି ସମ୍ମାନ ଦିଆଯାଇନାହିଁ। ସ୍ୱତଂତ୍ର ଉତ୍କଳ ପର୍ଷ୍ଣ ଗଠନର ପ୍ରାକ୍କାଳରେ କବି ଶେଖର ଚିଂତାମଣି ମହାଂତି ୧୯୩୫ ଏପ୍ରିଲରେ ତାଂକର କାବ୍ୟ ଉତ୍କଳ ମିଳନ ପ୍ରକାଶ କରିଥିଲେ। କାବ୍ୟରେ ହାସ୍ୟମୁଖୀ ଉତ୍କଳ ଜନନୀ ନିଜ ସଖୀମାନଂକୁ ନିଜ ପାଖରେ ପାଇ ଅତି ଆନଂଦରେ ଛିନ୍ନମସ୍ତା ଉତ୍କଳଜନନୀଂକୁ ନୂତନ ଜୀବନ ପ୍ରଦାନ କରିବାରେ ବ୍ରତୀ ନିଜର ସୁଯୋଗ୍ୟ ସଂତାନମାନଂକୁ ନିଜର ଶ୍ରଦ୍ଧା ଜଣାଇଲେ। ସେ ଲେଖିଥିଲେ-

''ହୀରାଖଂଡ ରାଜ୍ୟ ହୀରା, ରାମନାରାୟଣ,
ଆବର ଚଂଦ୍ର ଶେଖର ଉଭୟ ମୋ ଲାଗି
କରିଛଂତି ଧନ, ମନ ଅମୂଲ୍ୟ ସମୟ
ଅକୁଂଠିତେ ବ୍ୟୟ, ଦୁହେଁ ସୁପୁତ୍ର ମୋର''।

ଉତ୍କଳ ଜନନୀଂକର ଏହି ସୁପୁତ୍ରଂକର ଅବଦାନ ଏଥିରୁ ଅନୁମିତ।





# ଗୀତାଗୁଡ଼ିର ଋଷି

# ପୂଜାରୀ ଡାକ୍ତର

୧୯୧୨। କଲିକତା ସହରରେ ଅଠର ବରଷ ବୟସର ଜଣେ ଯୁବକ ନିଃସଂବଳ ଓ ବନ୍ଧୁହୀନ ହୋଇ ଉଚ୍ଚଶିକ୍ଷା ପାଇ ଆମେରିକା ଯିବାକୁ ପହଂଚିଲେ। ବିହାର ଓ ଓଡ଼ିଶା ଥିଲା ବଂଗ ପ୍ରଦେଶର ଅଂତର୍ଭୁକ୍ତ। ସଂବଲପୁର ଜିଲ୍ଲା ଓଡ଼ିଶାରେ ମିଶି ସାରିଥାଏ। ଯୁବକଂକର ହାଇସ୍କୁଲ ର ପ୍ରଧାନ ଶିକ୍ଷକ ଚାକିରିରୁ ଅବସର ନେଇ କଲିକତାରେ ରହୁଥାଂତି। ଯୁବକ ଜଣକ ନିଜର ପ୍ରଧାନ ଶିକ୍ଷକ ଥିବା ଏହି ଅମୃତଲାଲ ଗୁପ୍ତଂକୁ ସାକ୍ଷାତ କରିବାକୁ ଗଲେ। ଯୁବକ ଜାପାନ ବାଟେ ଆମେରିକା ଯାଇ ସେଠାରେ ଉଚ୍ଚଶିକ୍ଷା ନେବାକୁ ଥିବା ନିଜ ଅଭିଳାଷ ତାଂକୁ ଜଣାଇଲେ। ପ୍ରସ୍ତାବ ଶୁଣି ସେ ଆଶ୍ଚର୍ଯ ହୋଇଗଲେ। ତାଂକ ଆର୍ଥିକ ଅବସ୍ଥା ବିଷୟରେ ପ୍ରଶ୍ନ କରି ଜାଣିଲେ ଯେ ଯୁବକଂକ ପାଖରେ ମୋଟରେ ଦୁଇଟଂକା ଆଉ କେତେ ଅଣା ପଇସା ଥିଲା। ପ୍ରଧାନ ଶିକ୍ଷକ  ଜାଣିଥିଲେ ଯୁବକଟି ଅବସ୍ଥାପନ୍ନ ଘରର ପିଲା। ତାଂକର ବାପା ରେଢ଼ାଖୋଲର ଦେୱାନ ଥିଲେ। ସେ ତାଂକୁ ଟଂକା ପାଇଁ ଘରକୁ ଟେଲିଗ୍ରାମ୍ କରିବାକୁ ବାଧ୍ୟ କଲେ। ଜାପାନ ଅଭିମୁଖେ ଯାଉଥିବା ଜାହାଜର ଛାଡ଼ିବା ଦିନ ଧାର୍ଯ ହୋଇ ସାରିଥାଏ। ବାଧ୍ୟହୋଇ ଘରକୁ ସିନା ଖବର ପଠାଇଲେ

ମାତ୍ର ଉତ୍ତରକୁ ଅପେକ୍ଷା ନକରି ଯୁବକ ଜଣକ ଜାହାଜ ଚଢ଼ିବାକୁ ବାହାରିଲେ। ତାଂକ ସାହସ ଦେଖି ତାଂକ ଶିକ୍ଷକ ତାଂକୁ ସାହାଯ୍ୟ କରିବାକୁ, ଜାହାଜ ଛାଡିଲା ବେଳେ, ତାଂକ ହାତରେ ଗୋଟିଏ ଦଶଟଂକିଆ ନୋଟ ଧରାଇଦେଲେ। ସେତେବେଳେ ଆଉ ଅଧିକା ଦେବାକୁ ଅର୍ଥ ତାଂକ ପାଖରେ ନଥିଲା। ଏମିତି ଭାବରେ ସେ ଯୁବକ ଜଣକ ଜାହାଜ ଚଢ଼ି ହାତରେ ବାରଟଂକା କେତେଅଣା ପଇସା ଧରି ଉଚ୍ଚଶିକ୍ଷା ପାଇଁ ଜାପାନ ଓ ଆମେରିକା ଯାତ୍ରାକଲେ। ଏହି ଯୁବକଜଣକ ହେଉଛଂତି ଡାକ୍ତର ଜନାର୍ଦ୍ଦନ ପୂଜାରୀ। ଶ୍ରଦ୍ଧାକର ସୂପକାର ଡାକ୍ତର ପୂଜାରୀଂକର ଜୀବନ ଚରିତ 'ଅମର ଜୀବନ'ର ଆରଂଭରେ ଲେଖିଛଂତି ସଂବଲପୁର ଜିଲ୍ଲାର ତିନିଜଣ ସଂତାନ ଚିରସ୍ମରଣୀୟ ହୋଇ ରହିବେ। ସେମାନେ ହେଉଛଂତି ଚୌହାନ ବୀର ସୁରେଂଦ୍ର ସାଏ, ଯେ ନିଜର ଜ୍ୱଳଂତ ଓ ଅଭୂତପୂର୍ବ ବୀରତ୍ୱ ପାଇଁ ସବୁରି ନମସ୍ୟ। ତାଂକ ପରେ ସ୍ୱଭାବ କବି ଗଂଗାଧର ମେହେର। ଓଡ଼ିଆ ସାହିତ୍ୟରେ ଆଦର୍ଶ ଚରିତ୍ର ଚିତ୍ରଣ ଓ ପ୍ରକୃତି ପ୍ରେମ ବର୍ଣନାରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ସେ ସଂବଲପୁରର ମୁଖ ଉଜ୍ଜ୍ୱଳ କରିଛଂତି। ଶେଷରେ ପ୍ରାତଃ ସ୍ମରଣୀୟ ଡାକ୍ତର ଜନାର୍ଦ୍ଦନ ପୂଜାରୀ। ଜିଲ୍ଲା ବାହାରେ ସେ ଅପେକ୍ଷାକୃତ ଅପରିଚିତ କାରଣ ସେ ଥିଲେ ସ୍ଥିତପ୍ରଜ୍ଞତାର ମୂର୍ତିମଂତ ଅବତାର। ସାଂସାରିକ ଖ୍ୟାତି ଲିପ୍‌ସା ଠାରୁ ସେ ଥିଲେ ବହୁତ ଦୂରରେ। ବହୁବିଧ ପ୍ରତିଭାର ଅଧିକାରୀ ଥାଇ ସେ ଥିଲେ ଜଣେ ଉଚ୍ଚକୋଟୀର ଜନସେବକ, ସମାଜସେବୀ, ନାଟ୍ୟକାର, ଅଭିନେତା, ସାହିତ୍ୟିକ, ଦରଦୀ ଚିକିତ୍ସକ ଓ ସମାଜର ମଂଗଳ ନିମିତ୍ତ ଆବଶ୍ୟକ ସମୟରେ ରାଜନୈତିକ କର୍ମୀ।

10-11-1993

ଡାକ୍ତର ଜନାର୍ଦ୍ଦନ ପୂଜାରୀ ୧୮୯୩ ନଭେଂବର ମାସରେ ରେଢ଼ାଖୋଲ ରାଜ୍ୟର ରାଜଧାନୀ ରାମପୁର ଠାରେ ତାଂକ ପିତା ଦାଶରଥି ଦେୱାନ ଥିବା ସମୟରେ ଜନ୍ମ ଗ୍ରହଣ କରିଥିଲେ। ସଂବଲପୁର ସହରର ଜଣେ ଗଣ୍ୟମାନ୍ୟ ଓ ଧର୍ମ ପରାୟଣ ବ୍ୟକ୍ତି ଥିଲେ ଦାଶରଥି। ମା' ଦେବକୀ ସେହିପରି ଜଣେ ପତି ପରାୟଣା ଓ ଆଦର୍ଶ ମହିଳା ଥିଲେ। ଦାଶରଥିଂକର ବଂଶ ଲୋକେ ସଂବଲପୁର ସହରରର ହୋତାପଡ଼ା ମଂଦିରର ବଂଶାନୁକ୍ରମିକ ସେବାୟତ ଥିଲେ। ମଂଦିରର ଯଥେଷ୍ଟ ଦେବୋତ୍ତର ଜମି ସେବାୟତ ଓ ଠାକୁରଂକ ଚଳାଚଳ ପାଇଁ ପର୍ଯାପ୍ତ ଥିଲା। ଅତି ଅଳ୍ପ ଇଂରେଜ ପାଠ ପଢିଥିଲେ ମଧ୍ୟ ଦାଶରଥି ବଂଦୋବସ୍ତ ଅମିନ ଭାବରେ ସରକାରୀ ଚାକିରିରେ ପଶି ଅଧ୍ୟବସାୟ ବଳରେ ପଦୋନ୍ନତି ପାଇ ବରଗଡ଼ର ତହସିଲଦାର ଓ ପରେ ରେଢ଼ାଖୋଲ ରାଜ୍ୟର ଦେୱାନ ହୋଇଥିଲେ। ଦାଶରଥି ୧୯୦୪–୦୫ରେ ଅବୈତନିକ ମାଜିଷ୍ଟ୍ରେଟ ଥିଲାବେଳେ କବି ଗଂଗାଧର ତାଂକର ପେଶ୍‌କାର ଥିଲେ। ଜନାର୍ଦ୍ଦନଂକର ବଡ଼ଭାଇ ବୈକୁଂଠନାଥ ୧୮୭୭ରେ ବରଗଡ଼ରେ ଜନ୍ମ ହୋଇଥିଲେ।

ମେଧାବୀ ଛାତ୍ର ଥାଇ ସେ ନାଗପୁରରୁ ୧୮୯୬ରେ ବି.ଏ. ପାଶ୍ କରି କଲିକତା ବିଶ୍ୱବିଦ୍ୟାଳୟରୁ ଉପାଧ୍ୟୁତ୍ତର ଯୋଗ୍ୟତା ଅର୍ଜନ କରିଥିଲେ । ଜିଲ୍ଲାର ସେ ପ୍ରଥମ ସ୍ନାତକ। ୧୯୦୦ରେ ସରକାରୀ ଚାକିରିରେ ପଶିଲେ। ଏକ୍ଷ୍ଟ୍ରା ଆସିଷ୍ଟାଂଡ କମିଶନର ଭାବରେ ସେ କାର୍ଯ କରିଥିଲେ। ମଧ୍ୟପ୍ରଦେଶରୁ ସଂବଲପୁରକୁ ଆଣି ଓଡ଼ିଶାରେ ମିଶାଇବା ଦିଗରେ ସେତେବେଳେ ତାଂକର ଉଦ୍ୟମ ପ୍ରଶଂସନୀୟ ଥିଲା। ମାତ୍ର ୨୭ ବର୍ଷ ବୟସରେ ସେ ଇହଧାମରୁ ବିଦାୟ ନେଲେ। ଜନାର୍ଦନଂକର ବଡ଼ ଭଉଣୀ ରୁକ୍ମିଣୀ ଦେବୀ ସଂବଲପୁରର ପ୍ରସିଦ୍ଧ ଦେଶସେବୀ ଚଂଦ୍ରଶେଖର ବେହେରାଂକୁ ବିବାହ କରିଥିଲେ। ଚଂଦ୍ରଶେଖର ନାଗପୁରରୁ ଓକିଲାତି ପାସ୍ କରି ସଂବଲପୁରରେ ଓକିଲାତି କରୁଥିଲେ। ବହୁବର୍ଷଧରି ସେ ସଂବଲପୁର ମ୍ୟୁନିସ୍‌ପାଲଟିର ଚେୟାରମେନ୍ ଥିଲେ। ସଂବଲପୁରରେ କଂଗ୍ରେସ ଆଂଦୋଳନ ସେ ଆରଂଭ କରିଥିଲେ। ୧୯୨୮ରେ ମହାତ୍ମାଗାଂଧୀ ସଂବଲପୁରରେ ତାଂକ ଘରେ ଅତିଥି ହୋଇଥିଲେ। ଉତ୍କଳ ସମ୍ମିଳନୀର ସେ ଜଣେ ବଡ଼ ସମର୍ଥକ ଓ ପୁରୀ ଉତ୍କଳ ସମ୍ମିଳନୀର ସଭାପତି ଥିଲେ। ୧୯୩୬ରେ ମାତ୍ର ୬୩ ବର୍ଷ ବୟସରେ ସେ ପରଲୋକ ଗମନ କରିଥିଲେ। ବୈକୁଂଠନାଥଂକର ଏକ ଭାଇ ପ୍ରସନ୍ନ କୁମାର ଗାଂଗପୁର ଓ ଖଂଡପଡ଼ା ଆଦି ରାଜ୍ୟର ଦେୱାନ ଥିଲେ। ଅନେକ ଦିନ ସେ ଜମି ରେଜିଷ୍ଟ୍ରି ବିଭାଗରେ କାମ କରିଥିଲେ। 'ବୈକୁଂଠ ଏଂଡ ହିଜ୍ ଲେଟର୍ସ' ନାମକ ପୁସ୍ତକରୁ ଊନବିଂଶ ଶତାବ୍ଦୀର ଶେଷ ଦଶକ ଓ ବିଂଶ ଶତାବ୍ଦୀର ପ୍ରଥମ ଦଶବର୍ଷରେ ସଂବଲପୁର ସହରର ସମ୍ପୂର୍ଣ ସାମାଜିକ ଚିତ୍ର ଦେଖିବାକୁ ମିଳିଥାଏ। ଜନାର୍ଦ୍ଦନଂକର ଅନ୍ୟଏକ ଭଉଣୀ ସଂବଲପୁରର ପ୍ରଥମ ମାଟ୍ରିକ୍ୟୁଲେଟ ଧରଣୀଧର ମିଶ୍ରଂକର ପୁତ୍ର ଡାକ୍ତର ରାମଚଂଦ୍ର ମିଶ୍ରଂକୁ ବିବାହ କରିଥିଲେ। ରାମଚଂଦ୍ର ସଂବଲପୁରର ପ୍ରଥମ ଓଡ଼ିଆ ଡାକ୍ତର ଥିଲେ। ଆଉଜଣେ ଭାଇ ନୀଳକଂଠ ବି. ଏଲ. ପାଶ୍ କରିଥିଲେ। ସେ ମଧ୍ୟ ଅଳ୍ପ ବୟସରେ ମରିଗଲେ। ଅନ୍ୟଏକ ଭାଇ ବନମାଳୀ ମଧ୍ୟ ସରକାରୀ ଚାକିରୀ ରେ ଥାଇ ପଲଟିକାଲ୍ ଏଜେଂଟ ଓ ଅନ୍ୟ ଅଫିସ୍‌ରେ କାର୍ଯ କରିଥିଲେ।

ଡାକ୍ତର ଜନାର୍ଦନ ବାଲ୍ୟ କାଳରୁ ମାତା ପିତାଂକର ଧର୍ମପରାୟଣତା ସହିତ ଜ୍ୟେଷ୍ଠ ଦୁଇ ଭାଇଂକର କର୍ତବ୍ୟ ପରାୟଣତା ଓ ଦେଶାତ୍ମବୋଧ ଦ୍ୱାରା ପ୍ରଭାବିତ ହୋଇଥିଲେ। ଶ୍ରୀରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନଂଦ, ଯୋଗୀ ଅରବିଂଦଂକର ଆଦର୍ଶ ଓ ବାଣୀ ତାଂକ ବାଳକ ମନକୁ ଧର୍ମଭାବରେ ଅନୁପ୍ରାଣିତ କରିଥିଲା। ଅତି ଅଳ୍ପ ବୟସରେ ସେ ସଂଧ୍ୟା ଆରାଧନା ଯୋଗାଭ୍ୟାସ ଆଦି କରୁଥିଲେ। ମହାନଦୀର ବାଲି କିଂବା ବୁଢ଼ାରଜା ପାହାଡ଼ ଉପରେ ନିର୍ଜନରେ ସେ ଘଂଟା ଘଂଟାଧରି ଧ୍ୟାନ କରୁଥିଲେ। ସଂବଲପୁର ଜିଲ୍ଲା ସ୍କୁଲରେ ସେ ପାଠପଢ଼ା ଆରଂଭ କଲେ। ତାଂକୁ ପଂଦର ବର୍ଷ ବୟସ ବେଳେ ବାପା

ମରିଗଲେ। କିଛିଦିନ ସେ ଆସି କଟକର କଲେଜିଏଟ ସ୍କୁଲରେ ନାମ ଲେଖାଇଲେ ମାତ୍ର ପୁଣି ସଂବଲପୁର ଫେରିଗଲେ। ୧୯୧୨ରେ ସଂବଲପୁରରେ ତାଂକର ଛାତ୍ର ଜୀବନ ଶେଷ ହେଲା। ଜିଲ୍ଲା ସ୍କୁଲରେ ସଂବଲପୁରର ଅନେକ କୃତୀ ସଂତାନ ଯଥା ବୋଧରାମ ଦୁବେ, ଶଂକର ପ୍ରସାଦ ମିଶ୍ର, ଗୋକୁଳ ଚଂଦ୍ରବାବୁ, ଡାକ୍ତର ଆଇଜାକ୍ ସାଂତ୍ରା ତାଂକର ସହପାଠୀ ଥିଲେ। ମାତ୍ର ଏ ସମସ୍ତଂକର ମଧ୍ୟରେ ଡାକ୍ତର ଜନାର୍ଦ୍ଦନଂକର ଧର୍ମ ଓ ସାହିତ୍ୟ ପ୍ରତି ଯଥେଷ୍ଟ ଅନୁରାଗ ଥିଲା। ମାଟ୍ରିକ ପାସ୍ ପରେ ବିଦେଶରେ ଉଚ୍ଚଶିକ୍ଷା ଲାଭ ତାଂକର ଅଭିଳାଷ ଥିଲା। ବାପା ମରିଯାଇଥିବାରୁ ପରିବାରର ଆୟ କେବଳ ଜମିବାଡ଼ିର ଚାଷରୁ ଆସୁଥିଲା। ଭାଇମାନେ ମଧ୍ୟ ଆର୍ଥିକ ସାହାଯ୍ୟ ଦେବା ଅବସ୍ଥାରେ ନଥିଲେ । ବଡ଼ଭାଇ ପ୍ରସନ୍ନଂକୁ ସେ ରାୟଗଡ଼ରେ ଦେଖାକରି ନିରୁସାହିତ ହେଲେ। ମାତ୍ର ହୃଦୟରେ ଦଂଭଧରି ଦୃଢ ଇଶ୍ୱର ବିଶ୍ୱାସ ରଖି ସେ କଲିକତା ଯାଇ ସେଠାରେ ଜାପାନ ଯାଉଥିବା ଗୋଟିଏ ଜାହାଜରେ ଅର୍ଥହୀନ ଅବସ୍ଥାରେ ଯାତ୍ରାର ବ୍ୟବସ୍ଥା କଲେ।

ଜାହାଜରେ ଯାହାହେଉ ଦୈବ ଯୋଗକୁ ତାଂକୁ ଯିବାର ସୁବିଧା ମିଳିଗଲା। ସିଂଗାପୁର, ହଂକଂ ହୋଇ ସେ ଜାପାନର କୋବ୍ ସହରରେ ପହଂଚିଲେ। ଜାହାଜରୁ ସେ ନିୟମିତ ଭାବରେ ନିଜର ଯାତ୍ରା ବିଷୟ ଘରକୁ ଜଣାଉଥିଲେ। କୋବ୍ ସହରରେ ବୁଲୁଥିବାବେଳେ ସେ ଗୋଟିଏ ଆମେରିକାନ୍ ଜାହାଜର କ୍ୟାପଟେନଂକୁ ଦେଖିଲେ। ତାଂକ ଆଚରଣ ଓ ଗଭୀର ଧର୍ମ ବିଶ୍ୱାସରେ ପ୍ରଭାବିତ ହୋଇ ନିଜ ଜାହାଜରେ କାମକରି ଆମେରିକା ଯିବାକୁ କ୍ୟାପଟେନ୍ ସେ ଯୁବକକୁ ନିମଂତ୍ରଣ କଲେ। ଜାହାଜରେ କ୍ୟାପଟେନ ଧର୍ମଜ୍ଞ ଯୁବକଂକଠାରୁ ହିଂଦୁଧର୍ମ ଓ ଗୀତାର ନିଗଢ଼ ତତ୍ତ୍ୱଶୁଣି ମୁଗ୍ଧ ହୋଇ ଯାଇଥିଲେ। ଓଡ଼ିଶାରୁ ସାରଂଗଧର ଦାସ ସେତେବେଳେ କାଲିଫୋର୍ଣିଆ ରେ ରହୁଥାଂତି। ସେ ମଧ୍ୟ ନିଃସ୍ୱ ଭାବରେ ଜାହାଜରେ କାମ କରି ଆମେରିକା ଯାଇଥିଲେ। ତାଂକୁ ଚିଠି ଲେଖି ତାଂକଠାରୁ ଉଚିତ ସାହାଯ୍ୟ ଓ ପରାମର୍ଶ ପାଇବାକୁ ଡାକ୍ତର ଜନାର୍ଦ୍ଦନ ଆଶା ରଖିଥିଲେ। ମାତ୍ର ଜାହାଜ ସାନ୍‌ଫ୍ରାନ୍‌ସିସ୍କୋ ସହରରେ ଲାଗିଲା ପରେ ଭାରତୀୟ ମାନଂକୁ କର୍ତ୍ତୃପକ୍ଷ ପ୍ରବେଶ କରିବାକୁ ଅନୁମତି ଦେଲେନାହିଁ। ସେତେବେଳେ ଶିଖମାନଂକର ଗଦ୍ଦର ଆଂଦୋଳନ ଚାଲିଥିଲା ଓ ଯୁକ୍ତରାଷ୍ଟ୍ରର ଲୋକେ ଭାରତୀୟମାନଂକୁ ତାଂକ ଦେଶରେ ପ୍ରବେଶ କରିବାକୁ ବିରୋଧ କରୁଥିଲେ। ସିଧାସଳଖ ଭାରତକୁ ଆସିବାକୁ ଜାହାଜ ପାଇଲେ ନାହିଁ। ଦେଶଭ୍ରମଣ କରିବା ଇଚ୍ଛାରେ ସେ ଅଷ୍ଟ୍ରେଲିଆଯାଇ ସେଠାରେ କିଛିଦିନ ରହି ଗୋଟିଏ ସୈନ୍ୟବାହିନୀର ଜାହାଜରେ ପୁଣି ଜାପାନ ଫେରିଲେ। ସେଇ ପୁରୁଣା କୋବ ସହରରୁ ସେ କଲିକତା ଫେରିଲେ। ଇଶ୍ୱରଂକ ଉପରେ ଅଗାଧ ବିଶ୍ୱାସ ରଖି ସେ ବହୁସ୍ଥାନ ଭ୍ରମଣ କରିସାରିଥିଲେ ଓ ବିଦେଶରେ

ଉଚ୍ଚଶିକ୍ଷା ଲାଭ ଆଶା ତାଂକର ବିଫଳ ହୋଇଥିଲା। କଲିକତାରେ ଦୁଇ ବର୍ଷ ଆଇ.ଏ ପଢ଼ିଲେ। ଜନସେବା କରିବା ଈଶ୍ୱର ସେବାର ଶ୍ରେଷ୍ଠ ମାର୍ଗ ବୋଲି ଅନୁଭବ କରି ସେ ମେଡିକାଲ୍ କଲେଜରେ ନାମ ଲେଖାଇଲେ। ତାଂକୁ ଛାତ୍ରାବାସରେ ସ୍ଥାନ ମିଳିନଥିଲା। ମାତ୍ର ନିଜର ଗଭୀର ଆତ୍ମବିଶ୍ୱାସ ଓ ଭଗବତ ଭକ୍ତି ଯୋଗୁଁ ସେ ଏଥିରେ ବିଚଳିତ ନ ହୋଇ ଶିକ୍ଷା ସମାପ୍ତ କଲେ। ୧୯୨୩ ପର୍ଯ୍ୟଂତ ସେ କଲିକତାରେ ପ୍ରଥମେ ଡାକ୍ତରୀ ଛାତ୍ର ଓ ପରେ ହାଉସ୍ ସର୍ଜନ୍ ଭାବରେ ଅବସ୍ଥାନ କରିଥିଲେ। ଛୁଟି ମିଳିଲେ ସେ ସଂବଲପୁର ଆସୁଥିଲେ। ଏହି ସମୟରେ ୧୯୧୫ରେ ସଂବଲପୁରରେ ଭୀଷଣ ଭାବରେ ହଇଜା ଆରଂଭ ହେଲା। ଅନେକ ଲୋକ ମଲେ। ଲୋକେ ସହର ଛାଡ଼ି ପଳାଇ ଗଲେ ମାତ୍ର ନିଜ ଜୀବନକୁ ବିପନ୍ନ କରି ଡାକ୍ତର ଜନାର୍ଦନ ରୋଗୀମାନଂକର ସେବା ସହିତ ଲୋକମାନଂକୁ ପ୍ରତିଷେଧକ ବ୍ୟବସ୍ଥାମାନ ବୁଝାଇ ଦେଇଥିଲେ। ଛାତ୍ର ସମୟରେ ସେ ବାଉଁଶେନ୍ଦ୍ ମୁଗାର ଗୌଂତିଆ କୃତିବାସ ପାଣିଗ୍ରାହୀଂକର କନ୍ୟା କମଳା ଦେବୀଂକୁ ବିବାହ କରିଥିଲେ। ଛାତ୍ରାବସ୍ଥାରେ ଜନସେବା ସହିତ ଅଭିନେତା ଓ ସାହିତ୍ୟ ସାଧକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ। ଥରେ ଗୋଟିଏ ନାଟକ ଦଳ ଓଡ଼ିଶାରୁ ଅଭିନୟ କରିବାକୁ କଲିକତାରେ ପହଂଚିଲେ। ସେମାନଂକର 'କଳାପାହାଡ଼' ନାଟକ ଦେଖାଇବାର ଥିଲା। କଳାପାହାଡ଼ ଭୂମିକା ନେବା ଅଭିନେତା ଜଣକ ହଠାତ ଅସୁସ୍ଥ ହୋଇପଡିଲେ। ତାଂକୁ ନିମୋନିଆ ଜ୍ୱର ହେଲା। ଡାକ୍ତରୀ ଚିକିତ୍ସା କରିବା ଅବସରରେ ଏହାଜାଣିପାରି ଓଡ଼ିଶା ନାଟ୍ୟଦଳର ମର୍ଯାଦାରକ୍ଷା କରିବାକୁ ସେ ନିଜେ ମୁଖ୍ୟ ଅଭିନେତା ଭାବରେ ଅଭିନୟ କରି ନିଜ କଳାକୁଶଳତାରେ ଦର୍ଶକମାନଂକୁ ମୁଗ୍ଧ ଓ ଚମତ୍କୃତ କରିଥିଲେ। ସଂବଲପୁରରେ ଡାକ୍ତରୀ ବ୍ୟବସାୟ କରିବା ସମୟରେ ମଧ୍ୟ ସେ ଏକ ସୌଖିନ ନାଟ୍ୟ ସଙ୍ଘ ଗଠନ କରିଥିଲେ। ବଂଗଳାରୁ ବଛା ବଛା ନାଟକମାନ ଓଡ଼ିଆରେ ଅନୁବାଦ କରି ସେ ଅଭିନୟ କରାଉଥିଲେ। ପୁରୁଷମାନେ ନାରୀ ଭୂମିକାରେ ଅଭିନୟ କରୁଥିଲେ। ଡାକ୍ତର ନିଜେ ଏହାର ମୁଖ୍ୟ ଅଭିନେତା ଓ ପ୍ରଯୋଜକ ଥାଇ ସମସ୍ତଂକୁ ମୁଗ୍ଧ କରୁଥିଲେ। ପରବର୍ତୀ କାଳରେ ପ୍ରସିଦ୍ଧି ଲାଭ କରିଥିବା ସଂବଲପୁରର କେତେକ ବିଶିଷ୍ଟ ବ୍ୟକ୍ତି ଏହି ନାଟକମାନଂକରେ ଅଭିନୟ କରିଥିଲେ। ସେମାନଂକ ମଧ୍ୟରେ ଥିଲେ ପରବର୍ତୀ କାଳର ସବ୍ ଡେପୁଟି କଲେକ୍ଟର ଲକ୍ଷ୍ମୀନାରାୟଣ ପାଢ଼ୀ, ଜିଲ୍ଲା ଜଜ୍ ଅନଂତରାମ ଗୁରୁ ସାଂବାଦିକ ବିଶ୍ୱକେସନ ବହିଦାର ଓ ଡକ୍ଟର ଶ୍ରଦ୍ଧାକରଂକର ପିତା ଜନାର୍ଦନ। ରଂଗ ମଂଚରେ କୁଶଳ ଅଭିନେତା ଥାଇ ସେ କେବେକେବେ ସାଧାରଣ ସଭାରେ ବକ୍ତୃତା ଦେଲେ ଶ୍ରୋତାମାନଂକୁ ଅନର୍ଗଳ ଭାଷଣ ଦ୍ୱାରା ନିଜ ମତରେ ପ୍ରଭାବିତ କରିପାରୁଥିଲେ। ଛାତ୍ରାବସ୍ଥାରେ କଲିକତାରେ ବଂଗଭଂଗ ଆଂଦୋଳନ ତେଜି ଉଠିଥିଲା ଓ ଏହି ଆଂଦୋଳନର ନେତା ଓ ବିପ୍ଳବୀ ଅନୁଶୀଳନ ସମିତିର ସଭ୍ୟମାନଂକ ସହିତ ଛାତ୍ରାବସ୍ଥାରୁ ତାଂକର ସଂପର୍କ ଥିଲା ।

୧୯୨୩ରୁ ସଂବଲପୁର ସହରରେ ସେ ଡାକ୍ତରୀ ବ୍ୟବସାୟ ଆରମ୍ଭ କଲେ। ଡାକ୍ତରଂକ ସଂଖ୍ୟା ଅତି ଅଳ୍ପ ଥିଲା। କଂପାଉଂଡରମାନେ ଡାକ୍ତରଂକ ଲେଖା ଅନୁସାରେ ଔଷଧ ତିଆରି କରି ରୋଗୀମାନଂକୁ ଯୋଗାଉଥିଲେ। ବଜାରରେ ପେଟେଂଟ ମେଡ଼ିସିନ୍ ଏତେ ନଥିଲା। ଡାକ୍ତର ପୂଜାରୀ ଗୋଟିଏ ଔଷଧାଳୟ ଆରମ୍ଭ କଲେ। ଲୋକଂକୁ ସୁବିଧାରେ ପ୍ରସ୍ତୁତ କରି ଔଷଧ ଯୋଗାଇବା ତାଂକର ଲକ୍ଷ୍ୟ ଥିଲା। ମାତ୍ର ନିଜର ବ୍ୟବସାୟିକ ବୁଦ୍ଧି ଅଭାବରୁ ଏଦିଗରେ ତାଂକର କ୍ଷତି ବଢ଼ିବାରେ ଲାଗିଲା। ଲୋକମାନେ ଔଷଧ ନେଇ ମୂଲ୍ୟ ନଦେବାରୁ ବାଧ୍ୟହୋଇ ଔଷଧାଳୟଟିକୁ ସେ ବଂଦ କଲେ। ଚିକିତ୍ସା କ୍ଷେତ୍ରରେ ମଧ୍ୟ ସେ ରୋଗୀ ମାନଂକୁ ଘରେ ପରୀକ୍ଷା କରି ଔଷଧ ଲେଖିଦେବା ସହିତ ସହରରେ ବୁଲିବୁଲି ସକାଳେ ଚାରିଘଂଟା ଓ ଉପରବେଳା ଦୁଇଘଂଟା ପରିଶ୍ରମ କରୁଥିଲେ। ନିଜର ଲୋକପ୍ରିୟତା ସହିତ ସେ ନିଜେ ବ୍ୟବସାୟ କରି ଜାଣିଥିଲେ ଲକ୍ଷଲକ୍ଷ ଟଂକା ଉପାର୍ଜନ କରିଥାଂତେ ମାତ୍ର ତାଂକ ଚରିତ୍ରର ସବୁଠାରୁ ବିଶେଷତ୍ୱ ଥିଲା ସେବା। ଅର୍ଥାର୍ଜନ ତାଂକର ଗୌଣ ଥିଲା। ଥରେ ସେ ଗୋଟିଏ ବିଧବା ଅସହାୟ ସ୍ତ୍ରୀ ଲୋକକୁ ଜ୍ୱର ହୋଇଥିବାର ଖବର ପାଇ ଦେଖିବାକୁ ଘରକୁ ଗଲେ। ଏହା ଶୀତଦିନ। ରୋଗ ନିମୋନିଆ ବୋଲି ସେ ଜାଣିଲେ। ଶୀତରୁ ରକ୍ଷାପାଇବାକୁ ତାର ଖଂଡେ ହେଲେ କଂଥା କି କଂବଳ ନଥିଲା। ସେ ତାକୁ ଗୋଟେ କଂବଳପାରି ଶୋଇବାକୁ ପରାମର୍ଶ ଦେଲେ। ବିଧବାଟି ନିଜର ଆର୍ଥିକ ଅଭାବ ଜଣାଇଲା। ପରୀକ୍ଷାସାରି ଔଷଧ ଲେଖିଦେଇ ଉଠିଲାବେଳକୁ ରୋଗୀ ତାଂକୁ ଦୁଇଟଂକା ଫିସ୍ ବାବଦକୁ ଦେଲା, ଡାକ୍ତର ତାଠାରୁ ବୁଝିଲେ ଖୁରି, ଗିନା, ଗହନା, (ବଂଧକ) ଦେଇ ସେ ଏ ଦୁଇଟଂକା ଯୋଗାଡ଼ କରିଛି। ଡାକ୍ତର ତାକୁ ଦୁଇଟଂକା ଫେରାଇ ଦେଇ ସେଥିରେ ଔଷଧ କିଣିବାକୁ କହିଲେ। ନିଜ ପକେଟରୁ ପାଂଚଟଂକା ଦେଇ ଗୋଟିଏ ଶସ୍ତା କଂବଳ କିଣି ଶୀତ ଦିନେ ତାହା ବ୍ୟବହାର କରିବାକୁ ତାକୁ ପରାମର୍ଶ ଦେଲେ। ଡାକ୍ତର ପୂଜାରୀଂକର ଡାକ୍ତରୀ ବ୍ୟବସାୟ ଓ ଜନସେବାର ଏହା ଏକ ସାମାନ୍ୟ ଉଦାହରଣ। ତାଂକ ପରାମର୍ଶ କକ୍ଷରେ ଅନେକ ନୀତି ବାକ୍ୟ ଭିତରେ ଗୋଟିଏ ଥିଲା, ଯାହାର ଓଡ଼ିଆ ଅନୁବାଦ ହେବ –

ହୃଦୟ କଦାପି କଠୋର ନହେଉ।
ମିଜାଜ୍ କଦାପି କ୍ଲାଂତ ନହେଉ।
ସ୍ପର୍ଶ କଦାପି ନ କାଟୁ।

ନିଜେ ଏଲୋପାଥି ଚିକିତ୍ସକ ଥିଲେ ମଧ୍ୟ ସେ ଔଷଧର ଦୁର୍ମୂଲ୍ୟ ଦୃଷ୍ଟିରୁ ଦେଶୀ ଜଡ଼ିବୁଟି ବ୍ୟବହାର କରିବାକୁ ରୋଗୀଂକୁ ପରାମର୍ଶ ଦେଉଥିଲେ। ନିଜେ ଏସବୁ ପ୍ରୟୋଗ କରି ରୋଗୀର ବ୍ୟାଧି ଦୂର କରୁଥିଲେ। ୧୯୫୮ରେ ସଂବଲପୁରରେ ଜିଲ୍ଲା ବୈଦ୍ୟ

ସମ୍ମିଳନୀ ହୋଇଥିଲା । ସେଥିରେ ସେ ସଭାପତି ହୋଇଥିଲେ । କେବଳ ଅର୍ଥ ଆକାଂକ୍ଷା ଓ ବିଳାସ ଉପକରଣ ସଂଗ୍ରହ ଚିକିତ୍ସକର ଉଦ୍ଦେଶ୍ୟ ନ ହେଉ । ପ୍ରାଣୀମାନଂକର ଦୁଃଖମୋଚନ ନିମିତ୍ତ ଦୟାପରବଶ ହୋଇ ଚିକିତ୍ସା କରିବା କରିବା ଜଗତ୍‌ରେ ସର୍ବପେକ୍ଷା ମହତ୍ କାର୍ଯବୋଲି ସେ ସେଠାରେ ବୁଝାଇ ଦେଇଥିଲେ । ଶାସ୍ତ୍ରରେ ଅଛି କୋଟି କୋଟି କପିଳା ଗାଈ ଦାନ କଲେ ଯେତିକି ପୁଣ୍ୟଲାଭ ହୁଏ ଗୋଟିଏ ମାତ୍ର ଆତୁର ରୋଗୀକୁ ଆରୋଗ୍ୟ କରାଇପାରିଲେ ତାହାର କୋଟିଗୁଣ ଫଳ ମିଳିଥାଏ । କେବଳ ବାକ୍ୟରେ ନୁହେଁ, ନିଜ ଚିକିତ୍ସା ବ୍ୟବସାୟରେ ଆଜୀବନ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସମାଜକୁ ଆଦର୍ଶ ଦେଖାଇ ପାରିଥିଲେ । 'ଡାକ୍ତର' ନାମରେ ସେ ଗୋଟିଏ କ୍ଷୁଦ୍ର ଗଳ୍ପ ଲେଖିଥିଲେ ଓ ସେଥିରେ ଗରିବ ରୋଗୀମାନଂକ ପ୍ରତି ଚିକିତ୍ସକର ମମତା ସେ ପ୍ରତିଫଳନ କରାଇ ଅଛଂତି । ତାଂକର ପତ୍ନୀ କମଳାଦେବୀ ମଧ୍ୟ ତାଂକର ଆଦର୍ଶ ସହଧର୍ମିଣୀ ଥାଇ ଆଦର୍ଶ ବଂଧୁ, ପତ୍ନୀ ଓ ମାତା ରୂପେ ନିଜର କର୍ତବ୍ୟ ସଂପାଦନ କରିପାରିଥିଲେ ।

ସଚେତନ ନାଗରିକ ଭାବରେ ରାଜନୀତି ସହିତ ଛାତ୍ରଜୀବନରୁ ସଂପୃକ୍ତ ଥିଲେ ମଧ୍ୟ ଚିକିତ୍ସା ବ୍ୟବସାୟ ଆରଂଭ କରି ସେ ଏଥିରୁ ଦୂରେଇ ରହିଥିଲେ । ୧୯୨୮ରେ ମହାତ୍ମା ଗାଂଧୀ ସଂବଲପୁର ଆସିଥିଲେ । ତାଂକୁ ମହାନଦୀ ବାଲିରେ ସଂବର୍ଧନା ଦେବାକୁ ଏକ ବିରାଟ ସଭା ହୋଇଥିଲା । ତାଂକୁ ଦେବା ମାନପତ୍ରର ଚିଠା ଡାକ୍ତର ପୂଜାରୀ କରିଥିଲେ ଓ ନିଜେ ପାଠକରି ତାଂକୁ ଶୁଣାଇଥିଲେ । ଜନାର୍ଦନଂକର ଭିଣୋଇ ଚଂଦ୍ରଶେଖର ବେହେରା ସଂବଲପୁରର ଅବିସଂବାଦୀ ନେତା ଥିଲେ । ସଂବଲପୁରର ଓଡ଼ିଶାରେ ମିଶ୍ରଣ ଉତ୍କଳ ସମ୍ମିଳନୀର କାର୍ଯ ପ୍ରସାରରେ ସେ ଅଗ୍ରଣୀ ଥିଲେ ମାତ୍ର ସେ ମଧ୍ୟ ଜନାର୍ଦନଂକୁ ରାଜନୀତିକୁ ଆଣି ପାରି ନ ଥିଲେ । ଏକ ଅପ୍ରତ୍ୟାଶିତ ପରିସ୍ଥିତିରେ ସେ ରାଜନୀତିକୁ ଟାଣିହୋଇ ଆସି କଟକ ଓ ସଂବଲପୁର ଜେଲରେ କାରାଦଂଡ ଭୋଗିଥିଲେ । ସରକାର ୧୯୪୬ରେ ହୀରାକୁଦବଂଧ ଯୋଜନାର ଶୁଭାରଂଭ କଲେ । ଜଣାପଡ଼ିଲା ଏହି ବଂଧ ନିର୍ମାଣ ଫଳରେ ୧୩୦ ବର୍ଗ ମାଇଲ ଅଂଚଳ ଜଳମଗ୍ନ ହେବ । ପ୍ରାୟ ୯୫ ଖଂଡ ଗାଁ ମଧ୍ୟ ଜଳରେ ବୁଡିଯିବ । ଏହି ଗ୍ରାମ ଗଡ଼ିକ ମଧ୍ୟରେ ଜିଲ୍ଲାର ଉର୍ବର ଜମିଯୁକ୍ତ ଜଣାଶୁଣା କେତେଖଂଡ ଗାଁ ରହିଥିଲା । ଜିଲ୍ଲାରେ ଏହା ଆତଂକ ସୃଷ୍ଟିକଲା । ସରକାରଂକ ତରଫରୁ ଏହାର ସୁଫଳ ବୁଝାଇବାରେ ଆଂତରିକତାର ଅଭାବ ଥିଲା । ଅନେକ ଭାରତବିଖ୍ୟାତ ଇଂଜିନିଅର ମଧ୍ୟ ନଦୀବଂଧ ଯୋଜନାର କୁଫଳ ଦର୍ଶାଇଥିଲେ । ସଂବଲପୁରର ବ୍ୟବସ୍ଥାପକ ଲାଟ ସଭାରୁ ଇସ୍ତଫା ଦେଲେ । ତଥାପି ସରକାର ଲୋକମାନଂକର ଆପତ୍ତି ଅଭିଯୋଗ ପ୍ରତି କର୍ଣପାତ କଲେ ନାହିଁ । ଭବିଷ୍ୟତ କ୍ଷତିପୂରଣ ପୁନର୍ନିର୍ମାଣ ଓ ପୁନର୍ବାସ ବିଷୟରେ ଲୋକମାନଂକୁ

ନିର୍ଦ୍ଦିଷ୍ଟ ଭାବରେ ନ ଜଣାଇ ସରକାରଂକର ନୀତିକୁ କାର୍ଯକାରୀ କରିବାକୁ ଗଡ଼ିଏ ଜି ହଜୁର ହାକିମ ପୋଷାଗଲେ। ସଂବଲପୁରର ବିଶିଷ୍ଟ ବୁଦ୍ଧିଜୀବି ସମସ୍ତେ ଏହି ଯୋଜନାର ବିରୋଧ କଲେ। ରାଜନୈତିକ ସ୍ତରରେ ଏହାର ପ୍ରତିରୋଧ ନିମିତ୍ତ ଉଦ୍ୟମ ହେଲା। ମହାତ୍ମାଗାନ୍ଧିଂକ ଅସହଯୋଗ ଆଂଦୋଳନକୁ ପଂଥାରୂପେ ଗ୍ରହଣ କରି ୧୯୪୭ ମଇରେ କୋର୍ଟ କଚେରୀରେ ପିକେଟିଂ କରି ଶାସନକଳକୁ ଅଚଳ କରିଦେବାକୁ ଉଦ୍ୟମ ଆରଂଭ ହେଲା। ଡାକ୍ତର ପୂଜାରୀ ଜଣେ ଅଣରାଜନୈତିକ ବ୍ୟକ୍ତିଥିଲେ ମଧ୍ୟ ଲୋକମାନଂକର ଭବିଷ୍ୟତ ଦୁର୍ଗତି ଚିଂତା କରି ଏଥିରେ ସହଯୋଗ ଦେଲେ। ଅଜାତଶତ୍ରୁ ସମାଜସେବୀ ସର୍ବଜନମାନ୍ୟ ଭାବରେ ତାଂକୁ ପ୍ରଥମ ସତ୍ୟାଗ୍ରହୀ ବଛାଗଲା। ମେ ମାସ ଏକୋଇଶ ତାରିଖରେ ସେ ଓ ତାଂକ ସହଧର୍ମିଣୀ କମଳାଦେବୀ ସତ୍ୟାଗ୍ରହ କରି ଗିରଫ ହେଲେ। ସେମାନେ ମଂଦିରରେ ଦେବଦର୍ଶନ ପୂଜାଅର୍ଚ୍ଚନା କରି ୧୪୪ ଧାରା ଭଂଗକରିବାକୁ କଚେରିକୁ ଆସିବାବେଳେ ବିରାଟ ଜନତା ତାଂକୁ ସଂବର୍ଧନା ଦେଲେ। ବିଚାରରେ ସେ ଦୁହିଁଂକୁ ଚାରିମାସ ଲେଖା ଜେଲଦଂଡ ଦିଆଗଲା। ୧୪୪ ଧାରା ଭଂଗ ଭାରତୀୟ ପିଂଗଳ କୋର୍ଡର ୧୮୮ ଧାରାର ଅପରାଧ। ଏହା ପୋଲିସ ଧର୍ତବ୍ୟ ଅପରାଧ ନ ଥିଲେ ମଧ୍ୟ ଆଇନ ସଂଶୋଧନ କରି ଏହା କରାଗଲା। ତାଂକୁ ଗିରଫ କରାଗଲାବେଳେ ପୁଲିଶର ଲାଠିମାଡ଼ରେ ବହୁତ ଲୋକ ଆହତ ହେଲେ। ମହିଳା ସତ୍ୟାଗ୍ରହୀମାନଂକୁ ଗିରଫ କରି ଦୂର ସ୍ଥାନମାନଂକରେ ଛାଡି ଦିଆଗଲା। ଆଂଦୋଳନ ମାତ୍ର ବିଫଳ ହେଲା ନାହିଁ । ଡାକ୍ତର ପୂଜାରୀ ଚିକିତ୍ସା ଦାୟିତ୍ୱରୁ ଅବ୍ୟାହତି ପାଇ ଜେଲରେ ଧର୍ମପୁସ୍ତକ ପାଠ ଓ ସାହିତ୍ୟ ଚର୍ଚ୍ଚାରେ ମନ ଦେଲେ। ଏକ ଧର୍ମପୁସ୍ତକ 'ଗୀତାର୍ଥ ଦୀପିକା' ନାମରେ ସେଠାରେ ସେ ଲେଖିଥିଲେ। ଅଗଷ୍ଟ ପଂଦର ୧୯୪୭ ରେ ଭାରତ ସ୍ୱାଧିନ ହେବାରୁ ତାଂକ କାରାଦଂଡ ମାଫ କରାଗଲା। ବିଚାରାଧୀନ ଜେଲ ବଂଦୀମାନେ ମଧ୍ୟ ମୁକ୍ତ ହେଲେ। ସେ ସଂବଲପୁର ଫେରିଲେ। ତାଂକୁ ପାଂଚହଜାର ଟଂକାର ଥଳି ଦେଇ ବିରାଟ ପଟୁଆରରେ ଘରକୁ ନିଆଗଲା। ଏହାପରେ ସେ ଆଉ ରାଜନୀତି ସହିତ ସଂପୃକ୍ତ ହେଇନାହାଂତି। ଇଚ୍ଛା କରିଥିଲେ ଜିଲ୍ଲାର ଯେ କୌଣସି ନିର୍ବାଚନରେ ଯେ କୌଣସି ପଦପାଇଁ ସେ ଅବିବାଦୀୟ ପ୍ରାର୍ଥୀ ହୋଇ ପାରିଥାଆଂତେ।

ସାହିତ୍ୟିକ ଓ ସାଂବାଦିକ ଭାବରେ ଜନାର୍ଦନ ମଧ୍ୟ ନିଜ ବହୁମୁଖୀ ପ୍ରତିଭା ଦେଖାଇ ପାରିଥିଲେ। ସ୍ୱପ୍ନେଶ୍ୱର ଦାସଂକ 'ହୀରାଖଂଡ', ଦୟାନିଧି ମିଶ୍ରଂକ 'ନବଯୁଗ' ସାହିତ୍ୟ ପତ୍ରିକାରେ ସେ ନିୟମିତ ଲେଖୁଥିଲେ। ଅନେକ କ୍ଷୁଦ୍ର ଗଳ୍ପ, କବିତା, ଧର୍ମନିବଂଧ ସେ ରଚନା କଲେ। ଅଳ୍ପ ରଚନା ପ୍ରକାଶିତ ହେଲା। ପ୍ରକାଶନ ଦିଗରେ ସେ ବିଶେଷ ଆଗ୍ରହୀ ନ ଥିଲେ। ବ୍ରହ୍ମର୍ଷି ଗୌତମ ବା ଆଦର୍ଶ ବ୍ରାହ୍ମଣ ତାଂକର ଏକ ମୌଳିକ ରଚନା ଭାବରେ

ଗୃହୀତ । ଏହି ନାଟକଟିରେ ଗୌତମ ଋଷିଂକର ଆଦର୍ଶ ଚରିତ୍ର ସହିତ ବିଶ୍ୱାମିତ୍ର ଇଂଦ୍ର ଓ ଅହଲ୍ୟାଂକର ଚରିତ୍ର ଚିତ୍ରଣ କରାଯାଇଅଛି । 'ଚରିତ୍ରଦର୍ପଣ' ଉପନ୍ୟାସ ଛଅଖଂଡରେ ବିଭକ୍ତ ଓ ଏହା ତାଂକର ଏକ ଅନବଦ୍ୟ କୃତି । ଧର୍ମସାହିତ୍ୟ ରଚନା କ୍ଷେତ୍ରରେ ଗୀତାର ବାଖ୍ୟା ତାଂକର ଅତି ଲୋକପ୍ରିୟ ଥିଲା । କଟକ ଜେଲରେ ଗୀତାର୍ଥ ଦୀପିକା ବ୍ୟତୀତ ସେ ଗୁରୁବାଣୀ ବା ସାଧନା ବିଜ୍ଞାନ ନାମରେ ଏକ ଦାର୍ଶନିକ ଗ୍ରଂଥ ରଚନା କରିଥିଲେ । ତାଂକ ପୁସ୍ତକରେ ସେ ତିନୋଟି ବାଣୀ ପ୍ରଚାର କରିଛଂତି ଯଥା ଧର୍ମର ଜୟ ଅଧର୍ମର ବିନାଶ ଓ ପ୍ରାଣୀମାନଂକ ମଧ୍ୟରେ ସଦ୍‌ଭାବ ମାତ୍ର ଡାକ୍ତରଂକର ଜୀବନର ଶ୍ରେଷ୍ଠ ପରିଚୟ ବୋଧହୁଏ ସମାଜରେ ତାଂକର ଆଧ୍ୟାତ୍ମିକ ଚେତନା ସୃଷ୍ଟି । ଧର୍ମଚର୍ଚା ତାଂକ ଜୀବନର ବ୍ରତ ଓ ଦିନଚର୍ଯାର ଏକ ମୁଖ୍ୟ ଅଂଗ ଥାଇ ଚାଳିଶି ବରଷ କାଳ ସେ ସମାଜକୁ ଏହାଦ୍ୱାରା ପ୍ରଭାବିତ କରିଥିଲେ । ସଂବଲପୁର ସହରର ଉପକଂଠରେ ବାଲିବଂଧଠାରେ ତାଂକ ଆଶ୍ରମ 'ଗୀତାଗୁଡ଼ି'ରେ ପ୍ରତିଦିନ ସଂଧ୍ୟାରେ ଧର୍ମଚର୍ଚା ହେଉଥିଲା । ଗୀତା, ଭାଗବତ, ପୁରାଣ ଆଦି ପାଠ ସହିତ ବାଖ୍ୟାନ ଓ ଚର୍ଚା କରାଯାଉଥିଲା । ଜାତି ଧର୍ମ, ବର୍ଣ, ବୟସ ଓ ସାମାଜିକ ପ୍ରତିଷ୍ଠା ଭୁଲିଯାଇ ସବୁ ଶ୍ରେଣୀର ଲୋକେ ସେଠାରେ ସମବେତ ହୋଇ ଏହି ଆଲୋଚନାରୁ ସ୍ୱାଦ ଗ୍ରହଣ କରୁଥିଲେ । ଏତେ ଦୀର୍ଘକାଳ ଅନବରତ ଧର୍ମଚର୍ଚା ବର୍ତମାନ ଅବିଶ୍ୱାସନୀୟ ହୋଇପାରେ । ଦୁର୍ଲଂଘ୍ୟ କୈଳାଶ ମାନସରୋବର ସହିତ ହିମାଳୟର ଗଂଗୋତ୍ରୀ, ଯମୁନୋତ୍ରୀ, କେଦାରନାଥ, ବଦ୍ରିନାଥ ସେ ୧୯୩୫–୩୬ରେ ପର୍ଯଟନ କରି ବର୍ଷା, ଦାରୁଣ ଶୀତ ଓ କାକରରେ ଉପବାସ ରହି ସତ୍‌ସଂଗ କରି ନିଜର ଅଭିଜ୍ଞତା ସହିତ ଧାର୍ମିକ ଚେତନା ସମାଜକୁ ବୁଝାଇବାରେ ସେ ସମର୍ଥ ହୋଇଥିଲେ । ପରବର୍ତୀ କାଳରେ 'କୈଳାସ ଯାତ୍ରା' ନାମରେ ତାଂକର ଏକ ପୁସ୍ତକ ପ୍ରକାଶିତ ହୋଇଥିଲା । ସହରରୁ ଚଉଦ ମାଇଲ ଦୂର ଚିପିଲିମା ଗ୍ରାମରେ ମହାନଦୀ କୂଳରେ ସାଧନା ନିମିତ୍ତ ସେ କଲ୍ୟାଣ ଆଶ୍ରମ ପ୍ରତିଷ୍ଠା କରିଥିଲେ । ପ୍ରତିମାସରେ ସେ ନିୟମିତ ଭାବରେ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ଏହି ଆଶ୍ରମକୁ ଯାଇ ସେଠାରେ ସାରାଦିନ ଓ ରାତି ଭଗବତ ଆରାଧନା ଓ ଶାସ୍ତ୍ର ଚର୍ଚାରେ ଅତିବାହିତ କରୁଥିଲେ । ତାଂକ ବ୍ୟକ୍ତିତ୍ୱରେ ଆକର୍ଷିତ ହୋଇ ସହରର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ମଧ୍ୟ ସେଠାକୁ ନିୟମିତ ଯିବା ଆରଂଭ କରି ସାଧନା କଲେ । ହୀରାକୁଦବଂଧ ଯୋଜନା ଫଳରେ ଗ୍ରାମଟି ସରକାରୀ ଦଖଲକୁ ଚାଲିଗଲା । ଆଶ୍ରମଟି ନଦୀକୂଳ ଓ ପୂର୍ବାମୁଖୀ ଥାଇ ସାଧନା ଭଜନ ପାଇଁ ଅନୁକୂଳ ଥିଲା । ଏହା ଚାଲିଯିବାପରେ ମହାନଦୀର ଅପର କୂଳରେ ବାଉଁଶଁରା ଗାଁ ବାହାରେ ସେ ଅନ୍ୟ ଏକ ଆଶ୍ରମ ପ୍ରତିଷ୍ଠା କଲେ । ପ୍ରତିମାସରେ ତିନି ଦିନ ଡାକ୍ତର ପୂଜାରୀ ସେଠାରେ ଉପସ୍ଥିତ ରହି ଭକ୍ତମାନଂକ ସହିତ ଧର୍ମଚର୍ଚ୍ଚା ଓ ସେମାନଂକର ସଂଦେହ ମୋଚନ କରୁଥିଲେ । 'ସତ୍‌ସଂଗ' ଆଶ୍ରମର

ପ୍ରତିଷ୍ଠା ବଢ଼ିବା ସହିତ ଭକ୍ତ ସମାଗମରେ ଗୀତା ଜୟଂତୀ ଆଦି ବିଶିଷ୍ଟ ଉତ୍ସବ ମାନ ସେଠାରେ ପାଳିତ ହେଲା। କାର୍ତ୍ତିକ, ମାଘ ଆଦି ଧର୍ମ ମାସରେ ଦୂର ସ୍ଥାନରୁ ବିଦ୍ୱାନ୍ ମାନେ ଆସି ସେଠାରେ ବିଭିନ୍ନ ପୁରାଣ, ଧର୍ମଗ୍ରଂଥ ଆଦିର ବାଖ୍ୟା କରୁଥିଲେ। ଦୈନିକ ଦୁଇବେଳା ପୂଜା ଧର୍ମଚର୍ଚ୍ଚାରେ ବ୍ୟସ୍ତ ରହି ଓ ମାସକୁ ତିନି ଦିନ ଅନୁପସ୍ଥିତ ଥାଇ ମଧ୍ୟ ତାଂକର ନିଜ ଗଭୀର ଧର୍ମ ବିଶ୍ୱାସ ଯୋଗୁ ରୋଗୀମାନେ ତାଂକର ଅନୁପସ୍ଥିତି ଅନୁଭବ କରିପାରୁ ନ ଥିଲେ। ତାଂକର ନୀତିବାକ୍ୟ ଥିଲା। 'ରଖେ ହରି ମାରେ କିଏ ? ମାରେ ହରି ରଖେ କିଏ ?' ୬୮ ବର୍ଷ ବୟସରେ ତାଂକର ହୃଦରୋଗ ଦେଖାଗଲା। ଶରୀର ପ୍ରତି ତାଂକର ଆସକ୍ତି କେତେବେଳେ ନ ଥିଲା। ସ୍ଥୂଳ ଶରୀର ସୁସ୍ଥ ରଖିବାକୁ ଯେତିକି ବିଶ୍ରାମ ଦରକାର ନିଜେ ଚିକିତ୍ସକ ଥାଇ ସେ ମଧ୍ୟ ସେ ଏଥିପ୍ରତି ସଚେତନ ନ ଥିଲେ। ଡିସେଂବର ୫ ତାରିଖ ମଂଗଳବାର ଶୋଇବା ଘରେ ଶ୍ରୀକୃଷ୍ଣଂକ ଚିତ୍ର ସାମନାରେ ରଖି ଭଗବତ ନାମ ସ୍ମରଣ କରି ସେ ଭୌତିକ ଶରୀର ତ୍ୟାଗ କଲେ। ଗୀତାର ଜଣେ ସ୍ଥିତପ୍ରଜ୍ଞଂକର ଆଉ ଦର୍ଶନ ମିଳିଲା ନାହିଁ।

୫-୧୨-୧୯୬୧





# ସଂବିଧାନ ସଭାରେ ଲୋଡ଼ାଥିବା
# ଅଚ୍ୟୁତାନଂଦ ପୁରୋହିତ

ଦେଶ ସ୍ୱାଧୀନ ହେବାର ପୂର୍ବକଥା । ୧୯୪୬ ଜୁଲାଇ ୩ ତାରିଖରେ ସରଦାର ବଲ୍ଲଭଭାଇ ପଟେଲ କଂଗ୍ରେସ ସାଂସଦୀୟ ଦଳର ମୁଖ୍ୟ ଭାବରେ ଓଡ଼ିଶାର ପ୍ରଧାନ ମଂତ୍ରୀଂ(ସେତେବେଳେ ସେଇଆ କୁହାଯାଉଥିଲା)କୁ ଗୋଟିଏ ତାରବାର୍ତ୍ତା ପଠାଇଲେ । ସେଥିରେ ଲେଖାଥିଲା ଶାସନ ବିଧାୟକ ସଭା (କନ୍‌ଷ୍ଟିଚୁଏଂଟ ଆସେମ୍ବ୍ଲି) ସଭ୍ୟ ପଦ ପାଇ ଶାରୀରିକ ଶକ୍ତି ଥିଲେ ବି ଦାସ (ଭୁବନାନଂଦ ଦାସ) ଓ ସଂବଲପୁରର ସରକାରୀ ଓକିଲ ରାୟବାହାଦୁର ଅଚ୍ୟୁତାନଂଦ ପୁରୋହିତଂକର ନାମ ଅଂତର୍ଭୁକ୍ତ କରାଯାଉ ଏହା ସେ ପରାମର୍ଶ ଦେଉଅଛଂତି । ସେଇଦିନ ସରଦାର୍ ପଟେଲ ଓଡ଼ିଶାର ପ୍ରଧାନମଂତ୍ରୀଂକୁ ଏହି ମର୍ମରେ ଗୋଟିଏ ଚିଠି ମଧ୍ୟ ଲେଖିଲେ । ବି.ଦାସ ଜଣେ ପ୍ରତିଷ୍ଠିତ ସାଂସଦ । ଦୀର୍ଘଦିନ ସେ କେଂଦ୍ର ଆସେମ୍ବ୍ଲିରେ ଓଡ଼ିଶାର ସଭ୍ୟଥିଲେ । ସେତେବେଳେ ଓଡ଼ିଶାରୁ ମାତ୍ର ଦୁଇଜଣ ସଭ୍ୟ ସେଠାକୁ ନିର୍ବାଚିତ ହେଉଥିଲେ । ବି.ଦାସ ଓଡ଼ିଶାରେ ସୁପରିଚିତ ଥିଲେ ମାତ୍ର ଅନ୍ୟ ନାମଟି ଜଣେ ସରକାରୀ ଓକିଲ ଓ ରାୟବାହାଦୁର ପଦବୀଧାରୀଂକର । ନିଜ ଜିଲ୍ଲା ବାହାରେ ତାଂକର ବିଶେଷ ପ୍ରସିଦ୍ଧି ନ ଥିଲା । ସରଦାର୍ ପଟେଲ ଲେଖିଥିଲେ ଅଚ୍ୟୁତାନଂଦଂକର

ଜଣେ ଓକିଲଭାବରେ ବିଶେଷ ଖ୍ୟାତି ଅଛି। ଯେଉଁ ସଭାରେ ସଂବିଧାନ ପ୍ରସ୍ତୁତ ହେଉଛି ସେ ସେଠାକୁ ଗଲେ ଏଦିଗରେ କିଛି ଅବଦାନ ଦେବେ। ଅନେକ କମିଟି ସେଠାରେ ଗଢ଼ାଯିବ। ସେଇ କମିଟିମାନଂକରେ ତାଂକ ଅଭିଜ୍ଞତା ଓ ଯୋଗ୍ୟତାକୁ କାମରେ ଲଗାଯିବ। ତାଂକ ବିରୋଧରେ କୁହାଯାଇପାରେ ଯେ ସେ ଜଣେ ଇଂରେଜ ସରକାରଂକର ଉଚ୍ଚ ଉପାଧିଧାରୀ, ମାତ୍ର ଯେଉଁମାନେ ବିଶେଷଜ୍ଞ, ଦକ୍ଷ ଓ ଆଇନଜ୍ଞ ହିସାବରେ ପ୍ରତିଷ୍ଠିତ ସେମାନଂକ କ୍ଷେତ୍ରରେ ଏହାକୁ ଦୃଷ୍ଟିରୁ ଏଡ଼ାଇ ଦିଆଯାଇପାରିବ। ତେଜ୍ ବାହାଦୁର ସାପ୍ରୁ, ଏମ ଆଇ ଜୟକାର ଆଦିଂକ କ୍ଷେତ୍ରରେ ଏହା କୋହଳ କରି ଦିଆଯାଇଥିଲା। ସେ ଲେଖିଥିଲେ ମୁଁ ଯାହା ରିପୋଟ ପାଇଛି ସେଥିରୁ ଜାଣିଛି ସେ ଜଣେ ଦକ୍ଷ ଓ ଅଭିଜ୍ଞ ଓକିଲ। ସେ ସଂବିଧାନ ସଭାକୁ ଆସିଲେ ସଂବଲପୁରର ଲୋକେ ଖୁସି ହେବେ ଓ ସେମାନଂକର ଅଭିଯୋଗ ରହିବ ନାହିଁ। ଏହାଛଡ଼ା ସଂବଲପୁର ପରି ଗୋଟିଏ ଆଂଶିକ ବହିର୍ଭୂତ ଅଂଚଳର ସେ ପ୍ରତିନିଧିତ୍ୱ କରିବେ।

ସଂବିଧାନ ସଭାକୁ ଅନେକ ଅଣ କଂଗ୍ରେସ ନେତା ଅପ୍ରତ୍ୟକ୍ଷ ନିର୍ବାଚନରେ ଯାଇଥିଲେ। ବି.ଆର ଆଂବେଦକର, ସାର୍ ଆଲାଦି କୃଷ୍ଣ ସ୍ୱାମୀ, ଗୋପାଳ ସ୍ୱାମୀ ଆୟଂଗାର, ଭି.ଟି କୃଷ୍ଣମାଚାରୀ ଆଦି ସେମାନଂକର ନିଜ କ୍ଷେତ୍ରରେ ବିଶେଷ ଦକ୍ଷତା ପାଇଁ କଂଗ୍ରେସଦଳ ତରଫରୁ ସଂବିଧାନ ପ୍ରସ୍ତୁତି ପାଇ ଅନ୍ୟ ରାଜ୍ୟମାନଂକରୁ ପଠାଯାଇଥିଲେ ମାତ୍ର ଓଡ଼ିଶାରେ ସରଦାର୍ ପଟେଲଂକ ପରାମର୍ଶ ସତ୍ୱେ ଏହା କାର୍ଯକାରୀ ହୋଇ ନ ପାରିବା ଓଡ଼ିଶାର ଦୁର୍ଭାଗ୍ୟ ଥିଲା।

ଓଡ଼ିଶାରେ ଆଜିକାଲି ତାଂକ ଭଳିଆ ଜଣେ ଆଇନବିତ୍ ଜୁରିଷ୍ଟ ସଂପୂର୍ଣ ବିସ୍ମୃତ, ମାତ୍ର ଅଣକଂଗ୍ରେସ ବ୍ୟକ୍ତି ଥିଲେ ମଧ୍ୟ ତାଂକ ନାମ ପଠାଇବାକୁ ଦିଲ୍ଲୀରୁ ନିର୍ଦ୍ଦେଶ ଆସିବା ନିଶ୍ଚୟ ତାଂକ ଦକ୍ଷତାର ପ୍ରମାଣ ଓ ଗୌରବର କଥା। ଅଚ୍ୟୁତାନଂଦ ୧୮୯୩ରେ ସଂବଲପୁର ସଦରଥାନା ଅଂତର୍ଗତ ସଂକରମା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ସଂକରମା ସଂବଲପୁର ସହରଠାରୁ ମୋଟେ ୪ ମାଇଲ ଦୂରରେ। ଏହାର ପୁରୋହିତ ପରିବାର ପଶ୍ଚିମ ଓଡ଼ିଶାରେ ନ ହେଲେ ମଧ୍ୟ ସଂବଲପୁର ଜିଲ୍ଲାର ସର୍ବପୁରାତନ ବ୍ରାହ୍ମଣ ବୋଲି ଦାବିକରଂତି। ସଂବଲପୁରରେ ସାର୍ବଭୌମ୍ୟ ରାଜଶକ୍ତି ପ୍ରତିଷ୍ଠା ହେଲା ଦିନଠାରୁ ଏହି ପୁରୋହିତ ପରିବାରର ବରିଷ୍ଠ ଶାଖାର ବୟୋଜ୍ୟେଷ୍ଠ ସଭ୍ୟ ଗୁରୁ ହେବାର ଗୌରବ ଅର୍ଜନ କରଂତି। ପ୍ରତିବର୍ଷ ଦଶହରା ଦିନ ରାଜା ସେନାପତି ଭାବରେ ନିଜ ଦାୟିତ୍ୱ ପରିତ୍ୟାଗ କରି ଗୁରୁଂକୁ ରାଜସିଂହାସନରେ ଯଥାବିଧି ଅଭିଷିକ୍ତ କରାଉଥିଲେ। ଏହାପରେ ଗୁରୁ ରାଜକୀୟ ମର୍ଯାଦା ସହିତ ସମଲେଇ ମଂଦିରକୁ ଯାଉଥିଲେ ଓ ରାଜା ନିଜେ ଜଣେ

ସାଧାରଣ ସେନାପତି ଭାବରେ ଗୋଟିଏ ଘୋଡା ଚଢ଼ି ରାଜାଧିଷିକ୍ତ ଗୁରୁଙ୍କୁ ପାଲିଂକିରେ ବସାଇ ବାଟକଢ଼ାଇ ନେଉଥିଲେ । ରାଜ୍ୟର ପରିଷଦମାନେ ସମର ସଂଗୀତ ବୋଲାଯିବା ସହିତ ଏଥିରେ ଯୋଗ ଦେଉଥିଲେ । ଦର୍ଶନ ପରେ ରାଜଗୁରୁ ରାଜବାଟୀକୁ ଫେରିଆସି ରାଜାଂକୁ ତାଂକର କ୍ଷମତା ପୁନର୍ବାର ଅର୍ପଣ କରୁଥିଲେ । ୧୮୪୯ରେ ସଂବଲପୁରର ଶେଷ ରାଜାଂକ ରାଜତ୍ୱ ପର୍ଯ୍ୟଂତ ଏହି ପରଂପରା ଗଡ଼ିଚାଲିଥିଲା । ରାଜବଂଶ ଲୋପ ପରେ ଗୁରୁବଂଶ ସହର ମଧ୍ୟରୁ ସଂକରମା ଗ୍ରାମକୁ ନିଜର କର୍ମସ୍ଥଳ ଭାବେ ବାଛି ନେଉଥିଲେ । ନାଗପୁରରୁ ଆଇନ ପାସ କରି ସେ ସଂବଲପୁରରେ ବ୍ୟବସାୟ ଆରଂଭ କଲେ ମାତ୍ର ନିଜର ବୃତ୍ତି କେବଳ ଧନ ଅର୍ଜନରେ ସୀମାବଦ୍ଧ ନ ରଖି ସେ ସବୁପ୍ରକାର ସମାଜସେବା କାର୍ଯ୍ୟରେ ଅଗ୍ରଣୀ ହେଲେ । ଅସହଯୋଗ ଆଂଦୋଳନ ଆରଂଭ ହେବା ସମୟରେ ସେ 'ହୀରାଖଂଡ ହୀରା' ଚଂଦ୍ରଶେଖର ବେହେରା, ଦୟାନିଧି ମିଶ୍ର, ଲକ୍ଷ୍ମୀନାରାୟଣ ମିଶ୍ର, ନୃସିଂହଗୁରୁ ଆଦି ବଂଧୁ ମାନଂକ ସହିତ କଂଗ୍ରେସରେ ଯୋଗ ଦେଲେ ଓ ଅନ୍ୟମାନଂକୁ ନିଜ ଆଦର୍ଶରେ ପ୍ରଭାବିତ କରି କଂଗ୍ରେସ ଅନୁଷ୍ଠାନକୁ ବହୁ ବାଧାବିଘ୍ନ ସତ୍ତ୍ୱେ ବଂଚାଇ ରଖିଥିଲେ । ଅସହଯୋଗ ଆଂଦୋଳନ ପରେ ସେ କଂଗ୍ରେସରୁ ଦୂରେଇ ଯାଇଥିଲେ । ଏକଦା ସେ ଜିଲ୍ଲା କଂଗ୍ରେସର ସକ୍ରିୟ ସଭ୍ୟ ଥିଲେ । ୧୯୪୭ରେ ଏକ ଉପନିର୍ବଚାନରେ ସେ ସଂବଲପୁର ସଦର ନିର୍ବାଚନ ମଂଡଳିରୁ କଂଗ୍ରେସ ପ୍ରାର୍ଥୀ ବୋଧରାମ ଦୁବେଂକୁ ବିରୋଧକରି ବିରୋଧୀଦଳ ପ୍ରାର୍ଥୀ ଥାଇ ହାରିଗଲେ । ତାପରେ ସେ ଆଉ ରାଜନୀତିକୁ ଫେରିଲେ ନାହିଁ । ନିଜର ବ୍ୟବସାୟ ପ୍ରସାର ଫଳରେ ସେ ସଂବଲପୁର ଜିଲ୍ଲାର ସର୍ବଶ୍ରେଷ୍ଠ ଓକିଲ ଭାବରେ ଖ୍ୟାତି ଅର୍ଜନ କରିଥିଲେ ।

ଦେଓ୍ୱାନି ଓ ଫୌଜଦାରୀ ଉଭୟ ଆଇନ କ୍ଷେତ୍ରରେ ତାଂକର ବ୍ୟୁତ୍ପତ୍ତି ସର୍ବଜନମାନ୍ୟ ଥିଲା । ସରକାର ତାଂକୁ ନିଜ ଓକିଲ କଲେ । ତାଂକ ଦକ୍ଷତାର ପ୍ରମାଣ ସ୍ୱରୂପ ତାଂକୁ ରାୟବାହାଦୁର ଉପାଧିରେ ସମ୍ମାନିତ କଲେ । ୧୯୩୨ରେ ଉତ୍କଳ ସମ୍ମିଳନୀରେ ଏକ ବିଶେଷ ଅଧିବେଶନ ବ୍ରହ୍ମପୁରଠାରେ ଲକ୍ଷ୍ମୀଧର ମହାଂତିଂକ ଅଧ୍ୟକ୍ଷତାରେ ଡକାଯାଇଥିଲା । ଉତ୍କଳ ପ୍ରଦେଶ ଗଠନରେ ଅବଦାନ ନିମିତ୍ତ ପାରଳା ମହାରାଜାଂକୁ ଏଥିରେ ସଂବର୍ଦ୍ଧିତ କରାଯାଇଥିଲା । ସମ୍ମିଳନୀ ସିମଳାରେ ଭାଇସରାୟଂକୁ ସାକ୍ଷାତ କରି ପ୍ରଦେଶ ଗଠନ ତ୍ୱରାନ୍ୱିତ କରିବାକୁ ଏକ ପ୍ରତିନିଧିଦଳ ବାଛିଲେ । ଏହି ଦଳରେ ଅଚ୍ୟୁତାନଂଦଂକୁ ନିଆଯାଇଥିଲା । ସେମାନେ ଭାଇସରାୟଂକୁ ସେପ୍‌ଟେଂବର ୧୭ ତାରିଖରେ ସାକ୍ଷାତ କରିଥିଲେ । ଓଡ଼ିଶା ବାହାରେ ମଧ୍ୟ ଓକିଲ ହିସାବରେ ତାଂକର ଖ୍ୟାତି ଥିଲା । ଓଡ଼ିଶାର ନିଜ ହାଇକୋର୍ଟ ନ ଥାଏ । ଓଡ଼ିଶା ପାଟଣା ହାଇକୋର୍ଟ ଅଧୀନରେ । ଅଚ୍ୟୁତାନଂଦ ବଡ଼ ବଡ଼ କେସରେ ନିଜେ ହାଇକୋର୍ଟକୁ ଯାଇ ମକଦମା ଲଢୁଥିଲେ । ସାଂବିଧାନିକ ସଭାକୁ

ଯିବାର ନିମଂତ୍ରଣ ତାଂକ ପାଇ ଏକ ସୁବର୍ଣ ସୁଯୋଗ ଥିଲା ମାତ୍ର ତତ୍‌କାଳୀନ ରାଜନୀତିରେ ଏହା ସଂଭବପର ହୋଇ ନଥିଲା । ଓଡ଼ିଶାର ଜାତୀୟ ସଂବିଧାନ ସଭାରେ ପ୍ରଥମ ଦଫାରେ ପ୍ରତିନିଧିତ୍ୱ କରୁଥିଲେ ବିଶ୍ୱନାଥ ଦାସ, ଭୁବନାନଂଦ ଦାସ, ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ରାଜକୃଷ୍ଣ ବୋଷ, ଶାଂତନୁକୁମାର ଦାସ, ବିଜୟକୁମାର ପାଣି, ନଂଦକିଶୋର ଦାସ ଓ ବୈଦ୍ୟନାଥ ରଥ । ପୂର୍ବାଂଚଳ ଦେଶୀୟ ରାଜ୍ୟମାନଂକ 'ଇଷ୍ଟର୍ନ ଷ୍ଟେଟ୍‌ସ ଏଜେନ୍‌ସି' ତରଫରୁ ୭ଜଣ ପ୍ରତିନିଧି ପଠାଯାଇଥିଲେ । ରାଜାମାନଂକ ତରଫରୁ ୩ ଜଣ ଓ ପ୍ରଜାମାନଂକ ପ୍ରତିନିଧି ଭାବେ ୪ ଜଣ । ବଲାଂଗିରର ଓକିଲ ଛାତ୍ରନେତା ଯୁଧିଷ୍ଠିର ମିଶ୍ର ଏହିପରି ଜଣେ ଥିଲେ, ମାତ୍ର ସଂବଲପୁର ପ୍ରତିନିଧି ବିହୀନଥିଲା । ଏହା ବୁଦ୍ଧିଜୀବୀମାନଂକୁ ଅସ୍ୱସ୍ତି ଆଣୁଥିଲା ।

ଅଚ୍ୟୁତାନଂଦ ଅନେକ ଦେଶ ଭ୍ରମଣ କରିଥିଲେ । ୧୯୫୦ରେ ସେ ତୁଳନାତ୍ମକ ଆଇନର ଆଂର୍ତଜାତିକ ସମ୍ମିଳନୀର ଲଂଡନ ଅଧିବେଶନରେ ଭାରତ ପ୍ରତିନିଧି ଭାବରେ ଯୋଗଦାନ କରି ନିଜର ବ୍ୟୁପତ୍ତି ନିମିତ୍ତ ଖ୍ୟାତି ଅର୍ଜନ କରିଥିଲେ । 'ଡ୍ରଏଟ୍ ଓରିଏଂଟାଲ୍' ଆଇନ ସଂସ୍ଥାର ସେ ସଭାପତି ହୋଇଥିଲେ ଓ ଆଂର୍ତଜାତିକ ଆଇନ ଏକାଡେମୀର ଉପାଧ୍ୟକ୍ଷ ଭାବରେ ନିର୍ବାଚିତ ହୋଇଥିଲେ । ତାଂକ ରଚିତ ପୁସ୍ତକମାନଂକ ମଧ୍ୟରେ ଶ୍ରୀମଦ ଗାଂଧିଭାଗବତ, ଗାଂଧିକଥା ଓ ଧର୍ମ 'ଇଂଡିଆଜ୍ ମେସେଜ୍ ଅଫ୍ ପିସ୍' ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ମାତ୍ର ଏହି ପୁସ୍ତକମାନ ବର୍ତମାନ ଦୁଷ୍ପ୍ରାପ୍ୟ । ସଂବଲପୁର ସହରର ନିଜ ବାସଗୃହରେ ୧୯୬୪ରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।



ମନୋହର ସରସିଜ
ଜଳର ଭୂଷଣ
ବନର ପରମ ଭୂଷା
ଚାରୁପୁଷ୍ପଗଣ ।
ବିଦ୍ୱାନ ସୁପୁତ୍ର ଏକା
କୁଳର ଭୂଷଣ
ସଭାର ଭୂଷଣ ସିନା
ସୁପଂଡିତ ଜନ ॥

—କବିଶେଖର ଚିଂତାମଣି



# ବାଗ୍ମୀ
# ଲକ୍ଷ୍ମୀନାରାୟଣ

ସଂବଲପୁର ଜିଲ୍ଲାରୁ ଭାରତର ସ୍ୱାଧୀନତା ସଂଗ୍ରାମର ଜଣେ ଅଗ୍ରଣୀ ନେତା ଓ ବାଗ୍ମୀ ଭାବରେ ପରିଚିତ ଥିଲେ ପଂଡିତ ଲକ୍ଷ୍ମୀନାରାୟଣ ମିଶ୍ର। ଜନ୍ମ ତାଂକର ୧୯୦୪ ମସିହା ଏପ୍ରିଲ ଏଗାର ତାରିଖରେ ସଂବଲପୁର ସହରରେ। ବିଦ୍ୟାଶିକ୍ଷା ମଧ୍ୟ ସେଇଠି। ଜିଲ୍ଲା ସ୍କୁଲରେ ପଢୁଥାଆଂତି ଅସହଯୋଗ ଆଂଦୋଳନ ଆରଂଭ ହେଲା। ୧୯୨୧ର ଜାନୁଆରି ତିନି ତାରିଖ। ସେଥିରେ ସେ ଅନ୍ୟମାନଂକୁ ଧରି ଝାସ ଦେଲେ। ପୋଥିରେ ଡୋରି ବଂଧାଗଲା ମାତ୍ର ଆଉ ଜଣେ ଯଶସ୍ୱୀ ଦେଶସେବକ ବିନୋଦ କାନୁନଗୋଂକ ପରି ତାଂକର ପାଠର ସମାପ୍ତି ହୋଇ ନ ଥିଲା। କଂଗ୍ରେସର ପ୍ରତ୍ୟେକ ଆଂଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ। ନିଜର ପରିବାର, ପତ୍ନୀ, ସଂତାନ ସଂତତିଂକର ଭରଣ ପୋଷଣରେ ବୀତସ୍ପୃହ ଥାଇ ନିଜର ସୁଖସ୍ୱାଚ୍ଛଂଦ୍ୟର ଚିଂତା କେବେ ତାଂକୁ ଘାରି ନ ଥିଲା। ତେଣୁ ଜେଲଖାନରେ ଦୀର୍ଘ ୧୫/୧୬ ବରଷ କଟାଇଥିଲେ ମଧ୍ୟ ଏହି ସମୟର ସେ ସଦ୍‌ଉପଯୋଗ କରିଥିଲେ। ନିଜ ମାତୃଭାଷାରେ ତାଂକର ଶବ୍ଦ ଭଂଡାର ଅସରଂତି ଓ ନିଜ କଥନ ଶୈଳୀ ଶୁଦ୍ଧ ଭାଷାର ଥିଲା। ଏହା ବାଦ ସେ ଜେଲରେ ସଂସ୍କୃତ, ବଂଗଳା, ହିଂଦି,

ଉର୍ଦ୍ଦୁ ଅଧ୍ୟୟନ କଲେ। ସେହି ଭାଷାମାନଂକରେ ବ୍ୟୁତ୍ପତ୍ତି ମଧ୍ୟ ଲାଭ କଲେ । ରାଜନୀତିରୁ ଅବ୍ୟାହତି ନେଇ ସେ ନିଜକୁ ଲେଖକ ଓ ଗ୍ରଂଥକାର ଭାବରେ ନିୟୋଜିତ କରିପାରିଥିଲେ ହୁଏତ ଅଧିକ ଖ୍ୟାତି ଓ ସମ୍ମାନ ପାଇପାରିଥାଆଂତେ। ଏହା ଭାଗ୍ୟର ବିଡଂବନା ଯେ ରାଜନୀତିରେ ସେ ଉଧେଇ ପାରି ନ ଥିଲେ। ନିଜର ମତାମତ ଲୋକ ସମାଜରେ ଗ୍ରାହ୍ୟ କି ନୁହେଁ ଏଥିପ୍ରତି ତାଂକର ଦୃଷ୍ଟି ନ ଥିଲା। ଫଳରେ ସେ ବାରଂବାର ପ୍ରତିଷ୍ଠିତ ଶକ୍ତିର କୋପଦୃଷ୍ଟିରେ ପଡୁଥିଲେ। ଗୋଟିଏ ଉଦାହରଣ ଦେଖାଯାଉ। ତାଂକର ଗୋଟିଏ ପତ୍ର ସରଦାର୍ ପଟେଲଂକ ପତ୍ରମାଳାରେ ପ୍ରକାଶିତ ହୋଇଛି। ଚିଠିର ସମୟ ୧୯୪୫ ନଭେଂବର ୪ ତାରିଖ। ୧୯୪୬ରେ ସାଧାରଣ ନିର୍ବାଚନ ପୂର୍ବର ଲେଖା। ପ୍ରଦେଶ ଗଠନ ପରେ ୧୯୩୭ ନିର୍ବାଚନରେ କଂଗ୍ରେସର ସଂବଲପୁରରୁ ପ୍ରତିନିଧି ଥିଲେ ପ୍ରହଲାଦ ରାୟ ଲଠ, ବୋଧରାମ ଦୁବେ, ଫକୀର ବେହେରା, ବିଶ୍ୱି ବିଭାର । (ସମସ୍ତେ କଂଗ୍ରେସ) କୋଲାବିରାର ନୃପରାଜ ସିଂହ ଓ ଖଡିଆଳର ଲାଲା ଆର୍ତତ୍ରାଣ ଦେବ। ଓଡ଼ିଶାର ପ୍ରଥମ କଂଗ୍ରେସ ମଂତ୍ରୀ ମଂଡଳରେ ବୋଧରାମ ଦୁବେ ଏମ୍.ଏ.ବି.ଏଲ ସ୍ଥାନ ପାଇଥିଲେ। ସେ ଜିଲ୍ଲାର ପ୍ରତିଷ୍ଠିତ ଓକିଲ ଥିଲେ। କଂଗ୍ରେସ ମଂତ୍ରୀମଂଡଳ ଯୁଦ୍ଧ ଉଦ୍ୟମରେ ଅସହଯୋଗ କରିବାରୁ ଇସ୍ତଫା ଦେଲେ। ତା ପରେ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଭାରତଛାଡ଼ ଆଂଦୋଳନ ଆରଂଭ ହେଲା। ସବୁ କଂଗ୍ରେସ କର୍ମୀ ଏଥିରେ ଭାଗ ନେଇ ନ ଥିଲେ। ବ୍ୟକ୍ତିଗତ କାରଣରୁ ଅନେକ ଛାଡ଼ ପାଇଥିଲେ।

ନିଖିଳ ଭାରତ କଂଗ୍ରେସ କମିଟିର ଜଣେ ସଭ୍ୟଭାବରେ ଲେଖା ଉକ୍ତ ଚିଠିରେ ପଂଡିତ ଲକ୍ଷ୍ମୀନାରାୟଣ 'ମୂଢ଼ ପ୍ରହଲାଦ ରାୟ ଟଂକାଦେଇ ଓଡ଼ିଶା ଲୋକଂକୁ କିଣି କଂଗ୍ରେସ ଟିକେଟ ପାଉଛଂତି' ବୋଲି ଅଭିଯୋଗ କରିଥିଲେ। ଆଉ ମଧ୍ୟ ସବୁ କଂଗ୍ରେସ ନେତା ଓ କର୍ମୀ ଜେଲରେ ଶଡୁଥିବାବେଳେ ଲାଠ ଜେଲରେ ବଂଦୀ ଥିବା ବେଳେ ଖଲାସ ହେଲେ ବିଧାନ ସଭାରେ ପାରଳାଖେମୁଂଡି ମିଳିତ ମଂତ୍ରୀମଂଡଳକୁ ସମର୍ଥନ କରିବେ ବୋଲି ହାତକାଟି ପ୍ରତିଶ୍ରୁତି ଲେଖି ଦେଇଥିଲେ। ଅଥଚ ପ୍ରହଲାଦ ରାୟ ଲାଠ ଲକ୍ଷ୍ମୀନାରାୟଣ ୧୯୩୧ରେ ଜିଲ୍ଲା କଂଗ୍ରେସର ସଭାପତି ଥିବାବେଳେ ତାହାର କୋଷାଧ୍ୟକ୍ଷ ଥିଲେ। ବୋଧରାମଂକ ବିଷୟରେ ତାଂକର ଅଭିଯୋଗ ଥିଲା ଯେ ସେ ଅଗଷ୍ଟ ବିପ୍ଲବ ଭାରତଛାଡ ଆଂଦୋଳନରେ ଭାଗ ନେଇ ନ ଥିଲେ। ଏଥିରୁ ଦୂରେଇ ରହିଥିଲେ। ତିନିବର୍ଷଧରି ସେ ସରକାରଂକ ସହିତ ସଂପୂର୍ଣ ସହଯୋଗ କରୁଥିଲେ। ଜିଲ୍ଲାର ପ୍ରତିକ୍ରିୟାଶୀଳ ଜିଲ୍ଲାପାଳ ଆଲଫର ସାହେବଂକ ବିଦାୟ ସଭାରେ ସେ ବିଭିନ୍ନ ସ୍ଥାନରେ ଯୋଗ ଦେଇଥିଲେ। ଆଲଫରଂକ ନାମରେ ଆଲଫର ସ୍ମୃତି ପାଂଠି ସୃଷ୍ଟି ହେଇଥିଲା। ଏଥିରେ ବୋଧରାମ

ଯୋଗ ଦେଇ ଅଦମ୍ୟ ଉତ୍ସାହର ସହିତ କାର୍ଯ୍ୟ କରୁଥିଲେ ଅଥଚ କସ୍ତୁରବା ସ୍ମୃତି ପାଂଠିକୁ ସେ ପଇସାଟିଏ ସୁଦ୍ଧା ଦେଇ ନ ଥିଲେ। ଶେଷରେ ଲକ୍ଷ୍ମୀନାରାୟଣ ଏମାନଂକୁ ଟିକେଟ ନ ଦେବାକୁ ଓ ଓଡ଼ିଶା କଂଗ୍ରେସ କର୍ମକର୍ତ୍ତାମାନଂକର ପୁରା ଅଦଳବଦଳ କରିବାକୁ ପରାମର୍ଶ ଦେଇଥିଲେ। ସେ ଲେଖିଥିଲେ ୧୯୨୦ରୁ ସେ କଂଗ୍ରେସର କର୍ମୀ ଅଛଂତି ଓ ଏଥିମଧ୍ୟରୁ ସେ ଦଶବର୍ଷ କାଳ ଜେଲରେ କଟାଇ ଅଛଂତି। ତେଣୁ ତାଂକ ମତାମତ ପ୍ରତି ଧ୍ୟାନ ଦେବା ଉଚିତ ଭାବି ସେ କଂଗ୍ରେସ କର୍ତ୍ତୃପକ୍ଷଂକୁ ଏସବୁ ଜଣାଉଥିଲେ। ଫଳ ହେଲା ପ୍ରହଲାଦ ରାୟ ଲାଠ କଂଗ୍ରେସ ଟିକେଟ ପାଇଲେ ନାହିଁ।

୨ୟ ଓଡ଼ିଶା ମଂତ୍ରୀମଂଡଳ କଂଗ୍ରେସରେ ସଂବଲପୁରରୁ ବୋଧରାମ ବା ଅନ୍ୟ କେହି ମଧ୍ୟ ସ୍ଥାନ ପାଇଲେ ନାହିଁ। ଅଜଫର ସ୍ମୃତିରକ୍ଷା ଫଂଡ ଅଜଫର ସାହେବ ସଂଗ୍ରହ କରିଥିଲେ। ଯୁଦ୍ଧ ଚାଂଦା ସଂଗ୍ରହ ଏହାର ମୁଖ୍ୟ ଉଦ୍ଦେଶ୍ୟଥିଲେ ମଧ୍ୟ ଯୁଦ୍ଧଶେଷକୁ ବଳିଥିବା ଅର୍ଥରେ ବହୁ ଲୋକହିତକର କାର୍ଯ୍ୟ ଜିଲ୍ଲାରେ ହୋଇପାରି ଥିଲା। ପରବର୍ତ୍ତୀକାଳରେ ମଧ୍ୟ ହେଉଛି। ବୋଧରାମଂକ ପରି ଜିଲ୍ଲାର ଦୂରଦୃଷ୍ଟି ସଂପନ୍ନ ଜନସେବକମାନେ ଏହାର ପରିଚାଳନାରେ ସହଯୋଗ କରୁଥିଲେ। ଏପ୍ରକାର ଅସହଯୋଗ ଲକ୍ଷ୍ମୀନାରାୟଣଂକୁ ବୁଦ୍ଧିଜୀବୀ ମହଲରେ ହୀନ କରି ଦେଇଥିଲା। ନିଜର ସଂପାଦିତ ସାପ୍ତାହିକୀ ସୁବ୍ରତୀ ବା ପ୍ରଜାଶକ୍ତି କାଗଜରେ ସେହିପରି ସେ ସଂବାଦର ସତ୍ୟତା ବା ଯୌକ୍ତିକତା ଯାଂଚ ନ କରି କଠୋର ଭାଷାରେ ସମାଲୋଚନା କରୁଥିଲେ। ଯୁଦ୍ଧୋତ୍ତର ଜିଲ୍ଲା ପୁନର୍ଗଠନ କମିଟିରେ ସହଯୋଗ ଦେଇ କାମ ଅସୁଲ ନ କରି କେବଳ ସମାଲୋଚନା କରି ସେ ସରକାରୀ ସ୍ତରରେ ମଧ୍ୟ ଅପ୍ରିୟ ହୋଇଗଲେ। କ୍ରମବର୍ଦ୍ଧମାନ ଏହି ଅପ୍ରିୟ ସତ୍ୟ ପ୍ରକାଶ ଓ ତଦ୍‌ଜନିତ ସମାଲୋଚନା ତାଂକ ମୃତ୍ୟୁର ମାର୍ଗ ଉନମୋଚନ କଲା। ଏସବୁ ସତ୍ତ୍ୱେ ଜଣେ ନିଷ୍ଠାପର କଂଗ୍ରେସ କର୍ମୀ ଭାବରେ ସେ ଜିଲ୍ଲାରେ ସୁପରିଚିତ ଥିଲେ। ଜିଲ୍ଲାରେ ହରିଜନମାନଂକର ଅଧିକାର ଜାହିର କରିବାକୁ ସେ ଉଦ୍ୟମ କରୁଥିଲେ। ଓଡ଼ିଶା ହରିଜନ ସେବକ ସଂଘର ସେ ଜଣେ ସାଧାରଣ ସଂପାଦକ ଥିଲେ। ତାଂକ ଉଦ୍ୟମରେ ନୃସିଂହ ଗୁରୁଂକ ଅଧ୍ୟକ୍ଷତାରେ ସଂବଲପୁର ଅସ୍ପୃଶ୍ୟତା ନିବାରଣ କମିଟି ଗଢ଼ାଯାଇଥିଲା।

୧୯୬୧ରେ ସେ କମଳା ଦେବୀଂକୁ ବିବାହ କରିଥିଲେ। ସେ ମଧ୍ୟ ଜଣେ କଂଗ୍ରେସ କର୍ମୀ ଥାଇ ସ୍ୱାମୀ ଲକ୍ଷ୍ମୀନାରାୟଣଂକର ଯଥାର୍ଥ ସହଧର୍ମିଣୀ ଥିଲେ। ପଂଦରବରଷ କାରାବାସ କାଳରେ ତିନିଗୋଟି ସଂତାନ ହରାଇଥିଲେ। ନିଜ ଜ୍ୟେଷ୍ଠ ପୁତ୍ରର ଶବଦାହକରି ଆସି ସେ ଗୋଟିଏ କଂଗ୍ରେସ ସଭାରେ ଭାଷଣ ଦେବାକୁ ଚାଲିଯାଇଥିଲେ। ସ୍ୱାଧୀନତା ପ୍ରାପ୍ତିପରେ ଜଣେ ସାଧାରଣ ବ୍ୟବସ୍ଥାପକ ହେବା ଛଡ଼ା ଆଉ କୌଣସି ପଦପଦବୀରେ ରହି ଜନସେବା କରିବାର ସୁଯୋଗ ତାଂକୁ ମିଳି ନ ଥିଲା।

ଲକ୍ଷ୍ମୀନାରାୟଣଂକର ପ୍ରତିଭାର ଅନ୍ୟଦିଗ ଥିଲା ତାଂକର ସାହିତ୍ୟ ଚର୍ଚ୍ଚା ଓ ଭାଷା ବ୍ୟୁତ୍ପତ୍ତି। ଓଡ଼ିଆ ଭାଷା ଓ ସାହିତ୍ୟରେ ନିଜର ଦଖଲ ବିସ୍ତର ଶବ୍ଦ ଭଂଡାର ମଧ୍ୟରେ ତାଂକ ଭାଷଣ ହୃଦୟଗ୍ରାହୀ ଥିଲା। ରାଜନୀତି ଛଡ଼ା ଅନ୍ୟ ସଭାରେ ତାଂକ ଭାଷଣ ଶୁଣିବାକୁ ତାଂକର ଅନେକ ଗୁଣଗ୍ରାହୀ ମାତ୍ର ରାଜନୈତିକ ସମାଲୋଚକ ଯୋଗ ହେଉଥିଲେ। ଜେଲରେ ସେ ହିଂଦି ଓ ଉର୍ଦ୍ଦୁ ସହିତ ବଂଗଳା ଭାଷା ମଧ୍ୟ ଭଲଭାବରେ ଆୟତ୍ତ କରିଥିଲେ। ତାଂକର ଜଣେ ସହବଂଦୀଂକ ସାହାଯ୍ୟରେ ସେ ହଜାରିବାଗ ଜେଲରେ ଉର୍ଦ୍ଦୁଭାଷା ଶିକ୍ଷା କରିଥିଲେ ଓ ପରବର୍ତ୍ତୀ କାଳରେ ଗୀତା ଓ କୋରାନର ତୁଳନାତ୍ମକ ବିଶ୍ଳେଷଣ କରି ସେ 'ଭଗବଦଗୀତା ଔର୍ ଇସଲାମ' ନାମକ ଏକ ମୂଲ୍ୟବାନ ଓ ଚିଂତା ଉଦ୍ଦୀପକ ଗ୍ରଂଥ ରଚନା କରିଥିଲେ। ଏହା ତାଂକର ସଂସ୍କୃତ ଓ ଉର୍ଦ୍ଦୁ ଉଭୟଭାଷାରେ ପାଂଡିତ୍ୟର ସୂଚକ। ଅଖିଳ ଭାରତ ଉର୍ଦ୍ଦୁ ମହାସଭାର ଅନଜମାନ ରେକକି ହିଂଦର ସଭାପତି ମୌଲାନା ଅବ୍‌ଦୁଲ ହକ ଆଦି ଅନେକ ଉର୍ଦ୍ଦୁ ଲେଖକ ଏହାର ଉଚ୍ଚମାନ ଗ୍ରହଣ କରି ଗ୍ରଂଥକାରଂକୁ ଅଭିନଂଦନ ଜଣାଇଥିଲେ। ଉସମାନିଆ ବିଶ୍ୱବିଦ୍ୟାଳୟ ହାଇଦରାବାଦ କିଛିଦିନ ଏହାକୁ ଉର୍ଦ୍ଦୁରେ ପାଠ୍ୟପୁସ୍ତକଭାବରେ ନିର୍ବାଚିତ କରିଥିଲେ। ମିଥିଳାର କବି ବିଦ୍ୟାପତିଂକର ପଦ୍ୟାବଳୀ ମଧ୍ୟ ସେ କାରାଗାରରେ ଓଡ଼ିଆରେ ଅନୁବାଦ କରିଥିଲେ ଓ ପରବର୍ତ୍ତୀ କାଳରେ ଏହା ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇ ଓଡ଼ିଶାରେ ଆଦର ପାଇଥିଲା। ସ୍ୱଭାବକବି ଗଂଗାଧର ମେହେରଂକର ସମସ୍ତ ପ୍ରକାଶିତ ଓ ଲୁପ୍ତପ୍ରାପ୍ତ ଅପ୍ରକାଶିତ ରଚନାମାନ ସଂଗ୍ରହ କରି ଏକତ୍ର ଗଂଗାଧର ମେହେର ଗ୍ରଂଥାବଳୀ ପ୍ରକାଶନରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ। ଗଂଗାଧରଂକର ଶତବାର୍ଷିକୀ ଉତ୍ସବର ଆୟୋଜନ ଓ ପାଳନରେ ତାଂକର ଭୂମିକା ମଧ୍ୟ ପ୍ରଶଂସନୀୟ ଥିଲା। ରବୀଂଦ୍ର ସାହିତ୍ୟରେ ତାଂକରେ ମଧ୍ୟ ଗଭୀର ଅନୁଧ୍ୟାନ ଥିଲା। ସଂବଲପୁରରେ ରବୀଂଦ୍ର ଶତବାର୍ଷିକୀ ପାଳନ ସମୟରେ ତାଂକର ଉଚ୍ଚକୋଟିର ଆଲୋଚନା ରବୀଂଦ୍ରପ୍ରେମୀ ବଂଗଭାଷୀ ମାନଂକୁ ମଧ୍ୟ ଚକିତ କରିଦେଇଥିଲା। ଶେଷ ଆଡକୁ ସେ ଝାରସୁଗୁଡାକୁ ନିଜ କର୍ମକ୍ଷେତ୍ର ରୂପେ ବାଛି ସେଠାରେ ନି ଜର ଛାପାଖାନା ରଖି ଗୋଟିଏ ସାପ୍ତାହିକ ପତ୍ରିକା 'ପ୍ରଜାଶକ୍ତି' ପ୍ରକାଶ କରୁଥିଲେ। ଭିଲାଇଠାରେ ରବୀଂଦ୍ର ଶତବାର୍ଷିକୀ ଉପଲକ୍ଷେ ଆୟୋଜିତ ଏକ ସଭାରେ ନିମଂତ୍ରିତ ହୋଇ ବକ୍ତା ଭାବରେ ଟ୍ରେନ୍‌ରେ ଯାଉଥିବା ବେଳେ ୧୯୬୧ ମଇ ୩୦ ତାରିଖ ରାତିରେ ଏକ ଅଜ୍ଞାତ ଆତତାୟୀ ହାତରେ ସେ ନିଜର ବହୁମୂଲ୍ୟ ଜୀବନ ହରାଇଲେ।

ବଡ଼ ବଡ଼ ଚାଷୀ ଗୌଂତିଆ ଓ କେନ୍ଦୁପତ୍ର ବ୍ୟବସାୟୀମାନେ ଜିଲ୍ଲାର ରାଜନୀତିକୁ ପ୍ରଭାବିତ କରୁଥିଲେ ମଧ୍ୟ ସେ ଏହାର ପ୍ରକାଶ୍ୟରେ ତୀବ୍ର ବିରୋଧ କରୁଥିଲେ । ପଂଡିତ ଲକ୍ଷ୍ମୀନାରାୟଣଂକୁ ତାଂକର ସ୍ପଷ୍ଟବାଦୀତା କିପରି ହଟହଟା କରୁଥିଲା ତାହାର ଉଦାହରଣ କେତୋଟି ଦେବା ଦରକାର। ଦେଶର ପ୍ରଥମ ସାଧାରଣ ନିର୍ବାଚନରେ ପ୍ରାର୍ଥୀଚୟନ ସମୟରେ

କେଂଦ୍ର ନିର୍ବାଚନ କମିଟି ତାଂକୁ ନିଜ ନିର୍ବାଚନ ମଂଡଳୀ ବାଛିବାକୁ କହିଲା । ସେତେବେଳେ ସେ ଜିଲ୍ଲାର ଯେ କୌଣସି ସ୍ଥାନରୁ ପ୍ରତିଦ୍ୱଂଦ୍ୱିତା କରିବାକୁ ପ୍ରସ୍ତୁତ ବୋଲି ଶୁଣାଇଲେ । କଂଗ୍ରେସ କର୍ତ୍ତୃପକ୍ଷ ତାଂକୁ ବୋଡ଼ାସଂବର (ପଦ୍ମପୁର) ନିର୍ବାଚନ ମଂଡଳୀରୁ ପ୍ରତିଦ୍ୱଂଦ୍ୱିତା ପାଇ ବାଛିଲେ  ରାଜ୍ୟର ସର୍ବୋଚ୍ଚ କର୍ମକର୍ତ୍ତା ତାଂକପରି ଦୃଢ଼ମନା ନିର୍ମଳ ଚରିତ୍ର ବ୍ୟକ୍ତି ବିଧାନ ସଭାକୁ ଆସିବା ଚାହୁଁ ନ ଥିଲେ । ସେମାନେ ପଦ୍ମପୁରର ପୂର୍ବତନ ଦେଓ୍ୱାନ ରାୟ ସାହେବ ଅନିରୁଦ୍ଧ ମିଶ୍ରଂକୁ ସ୍ୱାଧୀନ ପ୍ରାର୍ଥୀଭାବରେ ଲଢ଼ିବାକୁ ପ୍ରବର୍ତ୍ତାଇଲେ । ସେ ବହୁତ ଖରଚ କରି ସାମାନ୍ୟ ବ୍ୟବଧାନରେ ଲକ୍ଷ୍ମୀନାରାୟଣଂକୁ ପରାଜିତ କଲେ ଓ ପରେ ସେ ମଧ୍ୟ କଂଗ୍ରେସରେ ଯୋଗଦେଲେ । ଏହି ଯୁଗ୍ମନିର୍ବାଚନ ମଂଡଳିରେ ଆଦିବାସୀ ପ୍ରାର୍ଥୀ ଲାଲ ରଣଜିତ ସିଂହ ୧୭୬୩୬ ଅନିରୁଦ୍ଧ ମିଶ୍ର  ୭୯୮୯ ଭୋଟ ପାଇ ନିର୍ବାଚିତ ହେଲେ । ୭୧୨୬ ଭୋଟ ପାଇ ଲକ୍ଷ୍ମୀନାରାୟଣ ହାରିଗଲେ ।

ସେମିତି ୧୯୬୧ ନିର୍ବାଚନରେ ସେ ପ୍ରାର୍ଥୀ ନ ଥାଇ ମଧ୍ୟ କଂଗ୍ରେସ ପାଇ ପରିଶ୍ରମ କରି ପ୍ରଚାର କଲେ । ହୀରାକୁଦ ଆଂଦୋଳନରେ ଗଣତଂତ୍ର ଦଳ କଂଗ୍ରେସକୁ ଦୁର୍ବଳ କରି ଦେଇଥାଏ, ଭଟଲିରେ ସରସ୍ୱତୀ ପ୍ରଧାନ (ପରେ ଉପମଂତ୍ରୀ)ଂକ ସହିତ କମ୍ୟୁନିଷ୍ଟ ପ୍ରାର୍ଥୀ ଲଢୁଥାଆଂତି । ସେମାନଂକର ସଂଗଠନ ଦୃଢ଼ ଥିଲା । ଗାଁରେ ତାଂକ କର୍ମୀମାନେ କଂଗ୍ରେସବାଲାଂକୁ ମାରପିଟ କଲେ । ଦଳ ତରଫରୁ ଲ କ୍ଷ୍ମୀନାରାୟଣ ଏହାର ପ୍ରତିରୋଧ ପାଇ ନିର୍ବାଚନ ମଂଡଳୀରେ ସଭା କଲେ । ନିଜର ବାଗ୍ମୀତା ଓ କଥନ ଭଂଗି ଦ୍ୱାରା ସେ ଭୋଟର ମାନଂକୁ ପ୍ରଭାବିତ କଲେ । ଦିନେ ବିଜେପୁରରେ ସଭାକରି ବରଗଡ଼ ଫେରିଲେ । ତାଂକର ଭିଲାଇରେ ରବୀଂଦ୍ର ଶତବାର୍ଷିକୀ ପାଳନ ଉପଲକ୍ଷେ ଆୟୋଜିତ ଏକ ସଭାରେ ଭାଷଣ ଦେବାର ଥିଲା । ସେଠାରୁ ସେ ଟିଟିଲାଗଡ ବାଟେ ପୁଣି ବରଗଡ ଫେରିବାକୁ ଉଦ୍‌ଯୋକ୍ତାମାନଂକୁ ପ୍ରତିଶ୍ରୁତି ଦେଇ ସଂବଲପୁର ଫେରିଲେ । ଟ୍ରେନରେ ଝାରସୁଗଡ଼ାରୁ  ଯାଉଥିବା ସମୟରେ ବେଲପାହାଡ଼ ଓ ରାୟଗଡ଼ା ମଧ୍ୟରେ ଦୁର୍ବୃତ୍ତ ମାନେ ତାଂକୁ ଆକ୍ରମଣ କରି ଛୁରାମାଡ଼ରେ ତାଂକ ମୃତ୍ୟୁ ଘଟାଇଲେ । ରାଜନୈତିକ ହତ୍ୟାବୋଲି କହୁଥିଲେ ମଧ୍ୟ ପୋଲିସ ଅନୁସଂଧାନରେ କୌଣସି ଦୋଷୀ ଧରାପଡ଼ିଲେ ନାହିଁ । ତାଂକ ମୃତ୍ୟୁ ତାଂକର ସ୍ପଷ୍ଟବାଦୀତାର ଫଳ ବୋଲି ଚାରିଆଡ଼େ ଲୋକେ କହୁଥିଲେ ଅଥଚ ତାଂକ ପରିଶ୍ରମ ଫଳରେ ସରସ୍ୱତୀ ପ୍ରଧାନ ପ୍ରାୟ ୪ ହଜାରରୁ ଅଧିକା ଭୋଟରେ ସେହି ସ୍ଥାନରୁ ନିର୍ବାଚିତ ହେଲେ ।  ଅବର୍ଣନୀୟ ଅଭାବ ଅନାଟନ ମଧ୍ୟରେ ନିଜର ନୀତିରୁ ବିଚ୍ୟୁତ ନ ହୋଇ ଅପ୍ରିୟ ସତ୍ୟ ପ୍ରକାଶ କରି ସମାଲୋଚିତ ହୋଇ ଜୀବନର ମୂଲ୍ୟ ଦେଇ ସେ ଦେଶସେବାରୁ ବଂଚିତ ହେଲେ ମାତ୍ର ସଂବଲପୁର କାହିଁକି ସମଗ୍ର ଓଡ଼ିଶାରେ ତାଂକ ପରି ଜଣେ ନିସ୍ୱାର୍ଥଦେଶସେବୀ ରାଜନୀତିର ପଂକିଳ ଜଳରେ କ୍ୱଚିତ ଦେଖାଯାଆଂତି ।





## ମାନବ ସେବକ
# ଡାକ୍ତର ଆଇଜାକ

''ପାପୁଲିରେ ରଖି ମୋର ଅବସନ୍ନ ମଥା
ଭାବେ ବସି ବିଧାତାର କ୍ରୂର ବର୍ବରତା,
ଦୁଃଖେ ହୁଏ ଚିତ୍ତ ମୁହ୍ୟମାନ,
ମୋର ଏହି ସାଥିଂକର ଦେଖି ନିର୍ଯାତନ କରୁଁ ଅନୁଧ୍ୟାନ।
ସୁଂଦର ମାନବ ତନୁ ହୋଇଛି ବିକଳ (ହସ୍ତ ବକ୍ର, ପଦ,
ମୁଖ କ୍ଷତରେ ଜର୍ଜର) ବିଭତ୍ସ ଦର୍ଶନ ସର୍ବେ ।
ବ୍ୟାଧି ତାଂକୁ କରିଛି ଅସ୍ପୃଶ୍ୟ ମର୍ମଂତୁଦ ଏ କରୁଣ ଦୃଶ୍ୟ।
ଦରିଦ୍ର ନିରୀହ ସର୍ବେ,
ଏଇ ସବୁ ରୋଗୀ ସାଥୀଗଣ
କୃଷକ, କିରାଣି, ଚାଷୀ ପ୍ରାଇମେରୀ ଶିକ୍ଷକ, ପିଅନ
ନିମ୍ନ ଏହି ଜନ୍ମ ଓ ଜୀବନ
ନ ଥିଲା କି ଯଥେଷ୍ଟ ଶାସନ,

ଅଜ୍ଞାତ କି ପାପ ପାଇଁ ଏହି ଦୁଃଖୀଂକର ?
ହୀନ ଦୀନ ରଖିଥିଲା ଅଭାଗ୍ୟେ ଏମାନେ
କିବା ପାପ କହ ଭଗବାନ ?
କି କର୍ମରେ ହୋଇ ପାରେ ଏ ଦଂଡ ବିଧାନ ।
ଜଗତରେ କେଉଁ ଅପକର୍ମ
ନ କରଂତି ଭାଗ୍ୟବଂତେ ପ୍ରିୟଜନେ ଯେତେକ ତମର ।
ଏହି ହତଭାଗ୍ୟ ଜନେ ସେବା କରିବାରେ,
ଜୀବନ ଯେ ଉତ୍ସର୍ଗିଛ ହେ ବଂଧୁ ତୁମରେ ।
ବାରଂବାର ମୁହିଁ ନମସ୍କାରେ ।
ଦାରୁଣ ଏ ପରିସ୍ଥିତି, ବୀଭତ୍ସ ଏ ପୀଠ
ତୁମରି ବ୍ୟକ୍ତିତ୍ୱ ଖାଲି ଘୂରିବୁଲେ ବରେଣ୍ୟ, ବରିଷ୍ଠ
ବ୍ୟାଧି ସଂଗେ ସଂଗ୍ରାମରେ ରତ ଅନୁକ୍ଷଣ,
ଆଶାମୟ ସେବା ବିଚକ୍ଷଣ,
ହେ ଖାଂଟି ଖ୍ରୀଷ୍ଟାନ,
ତୁମେ ଇ ଏ ଅଂଧକାରେ
ନରତ୍ୱର ବର୍ତିକା ମହାନ
ହେ ସୈନିକ, ତୁମର ହିଁ ହେଉ ଜୟକାର
ଦେଶରୁ ହେଉ ଏ ବ୍ୟାଧି ସମୂଳେ ବିଲୁପ୍ତ
ଏ କବି ବଂଧୁର ନିଅ
ପ୍ରାର୍ଥନା ଓ ମୁଗ୍ଧ ନମସ୍କାର ।''

ଏହି କବିତା ପ୍ରସିଦ୍ଧ କୁଷ୍ଠରୋଗ ଚିକିତ୍ସା ଧୁରନ୍ଧର ଡକ୍ଟର ଆଇଜାକ ସାଂତରାଂକର ସଂବଲପୁର ନିକଟସ୍ଥ 'ହାତୀବାଡ଼ି' ସ୍ୱାସ୍ଥ୍ୟନିବାସ ଓ ଡକ୍ଟର ସାଂତ୍ରାଂକର ଚିକିତ୍ସା ନୈପୁଣ୍ୟ ଦର୍ଶନରେ ରଚିତ । ଏହା ପ୍ରଥମେ 'ହାତୀବାଡ଼ି' ନାମରେ 'ଜୀବନଚିତା' ପୁସ୍ତକରେ ପ୍ରକାଶିତ ହୋଇ ପରେ ମାୟାଧରମାନସିଂହ ଗ୍ରଂଥାବଳୀ ୨ୟ ଖଂଡ ପୃ ୨୫୫ ରେ ସ୍ଥାନିତ ।

ସଂବଲପୁର ସହରଠାରୁ ଚବିଶ କିଲୋମିଟର ଦୂରରେ ଘନ ଜଂଗଲ ମଧ୍ୟରେ ହାତୀବାଡ଼ି କୁଷ୍ଠାଶ୍ରମ ଅବସ୍ଥିତ । ଜିଲ୍ଲାର ପୂର୍ବତନ କୁଷ୍ଠାଶ୍ରମ ସରକାରୀ ଅନୁମୋଦିତ 'ଜନନୀ' ବୁଡି ଅଂଚଳରେ ରହିଗଲା ମାତ୍ର ହାତୀବାଡ଼ିକୁ ଏକ କୁଷ୍ଠାଶ୍ରମ ନ କହି କବି ସ୍ୱାସ୍ଥ୍ୟନିବାସ

ବୋଲି ବର୍ଣନା କରିଅଛଂତି। ଅନେକ କୁଷ୍ଟରୋଗୀ ରୋଗମୁକ୍ତ ହୋଇ ମଧ୍ୟ ସମାଜର ଭୟରେ ଗାଁର ଘରକୁ ନ ଫେରି ଏହିଠାରେ ରହି ଚାଷବାସ କରି ଜୀବିକା ଅର୍ଜନ କରୁଥିଲେ। ଡାକ୍ତର ସାଂତରା କୁଷ୍ଟ ରୋଗୀମାନଂକ ନିମିତ୍ତ ଡାକ୍ତରଖାନା ଖୋଲିଥିଲେ। ତାହା ସହିତ ରୋଗମୁକ୍ତ ହୋଇ କୌଣସି ଗୋଟିଏ ଧଂଦା ଗ୍ରହଣ ଦ୍ୱାରା ପୁନଃସଂସ୍ଥାନ ପାଇଁ ଯୋଜନା ମଧ୍ୟ କରିଥିଲେ। ଦୀର୍ଘ ୨୪ କିଲୋମିଟର ସାଇକେଲରେ ଯାଇ ସେ ସେଠାରେ ସମସ୍ତ କାର୍ଯ ତଦାରଖ କରୁଥିଲେ। ଏଥିପାଇଁ ସେ ସରକାରଂକଠାରୁ କୌଣସି ଆର୍ଥିକ ଅନୁଦାନ ମଧ୍ୟ ଲୋଡ଼ି ନ ଥିଲେ। ଏହା ଡାକ୍ତର ସାମଂତରାଂକର ଏକ ଅମର କୀର୍ତି। ବର୍ତମାନ ମଧ୍ୟ ଦେଶରୁ କୁଷ୍ଟ ରୋଗ ସଂପୂର୍ଣ ନିର୍ମୂଳ କରିବାକୁ ଯୋଜନା କାର୍ଯକାରୀ ହେଉଥିବାବେଳେ ଓ ଅନ୍ୟରୋଗ ପରି କୁଷ୍ଟରୋଗ ଚିକିତ୍ସା ଦ୍ୱାରା ଆରୋଗ୍ୟ ହୋଇପାରିବ ଏଥିପାଇଁ ଜନଶିକ୍ଷା ଦିଆଯାଉଥିବା ସମୟରେ ମଧ୍ୟ ଅନେକ ଉଚ୍ଚବର୍ଗର ଶିକ୍ଷିତ ଲୋକ ଅଛଂତି, ଯେଉଁମାନେ ବିଶ୍ୱାସ କରୁଛଂତି ଯେ ପୂର୍ବଜନ୍ମକୃତ ପାପ ସକାଶେ ଭଗବାନ ରୋଗୀକୁ ଏପ୍ରକାର ଦଂଡ ଦେଉଅଛଂତି। ତେଣୁ ଦୀର୍ଘ ଅର୍ଧଶତାବ୍ଦୀ ବା ତଦୂର୍ଦ୍ଧ୍ୱ ସମୟ ତଳେ ଅପେକ୍ଷାକୃତ ଅନୁନ୍ନତ ସଂବଲପୁର ଜିଲ୍ଲାର ଗ୍ରାମ ଗହଳରେ ଏ ରୋଗର ସାମାଜିକ ବିଭୀଷିକା କିପରି ଥିଲା ତାହା ସହଜରେ ଅନୁମେୟ। ଏହି ପ୍ରକାର ସାମାଜିକ ଶୋଷଣର କ୍ରୂରତା ଅନୁଭବ କରି ମହାତ୍ମା ଗାନ୍ଧି କୁଷ୍ଟ ରୋଗୀଂକର ସେବାକୁ ନିଜ କର୍ମପଂଥାର ଏକ ଅଂଶ ବୋଲି ଧରିଥିଲେ। ତାଂକର ଆଦର୍ଶରେ ପ୍ରଭାବିତ ହୋଇ ଅନେକ ଡାକ୍ତର କୁଷ୍ଟରୋଗୀଂକର ସେବା ନିମିତ୍ତ ବାହାରି ପଡିଲେ। ସେତେବେଳେ ଓଡ଼ିଶା ସରକାର ମଧ୍ୟ ଜିଲ୍ଲାମାନଂକରେ କୁଷ୍ଟ ନିବାରଣ ଅଧିକାରୀ ଡାକ୍ତରମାନଂକୁ ନିଯୁକ୍ତି ଦେଲେ। ଇଉରୋପର ପୋଲାଂଡ ଦେଶରୁ ଖ୍ରୀଷ୍ଟିଆନ ମିସନାରି ମଦର ଟେରେସା ଆସି କୁଷ୍ଟରୋଗୀମାନଂକର ସେବା ନିମିତ୍ତ ଦୟାର ଭଗିନୀ ଅନୁଷ୍ଠାନ ଆରଂଭ କଲେ। ମହାତ୍ମା ଗାଂଧିଂକର କୁଷ୍ଟରୋଗୀମାନଂକ ପ୍ରତି ଦୁର୍ବଳତା ସର୍ବଜନବିଦିତ। ମଦର ଟେରେସା ଭାରତ ରତ୍ନ ଉପାଧି ପାଇଲେ। ବିଶ୍ୱ ଦରବାରରେ ନୋବେଲ ଶାଂତି ପୁରସ୍କାର ଦ୍ୱାରା ତାଂକୁ ପରିଚିତ ଓ ସମ୍ମାନିତ କରାଗଲା। ମାତ୍ର ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି କୁଷ୍ଟରୋଗୀମାନଂକର ସେବାରେ ଧନ ଜନ ମନ ଉତ୍ସର୍ଗ କରିଥିବା ଡାକ୍ତର ଆଇଜାକ ସାଂତରାଂକୁ ସ୍ମରଣ କରିବା ଭଳି କୌଣସି ସରକାରୀ ଅନୁଦାନ ବା ଆନୁଷ୍ଠାନିକ ମର୍ଯାଦା ଦିଆଯାଇନାହିଁ। ଦୁଃଖକର ହେଲେ ମଧ୍ୟ ଏହା ନିରାଟ ସତ୍ୟ। ତାଂକର ମୃତ୍ୟୁର ୩୫ ବରଷ ପରେ ଅତି ଅଳ୍ପ ଲୋକ ତାଂକୁ ଜାଣିଛଂତି।

୧୮୬୬ର ନଅଂକ ଦୁର୍ଭିକ୍ଷ ପରେ ସମାଜରେ ଜାତିଭ୍ରଷ୍ଟ ଲୋକଂକୁ ଗ୍ରହଣ କରିନେଲେ ବିଲାତର ମିସନାରିମାନେ। ସେମାନେ ଏହି ହତଭାଗ୍ୟମାନଂକୁ ନିଜ ଧର୍ମରେ

ଦୀକ୍ଷିତ କଲେ। ଶିକ୍ଷା ଓ ଜୀବିକାର୍ଜନର ସୁଯୋଗ ମଧ୍ୟ ଦେଲେ। ବର୍ଣାଶ୍ରମଯୁକ୍ତ ହିଂନ୍ଦୁଧର୍ମ ସମାଜର ନିମ୍ନବର୍ଗର ଲୋକମଧ୍ୟ ଏହି ଧର୍ମଗ୍ରହଣ ପରେ ସମାଜର ଉଚ୍ଚବର୍ଣର ବଡ଼ପଂଡାମାନଂଙ୍କ ପାଖରେ ଉପଯୁକ୍ତ ମର୍ଯାଦା ପାଇଲେ। ସେମାନେ ପ୍ରଥମେ କଟକ ସହରରେ ଏକତ୍ର ବସବାସ କରୁଥିଲେ। ପାଠଶାଠ ପଢ଼ି ଅନେକ ଧର୍ମ ପ୍ରଚାର କାର୍ଯରେ ନିଜକୁ ନିୟୋଜିତ କଲେ। ସଂବଲପୁର ବସ୍ତର, ବଲାଂଗିର, ସୁରଗୁଜା ଆଦି ଓଡ଼ିଆ ଦେଶୀୟ ରାଜ୍ୟରେ ପରେ ନିଜର କର୍ମକ୍ଷେତ୍ର ପ୍ରତିଷ୍ଠା କଲେ। ଭିକାରି ସାଂତରା ଏହିପରି ଜଣେ ପାଦ୍ରି। ସଂବଲପୁରରେ ପହଂଚିଲେ। ନିଜ ପରିବାର ଧରି ସେଠାରେ ସହରମଧ୍ୟସ୍ଥ ଖ୍ରୀଷ୍ଟିଆନ୍‌ପଡ଼ା (ଆଶାପାଲି)ରେ ବାସ କଲେ ମାତ୍ର ତାଂକ କର୍ମକ୍ଷେତ୍ର ଥିଲା ବଲାଂଗିର ଜିଲ୍ଲାର ଆଗଲପୁର ଓ ଲୋଇସିଂହା ଅଂଚଳ। ଏହି ଭିକାରି ଓ ସର ସାଂତରାଂକ ପୁତ୍ର ଥିଲେ ଆଇଜାକ। ତା ୧୮-୧୧-୧୮୯୨ରେ ତାଂକର ଜନ୍ମ। ବାଲ୍ୟକାଳରେ ସେ ସଂବଲପୁର ସହରରେ ବିଦ୍ୟାଶିକ୍ଷା ଆରଂଭ କଲେ। ୧୯୧୨ରେ ଜିଲ୍ଲା ସ୍କୁଲରୁ ପ୍ରଥମ ଶ୍ରେଣୀରେ ସେ ମାଟ୍ରିକ ପାସ କଲେ। ଜିଲ୍ଲା ସ୍କୁଲରେ ଜଣେ ସଂସ୍କୃତ ପଂଡିତ ଥାଆଂତି। ପୁରୀ ଜିଲ୍ଲାର ଲୋକ। କଠୋରପଂଥୀ ବ୍ରାହ୍ମଣ। ଦୀର୍ଘ ୧୫ ବରଷ କାଳ ସେ ଜିଲ୍ଲା ସ୍କୁଲର ପଂଡିତ ଥିଲେ। ଓଡ଼ିଆ ଓ ସଂସ୍କୃତ ଉଭୟ ପାଠ ପଢ଼ାଉଥିଲେ। ଆଂଚଳିକ କଥିତ ଭାଷାରେ ଦକ୍ଷତା ଲାଭ କରି ସେ ସବୁ ସ୍ତରରେ ପ୍ରିୟ ଥିଲେ ଓ ତାଂକ କଥା ପ୍ରାୟ ସମସ୍ତେ ମାନୁଥିଲେ। ଏହି କାବ୍ୟତୀର୍ଥ ପଂଡିତ ଫକୀର ମିଶ୍ରଂକର ସୌଭାଗ୍ୟ ଥିଲା ଯେ ସଂବଲପୁର ଜିଲ୍ଲାର ପରବର୍ତୀ କାଳରେ ସୁପରିଚିତ ଓ ପ୍ରତିଷ୍ଠିତ ଲେଖକ ଓକିଲ ସମାଜସେବୀ ଓ ରାଜନୀତିଜ୍ଞ ସମସ୍ତେ ତାଂକର ଛାତ୍ର ଥିଲେ। ଏମାନଂକ ମଧ୍ୟରେ ଅଛଂତି ଡାକ୍ତର ଜନାର୍ଦ୍ଦନ ପୂଜାରୀ, ଡାକ୍ତର ଆଇଜାକ ସାଂତରା, ବୋଧରାମ ଦୁବେ, ଗୋକୁଳ ଚଂଦ୍ରବାବୁ, ଶଂକର ପ୍ରସାଦ ମିଶ୍ର, ଅଚ୍ୟୁତାନଂଦ ପୁରୋହିତ, ବ୍ରଜମୋହନ ପଂଡା, ଶ୍ରଦ୍ଧାକର ସୂପକାର, ରାଜାରାମ ଦୁବେ ପଭୃତି। ଏମାନେ ସମସ୍ତେ ପଂଡିତଂକର ପ୍ରିୟ ଛାତ୍ରଭାବରେ ଗର୍ବ କରୁଥିଲେ। ବିଦ୍ୟାଳୟରେ ଶିକ୍ଷାଦାନ ସହିତ ଛାତ୍ରମାନଂକୁ ଚରିତ୍ର ଗଠନ, ସମାଜସେବା ଓ ସାହିତ୍ୟପ୍ରୀତି ସେ ଶିଖାଇଥିଲେ। ସହଜରେ ମିସନାରି ପୁତ୍ର। ତା ଉପରେ ଶିକ୍ଷକଂକର ଚରିତ୍ରଗଠନରେ ପ୍ରଭାବ। ସମାଜ ସେବାର ଗୁରୁତ୍ୱ ଯୁବକ ଆଇଜାକଂକୁ ବିଶେଷ ଆକୃଷ୍ଟ କରିଥିଲା। ମାଟ୍ରିକ ପାସ କଲାପରେ ପ୍ରଭୁ ଯିଶୁଖ୍ରୀଷ୍ଟଂକର ସେବା ନିମିତ୍ତ ଉତ୍ସର୍ଗୀତ ତାଂକ ପୁତ୍ରକୁ ପିତା ଭିକାରି କଟକ ପଠାଇଦେଲେ। ସେଠାରେ ପରମାର୍ଥିକ ତତ୍ତ୍ୱ ଶିକ୍ଷାନେବା ତାଂକର ଉଦ୍ଦେଶ୍ୟ ଥିଲା ମାତ୍ର କଟକରେ ପହଂଚି ଆଇଜାକ ଦେଖିଲେ ଡାକ୍ତରି ବିଦ୍ୟା ପଢ଼ିଲେ ସେ ଲୋକମାନଂକର ବିଶେଷ ସେବା କରିପାରିବେ। ବଲାଂଗିରରେ ଥିବାବେଳେ

ସେ ପିତାମାତାଂକୁ ନିଜ ସଂକଳ୍ପ ଜଣାଇଥିଲେ ମଧ୍ୟ ସେମାନେ ଏହି ପ୍ରସ୍ତାବରେ ସମ୍ମତି ଦେଇ ନ ଥିଲେ। ତେଣୁ କଟକ ଆସି ସେ ସେମାନଂକର ଅଜାଣତରେ ଡାକ୍ତରି ସ୍କୁଲରେ ନାମ ଲେଖାଇଲେ। ଘରୁ ଆସିବା ସମୟରେ ସଂବଲପୁରଠାରେ ସେ ନିଜର ଅଭିଳାଷ କେତେଜଣ ବଂଧୁ ଓ ଆତ୍ମୀୟଂକୁ ଜଣାଇଥିଲେ ଓ ସେମାନଂକର ସଦିଚ୍ଛା ଓ ସହଯୋଗ ତାଂକୁ ମିଳିଥିଲା କଟକରେ ଓ ପରେ କଲିକତା ଯାଇ ସେଠାରେ ଚାରିବରଷ କୃତୀତ୍ୱର ସହିତ ଡାକ୍ତରି ପଢ଼ି ସେ ମେଡ଼ିକାଲ ସ୍କୁଲରୁ ଏଲ.ଏମ୍.ପି (ଲାଇସେନ୍ସ ପ୍ରାପ୍ତ ଡାକ୍ତରି ଚିକିତ୍ସକ) ପାସ କଲେ। ସେତେବେଳେ ଡାକ୍ତରି ଡିଗ୍ରି କଲେଜ ଓଡ଼ିଶାରେ ନ ଥାଏ ଓ ଏହି ପାଠ ସର୍ବତ୍ର ଡାକ୍ତରି ବିଦ୍ୟା ଭାବରେ ପରିଚିତ ଥାଏ।

୧୯୧୭ ମସିହାରେ ଡାକ୍ତର ହୋଇ ସେ ଜିଲ୍ଲାବୋର୍ଡ ଚାକିରି ପାଇଲେ ଓ କଟକ ଜିଲ୍ଲାର ବାଲିକୁଦା ଜଗତ୍‌ସିଂହପୁର ଆଦି ମଫସଲ ଡାକ୍ତର ଖାନାରେ କାମ କଲେ। ବ୍ରିଟିଶ କୁଷ୍ଠରୋଗ ନିର୍ବାରଣ ସଂଘ (ଯେଉଁଥିରୁ ପରବର୍ତୀକାଳରେ ହିଂଦ କୁଷ୍ଠ ନିବାରଣ ସଂଘର ଜନ୍ମ) ସେତେବେଳେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ କୁଷ୍ଠରୋଗୀଂକର ସେବା ନିମିତ୍ତ ଉଦ୍ଦିଷ୍ଟ ଥାଏ। କୁଷ୍ଠରୋଗୀ ଗାଁରେ ରହି ପାରୁ ନ ଥିଲା। ତାକୁ ସମାଜରୁ ଏକ ଘରିକିଆ କରିଦିଆଯାଉଥିଲା। ସେ ଚଳିଲା ଘରର ଲୋକ ଥିଲେ ଗାଁ ବାହାରେ ପଲା ମାରି ରହୁଥିଲା। ନହେଲେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଯାଇ ସେଠାରେ ବଡ଼ଦାଂଡରେ ଭିଖାରି ହୋଇ ରହୁଥିଲା। ଯୁବକ ଡାକ୍ତର ଆଇଜାକ ଏହିମାନଂକ ସେବାପ୍ରତି ଆକୃଷ୍ଟ ହୋଇ ଏହି ସଂଘରେ ଯୋଗଦେଲେ। ରୋଗୀମାନଂକ ଚିକିତ୍ସା ନିମିତ୍ତ ଏକ ନୂତନ ପଦ୍ଧତି ବାହାରିଥାଏ। ଏହା ସହିତ ନୂତନ ଔଷଧ ମଧ୍ୟ ଆବିଷ୍କାର ହୋଇଥାଏ। ଜଣେ ବ୍ରିଟିଶ ମିସନାରିଂକଠାରୁ ଡାକ୍ତର ଆଇଜାକ ଏହି ବିଦ୍ୟା ହାସଲ କଲେ। ସେହି ପଦ୍ଧତିରେ ଚିକିତ୍ସାକରି ଅଶେଷ ରୋଗୀଂକୁ ରୋଗମୁକ୍ତ କରିବାରେ ସେ ସମର୍ଥ ହେଲେ। କୁଷ୍ଠରୋଗ ବିଶେଷଜ୍ଞ ଭାବରେ ତାଂକର ଖ୍ୟାତି ଆସିଲା ଓ ଏଥିନିମିତ୍ତ ବିଶେଷ ଜ୍ଞାନ ଅର୍ଜନ କରିବା ଉଦ୍ଦେଶ୍ୟରେ ବ୍ରିଟିଶ କାଉନସିଲ ତାଂକୁ ସାମ୍ରାଜ୍ୟର ବିଭିନ୍ନ ଦେଶ ପରିଭ୍ରମଣ ସହିତ ଅଭିଜ୍ଞତା ଅର୍ଜନର ସୁଯୋଗ ଦେଇଥିଲେ। ଏହି ଅବସରରେ ସେ ସିଂଗାପୁର, ଇଜିପ୍ଟ, ଇଂଲଂଡ ଆଦି ଦେଶ ଭ୍ରମଣ କଲେ। ନିଜର ପତ୍ନୀଂକ ସହିତ ମିଶି ସେ ସଂବଲପୁରରୁ 'ପ୍ରଭାତ' ନାମକ ଏକ ଧର୍ମତତ୍ତ୍ୱ ସଂକ୍ରାଂତ ମାସିକ ପତ୍ରିକା ପ୍ରକାଶ କରାଇଲେ ଓ ପରମାର୍ଥିକ ତତ୍ତ୍ୱ ସହିତ ଗୃହସ୍ଥମାନଂକର ଜାଣିବା କଥା ରୋଗ ପ୍ରତିଷେଧକ ଓ ଚିକିତ୍ସା ବିଷୟକ ପ୍ରବଂଧ ଏଥିରେ ସ୍ଥାନ ପାଉଥିଲା। ଡାକ୍ତର ସାଂତରା ନିଜର ବିଭିନ୍ନ ଦେଶ ଭ୍ରମଣ ସମୟର ରୋଗ ଚିକିତ୍ସାର ଅନୁଭୂତି ଏଥିରେ ଲେଖୁଥିଲେ। ତାଂକର ସେବା କାର୍ଯ ମହାତ୍ମା ଗାଂଧିକର ଦୃଷ୍ଟି ଆକର୍ଷଣ କରିଥିଲା

ଓ ନାନା କାର୍ଯବ୍ୟସ୍ତତା ମଧ୍ୟରେ ସେ ତାଂକୁ ୩ ଥର ସାକ୍ଷାତ ନିମିତ୍ତ ଅନୁମତି ଦେଇ ତାଂକ କାର୍ଯପ୍ରତି ନିଜର ଅନୁମୋଦନ ଓ ଆଶୀର୍ବାଦ ଜଣାଇଥିଲେ। ସରକାର ତାଂକ ନିଃସ୍ୱାର୍ଥ ସେବାର ସ୍ୱୀକୃତି ସ୍ୱରୂପ ତାଂକୁ ୧୯୩୮ରେ ରାୟସାହେବ ଉପାଧିରେ ସମ୍ମାନିତ କଲେ । ପ୍ରଥମ କଂଗ୍ରେସ ମଂତ୍ରୀମଂଡଳ ସମୟରେ ଗାଂଧିଜିଂକର ୱାର୍ଦ୍ଧା ସେବାଶ୍ରମଠାରେ ତାଂକୁ ମଧ୍ୟ ସଂବଂର୍ଧିତ କରାଯାଇଥିଲା। ସ୍ୱାଧୀନ ଭାରତରେ ତାଂକୁ ୧୯୫୪ରେ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ କରାଯାଇଥିଲା। ସମ୍ମାନ ସମୁଚିତ ନ ହେଲେ ମଧ୍ୟ ତାଂକ ପ୍ରତିଭାର ସ୍ୱୀକୃତିର ଏହା ସାମାନ୍ୟ ସୂଚନା ଥିଲା।

ଦୀର୍ଘ ଛଅସ୍ତରି ବରଷ ଜୀବନର ସମାପନ ହୁଏ ୧୯୬୮ ଅଗଷ୍ଟ ୨୯ ତାରିଖରେ ସଂବଲପୁର ସହରରେ ଆଶାପାଲିର ନିଜବାସ ଭବନରେ। ତାଂକର ସଂକ୍ଷିପ୍ତ ଜୀବନୀ 'ଆର୍ତବଂଧୁ ଆଇଜାକ ସାଂତରା' ନାମରେ ଡକ୍ଟର ଶ୍ରଦ୍ଧାକର ସୂପକାରଂକ ଦ୍ୱାରା ଲିଖିତ ଓ ପ୍ରକାଶିତ।





# ନୀତିନିଷ୍ଠ

# ଘାସିବାବୁ (ଗୋକୁଳଚଂଦ୍ର ବାବୁ)

ଏକଥା ଅନେକ ଜାଣଂତି ନାହିଁ ଯେ ରଜା ମଲେ ତାଂକର ପୁଅ ଶବକୁ ମୁଖାଗ୍ନି ଦେଇ ନଥାଂତି। ସେ ଗାଦିରେ ବସି ଶବ ସତ୍କାର ନିମିତ୍ତ ନିଜର ପ୍ରଥମ ଆଦେଶ ପ୍ରଦାନ କରଂତି ଓ ଜଣେ ବ୍ରାହ୍ମଣ ଯୁବକ ଏହି ମୁଖାଗ୍ନି କାର୍ଯ ସଂପନ୍ନ କରିଥାଏ। ଏହି ଉଦ୍ଦେଶ୍ୟରେ ସାଧାରଣତଃ ରାଜା ଓ ରାଣୀ ମାନେ ବ୍ରାହ୍ମଣ ପିଲାଂକୁ ପୋଷ୍ୟ ପୁତ୍ର କରି ରଖିଥାଂତି। ସେମାନେ ଉଦାର ରାଜପୃଷ୍ଠପୋଷକତା ପାଆଂତି। ଏହି ବ୍ରାହ୍ମଣମାନେ ନିଜ କୌଳିକ ଉପାଧି ପରିତ୍ୟାଗ କରି ବାବୁ ଉପାଧି ଗ୍ରହଣ କରଂତି। ସଂବଲପୁରରେ ବାବୁ ପଦବି ଏହିପରି ପ୍ରଚଳିତ ହୋଇଛି। ରାଜ ଅନୁଗ୍ରହ ପାଇ ସୋମନାଥ ପଂଡା ସଂବଲପୁରରେ ସୋମନାଥ ବାବୁ ନାମରେ ପରିଚିତ ହେଲେ। ସଂବଲପୁରରେ ଭାଷା ସଂକଟ ସମୟରେ ଯେଉଁ ବୁଦ୍ଧିଜୀବୀ ମାନେ ପ୍ରତିବାଦ କରି ଓଡ଼ିଆ ଭାଷାକୁ ବଂଚାଇ ରଖିଥିଲେ ତାଂକ ଭିତରେ ସୋମନାଥ ବାବୁ ଜଣେ। ସୋମନାଥଂକର ପ୍ରଥମ ଭାର୍ଯା ମରିଯିବା ପରେ ସେ ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ। ଓକିଲମାନଂକ ପାଖରେ କାମ କରି ସୋମନାଥ ବିଚକ୍ଷଣ ଭାବରେ ଦଲିଲ୍ ଦସ୍ତାବିଜ ଲେଖିପାରୁଥିଲେ ଓ ଜଣେ ପୋଖତ ଅରଜିନବିସ ଭାବରେ

ସେ ବହୁ ଧନ ଅର୍ଜନ କରିଥିଲେ। ସୋମନାଥ ନିଜ ସଂପତ୍ତି ଭାଗ କରି ନିଜେ ଦୁଇ ଭାଗ ରଖିଲେ ଓ ଜ୍ୟେଷ୍ଠପୁତ୍ର ମଦନ ମୋହନଙ୍କୁ ଏକ ଭାଗ ଦେଇଦେଲେ। ମଦନ ମୋହନ ସେ ସମୟରେ ଜିଲ୍ଲା ଅଫିସରରେ ମୁନ୍‌ସରିମ୍ ଥିଲେ। ଗଡ଼ଜାତ ରାଜ୍ୟଗୁଡ଼ିକର ପରିଚାଳନା ସଂବଲପୁର ଅଫିସ୍‌କୁ ଆସିଲାପରେ ସେ ଗଡ଼ଜାତ ମାହାଲ ପାଇଁ ମୁନ୍‌ସି ଭାବରେ ମଧ୍ୟ କାର୍ଯ କରିଥିଲେ। ମଦନ ମୋହନ ପଦ୍ମଲୋଚନ ବେହେରାଂକର କନ୍ୟା ବୃଂଦାବତୀ ଦେବୀଂକୁ ବିବାହ କରିଥିଲେ। ବୃଂଦାବତୀ ବିଶେଷ ଶିକ୍ଷାପ୍ରାପ୍ତ କରି ନଥିଲେ ମଧ୍ୟ ଏକ ଐଶୀ ଶକ୍ତିର ଅଧିକାରିଣୀ ଥିଲେ। ଦାଂଡରେ ବୁଲିବୁଲି ମାଠିଆରେ ଘିଅ ବିକ୍ରି କରୁଥିବା ଜଣେ ମହିଳାଂକୁ ଦେଖି ସେ ତାଂକୁ ସାଧନ ସଂଗିନୀ ରୂପେ ଗ୍ରହଣ କଲେ ଓ ଶାସ୍ତ୍ରର ଗୂଢ଼ ତତ୍ତ୍ୱ ପାଇବାରେ ସମର୍ଥ ହୋଇଥିଲେ। ଏହି ଜ୍ଞାନ ଲାଭ ଫଳରେ ତାଂକ ମୁଖ ମଂଡଳର ଦୀପ୍ତି ଲୋକମାନଂକୁ ଚମତ୍‌କୃତ କରିଥିଲା। ଗୋକୁଳ ଚଂଦ୍ର ତାଂକର ପୁତ୍ର। ଅଳ୍ପ ବୟସରେ ସଂତାନ ମାନଂକର ମୃତ୍ୟୁ ହେଲେ ବଂଚି ରହୁଥିବା ନବଜାତ ସଂତାନମାନଂକୁ ବିଚିତ୍ର ନାମ ଦିଆଯାଉଥିଲା। ଗଂଡା, ଚମାର, ଅଇଁଠା, ଅଇଁଠା ପତ୍ରୀ, ଗଂଡାଣୀ ଏମିତି ନାମ ସବୁ। ଗୋକୁଳ ବାବୁଂକର ନାଁ ହେଲା ଘାସି। ତାଂକର ଜନ୍ମ ୧୮୯୫ରେ।

ବାଲ୍ୟାବସ୍ଥାରେ ତାଂକର ଉଦାରତା, ସତ୍ୟବାଦିତା, ସହୃଦୟତା, ଦୃଢ଼ତା ଆଦି ଗୁଣ ପ୍ରକାଶ ପାଇଥିଲା। ଛାତ୍ର ଅବସ୍ଥାରେ ସେ ପାଠ ସହିତ ଗୀତା ଓ ପୁରାଣ ପାଠ ଆଦି ଅଭ୍ୟାସ କରୁଥିଲେ ଓ ଏହା ପରବର୍ତୀ କାଳରେ ତାଂକ ଚରିତ୍ର ଉପରେ ପ୍ରଭାବ ପକାଇ ଥିଲା। ଗୁରୁପଡ଼ା ପ୍ରାଥମିକ ବିଦ୍ୟାଳୟରୁ ପାଠ ସାରି ସେ ସଂବଲପୁର ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ। ସେଠାରେ ପଂଡିତ ଫକୀର ମିଶ୍ର ନାମରେ ଜଣେ ଆଦର୍ଶ ସ୍ୱଦେଶ ପ୍ରେମୀ ସଂସ୍କୃତ ଶିକ୍ଷକ ଥିଲେ। ବାଲ୍ୟକାଳରୁ ଗୋକୁଳାନଂଦ ତାଂକ ସାଥୀ ଜନାର୍ଦନ ଓ ଅନ୍ୟମାନେ ବସଂତ ରୋଗ ହେଲେ ରୋଗୀ ଚିକିତ୍ସାର ବ୍ୟବସ୍ଥା କରୁଥିଲେ। ବଂଗ ବିଭାଜନ ଏହି ସମୟରେ ହୋଇଥାଏ ଓ ଏ ବିଷୟ ଗୋକୁଳ ଚଂଦ୍ର ଶିକ୍ଷକମାନଂକଠାରୁ ଶୁଣି ନିଜେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଥିଲେ। ଗୋକୁଳ ଚଂଦ୍ର ଓ ତାଂକ ସାଥୀମାନେ ବିଦେଶୀ ବସ୍ତ୍ର ବର୍ଜନ କଲେ ଓ ବିଭିନ୍ନ ସ୍ଥାନରୁ ସଂଗ୍ରହ କରି ସର୍ବସାଧାରଣରେ ସେ ଏହି ସବୁ ବସ୍ତ୍ର ପୋଡ଼ି ଅନ୍ୟମାନଂକୁ ସ୍ୱଦେଶୀ ଭାବନାରେ ଅନୁପ୍ରାଣିତ କରିଥିଲେ। ସଂବଲପୁରରେ ଭୁଲିଆ ତଂତୀଂକର ତଂତବୁଣା ଲୁଗାର ଖୁବ୍ ଆଦର ଥିଲା। ସ୍ତ୍ରୀ ଲୋକମାନେ ମିଲ୍ ଲୁଗା ପିଂଧୁ ନଥିଲେ। ପୁରୁଷମାନେ ଭୁଲିଆ ତଂତୀଂକ ବୁଣା ଲୁଗା ସହିତ କୋଷ୍ଟାମାନଂକ ଦ୍ୱାରା ତଂତବୁଣା ଟସର ଓ ମଠାଲୁଗାର ପଂଜାବି, କାମିଜ ଓ କୋଟ ବ୍ୟବହାର କରୁଥିଲେ। ସ୍ୱଦେଶୀ ଆଂଦୋଳନ ଏହି ବୁଣା ଶିଳ୍ପକୁ ବିଶେଷ ଉତ୍ସାହିତ କରିଥିଲା। ଯେଉଁମାନେ ବିଦେଶୀ ବସ୍ତ୍ର ବର୍ଜନରେ ଗୋକୁଳ ବାବୁଂକର ସହଯୋଗୀ ଥିଲେ ସେମାନେ ପରବର୍ତୀ କାଳରେ ସଂବଲପୁରରେ ବିଶେଷ ଲୋକପ୍ରିୟତା ଓ ଖ୍ୟାତି ଅର୍ଜନ କରିଥିଲେ। ସେମାନେ ହେଲେ

ପ୍ରାତଃ ସ୍ମରଣୀୟ ଡାକ୍ତର ଜନାର୍ଦ୍ଦନ ପୂଜାରୀ, ବିହାର ଓଡ଼ିଶାର ଲାଟ୍‌ସଭା ସଭ୍ୟ ଥିବା ଶଂକର ପ୍ରସାଦ ମିଶ୍ର, ସମାଜ ସେବୀ ଜନାର୍ଦ୍ଦନ ସୂପକାର, ହରିଶଂକର ପୃଷେଠ, ପର୍ଶୁରାମ ସାହାଣୀ ଆଦି। ୧୯୧୧ରେ ଜିଲ୍ଲା ସ୍କୁଲ ରୁ ପାସ୍ କରି ସେ କଲିକତା ବିଶ୍ୱବିଦ୍ୟାଳୟର ଜଣେ ମାଟ୍ରିକୁଲେଟ୍ ଭାବରେ ଗଣାଗଲେ। ସେତେବେଳେ ସମାଜରେ ବାଲ୍ୟବିବାହ ବିଶେଷ ପ୍ରଚଳନ ଥାଏ। ସଂବଲପୁର ଜିଲ୍ଲାର ପ୍ରଥମ ମାଟ୍ରିକ୍ ପାଶ୍ କରିଥିବା ବ୍ୟକ୍ତି ହେଲେ ଝାଡ଼ୁଆପଡ଼ାର ଧରଣୀଧର ମିଶ୍ର। ତାଂକର ଜ୍ୟେଷ୍ଠ ପୁତ୍ର ଓକିଲ ରାମ ନାରାୟଣ ମିଶ୍ର ଜିଲ୍ଲାର ପ୍ରଥମ ଏମ୍.ଏ. ବି.ଏଲ୍. ଥିଲେ। ଗୋକୁଳ ବାବୁ ରାମନାରାୟଣଂକର ଜ୍ୟେଷ୍ଠା କନ୍ୟା ଦେବହୂତିଂକୁ ବିବାହ କରିଥିଲେ। ଶ୍ୱଶୁରଂକର ଅର୍ଥରେ ସେ ଉଚ୍ଚ ଶିକ୍ଷା ପାଇବାକୁ କଲିକତା ଯାତ୍ରା କଲେ। ସେଠାରେ ଛଅବର୍ଷ ରହି ସେ ଆଇ.ଏ.ବି.ଏ ଓ ବି.ଏଲ୍ ପାଶ କଲେ। ତାଂକର ମାତା ଭଜନ କୀର୍ତନରେ ବେଶି ସମୟ କଟାଉଥିଲେ, ଚାଷ କାମରେ ହେଳାହେଲା। ଫଳରେ ପରିବାରର ଆୟ କମିଗଲା। ଗୋକୁଳ ବାବୁ ଅଧିକ ବିଦ୍ୟାଶିକ୍ଷା ନକରି ସଂବଲପୁର ଫେରିଆସି ୧୯୧୮ରେ ଓକିଲାତି ଆରଂଭ କଲେ। ସହରରେ ସେତେବେଳେ ଅଳ୍ପ କେତେ ଜଣ ଓଡ଼ିଆ ଓକିଲ ଥିଲେ। ସେମାନଂକ ମଧ୍ୟରେ ତାଂକ ଶଶୁର ରାମନାରାୟଣ ମିଶ୍ର ଓ ସଂବଲପୁରର ଅକ୍ଷୟ ତାରକା ଚଂଦ୍ରଶେଖର ବେହେରା ବିଶେଷ ଖ୍ୟାତି ଅର୍ଜନ କରିଥାଂତି। ପ୍ରଥମ କେତେବର୍ଷ ସେ ବିଶେଷ ଭାବରେ ଆଇନ୍ ବ୍ୟବସାୟରେ ଆଗ୍ରହୀ ନଥିଲେ।

୧୯୨୩ ପର୍ଯଂତ ତାଂକ ବ୍ୟବସାୟ ପ୍ରସାରଲାଭ କରିନଥିଲା। ୧୯୨୧ ମସିହାରେ ଛାତ୍ରମାନେ ବିଦ୍ୟାଳୟ ବର୍ଜନ କଲେ। ଚଂଦ୍ରଶେଖର ବେହେରା ସେମାନଂକର ନେତୃତ୍ୱ ନେଲେ। ସଂବଲପୁର ସହରର ଫ୍ରେଜର କ୍ଲବରେ ପଂଡିତ ନୀଳକଂଠ ଦାସ ଅଧ୍ୟକ୍ଷ ଥାଇ ଏକ ଜାତୀୟ ବିଦ୍ୟାଳୟ ଖୋଲାଗଲା। ଗୋକୁଳ ବାବୁଂକର ଶଶୁର ଏଥିରେ ସହଯୋଗ କଲେ। ଚଂଦ୍ରଶେଖର ବେହେରାଂକ ସହିତ ଗୋକୁଳ ବାବୁଂକର ଦେଶମିଶ୍ରଣ ଓ ଅସହଯୋଗ ଆଂଦୋଳନ ରେ ବିଶେଷ ସହଯୋଗ ଥିଲା। ନିଜର ଲୋକପ୍ରିୟତା ବଢ଼ିବା ସଂଗେ ସଂଗେ ତାଂକର ଓକିଲାତିରେ ପ୍ରସାର ମଧ୍ୟ ବଢ଼ିଲା। ଜଣେ ନୀତିବାନ୍ ଓକିଲ ଭାବରେ ସେ ସମସ୍ତଂକର ପ୍ରିୟ ହେଲେ। ନିଜ ପାରିଶ୍ରମିକ ପାଇଁ ସେ କେବେହେଲେ ମହକିଲମାନଂକ ସହିତ ବିବାଦ କରୁନଥିଲେ। ସ୍ୱଚ୍ଛ ଓ ଗଂଭୀର ପ୍ରକୃତିର ଥିବାରୁ ସେ ମକଦ୍ଦମାରେ ଅଦାଲତମାନଂକର ବେଶି ସମୟ ନଷ୍ଟ କରୁନଥିଲେ। ନିଜର ନିରପେକ୍ଷତା, ତର୍କ ଓ ଆଇନ୍ ବିଶ୍ଳେଷଣ ଦ୍ୱାରା ସେ ବିଚାରପତିମାନଂକର ପ୍ରିୟ ହେଲେ। ଶଶୁରଂକର ଖର୍ଚ୍ଚରେ ସେ ଉଚ୍ଚଶିକ୍ଷା ପାଇଥିଲେ। ନିଜର ସ୍ୱଭାବ-ସୁଲଭ ଗୁଣରେ ସେ କାହାପାଖରେ ଋଣୀ ହେବାକୁ ଚାହୁଁ ନଥିଲେ। ସେଥିସକାଶେ ସେ ଓକିଲାତି କଲାପରେ ନିଜ ସମ୍ପତ୍ତି ବିକ୍ରିକରି ଶଶୁରଂକର ଋଣ ସୁଝି ଥିଲେ। ଦେଶମିଶ୍ରଣ କାର୍ଯରେ ଗୋକୁଳବାବୁ ପୂର୍ଣ ସହଯୋଗ

କରୁଥିଲେ। ସୀମା ନିର୍ଦ୍ଧାରଣ କମିସନ ଆସିବା ବେଳେ ସେ ରାୟପୁର ଯାଇଥିଲେ। କମିସନ ଆଗରେ ସାକ୍ଷୀ ଜବାନବଂଦି କରାଇଥିଲେ। ଫୁଲଝର ଆଦି ମଧ୍ୟପ୍ରଦେଶର ଓଡ଼ିଆ ଅଂଚଳବାସୀଂକୁ ଓଡ଼ିଶା ମିଶ୍ରଣ ସପକ୍ଷରେ ପ୍ରଭାବିତ କରିଥିଲେ ଓ ଖଡିଆଳର ଓଡ଼ିଆ ବିରୋଧୀ ଆଂଦୋଳନ ଖର୍ବ କରିଥିଲେ।

ସଂବଲପୁର ଜିଲ୍ଲାରେ ମଧ୍ୟପ୍ରଦେଶ ସ୍ୱାୟତ୍ତ ଶାସନ ଆଇନ୍ ୧୮୮୩ କାର୍ଯକାରୀ ଥିଲା। ସେଇ ଆଇନ୍ ଅନୁସାରେ ସଂବଲପୁରରେ ଜିଲ୍ଲା କାଉନ୍‌ସିଲ କାର୍ଯ କରୁଥିଲା । ଉପକୂଳ ଅଂଚଳରେ ବିହାର ଓଡ଼ିଶା ଆଇନ୍ ବଳରେ ଗଠିତ ଜିଲ୍ଲା ବୋର୍ଡ଼ର ଏହା ଅନ୍ୟ ଏକ ରୂପ ଥିଲା। ଜିଲ୍ଲା କାଉନ୍‌ସିଲ୍ ଚାରୋଟି ଲୋକାଲ ବୋର୍ଡ ଜରିଆରେ କାମ କରୁଥିଲେ। ସଂବଲପୁର ଓ ବରଗଡ଼ରେ ଏହା ୧୮୮୩ରେ ସ୍ଥାପିତ ହୋଇଥିଲା। ଅନ୍ୟ ଦୁଇଗୋଟି ମହାନଦୀ ଉତ୍ତରତୀର ଜମିଦାରି ଓ ଦକ୍ଷିଣତୀର ଜମିଦାରି ନାମରେ ୧୮୯୨ରେ ବସାଯାଇଥିଲା। ଗୋକୁଳଚଂଦ୍ର ୧୯୨୬ରୁ ୧୯୪୧ ପର୍ଯଂତ ଜିଲ୍ଲା କାଉନ୍‌ସିଲ୍ ଚେୟାରମ୍ୟାନ ଥିଲେ। ତାଂକ ପୂର୍ବରୁ ଶେଖ ଅମିରୁଦ୍ଦିନ ୧୮୯୫-୯୬, କେ.ପି. ମିତ୍ର ୧୮୮୬-୮୭ ଓ ରାୟବାହାଦୁର ଜେ.ଏନ୍. ସେନ ୧୮୯୭-୧୯୨୬ ପର୍ଯଂତ ଏହି ଦାୟିତ୍ୱରେ ଥିଲେ। ସର୍ବଶେଷ ଇତିହାସ ଏ ସଂକ୍ରାଂତରେ ନ ମିଳୁଥିଲେ ମଧ୍ୟ ସହରର ଉପକଂଠରେ ମହାରାଣୀ ଭିକ୍‌ଟୋରିଆଂକର ଜୁବିଲି ଉପଲକ୍ଷେ ନିର୍ମିତ ଟାୱାର୍ ଓ ଘାଟରେ ଥିବା ଫଳକରୁ ୧୮୮୭ରେବୈଦ୍ୟନାଥ ମିଶ୍ର ଲୋକାଲ ବୋର୍ଡ ଚେୟାରମେନ ଥିବା ଜଣାପଡ଼େ। ପରେ ଡାକ୍ତର ରାମଚଂଦ୍ର ମିଶ୍ର ମଧ୍ୟ ଚେୟାରମେନ ଥିବା ଜଣାପଡ଼େ। ଓଡ଼ିଶା ପ୍ରଦେଶ ଗଠନ ପରେ ୧୯୩୯ ମସିହାରେ ସ୍ୱାୟତ୍ତ ଶାସନ ମଂତ୍ରୀ ସଂବଲପୁରରୁ ଥିବା ସମୟରେ ୧୯୪୦ରୁ ବିହାର ଓଡ଼ିଶା ସ୍ୱାୟତ୍ତ ଶାସନ ଆଇନ ଅନୁସାରେ ଜିଲ୍ଲାବୋର୍ଡ ଗଢ଼ାଗଲା। ପୂର୍ବ ଲୋକାଲ ବୋର୍ଡମାନ ଭାଂଗିଦିଆଗଲା। ଝାରସୁଗଡ଼ା, ବରଗଡ଼, ବରପାଲି, ବୋଡ଼ାସଂବର ପଦ୍ମପୁର ଓ ଖଡ଼ିଆଳରେ ଇଉନିଅନ ବୋର୍ଡ ଗଢ଼ାଗଲା। ଖଡ଼ିଆଳ ଓଡ଼ିଶା ମିଶିବାରେ ସେ ଗୁରୁତ୍ୱପୂର୍ଣ ଅଂଶ ଗ୍ରହଣ କରିଥିବାରୁ ନୂତନ ପ୍ରଦେଶ ଗଠନ ପରେ ରାୟପୁର ଜିଲ୍ଲା କାଉନସିଲ ସଭ୍ୟ ଥିବା ଲୋକାଲବୋର୍ଡ ଚେୟାରମେନ ପଂଡିତ ଜଗନ୍ନାଥ ପ୍ରସାଦ ତେୱାରୀଂକୁ ଗୋକୁଳବାବୁ ସଂବଲପୁର ଜିଲ୍ଲା କାଉନ୍‌ସିଲ୍‌ର ସଭ୍ୟ ଭାବେ ଗଠନ କରାଇଲେ। ନୂତନ ଆଇନ ବ୍ୟବସ୍ଥା ଅନୁସାରେ ପଂଡିତ ଜଗନ୍ନାଥ ପୁନ ନିର୍ବାଚିତ ହୋଇ ସଂବଲପୁର ଜିଲ୍ଲାବୋର୍ଡର ଖଡିଆଳରୁ ସଭ୍ୟ ହେଲେ। ସେ ଜଣେ ସ୍ୱାଧୀନଚେତା ନାଗରିକ ଥିଲେ। ହାତକଟା ଧୋତି ଓ ଫତେଇ ପିଂଧୁଥିଲେ। ନିଜ ପାକରେ କେବଳ ଖାଉଥିଲେ ଓ ଅନ୍ୟତ୍ର ଜଳ ମଧ୍ୟ ସ୍ପର୍ଶ କରୁନଥିଲେ। ନିଜର ଚରିତ୍ରବତ୍ତା ନିମିତ୍ତ ସେ ଖଡ଼ିଆଳରେ ରାଜପରିବାର ଓ ପ୍ରଜାମାନଂକ ମଧ୍ୟରେ ଲୋକପ୍ରିୟ ଥିଲେ ଓ ଖଡ଼ିଆଳ ଓଡ଼ିଶାରେ

ମିଶିବା ପରେ ସରକାର କେଂଦ୍ରରୁ ପାଇଥିବା ବିଶେଷ ଅନୁଦାନରେ ଓଡ଼ିଶା ସରକାରଂକର ପ୍ରଥମ ଏସ୍‌ଡିଓ (ବର୍ତମାନ ସବ କଲେକ୍ଟର) ରାୟସାହେବ ପଦ୍ମଚରଣ ଦାସଂକୁ ପ୍ରଭାବିତ କରି ରାସ୍ତା ଘାଟର ସୁବିଧା ସହିତ ନୂଆପଡାରେ ନୂତନ ସବ୍‌ଡିଭିଜନ ମହକୁମା ନିର୍ମାଣରେ ସଫଳ ହୋଇଥିଲେ । ପରବର୍ତୀ କାଳରେ ଖଡ଼ିଆଳ ମାଇନର ସ୍କୁଲକୁ ହାଇସ୍କୁଲକୁ ଉନ୍ନୀତ କରିବାରେ ସେ ମୁଖ୍ୟ ଉଦ୍ୟୋକ୍ତା ଥିଲେ। ଓଡ଼ିଶାର ଜଣେ ପ୍ରଖ୍ୟାତ ଶିକ୍ଷାବିତ୍ ମଧୁସୂଦନ ବିଶ୍ୱାଳ ଏମ୍.ଏଂକୁ ସେ ପ୍ରଥମ ପ୍ରଧାନ ଶିକ୍ଷକ ଭାବରେ ଆଣିବାରେ ସକ୍ଷମ ହୋଇଥିଲେ ଓ ତାଂକୁ ନିଜ ଗୃହରେ ବାସ ପ୍ରଦାନ କରି ତାଂକ ସୁଖକର ରହଣି ବିଦ୍ୟାଳୟର ମୂଳଦୁଆ ଦୃଢ଼ କରିବାରେ ସବୁ ପ୍ରକାର ସାହାଯ୍ୟ କରିଥିଲେ। ପୂର୍ବରୁ ଖଡ଼ିଆଳର ଛାତ୍ରମାନେ ରାୟପୁରରେ ଉଚ୍ଚଶିକ୍ଷା ପାଉଥିଲେ। ଖଡ଼ିଆଳର ବଂକିମଚଂଦ୍ର ପଟ୍ଟନାୟକ ବି.ଏ., ବି.ଏଲ. ଏହାର ଉଦାହରଣ, ମାତ୍ର ପଂଡିତ ଜଗନ୍ନାଥ ନିଜ ପୁତ୍ର ଅଶ୍ୱଧ ନାରାୟଣଂକୁ ସଂବଲପୁର ଜିଲ୍ଲାସ୍କୁଲ ଓ ରେଭେନ୍‌ସା କଲେଜରେ ପାଠ ପଢ଼ାଇ ଖଡ଼ିଆଳର ଓଡ଼ିଶା ସାହିତ ସାଂସ୍କୃତିକ ଓ ଭାବଗତ ମିଳନ ସୁଦୃଢ଼ କରିବାରେ ସମର୍ଥ ହୋଇଥିଲେ। ଜିଲ୍ଲାର ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା, ଫେରି ଘାଟ, କାଂଜିଆହୁଦା ଆଦି ଜିଲ୍ଲା ବୋର୍ଡ଼ ପରିଚାଳନା କରୁଥିଲା। ଗୋକୁଳ ଚଂଦ୍ର ପଂଦର ବର୍ଷ କାଳ ଏହି ଜିଲ୍ଲା କାଉନ୍‌ସିଲ ବା ଜିଲ୍ଲା ବୋର୍ଡର ଚେୟାରମେନ ଥିଲେ। ଚତୁର୍ଥ ଚେୟାରମେନ ଭାବରେ ସେ ୧୯୨୬ରେ ପ୍ରଥମେ ନିର୍ବାଚିତ ହେଲେ। ଆଗରୁ ଡକ୍ଟର ରାମଚଂଦ୍ର ମିଶ୍ର ଚେୟାରମେନ ଥିବାବେଳେ ସେ ଭାଇସ୍ ଚେୟାରମେନ ଥିଲେ। ତାଂକ ପରେ କେହି ଏତେ ଦୀର୍ଘଦିନ ଧରି ଚେୟାରମେନ ହୋଇ ନାହାଂତି।

ହୀରାକୁଦ ବଂଧ ନିର୍ମାଣ ହେବା ପୂର୍ବରୁ ମହାନଦୀ ଉପରେ ପୋଲ ନଥିଲା। ବର୍ଷାଋତୁରେ ଡଂଗାରେ ନଦୀ ପାର ହେବାକୁ ପଡୁଥିଲା। ମାତ୍ର ଖରାଦିନେ ବଡ଼ ବଡ଼ ଦସ୍ତା ଢୋଲ (ଡ୍ରମ) ମାନ ଏକାଠି ବଂଧାଯାଇ ପନ୍‌ଟୁନ୍ ପୋଲ ତିଆରି ହେଉଥିଲା, ଏହା ଉପର ଦେଇ ସବୁ ପ୍ରକାର ହାଲୁକା ଯାନ ବାହନ ଯାତାୟତ କରୁଥିଲା। ବର୍ଷାଦିନ ହେଲେ ଏହାକୁ ଉଠାଇ ଦିଆଯାଉଥିଲା ଓ ଜିଲ୍ଲା କାଉନ୍‌ସିଲ୍ ତରଫରୁ ନଦୀ ପାରି ହେବାକୁ ଚାପ, କୁଶଲୀ ଓ ପଟୁଆ ଆଦି ବିଭିନ୍ନ ପ୍ରକାର ଡଂଗାର ବ୍ୟବସ୍ଥା କରାଯାଉଥିଲା। ଏହାର ପରିଚାଳନା ଡେପୁଟି କମିଶନରଂକ ନିର୍ଦେଶ ସହିତ ଜିଲ୍ଲା ବୋର୍ଡ ହାତରେ ଥିଲା। ଜିଲ୍ଲା ବୋର୍ଡର ଆୟର ଏହା ଏକ ବିଶେଷ ଅଂଶ ଥିଲା। ସଂଧ୍ୟା ପରେ ଘାଟ ପାରିହେବା ନିଷେଧ ଥିଲା। ଚେୟାରମେନ ଭାବରେ ଗୋକୁଳ ବାବୁ ଏହି ନିୟମକୁ କଡ଼ା କଡ଼ି ଭାବରେ ପାଳନ କରୁଥିଲେ। ସଂବଲପୁରର ନିକଟବର୍ତୀ ଗଡ଼ଜାତମାନଂକୁ ଯିବାପାଇଁ ଏହା ଏକମାତ୍ର ବାଟ ଥିଲା। ଥରେ ଢେଂକାନାଳର ରାଜା ସଂଧ୍ୟା ଉତ୍ତାରେ ନଦୀ ପାରିହେବାକୁ ଉଦ୍ୟମ କଲେ। ଚେୟାରମ୍ୟାନ୍ ଅନୁମତି ଦେଲେନାହିଁ। ନିଜର ମର୍ଯାଦା ଓ ଗାମ୍ଭୀର୍ଯ ଦେଖାଇବା

ସତ୍ତ୍ୱେ ଓ ସେ ନିଜେ ଗୋକୁଳ ବାବୁଂକୁ ଅନୁରୋଧ କଲେ ମଧ୍ୟ ଆଇନ୍ ପାଳନ ସମସ୍ତଂକ ପକ୍ଷରେ ସମାନ, ଏତିକି ମାତ୍ର କହି ଗୋକୁଳ ବାବୁ ତାଂକର ଅନୁରୋଧ ପ୍ରତ୍ୟାଖ୍ୟାନ କଲେ। ସେହିପରି ଥରେ ସଂଧ୍ୟାପରେ ବର୍ଷାଦିନେ ପୂର୍ଣଗର୍ଭା ନଦୀକୁ କୁଶଳୀ ଚାପ ଦ୍ୱାରା ପାରିହେବାକୁ ଜିଲ୍ଲା ପୋଲିସ୍ ସାହେବ ଅନୁରୋଧ କରିଥିଲେ ମଧ୍ୟ ତାହା ଗୋକୁଳ ବାବୁ ପ୍ରତ୍ୟାଖାନ କଲେ ଓ ଜିଲ୍ଲା ମାଜିଷ୍ଟ୍ରେଟ୍‌ଂକୁ ନିଜ ଆଦେଶର ଯୌକ୍ତିକତା ବିଷୟ ବୁଝାଇ ଦେଇଥିଲେ। ରାସ୍ତା, ଘାଟ, ବିଦ୍ୟାଳୟ ଡାକ୍ତରଖାନା, ସରେଇଘର, କାଂଜିଆହୁଦା, ଜିଲ୍ଲାବୋର୍ଡର ଗୃହ, ବଂଧ , ବଜାର ଆଦିର କାର୍ଯ ତନଖିବା ସକାଶେ ଚେୟାରମ୍ୟାନଂକୁ ସମଗ୍ର ଜିଲ୍ଲାରେ ଗସ୍ତ କରିବାକୁ ପଡୁଥିଲା। ସଂବଲପୁରର ଲୋକମାନେ ଅତିଥି ପରାୟଣ ବୋଲି ବିଶେଷ ସୁଖ୍ୟାତି ଅର୍ଜନ କରିଥିଲେ। ପ୍ରଚଳିତ ଆଇନ୍ ଅନୁସାରେ ସରକାରୀ ଅଫିସର ମାନେ ଗସ୍ତ କରିବା ସମୟରେ ସେମାନଂକୁ ନିର୍ଧାରିତ ନାମ ମାତ୍ର ମୂଲ୍ୟରେ ରସିଦ ଯୋଗାଇବାକୁ ଗୌଂତିଆମାନେ ବାଧ୍ୟ ଥିଲେ। ମୂଲ୍ୟ ସାମାନ୍ୟ ଥିବାରୁ ଅନେକ ମଧ୍ୟ ତାହା ଦେଉନଥିଲେ ବା ଗୌଂତିଆମାନେ ତାହା ନେବାକୁ ଅନିଚ୍ଛା ପ୍ରକାଶ କରୁଥିଲେ।

ସ୍ୱଭାବ କବି ଗଂଗାଧର ଏହାକୁ ଲକ୍ଷ୍ୟ କରି ଲେଖିଥିଲେ :

''ବହିର୍ଗତ ହୋଇଥାଏ ଘରୁଶୂନ୍ୟ କରେ
ଶଗଡ଼ ଶଗଡ଼ ଦ୍ରବ୍ୟ ଆଣି ଘରେ ଭରେ''

ମାତ୍ର ଗୋକୁଳବାବୁଂକର ବିଷୟରେ ଜଣେ କବି ଲେଖିଥିଲେ ସେ :

''ଆବଶ୍ୟକ ଭୋଜ୍ୟ ଦ୍ରବ୍ୟ ସଂଗେ ଥାଂତି ଧରି
ଦେହାତେ ଦ୍ରବ୍ୟ ନିଅଂଟ ନହେବା ଯେପରି
ଲୁଣ, ଲଂକା, ତେଲ, ଘିଅ, ହଳଦୀ, ମସଲା
ଡାଲି, ଚାଉଳ, ଭାଜିରେ ପେଡ଼ିଥାଏ ଭରା।
ଫେରେ ପେଡ଼ି ହୋଇ ଶୂନ୍ୟ ବାବୁଂକ ସଦୃଶ
ଗାଆଂତି ଦେହାତି ଲୋକେ, ଶୁଣେ ତାଂକ ଯଶ''।

ଏହିପରି ଭାବରେ ଚେୟାରମେନ କାର୍ଯ ସଂପାଦନ କରି ସେ ସୁଖ୍ୟାତି ଅର୍ଜନ କରିଥିଲେ। ଗୋକୁଳଚଂଦ୍ର ଗଂଭୀର ସ୍ୱଭାବର ଥାଇ ସ୍ୱଳ୍ପଭାଷୀ ଥିଲେ, ବାକ୍ୟବୀର ନଥାଇ କର୍ମରେ ବିଶ୍ୱାସୀ ଥିଲେ ଓ କର୍ମକରି ନିଜର ଦକ୍ଷତା ଦେଖାଉଥିଲେ। କ୍ରୋଧୀ ବୋଲି ତାଂକୁ କୁହାଯାଉଥିଲେ ମଧ୍ୟ ସେ ବଂଧୁମହଲରେ ମିଳାପୀ ଥିଲେ। ପ୍ରତିବର୍ଷ ଗ୍ରୀଷ୍ମ ଋତୁରେ  ମହାନଦୀ ବାଲିରେ ସେ ବଂଧୁମିଳନ କରି ସମବୟସୀ ଓ ସମାଜ ସଚେତନ ବ୍ୟକ୍ତିମାନଂକ ସହିତ ଦେଶର ସମସ୍ୟାମାନ ଆଲୋଚନା କରୁଥିଲେ। ଶାସନ ପରିଚାଳନାରେ

ତାଂକର ସାଧୁତା ଓ ନିଷ୍ଠାପରତା ସରକାରଂକର ମଧ୍ୟ ପ୍ରଶଂସା ପାଇଥିଲା। ସମ୍ରାଟ୍ ଷଷ୍ଠ ଜର୍ଜଂକର ଅଭିଷେକ ସମୟରେ ୧୯୩୬ରେ ତାଂକୁ ଏକ ପଦକ ଦିଆଯାଇ ସମ୍ମାନିତ କରାଯାଇଥିଲା। ୧୯୩୮ରେ ନବବର୍ଷ ଉପଲକ୍ଷେ ଇଂରେଜ ସରକାର ତାଂକୁ ରାୟ ସାହେବ ଉପାଧି ଦେଇ ସମ୍ମାନିତ କରିଥିଲେ। ଏହି ମର୍ଯାଦା ଯୋଗୁଁ କେହି ବୁଝିବେ ନାହିଁ ଯେ ଗୋକୁଳ ବାବୁ ଇଂରେଜ ସରକାରଂକର ଜଣେ ଚାଟୁକାର ଥିଲେ। ତାଂକର ବେଶଭୂଷା ସରଳ ଓ ଆଡ଼ଂବର ଶୂନ୍ୟ ଥିଲା। ମହାତ୍ମା ଗାଂଧିଙ୍କର ସଂବଲପୁର ଆଗମନ ସମୟରେ ୧୯୨୮ରେ ସେ ଜିଲ୍ଲା କାଉନ୍‌ସିଲ୍‌ର ଚେୟାରମେନ୍ ଥାଇ ମହାତ୍ମାଂକୁ ଅଭିନଂଦନ ଜଣାଇବାକୁ କାଉନ୍‌ସିଲ୍‌ରେ ପ୍ରସ୍ତାବ ଗ୍ରହଣ କରାଇଥିଲେ। ମହାତ୍ମାଗାଂଧିକୁ ସଂବଲପୁରରେ ବିପୁଳ ସଂବର୍ଧନା ଦେବାକୁ ଯେଉଁ କମିଟି ଚଂଦ୍ରଶେଖର ବେହେରାଂକ ଅଧ୍ୟକ୍ଷତାରେ ଗଢ଼ାଯାଇଥିଲା ତାହାର ସେ ସଂପାଦକ ଥିଲେ। ତାଂକ ମାଉସୀପୁଅ ଭାଇ ବାଲୁଂକେଶ୍ୱର ବରଗଡ଼ ଓକିଲ ମଧ୍ୟ ସେଠାରୁ ଆସି ଗୋକୁଳଚଂଦ୍ରଂକୁ ଏଥିରେ ସହାୟତା କଲେ। ଗାଂଧିଜୀଂକ ସହିତ ତାଂକ ଗସ୍ତ ସମୟରେ ସେ ଯାତ୍ରା କରିଥିଲେ। ମହାନଦୀ ପୋଲ ପାରିହେବା ସମୟରେ ସେ ଓ ଜିଲ୍ଲା ସଭାପତି ଅଚ୍ୟୁତାନଂଦ ପୁରୋହିତ ତାଂକ ଦୁଇ ପାଖରେ ରହି ଭିଡ଼ ସଂଭାଳି ଥିଲେ। ପ୍ରତ୍ୟକ୍ଷ କଂଗ୍ରେସ ନେତା ନଥିଲେ ମଧ୍ୟ ଗୋକୁଳବାବୁ କଂଗ୍ରେସର ସବୁପ୍ରକାର ସମାଜ ସେବା ଓ ଦେଶହିତକର କାର୍ଯରେ ସଂପୃକ୍ତ ଥିଲେ। ଏହା ଭାଗ୍ୟର ବିଡ଼ଂବନା ଯେ ଅଚ୍ୟୁତାନଂଦ ପୁରୋହିତ, ବାଲୁଂକେଶ୍ୱର ମିଶ୍ର, ବିଶ୍ୱକେସବ୍ ମିଶ୍ର, ଶଂକର ପ୍ରସାଦ ମିଶ୍ର ଆଦି ଯେଉଁମାନେ ସ୍ୱାଧୀନତା ଆଂଦୋଳନ ସହିତ ଜିଲ୍ଲାରେ ପ୍ରଥମରୁ ସଂପୃକ୍ତ ଥିଲେ ସେମାନେ କେହି ସ୍ୱାଧୀନତାର ପରବର୍ତୀ ଲାଭ ପାଇପାରି ନଥିଲେ। ୧୯୩୬ରେ ତାଂକର ପତ୍ନୀ ବିୟୋଗ ଘଟିଥିଲା। ଏହାପରେ ୧୯୪୪ରେ ୭୪୮ ଗୋକୁଳ ବାବୁ ପ୍ରାଣତ୍ୟାଗ କଲେ। ତାଂକର ସୁଯୋଗ୍ୟ ପୁତ୍ର ଥିଲେ ସାଂସଦ ଓ ମଂତ୍ରୀ ବନମାଳୀ ବାବୁ।



କଳାକାର ଉଦେ ହେଲେ ଚଂଦ୍ରମଣି ଦ୍ରବେ
କେତେବେଳେ ଅକର୍ମଶୀଳାରୁ ନୀର ସ୍ରବେ।
କୋମଳ କରି ଗାଇଲେ ପଦ୍ମତୋଳା ଗୀତ
କରେ କି ମାଟିମାର୍ଜାର ଫଣୀଫଣା ନୃତ୍ୟ ?
କଠୋର ରସିକ କୃଷ୍ଣ କଥା ନ ଜାଣଂତି
କମେ ମଂଡୁକ ପ୍ରାୟ ତାହାଂକର ଗତି।

—ରସକଲ୍ଲୋଳ : ଦୀନକୃଷ୍ଣ

''ଯେ ନର ନ ବୁଝେ ମାନ ଅପମାନ
ନୁହଇଁ କି ସେହୁ ପଶୁର ସମାନ ?
ଯା ଭାଷା ଦୁର୍ବଳ କାହିଁ ତାର ଜ୍ଞାନ ।
କାହିଁ ତାର ରାଜଦୁଆରେ ସମ୍ମାନ ।''

– ଗଙ୍ଗାଧର

# ପଂଡିତ
# ରାମନାରାୟଣ ମିଶ୍ର

ସ୍ୱତଂତ୍ର ଉତ୍କଳ ପ୍ରଦେଶ ଗଠନର ପ୍ରାକ କାଳରେ କବି ଶେଖର ଚିଂତାମଣି ମହାଂତି ୧୯୩୫ ଏପ୍ରିଲ ମାସରେ ତାଂକର କାବ୍ୟ ''ଉତ୍କଳ ମିଳନ'' ପ୍ରକାଶ କରିଥିଲେ । କାବ୍ୟରେ ହାସ୍ୟମୁଖୀ ଉତ୍କଳ ଜନନୀ ନିଜ ସଖୀମାନଂକୁ ନିଜ ପାଖରେ ପାଇ ଅତି ଆନଂଦରେ ଛିନ୍ନମସ୍ତା ଉତ୍କଳ ଜନନୀଂକୁ ନୂତନ ଜୀବନ ପ୍ରଦାନ କରିବାରେ ବ୍ରତୀ ନିଜର ସୁଯୋଗ୍ୟ ସଂତାନମାନଂକୁ ନିଜର ଶ୍ରଦ୍ଧା ଜଣାଉଅଛଂତି । ଏହି ପ୍ରସଂଗରେ ସେ କହିଛଂତି –

ହୀରାଖଂଡ ରାଜ୍ୟହୀରା ରାମନାରାୟଣ
ଆବର ଚଂଦ୍ରଶେଖର ଉଭୟ ମୋଲାର୍ଗ

କରିଛଂତି ଧନ, ମନ ଅମୂଲ୍ୟ ସମୟ
ଅକୁଂଠିତେ ବ୍ୟୟ ଦୁହେଁ ସୁପୁତ୍ର ମୋହର ।

ଛାତ୍ର ପୁତ୍ରେ ମୋର ଭାବୀଭରସାର ସାଥି
କି ବର୍ଣ୍ଣିବି ଏକ ମୁଖେ ତାଂକର କୃତିତ୍ୱ,
ପାଠଛାଡ଼ି କଷ୍ଟ ସହି ବୁଲି ଗ୍ରାମେ ଗ୍ରାମେ,
ଗାଇଣ ମାହାତ୍ମ୍ୟ ମୋର ସଜୀବ ଭାଷାରେ,

ମତାଇଲେ ଜନ ଗଣେ, ଧରିବାକୁ ଦୃଢ଼େ,
ମାତୃସମୃଦ୍ଧାର ପୁଣ୍ୟବ୍ରତ ପ୍ରାଣପଣେ,
ହେଉଁତୁ ବାଳକେ ମୋର ଦୀର୍ଘାୟୁ ଯଶସ୍ୱୀ,
ଏହି ଆଶୀର୍ବାଦ ମୋର ତ୍ରିକାଳ ସଂଧ୍ୟାରେ

ଓଡ଼ିଶା ବିଶେଷକରି ସଂବଲପୁର ଅଂଚଳର ଶିକ୍ଷା ସଂସ୍କୃତିର ପ୍ରଚାର ଓ ପ୍ରସାର ନିମିତ୍ତ ସଂବଲପୁର ସହରର ମିଶ୍ର ପରିବାରର ଦାନ ଉଲ୍ଲେଖନୀୟ ଓ ସ୍ମରଣ ଯୋଗ୍ୟ। ଏହି ପରିବାରର ଧରଣୀଧର ମିଶ୍ର ଜିଲ୍ଲାର ପ୍ରଥମ ମାଟ୍ରିକୁଲେଟ୍। ବେଂଗଲ ନାଗପୁର ରେଲ ଲାଇନ୍ ୧୮୯୦ରେ ଝାରସୁଗୁଡ଼ା ଦେଇ ଗଲା। ତା ପୂର୍ବରୁ ଚକ୍ରଧରପୁର ମନୋହରପୁର ପାଖାପାଖି ଏକ ଷ୍ଟେସନରେ ରେଲଗାଡ଼ି ଚଢ଼ି ସେ ମାଟ୍ରିକ ପରୀକ୍ଷା ଦେବାକୁ କଲିକତା ଯାଇଥିଲେ। ଭାଷା ଅଂଦୋଳନର ପ୍ରଥମ ପ୍ରତିବାଦ ସଭାରେ ସେ ସଭାପତି ହୋଇଥିଲେ। ତାଂକ ଅବଦାନ ଅନ୍ୟତ୍ର ଆଲୋଚିତ। ତାଂକ ପୁତ୍ର ରାମନାରାୟଣ ଜିଲ୍ଲାରୁ ୧୯୦୨ରେ ପ୍ରଥମେ ଏମ.ଏ. ବି.ଏଲ. ପାସ୍ କରି ଓକିଲ ଭାବରେ ଯଶସ୍ୱୀୟ। ପରିବାରର ଅନ୍ୟମାନଂକ ମଧ୍ୟରେ ଜିଲ୍ଲାର ପ୍ରଥମ ଏଲୋପାଥିକ୍ ଡାକ୍ତର ରାମଚଂଦ୍ର ମିଶ୍ର। ସେହି ବିସ୍ତାରିତ ଝାଡୁଆ ପଡ଼ାର ମିଶ୍ର ପରିବାରର ସଭ୍ୟ ଶଂକର ପ୍ରସାଦ ମିଶ୍ର ବିହାର ଓଡ଼ିଶା ବିଧାନ ସଭାରେ ସଂବଲପୁର ପ୍ରତିନିଧି ଓ ଦୁର୍ଗାପ୍ରସାଦ ମିଶ୍ର ବିହାର, ଓଡ଼ିଶା, ବଂଗ ପ୍ରଦେଶର ଡେପୁଟି କଲେକ୍ଟର ଥିଲେ। ରାମନାରାୟଣ ମିଶ୍ର ଶଂକର ପ୍ରସାଦଂକ ପରେ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟ ହେଇଥିଲେ। ୧୯୨୫ରେ ଉତ୍କଳ ଗୌରବ ମଧୁସୂଦନ ଦାସ ବିହାର ଓଡ଼ିଶାର ସ୍ୱାୟତ୍ତ ଶାସନ ମଂତ୍ରୀ ଥିବା ସମୟରେ ସଂବଲପୁରର ପ୍ରତିନିଧତ୍ୱ କରୁଥିଲେ ରାମନାରାୟଣ। ତାଂକ ସହିତ ଓଡ଼ିଶାର ଅନ୍ୟ ପ୍ରତିନିଧିମାନେ ଥିଲେ ମୁସଲମାନ ସଂରକ୍ଷିତ ଆସନରୁ ସୟଦ ତାଜମଲ ଅଲ୍ଲି, ମଧୁସୂଦନ ଦାସ କଟକରୁ ମଧୁପୁର ରାଜା ଓ ଲକ୍ଷ୍ମୀଧର ମହାଂତି, ପୁରୀରୁ ପଂଡିତ ଗୋଦାବରୀଶ ମିଶ୍ର ଓ ଜଗବଂଧୁ ସିଂହ, ବାଲେଶ୍ୱରରୁ ରାଧାରଞ୍ଜନ ଦାସ ଓ ଚଉଧୁରୀ ଭାଗବତ ପ୍ରସାଦ ସାମଂତରାୟ ମହାପାତ୍ର। ଜମିଦାରମାନଂକ ପ୍ରତିନିଧି କନିକା ରାଜା ରାଜେଂଦ୍ର ନାରାୟଣ ଭଂଜଦେବ। ୧୯୨୩ରୁ ରାମନାରାୟଣ ପ୍ରତିନିଧିତ୍ୱ କରୁଥିଲେ। ମଧ୍ୟପ୍ରଦେଶରୁ ଆସିଥିବା ମୁନିସିପାଲଟି ମଧ୍ୟପ୍ରଦେଶ ଆଇନ ଅନୁସାରେ ପରିଚାଳିତ ହେଉଥିଲା ମାତ୍ର ତାଂକ ସମୟରେ ଏହା ବିହାର ଓଡ଼ିଶା ମୁନିସିପାଲ ଆଇନ ଛାଂଚରେ ପକାଗଲା। ପାରଳା ମହାରାଜା ବିଲାତରେ ପ୍ରଥମ ଗୋଲଟେବୁଲ ବୈଠକରେ ଦାବିପତ୍ର ଦେବା ପରେ ୧୯୩୧ଜୁଲାଇ ୨୪ ତାରିଖରେ ସଂବଲପୁରରେ ବିଚ୍ଛିନ୍ନ ଅଂଚଳର ମିଶ୍ରଣ ନିମିତ୍ତ ଏକ ସଭାରେ ଡେପୁଟି କମିସନର ନୀଳମଣି ସେନାପତି ଭାଷଣଦେଇ ଫୁଲଝର ପଦ୍ମପୁର ଖଡ଼ିଆଳ ଆଦି ଅଂଚଳ ଓଡ଼ିଶାରେ ମିଶିବାକୁ ଦାବିକଲେ। ରାମନାରାୟଣ ମିଶ୍ର, ବୋଧରାମ

ଦୁବେ, ଚଂଦ୍ରଶେଖର ବେହେରା, ଅଚ୍ୟୁତାନଂଦ ପୁରୋହିତ ତାଂକୁ ସମର୍ଥନ କରି ଭାଷଣ ଦେଇଥିଲେ। ରାମନାରାୟଣଂକ ପୁତ୍ର ଗୌରୀଶଂକର ଓକିଲ ଥାଇ ଜିଲ୍ଲା ବୋର୍ଡ ଓ ମୁନିସିପାଲଟିର ଚେୟାରମେନ୍ ହୋଇଥିଲେ। ଦୀର୍ଘଦିନ ସେ ଜିଲ୍ଲାର ସରକାରୀ ଓକିଲ ଓ ପବ୍ଲିକ୍ ପ୍ରସିକିଉଟର ମଧ୍ୟ ଥିଲେ। ରାମନାରାୟଣଂକର ପୃଷ୍ଠ ପୋଷକତା ବ୍ୟତୀତ ସ୍ୱଭାବ କବି ଗଂଗାଧରଂକର କାବ୍ୟମାନ ପ୍ରକାଶିତ ହୋଇ ପାରିନଥାଂତା। ଅମରକାବ୍ୟ 'ତପସ୍ୱିନୀ' ତା ୫.୧୦.୧୯୧୪ ରିଖରେ ରାମନାରାୟଣ ମିଶ୍ରଂକୁ ଉତ୍ସର୍ଗ କରାଯାଇଅଛି। ତାଂକ ପୃଷ୍ଠପୋଷକତା ଯୋଗୁ ଏହି ଗ୍ରଂଥର ମୁଦ୍ରଣ ସଂଭବପର ହେଲା। ତା ୨୫.୧୦.୧୯୧୫ ରେ ପ୍ରକାଶିତ 'ପ୍ରଣୟ ବଲ୍ଲରୀ' କାବ୍ୟ ବୋଡ଼ାସଂବରର ଦାନଶୀଳ ଜମିଦାର ରାୟବାହାଦୁର ରାଜେଂଦ୍ର ସିଂହ ବରିହାଂକ ସଂପୂର୍ଣ ବ୍ୟୟରେ ଦେୱାନ୍ ଭୁବନେଶ୍ୱର ବହିଦାରଂକ ହିତୈଷଣାରେ ପ୍ରକାଶିତ ହୋଇଥିଲା। କବି ଗ୍ରଂଥ ଭୂମିକାରେ ସାହିତ୍ୟ ପ୍ରେମୀ ବାବୁ ରାମନାରାୟଣଂକୁ କୃତଜ୍ଞତା ଜ୍ଞାପନ କରିଛଂତି। ଓକିଲାତି ମହାଜନି ଓ କୃଷିରୁ ରାମନାରାୟଣ ପ୍ରଭୂତ ଅର୍ଥ ଉପାର୍ଜନ କରୁଥିଲେ। ସଂବଲପୁରର ସମସ୍ତ ସର୍ବସାଧାରଣ କାର୍ଯରେ ସେ ସଂପୃକ୍ତ ଥିଲେ। ଉତ୍କଳ ସମ୍ମିଳନୀର ମଧ୍ୟ ସକ୍ରିୟ ସଭ୍ୟ ଥିଲେ। ଅମୃତ ବଜାର ପତ୍ରିକା ଦ୍ୱାରା ୧୮୮୬ରେ ବଂଗଳା ରୟତ ସମ୍ମିଳନୀର ଉତ୍ତାରେ ୧୯୦୩ ମସିହା ଡିସେଂବର ୩୦ ଓ ୩୧ ତାରିଖରେ କଟକରେ ଉତ୍କଳ ସମ୍ମିଳନୀ ସମଗ୍ର ଭାରତ ବର୍ଷରେ ଦ୍ୱିତୀୟ ସାର୍ବଜନୀନ ସମାବେଶ ଥିଲା ବୋଲି ବର୍ଣିତ। ପତ୍ରିକାର ସଂପାଦକ ମୋତିଲାଲ ଘୋଷ ଏଥିରେ ଯୋଗ ଦେଇଥିଲେ। ସଂବଲପୁରରୁ ଏଥିରେ ରାମନାରାୟଣ ଓ ବ୍ରଜମୋହନ ପଟ୍ଟନାୟକ ଯୋଗଦାନ କରିଥିବା ଜଣାଯାଏ। ସମ୍ମିଳନୀରେ ଭାଷାଗତ ଅଥବା ସାମ୍ପ୍ରଦାୟିକ ବିଦ୍ୱେଷରେ ପୂର୍ଣଚ୍ଛେଦ ପକାଇ ଉତ୍କଳର ଅଭ୍ୟୁତ୍‌ଥାନରେ ଉତ୍କଳୀୟମାନଂକର ସଖ୍ୟ ଓ ଭାତୃଭାବ ସର୍ବାଦୌ ଆବଶ୍ୟକ, ଏହି ମର୍ମରେ ଏକ ପ୍ରସ୍ତାବ ବାଲେଶ୍ୱରର ରାଜା ବୈକୁଂଠନାଥ ଦେ ବାହାଦୁର ଆଗତ କରିଥିଲେ ଓ ମେଦିନପୁରର ରାଧାନାଥ ପତି ଓ ସଂବଲପୁରର ରାମ ନାରାୟଣ ମିଶ୍ର ଏହାକୁ ସମର୍ଥନ କରିଥିଲେ। କୁହାଯାଇଥିଲା ଉତ୍କଳୀୟ କେବଳ ଓଡ଼ିଆଭାଷା ଭାଷୀମାନଂକୁ ବୁଝାଏ ନାହିଁ। ଓଡ଼ିଶା ଯେଉଁମାନଂକର ଜନ୍ମ ଭୂମି ଓ କର୍ମଭୂମି ସେମାନେ ସମସ୍ତେ ଉତ୍କଳୀୟ। ସେଥିପାଇଁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳର ଭୌଗୋଳିକ ବା ପ୍ରଶାସନିକ ଏକତ୍ରୀକରଣ ବ୍ୟତୀତ ଉତ୍କଳୀୟମାନଂକର ଭୌତିକ ବିକାଶ ଓ ଉତ୍କଳର ଶୈକ୍ଷିକ ତଥା ଅର୍ଥନୈତିକ ଅଭିବୃଦ୍ଧି ଲକ୍ଷ୍ୟ ରଖି ରାମ ନାରାୟଣ ଓ ବ୍ରଜ ମୋହନ ଏହି ସମ୍ମିଳନୀରେ ଯୋଗଦାନ କରିଥିଲେ। ୧୯୧୫ରେ ସଂବଲପୁରରେ ଅନୁଷ୍ଠିତ ସମ୍ମିଳନୀର ବାର୍ଷିକ ବୈଠକର ସେ ଜଣେ ପୃଷ୍ଠପୋଷକ ଥିଲେ।





# ଖଣିମାଲିକ ଓ ବ୍ୟବସ୍ଥାପକ

# ଶଂକର ପ୍ରସାଦ ମିଶ୍ର

ନୂତନ ପ୍ରଦେଶ ଗଠିତ ହେବା ପୂର୍ବରୁ ସଂବଲପୁର ଜିଲ୍ଲାରୁ ପାଟଣାସ୍ଥିତ ବିହାର ଓଡ଼ିଶା ଲେଜିସ୍‌ଲେଟିଭ କାଉନ୍‌ସିଲ (ଲାଟସଭା) ପାଇଁ ଜଣେ ସଭ୍ୟ ନିର୍ବାଚିତ ହୋଇ ଆସୁଥିଲେ, ପ୍ରଥମେ ରାମନାରାୟଣ ମିଶ୍ର ଓ ତାଂକ ପରେ ଶଂକର ପ୍ରସାଦ ମିଶ୍ର ସଭ୍ୟହେଲେ। ତାଂକ ପିତା ରାୟବାହାଦୁର ରାମକୃଷ୍ଣ ମିଶ୍ର କଳାହାଂଡି ଦେଶୀୟ ରାଜ୍ୟର ଦେଓ୍ୱାନ ଭାବରେ ବିଖ୍ୟାତ ଥିଲେ। ତାଂକ ସ୍ମୃତି ଉଦ୍ଦେଶ୍ୟରେ ସଂବଲପୁର ଜିଲ୍ଲାର ରାୟବାହାଦୁର ଫୁଟବଲ ଚାଲେଂଜ ସିଲ୍‌ଡ ନାମିତ। ସଂବଲପୁରର ବିଖ୍ୟାତ ମିଶ୍ର ପରିବାରର ସେ ଅଂଶ ଥିଲେ, ଶଂକର ପ୍ରସାଦଂକ ବାଲ୍ୟଶିକ୍ଷା ଭବାନୀପାଟଣାରେ ଓ ପରେ ନାଗପୁରଠାରେ କଲେଜଶିକ୍ଷା ସମାପ୍ତ ହୋଇଥିଲା।

ବି.ଏ. ପାସ୍‌କଲାପରେ ସେ ଡେପୁଟି କଲେକ୍‌ଟର ପଦ ପାଇଁ ପ୍ରାର୍ଥୀ ହେଲେ। ଦେଶରେ ସେତେବେଳେ କୌଣସି ପବ୍ଲିକ୍ ସର୍ଭିସ କମିସନ ନ ଥାଏ। ଉଚ୍ଚ ପଦବୀଗୁଡ଼ିକର ନିଯୁକ୍ତି ବଂଶଗତ ମର୍ଯାଦା ରାଜଭକ୍ତି ଓ ଶିକ୍ଷା ଉପରେ ଆଧାରିତ ଥାଏ। ତତ୍‌କାଳୀନ ବିହାର ଓଡ଼ିଶାର ଗଭର୍ନର ଶଂକର ପ୍ରସାଦଂକ ପିତାଂକର ପରିଚିତ ଥିଲେ। ତେଣୁ ତାଂକୁ

ସାକ୍ଷାତ କରି ନିଜ ନିଯୁକ୍ତି ସହଜ କରିବାକୁ ସେ ଉଦ୍ୟତ ହେଲେ। ଗଭର୍ନର ସାକ୍ଷାତ ସମୟରେ ତାଂକୁ କହିଲେ "ଶଂକର ତମର ମାଟିତଳେ ସୁନା ଅଛି। ଏହି ସୁନାର ତମେ ଉତ୍ତରାଧିକାରୀ। ତମେ ଏହାକୁ ଖୋଳି ତାଡ଼ି ବାହାର କର। ଏହାର ସଦବ୍ୟବହାର ସରକାରୀ ନିଯୁକ୍ତି ଅପେକ୍ଷା ତୁମ ପକ୍ଷରେ ଅଧିକ ଲାଭପ୍ରଦ ହେବ।" କଥା କେଇପଦ ତାଂକ ମନକୁ ପାଇଲା। ସେ ଡେପୁଟି ଚାକିରି କରିବା ଆଶା ମନରୁ ଦୂର କଲେ। ଓଡ଼ିଶାର ଭୂତତ୍ତ୍ୱ ଭୂସଂପଦ ବିଷୟରେ ସେ ବିଶେଷ ଅନୁଧ୍ୟାନ କରି ଖଣିଜ ବ୍ୟବସାୟରେ ନିଜକୁ ନିୟୋଜିତ କଲେ। ନିଜ ଜ୍ୟେଷ୍ଠପୁତ୍ର ତାରା ପ୍ରସାଦଂକୁ ଖଣିଜ ବିଜ୍ଞାନରେ ସର୍ବୋଚ୍ଚ ଶିକ୍ଷା ପ୍ରଦାନ କରି ସେ ତାଂକୁ ଓଡ଼ିଶାର ପ୍ରଥମ ଖଣିଜ ବିଦ୍ୟା ବିଶାରଦ ଭାବରେ ପ୍ରତିଷ୍ଠା କଲେ। ମାତ୍ର ଅତି ଅଳ୍ପ ବୟସରେ ୧୯୪୮ ଡିସେଂବରରେ ସେ ନିଜର ବୋଡ଼ାସଂବର ଅଂଚଳର ଲଖନାଠାରେ କାର୍ଯରତ ଥାଇ ଅର୍ଶ ରୋଗରେ ପୀଡ଼ିତ ହେଲେ। ଉଗ୍ର ବିରେଚକ ଔଷଧ ସେବନ କଲେ। ଫଳରେ ଏହାର ପ୍ରତିକ୍ରିୟାରେ ସେ ପ୍ରାଣତ୍ୟାଗ କଲେ। ତାଂକର ଅକାଳ ବିୟୋଗ ଓଡ଼ିଶାର ଖଣିଜ ସଂପଦର ଉତ୍ତୋଳନ ଓ ଉପଯୋଗ କ୍ଷେତ୍ରରେ ପ୍ରଭୂତ କ୍ଷତି ଘଟାଇଥିଲେ। ଆଉ ଜଣେ ପୁତ୍ର ଚଂଦ୍ରପ୍ରସାଦଂକୁ ମଧ୍ୟ ସେ ସେରାମିକ ବିଦ୍ୟା ଶିକ୍ଷା ଦେଇ ପ୍ରଥମ ବିଶେଷଜ୍ଞ ଭାବରେ ଓଡ଼ିଶାରେ ପ୍ରତିଷ୍ଠିତ କରିପାରିଥିଲେ। ତାଂକର ଅନ୍ୟଏକ ପୁତ୍ର ବିଷ୍ଣୁପ୍ରସାଦ ଓଡ଼ିଶା ବିଧାନସଭା ଓ ଗଣତଂତ୍ର ପରିଷଦର ଜଣେ ଟାଣୁଆ ସଭ୍ୟଥିଲେ। ଶଂକର ପ୍ରସାଦଂକର ଭାରତୀୟ ଗଭର୍ନର ଓ ତତ୍‌କାଳୀନ ବିହାରର ସଭ୍ୟମାନଂକ ସହିତ ସଦ୍‌ଭାବ ଓ ସୁସମ୍ପର୍କ ଥିଲା। ଜିଲ୍ଲା ଅଧିବାସୀମାନଂକର ସମସ୍ୟା ତଥା ଅଭିଯୋଗ ମାନ ସେ ଉପସ୍ଥାପିତ କଲେ ତାହା ଶୁଣାଯାଉଥିଲା। ୨୭ ନଭେଂବର ୧୯୨୨ରେ ୧୫ଜଣିଆ ଗଂଜାମ ଡେପୁଟେସନ କୁହାଯାଉଥିବା ଏକ ପ୍ରତିନିଧି ଦଳ ମାଂଦ୍ରାଜ ଗଭର୍ନରଂକୁ ସାକ୍ଷାତ କରି ସମସ୍ତ ଓଡ଼ିଆଭାଷୀ ଅଂଚଳକୁ ଏକ ଶାସନାଧୀନ (ବଂଗ, ବିହାର, ମାଂଦ୍ରାଜ ବା ମଧ୍ୟପ୍ରଦେଶ ଯାହାହେଉ) କରି ରଖିବାକୁ ଦାବି କରିଥିଲେ। ଗଂଜାମରେ ଓଡ଼ିଆମାନେ ଅନ୍ୟାୟରେ ଶିକାର ହୋଇଛଂତି ବୋଲି ସେମାନେ ଦାବି କରିଥିଲେ। ଶଶିଭୂଷଣ ରଥ, ବିଶ୍ୱନାଥ ଦାସ, ବ୍ରଜସୁଂଦର ଦାସଂକ ସହିତ ସଂବଲପୁରର ପାଟଣା ଲାଟ ସଭା ସଭ୍ୟ ଭାବେ ଶଂକର ପ୍ରାସାଦ ମିଶ୍ର ଏଥିରେ ଅଂତର୍ଭୁକ୍ତ ଥିଲେ। ୧୯୪୭ରୁ ଆରଂଭ ହୀରାକୁଦ ବଂଧ ବିରୋଧୀ ଆଂଦୋଳନର ମୁଖପାତ୍ର ଭାବେ ପ୍ରକାଶିତ ହୀରାଖଂଡ ସମାଚାରର ସେ ମୁଖ୍ୟ ସଂପାଦକ ଥିଲେ।

ଖଣି ବ୍ୟବସାୟ ଓଡ଼ିଶାରେ ସେ ପ୍ରଥମେ ଆରଂଭ କରି ଏ ଦିଗରେ ମାର୍ଗ ପ୍ରଦର୍ଶକ ହେଲେ। ପୁତ୍ର ତାରାପ୍ରସାଦ ମଧ୍ୟ ବୈଜ୍ଞାନିକ ପଦ୍ଧତିରେ ଖଣିଜ ଦ୍ରବ୍ୟ ଉତ୍ତୋଳନରେ ଦିଗ୍‌ଦର୍ଶକ। ଅଳ୍ପ ବୟସରେ ପ୍ରାଣତ୍ୟାଗ କରିବା ଆଗରୁ ସେ ଫୁଲବାଣୀ ଜିଲ୍ଲା ବାଲିଗୁଡ଼ା

ଡୁମଡ଼ିବଂଧ ଥାନାରେ ଗ୍ରାଫାଇଟ ସୁରମା ଖଣି ପଟ୍ଟା ପାଇଥିଲେ। ତାଂକର ଅକାଳ ମୃତ୍ୟୁ ଫଳରେ ଏହାର ଉତ୍ତୋଳନ ବାଧାପ୍ରାପ୍ତ ହେଲା। ସାନଭାଇ ବିଷ୍ଣୁପ୍ରସାଦ ଏହାର ରକ୍ଷଣାବେକ୍ଷଣ କଲେ ମାତ୍ର ତାରାପ୍ରସାଦଂକ ବଡ଼ପୁଅ ପ୍ରଦୀପ ଧାନବାଦରୁ ଖଣିଜ ବିଦ୍ୟାରେ ଯୋଗ୍ୟତା ହାସଲ କରି ଏହାକୁ ନୂତନ ଯଂତ୍ରପାତି ସାହାଯ୍ୟରେ ଚାଳୁକଲେ। ତାଂକ କାରଖାନା ମାଲ ଦେଶବିଦେଶରେ ଆଦର ପାଇଲା, ସେ ବହୁତ ଅର୍ଥ ଉପାର୍ଜନ କରି ସଂବଲପୁରର ବରିଷ୍ଠ ଧନୀ ଶିଳ୍ପପତି ହେଲେ। ଅଳ୍ପ ବୟସରେ ସେ ମଧ୍ୟ ଚାଲିଗଲେ। ତାରା ପ୍ରସାଦଂକ ୨ୟ ପୁତ୍ର ସଂଜୀବ ପୁନା ଆର୍ମି ମେଡ଼ିକାଲ କଲେଜରୁ ପାସ କରି ଉଚ୍ଚଶିକ୍ଷା ପାଇ ଆମେରିକା ଗଲେ। ସେଠାରେ ନେଫ୍ରୋଲୋଜିର ଜଣେ ନାମଜାଦା ଡାକ୍ତର ଭାବରେ ଖ୍ୟାତି ଅର୍ଜନ କରି ଘରଦ୍ୱାର କରି ରହି ଯାଇଛଂତି। ଦୁଇ ନାତି ଅର୍ଥ ଓ ପ୍ରତିଷ୍ଠା ଅର୍ଜନ କରି ଶଂକର ପ୍ରସାଦଂକର ଦୂର ଦୃଷ୍ଟିର ଯଥାର୍ଥତା ପ୍ରମାଣ କରିଛଂତି। ୧୯୬୨ରେ ତାଂକର ବିୟୋଗ ହୋଇଥିଲା।



ମୁରଖ୍ ଲୋକ୍‌କେ ହିତ ନାଇଁ ରୁଚେ
ସୁନ୍‌ଲେ କରସି ରିସ୍
ନାଗ ସାଁପ୍‌କେ ଗୁରସ୍ ପିଆଲେ
ଦୁଇଗୁନ୍ ହେସି ବିସ୍
ରୂପ୍‌ଥିଲେ କାଏଁ ଦିନ ସରବା
ଗୁନ୍ ଟିକେ ରଁଚେ ନାଇନ
ପୁରୁଖା ଦିନର ଚାଲି ଚଲନ୍‌କେ
ପୁଡ଼େଇ ଖାଏଲେ କାଏଁନ ।

(ପୁରୁଣା ପହେଲି)



# ବାପସେ ବେଟା ଜିଆଦା

# ବନମାଳୀ ବାବୁ

ସାଧାରଣତଃ ଦେଖାଯାଏ ରାଜନୀତିକୁ ଜୀବନର ଆରଂଭରୁ ନିଜର ବୃତ୍ତିଭାବେ ଗ୍ରହଣ କରିଥିବା ମଣିଷମାନେ ଛାତ୍ରାବସ୍ଥାରେ ପାଠଚୋର ଥାଆଂତି । ହୁଏତ ବିଦ୍ୟାଳୟର ଶୃଂଖଳା କଠୋର ମନେକରି ପଢ଼ା ଛାଡ଼ିଥିଲେ ବା ଅନ୍ୟ କୌଣସି ଧଂଦାରୁ ସମାଜ ସେବା ଓ ପରେ ରାଜନୀତିକୁ ବୃତ୍ତିବୋଲି ଗ୍ରହଣ କରିନେଲେ । ମାତ୍ର ଓଡ଼ିଶାରେ ଏମିତି କେତେଜଣ ଥିଲେ ଯେଉଁମାନେ ଛାତ୍ର ଜୀବନରେ ବିଶେଷ କୃତୀତ୍ୱ ପ୍ରଦର୍ଶନ କରିଥିଲେ ବା ନିଜ ବୃତ୍ତିରେ ସୁଖ୍ୟାତି ଅର୍ଜନ କରିଥିଲେ ମଧ୍ୟ ସ୍ୱଭାବତଃ ଜନସାଧାରଣଂକର ସେବା ଧର୍ମରେ ଦୀକ୍ଷିତ ହୋଇ ରାଜନୀତିରେ ପ୍ରବେଶ କଲେ । ସଂବଲପୁର ଜିଲ୍ଲାର ଦୁଇ ପ୍ରତିଷ୍ଠିତ ଜନ ନାୟକ ଡକ୍ଟର ଶ୍ରଦ୍ଧାକର ସୂପକାର ଓ ବନମାଳୀ ବାବୁ ଏହି ଶ୍ରେଣୀର ରାଜନୀତିଜ୍ଞ ଥିଲେ ।

ବନମାଳୀ ବାବୁ ସଂବଲପୁର ଝାଡୁଆ ପଡ଼ାର ଏକ ସଂଭ୍ରାଂତ ବ୍ରାହ୍ମଣ କୁଳରେ ୧୯୧୮ରେ ଜନ୍ମଲାଭ କରିଥିଲେ । ତାଂକର ପିତା ଗୋକୁଳ ଚଂଦ୍ର ବାବୁ ସଂବଲପୁର ଜିଲ୍ଲାର ଜଣେ ସ୍ୱନାମଧନ୍ୟ ବ୍ୟକ୍ତିଥିଲେ । ଓକିଲାତିରେ ସେ ପ୍ରତିଷ୍ଠା ଅର୍ଜନ କରିଥିଲେ । ମ୍ୟୁନିସିପାଲଟିର ସେ ଚେୟାରମେନ ଥିଲେ । ନିଜର ଦୃଢ଼ ମନୋବଳ ଓ ଅନମନୀୟତା

ଯୋଗୁଁ ତତ୍‌କାଳୀନ ସମାଜରେ ତାଂକୁ ଲୌହ ମାନବ କୁହାଯାଉଥିଲା। ସେ ଜଣେ ସମାଜ ସଂସ୍କାରକ ଥିଲେ, ବନମାଳୀ ସଂବଲପୁର ଜିଲ୍ଲା ସ୍କୁଲରୁ ୧୯୩୫ରେ ମାଟ୍ରିକ୍ ପାସ କରି କଟକ ରେଭେନ୍‌ସା କଲେଜରୁ ବି.ଏ. ଓ ଦୁଇବର୍ଷ ପରେ ସେହି କଲେଜରୁ ୧୯୩୯ ବି.ଏଲ୍. ପାସ୍ କଲେ। ସେତେବେଳେ ଆଇନ୍ କଲେଜ ଏହି କଲେଜର ଏକ ଅଂଶ ଥିଲା ଓ ତାହା ସମଗ୍ର ଓଡ଼ିଶାର ଏକମାତ୍ର କଲେଜ ଥିଲା। ସେ ୧୯୪୧ରେ ପାଟଣା ବିଶ୍ବବିଦ୍ୟାଳୟର ଆଇନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର ଗୌରବ ଅର୍ଜନ କରିଥିଲେ। ଓକିଲାତି ଏକ ପ୍ରକାର ତାଂକର କୌଳିକ ବୃତ୍ତି ଥିବାରୁ ସେ ସଂବଲପୁରରେ ଓକିଲାତି କଲେ। ୧୯୩୭ରେ ସେ ସଂବଲପୁରର ଜଣେ ବିଶିଷ୍ଟ ବ୍ୟକ୍ତି ଓ ବିହାର ଓଡ଼ିଶାର ପ୍ରଶାସକ ଦୁର୍ଗାପ୍ରସାଦ ମିଶ୍ରଂକର ଏକ ମାତ୍ର କନ୍ୟା ସରୋଜ କୁମାରୀଂକର ପାଣିଗ୍ରହଣ କରିଥିଲେ। ଅର୍ଥ ଉପାର୍ଜନର ଆବଶ୍ୟକତା ବିଶେଷ ନଥିବାରୁ ସେ ନିଜ ବୃତ୍ତିରେ ବିଶେଷ ଧ୍ୟାନ ନ ଦେଇ ସମାଜ ସେବା ପ୍ରତି ଆକୃଷ୍ଟ ହେଲେ।

କଲେଜ ଜୀବନରେ ସେ ଛାତ୍ର ସଂଘ ସହିତ ସଂପୃକ୍ତ ଥିଲେ। ଭାରତ ଛାଡ଼ ଆଂଦୋଳନ ସମୟରେ ସେ ଛାପାମାରି ରହୁଥିବା କେତେକ ଛାତ୍ରଂକୁ ସାହାଯ୍ୟ କରୁଥିଲେ। କିଛିଦିନ ଆଇନ ବ୍ୟବସାୟ କଲା ପରେ ସେ ରାଜନୀତିରେ ଯୋଗଦେଲେ। ଏକ ପ୍ରତିଷ୍ଠିତ ପରିବାରର ସଂତାନ ପିତା ମାମୁ, ମାତାମହ ଆଦି ନାମଜାଦା ଓକିଲ ଜିଲ୍ଲାବୋର୍ଡର ଚେୟାରମେନ ଏ ସବୁ ତାକୁ କର୍ମୀ ମହଲରେ ଲୋକପ୍ରିୟତା ଆଣିଦେଲା। ୧୯୫୫ରେ ତତ୍‌କାଳୀନ ଲୋକପ୍ରିୟ କଂଗ୍ରେସ ଦଳରେ କଂଗ୍ରେସ ସଭାପତି ଇଉ.ଏନ୍.ଧେବରଂକ ପ୍ରରୋଚନାରେ ସେ ଯୋଗଦେଲେ। ପ୍ରଥମେ ମୁନିସିପାଲଟି ନିର୍ବାଚନରେ ପ୍ରାର୍ଥୀ ହେଲେ। ୧୯୫୭ରେ ନିଜ ୱାଡ୍‌ରୁ ଚେୟାରମ୍ୟାନ ଓ ସହରର ତଥା ଜିଲ୍ଲାର ଜଣେ ପ୍ରତିଷ୍ଠିତ ଜନପ୍ରିୟ କର୍ମୀ ରତ୍ନାକର ବେହେରାଂକୁ ପରାସ୍ତ କରି ନିଜ ରାଜନୈତିକ ଜୀବନର ଭବିଷ୍ୟତ ଗଢ଼ିଲେ। ୧୯୬୧ରେ ସେ କଂଗ୍ରେସ ଟିକେଟରେ ବିଧାନ ସଭାକୁ ପ୍ରାର୍ଥୀ ହେଲେ। ନିଜର ଲୋକପ୍ରିୟତା ଓ କାର୍ଯଦକ୍ଷତାର ପ୍ରମାଣ ଦେବାକୁ ସେ ଉତ୍କଳ ବିଶ୍ବବିଦ୍ୟାଳୟର ସିନେଟ୍‌ର ସଭ୍ୟ ହେଲେ। ଭାରତ ସେବାଶ୍ରମ ସଂଘ, ହିଂଦି ରାଷ୍ଟ୍ରଭାଷା ପ୍ରଚାର ସଂଘର କାର୍ଯକାରୀ କମିଟି ସଭ୍ୟଥାଇ ସେ ଏହି ଅନୁଷ୍ଠାନମାନଂକର ମୂଳ ପତ୍ତନ ସଂବଲପୁରରେ ଦୃଢ଼ କଲେ। ସଂବଲପୁର ଗଂଗାଧର ମେହେର କଲେଜର ଶିକ୍ଷା ପରିସର ବର୍ଧନ ଓ ଆଇନ୍, ମେଡିକାଲ, ଇଂଜିନିଅରିଂ କଲେଜ ପ୍ରତିଷ୍ଠା ଦିଗରେ ସେ ନିଜର ଶକ୍ତି ଓ ପ୍ରତିପତ୍ତି ପ୍ରୟୋଗ କରି ଏଥିରେ କୃତକାର୍ଯ ହେଲେ ୧୯୬୧ରେ ସେ ନିଜର ବିପକ୍ଷରେ ଗଣତଂତ୍ର ପରିଷଦର ନେତା ରାଜ୍ୟର ଜଣେ ପ୍ରତିଷ୍ଠିତ ବିଧାୟକ ଶ୍ରଦ୍ଧାକର ସୂପକାରଂକୁ ପ୍ରାୟ ଦୁଇ ହଜାର ଅଧିକା ଭୋଟରେ ପରାସ୍ତ କରି ନିର୍ବାଚିତ ହୋଇଥିଲେ। ଏହା ତାଂକୁ ରାଜ୍ୟରେ ଜଣେ ତୁଂଗନେତାର ମର୍ଯାଦା ଆଣିଦେଲା।

୧୯୬୩ରେ ସେ ରାଜ୍ୟ ମଂତ୍ରୀ ମଂଡଳରେ ଯୋଗଦାନ କରି ୧୯୬୭ ପର୍ଯ୍ୟଂତ ମଂତ୍ରୀଥିଲେ। ଜନସ୍ୱାସ୍ଥ୍ୟ, ଶିକ୍ଷା, ଆଇନ ଓ ନଗର ଉନ୍ନୟନ ବିଭାଗର ଦାୟିତ୍ୱ ତାଂକୁ ଦିଆଯାଇଥିଲା। ନିଜର ସାଧୁତା ଓ କର୍ମ ପ୍ରବଣତା ଦ୍ୱାରା ସେ ଏହି ବିଭାଗର କର୍ମଚାରୀମାନଂକର ପ୍ରଶଂସା ଅର୍ଜନ କରି ପାରିଥିଲେ। ନିଜର ରାଜନୈତିକ ଜୀବନ ପୌର ସଭାରୁ ଆରଂଭ କରିଥିବାରୁ ସେ ସ୍ୱାୟତ୍ତଶାସନ ଆଇନ ବିଷୟରେ ଗଭୀର ଅଧ୍ୟୟନ କରିଥିଲେ। ରାଜ୍ୟରେ ନଗର ଉନ୍ନୟନ ବିଭାଗର ଏକ ସ୍ୱତଂତ୍ର ନିର୍ଦ୍ଦେଶାଳୟ, ରାଜ୍ୟ ପୌର ସଭାମାନଂକର ଏକ ଇଉନିଅନ ଗଠନ, ତାଂକ ଉଦ୍ୟମ ଫଳରେ ସଂଭବ ହୋଇ ପାରିଥିଲା। ଓଡ଼ିଶା ପୌରପାଳିକା ଆଇନରେ ସେ ଅନେକ ପରିବର୍ତ୍ତନ ଆଣିଥିଲେ। ଜଣେ ସାଧାରଣ ନାଗରିକ ନିଜର ବିଦ୍ୟୁତ ବିଲ୍ ଠିକ୍ ସମୟରେ ପଇଠ କରୁଛି ମାତ୍ର ପୌରପାଳିକାର ଟିକସ ଦେବାରେ ବାରଂବାର ହେଳା କରୁଛି। ତାହାଠାରୁ ଦେୟ ଅସୁଲ ନିମିତ୍ତ କ୍ରୋକ କରିବା ବା ଅଦାଲତରେ ମକଦ୍ଦମା କରିବା କାର୍ଯ ସବୁ ପୌର ପାଳିକାରେ ବଢ଼ି ଯାଉଛି। ସେ ବିଭିନ୍ନ ରାଜ୍ୟର ଆଇନମାନ ଆଣି ଗଭୀର ଅନୁଧ୍ୟାନ କରି ଜାଣି ପାରିଲେ ଯେଉଁଠାରେ ଦେୟ ନିର୍ଧାରିତ ସମୟ ମଧ୍ୟରେ ଦାଖଲ କଲେ କିଛି ଛାଡ଼ (ରିବେଟ) ଦିଆଯାଉଛି ସେଠାରେ ଦେୟ ଅସୁଲ ସହଜ ଓ ଦ୍ରୁତ ହେଉଛି। ଏହି ଲକ୍ଷ୍ୟରେ ସେ ପୌରପାଳିକା ଆଇନ ସଂଶୋଧନ କରି ପ୍ରତିବର୍ଷ ପୌରସଭା ଅସୁଲ ବେଳେ ଦେୟରୁ ଶତକଡ଼ା ରିବେଟ ହାର ନିର୍ଧାରଣ କରିବାକୁ କ୍ଷମତା ପ୍ରଦାନ କଲେ। ଏହି ସାମାନ୍ୟ ସଂଶୋଧନ ତାଂକର ଗଭୀର ଅନୁଧ୍ୟାନ ଓ ସାଧାରଣ ନାଗରିକ ପ୍ରତି ଦରଦର ପ୍ରମାଣ। ନିଜର ଅନ୍ୟ ବିଭାଗରେ ମଧ୍ୟ ସେ ଲୋକପ୍ରିୟ ପରିବର୍ତ୍ତନ ଆଣିବାରେ ସକ୍ଷମ ହୋଇଥିଲେ। ଅନ୍ୟତ୍ର ନିଯୁକ୍ତ ଦକ୍ଷ କର୍ମଚାରୀମାନଂକୁ ନିଜ ବିଭାଗକୁ ଆସି ସେମାନଂକର ସହଯୋଗରେ ଲକ୍ଷ୍ୟ ହାସଲ କରିବା ଓ ଦାୟିତ୍ୱ ସୁଚାରୁରୂପେ ସଂପାଦନ କରିବା ତାଂକ କାର୍ଯ ଶୈଳୀର ବିଶେଷତ୍ୱ ଥିଲା। ନିଜର ନଗରପ୍ଲାନିଂ ଦେବୋତ୍ତର ପରିଚାଳନା ଓ ଆଇନ ଅଦାଲତର ଅନୁଭୂତି ଜନସାଧାରଣଂକର ସମସ୍ୟାମାନ ସେ ପ୍ରବନ୍ଧ ଆକାରରେ ପତ୍ରପତ୍ରିକା ଓ ସଂବାଦପତ୍ରମାନଂକରେ ପ୍ରକାଶ କରି ଏ ଦିଗରେ ଜନମତ ସୃଷ୍ଟି କରିପାରୁଥିଲେ। ସର୍ବ ଭାରତୀୟ ସ୍ୱାୟତ୍ତ ଶାସନ ସଂଘର ସେ ସଭାପତି ଥିଲେ।

ସଂବଲପୁରରେ ଭଜଇଂରାଜୀ ଠାରୁ କଲେଜ ପର୍ଯ୍ୟଂତ ସଂଖ୍ୟା ବଢ଼ିବାଦିଗରେ ସେ ସର୍ବଦା ଉଦ୍ୟମଶୀଳ ଥିଲେ। ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମିତ୍ତ ସେ ପଶ୍ଚିମାଂଚଳର ଭିନ୍ନ ମତବାଦୀ ରାଜନୈତିକ କର୍ମୀ ଓ ସମାଜସେବୀମାନଂକୁ ଏକତ୍ର କରି ଏ ଦିଗରେ ସଫଳ ହୋଇ ପାରିଥିଲେ। ୧୯୫୫ ପରେ ସେ ନିଜର ଓକିଲ ବୃତ୍ତିରୁ ସଂପୂର୍ଣ ବିଦାୟ ନେଲେ।

ଦୁଇଥର ସେ ବିଧାନସଭାକୁ ନିର୍ବାଚିତ ହୋଇ ୧୯୬୧ ରୁ ୧୯୭୧ ପର୍ଯ୍ୟନ୍ତ ଏହାର ସଭ୍ୟ ଥିଲେ। ୧୯୭୧ରେ ସେ କଂଗ୍ରେସର ବିଭାଜନ ପରେ ଇଂଦିରା କଂଗ୍ରେସର ପ୍ରାର୍ଥୀ ଭାବେ ଲୋକସଭାକୁ ନିର୍ବାଚିତ ହୋଇଥିଲେ। ପରେ ୧୯୮୨ ଏପ୍ରିଲରେ ସେ ରାଜ୍ୟସଭାକୁ ମଧ୍ୟ ନିର୍ବାଚିତ ହୋଇଥିଲେ। ସଂବଲପୁର ଜିଲ୍ଲାରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାରେ ସେ ବିଶେଷ ଆଗ୍ରହ ପ୍ରଦର୍ଶନ କରିଥିବା ଫଳରେ ବର୍ତମାନ ଲାଲ ଲଜପତରାୟ ଆଇନ କଲେଜ, ସୁରେଂଦ୍ର ସାଏ ଭେଷଜ ମହାବିଦ୍ୟାଳୟ, ମହିଳା ମହାବିଦ୍ୟାଳୟ, ହୋମିଓପାଥି କଲେଜ, କେଂଦ୍ରୀୟ ବିଦ୍ୟାଳୟ, ଜୋସେଫ୍ ପବ୍ଲିକ ସ୍କୁଲ ଓ ଗଂଗାଧର ମେହେର କଲେଜରେ ଉପାଧ୍ୟୋତ୍ତର ଶିକ୍ଷା ତାଂକର କୀର୍ତ୍ତିରୂପେ ବିଦ୍ୟମାନ। ବହୁପ୍ରତିଷ୍ଠିତ ଅନୁଷ୍ଠାନ ତାଂକୁ ସଭାପତି ଭାବରେ ଗ୍ରହଣକରି ନିଜକୁ ଗୌରବାନ୍ୱିତ ମନେ କରୁଥିଲେ। ଲୋକସଭା ଓ ରାଜ୍ୟସଭାର ସଭ୍ୟ ଥିବା ସମୟରେ ସେ ଅନେକ ଗୁଡ଼ିଏ କମିଟିରେ କାର୍ଯ କରି ପ୍ରଶଂସିତ ହୋଇଥିଲେ। ଜଣେ ନିଷ୍ଠାପର ନିର୍ମଳ ଓ ବିବେକାନଂଦଂକ ଆଦର୍ଶରେ ଅନୁପ୍ରାଣିତ ଉତ୍ସର୍ଗୀକୃତ ଜନନାୟକ ଭାବରେ ସେ ରାଜ୍ୟରେ ସୁପରିଚିତ ଥିଲେ। ତାଂକ କାର୍ଯଧାରା ଓ ସହକର୍ମୀ ଓ ସରକାରୀ କର୍ମଚାରୀମାନଂକୁ ଉଦ୍‌ବୁଦ୍ଧ କରାଇ ସହଜରେ ଲକ୍ଷ୍ୟ ହାସଲ କରିବା ନିମ୍ନ କେତୋଟି ଉଦାହରଣରୁ ସ୍ପଷ୍ଟ ହେବ। ଯୁଦ୍ଧୋତ୍ତର କାଳରେ ଓଡ଼ିଶାର ରାଜ୍ୟପାଳ ଉଇଲିଅମ୍ ହଥର୍ନ ଲୁଇସ୍ ଏକଦା ସଂବଲପୁରର ଜିଲ୍ଲାପାଳ ଥାଇ ଜିଲ୍ଲାର ସମସ୍ୟା ସହିତ ସୁପରିଚିତ ଥିଲେ। ଯୁଦ୍ଧୋତ୍ତର ଯୋଜନା ପ୍ରସ୍ତୁତିରେ ସେ ହୀରାକୁଦ ବଂଧ ଯୋଜନା ସଂବଲପୁର କଲେଜ ପ୍ରତିଷ୍ଠା ଓ ତାଳଚେର ସଂବଲପୁର ରେଳପଥ ନିର୍ମାଣ ଅଂତର୍ଗତ କରିଥିଲେ। ମିଳିତ ପାରଳା ମଂତ୍ରୀମଂଡଳ କଲେଜ ବସାଇଲେ। ହୀରାକୁଦ ବହୁମୁଖୀ ଯୋଜନାର ଶୁଭ ଦିଆଗଲା। କଲେଜର ସଂପ୍ରସାରଣ ଦୃଷ୍ଟିରେ ରଖି ପଦକ୍ଷେପ ନିଆଗଲା। ସଂବଲପୁରର ଯୁଦ୍ଧ ସମୟରେ ଜିଲ୍ଲାପାଳ ଏମ୍ ଆକ୍‌ଫର୍ ମୁସଲିମ୍‌ଲିଗ୍‌ର ସମର୍ଥକ ଥାଇ ୫ ଏକର ଜମି ଇଦଗା ପଡ଼ିଆକୁ ନମାଜ ପଢ଼ିବାକୁ ପଟା ଦେଲେ। ଖାଁ ସାହେବ ମହମଦ ଖାଁ ମୁସଲିମ୍‌ଲିଗ୍ ସଂବଲପୁର ଆସେମ୍ବ୍ଲି ସଭ୍ୟଂକୁ ୪/୫ ଏକର ଜମି ଭିକ୍‌ଟୋରିଆ କ୍ଲବିଲି ହଲ ନିକଟରେ ଦେଲେ। ହିଂଦୁ ମଂଦିର ହୋତାପଡ଼ା ଟିମିନିଗୁଡ଼ି ଆଦି ପାଇଥିବା ନଜୁଲ ଜମି ଫୁଲ ତୁଳସୀ ନିମିତ୍ତ ଉଦ୍ଦିଷ୍ଟ ଥିବା ସତ୍ତ୍ୱେ ଏହାକୁ ଘର ତିଆରିରେ ବ୍ୟବହାର କରି ଭଡ଼ା ଦିଆଯାଉଥିବାରୁ ସରକାର ଖାସ କରିଦେବାକୁ ବ୍ୟବସ୍ଥା କଲେ।

ପରବର୍ତୀ କାଳରେ ୧୯୪୭-୪୮ରେ ଏସବୁ ରଦ୍ଦ କରାଯାଇଥିଲା। ଏସବୁ ସାଂପ୍ରଦାୟିକ କାର୍ଯ ସତ୍ତ୍ୱେ ଯୁଦ୍ଧ ପାଂଠିର ବକୟା ଟଂକାରେ ଗଢ଼ାଯାଇଥିବା ଟ୍ରଷ୍ଟ ଫଂଡ ତାଂକର ଅବଦାନ। ଶିକ୍ଷାର ପ୍ରସାର ଆଖି ଆଗରେ ରଖି ବନମାଳୀବାବୁ ପଟ୍ଟନାୟକ ପଡ଼ା, (ପରେ ଟାଉନ ହାଇସ୍କୁଲ)ର ସଂପ୍ରସାରଣ ଆରଂଭ କଲେ। ହୀରାକୁଦ ବଂଧ

ଯୋଜନାର ଭବିଷ୍ୟତ ଉପକାରିତା ଥିଲେ ମଧ୍ୟ ସାମାନ୍ୟ କ୍ଷତିପୂରଣର ସେ ବିରୋଧ କଲେ। ଏକା କିସମର ଜମିର ଅନ୍ୟ ପ୍ରଦେଶରେ ଲୋକେ ଦଶଗୁଣା କ୍ଷତିପୂରଣ ପାଉଥିଲେ। ୧୯୫୬-୫୭ରେ ବୁର୍ଲାଠାରେ ଯାନ୍ତ୍ରିକ ମହାବିଦ୍ୟାଳୟ, ସହରରେ ମହିଳା କଲେଜ, ପ୍ରଥମେ ମେଡିକାଲ ସ୍କୁଲ ବେସରକାରୀ ଭାବରେ ଖୋଲିବା ଉଦ୍ୟମକୁ ସମର୍ଥନ ଜଣାଇ ପରେ ସରକାରୀ ମଂଜୁରି ଫଳରେ ମେଡିକାଲ କଲେଜ ପ୍ରତିଷ୍ଠା, ୧୯୬୯ରେ ଶିକ୍ଷକ ଟ୍ରେନିଂ କଲେଜ ପାଇ ମୋତିଝରଣ ଓ ବୃକସହିଲଠାରେ ସ୍ଥାନ ନିର୍ବାଚନ କରି କଲେଜ ପ୍ରତିଷ୍ଠା ପାଇ ସରକାରଂକୁ ପ୍ରବର୍ତ୍ତାଇବା, ୧୯୬୨ରେ ଗଂଗାଧର ମେହେର କଲେଜରେ ସାଂଧ୍ୟ କଲେଜ, ୧୯୬୫ରେ ଉପାଧ୍ୟୁତ୍ତର ଶିକ୍ଷାର ବ୍ୟବସ୍ଥା, ଟ୍ରଷ୍ଟ ଫଂଡ ସହାୟତାରେ ଆଇନ କଲେଜ ପ୍ରତିଷ୍ଠା ଆଦି ଉଦ୍ୟମ ସହିତ ସଂପୃକ୍ତ ଥାଇ ବିଭାଗୀୟ କର୍ତାମାନଂକୁ ସେମାନଂକର ମତାମତ ପ୍ରତି ସମ୍ମାନ ଜଣାଇ ସମ୍ମତି ଆଣି ସେ ନିଜ କର୍ମକୁଶଳତା ପ୍ରମାଣିତ କରିଥିଲେ। କୌଣସି ସରକାରୀ କର୍ମଚାରୀ ଆଇନ ସମ୍ମତ କାର୍ଯକରି ଅସୁବିଧାର ସମ୍ମୁଖୀନ ହୋଇ ତାଂକ ସାହାଯ୍ୟ ଲୋଡ଼ିଲେ ସେ ସେମାନଂକୁ ଯଥାଶକ୍ତି ସୁରକ୍ଷା ପ୍ରଦାନ କରୁଥିଲେ। ହାତୀବାରି କୁଷ୍ଠାଶ୍ରମକୁ ଆଂତର୍ଜାତିକ ସେବାସଂସ୍ଥାର ପ୍ରତିନିଧିମାନଂକୁ ଆଣି ସେମାନଂକୁ ସେ ଏହି ସଂସ୍ଥା ପ୍ରତି ଆକୃଷ୍ଟ କରିପାରିଥିଲେ।

ମାତ୍ର ସଂବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ତାଂକ ଶିକ୍ଷାପ୍ରସାର ଉଦ୍ୟମର ଶେଷ ଫଳ ଥିଲା। ସଂବଲପୁରର କେତେକ ଶିକ୍ଷାପ୍ରେମୀ ଅଧ୍ୟାପକ ବୃଂଦାବନ ପଟେଲଂକ ଉଦ୍ୟମରେ, ଡକ୍ଟର୍ ପରଶୁରାମ ମିଶ୍ରଂକ ଅଧ୍ୟକ୍ଷତାରେ ଓଡ଼ିଶା ଶିକ୍ଷା ସମାଜ ନାମରେ ଏକ ଅନୁଷ୍ଠାନ ଗଢ଼ି ଜିଲ୍ଲାର ପଦ୍ମପୁର, ବରଗଡ଼, ବରପାଲି, ରେଢ଼ାଖୋଲ, କୁଚିଂଡା, ହୀରାକୁଦ, ବୁରଲା, ଆଦି ଅବହେଳିତ ଅଂଚଳରେ ଶିକ୍ଷା ବିସ୍ତାରର ଉଦ୍ୟମ କରୁଥାଂତି। ୧୯୬୫ରେ ସେମାନେ ପଶ୍ଚିମ ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମିତ୍ତ ପ୍ରସ୍ତାବ ଗ୍ରହଣ କରି ଏକ ସ୍ମାରକ ପତ୍ର ସରକାରଂକୁ ଦେଲେ। ଜଣେ କ୍ୟାବିନେଟ୍ ମଂତ୍ରୀ ଥାଇ ବନମାଳୀ ବାବୁ ଏଥିରେ ପ୍ରତ୍ୟକ୍ଷ ସଂପୃକ୍ତ ରହିଲେ। ଅନ୍ୟ ଜିଲ୍ଲାମାନ ଗସ୍ତ କରି ବୁଦ୍ଧିଜୀବୀମାନଂକ ସହାୟତାରେ ଲୋକ ମତ ସୃଷ୍ଟି କଲେ। ରାଜ୍ୟର ଅନ୍ୟ ଅଂଚଳରୁ ଏହାର ତୀବ୍ର ବିରୋଧ ଆସିବା ସତ୍ତ୍ୱେ ରାଜ୍ୟପାଳ ଖୋସଲା, କେଂଦ୍ର ଶିକ୍ଷାମଂତ୍ରୀ ଚଗଲା, ବିଶ୍ୱବିଦ୍ୟାଳୟ ମଂଜୁରି ଆୟୋଗର ଅଧ୍ୟକ୍ଷ କୋଠାରିକୁ ଭେଟି ସେ ନିଜ ସପକ୍ଷରେ ସେମାନଂକ ମତ ସଂଗ୍ରହ କଲେ। ନିଜ ପିତାଂକ ସହପାଠୀ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ପରିଜାଂକୁ ମଧ୍ୟ ସେ ନିଜ ସପକ୍ଷରେ ପ୍ରଭାବିତ କରିପାରିଲେ ଓ ନାନା ବାଧାବିଘ୍ନ ସତ୍ତ୍ୱେ ୧୯୬୭ରେ ସଂବଲପୁରରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇପାରିଲା। ସଂବଲପୁର କଲେଜ ପ୍ରତିଷ୍ଠା ନିମିତ୍ତ ଗୁଂଡେରପୁରରେ ଜମି ନିଆଯାଇ ଭିତ୍ତି ପ୍ରସ୍ତର ସ୍ଥାପନ ହୋଇଥିଲେ

ମଧ୍ୟ ତାଂକ ଉଦ୍ୟମ ସତ୍ତ୍ୱେ ସ୍ଥାନୀୟ ବିରୋଧିତା ଯୋଗୁଁ ଏହା ସଂଭବ ହୋଇ ନଥିଲା। ବର୍ତମାନ ଏହି କଲେଜ ସଂପ୍ରସାରଣ ଏହା ଫଳରେ ବାଧାପ୍ରାପ୍ତ ସଂବଲପୁରରେ ଟ୍ରଷ୍ଟ ଫଂଡ ସହାୟତାରେ ୨ୟ କଲେଜ, ହୋମିଓପାଥିକ କଲେଜ ସରକାରୀ ହେବା ଆଦି ଉଦ୍ୟମ ତାଂକ ଦୂର ଦୃଷ୍ଟିର ଫଳ ଥିଲା। ଓଡ଼ିଶାରେ ଅର୍ଥ ଓ ପ୍ରତିଷ୍ଠା ଅର୍ଜନ ସମକାଳୀନ ରାଜନୀତିଜ୍ଞମାନଂକୁ ମଦମତ୍ତ ଓ ମୋହାଚ୍ଛନ୍ନ କରି ରଖିଥିବା ବେଳେ ସେ ନିଷ୍କଳଂକ ଭାବରେ ରାଜନୀତି କ୍ଷେତ୍ରରେ କାର୍ଯକରିବାର ଅନନ୍ୟ ପ୍ରତିଷ୍ଠା ଲାଭ କରିଥିଲେ।

ବ୍ୟକ୍ତିଗତ ଜୀବନରେ ସେ ମିଳାପୀ, ବଂଧୁବତ୍ସଳ ଓ ଶାଂତ ସ୍ୱଭାବର ଥିଲେ। ଶ୍ରୀ ରାମକୃଷ୍ଣ ପରମହଂସଂକ ପ୍ରବର୍ତିତ ଧର୍ମବିଚାର ଧାରାରେ ସେ ପ୍ରଗାଢ଼ ବିଶ୍ୱାସ ରଖି ସ୍ୱାମୀ ବିବେକାନଂଦଂକର ରଚନାର ଗଭୀର ଅଧୟନ କରିଥିଲେ ଓ ନିଜକୁ ସେଇ ଆଦର୍ଶରେ ଅନୁପ୍ରାଣିତ କରିଥିଲେ। ପୁସ୍ତକ ସଂଗ୍ରହ କରି ଅଧ୍ୟୟନ କରିବା ତାଂକର ନିଜର ସଉକ ଥିଲା। ତାଂକ ପୁସ୍ତକାଗାର ବ୍ୟକ୍ତିଗତ ସ୍ତରରେ ଅଦ୍ୱିତୀୟ। କୃଷି ଓ ଉଦ୍ୟାନ କର୍ମ ତାଂକର ଅନ୍ୟ ସଉକ ଥିଲା ଓ ସେଇଥି ପାଇଁ ସହର ଉପକଂଠରେସେ ନିଜର ପୈତୃକ ବାସଗୃହ ଛାଡ଼ି ବାସ କରୁଥିଲେ ଓ ଏହା ଫଳ ପୁଷ୍ପ ଓ ଶସ୍ୟରେ ଚିର ସବୁଜ ରହୁଥିଲା। ୮୦ ବର୍ଷ ବୟସରେ ୧୯୯୮ ଅଗଷ୍ଟରେ ଧନୁପାଲିସ୍ଥିତ ନିଜ ବାସଭବନ 'କାଦଂବରୀ'ରେ ତାଂକର ବିୟୋଗ ଘଟେ।



ଉଠ୍ ନାଇଁ କର୍ ମଠ୍
ଇ ଦେଶର୍ ଯୁଆନ୍ ପିଲା
ଦେଖ୍ ତୁର୍ ବୁହିନେବେ
ଆମର୍ ଯେତେ ଖେଡ୍ ଖଲା।
ବାହାମାଜି କରି କମାଲେ ସିନା
ଖାଏ ମା ପଁର୍‌ରା ଗୁଁଡ଼ା
ହାତର୍ ଆଲ୍‌ସେଁ ମେଛା ବଁକା
ବାଟର୍ ଅଲ୍‌ସେଁ ବୁଢ଼ା,
କାଦୋଚିଖଲ୍ ଚଁଦନ୍ ଆମର୍
କଁଟା ଝଁଟା ସାଁଗ୍
ଖରା ବର୍‌ଷା ସବୁ ସହେମୁଁ
ସାଂଗେଥିଲେ ଗୁଁଡ଼ା ଭାଁଗ୍।

– ସରଗମଲ୍ଲି ଶ୍ରୀପତି ପାଣିଗ୍ରାହୀ



## ସଂଗ୍ରାମୀ

# ନୃସିଂହ ଓ ଦୁର୍ଗାପ୍ରସାଦ ଗୁରୁ

ଦୀର୍ଘ ପଚାଶବର୍ଷ ଧରି ସଂବଲପୁର ଜିଲ୍ଲାର ସମାଜସେବା ଓ ରାଜନୀତି ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିଲେ ଜଣେ ନୀତିନିଷ୍ଠ ବ୍ୟକ୍ତି। ତାଂକ ଚେହେରାରୁ ସେ ଜଣେ ବିଶିଷ୍ଟ ଲୋକ ଏହା ଜାଣିବା ଅସଂଭବ ଥିଲା। ଶ୍ୟାମଳ ବର୍ଣ୍ଣର ବାଂଗରା ମନୁଷ୍ୟଟିଏ ସେ ଥିଲେ। ଆଂଠୁଯାଏ ଲଂବି ଥିବା ହାତକଟା ମୋଟା ଖଦଡ଼ ଧୋତି ସେ ପିଂଧିଥାଂତି। କାଂଧରେ ଖଦଡ଼ ଗାମୁଛା ଖଂଡେ ପଡ଼ିଥାଏ। ହାତ ତିଆରି ଖଦଡ଼ ମୁଣି ଗୋଟିଏ ତାଂକ କାଂଧରୁ ଝୁଲୁଥାଏ। ସେହି ଥଳିରେ କାଗଜ କଲମ ଓ ଖବର କାଗଜ ଥାଏ। ଖାଲି ଗୋଡ଼ରେ ଖରା ବର୍ଷାକୁ ଖାତିର ନକରି ଗୋଟିଏ ତାଳପତ୍ର ଛତା ଧରି ଜାଗାକୁ ଜାଗା ବୁଲି ସହରରେ ଖବର ସଂଗ୍ରହ କରିବା ତାଂକର କାର୍ଯ୍ୟ ଥିଲା। ଖାଲି ଗୋଡ଼ରେ ଆବଶ୍ୟକ ପଡ଼ିଲେ ସେ ସାଇକେଲ୍ ଚଳାଇ ଯାଇ ଦୂର ଦୂରାଂତରରୁ ଖବର ସଂଗ୍ରହ କରି ଆଣୁଥିଲେ। ଏହି ବିଶିଷ୍ଟ ବ୍ୟକ୍ତିଂକର ନାମ ଥିଲା ନୃସିଂହ ଗୁରୁ। ୧୯୦୨ ଦୋଳପୂର୍ଣ୍ଣିମା ଦିନ ଶାସନ ଥାନାର ଗୁରୁପାଲି ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ। ତାଂକ ବାପାଂକ ନାମ ଗଣେଶରାମ

ଗୁରୁ। ଗାଁ ଚାଟଶାଳୀରେ ପାଠସାରି ସେ ଜିଲ୍ଲା ସ୍କୁଲରେ ପାଠ ପଢ଼ିଲେ। ଏହି ସମୟରେ ଦେଶମାତୃକାର ଆହ୍ୱାନରେ ସେ ଅସହଯୋଗ ଆଂଦୋଳନରେ ଯୋଗଦେଇ ପାଠ ପଢ଼ା ଛାଡ଼ିଲେ। ତାଂକ ସାଂଗରେ ବିଦ୍ୟାଳୟ ଛାଡ଼ିଲେ ବାଗ୍ମୀ ଲକ୍ଷ୍ମୀ ନାରାୟଣ ମିଶ୍ର। ଦୁହେଁ କଂଗ୍ରେସକୁ ବଂଚାଇ ରଖିଥିଲେ। ବିଦେଶୀ ଦ୍ରବ୍ୟ  ବର୍ଜନ ସ୍ୱରୂପ ସେ ମିଲ୍ ତିଆରି ଜନାର ଛତା ଓ ଚିନିର ବ୍ୟବହାର ମଧ୍ୟ ଆଜୀବନ ପରିତ୍ୟାଗ କରିଥିଲେ। ବାଳଗଂଗାଧର ତିଲକଂକ ଦ୍ୱାରା ପ୍ରକାଶିତ 'ସ୍ୱରାଜ୍ୟ', ମହାତ୍ମା ଗାଂଧୀଂକର 'ୟଂଗ ଇଂଡିଆ' ସହିତ ସେ ସେସମୟର ପ୍ରକାଶିତ ଅନେକ ଇଂରାଜି ଓ ହିଂଦି ପତ୍ର ପତ୍ରିକା ପଢ଼ିଲେ। ଜ୍ଞାନ ଅର୍ଜନ କରି ସାଂବାଦିକତା ବୃତ୍ତି ଆରଂଭ କଲେ। ଭାରତଛାଡ ଆଂଦୋଳନରେସେ ପ୍ରାୟ ୨ ବର୍ଷ ଜେଲ୍‌ରେ ଅଟକ ବଂଦୀ ଭାବେ କଟାଇଥିଲେ। ସଂବଲପୁର ଜିଲ୍ଲାର ସେ  ପ୍ରଥମ ମାନ୍ୟତାପ୍ରାପ୍ତ ସର୍ବଭାରତୀୟ ଜିଲ୍ଲାସ୍ତରର ସାଂବାଦିକ ଥିଲେ। ନିର୍ଭୀକ ଓ ନିରପେକ୍ଷ ସଂବାଦ ଯୋଗାଉଥିବା ଯୋଗୁ ସେ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠି ଓ ବ୍ୟକ୍ତି ମାନଂକର ବିଷ ଦୃଷ୍ଟିରେ ପଡ଼ିଥିଲେ। ୧୯୩୬ରେ ସେ ସଂବଲପୁରରୁ ପ୍ରକାଶିତ ଜାଗରଣ ପତ୍ରିକାର ନିତ୍ୟାନଂଦ ବହିଦାରଂକ ସହିତ ସହ ସଂପାଦକ ଥିଲେ। ୧୯୪୭ରେ ସଂବଲପୁରରେ ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ତେଜି ଉଠିଥିବା ବେଳେ ସେ ଦୈନିକ 'ସମାଜ'ର ପ୍ରତିନିଧି ଥିଲେ। ଲୋକଂକର ବଂଧ  ବିରୋଧୀ ମନୋଭାବ ଖବର କାଗଜ ଜରିଆରେ ସେ ପ୍ରକାଶ କରାଉଥିଲେ। ଥରେ ସେ ଟେଲିଗ୍ରାମ ଯୋଗେ ଗୋଟିଏ ସଂବାଦ ସମାଜ ଓ ଅନ୍ୟ କେତେକ କାଗଜକୁ ପଠାଇଥିଲେ। କର୍ତୃପକ୍ଷଂକ ମତରେ ସଂବାଦଟି ଅସତ୍ୟ ଥିଲା ଓ ଲୋକମାନଂକୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ଏ ପ୍ରକାର ସଂବାଦ ପ୍ରେରିତ ଓ ପ୍ରକାଶିତ ହୋଇଥିଲା। ଏଥିପାଇଁ ତାଂକ ବିରୋଧରେ ଭାରତୀୟ ଟେଲିଗ୍ରାଫ ଆଇନ୍ ଅନୁସାରେ ଏକ ମକଦ୍ଦମା ରୁଜୁ କରାଗଲା, ସେ ନିଜର ନୀତି ଓ ନିଷ୍ଠାରୁ କେବେ ଟଳି ନଥିଲେ। ମକଦ୍ଦମା କଚେରିରେ ଚାଲିଲା, ମାତ୍ର କିଛିଦିନ ପରେ ପରିବର୍ତ୍ତିତ ରାଜନୈତିକ ପରିସ୍ଥିତିରେ ସଦ୍‌ଭାବ ସୃଷ୍ଟି ନିମିତ୍ତ ସରକାର ଏହି ମକଦ୍ଦମାଟି ଉଠାଇ ନେଇଥିଲେ।

ନିଜର ସତ୍ୟବାଦିତା, କର୍ତବ୍ୟନିଷ୍ଠା, ସହଯୋଗୀ ମନୋଭାବ, ସମୟାନୁବର୍ତ୍ତିତା ଓ ବଂଧୁବତ୍ସଳତା ନିମିତ୍ତ ସେ ଉଚ୍ଚ ସମ୍ମାନର ଅଧିକାରୀ ହୋଇଥିଲେ। ଅସହଯୋଗ ଆଂଦୋଳନ, ବିଦେଶୀ ଦ୍ରବ୍ୟ ବର୍ଜନ, ନିଶା ନିର୍ବାରଣ, ହରିଜନ ସେବା, କୁଷ୍ଠରୋଗୀ ସେବା ବଢ଼ି ମରୁଡ଼ି, ଘରପୋଡ଼ି ସମୟରେ ଲୋକମାନଂକ ପାଖରେ ଅନୁଷ୍ଠାନମାନଂକର ବିଶେଷ କରି 'ଦୈନିକ ସମାଜ'ର ସାହାଯ୍ୟ ପହଂଚାଇବା ଦ୍ୱାରା ସେ ସବୁରି ପ୍ରିୟ ଓ ପ୍ରଶଂସାଭାଜନ ହୋଇଥିଲେ। ଅସ୍ପୃଶ୍ୟତା ନିରାକରଣ ଦିଗରେ ସମଗ୍ର ଜିଲ୍ଲାରେ ନୃସିଂହଗୁରୁଂକର କାର୍ଯ

ଅତୁଳନୀୟ ଥିଲା । ୧୯୩୨ ମସିହା ଆଇନ ଅମାନ୍ୟ ଆଂଦୋଳନରେ ଜେଲ ଭୋଗକରି ଖଲାସ ହୋଇ ସେ ପୂଜ୍ୟ ଗୋପବଂଧୁ ଚଉଧୁରୀଂକ ଦ୍ୱାରା ପ୍ରଭାବିତ ହୋଇ ନିଜର ସମସ୍ତ ସମୟ ଏ ଦିଗରେ ଅତିବାହିତ କଲେ । ହରିଜନ ସେବକ ସମିତି ଗଠନପରେ ଜିଲ୍ଲା ସମିତିର ସେ ସଂପାଦକ ଥିଲେ । ୧୯୩୪ ମସିହାରେ ମହାତ୍ମାଗାଂଧି ଓଡ଼ିଶା ଆସିବା ସମୟରେ ଗୁରୁଂକ ଦ୍ୱାରା ପ୍ରଭାବିତ ହୋଇ ସେ ସଂବଲପୁରରୁ ତାଂକ କାର୍ଯକ୍ରମ ଆରଂଭ କଲେ । ସଂବଲପୁରରେ ମହାନଦୀ ବାଲିରେ ବାଲୁଂକେଶ୍ୱର ଘାଟରେ ପୁରୁଷ ଓ ମହିଳାଂକର ମିଳିତ ସଭା ହୋଇ ମହାତ୍ମାଂକୁ ଅଭିନଂଦନ ଦିଆଯାଇଥିଲା । ସେ ତାଂକର ଭାଷଣ ଦେଇଥିଲେ । ସଂଗୃହୀତ ଚାଂଦା ହରିଜନ ସେବାରେ ବ୍ୟୟିତ ହୋଇଥିଲେ । କେତେକ ହରିଜନ ଛାତ୍ରଂକୁ ଧରି ଏକ ହରିଜନ ଛାତ୍ରାବାସ ଆରଂଭ ହୋଇ ୧୯୩୫ରୁ ୧୯୫୧ ପର୍ଯଂତ ଏହା, ସରକାର ଅଲଗା ହରିଜନ ଛାତ୍ରାବାସ ଉଠିଇବା ନିଷ୍ପତ୍ତି ନେବା ଯାଏ ନୃସିଂହଗୁରୁଂକ ତତ୍ତ୍ୱାବଧାନରେ ବୁଢ଼ାରଜାଠାରେ ଡାକ୍ତର ଜନାର୍ଦନ ସୂପକାଠଂକ ଥିବା ଖମାରର ଘରବାଡ଼ିରେ ଓ ପରେ ଚେରୁଆ ପଡ଼ାରେ ପ୍ରହଲ୍ଲାଦରାୟ ଲାଠଂକ ଘରେ ଚାଲୁଥିଲା । ହରିଜନ ବସ୍ତି ସଫେଇ, ହରିଜନ ଛାତ୍ର ସଂଗ୍ରହ କରି ବିଦ୍ୟାଳୟରେ ନାମ ଲେଖାଇବା, ସିଲେଟ ବହି ଯୋଗାଇଦେବା, ବିଦ୍ୟାଳୟ ସ୍ଥାପନା ପାନୀୟ ଜଳ ପାଇଁ କୂପ ଖନନ, ଅସ୍ପୃଶ୍ୟତା ଦୂରୀକରଣ ନିମିତ୍ତ ପ୍ରଚାର କାର୍ଯରେ ସକ୍ରିୟ ଓ ମୁଖ୍ୟ ଅଂଶ ଗ୍ରହଣ କରି ନୃସିଂହ ଗୁରୁ ଲୋକପ୍ରିୟତା ଓ ମର୍ଯାଦା ଅର୍ଜନ କରିଥିଲେ । ରାଜ୍ୟରେ କଂଗ୍ରେସ ମଂତ୍ରୀମଂଡଳ ଗଠନ ପରେ ଏହି ଛାତ୍ରାବାସ ବର୍ଷକୁ ତିନିଶହ ଟଂକା ଅନୁଦାନ ପାଉଥିଲା । ଶ୍ରୀ ଗୁରୁ ମାସକୁ ମାତ୍ର ଅଠର ଟଂକା ଭତ୍ତା ନେଉଥିଲେ । ପ୍ରତ୍ୟେକ ଛାତ୍ର ପିଛା ଅଢ଼େଇରୁ ତିନିଟଂକା ମାସିକ ଖରଚ ସହିତ ଜଣେ ପାଚିକା ମଧ୍ୟ ନିଯୁକ୍ତ ପାଇଥିଲେ । ସାଂବାଦିକ ଭାବରେ 'ସମାଜ' ସହିତ ସେ ଆସୋସିଏଟେଡ୍ ପ୍ରେସ୍, ପିଟିଆଇ, ସଂବାଦ ସହିତ ସଂପୃକ୍ତ ଥିଲେ । ବିଭିନ୍ନ ପତ୍ର ପତ୍ରିକାର ସଂପାଦକମାନେ ତାଂକର ଯୁକ୍ତିଯୁକ୍ତ ପୋଖତ ମତ ପ୍ରତି ସମ୍ମାନ ଦେଖାଉଥିଲେ । ସେ ସମୟରେ ଓଡ଼ିଶାର ଏକ ମାତ୍ର ଦୈନିକ ସଂବାଦ ପତ୍ର 'ସମାଜ' ସହିତ ସେ ୧୯୨୯ ଲବଣ ସତ୍ୟାଗ୍ରହ ଠାରୁ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ ଓ ଏହାକୁ ଜିଲ୍ଲାର ବିଶେଷ ଲୋକପ୍ରିୟ ଦୈନିକ ଭାବରେ ପରିଚିତ କରାଇ ପାରିଥିଲେ । ରାଜ୍ୟରେ ପ୍ରତିଷ୍ଠିତ ରାଜନୀତିଜ୍ଞ ମାନଂକ ସହିତ ସେ ଯୋଗସୂତ୍ର ରକ୍ଷା କରିପାରୁଥିଲେ । ୧୯୨୧ ମସିହାରେ ପଂଡିତ ନୀଳକଂଠ ସଂବଲପୁରରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିବା ବେଳେ ସେ ତାଂକୁ ସହଯୋଗ କରିଥିଲେ । ମହାତ୍ମା ଗାଂଧି ଓ କସ୍ତୁରବା ଗାଂଧିଂକର ସଂବଲପୁର ଆଗମନ ସମୟରେ ସେ ତାଂକ ସହିତ ସାକ୍ଷାତ କରିଥିଲେ ଓ ତାଂକ ଗହଣରେ ବିଭିନ୍ନ ସ୍ଥାନ ଗସ୍ତ କରିଥିଲେ । ଜଣେ ଦେଶସେବୀ ଭାବରେ ୧୯୩୦ ଓ ୧୯୪୨ରେ ଆଇନ ଅମାନ୍ୟ ହେତୁ ତାଂକୁ କାରାବରଣ କରିବାକୁ ପଡ଼ିଥିଲା । ତାଂକର ବହୁ ପ୍ରବଂଧ

ସଂବଲପୁର ବିଶ୍ୱବିଦ୍ୟାଳୟର ମୁଖପତ୍ର 'ସପ୍ତର୍ଷି'ରେ ପ୍ରକାଶିତ। ୧୯୭୨ରେ ତାଂକ ପ୍ରବନ୍ଧ ସଂବଲପୁରରେ ସ୍ୱାଧୀନତା ଆଂଦୋଳନ ବିଶେଷ ଲୋକପ୍ରିୟ ଓ ସୁଖପାଠ୍ୟ ହୋଇଥିଲା। ତେୟାଅଶୀ ବର୍ଷ ବୟସରେ ୧୯୮୪ ବକୁଳ ଅମାବାସ୍ୟା ଦିନ ସେ ଇହଧାମରୁ ବିଦାୟ ନେଲେ। ସେ ସାରଂଗଗଡ ସ୍ଥିତ ତାଂକର ଜଣେ ସଂପର୍କୀୟଂକ ଘରକୁ ଯାଇଥିଲେ। ସେଠାରେ ଆକସ୍ମିକ ଭାବରେ ଅସୁସ୍ଥ ହୋଇପଡ଼ିଲେ। ଭାଗ୍ୟର ବିଡଂବନା ଯେ ତାର ପୂର୍ବଦିନ ସାଂବାଦିକତାର ୫୦ ବର୍ଷ ପୂର୍ଣ ହେବାରୁ ତାଂକୁ ସାଂବାଦିକ ସଂଘ ପକ୍ଷରୁ ସଂବର୍ଦ୍ଧିତ କରାଯାଇଥିଲା।

ନୃସିଂହ ଗୁରୁଂକର ସାନ ଭାଇ ଥିଲେ ଦୁର୍ଗାପ୍ରସାଦ ଗୁରୁ। ତାଂକର ଜନ୍ମ ୧୯୧୦ରେ। ଅଷ୍ଟମ ଶ୍ରେଣୀ ପର୍ଯଂତ ସେ ବିଦ୍ୟା ଅଧ୍ୟୟନ କରିଥିଲେ। ନିଜର ଜ୍ୟେଷ୍ଠଭ୍ରାତାଂକର ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ମଧ୍ୟ ସାଂବାଦିକତା ପ୍ରତି ଆକୃଷ୍ଟ ହୋଇଥିଲେ। ଇଂରାଜୀ ହିଂଦି, ବଂଗଳା, ତେଲୁଗୁ ଓ ଗୁଜୁରାଟୀ ଭାଷାରେ ତାଂକର ବ୍ୟୁତ୍ପତ୍ତି ଥିଲା। ପଂଡିତ ଗୋପବଂଧୁଂକର ଧର୍ମପଦକୁ ସେ ତେଲୁଗୁରେ ଅନୁବାଦ କରିଥିଲେ। ୧୯୩୦ରେ ଲବଣ ସତ୍ୟାଗ୍ରହରେ ଓ ୧୯୪୨ରେ ଭାରତଛାଡ଼ ଆଂଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ଜିଲ୍ଲାରେ ଶ୍ରମିକ ଓ କୃଷକମାନଂକୁ ସଂଗଠିତ କରିବାକୁ ସେ ପ୍ରଥମେ ଉଦ୍ୟମ କରିଥିଲେ। ବ୍ରଜରାଜ ନଗର ଠାରେ ବିରଳା କଂପାନି ଓରିଏଂଟ କାଗଜ କଳ ପ୍ରତିଷ୍ଠା କଲାପରେ ସେ ପ୍ରଥମେ ସେଠାରେ ଶ୍ରମିକମାନଂକୁ ଏକଜୁଟ କରି ଏକ ଶ୍ରମିକ ସଂଘ ଗଠନ କରିଥିଲେ ଓ ଜୀବନର ଶେଷ ପର୍ଯଂତ ସେଠାରେ ଶ୍ରମିକ ନେତା ଭାବରେ ନିଜର ପ୍ରତିପତ୍ତି ଅଖଂଡ ରଖିଥିଲେ। ନିଜେ ସଂଗୀତ ଓ କବିତା ରଚନା କରୁଥିଲେ ଓ ଗୀତ ବୋଲି ଶ୍ରମିକମାନଂକୁ ନିଜପକ୍ଷକୁ ଯୁକ୍ତିଦ୍ୱାରା ଆକର୍ଷିତ କରାଇପାରିବା ତାଂକର ବିଶେଷ ଗୁଣ ଥିଲା। ମାର୍କ୍ସବାଦ ପ୍ରତି ସେ ଆକୃଷ୍ଟ ହୋଇ ମକଦ୍ଦମାର ସମ୍ମୁଖୀନ ହୋଇଥିଲେ ଓ କିଛିଦିନ ଜେଲ୍‌ରେ କଟାଇଥିଲେ। ଜେଲ୍‌ରୁ ଖଲାସ ହେବାପରେ ଯକ୍ଷ୍ମାରୋଗରେ ଆକ୍ରାଂତ ହୋଇ ମାତ୍ର ପଇଁତିରିଶ ବର୍ଷ ବୟସରେ ୧୯୪୫ ଅଗଷ୍ଟରେ କଲିକତାଠାରେ ଚିକିତ୍ସାଧୀନ ଥାଇ ସେ ପରଲୋକ ଗମନ କଲେ। ତାଂକ ପତ୍ନୀ ଶୈଳସୁତା ସେତେବେଳେ ମହାତ୍ମାଗାଂଧିଙ୍କ ୱାର୍ଧା ଆଶ୍ରମର ଅଂତେବାସିନୀ ଥିଲେ। ତାଂକ ମୃତ୍ୟୁ ସଂବାଦ ମିଳିବା ପରେ ମର୍ମାହତ ହୋଇ ମହାତ୍ମା ଦୁର୍ଗାଂକର ବଡ଼ଭାଇ ଅଂତ୍ୟେଷ୍ଟି କରୁଥିବା ନୃସିଂହଗୁରୁଂକ ପାଖକୁ ଜଣେ ଆଶ୍ରମବାସୀଂକ ସହିତ ପଂଚାଶ ଟଂକା ଦେଇ ଶୈଳସୁତାକୁ ଘରକୁ ପଠାଇଦେଇଥିଲେ।




ପ୍ରଭାକର


ବାଳଗୋପାଳ

## ଶ୍ମଶାନ ତୁଳସୀ

# ପ୍ରଭାକର ଓ ବାଳଗୋପାଳ

ବିଗତ ଶତାବ୍ଦୀର ଚାଳିଶ ଦଶକର ଶେଷ ଆଡ଼କୁ ସଂବଲପୁର ଡେପୁଟି କମିଶନ୍‌ର (କଲେକ୍ଟର) ଅଫିସ୍‌ରେ ଜଣେ କିରାଣି ଥାଆଂତି। ପ୍ରତିଦିନ ସେ ସାତ ଆଠ କିଲୋ ମିଟର ଦୂରରୁ ସାଇକେଲ ଚଳାଇ ଅଫିସ୍ ଆସଂତି। ଅଫିସ୍ ସମୟ ମାନେ ଦଶଟାରୁ ଚାରିଟା। ସେ ମହାଫିସ୍‌ଖାନା (ରେକଡ୍ ରୁମ) ରେ କାମ କରୁଥାଂତି। ରେକର୍ଡ କିପର ମୃତ୍ୟୁଂଜୟ ପତି ଜଣେ କାମିକା ଓ ଟାଣୁଆ ଲୋକ। କାହାର ଟିକେ ଆସିବା ବିଳଂବ ଦେଖିଲେ ଉପସ୍ଥାନ ଖାତାରେ ଛକି ପକେଇବାକୁ ପଛାଂତି ନାହିଁ। ପ୍ରସଂଗ କ୍ରମେ ଏହି ମୃତ୍ୟୁଂଜୟ ପତି ଓଡ଼ିଶାର ବିଶିଷ୍ଟ ଶିକ୍ଷାବିଦ୍ ବାଗ୍ମୀ, ସଂବଲପୁର ବିଶ୍ବବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ପ୍ରଫୁଲ୍ଲ କୁମାର ପତିଂକର ସ୍ୱର୍ଗତ ପିତା। ଅମଲା ଜଣଂକ ନକଲ ଦରଖାସ୍ତ ଗ୍ରହଣ କରିବା ଓ ନିର୍ଧାରିତ ସମୟ ମୁତାବକ ନକଲ ଦେବା ଦାୟିତ୍ୱରେ ଥାଆଂତି। ଠିକ୍ ଦଶଟା ବେଳକୁ ଆସି କେହି ଦରଖାସ୍ତ ଧରି ଯେପରି ପାଂଚମିନିଟ୍ ବି ଠିଆ ନହୁଏ ସେଥିପ୍ରତି ଦୃଷ୍ଟି ରଖିଥାଂତି। କାମ ଅଳ୍ପ ଥିବା ଦିନ ନିଜ ରଚିତ ଭକ୍ତିଗୀତମାନ ଅନ୍ୟମାନଂକୁ ସେଇଠି ବସି ଶୁଣାଂତି। ଆଉ ଜଣେ ସେହି ଅଫିସ୍‌ରେ ଥାଂଆତି ପ୍ରଥମେ ରାଜସ୍ୱ ମୁନସିଖାନାରେ କାମ କରୁଥିଲେ। ଅନୁମତି ନେଇ ସକାଳୁଆ କଲେଜ୍ ହେଲାରୁ ସେଠାରେ

ନାଁ ଲେଖାଇଲେ। ପାଠପଢ଼ା ଆରଂଭ କଲେ। ସେ ଭଲ ଟାଇପ୍ ଜାଣିଥିଲେ। ତେଣୁ ଦରଖାସ୍ତ କରି ଟାଇପ ସେକ୍ସନକୁ ବଦଳି ହୋଇଗଲେ। ଦିନ ଭିତରେ ଯେତେ ଚିଠି ଆସେ ସେ ସବୁକୁ ଟାଇପ୍ କରିସାରି ଫୁରୁସତ୍ ପାଇଲେ ସେଇଠି ବସି ଆଣିଥିବା ବହିଖଂଡେ ପଢଂତି ବା କିଛି ଲେଖାଲେଖି କରଂତି। ସେ ଦୁହେଁ ଯେ କବି ଓ ଲେଖକ ଏହା ଜାଣିବା ସୁଯୋଗ ସେହି ସହରର ଲୋକମାନଂକୁ ମଧ୍ୟ ଜଣା ନଥାଏ। କଟକ ପରି ସଂବଲପୁରରେ ଖବର କାଗଜ ବାହାରୁ ନଥାଏ ବା ପୃଷ୍ଠପୋଷକତା ନିମିତ୍ତ ସଂପାଦକ ନଥାଆଂତି। ପରବର୍ତ୍ତୀ କାଳରେ ଅବଶ୍ୟ ସେମାନଂକର ପ୍ରତିଭା ଲୋକ ଲୋଚନକୁ ଆସିଲା ମାତ୍ର ପ୍ରଥମରୁ ତାହାର ସଦୁପଯୋଗ ହୋଇପାରିଲା ନାହିଁ। ଏହି ଦୁଇଜଣ ହେଲେ କବି ଓ ଭକ୍ତ ପ୍ରଭାକର ପାଣିଗ୍ରାହୀ ଓ ସମାଲୋଚନା ସାହିତ୍ୟର ରଥୀ ବାଳଗୋପାଳ ପୁରୋହିତ।

ପ୍ରଭାକରଂକର ଜନ୍ମ ଧମା ଥାନାର ବରଗାଁରେ ୧୯୧୯ରେ। ପିତା ରାମଚଂଦ୍ର ପାଣିଗ୍ରାହୀ ଜଣେ ସାଧାରଣ ଲୋକ ଥିଲେ। ଏଗାର ବର୍ଷ ବୟସରେ ପ୍ରଭାକର ମାଂକୁ ହରାଇଲେ। ବାପା ପୂର୍ଣ ଦାୟିତ୍ୱ ନେଇ ପାଠ ପଢ଼ାଇଲେ। ବରଗାଁ ଉଚ୍ଚ ପ୍ରାଥମିକ ସ୍କୁଲ, ପଟ୍ଟନାୟକପଡ଼ା ଏମ.ଇ.ସ୍କୁଲ (ବର୍ତ୍ତମାନ ଟାଉନ୍ ହାଇସ୍କୁଲ) ରେ ପଢ଼ାସାରି ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାସ୍ କଲେ। ଅଳ୍ପଦିନ ପରେ ଡେପୁଟି କମିସନର ଅଫିସ୍‌ରେ ୧୯୪୩ରେ ଚାକିରି ଆରଂଭ କରି ଏକତିରିଶ ବର୍ଷ ଚାକିରି ସେଇଠି କଟାଇଲେ। ବରଗାଁ ଦୂର ପଡ଼ିଲା। ପ୍ରଭାକର କଟକ ସଂବଲପୁର ରାସ୍ତା ଧାରରେ ମାନେଶ୍ୱର ପାଖ ନକ୍ସାପାଲି ଗ୍ରାମକୁ ଉଠିଆସି ସେଇଠି ଘର କରି ରହିଲେ। କବିତା ଓ ଭକ୍ତି ସଂଗୀତ ଲେଖା ତାଂକର ଅତି ଅଳ୍ପ ବୟସରୁ ସଉକ ଥିଲା। ସେ ଭକ୍ତି ସଂଗୀତ ଲେଖଂତି। ବିଭିନ୍ନ ଦେବାଦେବୀଂକର ପୂଜା ପ୍ରାର୍ଥନା ଅବସରରେ ତାକୁ ପଢ଼ି ବୋଲି ଭକ୍ତମାନଙ୍କୁ ଶୁଣାଂତି ଓ ପ୍ରଶଂସା ପାଆଂତି। ଶ୍ରୀମଦ୍ ଭଗବତ ଗୀତା ନିଜେ ପଢଂତି। ସହରରେ ନହେଲେ ନିଜ ଗାଁରେ କେଉଁଠି ମଂଦିର ଦେଖି ବସି ଲୋକମାନଂକୁ ଶୁଣାଂତି ଏବଂ ଆନଂଦ ପାଆଂତି। ଗୀତ ଗୁଡ଼ିକ ଛପାଇବାକୁ ମନ ହୁଏ, ମାତ୍ର ଅର୍ଥ କୁଆଡୁ ଆସିବ ଏହି ଚିଂତା କବିଂକର ମନକୁ ଘାରୁଥାଏ। ତାଂକ ରଚିତ ପୁସ୍ତକମାନ ହେଲା ଗୀତାମୃତ, ଭକ୍ତି ରସାବଳୀ, ଭକ୍ତି ଅର୍ଘ୍ୟ, ନୃସିଂହ ନାଥ, ଝୁଲଣ ଲୀଳାମୃତ, ବେଢ଼ା ପରିକ୍ରମା, ତୁଳସୀପ୍ରଭା ରାମାୟଣ, ମଂଦିରମାଳିନୀ ସଂବଲପୁର, ଆଧ୍ୟାତ୍ମ ରାମାୟଣ (ଅନୁବାଦ) ଇତ୍ୟାଦି। ନିଜେ ଦିପଦ କବିତା ଲେଖି ଶୁଣାଇଲେ -

"ଖେଜୁର ତଳେ ଡେରା କଲେ
କାହିଁ ପାଏବୁ ଛାଏଁ
କୁରପନ୍ ପାଖେ ସପନ୍‌ଥି ବି
ଧନ ପାଏବୁ କାଏଁ।"

ଗୀତା ଉପରେ ସରଳ ଭାଷାରେ ପଦ୍ୟ ଲେଖି ସେ 'ଗୀତାମୃତ' ରଚନା ଶେଷ କଲେ। ଏହା ଶ୍ରୋତାମାନଂକୁ ଭଲ ଲାଗିଲା। ସଂବଲପୁର ସହରରେ ପଶ୍ଚିମ ଦିଗକୁ ଗୋପାଳଜି ମଠ ଏକ ପୁରାତନ ଅନୁଷ୍ଠାନ। ଏହି ମଠର ସାହିତ୍ୟ ଓ ସମାଜ ସେବାର ପୃଷ୍ଟପୋଷକତା ନିମିତ୍ତ ବହୁ ବର୍ଷ ଧରି ସୁଖ୍ୟାତି ଅଛି। ମଠର ତତ୍‌କାଳୀନ ମହଂତ ନୀଳାଂବର ଦାସ ପ୍ରଭାକରଂକର ସଂଗୀତ ଓ ଜଣାଣ ଲୋକ ଲୋଚନକୁ ଆଣିବାରେ ସକ୍ଷମ ହେଇପାରିଥିଲେ। ସଂବଲପୁରର ଫ୍ରେଜର ପ୍ରେସରୁ 'ଉତ୍କଳସେବକ' ନାମକ ପ୍ରକାଶିତ ଏକ ପତ୍ରିକାର ମଧ୍ୟ ସେ ଉପଦେଷ୍ଟା ଓ ପୃଷ୍ଟ ପୋଷକ ଥିଲେ। ଭାଗବତ ଗୀତା ପ୍ରତି ତାଂକର ପ୍ରଗାଢ଼ ଭକ୍ତି ଥିବାରୁ ଭଗବତ ପ୍ରବଚନ କାର୍ଯକ୍ରମରେ ବହୁତ ଅର୍ଥ ବ୍ୟୟ କରୁଥିଲେ। ଗୋପାଳଜି ମଠ ପ୍ରାଂଗଣରେ ପ୍ରତି ପୂର୍ଣମୀ ଦିନ ସାହିତ୍ୟ ଓ ଧର୍ମ ଚର୍ଚା ହେଉଥିଲା। ଶେଷରେ ପ୍ରସାଦ ସେବନର ବ୍ୟବସ୍ଥା ମଧ୍ୟ କରାଯାଉଥିଲା ଓ ସହରର ବହୁ ସରକାରୀ ବେସରକାରୀ ବ୍ୟକ୍ତି ଏଥିରେ ଯୋଗ ଦେଉଥିଲେ। ଏହି ଅବସରରେ କବି ପ୍ରଭାକରଂକର ଗୀତାମୃତ ପୁସ୍ତକ ତାଂକର ଦୃଷ୍ଟି ଆକର୍ଷଣ କଲା। ଫଳରେ ଏହି ପୁସ୍ତକ ମୁଦ୍ରିତ ହେବାର ବ୍ୟୟ ସ୍ୱୟଂ ମହଂନ ମହାରାଜ ବହନ କରିଥିଲେ। ଏହା ବ୍ୟତୀତ ଅନେକ ଦେବାଦେବୀଂକର ପ୍ରାର୍ଥନା ମାହାତ୍ମ୍ୟ ଓ ଜଣାଣ ସେ ଲେଖିଥିଲେ। ସର୍ବମୋଟ୍ ଏକ ଚାଳିଶ ଖଂଡ ପୁସ୍ତକ ସେ ରଚନା କରିଥିଲେ ମଧ୍ୟ ଅର୍ଥାଭାବରୁ ସବୁଗୁଡ଼ିକ ଛପାଯାଇ ପାରିନଥିଲା ।

କବି ସର୍ବଦା କର୍ମଲିପ୍ତ ଥିଲେ। ବର୍ଷା, ଖରା, ଶୀତ, ଋତୁରେ ପାଗକୁ ଭ୍ରୁକ୍ଷେପ ନକରି ପ୍ରତିଦିନ ନକ୍‌ସାପାଲିରୁ ସାଇକେଲରେ କଚେରିକୁ ଆସି କାମସାରି ଫେରୁଥିଲେ। ଜଣେ ମିଳାପୀ, ମିଷ୍ଟଭାଷୀ ବିନମ୍ର ଓ ଦକ୍ଷ କର୍ମଚାରୀ ଭାବରେ ସେ ସମସ୍ତଂକର ପ୍ରିୟ ଥିଲେ। ତାଂକର ଭକ୍ତିସଂଗୀତମାନ ପୁସ୍ତକ ଆକାରରେ ଛପାଯାଇ ଗାଁ ଗହଳର ଲୋକମାନଂକର ଆଦର ପାଉଥିଲା ଓ କେତେକ ଲୋକ ନିଜ ପୂଜା ଖଟୁଲିରେ ପବିତ୍ର ଭାଗବତ, ଗୀତା ବା ଅନ୍ୟାନ୍ୟ ଧର୍ମ ଗ୍ରଂଥ ପରି ଏହାକୁ ରଖିବାକୁ କୁଂଠା କରୁ ନ ଥିଲେ। ତାଂକର ସମସ୍ତ କବିତା ଓ ସଂଗୀତ ଭକ୍ତି ରସାପ୍ଲୁତ ଥିଲା। ତେଣୁ ଲୋକପିୟ ହୋଇପାରିଥିଲା। ସମକାଳୀନ ଅନେକ ପ୍ରତିଷ୍ଠିତ ସାହିତ୍ୟିକ ତାଂକ ଲେଖାର ପ୍ରଶଂସା କରିଥିଲେ। ବିଭିନ୍ନ ସ୍ଥାନରୁ କୋଶଳ ଗୌରବ, କବି ସୌରଭ, ସାରଳା ସାହିତ୍ୟ ସମାଜ ସମ୍ମାନ ଆଦି ଅନେକ ଆନୁଷ୍ଠାନିକ ମାନପତ୍ର ତାଂକୁ ଦିଆଯାଇଥିଲା। ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଂକୁ ତାମ୍ର ଫଳକ ଦ୍ୱାରା ସମ୍ମାନିତ କରିଥିଲେ ଓ ସରକାରଂକର ସଂସ୍କୃତି ବିଭାଗ ତାଂକୁ ଆର୍ଥିକ ବୃତ୍ତି ଦେଉଥିଲେ। ସଂବଲପୁର ଆକାଶବାଣୀ ପ୍ରତିଷ୍ଠିତ ହେଲା ଉତ୍ତାରେ ସେଠାରୁ ତାଂକର କବିତା ଓ ଭକ୍ତି ସଂଗୀତମାନ ପ୍ରସାର ହେବାକୁ ଲାଗିଲା।

ଆକାଶବାଣୀ ଓ ଦୂରଦର୍ଶନର ଅନେକଗୁଡ଼ିଏ କାର୍ଯକ୍ରମରେ ସେ ଅଂଶ ଗ୍ରହଣ କରିଥିଲେ। ଶ୍ରୀକ୍ଷେତ୍ରରେ ୧୯୯୬ରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଂକର ନବକଳେବର ହେଲା। ଏହି ଅବସରରେ ଓଡ଼ିଶା ସରକାରଂକର ସୂଚନା ଓ ପ୍ରଚାର ବିଭାଗ ଜଗନ୍ନାଥଂକର ଜଣାଣ ସଂବଳିତ ଆଠଗୋଟି କ୍ୟାସେଟ୍ ତିଆରି କରିଥିଲେ। ଓଡ଼ିଶାର ବିଭିନ୍ନ ଅଂଚଳରୁ ଓ ବିଭିନ୍ନ ଯୁଗର ପ୍ରତିଷ୍ଠିତ କବିମାନଂକର ଜଣାଣ ଏଥିରେ ସ୍ଥାନ ପାଇଥିଲା। ପ୍ରଭାକରଂକର ଦୁଇଗୋଟି ଗୀତ 'ଆଗରେ ବଳିଆ ଭାଇ' ଓ 'ବଡ଼ ଦେଉଳେ ବିଜେ' ଫକୀର ମୋହନ ପଟ୍ଟନାୟକଂକ ସ୍ୱରରେ ଗାନ କରାଯାଇ ଏଥିରେ ସ୍ଥାନ ପାଇଅଛି ଓ ଏହା କବିଂକର ଧର୍ମ ଚେତନା ଓ ସଂଗୀତ ରଚନାର ସ୍ୱୀକୃତି ବୋଲି ଧରାଯିବ। ୧୯୯୭ ନଭେଂବର ୧୬ ତାରିଖ ସଂଧ୍ୟାରେ ମାନେଶ୍ୱର ହାଇସ୍କୁଲରେ ଗୋଟିଏ ଉତ୍ସବରେ ଯୋଗଦେଇ ନିଜର ଭାଷଣ ଆରଂଭ କରିବା ସମୟରେ କବି ଢ଼ଳି ପଡ଼ିଲେ ଓ ଚିରଦିନ ପାଇଁ ଚକ୍ଷୁ ମୁଦ୍ରିତ କଲେ। ଜୀବିତ ଅବସ୍ଥାରେ ପ୍ରଚାର ଅଭାବରୁ କବି ଯଥୋଚିତ ମର୍ଯାଦା ଓ ଲୋକପ୍ରିୟତା ପାଇପାରିଲେ ନାହିଁ।

ବାଳ ଗୋପାଳ ମଧ୍ୟ ଜିଲ୍ଲା କିଲଟରି ଅଫିସ୍‌ର ଜଣେ କର୍ମନିଷ୍ଠ ବିନମ୍ର ଓ ସରଳ ସ୍ୱଭାବର କର୍ମଚାରୀ ଥିଲେ। ତାଂକର ଜନ୍ମ ସଂବଲପୁର ସହରର ଝାଡୁଆପଡ଼ାରେ ୧୯୨୮ରେ ବାଲ୍ୟକାଳରେ ସେ ନିଜ ପିତାଂକୁ ହରାଇଥିଲେ। ନାନା ଝଡ଼ ଝଂଜାର ସମ୍ମୁଖୀନ ହୋଇ ସେ ମାଟ୍ରିକ ପାସ୍ କରି ଡେପୁଟି କମିସନର୍ ଅଫିସ୍‌ରେ କିରାଣି ଚାକିରି ଆରଂଭ କଲେ। କର୍ମରତ ଅବସ୍ଥାରେ ସେ ବି.ଏ. ପାସ୍ କଲେ। କର୍ମ ବ୍ୟସ୍ତ ଥାଇ ମଧ୍ୟ ପାଠପଢ଼ା ସମୟରେ ତାଂକର ପ୍ରତିଭା ବିକଶିତ ହୋଇଥିଲା। ବଂଧୁଂକ ପ୍ରକାଶ ପାଉଥିବା ହାତ ଲେଖା 'କୁଂକୁମ' ପତ୍ରିକାରେ ତାଂକର ପ୍ରଥମ ଗଳ୍ପ ପ୍ରକାଶ ପାଇଥିଲା। କଲେଜ ମେଗାଜିନ୍‌ରେ ସେ ଲେଖୁଥିଲେ। ଅଧ୍ୟକ୍ଷ ଡକ୍ଟର ମାୟାଧର ମାନସିଂହଂକଠାରୁ ପ୍ରେରଣା ପାଇ ସାହିତ୍ୟର ବିଭିନ୍ନ ଦିଗରେ ଲେଖା ଆରଂଭ କରିଥିଲେ। 'ସେବା', 'ଚତୁରଂଗ', 'ମେହର ପ୍ରଦୀପ' ଆଦି ସାହିତ୍ୟ ପତ୍ରିକାରେ ତାଂକ ରଚନା ପ୍ରକାଶିତ ହେଉଥିଲା। ଅନେକ ଗଳ୍ପ ପ୍ରବଂଧ ଓ ଶତାଧିକ କ୍ଷୁଦ୍ର କବିତା ସେ ଲେଖିଥିଲେ। ଅତି ଅଳ୍ପ ତାହା ମଧ୍ୟରୁ ପ୍ରକାଶ ପାଉଥିଲା। ଅନେକ ରକ୍ଷଣାବେକ୍ଷଣ ଅଭାବରୁ ନଷ୍ଟ ହୋଇଗଲା ତଥାପି ଜୀବନ ଦର୍ଶନ, ପ୍ରକୃତିର ଚିତ୍ର, ସମାଜର ସମସ୍ୟା ଆଦିକୁ ପାଥେୟ କରି ତାଂକ ଲିଖିତ ୪୭ ଗୋଟି କବିତାର ଏକ ସଂକଳନ 'ପ୍ରତିଧ୍ୱନି' ନାମରେ ପ୍ରକାଶ ପାଇଥିଲା। ସଂବଲପୁରୀ ଭାଷା ଓ ସାହିତ୍ୟ ପ୍ରତି ତାଂକର ବିଶେଷ ଅନୁରାଗ ଥିବାରୁ ସ୍ଥାନୀୟ ଲୌକିକ ଭାଷାରେ ପ୍ରକାଶିତ ପ୍ରଥମ ସାହିତ୍ୟ ପତ୍ରିକାର ସଂପାଦକ ମଂଡଳୀରେ ସେ ସ୍ଥାନ ପାଇଥିଲେ।

ଅନେକ ସାହିତ୍ୟ ଅନୁଷ୍ଠାନ ସହିତ ସଂପୃକ୍ତ ଥାଇ ସ୍ଥାନୀୟ ଯୁବଲେଖକମାନଂକୁ ସାହିତ୍ୟ ଚର୍ଚ୍ଚା ପାଇଁ ସେ ପ୍ରେରଣା ଯୋଗାଉଥିଲେ। ବାଳଗୋପାଳ ସମାଲୋଚନା ସାହିତ୍ୟର ଜଣେ ମାର୍ମିକ ଲେଖକ ଥିଲେ। ସାହିତ୍ୟ ସମାଲୋଚନା ଏକ କଠିନ କାର୍ଯ୍ୟ। ଏଥିପାଇଁ ଗଭୀର ଅଧ୍ୟୟନ, ନିରପେକ୍ଷତା ଓ ନିର୍ଭୀକତା ଆବଶ୍ୟକ। ସାଧାରଣତଃ ଅତି ଅଳ୍ପ ସାହିତ୍ୟିକ ଏହି ଗୁରୁତ୍ୱପୂର୍ଣ ବିଭାଗରେ ନିଜର କୃତି ଦେଖାଇଥାଂତି। ମାତ୍ର ବାଳଗୋପାଳଂକର ସମାଲୋଚନା ପ୍ରବଂଧ ମାନ ଗଭୀର ଅନୁଶୀଳନ ଓ ନିରପେକ୍ଷତା ଦୃଷ୍ଟିରୁ ବୟୋଜ୍ୟେଷ୍ଠ ଲେଖକମାନଂକର ମଧ୍ୟ ଦୃଷ୍ଟି ଆକର୍ଷଣ କରିବାକୁ ସମର୍ଥ ହୋଇଥିଲା। କବି ବିନୋଦ ନାୟକ, କବି ଉମାଶଂକର ପଂଡାଂକର କବିତାର ସମାଲୋଚନା ତାଂକୁ ଉଚ୍ଚ ଦରର ସମାଲୋଚକ ଭାବରେ ପ୍ରତିଷ୍ଠିତ କରିପାରିଥିଲା। ମାତ୍ର ଅଣଚାଶ ବର୍ଷ ବୟସରେ ୧୯୭୬ରେ ତାଂକର ଅକାଳ ବିୟୋଗରେ ଓଡ଼ିଆ ସମାଲୋଚନା ସାହିତ୍ୟ ଜଗତରେ ଅଶେଷ କ୍ଷତି ଘଟିଲା। କବି ପ୍ରଭାକରଂକ ପରି ସମାଲୋଚକ ବାଳଗୋପାଳ ମଧ୍ୟ ନିଜର କର୍ମ ନିଷ୍ଠା ଓ ପ୍ରତିଭା ସତ୍ତ୍ୱେ ଜିଲ୍ଲା ବାହାରେ ସୁପରିଚିତ ହୋଇପାରିଲେ ନାହିଁ।





# ବିପ୍ଳବୀ ବିଧାୟକ

# ପ୍ରସନ୍ନ କୁମାର ପଂଡା

୧୯୫୦ ମସିହା । ସଂବଲପୁର ମୁନସଫ ଅଦାଲତରେ ଗୋଟିଏ ଚାଂଚଲ୍ୟକର ମକଦ୍ଦମାର ଶୁଣାଣି ଚାଲିଥାଏ । ମକଦ୍ଦମା ଦାୟର କରିଥାଆଂତି ସଂବଲପୁରର ଜଣେ ଓକିଲ ଓ ବିଧାୟକ ଶ୍ରଦ୍ଧାକର ସୂପକାର । ବିରୁଦ୍ଧ ପକ୍ଷ ପ୍ରତିବାଦୀ ଓରିଏଂଟ କାଗଜ କଳ ବ୍ରଜରାଜ ନଗର କର୍ତ୍ତୃପକ୍ଷ । ଓଡ଼ିଶାରେ ଶିଳ୍ପ ପ୍ରସାର ଦିଗରେ ପ୍ରଥମ କଂଗ୍ରେସ ମଂତ୍ରୀମଂଡଳ ବିରଳା କଂପାନୀକୁ ଓଡ଼ିଶା ଜଂଗଲର ବାଉଁଶ ବ୍ୟବହାର କରି କାଗଜ ତିଆରି ପାଇଁ ଅନୁମତି ଦେଲେ । ଫଳରେ ଇବ୍‌ନଦୀ କୂଳରେ ଝାରସୁଗୁଡା ନିକଟରେ ଗୋଟିଏ ନୂଆ ସହର ଗଢ଼ିଉଠିଲା – ବ୍ରଜରାଜନଗର । କାଗଜ କଳରୁ ନିର୍ଗତ ମଇଳା ପାଣିସବୁ ଇବ୍ ନଦୀକୁ ଛଡ଼ା ଗଲା । ତାହା ଆସି ମହାନଦୀରେ ମିଶିଲା । ଏହି କଳର କଷ୍ଟିକ ସୋଡ଼ାଯୁକ୍ତ ଆବର୍ଜନାଜଳ ବିଶୋଧିତ ହୋଇ ନଥିବାରୁ ଏହାଦ୍ୱାରା ନଦୀଜଳ ଦୂଷିତ ହେଲା । ସଂବଲପୁର ସହର ଓ ମହାନଦୀ – ଇବ୍‌ର ଦୁଇ କୂଳ ଗାଁଗୁଡ଼ିକରେ ନଦୀଜଳ ସବୁପ୍ରକାର କାର୍ଯରେ ବ୍ୟବହୃତ ହେଉଥିଲା । ଏହି ଦୂଷିତ ଜଳ ପାନକରି କାନ୍ଧୁ କୁଂଡିଆ ସହିତ ନାନା ପ୍ରକାର

ପେଟରୋଗ ମଧ୍ୟ ଚାରିଆଡ଼େ ଦେଖାଗଲା । ବିରଳା କଂପାନୀର ଅଗାଧ ପ୍ରତିପତ୍ତି ଓ ସଂପତ୍ତି । କଂଗ୍ରେସର ସେମାନେ ବଡ଼ ପୃଷ୍ଟପୋଷକ ଥିଲେ । ଜିଲ୍ଲା ଶାସନ ଓ ସଂବଲପୁରର କମିସନର୍ ସେମାନଂକ ସପକ୍ଷରେ । ତେଣୁ ଆଡ଼ଭୋକେଟ୍ ଜେନେରାଲଂକର ଅନୁମତି ନିଆଯାଇ ମୁନସଫ୍ କୋଟରେ ମକଦ୍ଦମା କରି ପ୍ରାର୍ଥନା କରାଗଲା ଯେ କାଗଜ କଳ ଉପରେ ନିର୍ଗତ ମଇଳାଜଳ ନଦୀରେ ଛାଡ଼ିବାକୁ ନିଷେଧାଜ୍ଞା ଦିଆଯାଉ । ମକଦ୍ଦମା ଦାୟର ସରକାରୀ ଅନୁମତି ସାପେକ୍ଷ । ଅନ୍ୟ କେହି ସରକାରୀ ଓକିଲ ଏ ପ୍ରକାର ଅନୁମତି ଦେବାକୁ କୁଂଠା କରିଥାଆଂତେ । ମାତ୍ର ତତ୍‌କାଳୀନ ଆଡ଼ଭୋକେଟ୍ ଜେନେରାଲ ସ୍ୱାମୀ ବିଚିତ୍ରାନଂଦ ଦାସ ଅତ୍ୟଂତ ଧର୍ମପରାୟଣ ଓ କର୍ତବ୍ୟନିଷ୍ଠ ଥିଲେ । ବିଧାୟକ ଶ୍ରଦ୍ଧାକର ବାବୁଂକ ପ୍ରତି ସଦିଚ୍ଛା ଜଣାଇ ସେ ଅନୁମତି ଦେଲେ । ବିରଳା କର୍ତୃପକ୍ଷ ସଂବଲପୁର ସରକାରୀ ଓକିଲ ଗୌରିଶଂକର ମିଶ୍ରଂକୁ ଦୈନିକ ଶହେ ଟଂକା ଫିସ୍‌ରେ ନିଯୁକ୍ତ କରିବା ସହିତ ହଜାର ଟଂକା ଫିଜ୍ ଦେଇ କଲିକତାରୁ ଦୁଇଜଣ ଆଇନଜୀବୀ ବାରିଷ୍ଟର କାଳୀପ୍ରସାଦ ଖଇତାନ ଓ ଏସ.କେ. ବୋଷଂକୁ ମକଦ୍ଦମାରେ ଲଗାଇଲେ । ସେମାନେ ମଧ୍ୟ ମାସାଧିକ କାଳ ଫିସ୍ ନେଇ ରହିଲେ । ବାଦୀ ପକ୍ଷର ସାକ୍ଷ୍ୟରେ ନଦୀ ଜଳ ଦୂଷିତ ବୋଲି ମୌଖିକ ଓ ଲିଖିତ ସାକ୍ଷ୍ୟ ପ୍ରମାଣ ଦିଆଗଲା । ତା ପରେ ପ୍ରତିବାଦୀ କାଗଜକଳ ତରଫରୁ ସାକ୍ଷ୍ୟ ନିଆଗଲା । ଜଣେ ସାକ୍ଷୀ ନଦୀକୂଳ ଶିରିପୁରା ଗାଁର । ଚିତା ଚଇତନ କରି କେତେସରି ମୋଟା ତୁଳସୀମାଳି ବେକରେ ବାଂଧି ସେ ସାକ୍ଷ୍ୟ ଦେଉଥାଆଂତି । ସେ କହୁଥାଆଂତି ଜଳ ସଂପୂର୍ଣ ସ୍ୱଚ୍ଛ, ସଂପୂର୍ଣ ଭାବରେ ନିରାପଦ ଓ ସେମାନେ ତାହା ସ୍ୱଚ୍ଛଂଦରେ ବ୍ୟବହାର କରୁଛଂତି । କଲିକତା ବାରିଷ୍ଟର ଓଡ଼ିଆରେସାକ୍ଷୀ ବୟାନ କରାଇ ପାରିବେ ନାହିଁ । ତେଣୁ ଗୌରୀଶଂକର ମିଶ୍ର ତାଂକୁ ପ୍ରଶ୍ନ ପଚାରି ଉତ୍ତର କାଢୁଥାଂତି । ସାକ୍ଷୀ ଧର୍ମ ପରାୟଣ ଲୋକ । ସତ୍ୟନିଷ୍ଠ ବୋଲି ସମସ୍ତେ ଜାଣୁଥାଂତି । ସେ କହିଯାଉଥାଂତି ନଦୀ ପାଣି କାଗଜ କଳର ଆବର୍ଜନା ପଡ଼ିବା ସତ୍ୱେ ନିର୍ମଳ । ଜଣେ ଯୁବକ ଦର୍ଶକ ବସିଥିଲେ । ଚଟକରି ଉଠି ପଡ଼ିଲେ । ଗୋଡ଼ରୁ ପଟେ ଚଟି ବାହାର କରି ସାକ୍ଷୀଂକୁ ଲକ୍ଷ୍ୟ କରି ଫୋପାଡିଲେ । ବଡ଼ ପାଟିରେ ଶୁଣାଇଲେ ''ଶୁଅରକା ବଚ୍ଚା ଝୁଟ୍ ବୋଲତା ହେ'' । ଅଦାଲତରେ ଚାଂଚଲ୍ୟ ଖେଳିଗଲା । କଲିକତାର ବାରିଷ୍ଟରମାନେ ନିଜକୁ ବିପନ୍ନ ମଣିଲେ । ମୁନ୍‌ସଫ୍ ଖଗେଶ୍ୱର ମହାଂତି କିଛି ସମୟ ଶୁଣାଣି ବଂଦ କରି ବିଘ୍ନକାରୀ ବ୍ୟକ୍ତି ଜଣକୁ ମୁଦାଲା ଗଡ଼ାରେ ପୁରାଇଲେ । ସେ ଥିଲେ ସରକାରୀ ଓକିଲ ଗୌରୀଶଂକର ମିଶ୍ରଂକର ପିଉସୀ ପୁଅ ଭାଇ । ରଂପେଲାର ପ୍ରସିଦ୍ଧ ପଂଡା ଗୋଂତିଆଂକ ପୁଅ ଓ ବଂଧ ବିରୋଧୀ ଆଂଦୋଳନର ଜଣେ ଉତ୍ସାହୀ କର୍ମୀ । ମିଛ ସାକ୍ଷ୍ୟ ଅସହ୍ୟ ହେବାରୁ ସେ ନିଜେ ମାନସିକ ଭାରସାମ୍ୟ ହରାଇଲେ । ମୁନସଫ ଖଗେଶ୍ୱର ମହାଂତି ତାଂକୁ ଭାରତୀୟ ଦଂଡବିଧି ଆଇନର ୨୨୮ ଦଫା ଅନୁସାରେ ଦଂଡିତ କରି ୫୦ ଟଂକା ଜୋରିମାନା କଲେ । ମୁଦାଲା ପ୍ରସନ୍ନ କୁମାର ପଂଡାଂକର ଆତ୍ମ

ସମର୍ଥନରେ କିଛି କହିବାକୁ ନଥିଲା । ମାତ୍ର ଏହି ସାମାନ୍ୟ ଘଟଣା ତାଂକ ଚରିତ୍ରର ବିଶେଷତ୍ୱ ଦେଖାଇଲା । ତାଂକ ଆଇନ ବିରୁଦ୍ଧ କାର୍ଯ ସତ୍ତ୍ୱେ ଏହା ତାକୁ ମର୍ଯଦାବଂତ ଓ ଲୋକପ୍ରିୟ କରିପାରିଥିଲା । ଅଦାଲତ ନିଷେଧାଜ୍ଞା ଦେଲେ, ଜନସାଧାରଣଂକର ଜୟ ହେଲା ।

ପ୍ରସନ୍ନ କୁମାରଂକ ଜନ୍ମ ୧୯୧୮ରେ । ସଂବଲପୁରରେ ରଂପେଲା ଏକ ସମୃଦ୍ଧିଶାଳୀ ଗ୍ରାମ ଥିଲା । ଏହି ଗ୍ରାମର ଗୌଂତିଆ ଲୋକନାଥ ଗଡତିଆ (ପଂଡା) ଇଂରେଜ ଶାସନ ବିରୋଧରେ ବୀର ସୁରେଂଦ୍ର ସାଏଂକର ଦୃଢ଼ ସମର୍ଥକ ଥିଲେ । ପ୍ରସନ୍ନ କୁମାରଂକ ପିତା ସଚ୍ଚିଦାନଂଦ ପଂଡା ଓ ତାଂକର ଜେଜେବାପା ପଦ୍ମଲୋଚନ ପଂଡା ବିପୁଳ ବିଭବର ଅଧିକାରୀ ଥାଇ ମଧ୍ୟ ମହିମା ଧର୍ମୀ ଭୀମଭୋଇ ସନ୍ୟାସୀମାନଂକ ଦ୍ୱାରା ପ୍ରଭାବିତ ହୋଇ ସନ୍ୟାସୀ ଜୀବନ ଯାପନ କରୁଥିଲେ । ଅଲେଖ ସନ୍ୟାସୀମାନେ ପ୍ରତ୍ୟହ ତାଂକ ଘରେ ଭିକ୍ଷା (ଭୋଜନ) କରିବାର ପରଂପରା ସେ ସୃଷ୍ଟି କରିଥିଲେ । ପ୍ରସନ୍ନ କୁମାରଂକ ବଡ଼ଭାଇ ଚକ୍ରଧର ପଂଡା ଅଢ଼ାପଢ଼ା ଗୌଂତିଆ ଓ ସମାଜସେବୀ ଭାବରେ, ପରିଚିତଥିଲେ । ଅଲେଖ ଧର୍ମର ସନ୍ୟାସୀମାନଂକ ଦ୍ୱାରା, ପ୍ରସନ୍ନ ପିଲାଦିନୁ ପ୍ରଭାବିତ ହେଲେ । ସେମାନଂକର ଧୂନି ଓ ଭଜନ ତାଂକୁ ଭଲ ଲାଗୁଥିଲେ । ସେମାନଂକ ସାଂଗରେ ବସଉଠ କରି ସେ ସେମାନଂକର ଭଜନ ଶୁଣୁଥିଲେ ଓ ଗାଉଥିଲେ । ଭୀମ ଭୋଇଂକର ପ୍ରସିଦ୍ଧ ଭଜନ :-

''ପ୍ରାଣୀଂକ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ''

ଯାହା ସେମାନେ ପ୍ରତିଦିନ ଧୂନି ସମୟରେ ବୋଲଂତି ତାହା ତାଂକ ମନକୁ ଛୁଇଁଗଲା । ସେଇଦିନୁଁ ସେ ଦୁଃଖୀ ଗରିବଂକର ସେବାକୁ ସବୁଠାରୁ ବଡ଼ ପୁଣ୍ୟ କାର୍ଯ ବୋଲି ଧରି ନେଲେ । ଶିକ୍ଷା ଦିଗରେ ରଂପେଲାର ମଧ୍ୟ ସୁନାମ ଥିଲା । ସଂବଲପୁର ଜିଲ୍ଲାର ପ୍ରଥମ ଉଚ୍ଚଶିକ୍ଷା ପ୍ରାପ୍ତ କେତେଜଣଂକ ମଧ୍ୟରେ ରଂପେଲ । ବିଶେଷ କରି ପଂଡା ପରିବାରର ଯୁବକମାନେ ଥିଲେ । ଜିଲ୍ଲାରେ ଗୋଟିଏ ହାଇସ୍କୁଲ ସଂବଲପୁର ସହରରେ ଥିଲା । ପରେ ବରଗଡ଼ରେ ଜର୍ଜ ହାଇସ୍କୁଲ ପ୍ରତିଷ୍ଠା କରାଗଲା । ସଦର ଉପଖଂଡରେ ଥିବା ୪/୫ ଟି ମଧ୍ୟ ଇଂରାଜି ବିଦ୍ୟାଳୟ ମଧ୍ୟରୁ ଗୋଟିଏ ରଂପେଲାରେ ଥିଲା । ସେଠାରୁ ସେ ମାଇନର ପାସ କରି ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ । ରଂପେଲାରେ ଛାତ୍ର ଥିବା ସମୟରେ ଜଣେ ସାଧୁ ତାଂକ ଗାଁକୁ ଆସିଥିଲେ । ସେ ବିଶେଷ ଲୋକପ୍ରିୟତା ଅର୍ଜନ କଲେ । ଗୋଟିଏ ଆଶ୍ରମ କରି ଗାଁରେ ରହିଲେ । ଆଶ୍ରମର ନାଁ ଦେଲେ ଗୃପ ଆଶ୍ରମ । ଆଶ୍ରମରେ ଆଧ୍ୟାତ୍ମିକ ଆଲୋଚନା କରାଯାଏ, ଧର୍ମଶାସ୍ତ୍ର ପଢ଼ାଯାଏ । ତା ଛଡ଼ା ସଚେତନ ବ୍ୟକ୍ତିମାନଂକୁ ଧରି ସେଠାରେ ଦେଶ ବିଦେଶର ଖବର, ବିଲାତି ଶାସନରେ ଦେଶର ଦୁର୍ଗତି ଆଦି ଆଲୋଚନା

କରାଯାଏ। ପ୍ରସନ୍ନ ନିୟମିତ ଭାବରେ ଏଥିରେ ଯୋଗ ଦିଅନ୍ତି। ବିଭିନ୍ନ ଆଲୋଚନାର ଆୟୋଜନ ମଧ୍ୟ କରଂତି। ସନ୍ୟାସୀଂକ ପ୍ରଭାବ ମଧ୍ୟ ତାଂକ ଉପରେ ପଡ଼ିଲା। ସଂବଲପୁରରେ ତାଂକର ନିଜର ଘର ଥିଲେ ମଧ୍ୟ ବାପା ତାଂକୁ ହଷ୍ଟେଲରେ ରଖିଲେ। ପୁସ୍ତକ ବିଦ୍ୟା ବ୍ୟତୀତ ଚିତ୍ରକଳା ଓ ଚାରୁକଳା ପ୍ରତି ତାଂକର ବିଶେଷ ଆଗ୍ରହ ଥାଏ। ବିଧିବଦ୍ଧ ଶିକ୍ଷା ନ ପାଇ ମଧ୍ୟ ସେ ଲୋକଂକର ଚିତ୍ର (ପୋଟ୍ରେଟ୍) ଆଂକୁଥିଲେ ଓ ଏହା ସମସ୍ତଂକ ମନକୁ ପାଉଥିଲା ଏହି ସମୟରେ ତାଂକର ସହପାଠୀ ଥିଲେ ବିଖ୍ୟାତ ଚିତ୍ର ଶିଳ୍ପୀ ମୁରଲୀଧର ଟାଲି। ସେ ଚିତ୍ରକଳା ଶିକ୍ଷା ପାଇଁ କଲିକତା ଚାଲିଗଲେ। ତେଣୁ ମାଟ୍ରିକ ପରୀକ୍ଷା ଦେବା ଆଗରୁ ପ୍ରସନ୍ନ ମଧ୍ୟ ଜିଲ୍ଲା ସ୍କୁଲ୍ ପାଠ ପଢ଼ାରେ ଡ଼ୋରି ବାଂଧି କଲିକତା ଆର୍ଟ ସ୍କୁଲରେ ୧୯୩୯ ମସିହାରେ ନାମ ଲେଖାଇଲେ। ଜିଲ୍ଲା ସ୍କୁଲର ଛାତ୍ରଥିବାବେଳେ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ସାଂବାଦିକ ନୃସିଂହ ଗୁରୁ ଓ ପଂଡିତ ଲକ୍ଷ୍ମୀ ନାରାୟଣ ମିଶ୍ରଂକ ସଂପର୍କରେ ଆସି ସେ ରାଜନୀତି ପ୍ରତି ଆକୃଷ୍ଟ ହେଲେ। ନିୟମିତ ଖଦଡ଼ ପିଂଧିବା ଆରମ୍ଭ କଲେ। କଲିକତା ଯାଇ ସେଠାରେ ସେ ୧୯୩୯ ରୁ ୧୯୪୬ ପର୍ଯ୍ୟଂତ ଦୀର୍ଘ ସାତ ବର୍ଷ କଟାଇଲେ। ସେ ଏହି ସମୟରେ ୨ୟ ବିଶ୍ୱଯୁଦ୍ଧ ଭାରତ ଛାଡ଼ ଆଂଦୋଳନ, ପଶ୍ଚିମ ବଂଗର ପ୍ରଳୟଂକରୀ ଦୁର୍ଭିକ୍ଷ, ମୁସଲିମ୍ ଲିଗ୍‌ର ପ୍ରତ୍ୟକ୍ଷ ସଂଗ୍ରାମରେ ସାଂପ୍ରଦାୟିକ ଦଂଗା, ହିଂଦୁ ଗଣହତ୍ୟା, ମେଟିଆ ବୁରୁଜରେ ନିରୀହ ଓଡ଼ିଆ ମିଲ୍ ମଜୁରିଆଂକର ନୃଶଂସ ହତ୍ୟା ଦେଖିଲେ। ଖାଦ୍ୟ ଦ୍ରବ୍ୟ ଅଭାବରୁ ମୃତ୍ୟୁ, କଂଟ୍ରୋଲ ଦୋକାନ ଜରିଆରେ ଅତିଆବଶ୍ୟକ ଦ୍ରବ୍ୟର ବିକ୍ରୟ ଅବ୍ୟବସ୍ଥା, ଏହାର କଳାବଜାର ଓ ଶତ ଶତ ଲୋକଂକର ଧାଡ଼ିଂବାଂଧି ଏହି ଜିନିଷ ସଂଗ୍ରହ ପ୍ରଚେଷ୍ଟା, କୃଷକ ଶ୍ରମିକମାନେ ବିଭିନ୍ନ ରାଜନୈତିକ ଦଳ ଦ୍ୱାରା ସଂଗଠିତ ଓ ଦାବିପୂରଣ ନିମିତ୍ତ ରାସ୍ତାରେ ଧ୍ୱନି ଦେଇ ଶୋଭା ଯାତ୍ରା କରିବା ସେ ଦେଖିଲେ। ଯୁଦ୍ଧର ବିଭୀଷିକା, କଲିକତା ସହର ଉପରେ ଜାପାନୀ ବୋମା ବିଧ୍ୱଂସୀ ବିମାନର ଆକ୍ରମଣ, ବ୍ରହ୍ମଦେଶ ପତନ ସହିତ ବଂଗଳା ପ୍ରଦେଶ ସୀମାଂତ ପର୍ଯ୍ୟଂତ ମାଡ଼ି ଆସୁଥିବା ଜାପାନୀ ସୈନ୍ୟ ବାହିନୀର ଅଗ୍ରଗତି ଓ ଗତିରୋଧ, ଭାରତର ସ୍ୱାଧୀନତା ସଂଗ୍ରାମରେ ବ୍ୟକ୍ତିଗତ ସତ୍ୟାଗ୍ରହ, କ୍ୟାବିନେଟ୍ ମିସନର ଆଗମନ। ଭାରତଛାଡ଼ ଆଂଦୋଳନରେ ହିଂସାକାଂଡ ଓ ନେତାମାନଂକର କାରାଗାର ନିକ୍ଷେପ ସେ କଲିକତା ସହରରୁ ଲକ୍ଷ୍ୟ କଲେ। ଆଗରୁ ରାଜନୀତିର ସେ ଏକ ସଚେତନ ଯୁବକ ଥିଲେ। ଏହି ସମୟରେ ବିଭିନ୍ନ ଚେତନଶୀଳ ବୁଦ୍ଧିଜୀବୀ ଧର୍ମ ସଂସ୍କାରକ ମାନଂକର ଗ୍ରଂଥମାନ ପଢ଼ି ସେମାନଂକର ଚିଂତାଧାରା ଅନୁଶୀଳନ କରିବାର ତାଂକୁ ସୁଯୋଗ ମିଳିଗଲା। ସବୁ ପଢ଼ି ସବୁ ଦେଖି ସେ ଶେଷରେ ଅନୁଭବ କଲେ, ମନୁଷ୍ୟ ସମାଜର ଶୋଷଣ ଲୁଂଠନ ଅସମାନତା ଦୂର କରିପାରିବ ଏକା ସମାଜବାଦ। ବିଭିନ୍ନ ବର୍ଗର ଲୋକମାନଂକ ସହିତ ପ୍ରତ୍ୟକ୍ଷ ସଂପର୍କ, ସେମାନଂକର ଜୀବନ ଧାରା ଚେତନା ଓ ସଂସ୍କୃତି ଅନୁଧ୍ୟାନ ଉଦ୍ଦେଶ୍ୟରେ ସେ ବହୁସ୍ଥାନ ଭ୍ରମଣ କଲେ। ବହୁ ଲୋକଂକର ସଂସ୍ପର୍ଶରେ ଆସି ନିଜ ଜୀବନାଦର୍ଶ ଓ ଚିଂତାଧାରାକୁ ଶାଣିତ କଲେ।

ତାପରେ ଦେଶ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବରୁ ସେ ଫେରିଆସିଲେ ରଂପେଲାକୁ। ନିଜ ରାଜନୈତିକ ଚିନ୍ତାଧାରାକୁ ସମାଜ ସେବାରେପ୍ରୟୋଗ କରିବାରେ ଲାଗିଲେ। ଓଡ଼ିଶାରେ ବାମପଂଥୀ ବ୍ୟବସ୍ଥାସଭା କାର୍ଯକ୍ରମ ସହିତ ସେ ପ୍ରଥମରୁ ଜଡ଼ିତ ରହିଲେ। ନିଜର ବ୍ୟକ୍ତିଗତ ସ୍ୱାର୍ଥ ଭୁଲିଗଲେ। ବିବାହ ବଂଧନରେ ମଧ୍ୟ ଛଂଦି ହେଲେ ନାହିଁ। ବ୍ୟବସ୍ଥାପକ ଭାବରେ ଛଅଥର ନିର୍ବାଚିତ ହୋଇ ନିଜର ଅସାଧାରଣ ଲୋକପ୍ରିୟତା ପ୍ରମାଣିତ କଲେ।

ତାଂକର ରାଜନୀତି ଆରଂଭ ହୁଏ ହୀରାକୁଦ ବଂଧ ବିରୋଧୀ ଆଂଦୋଳନରୁ। ହୀରାକୁଦ ବଂଧ ନିର୍ମାଣରେ କ୍ଷତିଗ୍ରସ୍ତ ପ୍ରଜାମାନଂକର ଜମିର କ୍ଷତିପୂରଣ ଓ ଥଇଥାନ ବ୍ୟବସ୍ଥା ତାଂକର ସଦା ଧ୍ୟେୟ ହୋଇ ରହିଲା। ସେ ସାଇକେଲ ଖଂଡେ ଧରି ବାହାରି ପଡ଼ିଲେ। ଗାଁକୁ ଗାଁ ବୁଲିଲେ। କ୍ଷତିଗ୍ରସ୍ତ ପରିବାରମାନଂକର ବିସ୍ତୃତ ବିବରଣୀ ସଂଗ୍ରହ କଲେ। ବିଧାନ ସଭାରେ ବକ୍ତୃତା ଦେଇ ସରକାରଂକର ଦୋଷତ୍ରୁଟି ସହିତ କ୍ଷତିପୂରଣର ସ୍ୱଳ୍ପତା ଦେଖାଇ ସେମାନଂକୁ ଅପ୍ରସ୍ତୁତ କଲେ। ସରକାର ନିଜ ଦୃଷ୍ଟି ଭଂଗୀ ପରିବର୍ତ୍ତନ କଲେ। ବିଭିନ୍ନ କ୍ଷେତ୍ରରେ କ୍ଷତିପୂରଣର ପରିମାଣ ମଧ୍ୟ ସେ ଯୁକ୍ତିଯୁକ୍ତ ଭାବରେ ଧାର୍ଯ କରିବାର ସୁଯୋଗ ନେଲେ। ଯାଂକର ଚଉକିଦାରମାନେ ସରକାରଂକ କାମ କରୁଥିଲେ। ମିଳିଥିବା ଜାଗିରି ଜମିରୁ ସେମାନଂକୁ ବିନା କ୍ଷତିପୂରଣରେ ବେଦଖଲ କରାଗଲା। ସେ ଏହା ବିରୋଧରେ କର୍ତ୍ତୃପକ୍ଷଂକୁ ପ୍ରତିବାଦ ଜଣାଇ ଉଚିତ୍ କ୍ଷତିପୂରଣର ବ୍ୟବସ୍ଥା କଲେ। ହୀରାକୁଦ ବଂଧର ଉଚ୍ଚତା ୬୩୦ ଫୁଟ। ପାଣି ଭଂଡାର ୬୩୦ ଫୁଟ୍ ଯାଏ ଉଠିବ। ଅତି ଆବଶ୍ୟକ ପଡ଼ିଲେ ଏହାକୁ ଜରୁରି ଦେଖି ୬୩୨ ଫୁଟକୁ ଉଠାଯିବ। ମାତ୍ର ସବୁବେଳେ ଏ ଜରୁରି ପରିସ୍ଥିତି ନ ଥିବ। ଅନ୍ୟ ସମୟରେ ଏହି ଦୁଇଫୁଟ୍ ମଧ୍ୟରେ ବଂଧ ଚାରିପଟେ ଅନେକ ଖାଲି ଜମି ରହିବ। ସରକାର କ୍ଷତିପୂରଣ ଦେଇସାରି ଏ ଜମି ସବୁ ନିଜ ଦଖଲକୁ ନେଇଥାଂତି। ସେଠାରେ ଗୋଟିଏ ବିହନ ଫାର୍ମ ବସାଗଲା। ଆଂଦୋଳନ ଆରଂଭ କଲେ ପ୍ରସନ୍ନ କୁମାର। ଜମି ଶେଷକୁ ଲୋକମାନଂକୁ ବାର୍ଷିକ ପଟ୍ଟା ସୂତ୍ରେ ମିଳିଲା। ସେମାନେ ଚାଷ କରି ମାଛଧରି ନିଜର ଜୀବିକା ଅର୍ଜନ କଲେ। ଚିପିଲିମାରେ ସରକାର ଜମି ଦଖଲ ନେଲେ। ଛଅଖଂଡ ଗାଁ ବୁଡ଼ିବାର ଥିଲା। ବଂଧର ଡିଜାଇନ ବଦଳିଗଲା। ତେଣୁ ଗାଁଗୁଡ଼ିକ ରହିଲା। ସରକାର ସେଠାରେ କୃଷି ଗବେଷଣା ଓ ଉନ୍ନତ ପଶୁପାଳନ ଉଦ୍ଦେଶ୍ୟରେ କେତୋଟି ଅନୁଷ୍ଠାନ ରଖିବାକୁ ବସିଥିଲେ। ଲୋକଂକର ଜମି ସରକାରୀ କାମରେ ନ ଲାଗିବାରୁ ତାଂକୁ ଫେରାଇ ଦିଆଯାଉ ଏହି ଲକ୍ଷ୍ୟ ଧରି ସେ ଆଂଦୋଳନ ଆରଂଭ କଲେ। ସରକାରୀ ନିଷ୍ପତ୍ତିରେ ସାମାନ୍ୟ ପରିବର୍ତ୍ତନ କରାଗଲା। ଲୋକମାନଂକୁ ସେମାନଂକର ଜୀବିକା ଅର୍ଜନର ସୁବିଧା ମଧ୍ୟ ମିଳିଲା। ତାଂକ ନେତୃତ୍ୱରେ ଆଂଦୋଳନ ଆଉରି ଥରେ ଆରଂଭ ହେଲା ବନ୍‌ହର୍‌ପାଲିର ଇବ୍ ତାପଜ ବିଦ୍ୟୁତ୍ ଯୋଜନା କେଂଦ୍ର ପ୍ରତିଷ୍ଠା ବିରୋଧରେ। ତାପଜ କେଂଦ୍ରରୁ ଯେଉଁ ବାଷ୍ପ ବାହାରିବ ତାହା ବାୟୁମଂଡଳର ପ୍ରଦୂଷଣ କରିବ। ଲୋକ ଗହଳି

ନଥିବା ସ୍ଥାନରେ ଗାଁ ନଥିବା ଜାଗାରେ ତାହାର ପ୍ରତିଷ୍ଠା ପାଇ ସେ ଆଂଦୋଳନ କଲେ। ସରକାର ନରମିଗଲେ ମାତ୍ର କେଂଦ୍ର ପ୍ରତିଷ୍ଠା ହେଲା। ଲୋକଂକର ସ୍ୱାର୍ଥରକ୍ଷା ପ୍ରତିଶ୍ରୁତି ମିଳିଲା। ଆଗରୁ ହୀରାକୁଦ ବଂଧଦ୍ୱାରା ବାସଚ୍ୟୁତ ଯେଉଁ ଲୋକେ ଯାଇ ସେଠାରେ ବସବାସ ଆରଂଭ କରିଥିଲେ ସେମାନ ଯେପରି ତାପଜ କେଂଦ୍ର ନିର୍ମାଣ ଦ୍ୱାରା କ୍ଷତିଗ୍ରସ୍ତ ନ ହୁଅଂତି ତାହା ଦେଖିବାକୁ ସେ ସରକାରଂକ ଠାରୁ ପ୍ରତିଶ୍ରୁତି ଆଦାୟ କଲେ। କୃଷକମାନଂକର ସମସ୍ୟା ତାଂକର ଧ୍ୟେୟ ଥିଲା। ଶ୍ରମିକ ନେତା ଭାବରେ ସେ ହୀରାକୁଦ ଶ୍ରମିକ ସଂଘ, ବେଲପାହାଡ଼ ରିଫ୍ରାକ୍ଟରୀ, ଝାରସୁଗୁଡ଼ା ଭାସ୍କର ସୂତାକଳ, କଂଶବାହାଲ ଶ୍ରମିକ ସଂଘ, କୋଲିଆରି ଶ୍ରମିକ ସଂଘ, ଓଡ଼ିଶା ବିଦ୍ୟୁତ କର୍ମଚାରୀ ମହାସଂଘ, ତାପଜ ଶ୍ରମିକ ସଂଘ, ନେତା ଆଇ ସେ ନିଖିଳ ଭାରତ ଶ୍ରମିକ କଂଗ୍ରେସର ସଭାପତି ହୋଇପାରିଥିଲେ। ଚିରସଂଗ୍ରାମୀ ଏହି ଲୋକ ପ୍ରତିନିଧି ଶ୍ରମିକ କୃଷକ ଆଂଦୋଳନ ଜଳକର ବିରୋଧୀ ଆଂଦୋଳନ ସମୟରେ ମଧ୍ୟ ଲୋକମାନଂକୁ ଦଂଭ ଦେଇ ସେମାନଂକର ଦୁଃଖ ଲାଘବ କରିବାର ପ୍ରତିଶ୍ରୁତି ଆଣିଛଂତି। ନିଜର ଲୋକପ୍ରିୟତା ଫଳରେ ସେ ଯେ କୌଣସି ଦଳର ପ୍ରାର୍ଥୀ ହୋଇ ବିଧାୟକ ହୋଇ ପାରିଥାଂତେ। ଶାସକ ଗୋଷ୍ଠିରେ ମିଶିଥିଲେ ନିଜର ସକାରାତ୍ମକ ଚିଂତାଧାରା ରୂପରେଖ ସକ୍ରିୟଭାବେ ଲୋକ ମଂଗଳପାଇଁ ଦେଇ ପାରିଥାଆଂତେ। ମାତ୍ର ନିଜ ପ୍ରିୟ କମ୍ୟୁନିଷ୍ଟ ଦଳକୁ ସେ ଶେଷ ପର୍ଯଂତ ଛାଡ଼ି ନ ଥିଲେ ଓ ସମଗ୍ର ପଶ୍ଚିମ ଓଡ଼ିଶାରେ ସାମ୍ୟବାଦର ଶ୍ରେଷ୍ଠ ଚିଂତକ ଓ କର୍ମୀ ଭାବରେ ନିଜକୁ ପରିଚିତ କରାଇ ପାରିଥିଲେ।

ଧନୀ ସଂଭ୍ରାଂତ ପରିବାରରେ ଜନ୍ମ। ମାତ୍ର ତାଂକର ବ୍ୟକ୍ତିଗତ ସଂପତ୍ତି ପ୍ରାୟ ନଥିଲା। ୧୯୬୧ରେ କଂଗ୍ରେସର ଜଣେ ମୁଖିଆ ରାଜ୍ୟସ୍ତରୀୟ ନେତା ବିଜୟ କୁମାର ପାଣିଂକୁ ପ୍ରାୟ ୪ ହଜାର ଭୋଟରେ ହରାଇ ସେ ବିଧାୟକ ହେଲା ପରେ ଛଅଥର ନିର୍ବାଚିତ ଏହି ବିଧାୟକଂକର ରାଜଧାନୀରେ ବାସଗୃହ ବା ଅନ୍ୟ କୌଣସି ଅଚଳ ସଂପତ୍ତି ନଥିବା ଏକ ଚର୍ଚ୍ଚାର ବିଷୟ ଥିଲା। ତେଣୁ ବିରୋଧୀ ଦଳରେ ଥାଇ ମଧ୍ୟ ସେ ସରକାରୀ କର୍ମଚାରୀଂକର ସମ୍ମାନ ଲାଭ କରୁଥିଲେ। ୨୪ ବର୍ଷ ମଧ୍ୟରେ ଅର୍ଜିତ ସମସ୍ତ ଧନ ସଂପତ୍ତି ସେ ସେହି ଜନତା ଜନାର୍ଦ୍ଦନ ସେବାରେ ବ୍ୟୟ କରିଥିଲେ। ଆଜନ୍ମ ବ୍ରହ୍ମଚାରୀ ସନ୍ନ୍ୟାସଧର୍ମ ରତ ପ୍ରସନ୍ନ କୁମାରଂକ ପ୍ରିୟ ପୋଷାକ ଗେରୁଆ ପାଇଜାମା ଓ ପଂଜାବୀ। ପ୍ରିୟ ଜନ୍ମ ଭୂମିକୁ ତାଂକ ମୃତ ଶରୀର ଫେରି ଆସିଲା ୧୯୯୭ ଡିସେଂବର ୨୨ ତାରିଖରେ। ସେ ଦିନ ପ୍ରାତଃ ଭ୍ରମଣ ପରେ ସେ ହୃଦରୋଗରେ ଆକ୍ରାଂତ ହୋଇ ଆକସ୍ମିକ ଭାବରେ ପ୍ରାଣତ୍ୟାଗ କଲେ। ରାଜ୍ୟର ଜଣେ ନୀତିନିଷ୍ଠ ଲୋକପ୍ରିୟ ସମାଜବାଦୀ ନେତାଭାବରେ ସେ ଇତିହାସରେ ସ୍ମରଣୀୟ ହୋଇ ରହିବେ।





# ନିରଳସ ସମାଜବାଦ
# ସେବକ ଦୟାନଂଦ

କୌଣସି ପଦପଦବିରେ ନଥାଇ କ୍ଷମତାଶୀଳ ରାଜନୈତିକ ଦଳର କର୍ମୀ ବା କୁଳିନେତା ନ ହୋଇ ମଧ୍ୟ ଲୋକମାନଂକର ସୁଖ ଦୁଃଖରେ ସେମାନଂକ ପକ୍ଷ ଧରି ଲଢ଼ି କର୍ତ୍ତୃପକ୍ଷଂକଠାରୁ ଉଚିତ ନ୍ୟାୟ ହାସଲ କରିବାରେ ସହାୟକ ଥିଲେ ଜଣେ କମ୍ୟୁନିଷ୍ଟ ଦଳର କର୍ମୀ ଦୟାନଂଦ ଶତପଥୀ। ୧୯୦୮ରେ ତାଂକର ଜନ୍ମ ହୁଏ ବାମଂଡା ରାଜ୍ୟର ଏକ ଗ୍ରାମରେ। ସେ ଜଣେ ମେଧାବୀ ଛାତ୍ର ଥିଲେ। ଦେବଗଡ଼ ରାଜକୁମାର ହାଇସ୍କୁଲରୁ ୭ମ ଶ୍ରେଣୀ ପାସ୍ ପରେ ସେ ଶିକ୍ଷକ ଟ୍ରେନିଂ ନେଲେ। ଦରବାର ଅଧୀନରେ ଚାକିରି କଲେ। ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ପରିଚିତ ଥିଲେ। ପୂର୍ବାଂଚଳ ରାଜ୍ୟ ସମୂହର ଶିକ୍ଷା ପରିଦର୍ଶକ ଏଚ୍.ଡିପି ସାହେବ ତାଂକ ଶିକ୍ଷାଦାନ ପ୍ରଣାଳୀ ଦେଖି ମୁଗ୍ଧ ହୋଇ ଦରବାରକୁ ନିଜ ମନୋଭାବ ଜଣାଇଥିଲେ। ଶିକ୍ଷକ ବ୍ୟତୀତ ସେ ଥିଲେ ଜଣେ ସଚେତନ ନାଗରିକ। ବାମଂଡା ରାଜ୍ୟର ଶିକ୍ଷା, ସଂସ୍କୃତି, ସାମାଜିକ ଉନ୍ନତି କ୍ଷେତ୍ରରେ ସୁନାମଥିଲେ ମଧ୍ୟ ବେଠି ମଜୁରିଆମାନଂକ ଦୁର୍ଦଶା କିଛି କମ୍ ନ ଥିଲା। ବିନା ମଜୁରିରେ ସେମାନଂକୁ ରାସ୍ତା ତିଆରି ଓ ରାଜ୍ୟର ଅନ୍ୟ କାମରେ ଲଗା ଯାଉଥିଲା। ସେମାନଂକର ଶୋଷଣ ଉଲ୍ଲେଖ କରି ସେ ବ୍ରହ୍ମପୁରର ଦୈନିକ ଓଡ଼ିଆ ସଂବାଦପତ୍ର 'ଆଶା' ରେ ସଂବାଦ ପରିବେଷଣ କଲେ। ଦରବାର ଯାଂଚ କରି ସଂବାଦଦାତା ଭାବେ ତାଂକ ନାମ ପାଇଗଲେ। ଦଂଡ

ସ୍ୱରୂପ ତାଙ୍କୁ ଚାକିରିରୁ ତଡ଼ିଦିଆଗଲା ଓ ବାମଂଡା ରାଜ୍ୟରୁ ନିର୍ବାସିତ କରାଗଲା। ନିଜର ଜନସେବା ନିମିତ୍ତ ବିସ୍ତୃତ କ୍ଷେତ୍ର ପ୍ରସ୍ତୁତ କରିବାକୁ ସେ ସଂବଲପୁରକୁ ଆସିଲେ। କଂଗ୍ରେସ ଦଳରେ ଯୋଗଦେଲେ। ବରଗଡ଼ରେ ଓକିଲ କପିଳେଶ୍ୱର ପ୍ରସାଦଂକ ସାଂଗେ ମିଶି କଂଗ୍ରେସ ବାର୍ତା ପ୍ରଚାରକଲେ। ବରଗଡ଼ରେ କଂଗ୍ରେସ ସଂପାଦକ ହେଲେ। ତାପରେ ସେ ସଂବଲପୁର ସହରରେ ଦଳେଇ ପଡ଼ାରେ ପ୍ରାୟ ସ୍ଥାୟୀ ବାସିଂଦା ହୋଇ ରହିଗଲେ। ସେଠାରୁ ସେ ନିଜ ରାଜ୍ୟକୁ ମଝିରେ ମଝିରେ ଛଦ୍ମ ବେଶରେ ଯାଇ ଦରବାରଂକର ଦୋଷତ୍ରୁଟି ସଂଗ୍ରହ କରି ସଂବାଦ ପତ୍ରରେ ପ୍ରକାଶ କରୁଥିଲେ ଓ ଜନମତ ପ୍ରଭାବିତ କରୁଥିଲେ। ଯେଉଁମାନେ ଦରବାରର ଶୋଷଣର ପ୍ରତିବାଦ କରୁଥିଲେ ସେ ସେମାନଂକୁ ନୈତିକ ସମର୍ଥନ୍ ଦେଉଥିଲେ। ସଂବଲପୁର ସହରରେ ସେ ଦୀର୍ଘଦିନ କଂଗ୍ରେସ କର୍ମୀ ଭାବରେ ରହିଗଲେ। ସଂପୂର୍ଣ ସ୍ୱାଧୀନତା ଭାରତର ଲକ୍ଷ୍ୟ ଓ ଔପନିବେଶିକ ସ୍ୱାୟତ୍ତ ଶାସନ ଦେଶ ଗ୍ରହଣ କରିବ ନାହିଁ ବୋଲି କଂଗ୍ରେସ ପ୍ରସ୍ତାବ ଗ୍ରହଣ କଲା। ଦେଶରେ ୧୯୩୦ରେ ଆଂଦୋଳନ ଏହିବାଟ ଧରି ଚାଲୁଥାଏ। ଲବଣ ସତ୍ୟାଗ୍ରହରେ ସେ ଭାଗନେଲେ। ସଂବଲପୁରରେ ବାଲିବଂଧଠାରେ ସଭା କରି ସେଠାରେ ଜାତୀୟ ତ୍ରିରଂଗା ପତାକା ଉତ୍ତୋଳନ କଲେ। ଜିଲ୍ଲା କଂଗ୍ରେସ କମିଟିର ସେ କିଛିଦିନ ସଂପାଦକ ଥିଲେ। ଦେଶୀୟ ରାଜ୍ୟଗୁଡ଼ିକର ଓଡ଼ିଶାରେ ୧୯୪୮ ଜାନୁଆରିରେ ମିଶ୍ରଣ ପର୍ଯଂତ ଦୟାନଂଦ ବାମଂଡା ରାଜ୍ୟରେ ଅସ୍ପୃଶ୍ୟତା ନିର୍ବାରଣ, ନିଶାଦ୍ରବ୍ୟର ବର୍ଜନ, ବିଦେଶୀ ଦ୍ରବ୍ୟ ବଦଳରେ ସ୍ୱଦେଶୀ ପ୍ରଚାର, ଖଦଡ଼ର ପ୍ରସାର ନିମିତ୍ତ ଛଦ୍ମ ଭାବରେ ଉଦ୍ୟମ କରି ଆସୁଥିଲେ। ବାମଂଡା ରାଜ ଦରବାର ଠାରୁ ଆରଂଭ କରି ସଂବଲପୁରରେ ଇଂରେଜ ସରକାରଂକର କୋପଦୃଷ୍ଟିରେ ପଡ଼ି ସେ ଦୀର୍ଘ କାଳ ଜେଲ୍ ଦଂଡ ଭୋଗ କରିଥିଲେ। ଘରଦ୍ୱାର ନାହିଁ। ଅନ୍ନ ସଂସ୍ଥାନର ବ୍ୟବସ୍ଥା ନାହିଁ ତଥାପି ଦରିଦ୍ର କ୍ଷେତ ମୂଲିଆ, ଖଟିଖିଆ ପାଇଁ ସେ ସବୁବେଳେ ମେହନତ କରିବାକୁ ବାହାରିଲେ। ଦେଶ ସ୍ୱାଧୀନ ହେଲା। ଜେଲରେ ଥିବାବେଳେ ସେ ମାର୍କ୍ସବାଦ ପ୍ରତି ଆଗ୍ରହୀ ହୋଇ ସମାଜବାଦ କେବଳ ଦେଶରେ ପ୍ରକୃତ ଅର୍ଥନୈତିକ ସ୍ୱାଧୀନତା ଆଣି ଲୋକମାନଂକର ଆର୍ଥିକ ଓ ସାମାଜିକ ଦୁରବସ୍ଥା ଦୂର କରିବ ଏହା ସେ ଦୃଢ଼ ଭାବରେ ହୃଦୟଂଗମ କରିଥିଲେ। ତେଣୁ ସେ କଂଗ୍ରେସରୁ ଅଲଗା ହୋଇ ୧୯୪୫ରେ ସଂବଲପୁର କମ୍ୟୁନିଷ୍ଟ ଦଳ ଗଠନ କଲେ। ଏହାର ସେ ପ୍ରଥମ ସଂପାଦକ ହେଲେ। ଗୌଂତିଆ ବିରୋଧୀ, ଭୂମିହୀନ ଶ୍ରମିକ, ହୀରାକୁଦ ବାସଚ୍ୟୁତ ଓ ପରେ ବିଭିନ୍ନ ଶ୍ରମିକ ଅଂଦୋଳନରେ ସେ ନିଜକୁ ସାମିଲ କରି ଜନତାର ଆଦର୍ଶ ନିଷ୍ଠାପର କର୍ମୀ ଭାବରେ ସମ୍ମାନିତ ହେଲେ। ସ୍ୱାଧୀନତା ସଂଗ୍ରାମୀ ଭାବରେ ଭତ୍ତା ଓ ତାମ୍ରଫଳକ ପାଇ କେଂଦ୍ର ସରକାରଂକ ଦ୍ୱାରା ୧୯୭୨ରେ ସମ୍ମାନିତ ହୋଇଥିଲେ। ୧୯୭୧ ମସିହା ସାଧାରଣ ନିର୍ବାଚନରେ ସେ ସଂବଲପୁର ବିଧାନସଭା ପାଇଁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ ଥିଲେ। ଅତି ଅଳ୍ପ ଭୋଟ ପାଇଁ ଶ୍ରୀ ବଲ୍ଲଭ ପାଣିଗ୍ରାହୀଂକ ଦ୍ୱାରା ପରାଜିତ ହୋଇଥିଲେ। ଜୀବନର ଶେଷ ପର୍ଯଂତ ଭାରତୀୟ କମ୍ୟୁନିଷ୍ଟ ଦଳର ସେ ଜଣେ ନିରଳସ କର୍ମୀ ଥାଇ ଖ୍ୟାତି ଅର୍ଜନ କରିଥିଲେ। ୭୫ ବର୍ଷ ବୟସରେ ସେ ୧୯୮୩ ମେ ୩୧ ତାରିଖରେ ସଂବଲପୁର ସହରରେ ପ୍ରାଣତ୍ୟାଗ କଲେ।





# ସଂବଲପୁରର ପ୍ରଥମ ସାଂସଦ

# ଡାକ୍ତର ନଟବର ପାଂଡେ

ଡାକ୍ତର ନଟବର ପାଂଡେ ୧୯୫୨ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ସଂବଲପୁରରୁ ଲୋକ ସଭାକୁ ଗଣତଂତ୍ର ପରିଷଦର ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇଥିଲେ। ସାବାଳକ ଭୋଟର ପ୍ରଥମ ନିର୍ବାଚନରେ ସେ ଗଣତଂତ୍ର ପରିଷଦ ପ୍ରାର୍ଥୀ ଥାଇ ୭୦,୬୨୨ ଭୋଟ ପାଇଥିବା ବେଳେ ତାଂକ କଂଗ୍ରେସ ପ୍ରତିଦ୍ୱଂଦ୍ୱୀ ଗୌରିଶଂକର ମିଶ୍ର ମାତ୍ର ୩୭,୨୮୪ ଖଂଡ ଭୋଟ ପାଇଥିଲେ। ନଟବର ଅଜଣା ବ୍ୟକ୍ତି। ପ୍ରତିଦ୍ୱଂଦ୍ୱୀ ଗୌରିଶଂକର ମିଶ୍ର ପ୍ରତିଷ୍ଠିତ ଓକିଲ। ପୂର୍ବତନ ଜିଲ୍ଲା ବୋର୍ଡ ଓ ମୁନିସିପାଲଟି ଚେୟାରମେନ୍। ସରକାରୀ ଓକିଲ ଭାବରେ ଜିଲ୍ଲାରେ ଖୁବ୍ ପରିଚିତ। ନଟବରଂକର ଜନ୍ମ ୧୯୦୮ରେ। ବାପାଂକ ନାମ ଥିଲା, ପରାଶର ପାଂଡେ। ସେ ସଂବଲପୁର ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାସ୍ କରି କଟକ ଆସି ସେଠାରେ ଶିକ୍ଷକ ଟ୍ରେନିଂ ପାସ କଲେ। ତା ପରେ ତାଂକ ମନ ହୋମିଓପାଥି ଚିକିତ୍ସା ପ୍ରତି ଆକୃଷ୍ଟ ହେଲା। ସେ ମନେକଲେ ଜଣେ ଶିକ୍ଷକ ହେବା ଅପେକ୍ଷା ସେ ଯଦି ଜଣେ ଡାକ୍ତର ହୁଅଂତି ତେବେ ସେ ବହୁତ ଲୋକଂକର ସେବା କରିବାରେ ସମର୍ଥ ହେବେ। ହୋମିଓପାଥି ଚିକିତ୍ସା ସହଜ ଓ ଶସ୍ତା ଥିଲା। ତେଣୁ ସେ ସେହି ଚିକିତ୍ସାବିଦ୍ୟା ଶିକ୍ଷା ଲାଭ ନିମିତ୍ତ କାଥିଆ ବାଡ଼ (ଗୁଜୁରାଟ)

ଗଲେ। ସେଠାରେ ଅଧ୍ୟୟନ କରି ଚିକିତ୍ସା ନିମିତ୍ତ ଯୋଗ୍ୟତା ହାସଲ କଲେ। ୧୯୨୮ରେ ସେ ଉଷାରାଣୀ ପାଂଡେଙ୍କୁ ବିବାହ କଲେ। କଛିଦିନ ସୁଂଦରଗଡ଼ ହାଇସ୍କୁଲରେ ସେ ଶିକ୍ଷକତା ମଧ୍ୟ କରିଥିଲେ ମାତ୍ର ତତ୍‌କାଳୀନ ଦରବାର ଶାସନ ପ୍ରତି ବୀତସ୍ପୃହ ହୋଇ ସେ ଚାକିରି ଛାଡ଼ି ଦେଲେ। ଓଡ଼ିଶା ବୟ ସ୍କାଉଟ୍ ଆସୋସିଏସନ୍‌ର ସଂଗଠକ ଭାବରେ ସେ ଦୁଇବର୍ଷ (୧୯୩୯-୪୧) କାର୍ଯ କଲେ। ଦେଶୀୟ ରାଜ୍ୟ ଗାଂଗପୁରର ଓଡ଼ିଶା ସହିତ ମିଶ୍ରଣ ହେବା ପରେ ସେ ଓଡ଼ିଶା ବିଧାନସଭାକୁ ଉକ୍ତ ରାଜ୍ୟର ପ୍ରତିନିଧି ଭାବେ ମନୋନୀତ ହୋଇଥିଲେ। ପୂର୍ବରୁ ସେ ଗାଂଗପୁର ରାଜ୍ୟ ପ୍ରଜା ମଂଡଳ ଗଠନ କରି ଏହାର ସଭାପତି ହୋଇଥିଲେ। ରାଜ୍ୟର କୈବର୍ତମାନଂକୁ ସଂଗଠିତ କରି ସେ ସେମାନଂକର ଅଭାବ ଅସୁବିଧା କର୍ତ୍ତୃପକ୍ଷଂକ ଦୃଷ୍ଟିକୁ ଆଣିଲେ। ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ଆଂଚଳିକ କାର୍ଯକ୍ରମ ସହିତ ସେ ସଂପୃକ୍ତ ଥିଲେ।

ଓଡ଼ିଶା ସହିତ ଦେଶୀୟ ରାଜ୍ୟ ଗୁଡିକର ମିଶ୍ରଣ ପରେ ମିଶ୍ରଣର ବିରୋଧୀମାନେ କୋଶଳ ଉତ୍କଳ ପ୍ରଜାପରିଷଦ ଓ ପୂର୍ବାଂଚଳ ଲୋକ ପ୍ରତିନିଧି ସଭା ଗଢ଼ିଥିଲେ। ନଟବର ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ସଂବଲପୁରରେ ୧୯୪୬ରୁ ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ପାଟଣା ସୋନପୁର ରାଜ୍ୟରୁ ସାହାଯ୍ୟ ପାଇଁ ତେଜି ଉଠୁଥିଲା। ସେମାନେ କୋଶଳ ଉତ୍କଳ ପ୍ରଜାପରିଷଦ ଗଢ଼ିଥିଲେ। କଳାହାଂଡିରେ ମଧ୍ୟ ଗଣତଂତ୍ର ସଂଘ ନାମରେ ଏକ ରାଜନୈତିକ ଦଳ ମହାରାଜାଂକ ପୋଷକତାରେ ଗଢ଼ାଯାଇଥିଲା। ଦୁଇ ଦଳର ମିଶ୍ରଣରେ ନିର୍ବାଚନର ଅବ୍ୟବହିତ ପୂର୍ବରୁ ଗଣତଂତ୍ର ପରିଷଦ ଗଢ଼ାଯାଇ ନଟବର ଏହାର ସଭାପତି ହେଲେ। ବିଭିନ୍ନ ଦେଶୀୟ ରାଜ୍ୟର ପ୍ରଜାମଂଡଳର ପୁରାତନ କର୍ମୀମାନେ ମିଶ୍ରଣପରେ ଅସଂତୁଷ୍ଟ ହୋଇ ଏଥିରେ ଯୋଗଦେଇ କାମ କଲେ। ନିର୍ବାଚନରେ ପ୍ରତିଦ୍ୱଂଦ୍ୱିତା କରିବାକୁ ଯେତେବେଳେ ଗଣତଂତ୍ର ପରିଷଦର ଗଠନ ହେଲା ସେତେବେଳେ ସେ ଏହାର କାର୍ଯକାରିଣୀ ସଭାର ଜଣେ ସକ୍ରିୟ ସଭ୍ୟ ଥିଲେ ଓ ପ୍ରତିଦାନରେ ସଂବଲପୁରରୁ ୧ମ ଲୋକସଭାର ପ୍ରତିନିଧି ହେବାର ଗୌରବ ଅର୍ଜନ କରିଥିଲେ। ଉନ୍ନତ କୃଷି ପ୍ରଚଳନ, ମତ୍ସ୍ୟଚାଷ, ଗ୍ରାମାଂଚଳର ଉନ୍ନତି, ଗ୍ରାମ ଶିଳ୍ପର ପୁନରୁଦ୍ଧାର ଓ ଗ୍ରାମମାନଂକରେ କ୍ରୀଡ଼ାର ପ୍ରସାରଣ ପ୍ରତି ତାଂକର ବିଶେଷ ଧ୍ୟାନ ଥିଲା। ମିଶ୍ରଣ ବିରୋଧୀ ଆଂଦୋଳନରେ ଅଂଶ ଗ୍ରହଣ କରି ସେ କାରାବରଣ ମଧ୍ୟ କରିଥିଲେ।





ଶିକ୍ଷକ ମନମୋହନ



ମନୋରମା

## ଛାତ୍ରବତ୍ସଳ

# ଶିକ୍ଷକ ମନମୋହନ

୧୯୬୭ରେ ସଂବଲପୁର ଜିଲ୍ଲାସ୍କୁଲର ଶତବାର୍ଷିକୀ ଉତ୍ସବ ପାଳନ ନିମିତ୍ତ ଗୋଟିଏ ସଭା ଡକାଯାଇଥାଏ ସର୍କିଟ ହାଉସରେ। ଦୂରାଗତ କୌଣସି ଅତିଥି ଜଣେ ବ୍ୟକ୍ତିଙ୍କୁ ବିଶେଷ କର୍ମ ତତ୍ପର ଦେଖି ତାଙ୍କ ପରିଚୟ ଜାଣିବାକୁ ଚାହିଁଲେ। ସହରର ଜଣେ ଗଣ୍ୟମାନ୍ୟ ବରିଷ୍ଠ ନାଗରିକ ତାଙ୍କୁ ପଚାରିଲେ ଚଳିତ ଶତାବ୍ଦୀର ଗଂଜାମର ପ୍ରଥମ ନାରୀକବି ଅନ୍ନପୂର୍ଣ୍ଣା ଦେବୀଙ୍କର ନାମ ଶୁଣିଛ ? ନାସ୍ତିସୂଚକ ଉତ୍ତର ପାଇ ସେ ଶୁଣାଇଲେ ନାରୀକବି ଅନ୍ନପୂର୍ଣ୍ଣା ୧୮୮୩ରେ ଚିକିଟି (ସେତେବେଳେ ମାଂଦ୍ରାଜ ପ୍ରଦେଶର ଗଂଜାମ ଜିଲ୍ଲାର ଏକ ବଡ଼ ଓଡ଼ିଆ ଜମିଦାରି)ରେ ଜନ୍ମ ଗ୍ରହଣ କରିଥିଲେ। ପିଲାଦିନେ ଶିକ୍ଷା ଦୀକ୍ଷାର ବିଶେଷ ସୁଯୋଗ ନ ଥିଲା। ସେ ବିବାହ କଲେ ବଡ଼ ଖେମୁଂଡିର ଶ୍ରୀରାମ ପଟ୍ଟନାୟକଂକୁ। ଶ୍ରୀରାମ ସ୍ୱାଧୀନଚେତା ଥିଲେ। ଜମିଦାରଂକର କେତେକ କଥାରେ ସେ କ୍ଷୀଣ ପ୍ରତିବାଦ କଲେ, ତେଣୁ ରାଜ୍ୟରୁ ନିର୍ବାସିତ ହେଲେ। ଜୀବନର ଘୋର ଅସୁବିଧାରେ ପଡ଼ି ଜନ୍ମସିଦ୍ଧ କବିପ୍ରତିଭା ଘେନି ଅନ୍ନପୂର୍ଣ୍ଣା କବିତା ରଚନା ଆରଂଭ କଲେ। ସେଥିରେ ପ୍ରକାଶ ପାଉଥିଲା ନିଜ ଦୈନ୍ୟର କରୁଣ କାହାଣୀ। ଯାହାହେଉ ଚିକିଟି ପାରଳା ଓ ଜୟପୁରର ରାଜା ମାନଂକର

ଅନୁଗ୍ରହ ଫଳରେ ତାଂକର ରଚନାଗୁଡ଼ିକ ପ୍ରକାଶିତ ହେଲା । ଆଗରୁ ଏଗୁଡ଼ିକ ଗଂଜାମର 'ଗୁଣଦର୍ପଣ' ଓ ସଂବଲପୁରର 'ହିତୈଷିଣୀ' ଆଦିରେ ପ୍ରକାଶ ପାଇଥିଲା । ତାଂକର ପ୍ରଥମ ପ୍ରକାଶିତ କବିତାବଳୀର ନାମ 'ପଦ୍ୟମାଳା' । ପ୍ରଥମ ଓ ୨ୟ ଭାଗ ୧୯୦୪ ଓ ୧୯୦୫ ରେ ପ୍ରକାଶିତ ହେଲା । ସେଥିପାଇଁ ସେ ଚଂଦ୍ରମୋହନ ମହାରଣା ଓ ନୀଳମଣି ବିଦ୍ୟାର୍ତ୍ନଂକ ଠାରୁ ଉତ୍ସାହ ପାଇଥିଲେ, ପରେ ୧୯୦୭ରେ ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଂଠଂକ ଯତ୍ନରେ ତାଂକ ରଚନା ପକ୍ଷୀଘର ପୁରୀରୁ ପ୍ରକାଶ ପାଇଥିଲା । ତାଂକର ପ୍ରତିଭା ଈଶ୍ୱରଦତ୍ତ ଥିଲା । ସ୍ୱାମୀଂକ ସହିତ ସେ ବିଶାଖାପାଟଣାରେ ଥାଇ ମଧ୍ୟ ମାତୃଭାଷାର ଉନ୍ନତି ନିମିତ୍ତ ମନ ପ୍ରାଣ ଢାଳି ଦେଇଥିଲେ । ଭୀଷଣ ସାମାଜିକ ପ୍ରତିରୋଧ ଓ ଜୀବନ ସଂଗ୍ରାମ ତାଂକ ବ୍ୟକ୍ତିତ୍ୱ ଓ ପ୍ରତିଭାକୁ ବିକଶିତ କରିଥିଲା । ତାଂକୁ ଲକ୍ଷ୍ୟକରି କବିଶେଖର ଚିଂତାମଣି ମହାଂତି ଗଂଜାମ ଭ୍ରମଣରେ ଲେଖିଥିଲେ ।

''ଲେଖେ ପଦେ ଅଧେ ଗୀତ ଶକ୍ତି ଅନୁଯାୟୀ
ଏହେତୁ କାହା କୋପକଟାକ୍ଷରେ ପଡ଼ି
ଦିନ କାଟୁଅଛି ମହାହରବର
ଅନ୍ନଶୂନ୍ୟା ଅନ୍ନପୂର୍ଣା ଯାଏ ଗୀତ ବାଂଧି
ସ୍ମରଣଇ କକ୍ଷଣ ତାର ପକାଏ ମୁଁ କାଂଦି
ପାଠଶାଳା ପାଠେ ନାମ ଜାଣୁ ଶିକ୍ଷାତାର'' ।

ସବୁଠାରୁ ଗୁରୁତ୍ୱପୂର୍ଣ କଥା ହେଉଛି ଯେତେବେଳେ ଓଡ଼ିଶା ମାଂଦ୍ରାଜ ମଧ୍ୟରେ ଓଡ଼ିଶା ଅଂଚଳ ନିରୂପଣ ପାଇଁ ଫିଲିପ ଡଫ କମିଟି ବସିଲା ତା ଆଗରେ ଜଣେ ମାତ୍ର ଓଡ଼ିଆଣୀ ସାକ୍ଷ୍ୟ ଦେଇଥିଲେ । ସେ ହେଉଛଂତି ଅନ୍ନପୂର୍ଣା । ଅନ୍ନପୂର୍ଣାଂକର ଦୁଇଟି ଝିଅ, ଗୋଟିଏ ପୁଅ । ଜ୍ୟେଷ୍ଠ କନ୍ୟା ମନୋରମା ବ୍ରହ୍ମପୁର ସହରର ଭାପୁରରେ ୧୯୧୨ରେ ଜନ୍ମଲାଭ କଲେ । ପାରଳାଖେମୁଂଡି ତେଲୁଗୁ ଓଡ଼ିଆ ବାଳିକା ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ପାଇଲେ । ବିଶାଖାପାଟଣାରେ ଆସି ହୋପ ଗାର୍ଲସ ସ୍କୁଲରେ ପଢ଼ି ୧୯୨୮ରେ ମାଟ୍ରିକ (ସ୍କୁଲ ଫାଇନାଲ) ପାସ କଲେ । କୁଇନ୍‌ମେରି ହାଇସ୍କୁଲରୁ ବାଳିକାମାନଂକ ମଧ୍ୟରେ ବିଶେଷ କୃତିତ୍ୱ ପ୍ରଦର୍ଶନ ନିମିତ୍ତ ତାଂକୁ ସ୍ୱର୍ଣପଦକ ଓ ଅନେକ ପୁସ୍ତକ ପୁରସ୍କାର ମିଳିଥିଲା । ସେଇଠି କଲେଜରେ ନାମ ଲେଖାଇଲେ । ସେଠାରେ ଆଇ.ଏ. ପାସ୍ କରି ମାଂଦ୍ରାଜ ଗଲେ । ପ୍ରେସିଡେନ୍‌ସି କଲେଜରୁ ତିନିବରଷିଆ ବି.ଏ. ଅନର୍ସ ପାସ୍ କଲେ । ଏହା ଅନ୍ୟତ୍ର ଏମ.ଏ. ଡିଗ୍ରିର ସମକକ୍ଷ ଥିଲା । ଦିଲ୍ଲୀରୱେଲିଂଡନ୍ କଲେଜରୁ ସେ ଶିକ୍ଷକ ଟ୍ରେନିଂ ପାସ୍‌କଲେ । ଜଳଂଧର କନ୍ୟା ମହାବିଦ୍ୟାଳୟରେ ସେ କିଛିଦିନ ଅଧ୍ୟାପନା କଲାପରେ

ଓଡ଼ିଶା ଫେରିଆସି ଏଠାରେ ଶିକ୍ଷକତା କରି ପ୍ରଧାନ ଶିକ୍ଷୟିତ୍ରୀ ଓ ପରିଦର୍ଶିକା ରୂପେ ଅବସର ନେଲେ। ସେ ଚିରକୁମାରୀ ଥିଲେ।

ସାନ ଝିଅ ପ୍ରେମଲତା। ସେ ରକ୍ତବିଦ୍ୟା ବିଶାରଦ ବିହାରର ଖ୍ୟାତିପ୍ରାପ୍ତ ଡାକ୍ତର ଚଂଦ୍ରମୋହନ ପଟ୍ଟନାୟକଂକୁ ବିବାହ କରିଥିଲେ। ଡାକ୍ତର ଚଂଦ୍ରମୋହନ ଖଡ଼ିଆଳର ସଂବଲପୁର ବିଶ୍ୱବିଦ୍ୟାଳୟର ସ୍ୱର୍ଗତ କୁଳପତି କିଶୋର ଚଂଦ୍ର ପଟ୍ଟନାୟକଂକର ସାନଭାଇଥିଲେ ଓ ବିହାର ମେଡିକାଲ କଲେଜ ହସପିଟାଲର ରକ୍ତ ଭଂଡାରର ଡିରେକ୍ଟର ଥିଲେ। ସେମାନଂକର କନ୍ୟା କାଶ୍ମୀର ଶ୍ରୀନଗରର ମେଡିକାଲ କଲେଜର ଶିଶୁରୋଗ ବିଶେଷଜ୍ଞ ଥିଲେ। ତାଂକ ଭାଇ ଏଇ – ମନମୋହନ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଓ ଏହି ଶତବାର୍ଷିକୀ ଉତ୍ସବର ମହାନ ଉଦ୍ୟୋକ୍ତା। ବହୁତ ଦିନ ଧରି ଏଠାରେ ଶିକ୍ଷକ ଥିଲେ। ବର୍ତ୍ତମାନ ପ୍ରଧାନ ଶିକ୍ଷକ। ତାଂକର ଛାତ୍ରବତ୍ସଳତା ଯୋଗୁ ସେ ବିଶେଷ ଲୋକପ୍ରିୟ। ଏଇଠି ତାଂକ କଥା ଅନୁସାରେ ସବୁ ପିଲାମାନେ ଏବେ ଚାଲୁଛଂତି। ଜିଲ୍ଲା ସ୍କୁଲର ଶତବାର୍ଷିକୀ ମହାସମାରୋହରେ ପାଳିତ ହେଲା। ରାଜ୍ୟପାଳ କେଂଦ୍ର ଶିକ୍ଷାମଂତ୍ରୀ, ଭି.କେ.ଆର୍.ବି. ରାଓ ଏଥିରେଯୋଗ ଦେଇଥିଲେ। ମନମୋହନଂକର ନିଷ୍ଠାପର ଉଦ୍ୟମ ଓ ଅକ୍ଳାଂତ ପରିଶ୍ରମ ଫଳରେ ଜିଲ୍ଲାସ୍କୁଲ ଆରଂଭରୁ ସେ ପର୍ଯଂତ କୃତକାର୍ଯ ହୋଇଥିବା ସବୁ ଛାତ୍ରଂକର ନାମ ସଂବଳିତ ଗୋଟିଏ ସ୍ମରଣିକା ଏହି ଅବସରରେ ପ୍ରକାଶ ପାଇ ବିଶେଷ ଆଦର ପାଇଥିଲା। ୧୯୯୩ରେ ସେହିପରି ବିଦ୍ୟାଳୟ ୧୨୫ ବର୍ଷ ପୂର୍ତି ଉପଲକ୍ଷେ ଏକସ୍ମରଣିକା ପ୍ରକାଶ ସହିତ ଉତ୍ସବର ବ୍ୟବସ୍ଥା କରାହେଲା। ତାଂକଠାରୁ ଚିଠିପାଇ ଆମେରିକାର ଡାକ୍ତର ରଂଜୀବ ମିଶ୍ର ଓ ସାହେବ ସାହୁ ପୁରାତନ ଛାତ୍ର ଅଯାଚିତ ଅର୍ଥ ଦାନକରି ନିଜ ନିଜ କୃତଜ୍ଞତା ଜଣାଇଥିଲେ।

୧୯୧୬ରେ ମନମୋହନଂକ ଜନ୍ମ ବ୍ରହ୍ମପୁରରେ। ସେଠାରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ସମାପ୍ତି କରି ସେ ମାଂଦ୍ରାଜ ଗଲେ। ସେଠାରେ ବିଜ୍ଞାନ ପଢିଲେ। ବି.ଏସ.ସି. ପାସ୍ କରି ଓଡ଼ିଶାକୁ ଆସିଲେ। ସେତେବେଳେ ଅନ୍ୟ ଚାକିରିର ଘୋର ଅଭାବ। ପ୍ରଥମେ ଘରୋଇ ସ୍କୁଲ ଓ ପରେ ସରକାରୀ ବିଦ୍ୟାଳୟରେ ସେ ଶିକ୍ଷକତା ଆରଂଭ କଲେ। ଧାଲେପୁର ନୂଆ ହାଇସ୍କୁଲରେ ସେ ଗଳ୍ପକାର ସୁରେଂଦ୍ର ମହାଂତିଂକୁ ଗଳ୍ପ ଲେଖିବାରେ ଉତ୍ସାହିତ କରିଥିବା ଓ ତାଂକର ପ୍ରଥମ ଗଳ୍ପ କେବଳ ତାଂକ ପ୍ରେରଣା ଫଳରେ ଲେଖାଯାଇଥିଲା ବୋଲି ସ୍ୱୟଂ ଲେଖକ ତାଂକ ଆତ୍ମ ଚରିତ 'ପଥ ଓ ପୃଥିବୀ'ରେ ଲେଖିଯାଇ ଅଛଂତି। ସେ ମୁଖ୍ୟତଃ ଗଣିତ ଓ ବିଜ୍ଞାନ ଶିକ୍ଷକ ଥିଲେ ମଧ୍ୟ ତାଂକର ଅନ୍ୟାନ୍ୟ ବିଷୟରେ ଖୁବ୍ ଦକ୍ଷତା ଥିଲା ଓ ସେଥିସକାଶେ ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ପରିଗଣିତ ହେଲେ।

ମନମୋହନ ୧୯୩୮ରେ ସରକାରୀ ଚାକିରିରେ ପଶିଲେ। ବାଲିଗୁଡ଼ା ଓ ବାଲେଶ୍ୱରରେ କାମ କରି ସଂବଲପୁର ଆସିଲେ ୧୯୪୫ରେ। ସହକାରୀ ଶିକ୍ଷକ, ପ୍ରଧାନ ଶିକ୍ଷକ ହୋଇ ରହିଗଲେ ୧୯୫୫ ପର୍ଯ୍ୟନ୍ତ। ସେଇ ବର୍ଷ ବଲାଂଗିର ବଦଳି ହେଲେ। ପୃଥ୍ୱୀରାଜ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥାଇ ପଦୋନ୍ନତିରେ ବିଦ୍ୟାଳୟ ଇନ୍ସପେକ୍ଟର ହେଲେ। ମାତ୍ର ତିନିବରଷ ପରେ ପୁଣି ସଂବଲପୁର ଜିଲ୍ଲା ସ୍କୁଲ ପ୍ରଧାନ ଶିକ୍ଷକ ହୋଇ ଆସିଲେ। ୧୯୫୮ରେ ପୁଣି ଇନ୍ସପେକ୍ଟର ହୋଇ ୧୯୬୪ରେ ଅବସର ନେଲେ। ପୁରାତନ ଛାତ୍ରମାନଂକ ଅନୁରୋଧରେ ଟାଉନ ହାଇସ୍କୁଲ ଆଦି କେତୋଟି ବିଦ୍ୟାଳୟର ମଧ୍ୟ ପ୍ରଧାନ ଶିକ୍ଷକ ହୋଇଥିଲେ।

ନିଜେ ଅବିବାହିତ ଥିବାରୁ ତାଂକ ବାସଗୃହ ଯେକୌଣସି ଛାତ୍ର ପ୍ରତି ଯେକୌଣସି ସମୟରେ ଯେ କୌଣସି ପାଠ୍ୟକ୍ରମର ସମାଧାନ ନିମିତ୍ତ ଅବାରିତ ଥିଲା। ସେ ଜିଲ୍ଲା ସ୍କୁଲକୁ ସାଧାରଣ ଶିକ୍ଷକ ଭାବରେ ବଦଳି ହୋଇଯାଇ ସେ ସ୍ଥାନ ଆଉ ଛାଡି ନ ଥିଲେ। ଶିକ୍ଷାବିଭାଗର ୧ମ ଶ୍ରେଣୀ ସେବାକୁ ପଦୋନ୍ନତି ପାଇ ମଧ୍ୟ ସେ ସେହିଠାରେ ବିଦ୍ୟାଳୟ ପରିଦର୍ଶକ ପଦ ଗ୍ରହଣ କଲେ ଓ ସେହିଠାରେ ମଧ୍ୟ ଅବସର ନେଲେ। ଶିକ୍ଷାଦାନ ତାଂକ ପକ୍ଷରେ ଏକ ଆଦର୍ଶ ସେବାବ୍ରତ ଥିଲା। ଶିକ୍ଷକର ଗୌରବ ଉପଯୁକ୍ତ ଛାତ୍ର ଗଠନରେ। ସମାଜରେ ପ୍ରତିଷ୍ଠିତ ବହୁବ୍ୟକ୍ତି ତାଂକର ଛାତ୍ର ଥିଲେ ଓ ସେଥିପାଇଁ ସେ ଗର୍ବିତ ଥିଲେ। ଦୀର୍ଘଦିନ ସଂବଲପୁର ସହରରେ ଥିଲେ। ଇଚ୍ଛା କରିଥିଲେ ସହରରେ ସରକାରୀ ନଜୁଲ ଜମି ଅତି ସହଜରେ ପଟ୍ଟାନେଇ ପାରିଥାଂତେ। ସମବାୟ ବ୍ୟାଂକ ତାଂକୁ ଗୃହନିର୍ମାଣ ଋଣ ଦେବାକୁ ଉତ୍କଂଠିତ ଥିଲେ ମାତ୍ର ଜଣେ ଅବିବାହିତ ବ୍ୟକ୍ତି ଭାବରେ ସେ ବାସ ଶୂନ୍ୟ ହେବାକୁ ଶ୍ରେୟ ମନେ କଲେ। ପ୍ରସିଦ୍ଧ ମିଶ୍ର ପରିବାରର ଶଂକର ପ୍ରସାଦ ମିଶ୍ରଂକ ସହିତ ତାଂକର ଘନିଷ୍ଠ ସଂପର୍କ ଥିଲା। ଓଡ଼ିଶାର ପ୍ରଥମ ଖଣିଜ ବିଦ୍ୟାବିତ୍ ଅକାଳରେ ମୃତ ତାରାପ୍ରସାଦ ମିଶ୍ର। ସେହି ପରିବାରର ଶିଳ୍ପପତି ପ୍ରଦୀପ ମିଶ୍ରଂକ ବାସଭବନରେ ୨୦୦୦ ଜୁନ ୧୬ ତାରିଖରେ ତାଂକର ମୃତ୍ୟୁ ହୁଏ। ସୁଦୂର ବ୍ରହ୍ମପୁର ସହରରୁ ଆସି ସଂବଲପୁରରେ ଶିକ୍ଷକତା କରି କୌଣସି ପଦଗତ ଓ ଆର୍ଥିକ କ୍ଷମତା ଉପଭୋଗ ନ କରି କୌଣସି ପଦ ଲାଳସା ନ ରଖି କେବଳ ନିଃସ୍ୱାର୍ଥ ସେବାଦ୍ୱାରା ସମସ୍ତଂକୁ ଆପଣେଇ ନେବା ତାଂକ ଜୀବନର ବିଶେଷତ୍ୱ ଥିଲା ଓ ଏଥିପାଇଁ ସେ ଶିକ୍ଷକ ଛାତ୍ର ମହଲରେ ସ୍ମରଣୀୟ ରହିବେ।





# ସଂସ୍କାରକ, ଶିକ୍ଷାପ୍ରେମୀ
# ଭାରତଚଂଦ୍ର

ଓଡ଼ିଆମାନେ ବିଭିନ୍ନ ସମୟରେ ଇଂରେଜମାନଂକ ଅଧୀନକୁ ଆସିଲେ ଓ ଏହା ଫଳରେ ସେମାନେ ବିଭିନ୍ନ ପ୍ରଦେଶରେ ବାଂଟିହୋଇ ରହିଗଲେ। ସେମାନଂକର ଆଚାର ବ୍ୟବହାରରେ କେତେକ ପରିବର୍ତନ ଦେଖାଗଲା। ଉପକୂଳ ଅଂଚଳର ଓଡ଼ିଆମାନେ ବଂଗଦେଶର ପ୍ରଭାବ ଅନୁଭବ କଲେ। ତେଲେଂଗାମାନଂକ କବଳରେ ଦକ୍ଷିଣାଂଚଳ ରହିବାରୁ ସେମାନେ ଦାକ୍ଷିଣାତ୍ୟର କେତେକ ଆଚାର ବ୍ୟବହାର ଆବୋରିନେଲେ। ଯେଉଁ ଓଡ଼ିଆମାନେ ମଧ୍ୟପ୍ରଦେଶରେ ରହିଲେ ସେମାନେ ସେହିପରି ହିଂଦିଭାଷୀମାନଂକ ଦ୍ୱାରା ପ୍ରଭାବିତ ହେଲେ। ଜାତି ବିଭାଗ ହିଂଦୁ ଧର୍ମର ଏକ ସ୍ୱୀକୃତ ଅଂଗ ମାତ୍ର ଏହି ବିଭାଜନ ଫଳରେ ଏକ ଜାତି ମଧ୍ୟରେ ଆଚାରଗତ ପ୍ରଭେଦ ଦେଖାଗଲା। ଏମିତି ହେଲା ଯେ ଉପକୂଳ ଅଂଚଳର ବ୍ରାହ୍ମଣମାନେ ପଶ୍ଚିମ ଓଡ଼ିଶାର ସମାନ ଗୋତ୍ରୀୟ ବ୍ରାହ୍ମଣମାନଂକ ସହିତ ବିବାହ ସଂପର୍କ ସ୍ଥାପନ କଲେ ନାହିଁ ଓ ଏମାନଂକ ମଧ୍ୟରେ ଦୂରତା କ୍ରମେ ବୃଦ୍ଧିପାଇବାରେ ଲାଗିଲା। ଗତ ଶତାବ୍ଦୀର ପ୍ରଥମ ଅର୍ଧ ପର୍ଯଂତ ଏପ୍ରକାର ବିଭେଦ ଲାଗି ରହିଥିଲା ମାତ୍ର ଜଣେ ସରକାରୀ ଚାକିରିଆ ସେ

ସମୟରେ ସାମାଜିକ ବାସଂଦକୁ ଭୃକ୍ଷେପ ନକରି, ଭେଦଭାବ ଦୂରକରିବାକୁ ସବୁକ୍ଷେତ୍ରରେ ଉଦ୍ୟମ କଲେ ଓ ସେଥି ନିମିତ୍ତ ସେ ସମଗ୍ର ରାଜ୍ୟରେ ଜଣେ ସଂସ୍କାରକ ଭାବରେ ପରିଚୟ ପାଇଲେ। ଏହି ବରିଷ୍ଠ ପ୍ରଶାସକଂକର ନାମ ଥିଲା ଭାରତଚଂଦ୍ର ନାୟକ। ତାଂକ ପୂର୍ବପୁରୁଷ ରାଜାଂକ କୋପ ଦୃଷ୍ଟିରେ ପଡ଼ି ସୋନପୁର ରାଜ୍ୟରୁ ନିର୍ବାସିତ ହୋଇଥିଲେ। ତାଂକ ବାପା ଭଗବାନ ନିଜ ଜମିବାଡ଼ି ଓ ପ୍ରତିପତ୍ତି ହରାଇ ପାଟଣା ରାଜ୍ୟକୁ ପଳାଇ ଆସିଲେ। ସେମାନେ ପାଟଣା ରାଜ୍ୟରେ ଆଗଲପୁର ଜମିଦାରିରେ ଘରକରି ରହିଲେ। ରାଜା ତାଂକୁ ପୁରୋହିତ କାମରେ ଲଗାଇ ତାଂକ ଜୀବିକା ନିର୍ବାହର ବ୍ୟବସ୍ଥା କରିଦେଲେ। ପରିବାରଟି ସେହି ଦିନୁ ପାଟଣା ରାଜ୍ୟର ବାସିଂଦା ଭାବରେ ଗଣାଗଲେ। ଏହି ପରିବାରରେ ୧୮୮୭ ଶିବରାତ୍ରି ଦିନ ଭାରତଚଂଦ୍ର ଜନ୍ମ ଗ୍ରହଣ କରିଥିଲେ। ବାପା ମା'ଂକର ସେ କନିଷ୍ଠ ପୁତ୍ର ଥିଲେ। ସେ ସମୟରେ ଗଡ଼ଜାତ ରାଜ୍ୟମାନଂକରେ ପାଠପଢ଼ାର ବିଶେଷ ସୁବିଧା ନଥାଏ। ଚାଟଶାଳୀ ମାନଂକରେ ପାଠପଢ଼ା ହେଉଥିଲା। କ୍ୱଚିତ୍ ପ୍ରାଇମେରି ବିଦ୍ୟାଳୟ ଥାଏ। କେବଳ ରାଜ୍ୟର ରାଜଧାନୀ ବଲାଂଗିର ପାଟଣାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା। ଭାରତଚଂଦ୍ର ଆଗଲପୁରରେ ପ୍ରାଥମିକ ଶିକ୍ଷା ସାରିଲେ। ବଲାଂଗୀର ପାଟଣାରେ ୧୮୯୮ରୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପଢ଼ିଲେ। ସେଠାରେ ପଢ଼ା ସରିଗଲା। ପାଠପଢ଼ାରେ ସେ କୃତିତ୍ୱ ଦେଖାଇଲେ। ତେଣୁ ଦରବାର ତାଂକୁ ମାସକୁ ୬ ଟଂକା ବୃତ୍ତି ଦେଲେ। ନିକଟତମ ହାଇସ୍କୁଲ ସଂବଲପୁରରେ ଥିଲା। ସେଠାରେ ସେ ମାଟ୍ରିକ ପାସ୍ କଲେ। କଲେଜରେ ପଢ଼ିବାକୁ କଟକ ଆସି ରେଭେନ୍ସା କଲେଜରେ ନାମ ଲେଖାଇଲେ। ଚାରିବର୍ଷପରେ ୧୯୦୮ରେ ସେ ବି.ଏ. ପାସ କଲେ। ଭଲ ପଢୁଥିବାରୁ ଦରବାର ତାଂକୁ ମାସକୁ ୩୦ ଟଂକା ବୃତ୍ତି ଦେଲେ ଓ କଲିକତାରେ ଆଇନ୍ ପଢ଼ିବାପାଇଁ ପଠାଇଲେ। ସେହି ସମୟରେ ତାଂକୁ ସରକାରୀ ଚାକିରୀ ମିଳିଗଲା। ସେ ଗଡ଼ଜାତର ସ୍ଥାୟୀ ବାସିଂଦା ହୋଇଥିଲେ ମଧ୍ୟ ୧୯୦୯ରୁ ଦୀର୍ଘ ୩୩ ବର୍ଷକାଳ ବିହାର ଓ ଓଡ଼ିଶା ପ୍ରଦେଶର ମୋଗଲବଂଦୀ ଅଂଚଳରେ କାମକଲେ। ବଂଗପ୍ରଦେଶରୁ ଅଲଗା ହୋଇ ୧୯୧୨ରେ ବିହାର ଓଡ଼ିଶା ପ୍ରଦେଶ ଗଢ଼ାଗଲା। ଭାରତଚଂଦ୍ର ବିହାରର ରାଂଚି, ପୁରୁଲିଆ, ସିୱାନ୍, ଆଦି ସ୍ଥାନରେ କାର୍ଯ୍ୟ କରି ପ୍ରଶଂସା ପାଇଲେ। ଓଡ଼ିଶାରେ ମଧ୍ୟ ସେ କଟକ, ପୁରୀ, ବାଲେଶ୍ୱର, ଅନୁଗୁଳ, ଯାଜପୁର, ବରଗଡ଼, ଓ ସଂବଲ୍ପୁରରେ ବିଭିନ୍ନ ପଦପଦବିରେ କାର୍ଯ୍ୟ କରିଥିଲେ।

ଭାରତଚନ୍ଦ୍ରଙ୍କର ବିଶେଷତ୍ୱ ଥିଲା ସେ ଯେଉଁ ଠାରେ କାମ କରୁଥିଲେ ସ୍ଥାନୀୟ ଲୋକମାନଙ୍କର ସହିତ ନିଜକୁ ମିଶାଇ ସାହିତ୍ୟ ଓ ସମାଜସେବାରେ ନିଜକୁ ନିୟୋଜିତ କରୁଥିଲେ। ଜଣେ ସରକାରୀ କର୍ମଚାରୀ ଭାବରେ ସେ ପରିଚିତ ଥିଲେ। ମାତ୍ର ସେ ସମୟରେ ଇଂରେଜ ସରକାର ଯେଉଁ ପ୍ରକାର ଏକନିଷ୍ଠ ଆନୁଗତ୍ୟ ଲୋଡୁଥିଲେ ଓ ଯାହାଦ୍ୱାରା ରାୟସାହେବ, ରାୟବାହାଦୁର ଆଦି ଉପାଧି ଓ ଆର୍ଥିକ ଲାଭ ମିଳୁଥିଲା ତାହା ତାଂକଠାରେ ନଥିଲା। ନିଜକୁ ଜଣେ ଦକ୍ଷ ଓ ଆଦର୍ଶ ପ୍ରଶାସକ ଭାବରେ ପ୍ରତିଷ୍ଠିତ କରାଇପାରିଥିଲେ  ମଧ୍ୟ ସାମାଜିକ ସ୍ତରରେ ତାଂକର ନିର୍ଭୀକତା ଓ ସମାଜର ନିମ୍ନ ବର୍ଗର ଲୋକଂକ ପ୍ରତି ଅନୁରାଗ ଅନ୍ୟମାନଂକ ଆଖିରେ ଭଲ ଦେଖାଯାଉ ନଥିଲା। ମୋଗଲବଂଦୀ ଅଂଚଳରେ ମଧ୍ୟ ବଡ଼ ବଡ଼ ଜମିଦାରମାନଂକର ଖୁବ୍ ଖାତିର୍ ଥିଲା। ସେମାନେ ପ୍ରଜାମାନଂକ ଉପରେ ଅତ୍ୟାଚାର କରୁଥିଲେ। ଶାସନ ପରିଚାଳନା ଦାୟିତ୍ୱରେ ଥିବା ଡେପୁଟି, ସବ୍ ଡେପୁଟିମାନେ  ଜମିଦାରମାନଂକର ଅପକର୍ମ ପ୍ରତି ଆଖିବୁଜି ଦେଉଥିଲେ। ରାଜ୍ୟରେ କୃଷି ଏକମାତ୍ର ଜୀବିକା ଥିବାରୁ ଓ ଅଧିକାଂଶ କ୍ଷେତ୍ରରେ ଏହା କେବଳ ପ୍ରାକୃତିକ ବୃଷ୍ଟିପାତ ଉପରେ ନିର୍ଭର କରୁଥିବାରୁ ବହୁ ସମୟରେ ଶସ୍ୟହାନି ହେଉଥିଲା। ମରୁଡ଼ି ପଡୁଥିଲା, ଜମିଦାର ମାନେ ନିଜ ପାଉଣା ଗଂଡାକ ପ୍ରଜାଂକଠାରୁ ଶୋଷି ନେଉଥିଲେ ମାତ୍ର ସେମାନଂକର ମଂଗଳ ପ୍ରତି ଜାଗ୍ରତ ନଥିଲେ, ମରୁଡ଼ି ସମୟରେ ସେମାନେ ନିଜ ଶସ୍ୟ ଛାଡୁ ନଥିଲେ। ପ୍ରଜାମାନଂକର ଦୁଃଖ ଅପନୋଦନ ନିମିତ୍ତ ସରକାରଂକର ସାହାଯ୍ୟ ଏକମାତ୍ର ଆଧାର ଥିଲା।

ସରକାର ଦୁର୍ଭିକ୍ଷ ଓ ଅନଟନ ସମୟରେ ଅନ୍ନଛତ୍ର ଖୋଲୁଥିଲେ, ମାତ୍ର ସାଧାରଣ ଉଚ୍ଚ ବର୍ଗର ପ୍ରଜାମାନେ ଏଠାରୁ ସାହାଯ୍ୟ ନେବା ଅପମାନଜନକ ମନେକରୁଥିଲେ। ଅନ୍ନ ବସ୍ତ୍ରର ଘୋର ଅଭାବ ସେମାନେ ନିରବରେ ସହୁଥିଲେ। ଭାରତଚଂଦ୍ର ଜମିଦାରମାନଂକର ନିଷ୍କର୍ମତା ଓ ଉଚ୍ଚ ଜାତିର ପ୍ରଜାମାନଂକର ଦୈନ୍ୟ ସରକାରଂକ ଦୃଷ୍ଟିକୁ ଆଣୁଥିଲେ। ନିଜେ ଏହିପରି ଲୋକଂକର ତାଲିକା ତିଆରି କରି ନୂଆ ଲୁଗାରେ ଚୂଡ଼ା ଚାଉଳ ବାଂଧି ଯେପରି କେହି ଜାଣି ନପାରିବ ଏହିପରି ଭାବରେ ବିଶ୍ୱସ୍ତ ଚୌକିଦାର ସାହାଯ୍ୟରେ ରାତି ଅଧରେ ସେମାନଂକ ଘର ଭିତରେ ଫିଂଗି ଦେଇ ଆସୁଥିଲେ। ତାଂକ ରିଲିଫ କାର୍ଯ ସବୁଶ୍ରେଣୀର ଲୋକଂକ ଆଖିରେ ପ୍ରଶଂସନୀୟ ଥିଲା। ହାକିମମାନଂକର ମକଦ୍ଦମା ବିଚାର କରିବା ମୁଖ୍ୟ କାମ ଥିଲା। ସେମାନେ ଫୌଜଦାରୀ ଓ ରାଜସ୍ୱ ମକଦ୍ଦମା ବିଚାର କରୁଥିଲେ। ଭାରତଚଂଦ୍ର ଆଇନର ତର୍ଜମା କରିବା ସମୟରେ ସଂପୂର୍ଣ ନିରପେକ୍ଷ ରହୁଥିଲେ। ସରକାରୀ ହସ୍ତକ୍ଷେପରୁ ସେ ଦୂରରେ

ରହୁଥିବାରୁ କଚେରୀରେ ପକ୍ଷ ଓ ଓକିଲମାନଂକର ସେ ସବୁସ୍ଥାନରେ ପ୍ରିୟ ପାତ୍ର ହେଉଥିଲେ। ଜମିଦାରମାନେ ବାକି ଖଜଣା ଅସୁଲ ନିମିତ୍ତ ପ୍ରଜାମାନଂକ ନାମରେ ରେଂଟ ସୁଟ୍ ଆଣୁଥିଲେ। ହୃଦୟହୀନ ଭାବରେ ଏହା ବିଚାର କରାଯାଇ ପ୍ରଜାର ଜମି ନିଲାମ ହେଉଥିଲା ଓ ଜମିଦାରଂକର ପ୍ରାପ୍ୟ ଅସୁଲ ହେଉଥିଲା। ମାତ୍ର ଆଇନର ସୀମିତ କ୍ଷେତ୍ରରେ ପ୍ରଜାର ସ୍ୱାର୍ଥ କିପରି ସଂରକ୍ଷିତ ରହିବ ଏହା ଭାରତଚଂଦ୍ରଂକର ଧ୍ୟାନ ଥିବାରୁ ରଣୀ ପ୍ରଜାମାନେ ଚାରିଆଡ଼େ ତାଂକର ପ୍ରଶଂସକ ହେଲେ। ଗଡ଼ଜାତର ସର୍ବୋଚ୍ଚ ହାକିମକୁ ଦେୱାନ କୁହାଯାଉଥିଲା। କୁଶାସନ ହେଲେ ବା ରାଜା ନାବାଳକ ଥିଲେ ସରକାର ନିଜ ଆଡ଼ୁ ଟାଣୁଆ କର୍ମଚାରୀ ପଠାଉଥିଲେ ଓ ସେମାନେ ସୁଶାସନ ପ୍ରତିଷ୍ଠା ଓ ନିରପେକ୍ଷ ନ୍ୟାୟ ଦେବାରେ ସକ୍ଷମ ହେଉଥିଲେ। ଭାରତଚଂଦ୍ର ମଧ୍ୟ ନିଜ ଚାକିରି କାଳରେ ଢେଂକାନାଳ ରାଜ୍ୟର ସହକାରୀ ମାନେଜର ଭାବେ କାର୍ଯକରି ସୁନାମ ଅର୍ଜନ କରିଥିଲେ। ସାଧାରଣତଃ ଗଡ଼ଜାତ ରାଜ୍ୟ ମାନଂକରେ ରାଜା ମାନଂକର ଚାଟୁକାରମାନେ କ୍ଷମତା ବିସ୍ତାର କରି ବିଚାରବୁଦ୍ଧିଶୂନ୍ୟ ଅର୍ଦ୍ଧଶିକ୍ଷିତ ରାଜାମାନଂକୁ ମଧ୍ୟ ଯୁଗୀୟ ଶାସନ ପ୍ରତି ଆକର୍ଷିତ କରୁଥିଲେ। ଏହାର ପରିଣାମ ବିଳଂବରେ ରାଜାମାନଂକୁ ଭୋଗିବାକୁ ପଡୁଥିଲା। ଭାରତଚଂଦ୍ର ବଣେଇର ଦେୱାନ ଥାଇ ଏ ପ୍ରକାର କୌଶଳ ପଂଡ କରିଥିଲେ। ଢେଂକାନାଳ ରାଜ୍ୟରେ ଚାକିରି କାଳରେ ସେ ନିଜ ଶାସନ କ୍ଷେତ୍ର (ସବ୍‌ଡିଭିଜନ)ର ସମସ୍ୟାମାନ ବହୁତ ଅଂଚଳ ଗସ୍ତ ଫଳରେ ନିର୍ଣୟ କରି ତାହାର ସମାଧାନ ନିମିତ୍ତ ଦରବାର ଉପରେ ଚାପ ପକାଇଥିଲେ। ଅନେକ ଲୋକହିତକର କାର୍ଯ ତାଂକ ଅମଳରେ କାର୍ଯକାରୀ ହେବା ସଂଭବପର ହୋଇ ପାରିଥିଲା। ଦୀର୍ଘ କାର୍ଯକାଳ ମଧ୍ୟରେ ସେ ନିଜର ଅଭିଜ୍ଞତା ଲେଖି ରଖୁଥିଲେ। ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ସଂଗୀତ ପ୍ରତି ତାଂକର ବିଶେଷ ଅନୁରାଗ ଥିଲା। ଚାକିରି କାଳରେ ସେ 'ହୁଏନସାଂକ ବର୍ଣିତ ଭାରତ ବିବରଣ' ଦୀର୍ଘ ଅନୁବାଦ ପୁସ୍ତକ ପ୍ରକାଶ କରିଥିଲେ। ଅବସର ଗ୍ରହଣ ପରେ ନିଜ ଆତ୍ମ ଚରିତ 'ମୋର ପୂର୍ବ ସ୍ମୃତିକଥା' ନାମରେ ସେ ନବଜୀବନ ମାସିକ ପତ୍ରିକାରେ ଧାରାବାହିକ ଲେଖିବା ଆରଂଭ କଲେ। ଏହା ସୁଖ ପାଠ୍ୟ, ତଥ୍ୟ ପୂର୍ଣ ଓ ସମକାଳୀନ ସାମାଜିକ ଅର୍ଥନୈତିକ ସମସ୍ୟାମାନଂକର ନିଖୁଣ ଚିତ୍ର ପ୍ରଦାନ କରୁଥିଲା। ପରବର୍ତୀ କାଳରେ ଏହା ମଧ୍ୟ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା।

୧୯୬୫ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଂକୁ ଏହି ପୁସ୍ତକ ନିମିତ୍ତ ସମ୍ମାନିତ କରିଥିଲେ। ପ୍ରାଚୀନ ଭଂଜ ସାହିତ୍ୟ ଚଂପୂ ଛାଂଦର ସେ ବିଶେଷ ପ୍ରିୟ ଥିଲେ। ଓଡ଼ିଶୀ ସଂଗୀତର ପୁନରୁଦ୍ଧାର ଓ ଲୋକପ୍ରିୟତା ନିମିତ୍ତ ସେ ଉଦ୍ୟମ କରୁଥିଲେ। ସେତେବେଳେ

ଉଚ୍ଚ ଶ୍ରେଣୀର ହିଂନ୍ଦୁମାନଂକର ଯୁବତୀ କନ୍ୟାମାନେ ସଂଗୀତ ଶିକ୍ଷା କରୁ ନ ଥିଲେ। ସେ ଏହି ପ୍ରତିବଂଧକକୁ ଭାଂଗି ନିଜ କନ୍ୟାମାନଂକୁ ସଂଗୀତ ଶିକ୍ଷା ଦେଉଥିଲେ। କଟକର ଶ୍ରୀ ରାମଚଂଦ୍ର ଭବନରେ ଅନୁଷ୍ଠିତ ଉତ୍କଳ ସଂଗୀତ ସମ୍ମିଳନୀରେ ସେମାନେ ଭାଗନେଇ କୃତିତ୍ୱ ଅର୍ଜ୍ଜନ କରିଥିଲେ । ତାଂକର ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁବ୍ୟକ୍ତି ସଂଗୀତର ଉପାସକ ହେଲେ। ପ୍ରାଚୀନ ସଂଗୀତ ସହିତ ହିଂଦୁସ୍ଥାନୀ ଓ କର୍ଣାଟକୀ ସଂଗୀତର ମଧ୍ୟ ପ୍ରସାର ଘଟିଲା। ଭାରତ ଚଂଦ୍ର ଆରଣ୍ୟକ (ଝାଡୁଆ) ବ୍ରାହ୍ମଣ ଥିଲେ। ସଂବଲପୁରରେ ସେମାନଂକର ଉତ୍କଳୀୟ (ଓଡ଼ିଆ) ବ୍ରାହ୍ମଣମାନଂକ ସହିତ ବୈବାହିକ ସଂପର୍କ ସ୍ଥାପନ ନିଷେଧ ଥିଲା। ନିଜର ଜ୍ୟେଷ୍ଠା କନ୍ୟା, ସୁଷମା ୧୯୪୫ରେ ପାଟଣାରୁ ଏମ.ବି.ବି.ଏସ୍. ଡାକ୍ତରି ପାସ କଲାପରେ ସଂବଲପୁରର ଡେପୁଟି କଲେକ୍ଟର ନାରାୟଣ ନଂଦଂକର ପୁଅ ଡାକ୍ତର କିଶୋରୀ ମୋହନ ନଂଦଂକୁ ବିବାହ କଲେ। ଉଭୟେ ବିହାର ପ୍ରଦେଶରେ କାର୍ଯକରି ସର୍ବୋଚ୍ଚ ପଦବିକୁ ଉଠିଥିଲେ। ତାଂକ କାର୍ଯରେ କ୍ଷୁବ୍ଧ ହୋଇ ଆରଣ୍ୟକ ବ୍ରାହ୍ମଣ ସମାଜ ତାଂକୁ ସାମାଜିକ ବାସଂଦ ଭୟ ଦେଖାଇ ଜୋରିମାନା କଲେ। ଭାରତଚଂଦ୍ର ଆଜୀବନ ନିର୍ଭୀକ ଓ ସଂସ୍କାର ଧର୍ମୀ ଥାଇ ଏହି ଆଦେଶକୁ ଆଇନ୍ ଅଦାଲତରେ ଅବୈଧ ଘୋଷଣା କରିବାକୁ ଦେଓ୍ୱାନି ମକଦ୍ଦମା, କଲେ। ଶେଷରେ ସେ ନିଜ କାର୍ଯରେ ଅଟଳ ଥାଇ ମକଦ୍ଦମାରେ ସଫଳ ହେଲେ। ସେହିଦିନ ଠାରୁ ଏହି କୃତ୍ରିମ ଭେଦ ବ୍ୟବସ୍ଥା ସମାଜରୁ ଉଠିଗଲା। ଭାରତଚଂଦ୍ରଂକର ଦଶଝିଅ ଓ ଦୁଇପୁଅ ଉଚ୍ଚ ଶିକ୍ଷା ଲାଭ କରି ସାମାଜିକ ପ୍ରତିଷ୍ଠା ପାଇଥିଲେ। ନାରୀଶିକ୍ଷା ତାଂକର ଜୀବନର ବ୍ରତ ଥିବା ଦୃଷ୍ଟିରୁ ନାନା ସାମାଜିକ ବାଧା ଓ ବ୍ୟକ୍ତିଗତ ଅସୁବିଧା ସତ୍ତ୍ୱେ ସେ ସବୁ ଝିଅମାନଂକୁ ଉଚ୍ଚ ଶିକ୍ଷିତ କରିବାରେ ସମର୍ଥ ହୋଇଥିଲେ ଓ ସମଗ୍ର ପ୍ରାକୃତିକ ଓଡ଼ିଶାରେ ଏ ପ୍ରକାର ଉଚ୍ଚ ଶିକ୍ଷିତ ଅନ୍ୟ ଏକ ପରିବାର ଦୁର୍ଲଭ ଥିଲା।

ଭାରତଚଂଦ୍ରଂକର ଚାକିରିରୁ ଅବସର ନେବା ବେଳକୁ ମହାନଦୀ ହୀରାକୁଦ ବହୁମୁଖୀ ଜଳ ଯୋଜନାର ପରିକଳ୍ପନା ଆରଂଭ ହେଲା। ଜଳ ଭଂଡାର ସୃଷ୍ଟି ହେଲେ ଅନେକ ଗ୍ରାମ ବୁଡ଼ିଯିବା ସୁନିଶ୍ଚିତ ଥିଲା। ଭାରତଚଂଦ୍ର ଏହି ଯୋଜନା ଫଳରେ ବନ୍ୟା ନିୟଂତ୍ରଣ, ଜଳସେଚନ ଓ ବିଦ୍ୟୁତ ଶକ୍ତି ଉତ୍ପାଦନର ସଂଭାବନା ହୃଦୟଂଗମ କରି ଏହା ସପକ୍ଷରେ ଥିଲେ। ଅବସର ଗ୍ରହଣ କରି ସେ ସଂବଲପୁର ସହରରେ ସ୍ଥାୟୀ ବାସିଂଦା ହେଲେ। ଏହି ଆଂଦୋଳନ ସତ୍ୟାଗ୍ରହ ଆକାର ଧାରଣ କଲା। ଜିଲ୍ଲାର ବହୁ ପ୍ରତିଷ୍ଠିତ ବ୍ୟକ୍ତି ଏହି ଆଂଦୋଳନରେ ଭାଗ ନେଲେ। ଓଡ଼ିଶାରୁ ଅଲଗା ହେବାପାଇଁ ଉଦ୍ୟମ କରୁଥିବା କେତେକ ଲୋକ ମଧ୍ୟ ଏଥିରେ ନିଜ ସ୍ୱାର୍ଥପାଇଁ ଯୋଗ ଦେଇ ବଂଧ

ନିର୍ମାଣର ବିରୋଧ କଲେ। ଭାରତଚଂଦ୍ରଂକର ଦୂରଦର୍ଶୀ ଚିଂତାଶକ୍ତି ଢଙ୍କ ଯୋଜନାର ଉପକାରିତା ହୃଦୟଂଗମ କରିଥିବାରୁ ସେ ଏହାର ସମର୍ଥକ ଥିଲେ। ଜମି ଅଧିଗ୍ରହଣ ନିମିତ୍ତ ଗୋଟିଏ ସରକାରୀ ଆଇନ୍ ଅଛି। ଜମି ସରକାର ନେଲେ ଉଚିତ କ୍ଷତି ପୂରଣ ଦେବେ। ଏହି ପ୍ରକ୍ରିୟାରେ ଜମି ଅଧିଗ୍ରହଣ ବିଳଂବ ହେବାରୁ ସରକାର ଗୋଟିଏ ବିଶେଷ ଆଇନ୍ ତିଆରି କଲେ। ଉନ୍ନୟନ କାର୍ଯପାଇଁ ଭୂମି ଅଧିଗ୍ରହଣ କାର୍ଯ ତ୍ୱରାନ୍ୱିତ କରିବା ଏହାର ଲକ୍ଷ୍ୟ ଥିଲା। ୧୯୪୮ରେ ପାସ୍ ହୋଇଥିବା ଏହି ସ୍ୱତଂତ୍ର ଆଇନ୍ ବଳରେ କ୍ଷତିପୂରଣ ଦେଉଥିବା କର୍ମଚାରୀମାନଂକୁ ବିଶେଷ କ୍ଷମତା ଦିଆଗଲା। ସେହି କର୍ମଚାରୀ ଜରୁରୀ ଦଖଲ ନେଇପାରିବେ ଓ ଜମି ମାଲିକଂକ ସହିତ ଚୁକ୍ତି କରି କ୍ଷତିପୂରଣ ଦେଇ ପାରିବେ। ଭାରତଚଂଦ୍ର ନିଜ କାର୍ଯକାଳ ମଧ୍ୟରେ ଭୂଅର୍ଜନ ଅଧିକାରୀ ଥାଇ ଆଇନର ଉଚିତ ତର୍ଜମା କରିପାରୁଥିଲେ। ମାତ୍ର ଆଇନର ହୃଦୟହୀନ ପ୍ରୟୋଗ ତାଂକୁ ମର୍ମାହତ କଲା। ସେ ବଂଧ ବିରୋଧୀମାନଂକ ସହିତ ମିଶି ଉଚିତ କ୍ଷତିପୂରଣ ପାଇ ମକଦ୍ଦମା କଲେ। ଇଂରେଜ ସରକାରଂକର ଜଣେ ଅତି ନିମକସଚ୍ଚା କର୍ମଚାରୀ ରାୟସାହେବ ନଟବର ସାହୁ। ସେ ଅନ୍ୟ କର୍ମଚାରୀମାନଂକ ସହିତ ମିଶି ନାମମାତ୍ର ମୂଲ୍ୟଦେଇ ଜମିଦଖଲ ନେଇ ପ୍ରଜାମାନଂକୁ ଶୋଷଣ କରିବାରେ ଲାଗିଲେ। ପ୍ରତିବାଦ ଫଳରେ ସ୍ୱତଂତ୍ର ଆଇନ୍ ବଳରେ ଜଣେ ଜିଲ୍ଲାଜଜ୍ ପାହିଆର ମଧ୍ୟସ୍ଥ (ଆରବିଟ୍ରେଟର) ସଂବଲପୁରରେ ଅବସ୍ଥାପିତ ହେଲେ ଓ କ୍ଷତିପୂରଣର ପର୍ଯାପ୍ତତା ସେ ନିୟଂତ୍ରଣ କରିପାରିଲେ। ବଡ଼ ବଡ଼ ଲୋକେ ତାଂକ ଅଦାଲତରେ କେଶ କରି ଉପକୃତ ହେଲେ ମଧ୍ୟ ଛୋଟ ଛୋଟ ଭୂମି ଅଧିକାରୀମାନେ ବିଶେଷ କ୍ଷତିଗ୍ରସ୍ତ ହେଲେ । ଭାରତଚଂଦ୍ରଂକର ଲରପଂକ ନାମକ ଗ୍ରାମରେ ଥିବା ଜମି ସରକାର ନେଇ ପର୍ଯାପ୍ତ କ୍ଷତିପୂରଣ ଦେଇ ନଥିବାରୁ ସେ ଉଚିତ କ୍ଷତିପୂରଣ ଦାବିରେ ଅନ୍ୟମାନଂକର ପଥ ପ୍ରଦର୍ଶକ ହେଲେ। କ୍ଷତିପୂରଣ କିପରି ହୃଦୟହୀନ ଭାବରେ ଦିଆଗଲା ତାହା ସରକାର ବ୍ୟବସ୍ଥାପକ ଶ୍ରଦ୍ଧାକର ସୂପକାରଂକର ଏକ ପ୍ରଶ୍ନର ଉତ୍ତରରେ ଆସେମ୍ବ୍ଲିରେ ଏକର ପିଛା ଛଅ ଟଂକା ଦିଆଯାଇଥିବା ମାନି ନେବାରୁ ସାଧାରଣ ସଚେତନ ନାଗରିକର ଦୃଷ୍ଟି ଏଥିପ୍ରତି ଆକର୍ଷିତ ହେଲା। ଭାରତଚଂଦ୍ର ଗଛମାନଂକର ମୂଲ୍ୟ ନିରୂପଣ ପ୍ରତ୍ୟେକ ବୃକ୍ଷର ଉପଯୋଗିତା ଆଦି ଅନୁଧ୍ୟାନ କଲେ। ଜଣାଶୁଣା ମୂଲ୍ୟବାନ ବୃକ୍ଷ ବ୍ୟତୀତ ଅନ୍ୟାନ୍ୟ ଗଛ ପାଇଁ କ୍ଷତିପୂରଣ ଜାଳେଣି କାଠ ଭାବରେ ନିଆଯାଉଥିଲା। ଚାରାଗଛ ଏହି ପ୍ରକାର ଏକ ଗଛ, ଏହାର କୋଳି ଖାଦ୍ୟ। ଏହି କୋଳିର ଶୁଖିଲା ମଂଞ୍ଜିରୁ ପୁଷ୍ଟିକର ସୁଖାଦ୍ୟ ପ୍ରସ୍ତୁତ କରାଯାଇଥାଏ। ଏହାର ଉପଯୋଗୀତା କର୍ମଚାରୀମାନଂକୁ ଜଣା ନ ଥିବାରୁ ସେମାନେ କ୍ଷତି ପୂରଣ ମାତ୍ରା ନିର୍ଣୟରେ ଭୁଲ କରୁଥିଲେ।

ଭାରତଚଂଦ୍ର ଏହି କୋଳି, ଏଥିରୁ ପସ୍ତୁତ ଲଡୁ ଧରି ଓଡ଼ିଶା ହାଇକୋଟରେ ନିଜେ ଯୁକ୍ତି ବାଢ଼ିଲେ। ମାନ୍ୟବର ବିଚାର ପତିମାନେ ତାଂକର ଯୁକ୍ତି ଗ୍ରହଣ କଲେ ଓ ସେମାନେ ୧୯୫୩ରେ ତାଂକ ଜମିଦଖଲ ଓ କ୍ଷତିପୂରଣ ମକଦ୍ଦମାରେ ଏକ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇଥିଲେ। ସେଥିରେ ବିଭିନ୍ନ କିସମର ଜମିର କ୍ଷତିପୂରଣ ନିର୍ଧାରଣ ନିମିତ୍ତ ମୂଳନୀତି ଓ ପଦ୍ଧତି ବିଷୟରେ ବିଶଦ ଆଲୋଚନା କରାଯାଇଥିଲା। ଏହି ପଦ୍ଧତି ଅନୁସାରେ ପରବର୍ତ୍ତୀ କାଳରେ ନିରୂପଣ କରାଯାଇଥିବା କ୍ଷତି ପୂରଣ ସଂତୋଷ ଜନକ ବିବେଚିତ ହେଲା, ବିଳଂବରେ କ୍ଷତି ପୂରଣ ପାଇବା ପ୍ରଜାମାନେ ବିଶେଷ ଉପକୃତ ହେଲେ ଓ ଏଥିପାଇଁ ଭାରତଚଂଦ୍ର ସେମାନଂକର ନମସ୍ୟ।

ଶିକ୍ଷା ପ୍ରସାର ବିଶେଷକରି ନାରୀ ଶିକ୍ଷାର ବିକାଶ ନିମିତ୍ତ ସେ ସଂବଲପୁରର କଲେଜ ଟ୍ରଷ୍ଟ ଫଂଡର ସଭ୍ୟଥାଇ ବିଶେଷ ଉଦ୍ୟମ କରିଥିଲେ। ଏହି ଫଂଡର ଅର୍ଥରେ ବେସରକାରୀ ଭାବରେ ସର୍ବ ପ୍ରଥମେ ଓଡ଼ିଶାରେ ମହିଳା କଲେଜ ପ୍ରତିଷ୍ଠା କରାଗଲା। ସଂବଲପୁର ବିଶ୍ୱବିଦ୍ୟାଳୟ ମଧ୍ୟ ଓଡ଼ିଆ ସାହିତ୍ୟରେ ତାଂକ ସ୍ମୃତିରେ ପ୍ରତିବର୍ଷ ଭାରତଚଂଦ୍ର ନାୟକ ସ୍ମୃତି ପୁରସ୍କାର ପ୍ରଦାନ କରି ଆସୁଅଛଂତି। ତାଂକର ଜ୍ୟେଷ୍ଠପୁତ୍ର ସତ୍ୟନାରାୟଣ, ଆଇନ୍‌ଜୀବୀ ଥାଇ ଅକାଳରେ ମୃତ୍ୟୁବରଣ କରିଥିଲେ। ୨ୟ ପୁତ୍ର ବିଭୁପ୍ରସାଦ ସଂବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଥିଲେ। ଭାରତଚଂଦ୍ର ୧୯୬୯ରେ ସଂବଲପୁରର ନିଜ ବାସଭବନରେ ଶେଷନିଶ୍ୱାସ ତ୍ୟାଗ କଲେ।





# ପ୍ରଥମ ଜିଲ୍ଲାଜଜ୍

# କୃଷ୍ଣଚନ୍ଦ୍ର ନନ୍ଦ

୧୯୫୩-୫୪ ମସିହା। ବଲାଂଗିର କଳହାଂଡି ଗୋଟିଏ ଜିଲ୍ଲା ଜଜ୍ ଅଧିନ କଳାହାଂଡି ଭବାନୀପାଟଣାରେ ଜଣେ ସବ୍ ଜଜ୍ ଥାଆଂତି। ଜିଲ୍ଲା ଜଜ ବଲାଂଗିରରେ ସେସନ୍ସ ମକଦ୍ଦମାର ଦଉରା ସୁପର୍ଦ, (କମିଟମେଣ୍ଟ) ପରେ ବିଚାରର ତାରିଖ ଧାର୍ଯ୍ୟ କରଂତି। ସେସନ୍ସ ମକଦ୍ଦମା ସେଇ ଅନୁସାରେ ଯାଇ ବିଚାର କରଂତି। ତେଲ ନଦୀ ଉପରେ ବେଲଗାଁ ପାଖରେ ମହତାବ ବ୍ରିଜ୍ ସରି ନ ଥାଏ। ତେଣୁ ସିଧା ସଡ଼କରାସ୍ତା ନ ଥାଏ। ବଲାଂଗିରରୁ ରାସ୍ତାରେ ଟିଟିଲାଗଡ଼। ସେଠାରୁ ଟ୍ରେନ୍‌ରେ କେଶିଂଗା ଓ ପୁଣି ରାଜପଥରେ ଭବାନୀପାଟଣା। ମକଦ୍ଦମା ତାରିଖ ଥରେ ଧାର୍ଯ୍ୟ ହେଲେ ଗଡ଼େଇବାର ଉପାୟ ନ ଥାଏ। ଥରେ ଜିଲ୍ଲା ଜଜ୍ ଏମିତି ଗୋଟିଏ ମକଦ୍ଦମା ବିଚାର କରିବାକୁ ଭବାନୀପାଟଣା ଯାଉଥାଆଂତି। ସକାଳେ ଟିଟିଲାଗଡ଼ରେ ପହଂଚି ଡାକବଂଗଳାରେ ଉପରବେଳା ଟ୍ରେନ୍ ଅପେକ୍ଷାରେ ଥାଆଂତି। ତାଂକୁ ମଧ୍ୟାହ୍ନ ଭୋଜନ ପାଇଁ ସ୍ଥାନୀୟ ମୁନ୍‌ସଫ୍ (ବର୍ତମାନ କନିଷ୍ଠବର୍ଗ ସିଭିଲଜଜ୍) ନିମଂତ୍ରଣ କଲେ। ଦେଓ୍ୱାନି ମକଦ୍ଦମା ବିଚାର ପାଇଁ ସେ ସବ୍‌ଡିଭିଜନର ଏକମାତ୍ର ଅଧିକାରୀ। ଜଜ ସାହେବଂକୁ ଦେଖାକରିବା ସବୁ ମାଜିଷ୍ଟ୍ରେଟମାନଂକର ଅଲିଖିତ ଅବଶ୍ୟ କର୍ତବ୍ୟ ଧରାଯାଉଥିଲା। ମୁନ୍‌ସଫ୍ ସେମାନଂକୁ

ମଧ୍ୟ ଡାକିଲେ। ମୋଟ ୫/୬ ଜଣ ଖିଆପିଆ ସାରି ମୁନ୍‌ସଫଙ୍କ ବାରଂଡାକୁ ଆସିବା ବେଳକୁ ପ୍ରାୟ ୧୯/୨୦ ବରଷର ଜଣେ ଯୁବକ ଜିଲ୍ଲାଜଜଂକ ଗୋଡ଼କୁ ଜବରଦସ୍ତି ମାଡ଼ି ବସିଥିଲା। ଚେହେରାରୁ ସେ କ୍ଳାଂତ ଜଣାଯାଉଥାଏ। ତାର ଗୋଡ଼ହାତ ଧୂଳିଆ। ସେ ବଡ଼ପାଟିରେ କାଂଦିକରି କହୁଥାଏ ''ହଜୁର ଧର୍ମଦାତା ମୁଁ ଦୋଷୀ, ମୁଁ ବିଷଦେଇ ମାରିଛି। ଆପଣ ମତେ ମିଛରେ ଦୟା ଦେଖାଇ ଛାଡ଼ିଦେଲେ। ମତେ ଜେଲ ପଠାଂତୁ। ସାନି ବିଚାର କରଂତୁ। ଅମୁକ ଅମୁକଂକ କଥାରେ ମୁଁ ଏପରି ଗୁହଖିଆ ବୁଦ୍ଧି କଲି। ଆପଣ ମତେ ସିନା ଛାଡ଼ିଦେଲେ ହେଲେ ମତେ ଏବେ ଧର୍ମଦଂଡ ମିଳୁଛି। ମତେ କେହି ଖାଇବାକୁ ଗଂଡାଏ ବି ଦେଉନାହାଂତି। ଉପାସ ଭୋକରେ ଚାଲି ଚାଲି ବଲାଂଗିରରୁ ଆସିଲି ହଜୁରଂକୁ ଦେଖାକରି ମୋ ଦୋଷ ମାନି ନେଇ ଦଂଡଗ୍ରହଣ କରିବାକୁ'' ଅନବରତ ସେ ପାଟି କରି କହି ଚାଲିଥାଏ। ହାତ ଛଡ଼ାଇବାକୁ କହିଲେ ଛାଡୁ ନଥାଏ। ଜୋରକରି ଛଡ଼ାଇବାକୁ ମଧ୍ୟ ଦେଉ ନଥାଏ। ସମସ୍ତେ ସ୍ତବ୍ଧ। 'ଗୋଡ଼ ଛାଡ଼ ତୋ କଥା ଶୁଣାଯିବ' – ଏତିକି ଜଜସାହେବ ନିର୍ଭର ବାକ୍ୟ କହିଲାରୁ ହାତଛାଡ଼ି ସେ ଛିଡ଼ା ହୋଇ ତାର ଦୁଃଖ ଗାଇଗଲା। ବଲାଂଗିରର ଗୋଟିଏ ନରହତ୍ୟା ମାମଲାରେ ସେ ଆସାମୀ ଥିଲା। ବଲାଂଗିରର ଜିଲ୍ଲା ସବରେଜିଷ୍ଟାର ସତ୍ୟବାଦୀ ଦାସଂକୁ ବିଷ ଦେଇ ହତ୍ୟା କରିଥିବା ଅଭିଯୋଗରେ ତାର ବିଚାର ହେଉଥିଲା। ନିଃସହାୟ ବୋଲି ସରକାର ତାକୁ ଧରମ ଓକିଲ ଦେଇଥିଲେ। ପ୍ରମାଣ ଅଭାବରୁ ସେ ୨/୩ ଦିନ ତଳେ ଖଲାସ ପାଇଥାଏ। ସେ ତାର ଦୁଖ କହିଲା – ମକଦ୍ଦମାରେ ତାକୁ ଯେ ଖଲାସ କରାଇଲେ ସେଇ ଓକିଲଂକୁ ସେ ତାଂକର ଚାକର କି ରାଂଧୁଣିଆ ହେବାକୁ କହିଲା। ସେ ଶୁଣେଇଲେ ତୁ ଗୋଟିଏ ଖୁନୀ। ଯାହାର ରାଂଧୁଣିଆ ହେଲୁ ତାକୁ ଶଂଖୁଆ ବିଷ ଦେଇ ମାରିଦେଲୁ, ତୋ କପାଳ ଭଲ। ମକଦ୍ଦମା ଅପ୍ରମାଣ ହେଲା, ତୋତେ କିଏ ରାଂଧୁଣୀଆ କରି ରଖିବ ନା ଚାକର କରିବ। ଯେଉଁ ହୋଟେଲ କି ଘରୋଇ ପରିବାରକୁ ଗଲା ସେମାନେ ସମସ୍ତେ ମଧ୍ୟ ସେଇଆ କହି ତାକୁ ଧରାଛୁଆଁ ଦେଲେ ନାହିଁ।

ଜଜ୍‌ସାହେବ ମକଦ୍ଦମାର ବିଷୟବସ୍ତୁ ସମସ୍ତଂକୁ ଶୁଣାଇଦେଲେ। ବଲାଂଗିର ଜିଲ୍ଲା ସକାଶେ ଜଣେ ଜିଲ୍ଲା ସବ୍‌ରେଜିଷ୍ଟାର ଥିଲେ। ପ୍ରତି ସବ୍‌ଡିଭିଜନରେ ଜଣେ ଲେଖା ସବ୍‌ରେଜିଷ୍ଟାର। ସେମାନଂକର ସିରସ୍ତା ତଦବିର କରିବା ଥିଲା ତାଂକ କାମ। ଉପକୂଳ ଅଂଚଳରେ ନବସିଂଧାମାନେ ଦଲିଲ ଲେଖଂତି। ଗଡ଼ଜାତ ଅଂଚଳରେ ଅର୍ଜିନବିସ (ମୋହରୀର) ମାନେ ଏହା ଲେଖୁଥିଲେ। କେଉଁ ଦଲିଲ ଲେଖିଲେ କେତେ ଫିଜ୍ ପଡ଼ିବ ପୁଣି ଲେଖନକାର ଠିକ ଭାବରେ ଲେଖିବା ଜାଣଂତି କି ନାହିଁ ସେ ସବୁ ଶୃଂଖଳିତ କରିବାକୁ ସରକାର ଦଲିଲ ଲିଖନକାରୀମାନଂକର ଲାଇସେନ୍‌ସ ନିୟମାବଳୀ ଚାଲୁକଲେ। ଫିଜ ମଧ୍ୟ ଧାର୍ଯ କରାଗଲା। ପଟାମୁଂଡାଇରୁ ବଦଳି ହୋଇ ଆସି ସତ୍ୟବାଦୀ ଦାସ ଏହି ନିୟମାବଳୀ ଯେପରି କଡ଼ାକଡ଼ି ରୂପେ ପାଳନ ହୁଏ ତାହା ଦେଖୁଥିଲେ। ଫଳରେ ଅରଜି ନବିସ ମାନଂକର ଦାନାରେ ଧୂଳି ପଡ଼ିଲା। ସତ୍ୟବାଦୀ ନିଜ ଜାତିର ଗୋଟିଏ ଅନାଥ ପିଲାକୁ ଘରେ ରଖିଥାଂତି। ସେ ରଂଧାବଢ଼ା ଓ ଘରର ଯାବତୀୟ କର୍ମ କରେ। ତାକୁ

ସତ୍ୟବାଦୀ ପାଠ ପଢାଂତି । ଉଦ୍ଦେଶ୍ୟ ଭବିଷ୍ୟତରେ ଯେପରି କିଛି ଗୋଟାଏ ସରକାରୀ କାମଦାମ ପାଇଁ ପାରିବ । ତା ନାମରେ ଗୋଟିଏ ପାସବୁକ୍ ଖୋଲିଥାଂତି । ପ୍ରତି ମାସରେ ତାର ନିର୍ଦ୍ଦିଷ୍ଟ ବେତନ ସେଥିରେ ଜମାରଖୁଥାଂତି । ଯେତେବେଳେ ସେ ଘରକାମ ସାରି କୁଆଡ଼େ ବୁଲି ବାହାରେ ସେତିକିବେଳେ ପାଠପଢ଼ା । ନ ପଢ଼ିଲେ ମାଡ଼ । ସେ ବଡ଼ ରାଗରେ ଥାଏ । କେହି ଜଣେ କଚେରୀ ପାଖରେ ତାକୁ ବତେଇଲା ଗୋଟିଏ ଔଷଧ ଦେଉଛି । ସଇଁତଲା କଂଦ ଚେରମୂଳରୁ ଏ ଔଷଧ ଜଂଗଲ ଠାକୁରାଣୀ ଦୟାରୁ ତିଆରି କରିଛି । ତାଂକ ଖାଇବା ଜିନିଷରେ ମିଶାଇ ଦେଇଦେଲେ ସେ ତୋ ଆଗରେ ମୂଷା ପରି ହୋଇଯିବେ । ତୁ ଯାହା କହିବୁ ତାହା କରିବେ । କେହି ନଜାଣିବାରେ ଔଷଧ ଦେବୁ । ଷଡ଼୍କର୍ଣ ହେଲେ ମଂତ୍ର ଅକାମୀ ହୋଇଯିବ । ରାଂଧୁଣିଆ ଚାକର ସୁବିଧା ଦେଖି ଅଟା ଚକଟିବା ବେଳେ ଏହା ମିଶାଇ ପରଟା ତିଆରି କଲା । ସତ୍ୟବାଦୀ ଖାଇବା ପରେ ପ୍ରତିକ୍ରିୟା ଦେଖା ଗଲା । ସେ ଡାକ୍ତରଖାନାକୁ ଯିବା ବାଟରେ ମରିଗଲେ । ତାଂକ ବାଂତିରୁ ଉତ୍କଟ ଶଂଖୁଆ ବିଷ ଖାଇ ମୃତ୍ୟୁ ବୋଲି ପରୀକ୍ଷା ରିପୋର୍ଟ ମିଳିଲା । ସବୁ ନିଷ୍କପଟଭାବରେ ସେ ଜଜ୍ ସାହେବଂକୁ ଏକ ନିଶ୍ୱାସରେ ଶୁଣାଇଲା । ସମସ୍ତେ ସ୍ତବ୍ଧ । ଖବରକାଗଜରେ ଖାଲି ସେ ଖଲାସ ହେଲା ଓ ଲଢ଼ିଥିବା ଓକିଲଂକର ନାଁ ବାହାରିଥାଏ । ଜଜ୍ ସାହେବ ତାକୁ କହିଲେ 'ଟେକାଟାଏ ଫୋପାଡିଦେଲେ ଯେମିତି ସେ ଆଉ ହାତକୁ ଆସିବ ନାହିଁ ମୋର ସେମିତି ଲେଖା ଓଲଟିବ ନାହିଁ । ତୁ ଏଣିକି ଭଲ ମଣିଷ ହୋଇ ବଂଚିଥା' । ସ୍ଥାନୀୟ ଅଧିକାରୀମାନେ ତାଂକ କଥାରେ ଟୋକାଟା ନିଜଗାଁକୁ ଫେରିଯିବାର ବାଟଖରଚ ଏକାଠି କରି ତାକୁ ସେଇଦିନ ଟ୍ରେନ୍‌ରେ ବିଦାକଲେ । କେଶିଂଗା ଷ୍ଟେସନରେ ହାକିମକୁ ମୁଂଡିଆମାରି ସେଇ ଗାଡ଼ିରେ ସେ କଟକ ଗଲା । ସେଇ ଜଜ୍ ଜଣକ ହେଉଛଂତି କୃଷ୍ଣଚଂଦ୍ର ନଂଦ ।

ପଶ୍ଚିମ ଓଡ଼ିଶାର ସେ ସର୍ବପ୍ରଥମ ମୁନ୍‌ସଫ୍ ସବଜଜ୍ ଓ ଜିଲ୍ଲା ଜଜ୍ । ବ୍ରିଟିଶ ଶାସନରେ ଝାଡୁଆପଡାର ତ୍ରିବିକ୍ରମ ପୂଜାରୀ ପୁରୀ ଜିଲ୍ଲାପାଳ ହୋଇଥିଲେ । ସ୍ୱାଧୀନତା ପରେ ତାଂକ ସାନ ଭାଇ ସଚ୍ଚିଦାନଂଦ ପୂଜାରୀ ମଧ୍ୟ ସେଇ ପଦବି ମଂଡନ କରିଥିଲେ ମାତ୍ର ଜିଲ୍ଲା ଜଜ୍ କେହି ହୋଇନଥିଲେ । ସେ ସମୟରେ ଜିଲ୍ଲା ଜଜ୍‌ଂକ ମର୍ଯାଦା ଅସାଧାରଣ । କଟକ ଜିଲ୍ଲାଜଜଂକର ବିରାଟ କୋଠି ଏବେ ସର୍କିଟ୍ ହାଉସ ହୋଇଛି । ସଂବଲପୁର କଟକ ଏକ ଜଜିୟତି ଅଧୀନରେ । ଗଂଜାମ ବ୍ରହ୍ମପୁର ଜିଲ୍ଲାଜଜ୍‌ଂକର ବିରାଟ କୋଠି ଲୋକେ ଟ୍ରେନ୍‌ରେ ଗଲାବେଳେ ନିଶ୍ଚେ ଆଖିରେ ଦେଖିବେ । ଜଜ୍‌ମାନେ ନୀତିନିଷ୍ଠ ସେହିପରି ଥିଲେ । ଥରେ ଘୋଡ଼ାଗାଡ଼ିରେ କଚେରୀକୁ ଯିବାବେଳକୁ ଜଣେ ହାକିମ ଦେଖିଲେ ତାଂକ ପୁଅ ଗୋଟିଏ ନାଲି ନେଳି ପେନସିଲ ଧରି ଖାତାରେ ଗାର କାଟୁଛି । ସେ ଅଟକିଲେ । ପେନ୍‌ସିଲ ଆଣିଲେ କେତୋଟି ଅକ୍ଷର ଦେଖି ଏହା ସରକାରୀ ଷ୍ଟେସନାରୀ ବୋଲି ଜାଣିଲେ । ପୁଅ ଏହା ଆଉ ଦରକାରୀ ନୁହେଁ ବୋଲି ଫୋପାଡ଼ି ଦେବା ବେଳେ ତାଂକ ଷ୍ଟେନୋଂକଠାରୁ ଆଣିବା ଶୁଣାଇଲା । ଜଜ୍‌ଂକୁ ଜଣାଗଲା ଆଉ କିଛିଦିନ ପେନ୍‌ସିଲ ବ୍ୟବହୃତ ହୋଇପାରିଥାଆଂତା । ସେ ଲଂବା ମାପିଲେ । କଚେରିକୁ ଗଲେ । ସରକାରୀ ନାଲିନେଳି

ପେନସିଲ ତାଂକ ଅଜ୍ଞାତସାରରେ ବ୍ୟକ୍ତିଗତ କାର୍ଯରେ ବ୍ୟବହାର ହେବା ପାଇଁ ଦୁଃଖ ପ୍ରକାଶ କରି ପାଟଣା ହାଇକୋର୍ଟକୁ ଚିଠି ଲେଖିଲେ। ଛାପାଖାନାର ମୂଲ୍ୟ ତାଲିକା ଦେଖି ସେଇ ଲଂବର ନାଲିନେଳି ପେନସିଲର ମୂଲ୍ୟ ଯାହା ହେବାର କଥା ତାକୁ ଟ୍ରେଜରିରେ ଜମା ଦେଇ ଚାଲାଣ ନିଜ ଅନୁତାପ ପତ୍ର ସହିତ ମଧ୍ୟ ପଠାଇଲେ। ଏପରି ହାକିମ କର୍ତବ୍ୟ ସଂପାଦନରେ କଠୋର ଥାଇ ସର୍ବଜନମାନ୍ୟ ଥିଲେ।

କୃଷ୍ଣଚଂଦ୍ର ନଂଦ ସେହି ଶ୍ରେଣୀର ଅଧୁନା ବିଲୁପ୍ତ ନୀତିନିଷ୍ଠ ହାକିମ ମାନଂକ ମଧ୍ୟରୁ ଜଣେ। ସେ ସଂବଲପୁର ସହରର ନଂଦପଡ଼ାରେ ୧୯୦୬ ଜାନୁଆରୀ ୬ ତାରିଖରେ ଜନ୍ମଗ୍ରହଣ କରିଥିଲେ। ଏମ.ଏ.ବିଏଲ୍. ପାସ୍‌କରି ସେ ବିହାର ଓଡ଼ିଶାରେ ୧୯୩୨ରେ ମୁନ୍‌ସଫ୍ ଭାବରେ ଚାକିରି ଆରଂଭ କଲେ। କଟକ, ଯାଜପୁର, କେଂଦ୍ରାପଡ଼ା, ବ୍ରହ୍ମପୁର ବରଗଡ଼ ଆଦି ସ୍ଥାନ ମାନଂକରେ ସେ ମୁନ୍‌ସଫ୍ ଥାଇ ସେ ୧୯୩୯ରେ ଓଡ଼ିଶା ସରକାରଂକର ଆଇନ ଶ୍ରମ ବାଣିଜ୍ୟ ବିଭାଗ ଓ ବିଧାନସଭାର ସହକାରୀ ସଚିବ ହେଲେ। ୧୯୪୭ରେ ସେ ଆଇନ ବିଭାଗର ଅଂଡର ସେକ୍ରେଟାରି ଥିଲେ। ୧୯୪୨ରେ ସେ ରାଜ୍ୟସରକାରଂକର ଦେବୋତ୍ତର ବିଭାଗର କମିସନର ଭାବରେ କାର୍ଯ କରିଥିଲେ। ପରେ ସେ ସରକାରଂକର ଆଇନ ବିଭାଗରେ ଜିଲ୍ଲା ଜଜ୍ ପାହିଆର ଡେପୁଟି ସେକ୍ରେଟାରି ହେଲେ। ଅନେକ ଦିନ ସେ ଉକ୍ତ ପଦରେ ଗୌରବର ସହିତ କାର୍ଯ କରି ଓଡ଼ିଶା ହାଇକୋର୍ଟର ରେଜିଷ୍ଟ୍ରାର ଓ ଜିଲ୍ଲାଜଜ୍ ଭାବରେ ବଲାଂଗିର ଆଦି ସ୍ଥାନରେ କାର୍ଯ କରିଥିଲେ।

ବ୍ୟକ୍ତିଗତ ଜୀବନରେ କୃଷ୍ଣଚଂଦ୍ର ମେଳାପୀ ଓ ନିରହଂକାରୀ ଥିଲେ। ସେ ଜିଲ୍ଲାଜଜ୍ ଥିବାବେଳେ ତାଂକୁ ମାଜିଷ୍ଟ୍ରେଟମାନେ ସୌଜନ୍ୟ ସାକ୍ଷାତ ପାଇଁ ଆସିବା ସମୟରେ ସେ ନିଜେ ଅପିଲ ଶୁଣିଥିବା ସେମାନଂକର ମକଦ୍ଦମାର ଦୋଷ ତ୍ରୁଟି ଆଲୋଚନା କରୁଥିଲେ। ଆଇନର ସର୍ବଶେଷ ପରିବର୍ତନ, ବିଭିନ୍ନ ହାଇକୋର୍ଟର ସଦ୍ୟତମ ନଜିର ଶୁଣାଇ ସେ ବିଚାରଧାରା ଓ ସାକ୍ଷ୍ୟଆଇନକୁ ପ୍ରତ୍ୟହ ଅନୁଧ୍ୟାନ କରିବାକୁ ଉପଦେଶ ଦେଉଥିଲେ। ତାଂକର ମାଜିଷ୍ଟ୍ରେଟ ମାନଂକୁ ଉପଦେଶ ସାକ୍ଷ୍ୟ ଆଇନରେ ଟାଣ ଥିଲେ ତମେ ସାକ୍ଷୀର ବୟାନ ଯଂତ୍ରପରି ଲେଖି ନ ଯାଇ ନିଜ ଆୟତ୍ତରେ ଦୁଇଚାରି ପଦରେ ସବୁ ଲେଖି ପାରିବ। ସେ ବିଭିନ୍ନ ହାଇକୋର୍ଟର ପ୍ରତିଷ୍ଠିତ ଜଜ୍‌ମାନଂକର ବିଚାରଧାରା ଓ ଆଇନ ପ୍ରୟୋଗ ତଳ ଅଦାଲତର ଅଧିକାରୀମାନଂକୁ ନିଜଅଭିଜ୍ଞତାରେ ଶୁଣାଇ ସେହିପରି ଦୃଢ଼ତାର ସହିତ କାର୍ଯକରିବାକୁ ପରାମର୍ଶ ଦେଉଥିଲେ।

୧୯୬୪ରେ ଅବସର ଗ୍ରହଣପରେ ସେ ନିଜ ପଡାରୁ ମୁନିସିପାଲଟି କାଉନସିଲର ହେଲେ। ନିର୍ଦଳୀୟ ସ୍ୱାଧୀନ ସଭ୍ୟ ଥିଲେ ମଧ୍ୟ ତାଂକର ମତ ସଂପୂର୍ଣ କାଉନ୍‌ସିଲ୍ ବିନା ଦ୍ୱିଧାରେ ଗ୍ରହଣ କରୁଥିଲେ ଓ କୌଣସି ଆଇନ ଅସିଦ୍ଧ ଲୋକ ଅହିତକାରୀ ପ୍ରସ୍ତାବର ସେ ମୂଳରୁ ପ୍ରତିହତ କରାଇ ପାରୁଥିଲେ।





# ନୂତନ ଓଡ଼ିଶାର ପ୍ରଥମ ଶିକ୍ଷାମଂତ୍ରୀ
# ଓକିଲ ବୋଧରାମ ଦୁବେ

ଓଡ଼ିଶା ପ୍ରଦେଶ ଗଠନ ଉତ୍ତାରେ ୧୯୩୭ରେ ବିଶ୍ୱନାଥ ଦାସଂକ ପ୍ରଧାନ ମଂତ୍ରୀତ୍ୱରେ ଯେଉଁ ପ୍ରଥମ କଂଗ୍ରେସ ମଂତ୍ରୀମଂଡଳ ଗଠିତ ହୋଇଥିଲା ସେଥିରେ ୩ ଜଣ ସଭ୍ୟଥିଲେ। ସଂବଲପୁରର ଓକିଲ ବୋଧରାମ ଦୁବେ ଶିକ୍ଷା ମଂତ୍ରୀ ଥିଲେ। ସେତେବେଳେ ଚତୁର୍ଥରୁ ସପ୍ତମ ଶ୍ରେଣୀ ପର୍ଯଂତ ଇତିହାସ ପାଠ୍ୟପୁସ୍ତକରେ ସବୁ ମଂତ୍ରୀମାନଂକର ଚିତ୍ର ଦିଆ ଯାଉଥାଏ। ଫଳରେ ବୋଧରାମ ଦୁବେଂକ ଚେହେରା ଓଡ଼ିଶାରେ ସମସ୍ତଂକର ଚିହ୍ନା ଥିଲା।

୧୮୯୫ ମସିହା ଏପ୍ରିଲରେ ସଂବଲପୁର ଜିଲ୍ଲା ସଦର ଥାନା ଅଂତର୍ଗତ ବଲଂଡା ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ। ତାଂକ ପିତା କୃଷ୍ଣରାମ ଦୁବେ ଗାଁର ଗୌଂତିଆ ଥିଲେ। ବୋଧରାମ ସଂବଲପୁର ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାସ୍ କରି କଟକ ରେଭେନ୍ସା କଲେଜରେ ବି.ଏ. ପଢ଼ିଲେ। ତାପରେ କଲିକତା ଆଇନ କଲେଜରୁ ବି.ଏଲ. ଓ ଏମ୍.ଏ. ପାସ୍ କଲେ। ପ୍ରଥମ ପତ୍ନୀଂକ ବିୟୋଗ ପରେ ସେ ରକ୍ମଣୀ ଦେବୀଂକୁ ବିବାହ କରିଥିଲେ। କଚେରିରେ ଓକିଲାତି କରିବା ସହିତ ସେ କୃଷି କାର୍ଯରେ ମଧ୍ୟ ଆଗ୍ରହୀ ଥିଲେ। ତାଂକର ଏହି ଆଦର୍ଶ ଅନ୍ୟ ଶିକ୍ଷିତ ଯୁବକମାନଂକୁ ଗାଁରେ ରହି ଚାଷକାମ କରିବାକୁ ପ୍ରେରଣା

ଯୋଗାଇଥିଲା । ସେତେବେଳେ ଚଂଦ୍ରଶେଖର ବେହେରା ସଂବଲପୁରର ପ୍ରତିଷ୍ଠିତ ଓକିଲ ଗଣ୍ୟମାନ୍ୟ ନେତା ଓ ଜନସେବକ । ତାଂକ ଠାରୁ ପ୍ରେରଣା ପାଇ ବୋଧରାମ ମଧ୍ୟ କଂଗ୍ରେସରେ ଯୋଗ ଦେଲେ ଓ ରାଜନୀତି ପ୍ରତି ଆକୃଷ୍ଟ ହେଲେ । ଜିଲ୍ଲା କଂଗ୍ରେସ କମିଟିର ମଧ୍ୟ ସେ କର୍ମକର୍ତ୍ତା ହେଲେ । ଓଡ଼ିଆ ଭାଷୀ ଉପାଂତ ଅଂଚଳରେ ସଂବଲପୁରରୁ ଯାଇ ସେ ଲୋକମତ ନୂତନ ଓଡ଼ିଶା ସପକ୍ଷରେ ସୃଷ୍ଟିକଲେ । ଓଡନେଲ୍ କମିଟି ସଂବଲପୁରକୁ ଆସିବା ବେଳେ ସେ ସାକ୍ଷୀ ମାନଂକର ବୟାନ ରେକର୍ଡ କରାଇଥିଲେ । ଜିଲ୍ଲା ହରିଜନ ସେବକ ସଂଘର ମଧ୍ୟ ସେ ସଭାପତି ଥାଇ ଅସ୍ପୃଶ୍ୟତା ଦୂରୀକରଣ ନିମିତ୍ତ ସକ୍ରିୟ ପଦକ୍ଷେପ ଗ୍ରହଣ କରିଥିଲେ । ଭାରତ ଶାସନ ଆଇନ ୧୯୩୫ ଅନୁସାରେ ନୂଆ ଶାସନ ବ୍ୟବସ୍ଥା ନିମିତ୍ତ ୧୯୩୭ରେ ନିର୍ବାଚନ ହେଲା । ସମଗ୍ର ସଂବଲପୁର ଜିଲ୍ଲା ସେ ସମୟରେ ଅନୁନ୍ନତ ବୋଲି ଧରାଯାଇ ଆଂଶିକ ବହିର୍ଭୂତ ଅଂଚଳ କୁହାଯାଉଥିଲା । ଜିଲ୍ଲାରୁ ମାତ୍ର ଛଅ ଜଣ ସଭ୍ୟ ବିଧାନ ସଭାକୁ ନିର୍ବାଚିତ ହେଉଥିଲେ । ବୋଧରାମ କଂଗ୍ରେସ ଦଳର ପ୍ରାର୍ଥୀ ହେଲେ । ଜିଲ୍ଲାରୁ ଚାରିଗୋଟି ଆସନ କଂଗ୍ରେସ ଦଖଲ କଲା । କଂଗ୍ରେସ ଶାସନ କ୍ଷମତା ଗ୍ରହଣ କଲାପରେ ବୋଧରାମ ଶିକ୍ଷା ଓ ସ୍ୱାୟତ୍ତ ଶାସନ ବିଭାଗର ମଂତ୍ରୀ ହେଲେ । ୧୯୩୯ରେ ୨ୟ ବିଶ୍ୱଯୁଦ୍ଧ ଆରଂଭ ହେବା ପରେ କଂଗ୍ରେସ ଯୁଦ୍ଧ ଉଦ୍ୟମରେ ସରକାରଂକୁ ସାହାଯ୍ୟ କରିବ ନାହିଁ ବୋଲି ନିଷ୍ପତ୍ତି ନେଲା । ନୀତିଗତ ଭାବରେ ମଂତ୍ରୀମଂଡଳ ଇସ୍ତଫା ଦେଲା । ମାତ୍ର ମଂତ୍ରୀ ମଂଡଳର ସ୍ୱଳ୍ପ କାର୍ଯକାଳ ମଧ୍ୟରେ ବୋଧରାମ ସଂବଲପୁର ଜିଲ୍ଲାର ଉନ୍ନତି ନିମିତ୍ତ ଅନେକ ଆଖିଦୃଶିଆ କାର୍ଯ କରି ପାରିଥିଲେ । ସଂବଲପୁର ଜିଲ୍ଲାରେ ସେତେବେଳେ ସେଣ୍ଟ୍ରାଲ ପ୍ରଭିନ୍ସ (ମଧ୍ୟ ପ୍ରଦେଶ)ର ଆଇନମାନ ପ୍ରଚଳିତ ଥାଏ । ଜିଲ୍ଲା କାଉନସିଲ ଆଇନ ମଧ୍ୟ ତଦ୍ରୂପ ଥିଲା । ରାଜନୀତି କ୍ଷେତ୍ରରେ ପ୍ରଥମ ପ୍ରବେଶ ସମୟରେ ବୋଧରାମ ଏହି ଜିଲ୍ଲା କାଉନସିଲର ସଭ୍ୟଭାବେ ନିର୍ବାଚିତ ହୋଇଥିଲେ । ୧୯୩୪ରୁ ୧୯୩୭ ପର୍ଯଂତ ସେ ଏହାର କାର୍ଯ ନିର୍ବାହୀ ସଂପାଦକ ଥିଲେ । ସ୍ୱାୟତ୍ତ ଶାସନ ମଂତ୍ରୀ ଥାଇ ସେ ଏହି ଆଇନ ବଦଳରେ ଓଡ଼ିଶା ଆଇନ ଚଳେଇଲେ । ସଂବଲପୁର ଜିଲ୍ଲାରେ ଭୂରାଜସ୍ୱ ଓ ଭୂମି ସ୍ୱତ୍ୱ ପ୍ରଥାର ପରିବର୍ତ୍ତନ କରି ରୟତମାନଂକର ସ୍ୱାର୍ଥରକ୍ଷା ଓ ମଧ୍ୟ ସ୍ୱତ୍ୱାଧିକାରୀ (ଗୌଂତିଆ)ମାନଂକର ଜୁଲମରୁସେମାନଂକୁ ରକ୍ଷା କରିବା ପାଇଁ ଗୋଟିଏ କମିଟି ବସାଇଥିଲେ । ଅବସରପ୍ରାପ୍ତ ଜିଲ୍ଲାପାଳ ତ୍ରିବିକ୍ରମ ପୂଜାରୀ ଏହାର ଅଧ୍ୟକ୍ଷ ଥିଲେ । ସେମାନେ ଏହି ସବୁ ସମସ୍ୟାର ସମାଧାନ ନିମିତ୍ତ କେତେକ ସୁଚିଂତିତ ପରାମର୍ଶ ଦେଇଥିଲେ ମାତ୍ର ମଂତ୍ରୀମଂଡଳର ସୀମିତ କ୍ଷମତା ଓ ସେମାନଂକର ସ୍ୱଳ୍ପ ପରମାୟୁ ଯୋଗୁ ଏହା କାର୍ଯକାରୀ କରିବା ସଂଭବପର ହୋଇନଥିଲା । ପରବର୍ତ୍ତୀ ଭୂସଂସ୍କାର ସମୟରେ ଏହା ବିଚାରକୁ ନିଆଯାଇଥିଲା । ସେ ଶିକ୍ଷା ମଂତ୍ରୀ ଥିବା ବେଳେ ସାମୁଏଲ ଦାସ ଶିକ୍ଷା ସଚିବ ଥିଲେ । ସେ ସଂବଲପୁର ଜିଲ୍ଲା ସ୍କୁଲରେ ତାଂକର ସହପାଠୀ ଥିଲେ । ଦୁଇଜଣ ଏକତ୍ର ଚିଂତା ଓ ଆଲୋଚନା କରି ଅନୁନ୍ନତ ଜିଲ୍ଲାରେ ଶିକ୍ଷାର ବିକାଶ ଓ ପ୍ରସାର ନିମିତ୍ତ କିପରି ବିଭିନ୍ନ ସ୍ଥାନରେ ନୂତନ ମଧ୍ୟ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠିତ କରାଯାଇ

ପାରିବ ଓ ସ୍ୱାସ୍ଥ୍ୟ ସେବା ନିମିତ୍ତ ନୂତନ ଚିକିତ୍ସା କେଂଦ୍ର ଖୋଲାଯାଇ ପାରିବ ତାହାର ପ୍ରସ୍ତାବିତ କାର୍ଯକ୍ରମ ପ୍ରସ୍ତୁତି କରି ପାରିଥିଲେ। ପରବର୍ତୀ କାଳରେ ଜିଲ୍ଲାରେ ଶିକ୍ଷା ଓ ସ୍ୱାସ୍ଥ୍ୟସେବାର ପ୍ରସାର ଦିଗରେ ଏହା ବିଶେଷ ଉପଯୋଗୀ ହୋଇଥିଲା।

ମଂତ୍ରୀ ମଂଡଳରୁ ଇସ୍ତଫା ଦେଇ ୧୯୪୨ ବ୍ୟକ୍ତିଗତ ସତ୍ୟାଗ୍ରହ ଆଂଦୋଳନରେ ସେ ଭାଗ ନେଇ ଭାରତରକ୍ଷା ଆଇନ ବଳରେ ନଅମାସ ଜେଲ୍ ଭୋଗିଥିଲେ। ୧୯୪୭ ଭାରତ ଛାଡ଼ ଆଂଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରି ନଥିଲେ। ୧୯୪୬ ସାଧାରଣ ନିର୍ବାଚନରେ ସେ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ ମଧ୍ୟ ମଂତ୍ରୀମଂଡଳରେ ସ୍ଥାନ ପାଇ ନ ଥିଲେ। ୧୯୪ରେ ସେ ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ସମୟରେ ବିଧାୟକ ପଦରୁ ଇସ୍ତଫା ଦେଇଥିଲେ। ୧୯୪୮ ମସିହା ଶେଷ ଆଡ଼କୁ ସେ ଓଡ଼ିଶା ହାଇକୋଟରେ ସରକାରୀ ଆଡ଼ଭୋକେଟ ଭାବରେ ନିଯୁକ୍ତି ପାଇଲେ। ବିଧାନ ସଭାରେ ତାଂକର ପୂର୍ବତନ ସହକର୍ମୀ ଓ ଏକଦା ଦଳର ନେତା ସ୍ୱାମୀ ବିଚିତ୍ରାନଂଦ ଦାସ ଏହି ସମୟରେ ଓଡ଼ିଶାର ଆଡ଼ଭୋକେଟ ଜେନେରାଲ ଥିଲେ। ମାତ୍ର ଅଳ୍ପ ସମୟ ଏହି ପଦବିରେ କାର୍ଯ କରି ଜିଲ୍ଲାରେ ନିଜର ପ୍ରତିପତ୍ତି ଓ ଲୋକପ୍ରିୟତା ସ୍ମରଣ କରି ସେ ଇସ୍ତଫା ଦେଲେ ଓ ସଂବଲପୁର ଫେରି ଆସିଲେ। ୧୯୫୭ ୨ୟ ସାଧାରଣ ନିର୍ବାଚନରେ ସେ ସଂବଲପୁର ଯୁଗ୍ମ ନିର୍ବାଚନ ମଂଡଳୀରୁ କଂଗ୍ରେସ ପ୍ରାର୍ଥୀ ଥାଇ ସୀମା ଆଂଦୋଳନ ସମୟରେ ଗୁଳି ଚୋଟରେ ଆହତ ଗଣତଂତ୍ର ପ୍ରାର୍ଥୀ ଯୁବକ ଆଡ୍‌ଭୋକେଟ ଲକ୍ଷ୍ମୀପ୍ରସାଦ ମିଶ୍ରଂକ ଠାରୁ ପରାଜିତ ହେଲେ। ପରେ ରାଜ୍ୟ ସଭାର ପ୍ରଥମ ପରୋକ୍ଷ ନିର୍ବାଚନରେ ସେ ଓଡ଼ିଶା ବିଧାନ ସଭା ଦ୍ୱାରା ସେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ।

ରାଜନୀତିରୁ ଦୂରେଇନେଇ ବୋଧରାମ ନିଜକୁ ଜଣେ ଉନ୍ନତ କୃଷିଜୀବୀ ଭାବରେ ପ୍ରତିଷ୍ଠିତ କରାଇ ପାରିଥିଲେ। ଏହା ସହିତ ଜିଲ୍ଲାରେ ଶିକ୍ଷାର ଦ୍ରୁତ ପ୍ରସାର ନିମିତ୍ତ ସେ ବହୁ ଲୋକହିତକର ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ। ସଂବଲପୁର ସହରରେ ଜିଲ୍ଲା ସ୍କୁଲ ବ୍ୟତୀତ ଅନ୍ୟ ଏକ ହାଇସ୍କୁଲ ପ୍ରତିଷ୍ଠା କରାଗଲା। ପଟନାୟକପଡ଼ା (ବର୍ତମାନ ଟାଉନ ସ୍କୁଲ)ର ସେ ବହୁଦିନ ଧରି ସଭାପତି ଥାଇ ଏହାର ଉନ୍ନତିରେ ସହାୟକ ହୋଇଥିଲେ। ସଂବଲପୁର କଲେଜ ପ୍ରତିଷ୍ଠା ଉତ୍ତାରେ ସେ ଏହାର ପରିଚାଳନା କମିଟିର ଉପ ସଭାପତି ଥିଲେ। ସ୍ୱଭାବ କବି ଗଂଗାଧରଂକ ନାମରେ ଏହି କଲେଜକୁ ନାମିତ କରିବାରେ ସେ ସକ୍ଷମ ହୋଇଥିଲେ। ସଂବଲପୁରରେ ଗୋଟିଏ ଟ୍ରଷ୍ଟ ଫଂଡ ଥିଲା। ଯୁଦ୍ଧ ସମୟରେ ସଂବଲପୁରର ଜିଲ୍ଲା କଲେକ୍ଟର ଏମ ଆଜଫର ଆଇ.ସି.ଏସ୍ ଥିଲେ। ଦେଶ ବିଭାଜନ ଉତ୍ତାରେ ପାକିସ୍ତାନ ଚାଲିଯାଇ ସେଠାରେ ସେ ମୁଖ୍ୟ ଶାସନ ସଚିବ ଓ ଅନ୍ୟାନ୍ୟ ପଦବୀରେ ଅଧିଷ୍ଠିତ ହୋଇଥିଲେ। ଯୁଦ୍ଧ ସମୟରେ ସଂବଲପୁର ରେଳ ଷ୍ଟେସନ ଦେଇ ଧାନ ଚାଉଳ ରାଜ୍ୟ ବାହାରକୁ ରପ୍ତାନି ହେଉଥିଲା। ସଂବଲପୁର ଜିଲ୍ଲା ବ୍ୟତୀତ ନିକଟବର୍ତୀ ଗଡ଼ଜାତମାନଂକର ବଳକା ଧାନଚାଉଳ ମଧ୍ୟ ଏହି ବାଟେ ଲକ୍ଷ ଲକ୍ଷ ବସ୍ତାରେ ରପ୍ତାନି

ହେଉଥିଲା। ଅଢଫର ବସ୍ତା ପିଛା ଏକଟଂକା କରି ଶୁଳ୍କ ଆଦାୟ କଲେ। ତାହା ଯୁଦ୍ଧ ପାଂଠିରେ ଜମା ଦେଲେ। ଯୁଦ୍ଧ ଶେଷ ହେବା ବେଳକୁ ବଳକା ଥିବା ସାତ ଲକ୍ଷ ଟଂକାରେ ଏହି ଜିଲ୍ଲା ଟ୍ରଷ୍ଟ ଫଂଡ ଗଠିତ ହୋଇଥିଲା। ଏହି ପାଂଠି ବହୁ ଲୋକ ହିତକର କାର୍ଯରେ ନିୟୋଜିତ ହୋଇଥିଲା। ହୀରାକୁଦ ବଂଧ ଯୋଜନା ଫଳରେ ସଂପୂର୍ଣ ଜଳମଗ୍ନ ମୁରା ଗ୍ରାମର ଆଢଫର ସେମିନାରୀ ଓ କୁବେଦା ମାତୃମଂଗଳ କେଂଦ୍ର (ବର୍ତମାନ ଡାକ୍ତର ଜନାର୍ଦନ ପୂଜାରୀଂକ ନାମରେ ନାମିତ) ଏହି ପାଂଠିରେ ଗଢ଼ାଯାଇଥିଲା। ଦେଶ ସ୍ୱାଧୀନ ହେବା ପରେ ଏହି ପାଂଠି ନାନା ଲୋକହିତକର ଅନୁଷ୍ଠାନ ଗଠନ ଦିଗରେ ବ୍ୟୟ ହୋଇଥିଲା। ବେସରକାରୀ ସଭ୍ୟ ଭାବେ ବୋଧରାମ ଦୁବେ, ବ୍ରଜମୋହନ ପଂଡା, ବାଳମୁକୁଂଦ ଦୋରା ଓ ଭାରତଚଂଦ୍ର ନାୟକ ଏହାର ସଭ୍ୟ ଥିଲେ। ଜିଲ୍ଲାପାଳ ଏହାର ସଭାପତି ଥିଲେ। ଅନ୍ୟ ସହକର୍ମୀ ମାନେ ଦଳୀୟ ଦୃଷ୍ଟିରୁ ବିଚାର କରି ଜଣେ କଂଗ୍ରେସ ନେତା ହିସାବରେ ତାଂକର ଏହି ଫଂଡ ସହିତ ସଂପର୍କକୁ ସମାଲୋଚନା କରୁଥିଲେ ମଧ୍ୟ ନିଜ ଦୂରଦୃଷ୍ଟି ଫଳରେ ଏହି ଫଂଡର ଭବିଷ୍ୟତରେ ସଦୁପଯୋଗର ଆବଶ୍ୟକତା ସେ ଉପଲବ୍ଧି କରି ଏଥିରେ ସଂପୂର୍ଣ ସହଯୋଗ କରୁଥିଲେ। ସଂବଲପୁରରେ ପରବର୍ତୀ କାଳରେ ପ୍ରତିଷ୍ଠିତ ଆଇନ କଲେଜ, କଲେଜ ଛାତ୍ରାବାସ, ମହିଳା କଲେଜ, ଶିକ୍ଷା କଲେଜ, ତାଂକର ଦୂରଦୃଷ୍ଟିର ଜ୍ୱଳଂତ ପ୍ରମାଣ। ସଂବଲପୁର କଲେଜ ବ୍ୟତୀତ ସହରରେ ଟ୍ରଷ୍ଟଫଂଡ କଲେଜ ସ୍ଥାପନ ମଧ୍ୟ ତାଂକର ଉଦ୍ୟମର ଫଳ ଥିଲା।

ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ଆରଂଭ ସମୟରେ ସେ ଭୂମିଗ୍ରହଣ ଆଇନରେ କ୍ଷତିପୂରଣର ଅଯୌକ୍ତିକତା ଓ ପୁର୍ନବାସ ବ୍ୟବସ୍ଥାର ଅଭାବ ର ସମାଲୋଚନା କରି ବ୍ୟବସ୍ଥାପକ ପଦରୁ ଇସ୍ତଫା ଦେଇଥିଲେ। ତଥାପି ସେ ଜିଲ୍ଲା କଂଗ୍ରେସ କମିଟିର ୧୯୪୬ରୁ ୧୯୪୭ ପର୍ଯଂତ ସଭାପତି ଥିଲେ। ଜିଲ୍ଲାରେ ଉଚ୍ଚଶିକ୍ଷାର ପ୍ରସାର ଓ ଦରିଦ୍ର ଛାତ୍ରମାନଂକର ଶିକ୍ଷାଦାନର ଉପଯୁକ୍ତ ବ୍ୟବସ୍ଥା କରିବା ନିମିତ୍ତ ସେ କାର୍ଯକରିଆସୁଥିଲେ। ସଂବଲପୁର ସହରର ନଂଦପଡ଼ାଠାରେ ଛାତ୍ରମାନଂକୁ କାମଧଂଦା ଯୋଗାଇ ଦେବାପାଇଁ ସେ ସହଯୋଗୀ ଛାତ୍ର ସମିତି ଗଠନ କରିଥିଲେ। ଭାରତର ସଂବିଧାନ ପ୍ରଣୟନ ସଭା ଓ ରାଜ୍ୟସଭାର ସଭ୍ୟ ଥାଇ ସେ ନିଜର ଅଭିଜ୍ଞତା ସେଠାରେ ପ୍ରୟୋଗ କରିଥିଲେ। ଓଡ଼ିଶା ହାଇକୋଟ ପ୍ରତିଷ୍ଠା ହେବା ଉତ୍ତାରେ ସେ କିଛିଦିନ କଟକ ଆସି ହାଇକୋଟରେ ବ୍ୟବସାୟ ଆରଂଭ କରିଥିଲେ। ସୁପ୍ରିମକୋର୍ଟର ମଧ୍ୟ ସେ ଆଡ୍‌ଭୋକେଟ ଭାବରେ ପଂଜୀଭୂତ ହୋଇଥିଲେ। ଜୀବନର ଶେଷ ପର୍ଯାୟରେ ସେ ପକ୍ଷାଘାତ ରୋଗରେ ଆକ୍ରାଂତ ହୋଇ ଆଇନ ବ୍ୟବସାୟରୁ ଅପସରି ଯାଇଥିଲେ।

ଜଣେ ନିରହଂକାରୀ, ବିନୟାବନତ, ଧର୍ମପ୍ରାଣ ଦେଶ ସେବକ ଭାବରେ ପରିଚିତ ଥାଇ ଜୀବନର ଶେଷ ପର୍ଯଂତ ସେ କୃଷି ଓ ଆଇନ ସହାୟତାରେ ନିଜକୁ ଉତ୍ସର୍ଗ କରିଥିଲେ। ୧୯୬୦ ଅଗଷ୍ଟରେ ସଂବଲପୁର ସହରରେ ନିଜ ବାସଭବନରେ ତାଂକର ମୃତ୍ୟୁ ହୁଏ।





# ଲେଖକ

# ଶଂକର ପ୍ରସାଦ ପାଢ଼ି

'ସଂବଲପୁରରେ ଭାଷା ଆଂଦୋଳନ' ପରି ପ୍ରାମାଣିକ ଗ୍ରଂଥର ଲେଖକ ଡକ୍ଟର ଶ୍ରଦ୍ଧାକର ସୂପକାର ଓ ଶଂକର ପ୍ରସାଦ ପାଢ଼ି । ଓଡ଼ିଶାରେ ଶ୍ରଦ୍ଧାକର ସୂପକାର ନିଜର ବହୁମୁଖୀ ପ୍ରତିଭା ହେତୁ ନାନା ଦିଗରୁ ସ୍ମରଣୀୟ ।

ଯୁଗ୍ମ ଲେଖକ ଶଂକର ପ୍ରସାଦ ପାଢ଼ି ୧୮୯୮ ଅକ୍ଷୟ ତୃତୀୟା ଦିନ ସଂବଲପୁର ସହରରେ ଜନ୍ମ ଗ୍ରହଣ କରିଥିଲେ । ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାସ୍‌କରି ସେ ରେଭେନ୍‌ସା କଲେଜରେ ପଢୁଥିବା ସମୟରେ ସାହିତ୍ୟ ଓ ଇତିହାସ ଚର୍ଚାରେ ମନ ବଳାଇଥିଲେ । ତାଂକର ପ୍ରଥମ ଲେଖା କମଳକୁମାରୀ ୧୯୧୮ରେ ମୁକୁରରେ ପ୍ରକାଶିତ ହୋଇଥିଲା । ସେ ୧୯୨୧ରେ ସଂବଲପୁରରେ ପଂଡିତ ନୀଳକଂଠ ଦାସଂକ ପ୍ରତିଷ୍ଠିତ ଜାତୀୟ ବିଦ୍ୟାଳୟର ଶିକ୍ଷକ ଥିଲେ । ୧୯୩୬ରେ ତାଂକ ସଂପାଦନାରେ ସଂବଲପୁରର 'ଶୁଭବାର୍ତା' ନାମରେ ଏକ ସଂବାଦପତ୍ର ମଧ୍ୟ ପ୍ରକାଶିତ ହୋଇଥିଲା । ମାତ୍ର ଉତ୍କଳ ସେବକଂକର ସଂପାଦନା ଦାୟିତ୍ୱ ତାଂକର ଏକ ଗୁରୁତ୍ୱପୂର୍ଣ କୃତି । ପ୍ରଥମେ ବ୍ରଜବଂଧୁ ମିଶ୍ରଂକ ସଂପାଦନାରେ

ସଂବଲପୁରର ବୁଦ୍ଧିଜୀବୀମାନଂକର ଅଦମ୍ୟ ଉତ୍ସାହ ଫଳରେ ହିତୈଷିଣୀ ସହିତ ତାଳ ଦେବା ପାଇଁ ଏହା ସଂବଲପୁରରୁ ୧୯୧୩ରେ ପ୍ରକାଶ ପାଇଥିଲା । ପରେ ପରେ ସ୍ୱପ୍ନେଶ୍ୱର ଦାସ ବିଶ୍ୱକେସନ ବହିଦାର ଓ ଶଂକର ପ୍ରସାଦ ଏହାକୁ ନାନା ବିଘ୍ନ ସତ୍ୱେ ଚାଲୁ ରଖିଥିଲେ । ସାହିତ୍ୟ, ସଂସ୍କୃତି, ଧର୍ମ, ସାହିତ୍ୟ, ବିଜ୍ଞାନ ଓ କୃଷି ସଂକ୍ରାଂତୀୟ ପ୍ରବଂଧ ପ୍ରକାଶନରେ ଏଥିରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ସଂପାଦକୀୟ ଟିପ୍ପଣୀରେ ଦେଶ ଓ ଭାଷାର ଉନ୍ନତି ଆଲୋଚନା କରାଯାଉଥିଲା ।

କବି ଗଂଗାଧର ଉତ୍କଳ ସେବକର ପଂଚମ ନବବର୍ଷ ଉପଲକ୍ଷେ ରଚିତ ଏକ କବିତାରେ ଲେଖିଥିଲେ ''ଦେଶହିତ କଥା, ବିଦେଶ ବାରତା, କହିବୁ ତୁ କାନେ କାନେ, ଥରେ ନ ବୁଝିଲେ ବାରଂବାର କହି ଭେଦାଇବୁ ପ୍ରାଣେ ପ୍ରାଣେ । ସେ ତୋର ଧରମ ସେ ତୋର କରମ ତହିଁରେ ନ ହେବୁ ଚିଟା, କେହି ଯଦି ତୋତେ କଡ଼ା କଥା କହେ ତୁହି କହୁଥିବୁ ମିଠା । ତୁ ପାଂଚବରଷ ବାଳୁତ ସେବକ ଧରିସେ ବାଳକ ଦୀକ୍ଷା, ରାଜପୁରୁଷଂକ ଘରଘର ଯାଇ କରିବୁ କରୁଣା ଭିକ୍ଷା'' । ପାଠକମାନଂକର ଆଗ୍ରହ ଓ ସହାନୁଭୂତି ଅଭାବରୁ ଏହା ବଂଦ ହେବା ତା ୩୦.୧୦.୧୯୨୪ର ସଂପାଦକୀୟରେ ଦିଆଯାଇଥିଲା । ସେ ୧୯୨୧ ସଂବଲପୁରରେ ପଂଡିତ ନୀଳକଂଠଦାସଂକ ପ୍ରତିଷ୍ଠିତ ଜାତୀୟ ବିଦ୍ୟାଳୟର ଶିକ୍ଷକ ଥିଲେ । ଶଂକର ପ୍ରସାଦ ବୋଧ ହୁଏ ଏହାର ଶେଷ ସଂପାଦକ ଥିଲେ । ବିଦ୍ୟାଳୟ ବଂଦ ହେବାପରେ ସେ ୧୯୨୨ ରୁ ୧୯୨୯ ପର୍ଯଂତ ସଂବଲପୁରରୁ ପ୍ରକାଶିତ 'ଉତ୍କଳ ସେବକ' ସାପ୍ତାହିକ ସଂବାଦପତ୍ରର ସଂପାଦକ ଥିଲେ । ଉତ୍କଳ ଦେଶ ମିଶ୍ରଣ ଆଂଦୋଳନର ଜଣେ ସକ୍ରିୟ କର୍ମୀ ଥାଇ ସେ ଖଡ଼ିଆଳ ଫୁଲଝର ଆଦି ଅଂଚଳ ଗସ୍ତ କରି ସ୍ଥାନୀୟ ଲୋକମାନଂକୁ ଓଡ଼ିଆ ଜାତୀୟତାରେ ଉଦ୍‌ବୁଦ୍ଧ କରିଥିଲେ । ୧୯୩୭ରୁ ୧୯୫୯ ପର୍ଯଂତ ସେ ଶିକ୍ଷକତା କରିଥିଲେ । ଅବସର ଗ୍ରହଣ ପରେ ସେ ପୁଣି ସାହିତ୍ୟ ଓ ଇତିହାସ ଅଲୋଚନାରେ ସମୟ କଟାଇଥିଲେ । ସଂବଲପୁର ବିଶ୍ୱବିଦ୍ୟାଳୟ ପ୍ରକାଶିତ 'ସପ୍ତର୍ଷି' ପତ୍ରିକାରେ ତାଂକର ବହୁ ପ୍ରବନ୍ଧ ସ୍ଥାନିତ ହୋଇଅଛି । ତାଂକ ଲିଖିତ ପ୍ରବଂଧ ସଂବଲପୁରରେ ଅହିଂସ ସ୍ୱାଧୀନତା ଆଂଦୋଳନ ଓ ଗାଂଧିଂକର ପ୍ରଥମ ଓ ଦ୍ୱିତୀୟ ଓଡ଼ିଶା ଗସ୍ତ ତଥ୍ୟ ଭିତ୍ତିକ ଥାଇ ପ୍ରଶଂସିତ ହୋଇଥିଲା । ଦାନବୀର କାଶୀନାଥ ସିଂହ ଓ ଚଂଦ୍ରଶେଖର ବେହେରାଂକର ଜୀବନୀ 'ଅକ୍ଷୟ ତାରକା' ସେ ୧୯୭୩ରେ ପ୍ରକାଶ କରିଥିଲେ । ଏହା ବ୍ୟତୀତ 'ଲୌହମାନବ ଗୋକୁଳ ଚଂଦ୍ର ବାବୁ' ତାଂକର ଅନ୍ୟ ଏକ ସ୍ମରଣୀୟ ରଚନା । ଶ୍ରୀପାଢ଼ି ୧୯୮୨ରେ ପ୍ରାଣତ୍ୟାଗ କଲେ । ୧୯୭୫ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ ଉତ୍ସର୍ଗୀତ ତାଂକର ଆଜୀବନ ସାହିତ୍ୟ ସାଧନା ନିମିତ୍ତ ଅଭିନଂଦନ ଜଣାଇ ଅଭିନନଂଦନ ପତ୍ର ପ୍ରଦାନ କରିଥିଲେ ।





# ସଂବଲପୁର ବ୍ୟବସ୍ଥାପିକା ଓ ନାରୀ ନେତ୍ରୀ
# ସୈରିଂଧ୍ରୀ

ଓଡ଼ିଶାରେ କ୍ରମାଗତ ବନ୍ୟା ଦୂରୀକରଣ ପାଇ ମହାନଦୀରେ ବଂଧ ଯୋଜନା କରିବାକୁ ଭାରତର ବିଖ୍ୟାତ ଇଂଜିନିଅର ଓ ପରେ ଓଡ଼ିଶାର ରାଜ୍ୟପାଳ ଅଯୋଧ୍ୟାନାଥ ଖୋସଲା ଇଂରେଜ ଶାସନ ସମୟରେ ଯୋଜନା କରିଥିଲେ। ୧୯୪୫ରେ ବିଶ୍ୱ ଯୁଦ୍ଧ, ସରିଗଲା। ଯୁଦ୍ଧପରେ ପୁନର୍ଗଠନ କାର୍ଯ ଆରଂଭ ହେଲା। ନରାଜ, ଟିକରପଡ଼ା, ହୀରାକୁଦଠାରେ ବଂଧ ହେବାର ଥିଲା। ୧୯୪୬ରେ ପ୍ରଥମେ ହୀରାକୁଦଠାରେ ଶୁଭ ଦିଆଗଲା। ଓଡ଼ିଶାର ରାଜ୍ୟପାଳ ସାର୍ ହଥର୍ଣ ଲୁଇସ୍ ଶୁଭ ଦେଲେ। ଜଣାପଡ଼ିଲା ହୀରାକୁଦ ବଂଧ ଯୋଜନା ଫଳରେ ମହାନଦୀ ଓ ଇବ୍ ଅବବାହିକାରେ ୯୫ ଖଂଡ ଗ୍ରାମ ଜଳମଗ୍ନ ହେବ। ଏହି ଗ୍ରାମମାନଂକ ମଧ୍ୟରେ ରଂପେଲା, ରଂପାଲୁଗା, ମୁରା, ବଘରା ଆଦି ଅତି ଉର୍ବର ଓ ଜନବସତିପୂର୍ଣ ଗ୍ରାମମାନ ଥିଲା। ଯେଉଁମାନେ ବାସଚ୍ୟୁତ ହେବେ ସେମାନଂକର ଜମି ପାଇଁ କ୍ଷତିପୂରଣ ଓ ପୁନର୍ବସତିର ବ୍ୟବସ୍ଥା ମଧ୍ୟ ସରକାର ଲୋକମାନଂକୁ ଅବଗତ କରାଇବାରେ ସକ୍ଷମ ହୋଇ ନଥିଲେ। ବଂଧ ନିର୍ମିତ ହେଲେ ଉପକୂଳ ଅଂଚଳରେ ଲୋକେ ଉପକୃତ ହେବେ। ପ୍ରଥମାବସ୍ଥାରେ ଜଳସେଚନ ଓ ବିଦ୍ୟୁତ୍ ଶକ୍ତି ଉତ୍ପାଦନକୁ ବିଶେଷ

ଗୁରୁତ୍ୱ ଦିଆଯାଇ ନଥିଲା। ସାଧାରଣ ଲୋକେ ପ୍ରଥମ ବଂଧ ନରାଜରେ ନ ହୋଇ ହୀରାକୁଦରେ ହେବା ଦୁରଭିସଂଧିମୂଳକ ବୋଲି ଅନୁଭବ କଲେ। ଜିଲ୍ଲାର ପ୍ରତିଷ୍ଠିତ ବ୍ୟକ୍ତିମାନଂକୁ ନେଇ ହୀରାକୁଦ ବଂଧ ବିରୋଧୀ କମିଟି ଗଠିତ ହେଲା ଓ ଆଂଦୋଳନ ପରିଚାଳନା ଦାୟିତ୍ୱ ସେମାନେ ନେଲେ। ଋଷି ପ୍ରତିମ ଡାକ୍ତର ଜନାର୍ଦନ ପୂଜାରୀ ଏହି ଆଂଦୋଳନରେ ନିଜକୁ ସାମିଲ କଲାରୁ ବଂଧ ବିରୋଧୀମାନଂକର ନୈତିକ ସମର୍ଥନ ବଢ଼ିଗଲା। ୧୯୪୬ ଜୁନ୍ ବେଳକୁ ଆଂଦୋଳନ ପ୍ରବଳତର ହେବାକୁ ଲାଗିଲା। ରାଜ୍ୟପାଳଂକ ସଂବଲପୁର ଗସ୍ତ ସମୟରେ ବୁଢ଼ି ଅଂଚଳର ଓ ସଂବଲପୁର ସହରର ଲୋକମାନଂକର ଏକ ବିରାଟ ଶୋଭାଯାତ୍ରା ସହର ପରିକ୍ରମା କରି ସରକିଟ୍ ହାଉସ୍‌ରେ ରାଜ୍ୟପାଳଂକୁ ବଂଧ ନିର୍ମାଣ ନ କରିବାକୁ ସ୍ମାରକ ପତ୍ର ଦେଲେ। ସହରରେ ପ୍ରତିଦିନ ସଭା ଓ ଶୋଭାଯାତ୍ରା ହେଲା। ସରକାର ୧୪୪ ଧାରା ଜାରି କଲେ ମାତ୍ର ତଥାପି ସଭା ଶୋଭା ଯାତ୍ରାର ବିରାମ ନ ଥିଲେ। ସ୍ତ୍ରୀ ଲୋକମାନେ ମଧ୍ୟ ଏହି ଆଂଦୋଳନରେ ଭାଗ ନେବାକୁ ଆଗେଇ ଆସିଲେ। ୧୯୪୭ ଏପ୍ରିଲ ମାସରେ ବଂଧ ନିର୍ମାଣର ବିରୋଧ କରି ବୋଧରାମ ଦୁବେ ବ୍ୟବସ୍ଥାପକ ସଭାରୁ ଇସ୍ତଫା ଦେଲେ। ମଇରେ ଆଂଦୋଳନକାରୀମାନେ ସହରରେ ଆଇନ ଅମାନ୍ୟ ଆରଂଭ କଲେ। ପ୍ରଥମ ଦିନ ଡାକ୍ତର ପୂଜାରୀ ଓ ତାଂକ ସହଧର୍ମିଣୀ ୧୪୪ ଧାରା ଭଂଗ କରି ବଂଧ ବିରୋଧୀ ଧ୍ୱନି ଦେଇ ଗିରଫ ହେଲେ ଓ ବିଚାରରେ ତାଂକୁ ୩ ମାସ ଲେଖାଁ ଜେଲ୍‌ଦଂଡ ହେଲା। ଏହି ସମୟରେ ଅଳ୍ପ କେତେକ ଛାତ୍ରୀ ଓ ନାରୀମାନଂକର ଶୋଭାଯାତ୍ରା ଓ ଆଂଦୋଳନ ପରିଚାଳନା କରିବାକୁ ଜଣେ କଲେଜ ଛାତ୍ରୀ ଆଗେଇ ଆସିଲେ। ତାଂକ ନାଁ ସୈରିଂଧ୍ରୀ ପଂଡା। ନିଜର ଅଗ୍ନିଗର୍ଭ ଭାଷଣରେ ସେ ବଂଧ ନିର୍ମାଣର ଅଯୌକ୍ତିକତା ଦର୍ଶାଇ ଏହାର ବିରୋଧ କରୁଥିଲେ। ଫଳରେ ତାଂକର ଶୋଭାଯାତ୍ରାରେ ବହୁନାରୀ ଆଗେଇ ଆସିଲେ। ପୁଲିସର ଦମନ ଓ ଲାଠିମାଡ଼ ତାଂକୁ ସହିବାକୁ ପଡ଼ିଲା।

ସୈରିଂଧ୍ରୀଂକ ପିତା ବୃଂଦାବନ ସେତେବେଳେ ସଂବଲପୁରରେ ସମବାୟ ବିଭାଗରେ କାର୍ଯ କରୁଥାଆଂତି। ତାଂକ ଜନ୍ମ ଧମା ଥାନା ବରଗାଁ ନିକଟ ହଳଦୀ ଗ୍ରାମରେ ୧୯୨୮ରେ। ସାତ ପୁଅରେ ସେ ଗୋଟିଏ ଝିଅ ଥିଲେ। ସେତେବେଳେ ଜିଲ୍ଲାରେ ଶିକ୍ଷାର ସୁଯୋଗ ସୀମିତ। ଝିଅମାନଂକର ପାଠପଢ଼ା ପାଇଁ ସ୍ୱତଂତ୍ର ବ୍ୟବସ୍ଥା ଆଦୌ ନଥିଲା। ଓଡ଼ିଶାରେ ପ୍ରଶାସକ ଓ ସମାଜସେବୀ ଭାବରେ ସୁପରିଚିତ ଭାରତଚଂଦ୍ର ନାୟକ ନିଜର ନଅଝିଅଂକର ଉଚ୍ଚ ଶିକ୍ଷାର ବ୍ୟବସ୍ଥା କରି ଜିଲ୍ଲାରେ ନାରୀଶିକ୍ଷା ପ୍ରସାରଣରେ ଆଦର୍ଶ ହୋଇଥାଆଂତି। ବୃଂଦାବନଂକର ସେ ମଧ୍ୟ ବଂଧୁ ବାଂଧବ ଥିଲେ। ନିଜ ପିଲାମାନଂକ ଶିକ୍ଷାର ସୁବିଧା ପାଇଁ ବୃଂଦାବନ ସେମାନଂକୁ ଧରି ସହରରେ ରହିଲେ। ମାଇନର ପାସ୍‌କରି ସୈରିଂଧ୍ରୀ

ଜିଲ୍ଲା ସ୍କୁଲରେ ପଢ଼ିଲେ। ପୁଅ ଝିଅଂକର ଏକାଠି ପାଠପଢ଼ା ସେତେବେଳେ ସ୍ଥାନୀୟ ବ୍ରାହ୍ମଣ ସମାଜରେ ସମାଲୋଚନାର ବିଷୟ ଥିଲା ମାତ୍ର ତାଂକ ପିତାଂକର ଅନ୍ୟ ଗତି ନଥିଲା। ଝିଅ ନବମ ଶ୍ରେଣୀରେ ପଢୁଥିବା ସମୟରେ ବାଳିକା ହାଇସ୍କୁଲ ଖୋଲିଲା, ତାଂକ ନାଁ ସେଠାକୁ ବଦଳି କରାଗଲା। ୧୯୨୩-୨୪ରେ ସଂବଲପୁରର ଡେପୁଟି କମିଶନର ଥିବା ହଥର୍ନ ଲୁଇସ ସେତେବେଳେ ଓଡ଼ିଶାର ରାଜ୍ୟପାଳ ଥିଲେ। ତାଂକ ସ୍ତ୍ରୀଂକ ନାମ ଅନୁସାରେ ଏହାର ନାମ ଲେଡି ଲୁଇସ୍ ବାଳିକା ବିଦ୍ୟାଳୟ ରଖାଗଲା। ସେରିଂଧ୍ରୀ ସେଠାରୁ ପ୍ରଥମ ଦଫାରେ ପାସ୍ କରିଥିବା ଛାତ୍ରୀମାନଂକ ମଧ୍ୟରୁ ଅନ୍ୟତମ। ହାଇସ୍କୁଲରେ ପଢୁଥାଂତି ଭାରତଛାଡ଼ ଆଂଦୋଳନ ଆରଂଭ ହେଲା। ସହରରେ ଗୋଟିଏ ବିଶାଳ ଶୋଭାଯାତ୍ରା ଯାଉଥିବା ସମୟରେ ସେ ନିଜର ସ୍କୁଲ ସହପାଠିନୀମାନଂକୁ ଧରି ସେହି ପଟୁଆରରେ ଯୋଗଦେଇ ସରକାରଂକର ଦମନ ଲୀଳାର ପ୍ରତିବାଦ ଜଣାଇଥିଲେ। ଥରେ ମୁନିସିପାଲଟି ମେହେଂତରମାନେ ଧର୍ମଘଟ କଲେ। ଚାରିଆଡ଼େ ଅଳିଆ ଆବର୍ଜନା ଉଠା ନ ହୋଇ ଜମି ରହିଲା। ସହରର ଜଣେ ପ୍ରମୁଖା ସମାଜସେବୀ ଗୌରୀ ଶଂକର ସାହାଣୀଂକ ତତ୍ତ୍ୱାବଧାନରେ ଛାତ୍ର ଛାତ୍ରୀମାନେ ସ୍ୱେଚ୍ଛାସେବକ ଭାବେ କାମ କଲେ। ସେରିଂଧ୍ରୀ ସେହିମାନଂକର ନେତୃତ୍ୱ ନେଲେ। କଲେଜ ପଢ଼ିବା ସମୟରେ ସେମିତି ହୀରାକୁଦ ବଂଧ ବିରୋଧୀ ଆଂଦୋଳନରେ ସେ ଅଗ୍ରଗାମୀ ଭୂମିକା ଗ୍ରହଣ କଲେ। ଜଣେ ଉପଯୁକ୍ତ ସଂଗଠିକା ଭାବରେ ସେ ଓଡ଼ିଶାରେ ଏହି ସମୟରେ ସୁନାମ ଅର୍ଜନ କଲେ। ଶିକ୍ଷା ସଂପୂର୍ଣ ପୂର୍ବରୁ ସେ ଅଧ୍ୟାପକ ଦୁର୍ଗାପ୍ରସାଦ ନାୟକଂକୁ ବିବାହ କରି ସୈରିଂଧ୍ରୀ ନାୟକ ଭାବରେ ପରବର୍ତୀ କାଳରେ ପରିଚିତ ହେଲେ।

ସମାଜ ସେବା ସହିତ ସେ ରାଜନୀତି ପ୍ରତି ଆକୃଷ୍ଟ ହେଲେ। ପ୍ରାଥମିକ ଶିକ୍ଷକମାନଂକର ଜିଲ୍ଲା ସ୍ତରରେ ଗୋଟିଏ ସଂଗଠନ କରାଗଲା। ସେମାନଂକ ଦରମା ଅତି ଅଳ୍ପ ଥିଲା। ଚାକିରିର ସ୍ଥିରତା ନଥିଲା। ସୈରିଂଧ୍ରୀ ଜିଲ୍ଲା ପ୍ରାଥମିକ ଶିକ୍ଷକ ସଂଘର ପ୍ରଥମ ସଭାନେତ୍ରୀ ହେଲେ ଓ ଦୀର୍ଘ ତେର ବରଷ ଏହି ପଦରେ କାମ କରି ଶିକ୍ଷକମାନଂକର ନ୍ୟାୟୋଚିତ ଦାବି କର୍ତ୍ତୃପକ୍ଷଂକଠାରୁ ହାସଲ କରିବାରେ ସମର୍ଥ ହେଲେ। ପ୍ରଥମେ ୧୯୫୮ରେ ସେ ମୁଦିପଡ଼ା ୱାର୍ଡରୁ ମୁନିସିପାଲ କାଉନସିଲର ହେଲେ ଓ ୧୯୬୯ ପର୍ଯ୍ୟଂତ କ୍ରମାଗତ ସେ ଏହି ୱାର୍ଡରୁ ନିର୍ବାଚିତ ହୋଇ ଆସୁଥିଲେ। ସଂବଲପୁର ପୌର ସଭାର ସେ ଜଣେ ସକ୍ରିୟ ସଭ୍ୟ ଥିଲେ ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିମଳ ସମସ୍ୟାରେ ତାଂକ ମତାମତ କର୍ତ୍ତୃପକ୍ଷ ଗୁରୁତ୍ୱର ସହିତ ବିଚାର କରୁଥିଲେ। ସ୍ୱାଧୀନ ପ୍ରାର୍ଥୀ ଥାଇ ମଧ୍ୟ ସେ ସବୁ ଦଳର ପ୍ରିୟ ହୋଇ ପାରିଥିଲେ। ତଥାପି ଜଣେ ଗୃହିଣୀ ଓ ମାଆ ଭାବରେ ସେ ନିଜର କର୍ତବ୍ୟ ପ୍ରତି ସଜାଗ ଥିବାରୁ ସହରରେ ସମସ୍ତଂକର ସମ୍ମାନର ପାତ୍ର ହୋଇ ପାରିଲେ। ସହରରେ ଥିବା ପାର୍କମାନ ଅବହେଳିତ ଅବସ୍ଥାରେ ଥିଲା। ତାଂକର ଓ ଅନ୍ୟତମ

କାଉନସିଲର ବନମାଳୀ ବାବୁଙ୍କର ଉଦ୍ୟମରେ ମୋଦିପଡ଼ାରେ ପଦ୍ମକେଶରୀ ପାର୍କ ପ୍ରତିଷ୍ଠା କରାଗଲା ଓ ଏକ ସମୟରେ ସମଗ୍ର ଓଡ଼ିଶାର ପୌରାଂଚଳମାନଂକର ଏହା ସର୍ବଶ୍ରେଷ୍ଠ ପାର୍କବୋଲି ପରିଗଣିତ ହେଉଥିଲା । ଏହାର ଟିକିନିଖି ଉନ୍ନତି ପାଇ ସେ ୱାର୍ଡ କାଉନସିଲର ଭାବରେ ସଜାଗ ଦୃଷ୍ଟି ଦେଉଥିଲେ । ଏହା ବ୍ୟତୀତ ଅନେକ ଅନୁଷ୍ଠାନ ସହିତ ସଂପୃକ୍ତ ଥାଇ ସେ ଜନସେବାରେ ଲାଗି ପଡ଼ିଲେ । ସରକାରୀ ଲୁଇସ୍ ବାଳିକା ବିଦ୍ୟାଳୟ, ଜିଲ୍ଲାସ୍କୁଲ ମେଡ଼ିକାଲ କଲେଜ, ଝାରସୁଗୁଡ଼ା ଲକ୍ଷ୍ମୀ ନାରାୟଣ କଲେଜର ପରିଚାଳନା ଓ ଉନ୍ନତି ସହିତ ସେ ସଂପୃକ୍ତ ଥିଲେ । ସଂବଲପୁର ନାରୀ ସେବାସଂଘର ସେ ସଂପାଦିକା ଥିଲେ । ଓଡ଼ିଶା ଖଦି ଗ୍ରାମୋଦ୍ୟୋଗ ବୋର୍ଡର ସଭ୍ୟ ଥାଇ ଜିଲ୍ଲାରେ ଏହାର କାର୍ଯ ଓ ଲୋକ ପ୍ରିୟତା ବୃଦ୍ଧିରେ ସେ ସହାୟକ ଥିଲେ । ଅନେକ ଶ୍ରମଜୀବୀ ସଂଗଠନ ସହିତ ସେ ସଂପୃକ୍ତ ଥାଇ ଶ୍ରମିକମାନଂକର ସମସ୍ୟ ସମାଧାନ ନିମିତ୍ତ ଉଦ୍ୟମ କରୁଥିଲେ । ସେ ପଶ୍ଚିମାଂଚଳ ରେଡ଼୍କ୍ରସ୍ ସଂସ୍ଥାର ସଂଗଠନ ସଂପାଦିକା ଓ ଜିଲ୍ଲା ରେଡ଼୍କ୍ରସ୍‌ର ଉପସଭାପତି ଥିଲେ । ସଂବଲପୁରରେ ବିଶ୍ୱବିଦ୍ୟାଳୟ, ମେଡ଼ିକାଲ କଲେଜ, ମହିଳା କଲେଜ ପ୍ରତିଷ୍ଠା ଦିଗରେ ତାଂକର ଅବଦାନ ସ୍ମରଣୀୟ । ନୂତନ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟର ସିନେଟ ଓ ସିଂଡିକେଟରେ ସେ ୧୯୭୪ରୁ ୧୯୭୭ ପର୍ଯଂତ ସଭ୍ୟଥିଲେ । ପ୍ରାଦେଶିକ କଂଗ୍ରେସ ସଂଗଠନର ମହିଳା ଶାଖାର ସେ ସଭାନେତ୍ରୀ ଥିଲେ ।

୧୯୭୪ରେ ସେ କଂଗ୍ରେସ ପ୍ରାର୍ଥୀ ଭାବେ ଝାରସୁଗୁଡ଼ାରୁ ପ୍ରଥମେ ବ୍ୟବସ୍ଥାପିକା ଭାବେ ନିର୍ବାଚିତ ହେଲେ । ୧୯୭୭ରେ ମଧ୍ୟ ସେ ପୁନଃ ନିର୍ବାଚିତ ହୋଇଥିଲେ । ବିନା ଅର୍ଥବଳ ଓ ବାହୁବଳରେ ପ୍ରତିଦ୍ୱଂଦ୍ୱୀମାନଂକର ଚରିତ୍ର ସଂହାର ନ କରି ନିର୍ବାଚିତ ହେବାରେ ସେ ପ୍ରଶଂସନୀୟ ଥିଲେ । ରାଜନୈତିକ କାରଣରୁ ତାଂକୁ ବୋଧହୁଏ ମଂତ୍ରୀପଦ ମିଳିନଥିଲା । ନିଜ ନିର୍ବାଚନ ମଂଡଳୀରେ ଭୂମିହୀନମାନଂକୁ ବାର୍ଧକ୍ୟଭତ୍ତା ଦେବାକୁ ସେ ଗ୍ରାମ ଗ୍ରାମ ବୁଲି ଯୋଗ୍ୟ ପ୍ରାର୍ଥୀ ବାଛୁଥିଲେ । ୧୯୭୪-୭୫ରେ ଅଭୂତ ପୂର୍ବ ମରୁଡି ସମୟରେ ସେ ଅନାଥ ଶିଶୁମାନଂକର ଥଇଥାନ ନିମିତ୍ତ ଅନେକ ବାଳାଶ୍ରମ ପ୍ରତିଷ୍ଠା ଉଦ୍ୟମ କରି ସଫଳ ହୋଇଥିଲେ । ଆଗରୁ ଏ ସବୁ ଅଂଚଳରେ କୌଣସି ବାଳାଶ୍ରମ ନଥିଲା । ସଂବଲପୁର ସହର ମଧ୍ୟରେ ଧନକଉଡ଼ା ବାଳାଶ୍ରମ ପ୍ରତିଷ୍ଠା ଓ ନାରୀସେବା ସଂଘର ପୁନରୁଦ୍ଧାର ତାଂକ ଉଦ୍ୟମର ଫଳ ଥିଲା । ତତ୍‌କାଳୀନ ପୂର୍ବଜର୍ମାନୀ ରାଜଧାନୀ ବର୍ଲିନ ଠାରେ ଅନୁଷ୍ଠିତ ବିଶ୍ୱ ମହିଳା ସମ୍ମିଳନୀରେ ସେ ଭାରତୀୟ ପ୍ରତିନିଧି ଦଳର ଅଂତର୍ଭୁକ୍ତ ଥିଲେ । ୧୯୯୫ରେ ହୃଦରୋଗରେ ଆକ୍ରାଂତ ହୋଇ ସେ ପ୍ରାଣତ୍ୟାଗ କଲେ ଓ ସଂବଲପୁର ଜଣେ ନିରଳସ ନିର୍ବିବାଦୀୟ ବ୍ୟବସ୍ଥାପିକା ଓ ନିର୍ଭୀକ ସମାଜସେବିକାଂକୁ ହରାଇଲା ।





# ଖେଳୁଆଡ଼ ମଂତ୍ରୀ
# ଝସକେତନ

ଝସକେତନ ସାହୁ ୧୯୩୨ ଜୁଲାଇ ଛଅ ତାରିଖରେ ସଂବଲପୁର ସହରର ବଡ଼ବଜାରରେ ଜନ୍ମ ଗ୍ରହଣ କରିଥିଲେ। ସେମାନେ ପାଂଚ ଭଉଣୀ ଓ ତିନି ଭାଇ ଥିଲେ। ତାଂକ ବାପା ମେନା ସାହୁ ଓ ମା ମୁକ୍ତା। ସବୁଭାଇ ଭଉଣୀମାନଂକ ମଧ୍ୟରେ ଝସକେତନ ବୟୋଜ୍ୟେଷ୍ଠ। ବଡ଼ବଜାରରେ ସେ ପ୍ରାଥମିକ ଶିକ୍ଷା ସାରି ପଟ୍ଟନାୟକପଡ଼ା (ବର୍ତ୍ତମାନ ଟାଉନ ହାଇସ୍କୁଲ)ରୁ ମାଟ୍ରିକ୍ ପାସ୍‌କଲେ। ଗଂଗାଧର ମେହେର କଲେଜରୁ ଆଇ.ଏସ.ସି. ପାସ୍ କରି ବି.ଏସ୍.ସି ପଢୁଥିବାବେଳେ ମେଡ଼ିକାଲ କଲେଜରେ ନାଁ ଲେଖାଇଲେ। ୧୯୫୫ରେ ସେ କଟକ ଶ୍ରୀରାମଚଂଦ୍ରଭଂଜ ମେଡ଼ିକାଲ କଲେଜରୁ ଏମ.ବି.ବି.ଏସ୍. ଡିଗ୍ରି ପାଇ ୧୯୫୬ରୁ ସଂବଲପୁର ବଡ଼ ବଜାରରେ ଘରୋଇ ଚିକିତ୍ସା ବ୍ୟବସାୟ ଆରଂଭ କଲେ। ଡାକ୍ତର ଜନାର୍ଦନ ପୂଜାରୀ ସେତେବେଳେ ଡାକ୍ତରମାନଂକର ସେବା ଓ ଚରିତ୍ରର ଆଦର୍ଶ। ତାଂକ ଦ୍ୱାରା ଅନୁପ୍ରାଣିତ ହୋଇ ସେ ମଧ୍ୟ ଖୁବ୍ ଲୋକପ୍ରିୟ ଚିକିତ୍ସକ ଭାବରେ ଖ୍ୟାତି ଲାଭ କଲେ। ବିନା ପଇସାରେ ଗରିବ ରୋଗୀମାନଂକୁ ଚିକିତ୍ସା କରିବା, ସେମାନଂକୁ ସ୍ଥଳ ବିଶେଷରେ ଔଷଧ ଯୋଗାଇ ଦେବା ଫଳରେ ସବୁବେଳେ ତାଂକ କ୍ଲିନିକରେ ଖଟିଖିଆ

ଗରିବ ରୋଗୀଂକର ଗହଳି ଲାଗିରହିଥିଲା । ପିଲାଦିନୁ ତାଂକର ସମାଜସେବାରେ ଆଗ୍ରହ ଥିଲା । ଏହା ସହିତ ଧର୍ମ ଆଲୋଚନା ଗୀତା ଭାଗବତ ପାଠରେ ସେ ମଧ୍ୟ ଭାଗ ନେଇଥିଲେ । ମେଡ଼ିକାଲ କଲେଜରେ ପଢ଼ିବା ବେଳେ ସେ ଛାତ୍ର ସଂସଦର ସାଧାରଣ ସଂପାଦକ ଥିଲେ । ଦଙ୍ଗେଇ ଘାଇ ଭାଂଗିବାବେଳେ ସେ ଗୋଟିଏ ଡାକ୍ତରୀଦଳ ଧରି ଏହି ଅଂଚଳରେ ସେବାକାର୍ଯ୍ୟ କରିଥିଲେ । ଘରୋଇ ଚିକିତ୍ସାର ଲୋକପ୍ରିୟତା ବଢ଼ିବାରୁ ସେ କ୍ରମେ କ୍ରମେ ସମାଜସେବା ସହିତ ରାଜନୀତି ପ୍ରତି ଆକୃଷ୍ଟ ହେଲେ । ବଡ଼ବଜାର ୱାର୍ଡରୁ ସେ ୧୯୬୩ରେ ମ୍ୟୁନିସିପାଲ୍‌ଟି କାଉନ୍‌ସିଲର୍ ହେଲେ । ମ୍ୟୁନିସିପାଲ୍‌ଟିର ମେହେନ୍ତରମାନଂକୁ ସଂଗଠିତ କରି ସେମାନଂକ ଦାବି ପୌର ସଭା ଦ୍ୱାରା ଗୃହୀତ ହେବାରେ ସମର୍ଥ ହେଲେ । ୧୯୬୯ରୁ ୧୯୭୧ ପର୍ଯ୍ୟଂତ ସେ ପୌର ସଭାର ନଗରପାଳ ଭାବେ ସହରର ବହୁବିଧ ଉନ୍ନତି ନିମିତ୍ତ କାର୍ଯ୍ୟ କରିଥିଲେ । କଂଗ୍ରେସ ପ୍ରାର୍ଥୀ ଭାବରେ ସେ ୧୯୭୧ରେ ଝାରସୁଗୁଡ଼ା ନିର୍ବାଚନ ମଂଡଳୀରୁ ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହେଲେ । ପରବର୍ତ୍ତୀ ନିର୍ବାଚନରେ ସେ ସଂବଲପୁର ନିର୍ବାଚନ ମଂଡଳୀରୁ ସ୍ୱାଧୀନ ପ୍ରାର୍ଥୀ ଭାବେ ପ୍ରତିଦ୍ୱଂଦ୍ୱିତା କରି ପରାସ୍ତ ହୋଇଯାଇଥିଲେ । ସେ ଦୁତିକା ସାହୁଂକୁ ବିବାହ କରିଥିଲେ ଓ ସେ ମଧ୍ୟ ସମାଜସେବା ଓ ରାଜନୀତିରେ ଭାଗନେଇ ମ୍ୟୁନିସିପାଲ୍‌ଟି କାଉନ୍‌ସିଲର୍ ରୂପେ ନିର୍ବାଚିତ ହୋଇଥିଲେ ।

୧୯୭୭ରେ ଜରୁରୀ ପରିସ୍ଥିତି ପରେ ଝସକେତନ ଜନତା ଦଳର ପ୍ରାର୍ଥୀ ଭାବେ ସଂବଲପୁରରୁ ନିର୍ବାଚିତ ହେଲେ ଓ ମଂତ୍ରୀପଦ ପାଇଥିଲେ । ନଗର ଉନ୍ନୟନ ମଂତ୍ରୀ ଭାବରେ ଓଡ଼ିଶାର ସର୍ବତ୍ର ପୌରସଭା ଅଂଚଳରେ ଜଳ ଯୋଗାଣ ନିମିତ୍ତ ବିଶେଷ ଆଗ୍ରହୀ ଥାଇ ଏ ଦିଗରେ ପ୍ରଭୂତ କୃତିତ୍ୱ ହାସଲ କରିଥିଲେ । ମ୍ୟୁନିସିପାଲ୍‌ଟି ଆଇନରେ କଲେଜ ସ୍ଥାପନ କରିବାର ବ୍ୟବସ୍ଥା ନ ରହି ମଧ୍ୟ ପୌର ସଭା ଅନୁଦାନ ଦେଇ ଅନେକ କଲେଜ ପ୍ରତିଷ୍ଠା ଦିଗରେ ସେ ଉଦ୍ୟମ କରିଥିଲେ । ଫଳରେ ସଂବଲପୁରର ବ୍ରଜରାଜନଗର, ବୁର୍ଲା, ହୀରାକୁଦ ପ୍ରଭୃତି ଛୋଟ ସହରମାନଂକରେ କଲେଜ ପ୍ରତିଷ୍ଠା ସଂଭବପର ହୋଇ ପାରିଥିଲା ।

ଜଣେ ସଂଗୀତଜ୍ଞ ଓ ସଂଗୀତ ପ୍ରେମୀ ଭାବରେ ଝସକେତନ ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ । ମଂତ୍ରୀ ଥିବା ସମୟରେ ସେ ସଭା ସମିତିରେ ଯୋଗ ଦେଇ ସେଠାରେ ଗୀତ ଗାଇ ନିଜର ସଂଗୀତ ପ୍ରେମର ପରିଚୟ ଦେଉଥିଲେ । ସେ ନିଜେ କେତେଗୁଡ଼ିଏ କବିତା ରଚନା କରି ତାକୁ 'ଭଗ୍ନାବଶେଷ' ନାମରେ ସଂକଳିତ କରି ପ୍ରକାଶ କରିଥିଲେ । କୋଶଳ ସାହିତ୍ୟ ସମିତିର ସେ କିଛିଦିନ ସଭାପତି ଥିଲେ । ସାଂବାଦିକତା କ୍ଷେତ୍ରରେ ୧୯୬୨ରେ ସେ ପାକ୍ଷିକ ପତ୍ରିକା 'ଖଦ୍ୟୋତ' ଓ 'ମାଏ ନେସନ୍' ପତ୍ରିକାର ସଂପାଦନା କରିଥିଲେ ମାତ୍ର ପୃଷ୍ଠପୋଷକତାର ଅଭାବରୁ ଏହା ବିଲୟ ପାଇଥିଲା । ସଂଗୀତ

ବ୍ୟତୀତ କ୍ରୀଡ଼ା କ୍ଷେତ୍ରରେ ତାଂକର ଭୂମିକା ଉଲ୍ଲେଖନୀୟ ଥିଲା । ୧୯୪୯ରେ ସେ ଓଡ଼ିଶାରେ ସଂତରଣ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାରକରିଥିଲେ। ଜିଲ୍ଲା ସଂତରଣ ସଂଘର ସେ ସଂପାଦକ ଥାଇ ସଂତରଣ ପ୍ରତିଯୋଗୀତାର ବ୍ୟବସ୍ଥା କରୁଥିଲେ। ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ସେ ଥରେ ବଂବେରେ ପ୍ରତିଯୋଗିତାରେ ଯୋଗଦେଇ ବିଶ୍ୱବିଦ୍ୟାଳୟ ସ୍ତରୀୟ ପୁରସ୍କାର ପାଇଥିଲେ। ଶ୍ରମିକମାନଂକୁ ସଂଗଠିତ କରି ସେ ଜିଲ୍ଲା ବିଡ଼ି ଶ୍ରମିକ ସଂଘ, ରିକ୍ସା ଚାଳକ ସଂଘ, ଟେକ୍ସି ଚାଳକ ସଂଘର ପ୍ରତିଷ୍ଠା ଓ ସଂଗଠନ ସହିତ ପ୍ରଥମରୁ ସଂଶ୍ଳିଷ୍ଟ ଥିଲେ। ସାହିତ୍ୟ କ୍ଷେତ୍ରରେ ନିଜର କୃତିତ୍ୱ ନିମିତ୍ତ ସେ ପ୍ରଜାତଂତ୍ର ବିଷୁବ ମିଳନରେ ସମ୍ମାନିତ ହୋଇଥିଲେ। ସଂବଲପୁର ବିଶ୍ୱବିଦ୍ୟାଳୟର ସିନେଟ ଓ ସିଂଡିକେଟର ମଧ୍ୟ ସେ ସଭ୍ୟ ହୋଇଥିଲେ। ନିଖିଳ ଓଡ଼ିଶା, ତୈଳିକ ବୈଶ୍ୟ ମହାସଭାର ସେ ସକ୍ରିୟ ଉପ ସଭାପତି ଥାଇ ସେମାନଂକର ସାମାଜିକ ପ୍ରତିଷ୍ଠା କର୍ମନିଯୁକ୍ତି ଓ ରାଜନୈତିକ ସୁବିଧା ଲାଭ ଲକ୍ଷ୍ୟରେ କାର୍ଯ କରି ଆସୁଥିଲେ। ସଂବଲପୁରରେ କ୍ରୀଡ଼ାର ଉନ୍ନତି ନିମିତ୍ତ ସେ ଉଦ୍ୟମ କରିଥିଲେ। ସହରରେ ସଂତରଣାଗାର ପ୍ରତିଷ୍ଠା ତାଂକ ଉଦ୍ୟମର ଫଳ ଥିଲା।

ମାତ୍ର ପଚାଶବର୍ଷ ବୟସରେ ୧୯୮୨ରେ ଏହି ରାଜନୀତିଜ୍ଞ ସମାଜସେବୀ ସଂଗୀତ ପ୍ରେମୀ କ୍ରୀଡ଼ାବିତ୍ ମିଷ୍ଟଭାଷୀ ଝସକେତନଂକର ମୃତ୍ୟୁ ଘଟିଲା।



ସୁଜନ୍ ସଂଗେ ସୁଜନ୍ ବସେ
ପାସ୍ ନାଇଁ ଯାଏ ମୁର୍ଖ,
ବାସ୍ ଚଂଦନେ ମାଛି ନାଇଁ ବସେ
ବିଲେଇ ନାଇଁ ଖାଏ ଗୁଡ଼୍।

''ବିଶ୍ୱାସ ଅଟଇ ଧର୍ମ ମୂଳଭିତ୍ତି
ପ୍ରୀତି ସ୍ୱଧର୍ମ ସାଧନ
ସ୍ୱାର୍ଥନାଶ ଅଟେ ପ୍ରକୃତ ବୈରାଗ୍ୟ
ଏ ଶ୍ରେଷ୍ଠ ସାଧୁବଚନ।''

–ନଂଦକିଶୋର

# ପଶ୍ଚିମ ଓଡ଼ିଶାର ସାଲବେଗ
# ମୁସ୍ତାକିମ୍ ଖାଁ

ଆହେ ନୀଳଶଇଳର ପ୍ରବଳ ମତ୍ତବାରଣ। ମୋ ଆରତ ନଳିନୀ ବନକୁ କର ଦଳନ। ଏହା ଗାଇଥିଲେ ସାଲବେଗ। ଏହି ଯବନ କବି ଇସ୍‌ଲାମ୍ ଧର୍ମରେ ବିଶ୍ୱାସୀ ଥାଇ ମଧ୍ୟ ଗାଇଥିଲେ ଅମର ସଂଗୀତ ''ମୋତେ ସେହି ରୂପ ଦେଖାଅ ହରି। ଜୟଶ୍ରୀରାଧେ ରାଧେବୋଲି ଡାକେ ବାଂଶୋରି''। ନହେଲେ –

''ଅଣସର ଘରେ ଥିଲ ଆଜ ବାହାରହେଲ ତ୍ରିଭଂଗି ଭଂଗି କରି ଚାହୁଁଛ।
ଗୁଣନିଧି ମୋ କେଣିକି ଯାଉଛ, ଯାଉଛ ପାହୁଂଡେ ରହୁଛ।।''

ଓଡ଼ିଶାର ଧର୍ମ ନିରପେକ୍ଷ ସର୍ବଧର୍ମନ୍ୱୟ ଜଗନ୍ନାଥ ସଂସ୍କୃତିରେ ଅନେକ ଅଣହିଂଦୁ ଓଡ଼ିଆ ସାହିତ୍ୟ ପ୍ରେମୀ ଜନ୍ମ ନେଇ ନିଜର ଲେଖନୀ ଦ୍ୱାରା ସାହିତ୍ୟକୁ ଋଦ୍ଧିମଂତ କରିଛଂତି।

ଓଡ଼ିଶାର ସାହିତ୍ୟକ ଓ ପ୍ରକାଶନ କେଂଦ୍ରଠାରୁ ବହୁଦୂରରେ ଅବସ୍ଥିତ ସଂବଲପୁର ଜିଲ୍ଲା ଲଖନପୁର ଗ୍ରାମ ନିକଟ ରେମଂଡା ଗ୍ରାମର ଗୌଂତିଆ ଇସ୍‌ଲାମ୍ ଧର୍ମାବଲଂବୀ ଓଡ଼ିଆ ସାହିତ୍ୟସେବୀ ମୌଲାନା ମୁସ୍ତାକିମ୍ ଖାଁଂକର ନାମ ଓ ରଚନା ପଶ୍ଚିମ ଓଡ଼ିଶାରେ ମଧ୍ୟ ଲୋକପ୍ରିୟ ହୋଇପାରିନାହିଁ। ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ ମୁସ୍ତାକିମ୍ ଖାଁ

ଜନ୍ମ ହୋଇଥିଲେ। ତାଂକର ମାଆ ହମିଦୁନ୍ ବିବି ରେମେଂଡା ଗୌଂତିଆଂକର ଜ୍ୟେଷ୍ଠା କନ୍ୟା ଥିଲେ। ତାଂକ ବାପାଂକ ନାମ ଥିଲା ଅହମଦ ଖାଁ। ମୁସ୍ତାକିମ୍ ଖାଁ ତାଂକ ମାମୁଁ ଘର ଗାଁ ନିକଟ ରଂପେଲା ମାଇନର ସ୍କୁଲରେ ପାଠପଢ଼ା ଆରଂଭ କଲେ। ଅଳ୍ପ କିଛିଦିନ ପରେ ବେଶି ସମୟ ଖେଳରେ କଟାଇବାରୁ ଓ ସାହିତ୍ୟ ବ୍ୟତୀତ ଅନ୍ୟ ବିଷୟମାନଂକରେ ଆଗ୍ରହ ନ ଆସିବାରୁ ସେ ପାଠ ପଢ଼ା ଛାଡ଼ିଦେଲେ। ମାତ୍ର ବିଦ୍ୟାଳୟରେ ପଢ଼ିବା ବେଳଠାରୁ ତାଂକର କବି ପ୍ରତିଭାର ସ୍ଫୁରଣ ଘଟିଥିଲା। ବିଖ୍ୟାତ ଲେଖକ ପଂଡିତ ସ୍ୱପ୍ନେଶ୍ୱର ଦାସ ତାଂକର ସାହିତ୍ୟିକ ପ୍ରତିଭାର ପରିଚୟ ପାଇ ତାଂକୁ ଶ୍ରଦ୍ଧାରେ ତାଂକ ଶବ୍ଦ ଭଂଡାର ବୃଦ୍ଧି ନିମିତ୍ତ ଖଂଡେ ଅମରକୋଷ ଅଭିଧାନ ଦେଇଥିଲେ। ସେ ରଂପେଲାର ଛାତ୍ର ଥିବାବେଳେ ଆଜମିରର ଜଣେ ସୁଫି ସଂଥ ସେଠାକୁ ଆସିଲେ। ସେ ପିଲାମାନଂକୁ କୁସ୍ତି କସରତ ଶିଖାଉଥିଲେ। ତା ସହିତ ଆଧ୍ୟାତ୍ମିକ ତତ୍ତ୍ୱମାନ ବୁଝାଉଥିଲେ। ମୁସ୍ତାକିମ୍ ଖାଁ ଏହା ଫଳରେ ଭକ୍ତିମାର୍ଗ ପ୍ରତି ଶ୍ରଦ୍ଧାଳୁ ହୋଇଉଠିଲେ। ବଡ଼ ହେଲାରୁ ମୁସ୍ତାକିମ୍ ଗୌଂତିଆ ମାମୁଘର ମାଲଗୁଜାରି ଅସୁଲ କାମରେ ନିଯୁକ୍ତି ପାଇଲେ। ନିଜର ନିଷ୍ଠାପର ସ୍ୱଭାବ ଓ କର୍ମଦକ୍ଷତା ଫଳରେ ସେ ସବୁରି ପ୍ରିୟ ହୋଇ ପାରିଲେ। ଗୀତ କବିତା ସେ ଲେଖି ଲୋକମାନଂକୁ ଶୁଣାଇଲେ। ଭକ୍ତି ତତ୍ତ୍ୱ ଆଲୋଚନା କଲେ। ଲୋକେ ତାଂକୁ ଆଦର କରିବାରେ ଲାଗିଲେ। ଏକାଧାରରେ ମୁସ୍ତାକିମ୍ ଥିଲେ ମଲ୍ଲଯୋଦ୍ଧା, ଶିକାରୀ, ଅଭିନେତା, କବି, ନାଟ୍ୟକାର, ସଂଗୀତଜ୍ଞ, ଚିକିତ୍ସକ, ଜ୍ୟୋତିଷ, ତାଂତ୍ରିକ ଓ ଯୋଗୀ। କିଛିଦିନ ପରେ ସେ ଭାରତ ପର୍ଯଟନରେ ବାହାରିଲେ। ଜ୍ୟୋତିଷ ବିଦ୍ୟା ଓ ଟୁଂଣୁକା ଟୁଣୁକି ଚିକିତ୍ସାରୁ ଯାହା ଆୟ କଲେ ତାହା ତାଂକ ଭ୍ରମଣ ଖରଚ ତୁଲାଇବାକୁ ଯଥେଷ୍ଟ ଥିଲା। ଶେଷରେ ସେ ଗ୍ରାମକୁ ଫେରି ଆସିଲେ। ବରପାଲିରେ କିଛି ଜମି କିଣି ସେଠାରେ ଘରକରି ରହିଲେ। ନିଜର ରେମଂଡାରେ ଥିବା ପୈତୃକ ଘର ମସଜିଦ୍ ପାଇଁ ଦାନ କଲେ। ସୁଫି ସଂଥ ଅବଦୁଲ୍ଲା ଶାହାଂକଠାରୁ ସେ ଶିଷ୍ୟତ୍ୱ ଗ୍ରହଣ କରି ସାଂସାରିକ ଜୀବନ ମଧ୍ୟରେ ଅନାସକ୍ତ ଥିଲେ ଓ ନିଜର ଗୀତ କବିତା ରଚନାରେ ଭଗବତ୍ ପ୍ରେମ ଆଲୋଚନା କରି ଅଂତରକୁ ସର୍ବଦା ଭକ୍ତିପରିପ୍ଲୁତ କରି ରଖିଥିଲେ। ସେ ଗୀତାଭିନୟ, ଅନେକ ପାଲା, ଚଉପଦୀ, ଭଜନ, ଚଂପୂ ଓ ସଂବଲପୁରୀ ଗୀତ ରଚନା କରିଥିଲେ। ତାଂକର ଦେହତ୍ୟାଗ ପରେ ତାଂକ ଅପ୍ରକାଶିତ ପାଂଡୁଲିପିମାନଂକ ମଧ୍ୟରେ ଅଛି ଶ୍ରୀରାମ ବନବାସ, ତ୍ରିପୁର ମୋହିନୀ ହରଣ, ନୀଳାଦ୍ରୀ ହରଣ, କୃଷ୍ଣ ଜନ୍ମ, ଲକ୍ଷ୍ମୀ ପୁରାଣ, ସୁଆଂଗ ଦିୱାନ ମୁସ୍ତାଫା, ପଠାଣ ଠଗ ଫାର୍ଶ, ଦ୍ୱିଭାଷୀ ଛାଂଦ ସଂଗୀତ ରସ କଲ୍ଲୋଳ, ବୋଧ କଥା, ପୃଥ୍ୱୀ ଓ ଯୁଗ, ସତ୍ୟାସତ୍ୟ, ଜନ୍ମ ଓ ଯୁଦ୍ଧ, ମାନ ଭଂଜନ ଚଉତିଶା, ଭଜନ ଅନାମିକା ଓ ଅନେକ ଅନାମୀ ଗୀତି କବିତା। ତାଂକ ରଚନାରୁ ଜଣାଯାଏ କବୀର ଓ ସୁଫି ସଂଥଂକର ପ୍ରଭାବ ତାଂକଠାରେ

ବିଶେଷ ପ୍ରତିକ୍ରିୟା ସୃଷ୍ଟି କରିଥିଲା। ଇସ୍‌ଲାମ୍‌ର ସାରତତ୍ତ୍ୱ ସେ ବୁଝିଥିଲେ। ତା ସହିତ ହିଂଦୁ ଧର୍ମ ଶାସ୍ତ୍ର ବେଦ ପୁରାଣ ଓ ଉପନିଷଦର ଗୁଢ଼ ତତ୍ତ୍ୱ ତାଂକୁ ଅବିଦିତ ନ ଥିଲା। ସବୁ ଧର୍ମ ତାଂକ ଆଖିରେ ସମାନ ମର୍ଯାଦା ଥିଲା ଓ ସବୁ ଧର୍ମକୁ ସେ ନିଜ ଜୀବନ ଦର୍ଶନର ଅନୁକୂଳ ବୋଲି ମନେ କରୁଥିଲେ। ଆଲ୍ଲା ତାଲ୍ଲାଂକ ମାହାତ୍ମ୍ୟ ଉପରେ ଆସ୍ଥା ରଖିବା ପରି ସେ ରାଧାକୃଷ୍ଣ ଓ ହରପାର୍ବତୀଂକ ଉପରେ ଭକ୍ତି ରଖି କବିତା ରଚନା କରିଛଂତି। ନିତିଦିନର ଅଭାବ ଅନାଟନର ସଂସାର ମଧ୍ୟରେ ସେ ପରମାତ୍ମାଂକର ସତ୍ତା ଅନୁଭବ କରି ଜୀବନ ନିର୍ବାହ କରୁଥିଲେ। ୧୯୪୬ରେ ଲିଖିତ ଏକ କବିତା ଶରଣଗତିରୁ ଏକ ଦୃଷ୍ଟାଂତ।

> "ପ୍ରଭୁ ଯାହା ଇଚ୍ଛା ତାହା କର
> ସମର୍ପିତ ମନ, ଧନ, ଯଉବନ, କଂଜଚରଣେ ତୁମର।
> ଲାଭ-କ୍ଷତି ମାନ-ଅଭିମାନ ଶାଖା, ଛେଦନରେ ମୋର କିଛିନାହିଁ ଦଖା,
> ଧର୍ମାଧର୍ମ-ପତ୍ର ପାପ-ପୁଣ୍ୟ ଫଳ ଏଥିକି ନାହିଁ ଖାତିର।"

ଏହି ସୁଫି ସଂଥ ଗୌଂତିଆଂକର ୧୯୬୬ ସେପ୍ଟେମ୍ବରରେ ଦେହାବସାନ ଘଟିଥିଲା। ତାଂକର ଭକ୍ତି ରସାତ୍ମକ ରଚନା ମାନ କୌଣସି ସରକାରୀ ବା ବେସରକାରୀ ସଂସ୍ଥା ଉଦ୍ୟମରେ ପ୍ରକାଶିତ ହୋଇ ଓଡ଼ିଶାର ସବୁ ଧର୍ମ ଓ ସଂପ୍ରଦାୟ ମଧ୍ୟରେ ପ୍ରଚାରିତ ହେବାର ଆବଶ୍ୟକତା ରହିଛି।



> "ଜୀବର ରାଇଜେ ଧର୍ମସେ ଖାଲି
> ଜୀବହୀନ ଯାଦୁଘର
> ନୁହେଁ କିଛି ଆଉ ସଂଚିତ ତହିଁ
> କଂକାଳ ଜଗତର।"

— କାଳିଂଦୀଚରଣ



# ଅଦ୍ୱିତୀୟ ଅଧ୍ୟାପକ
# ଡାକ୍ତର ସନାତନ ପୂଜାରୀ

ସଂବଲପୁର ସହରରେ ବ୍ରହ୍ମପୁରା ଗୁଡ଼ି। ଏହା ପ୍ରାୟ ପାଂଚଶହ ବର୍ଷ ପୁରୁଣା ବୋଲି କୁହାଯାଏ। ଏହାର ସେବାୟତ ପୂଜକ ବ୍ରାହ୍ମଣମାନଂକର ଉପାଧି ଥିଲା ପୂଜାରୀ ଏମତି ଜଣେ ହେଲେ କମଳଲୋଚନ ପୂଜାରୀ। ସେ ସଂବଲପୁରରେ ଜନ୍ମିତ ହୋଇ ସଂସ୍କୃତ, ହିଂଦି ସାହିତ୍ୟ ଓଡ଼ିଆ ମଧ୍ୟ ପଢ଼ିଲେ। ଇଂରାଜୀ ଶିକ୍ଷା କଲେ। ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ ମଂଦିରର ପୂଜା ଓ ସୁପରିଚାଳନାର ଦାୟିତ୍ୱ ନିଜ ଜାମାତାଂକୁ ଅର୍ପଣ କରି ସେ କଳାହାଂଡି ରାଜ୍ୟରେ ଭୂବଂଦୋବସ୍ତ କରିବାକୁ ନିଯୁକ୍ତି ପାଇଁ ଚାଲିଗଲେ। ସଂବଲପୁରର ପଲିଟିକାଲ ଏଜେଂଟ ଅଫିସ୍‌ରେ ସେ କାମ କରୁଥିଲେ। ସାହେବ ତାଂକ ଦକ୍ଷତା ଓ ଅଭିଜ୍ଞତାର ପୁରସ୍କାର ସ୍ୱରୂପ ଏହି ପଦବୀ ଦେଇଥିଲେ, ସେଠାରେ ସେ ତିନି ବର୍ଷ କାମ କଲେ। ବଂଦୋବସ୍ତ କାମ ସରିଲା। ଜମିର ମାପଚୁପ ସହିତ ଖଜଣା ମଧ୍ୟ ଧାର୍ଯ୍ୟ ହେଲା। ପୁରୁଣା କାଳିଆ ସର୍ଭେ ହତିଆର ଧରି ବଭିନ୍ନ କିସମର ସତ୍ୱାଧିକାରୀ ମାନଂକର ସୀମା ଓ ଉଚିତ ଅଧିକାର ଠିକ୍ ରୂପେ ଚିହ୍ନୋଟ କରିବା କଠିନତର ଥିଲା। ପରେ ପରେ ବଲାଂଗିର ପାଟଣାର ରାଜା ତାଂକୁ ନେଇ ପୁଣି ତାଂକ ରାଜ୍ୟରେ ସେଇ କାର୍ଯରେ ଲଗାଇଲେ।

ତାପରେ ସେ ସୋନପୁରରେ ମଧ୍ୟ ବଂଦୋବସ୍ତ ଅଧିକାରୀ ଭାବରେ କାମ କରି ସୁନାମ ଅର୍ଜନ କଲେ। ଏସବୁ ବଦଳି ସତ୍ତ୍ୱେ ନିଜ ସଂତାନମାନଂକୁ କମଳଲୋଚନ ଶିକ୍ଷାପ୍ରେମୀ ଭାବରେ ଉଚ୍ଚ ଶିକ୍ଷା ଦେବାରେ ହେଳା କରି ନ ଥିଲେ। ଉଚ୍ଚ ଶିକ୍ଷା ପାଇ ପିଲାମାନେ ଖୁବ୍ ନାମ କଲେ। ବଂଗ ବିହାର ଓଡ଼ିଶାରେ ବଡ଼ପୁଅ ତ୍ରିବିକ୍ରମ ଡେପୁଟି କଲେକ୍ଟର ଥାଇ ପୁରୀର ଜିଲ୍ଲାପାଳ ଭାବରେ ଅବସର ନେଲେ। ୨ୟ ସନାତନ। ୩ୟ ମୀନକେତନ ହେଲେ ପାଟଣା ରାଜ୍ୟର ଉଚ୍ଚ ପୁଲିସ୍ ଅଧିକାରୀ। ୪ର୍ଥ ଅଚ୍ୟୁତାନଂଦ ଇଂଜିନିଅର ଭାବରେ ଖ୍ୟାତି ଅର୍ଜନ କଲେ। ଓଡ଼ିଶା ସରକାରଂକର ସୁପରିଂଟେଂଡିଂ ଇଂଜିନିୟର ହେଲେ। କଳାହାଂଡିରେ ଜନ୍ମିତ କନିଷ୍ଠ ସଚ୍ଚିଦାନଂଦ ନୟାଗଡ ରାଜ୍ୟର ଦେୱାନ, କଳାହାଂଡିର ୧୯୪୮ରେ ପ୍ରଶାସକ, କୃଷି ନିର୍ଦ୍ଦେଶକ, ଜିଲ୍ଲାପାଳ ଓ ଶେଷରେ ଶାସନ ସଚିବ ଭାବରେଅବସର ନେଲେ। କମଳଲୋଚନଂକର ସାନ୍ଧୁଥିଲେ ଦାଶରଥି। ମଧ୍ୟପ୍ରଦେଶର ବିଚ୍ଛିନ୍ନ ଓଡ଼ିଆ ଅଂଚଳକୁ ସଂବଲପୁର ଓ ଓଡ଼ିଶା ସହିତ ମିଶାଇବା ଆଂଦୋଳନ କରି ଅକାଳରେ ମୃତ୍ୟୁବରଣ କରିଥିବା ବୈକୁଂଠ ନାଥ ମଧ୍ୟପ୍ରଦେଶର ଆସିଷ୍ଟାଂଟ୍ କମିସନ୍‌ର ଥିଲେ। ଦାଶରଥି ତାଂକ ପିତା ଥିଲେ। ସେମାନଂକ ଅବଦାନ ଅନ୍ୟତ୍ର ଆଲୋଚନା କରାଯାଇଅଛି।

କମଳ ଲୋଚନଂକ ୨ୟ ପୁତ୍ର ଡାକ୍ତର ସନାତନ। ୧୮୮୬ରେ ତାଂକର ଜନ୍ମ, ଓଡ଼ିଶାରେ ପ୍ରଥମ ମେଡିକାଲ କଲେଜ ସ୍ଥାପିତ ହେଲା କଟକରେ ୧୯୪୩ରେ। ଏବେ ତାହାର ନାମ ଶ୍ରୀରାମଚଂଦ୍ରଭଂଜ ମେଡିକାଲ କଲେଜ। ଏହାର ପ୍ରଥମ ଭାରତୀୟ ଅଧ୍ୟକ୍ଷ ଡାକ୍ତର ସନାତନ, ସେ ନିଜେ କିଂତୁ ମେଡିକାଲ କଲେଜରେ ପଢ଼ି ନ ଥିଲେ। ବଂଗଳାରୁ ଏଲ୍.ଏମ୍.ଏଫ. ଡାକ୍ତରି ପାସ୍ କରି ସନାତନ ସୋନପୁର ଦରବାର ଅଧୀନରେ ମୁଖ୍ୟ ଚିକିତ୍ସକ ଭାବରେ ୧୯୦୮ରୁ ୧୯୧୮ ପର୍ଯ୍ୟଂତ କାର୍ଯକରିଥିଲେ। ସେତେବେଳେ ସୋନପୁରର ରାଜା ଥିଲେ ବୀର ମିତ୍ରୋଦୟ ସିଂହ ଦେଓ। ତାଂକର ଇଂରେଜ ସରକାରଂକ ପାଖରେ ଖୁବ୍ ଖାତିରଥାଏ। ତାଂକର ପୁଅ ସୋମଭୂଷଣଂକର ୧୯୧୮ ଏପ୍ରିଲରେ ବଡ଼ଖେମୁଂଡି ରାଜ ଜେମା ସୀତା ଦେବୀଂକ ସହିତ ବିବାହ ହୋଇଥିଲା। ମାତ୍ର ତାଂକୁ ଇନଫ୍ଲୁଏନ୍‌ଜା ବୋଲି କୁହାଗଲା ଓ ସେ ବିବାହର ମାତ୍ର ଛଅ ମାସ ଭିତରେ ପ୍ରାଣତ୍ୟାଗ କଲେ। ମହାରାଜା ହାଇସ୍କୁଲର ପ୍ରଧାନ ଶିକ୍ଷକ କିଶୋରୀ ମୋହନ ଦାସ ଯୁବରାଜଂକର ଗୃହ ଶିକ୍ଷକ ଥିଲେ। ସେ ତାଂକର ବିଶେଷଜ୍ଞ ଦ୍ୱାରା ଚିକିତ୍ସା ନିମିତ୍ତ ଅନୁରୋଧ କଲେ। ମହାରାଜା ଏହା ପ୍ରତ୍ୟାଖ୍ୟାନ କଲାରୁ ସେ ଚାକିରି ଛାଡ଼ି ପ୍ରୟାଗ ଗଲେ। ଡାକ୍ତର ସନାତନ ଯୁବରାଜଂକର ମୃତ୍ୟୁ ବିଷୟକ ପ୍ରମାଣପତ୍ର ଦେବାକୁ ମନାକରି ଗୁପ୍ତ ଭାବରେ ରାଜ୍ୟ ଛାଡ଼ି ପଳାଇ ଆସିଲେ। ତାଂକ ବଦଳରେ ଜଣେ ବଂଗାଳୀ ଡାକ୍ତର ଏହି ପ୍ରମାଣପତ୍ର

ଦେଲେ ଓ ମହାରାଜା ତାଂକୁ କଲିକତାର ବାଲିଗଂଜ ଅଂଚଳରେ ଗୋଟିଏ ସୁଂଦର ଘର ଉପହାର ସ୍ୱରୂପ ଦେଲେ। କର୍ତବ୍ୟ ନିଷ୍ଠା ଓ ନୈତିକତା ପ୍ରତି ସମ୍ମାନ ସନାତନଂକର ଏହି ଗୋଟିଏ ଉଦାହରଣରୁ ସ୍ପଷ୍ଟ ଜଣାପଡେ।

ଏହାପରେ ସେ ମେଡିକାଲ ସ୍କୁଲରେ ଶିକ୍ଷକ ହେବାକୁ ପସଂଦ କଲେ। ଶରୀର ବିଜ୍ଞାନରେ ଅଧ୍ୟାପକ ଭାବେ ବିହାର ଓଡ଼ିଶାର ବିଭିନ୍ନ ମେଡିକାଲ ସ୍କୁଲରେ ସେ କାମ କରି ଖୁବ୍ ସୁନାମ ଅର୍ଜନ କଲେ। ନିଜର ସୁଚିଂତିତ ଗବେଷଣାମୂଳକ ପ୍ରବନ୍ଧମାନ ବିଭିନ୍ନ ଡାକ୍ତରି ବିଦ୍ୟା ପତ୍ରିକାରେ ପ୍ରକାଶିତ ହେବାରୁ ସେ ସମଗ୍ର ଭାରତ ଓ ବିଦେଶରେ ମଧ୍ୟ ପରିଚିତ ହେଲେ। ଡାକ୍ତର ସନାତନଂକ ଭଳିଆ ଭାରତବର୍ଷରେ ଆଉ ଜଣେ ଡାକ୍ତର ଥିଲେ ଯେ ନିଜେ ମେଡିକାଲ କଲେଜରେ ନ ପଢ଼ି ଏଲ୍.ଏମ୍.ଏମ୍. ପାସ୍ କରି ଭାରତ ପ୍ରସିଦ୍ଧ ହୋଇଥିଲେ। ତାଂକ ନାଁ ଡକ୍‌ଟର ଆରକଟ ଲକ୍ଷ୍ମଣ ସ୍ୱାମୀ ମୁଦାଲିଅାର। ଜଣେ ପ୍ରସୂତି ବିଜ୍ଞାନ ବିଶାରଦଭାବରେ ସେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ ଓ ଅଧ୍ୟାପକ ଅଧ୍ୟକ୍ଷ ଥାଇ ଦୀର୍ଘ ୨୭ ବର୍ଷ ମାଂଦ୍ରାଜ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ। ସେ ଅବଶ୍ୟ ପରେ ନିଜେ ଏମ୍‌ଡି ଯୋଗ୍ୟତା ହାସଲ କରିଥିଲେ। ସନାତନଂକର ଖ୍ୟାତି ଦକ୍ଷତା ଓଡ଼ିଶାରେ ତାଂକ ଉତ୍ତର ପୁରୁଷ ଦାୟାଦଂକୁ ଅଜ୍ଞାତ ରହିଗଲା। ସେ ମେଡିକାଲ କଲେଜରେ ଶିକ୍ଷକ ଥିବା ସମୟରେ ମେଡିକାଲ କଲେଜର ଅଧ୍ୟାପକ ଇଉରୋପିଆନ କର୍ନେଲ ଦାଉଦ ଅବସର ଗ୍ରହଣ କଲେ। ସନାତନ ଅଧ୍ୟାପକ ହେବାକୁ ପାଳି ପଡ଼ିଲା ମାତ୍ର ସରକାର ପଦବି ପୂରଣ ନିମିତ୍ତ ବିଜ୍ଞାପନ ଦେଲେ। ଉପଯୁକ୍ତ ପ୍ରାର୍ଥୀ ଅନ୍ୟଠାରୁ ଆଣି ପଦ ପୂରଣ କରିବେ। ଉଚ୍ଚ ବୈଷୟିକ ଜ୍ଞାନଯୁକ୍ତ ଦୁଇଜଣ ଏଫ.ଆର.ସି.ଏସ୍. ଶରୀର ବିଜ୍ଞାନରେ ଏମ.ଏସ.ସି. ଯୁକ୍ତ ଏମ.ବି.ବି.ଏସ୍. ଆଉ ଜଣେ ପ୍ରାର୍ଥୀ ହେଲେ। ସନାତନ ନିଜେ ପ୍ରାର୍ଥୀ ହେଲେ ମଧ୍ୟ ନିଜ ଶିକ୍ଷାଗତ ଯୋଗ୍ୟତା ବିଷୟରେ ସଚେତନ ଥିଲେ। ସବୁ ପ୍ରାର୍ଥୀଂକୁ ସାକ୍ଷାତ ନିମିତ୍ତ ଡକାଗଲା। ଡକ୍‌ଟର ବ୍ରାସ ଓ ଡକ୍‌ଟର କନିଂହାମ ନାମରେ ଦୁଇଜଣ ବିଶେଷଜ୍ଞ ବ୍ରିଟିଶ ମେଡିକାଲ କାଉନସିଲ ଦ୍ୱାରା ମନୋନୀତ ହୋଇ ସାକ୍ଷାତକାର ନେବା ପାଇଁ ଭାରତକୁ ଆସିଲେ। ଡକ୍‌ଟର ବ୍ରାସଂକର ଲିଖିତ ପାଠ୍ୟପୁସ୍ତକ ଶରୀର ବିଜ୍ଞାନରେ ପଢ଼ାଯାଉଥାଏ। ଅନ୍ୟ ଜଣକ ମଧ୍ୟ ଖୁବ ନାମଜାଦା ଅଧ୍ୟାପକ ଥିଲେ। ଶିକ୍ଷାଦାନରେ ଦକ୍ଷତା ଜାଣିବାକୁ ସେମାନେ ପ୍ରତ୍ୟେକ ପ୍ରାର୍ଥୀଂକୁ ଗୋଟିଏ ପିରିଅଡ଼ ଶିକ୍ଷାଦାନ ନିମିତ୍ତ ଆହ୍ୱାନ କଲେ। ଶିକ୍ଷାଦାନର ବିଷୟ ସେମାନଂକୁ ଘଂଟାଏ ଆଗରୁ ଜଣାଇ ଦିଆଯାଉଥାଏ। ନିର୍ବାଚକ ମାନେ ପରୀକ୍ଷା କରୁଥାଆଂତି। ଶିକ୍ଷାଗତ ଯୋଗ୍ୟତା ଓ ବର୍ନମାଳା କ୍ରମରେ ନାମ ସଜାହେତୁ ସନାତନ ସବା ପଛରେ। ଶେଷ ଦିନ ତାଂକ ପାଳି ପଡ଼ିଲା, ପରିଦର୍ଶକମାନେ ଅନ୍ୟଦିନମାନଂକରେ ଶିକ୍ଷାଦାନ ୧୫-୨୦ ମିନିଟ୍ ଦେଖି ନିଜ କକ୍ଷକୁ ଫେରିଯାଉଥିଲେ।

ମାତ୍ର ସନାତନ ତାଂକୁ ଦିଆଯାଇଥିବା ବିଷୟଟିକୁ ଏପରି ସରସ ଓ ଚିତ୍ତାକର୍ଷକ କରି ରଖିଲେ ଯେ ଦୁଇ ଘଂଟା ଧରି ସେମାନେ ଚୁପ୍‌ଚାପ୍ ବସି ରହି ତାଂକର ଭାଷଣ ଶୁଣିଲେ। ସମଗ୍ର ଶ୍ରେଣୀ ସଂପୂର୍ଣ ନୀରବ। ଶିକ୍ଷାଦାନ ସମୟରେ ସନାତନ ନିଜର ଅସ୍ତିତ୍ୱ ଭୁଲିଯାଆଂତି। ତାଂକର ସହକର୍ମୀ ମଧ୍ୟ ଏହା ଜାଣିଥାଆଂତି। ସେ ଦିନ ଦୁଇଘଂଟା ଶିକ୍ଷାଦାନ ପରେ ସନାତନଂକର ହୋସ ଆସିଲା ଯେ ସେ ଏକ ପରୀକ୍ଷାର ସମ୍ମୁଖୀନ ଅଛଂତି। ତେଣୁ ଛାତ୍ରମାନଂକୁ ଅଧିକା ଜାଣିବା ଓ ଶୁଣିବା ସୁଯୋଗ ନଦେଇ ସେ ସମସ୍ତଂକଠାରୁ କ୍ଷମା ମାଗି ନିଜର ଭାଷଣ ସମାପ୍ତ କଲେ। ବିଲାତରୁ ଆଗତ ଦୁଇଜଣ ବୋର୍ଡ ସଭ୍ୟ ମତ ଦେଲେ ଭାରତ କଅଣ ବିଲାତରେ ବା ବିଦେଶରେ ଯେ କୌଣସି ପ୍ରତିଷ୍ଠିତ ମେଡିକାଲ କଲେଜର ଶରୀର ବିଜ୍ଞାନ ଅଧ୍ୟାପକ ପଦ ମଂଡନ କରିବାକୁ ଓ ଗବେଷଣାରେ ନିର୍ଦେଶ ଦେବାକୁ ଆଉ ଯୋଗ୍ୟତର ପ୍ରାର୍ଥୀ ମିଳିବେ ନାହିଁ। ତାଂକ କ୍ଷେତ୍ରରେ ଉଚ୍ଚ ଡିଗ୍ରି ଅନାବଶ୍ୟକ। ସେଇଥିପାଇଁ ସେ ପ୍ରାର୍ଥୀ ନ ଥିଲେ ମଧ୍ୟ ପ୍ରଥମ ଓଡ଼ିଶା ମେଡିକାଲ କଲେଜର ଅଧ୍ୟକ୍ଷ ରୂପେ ତାଂକୁ ନିମଂତ୍ରିତ କରି ନିଯୁକ୍ତି ପ୍ରଦାନ କରାଯାଇଥିଲା। ଅଧ୍ୟକ୍ଷ ଥିବା ସମୟରେ ସେ କର୍ମମୟ ଜୀବନ ମଧ୍ୟରେ କଟକ ସହରରେ। ୧୯୪୬ ଏପ୍ରିଲମାସ ଦୁଇ ତାରିଖରେ ପ୍ରାଣତ୍ୟାଗ କଲେ ଓ ଜଣେ ଅସାଧାରଣ ପ୍ରତିଭା ସଂପନ୍ନ ଡାକ୍ତରି ଶିକ୍ଷକଂକ ଜୀବନର ଯବନିକା ପାତ ହେଲା। ତାଂକର ସ୍ମୃତିରକ୍ଷା ନିମିତ୍ତ କୌଣସି ଉଦ୍ୟମ କରାଯାଇ ନ ଥିବା ପରିତାପର ବିଷୟ।



ତ୍ରିବିକ୍ରମ ପୂଜାରୀ
ସଂବଲପୁର ପ୍ରଥମ ଜିଲ୍ଲାପାଳ



ସଚ୍ଚିଦାନଂଦ ପୂଜାରୀ
ପ୍ରଥମ ଆଇ.ଏ.ଏସ୍.
ସ୍ୱାଧୀନତା ପରେ ଜିଲ୍ଲାପାଳ



# କବି
# ସତ୍ୟନାରାୟଣ ବହିଦାର

ସଂବଲପୁରୀ କବିତାର ଏ ଆଦ୍ୟସ୍ରଷ୍ଟା । ଇଂରେଜ ଶାସନ ବେଳର କଥା । ଗଣକବି ବୈଷ୍ଣବ ପାଣିଂକ ଯାତ୍ରାଦଳ ସଂବଲପୁର ଯାଇଥାଏ । ସେମାନେ ରଂଗସଭା ବା କଂସବଧ ଗୀତାଭିନୟ ଦେଖାଉଥାଆଂତି । କୃଷ୍ଣ ବଳରାମ ମଥୁରାରେ ପହଂଚିଲେ । ଦେଖିଲେ କଂସର ରଜକ ଲୁଗା ସଫାକରି ରାଜନବରରେ ଦେବାକୁ ଯାଉଛି । ସେ ଖୁସିରେ ଗୀତ ବୋଲୁଛି –

''ହାଣିଗଲି ବଡ଼ ଖୋବା ଲୋ (ବୋଇଲା) ହାଣିଗଲି ବଡ଼ ଖୋବା ।
ଉଠା ଭାତୁଆଣି, ବସାଯାଉ ପାଣି, ଅଇଲେ ବେଠିଆ ଧୋବା ଲୋ ।
ତୁତ ଅଇଲୁ ମୁଉଁତ ଅଇଲି ସପନା ନଦୀ କୂଳରେ ଲୋ
ଶେଯ ଶେଯାଇଲି ଫୁଲ ବିଛାଇଲି ନିଶିଗଲା ବିଫଳରେ ଲୋ ।
ଛି ଛି ମଦ ଖାଇବି ନାହିଁ ଲୋ କଳାପାଣି ପରି ଦିଶେ,
ସେଇ କଳାପାଣି ପେଟରେ ପଡ଼ିଲେ ଚଉଦ ଭୂବନ ଦିଶେ ଲୋ ।
ଧୋବା ସାଇବାଟେ ପଶି ଆସିଲିଲୋ ଧୋବଣୀ ପୋଡୁଛି ଖାର
ଧୋବଣି ବେକରେ ମଉଡ଼ମାଳ ଲୋ ବୋହି ପଡୁଥାଏ ଝାଳ ।

ଗୀତଟିର ଭାଷା କଟକ ଜିଲ୍ଲାର ନିପଟ ମଫସଲର କଥିତ ବୋଲି। ଅର୍ଥ ମୋଟାମୋଟି ବୁଝିହେଲେ କଣ ହେବ ପଦର ମଜା ସବୁ ଲୋକେ ପାଇଲେ ନି। ଦଶ-ବାର ବରଷର ମାଝାଂଡି ପଢ଼ାର ପିଲାଟିଏ ଗୀତ ଶୁଣୁଥିଲା। ସୁଆଂଗ ଯାତ୍ରା ତାର ମନ ଛୁଇଁ ଯାଇଥାଏ। ଗୀତର ଭାଷାକୁ ବୁଝିବା କଷ୍ଟ ହେଉଥାଏ। ସେ ତା ମନକୁ ମନ ସେଇ ଗୀତ ନିଜ ବୋଲିରେ ଗାଇଲା। ଯାତ୍ରା ସରିଲା ମାତ୍ର ପିଲାଟିର ଗୀତ ସ୍ୱର ଓ ଭାବ ସମସ୍ତେ ପ୍ରଶଂସା କଲେ। ସେଇ ପିଲାଟି ଜିଲ୍ଲା ସ୍କୁଲରୁ ପାସ୍ କରି ଶିକ୍ଷକ ଟ୍ରେନିଂ ପାଇ ଶିକ୍ଷକ ହେଲା। କମକି ବଜାରରେ ଘର କରି ରହିଲା। ବଡ଼ ହେଲାରୁ ତାର ଗୀତର ଆଦର ବଢ଼ିଲା। ସବୁରି ମନଛୁଆଁ ଅନେକ ଗୀତ ସେ ସଂବଲପୁରୀ ଗାଉଁଲି ଭାଷାରେ ଲେଖିଲା। ଯିଏ ଶୁଣିଲା ସେ ମନେରଖି ତାକୁ ଗାଇଲା। ଗୀତ ଚାରିଆଡ଼େ ଶୁଣାଗଲା। ସେହି ପିଲାଟିର ନାମ ଥିଲା ସତ୍ୟନାରାୟଣ ବହିଦାର। ୧୯୧୩ରେ ସୋନପୁରରେ ସେ ଜନ୍ମ ହୋଇଥିଲେ। ଶିକ୍ଷକ ବୃତ୍ତି କରି ଗୁରୁରାଣ ମେଂଟାଇଲେ ମାତ୍ର ସଂବଲପୁରୀ କଥିତ ଭାଷାରେ ସେ ଅନେକ ଗୀତ, କବିତା ଓ କେତେଗୋଟି ପ୍ରବଂଧ ମଧ୍ୟ ଲେଖି ସଂବଲପୁରୀ ଭାଷା ସାହିତ୍ୟର ଜନକ ବୋଲି ପ୍ରଶଂସା ପାଇଲେ। ତାଂକର ଗୀତ, କବିତା ସଂକଳନ ଶ୍ରୀପଂଚମୀ ଘୁଡୁବୁଡୁ ଘବ ଘବୋ, ଟିକ ଚହେଁରା ନାମରେ ପ୍ରକାଶ ପାଇଲା। ସେ ସଂବଲପୁରୀ ଶବ୍ଦର ଅଭିଧାନ ଓ ଏହାର ବ୍ୟାକରଣ ନିୟମ ମଧ୍ୟ ରଚନା କଲେ ମାତ୍ର ଗୀତ ଓ କବିତା ଲେଖାରେ ସେ ପଥପ୍ରଦର୍ଶକ ଥିଲେ। ତାଂକ ସହିତ ସଂବଲପୁର ଭକ୍ତ କବି ପ୍ରଭାକର ପାଣିଗ୍ରାହୀ, ବଲାଂଗିରର ରଘୁନାଥ ପ୍ରସାଦ ବହିଦାର, ଶ୍ରୀପତି ପାଣିଗ୍ରାହୀ (ସରଗମଲ୍ଲୀ ଲେଖକ) ଓ ଅନ୍ୟମାନେ ଗୀତ ଲେଖା ଆରଂଭ କଲେ। ସଂବଲପୁରରେ ବେତାର କେଂଦ୍ର ସ୍ଥାପିତ ହେଲାରୁ ଏ ଗୀତ ସବୁ ବୋଲାଯାଇ ଲୋକପ୍ରିୟ ହୋଇ ପାରିଲା। ମାତ୍ର କଥିତ ଭାଷାକୁ ଷ୍ଟାଂଡାର୍ଡ ଓଡ଼ିଆ ଭାଷାର ମର୍ଯାଦା ଦେବାକୁ ତାଂକର ଉଦ୍ୟମ ଯଥାର୍ଥରେ ପ୍ରଶଂସନୀୟ ଥିଲା। ମଧୁର ଭାଷା ଓ ସଂଗୀତର ଲାଳିତ୍ୟଯୋଗୁ ତାଂକର ଗୀତ ଓ କବିତା ମାନ ସବୁରି ମନକୁ ଛୁଇଁ ପାରୁଥିଲା ଗୀତିକାର ସତ୍ୟନାରାୟଣ ତାଂକ ଗୀତ, କବିତାରେ ଆଂଚଳିକ ଉପମା ଓ ଅଳଂକାରର ବ୍ୟବହାର କରି ଏହାକୁ ଜନପ୍ରିୟ କରାଇଲେ। ଓଡ଼ିଆ ସାହିତ୍ୟର ରଥୀମାନେ ତାଂକର ରଚନାର ପ୍ରଶଂସା କରିଥିଲେ। ପରବର୍ତୀ କାଳରେ ଓଡ଼ିଶା ସାହିତ୍ୟ ଏକାଡେମୀ, ସଂବଲପୁର ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ସାଂସ୍କୃତିକ ସମାଜ ଆଦି ବହୁ ଅନୁଷ୍ଠାନ ତାଂକୁ ମାନପତ୍ର ଓ ଉପାୟନ ଦେଇ ସମ୍ମାନିତ କରିଥିଲେ। ୧୯୮୦ ବର୍ଷର ଶେଷ ଦିନରେ ସେ ଇହଲୀଳା ସଂବରଣ କଲେ।

ମାନ୍‌ଲେ ଗୁଡର୍ ନାହେଲେ ପଥର
　　　　ବାନ୍ସି ବିଂଧନ ଟଂଗିଆ,
ବାଟ୍ ଦେଖି ବାଟ୍ ଚାଲ୍‌ବୁ ବାବୁ
　　　　କେନ୍ ବେଳେ କେନ୍ ସମିଆ।



# ବୁଢ଼ାମାଷ୍ଟ୍ରେ
# ଶଶିଭୂଷଣ ମିଶ୍ର

ସତ୍ୟନାରାୟଣଂକ ଭଳିଆ ଆଉ ଜଣେ ବରଗଡ଼ରେ ଶିକ୍ଷକ ସେମିତି ସଂବଲପୁରର କଥିତ ଭାଷାରେ ଦୋଳି ବେଉଳି ତୁମୋ ଓ ସଜନୀ 'ମା କହ ଗୁଟେ କଥାନି' 'ରଖମା ପଲସା ଗୁଛା 'ସଂବଲପୁରୀ ରସ କବିତା' ଆଦି ଲେଖି ଏହି ପ୍ରକାର କବିତା ରଚନାକୁ ବିଶେଷ ଲୋକ ପ୍ରିୟ କରାଇ ପାରିଲେ। ତାଂକ ନାଁ ଥିଲା ଶଶିଭୂଷଣ ମିଶ୍ର ଡାକ ନାଁ ଥିଲା ବୁଢ଼ା ମାଷ୍ଟ୍ରେ। ସତ୍ୟନାରାୟଣଂକର ତୁଳନାରେ ସେ ବହୁତ ପାଠ ପଢ଼ିଥିଲେ ଓ ତାଂକଠାରୁ ବୟସରେ ବଡ଼ଥିଲେ। ବରଗଡ଼ ପାଖ ତାଳଶ୍ରୀଗିଡ଼ା ଗ୍ରାମରେ ୧୮୯୬ରେ ସେ ଜନ୍ମ ଗ୍ରହଣ କରିଥିଲେ। ତାଂକ ବାପା ଥିଲେ ଶିକ୍ଷକ ହରିହର ମିଶ୍ର, ମାଆ ଗୁଂଡିଚା ଦେବୀ। ପାଠଶାଳା ଶିକ୍ଷା ସାରି ଶଶିଭୂଷଣ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାସ୍ କଲେ ୧୯୧୫ରେ। ସେ ଜଣେ ମେଧାବୀ ଛାତ୍ର ଥିଲେ। କଟକ ରେଭେନ୍ସା କଲେଜରୁ ଆଇ.ଏସ.ସି. ପାସ୍ ଓ ପରେ ୧୯୧୯ରେ ବି.ଏ ପାସ୍‌କଲାପରେ ସେ ବରଗଡ଼ର ଇର୍ଜ ହାଇସ୍କୁଲରେ ଶିକ୍ଷକ ଭାବେ ଯୋଗଦେଲେ। କିଛିଦିନ ବରପାଲି ମାଇନର ସ୍କୁଲରେ ଶିକ୍ଷକ ହେଲେ। ନ ହେଲେ

ତାଂକର ସମୁଦାୟ ଶିକ୍ଷକ ଜୀବନ ସେହି ଜର୍ଜ ହାଇସ୍କୁଲରେ କଟିଥିଲା। ବିଷୟଟି ସରଳ ଭାଷାରେ ବୁଝାଇ ଛାତ୍ରମାନଂକୁ ବୋଧଗମ୍ୟ କରିବାରେ ସେ ଜଣେ ଆଦର୍ଶ ଓ ଲୋକପ୍ରିୟ ଶିକ୍ଷକରର ମର୍ଯାଦା ପାଇଲେ। ଗଣିତ ଓ ଭୂଗୋଳ ପଢ଼ାଇବାରେ ତାଂକର ବିଶେଷ ବ୍ୟୁତ୍ପତ୍ତି ଥିଲା। ନିରାଡଂବର ପୋଷାକ ପରିଛଦରେ ସେ ସରଳ ଜୀବନ ଯାପନ କରି ଜଣେ ମିତବ୍ୟୟୀ, ସ୍ୱଚ୍ଛ ଭାଷୀ, କର୍ତବ୍ୟ ସଚେତନ ଆଦର୍ଶ ନାଗରିକ ଭାବରେ ଛାତ୍ର ମାନଂକୁ ପ୍ରଭାବିତ କରିବା ସହିତ ଗୁରୁଜନମାନଂକର ପ୍ରଶଂସା ଅର୍ଜନ କରୁଥିଲେ। ସଂବଲପୁରୀ ଭାଷା ସହିତ ଓଡ଼ିଆ ଓ ଇଂରେଜୀରେ ମଧ୍ୟ ସେ କେତେଖଂଡ ପୁସ୍ତକ ରଚନା କରିଥିଲେ। ସେଗୁଡ଼ିକ ହେଲା ପଦ୍ୟରେ ଗାଂଧୀ ଗୀତା, ସଂକ୍ଷିପ୍ତ ମହାଭାରତ କଥା, ଆଗର ଓଡ଼ିଶା ଓ କାଲିର ଓଡ଼ିଶା। ଗୋଇଂଦା ଉପନ୍ୟାସ ଅଦ୍‌ଭୁତ ହତ୍ୟାକାରୀ ଓ ଛଦ୍ମବେଶର ରହସ୍ୟ ଭେଦ। ଓମର ଖେୟାମଂକର ରୁବାୟତଗୁଡ଼ିକର ଅନୁବାଦ ପ୍ରୀତିପାତ୍ର ଓ ବିଖ୍ୟାତ କେତେଜଣ ଇଂରେଜୀ କବିଂକର ରଚନାର ଅନୁବାଦ ତାଂକ ଅନୁବାଦ ମଧ୍ୟରେ ଦେଖିବାକୁ ମିଳେ। ଯୁବକ ଯୁବତୀ, ବାସୁଦେବ, ଶ୍ରୀକୃଷ୍ଣ ତରଂଗିଣୀ, ଯମ ପୁରୀର ସପନ, ନୀତି ପୁଷ୍ପହାର ଓ ମହାଯାତ୍ରା ସପ୍ତକ କବିତାଗୁଛ ତାଂକର ଅନ୍ୟାନ୍ୟ କବିତା ସଂକଳନ । ଭର୍ତୃହରି ନୀତିଶତକର ସେ ଓଡ଼ିଆରେ ଅନୁବାଦ କରିଥିଲେ। ତୁଳସୀ ରାମୟଣର ଓଡ଼ିଆ ଅନୁବାଦ ମଧ୍ୟ ସେ ଆରଂଭ କରିଥିଲେ। ଉତ୍କଳମଣି ଗୋପବଂଧୁଂକର ଆତ୍ମକଥା ଓ ଗଂଗାଧରଂକର କାବ୍ୟ ତପସ୍ୱିନୀ ଓ କେତେକ କବିତାର ସେ ଇଂରାଜୀ ଅନୁବାଦ କରିଅଛଂତି। ଇଂରାଜୀରେ ମଧ୍ୟ ସେ ଅନେକ ପ୍ରବଂଧ ଲେଖି ପ୍ରକାଶ କରିଥିଲେ। ତାଂକର ସମଗ୍ର ଜୀବନ ସାହିତ୍ୟରେ ଉତ୍ସର୍ଗୀକୃତ ଥାଇ ମଧ୍ୟ ସେ ଯଥୋଚିତ ମର୍ଯାଦା ଓ ଲୋକପ୍ରିୟତା ଲାଭ କରିପାରିନଥିଲେ। ଜୀବନର ଶେଷ ଆଡ଼କୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଂକୁ ୧୯୭୪ରେ ମାନପତ୍ର ପ୍ରଦାନ କରିଥିଲେ। ପ୍ରଜାତଂତ୍ର ପ୍ରଚାର ସମିତି ଦ୍ୱାରା ସେ ସମ୍ମାନିତ ହୋଇ ମାନପତ୍ର ପାଇଥିଲେ। ଶିକ୍ଷା ବିଭାଗ ତାଂକୁ ଆଦର୍ଶ ଶିକ୍ଷକ ଭାବରେ ପୁରସ୍କାର ପ୍ରଦାନ କରିଥିଲେ। ଅସଂଖ୍ୟ ଛାତ୍ରଂକୁ ଶୋକସାଗରରେ ଭସାଇ ଦେଇ ଶଶିଭୂଷଣ ଅଶୀବର୍ଷ ବୟସରେ ବରଗଡ଼ରେ ୧୯୭୬ରେ ପ୍ରାଣତ୍ୟାଗ କଲେ।

ଶଶିଭୂଷଣ ସଂବଲପୁରୀ କଥିତଭାଷା ବ୍ୟତୀତ ଅନେକ କାବ୍ୟମଧ୍ୟ ରଚନା କରି ଲୋକପ୍ରିୟତା ଅର୍ଜନ କରିଥିଲେ। ଏହା ଅତୀବ ଆନଂଦ ଓ ଗୌରବ ବିଷୟ ଯେ ତାଂକର ଜଣେ କୃତୀଛାତ୍ର ଶ୍ରୀ ପ୍ରସନ୍ନ କୁମାର ଦାସ ଅବରସପ୍ରାପ୍ତ ହାଇସ୍କୁଲ ପ୍ରଧାନ ଶିକ୍ଷକ କବିଂକ ରଚନା 'ପ୍ରୀତିପାତ୍ର', 'ପୁନରାଗଛ ସିଦ୍ଧାର୍ଥ', ରସ କବିତା, କାବ୍ୟ କବିତା ସଂକଳନ ୨୦୦୦ରୁ ୨୦୦୨ ମଧ୍ୟରେ ନିଜ ବ୍ୟୟରେ ପ୍ରକାଶିତ କରାଇ ଏହାକୁ ଲୋକପ୍ରିୟ କରାଇ ପାରିଛଂତି। ଏହା ବ୍ୟତୀତ ସ୍ୱଭାବ କବି ଗଂଗାଧରଂକର ୬ଗୋଟି କବିତା ଭକ୍ତି,

ଖଦ୍ୟୋତର ଖେଦ, ବିଶ୍ୱ ମଧୁମୟ, ଅମୂଲ୍ୟ ମାୟା, ଜ୍ୟେଷ୍ଠ ଜାତିର ଅପକର୍ମର ପରିଣାମ ଓ ମହିମାର ଇଂରେଜୀ ଅନୁବାଦ 'ଗ୍ଲିନିଂସ୍ ଫ୍ରମ୍ ଗଂଗାଧର' ନାମରେ ତାଂକର ଜ୍ୟେଷ୍ଠପୁତ୍ର ଦୁର୍ଗା ପ୍ରସାଦ ମିଶ୍ର ପ୍ରକାଶ କରିଅଛଂତି। ପୁନରାଗଚ୍ଛ ସିଦ୍ଧାର୍ଥ ପୁସ୍ତିକାରେ ୨୦ଟି ସ୍ତବ ସ୍ମୃତି ଜଣାଣ ୧୦ଟି ଦେଶାତ୍ମବୋଧ କବିତା ୩୫ଟି ବିବିଧ କବିତା ୧୭ଟି ଅନୁବାଦିତ କବିତା ଜୟଂତୀ ଓ ଶ୍ରାଦ୍ଧ ଉପଲକ୍ଷେ ରଚିତ ୨୨ଟି କବିତା ତୁଳସୀ ମହିମା ଓ ମହାଭାରତ କଥା ସ୍ଥାନିତ ହୋଇଅଛି। ତଥାପି ଅନୁବାଦିତ ଇଂରେଜୀରେ ଗୋପବଂଧୁଂକର ବଂଦୀର ଆତ୍ମକଥା, ତପସ୍ୱିନୀ, 'ସଲିଲକି ଅଫ୍ ଏ ପ୍ରିଜ୍‌ନର୍', 'ଦି ବେନିସ୍‌ଡି ସର୍‌ଭାଇଭାଲ୍ ଅଫ୍ ସୁଇସାଇଡ୍, ଆଇଡିଏଲ୍ ଏଜୁକେସନ, ଗାଂଧି ଏଂଡ୍ ସୁପର୍‌ମେନ୍, ମହାତ୍ମା ଗାଂଧି ଏଂଡ୍ ରାମରାଜ୍ୟ' ଅପ୍ରକାଶିତ। ସାହିତ୍ୟ ଓଡ଼ିଆରେ ଅସଲ ରାମାୟଣ, ଯୁବକ ଯୁବତୀ, ବାସୁଦେବ ଶ୍ରୀକୃଷ୍ଣ, ତରଂଗିଣୀ, ମହାଯାତ୍ରା ସପ୍ତକ, କବିତା ଗୁଚ୍ଛ, ଏକଶତ କ୍ଷୁଦ୍ର କବିତା ଭଳି ପ୍ରାୟ ଆଉ କୋଡ଼ିଏ ଖଂଡ ରଚନା ପ୍ରକାଶନର ଅପେକ୍ଷାରେ। ଗଣିତ ଶାସ୍ତ୍ରରେ ପାଂଡିତ୍ୟ, ସାହିତ୍ୟରେ ଗବେଷଣା ସହିତ ଶିକ୍ଷାଦାନରେ ଅଦ୍ୱିତୀୟ ଶଶିଭୂଷଣଂକ ଜୀବନ ସରଳ ନିରାଡଂବର ଓ କର୍ମ ସଚେତନ ଥିଲା। ଶୃଂଖଳା ଓ ସମୟାନୁବର୍ତ୍ତୀତାରେ ସେ ଆଦର୍ଶ ଥିଲେ। ଓଡ଼ିଶାର ଅସଂଖ୍ୟ ପ୍ରତିଷ୍ଠିତ ପ୍ରତିଭାଧରମାନଂକର ସେ ଶ୍ରଦ୍ଧା ସମ୍ମାନ ଲାଭରେ ସମର୍ଥ ହୋଇଥିଲେ ମଧ୍ୟ ଜୀବଦଶାରେ ରାଜ୍ୟ ମଧ୍ୟରେ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିପାରି ନଥିଲେ। କୃତୀ ଶିକ୍ଷକ ଭାବରେ ରାଜ୍ୟପାଳଂକର ପୁରସ୍କାର ଓ ରାଜ୍ୟ ସାହିତ୍ୟ ଏକାଡ଼େମୀର ପୁରସ୍କାର ତାଂକର ପ୍ରତିଭାର ସ୍ୱୀକୃତି ପାଇଁ ଯଥେଷ୍ଟ ନଥିଲା।



ମହାନଦୀର ପୋଲ୍‌ରେ, ମହାନଦୀର ପୋଲ୍
ଖରାମାସେ ବସେଇଥିସନ୍ ଯାର ତଲେ ଢୋଲ୍‌ରେ
ବଡ଼ ବଡ଼ ଲୁହାର ଢୋଲ୍।
ତାର ଉପ୍ରେଁ ରାମପାଦ ବଡ଼ ବଡ଼ ପଥର ଖାଲି
ବର୍ଷାମାସେଁ ଯେନ୍ନେ ଦେଖ୍‌ମ ରାମେଶର ଧଆଁଲି।
ତାର ଉପରକେ ହୀରାକୁଦ ମଗର୍ ଅସୁମାର୍
ଠିକ୍ ସେଠାନେ ଦେଖ୍‌ବ ମହାନଦୀ ଦୁଇଧାର୍।
ଠିକ୍ ସେଠାନେ ଭାଇରେ ଠିକ୍ ସେଠାନେ ଭାଇ
ବଡ଼େ ଜବର୍ ଧାଡ଼ି ବାଁଧିବେ ଦେଖାଶୁନା ନାଇଁରେ
ଠିକ୍ ସେଠାନେ ଭାଇ।

ରସ କବିତା–ଶଶିଭୂଷଣ ମିଶ୍ର (ବୁଢ଼ାମାଷ୍ଟ୍ରେ)



# କୃଷକ ବଂଧୁ
# ମଦନମୋହନ ପ୍ରଧାନ

୧୯୫୪ ମସିହା । ସଂବଲପୁର ସହରରେ ଲେଡି ଲୁଇସ ଉଚ୍ଚ ବାଳିକା ବିଦ୍ୟାଳୟ ପଛପଟେ କୋଲାବିରା ବଂଗଳା । କୋଲାବିରା ସଂବଲପୁରର ଏକ ବଡ଼ ଜମିଦାରି ଥିଲା । ଶେଷ ରାଜା ନୃପଲାଲ ସିଂହ ଓଡ଼ିଶା ବିଧାନ ସଭାରେ ସଂବଲପୁର ସଦର ନିର୍ବାଚନ ମଂଡଳୀକୁ ୧୯୩୭ ରୁ ୧୯୪୬ ପର୍ଯଂତ ପ୍ରତିନିଧିତ୍ୱ କରୁଥିଲେ । ଏକ ଶୀତୁଆ ଅକ୍ଟୋବର ରବିବାର ସକାଳେ କେତେକ ଯୁବକ କର୍ମଚାରୀ ଏହି ବଂଗଳା ବାରଂଡାରେ ସରକାରୀ ଅଫିସ ମାନଂକରେ ଦୁର୍ନୀତି ପ୍ରବେଶର ସମୀକ୍ଷା କରୁଥିଲେ । ଦେଶ ସ୍ୱାଧୀନ ହୋଇଛି ମାତ୍ର ଦୁର୍ନୀତି ଲୋପ ହେଲା ନାହିଁ । ଅଛିଂଡା ଆଲୋଚନାରେ ଭାଗନେଇ ଘର ଭିତରେ ଖଟିଆରେ ଶୋଇଥିବା ଜଣେ ବୃଦ୍ଧ ଶୁଣାଇଲେ ''ଆହେ ବାବୁ, ଦୁର୍ନୀତି ସବୁବେଳେ ଥିଲା ଓ ରହିବ । ଭୀଷ୍ମ ରାଜନୀତି ମହାଭାରତର ଶାଂତି ପର୍ବରେ ଦେଖିବ । ମାଛ ପାଣିରେ ଅଛି ପାଣି ପିଉଛି କି ନା ଯେପରି କେହି କହି ପାରିବ ନାହିଁ ସେମିତି ସରକାରୀ କ୍ଷମତା ବ୍ୟବହାର କରି କର୍ମଚାରୀ ଦୁର୍ନୀତି କରୁଛିକି ନାହିଁ ତାହା କେହି କହି ପାରିବ ନାହିଁ । ଇଂରେଜ ଯୁଗରେ ଥିଲା । ଆମେ କେହି ଛାତିରେ ହାତ ଦେଇ କହି ପାରିବୁ ନାହିଁ ଆମେ ଲାଂଚମିଛ କେଉଁଥିରେ ପଶିନାହୁଁ ବୋଲି । ଆମେ ଧରା ପଡୁ ନଥିଲୁ । ତମେ ସବୁ ଧରାପଡୁଛ ।

ଲୋକମାନଂକର ସଂଦେହ ଘେରକୁ ଆସୁଛ। ଚର୍ଚାର ବିଷୟ ହେଉଛି'' ସମସ୍ତେ ତାଜୁବ ହୋଇ ତାଂକ ଆଡକୁ ଅନେଇଲେ। ବୃଦ୍ଧ ପକ୍ଷାଘାତଗ୍ରସ୍ତ ଚଳତ ଶକ୍ତି ରହିତ ମାତ୍ର ମାନସିକ ସ୍ୱଛତା ଅକ୍ଷୁର୍ଣ। ସେ ହେଉଛଂତି ରାୟ ସାହେବ ମଦନମୋହନ ପ୍ରଧାନ। ଓଡ଼ିଶାରେ କୃଷି ବିଜ୍ଞାନ ଉପରେ ପ୍ରଥମ ଓଡ଼ିଆରେ ବହି ଲେଖିବା ଉଦ୍ୟମ ସେ କରିଥିଲେ। କୃଷି ବିଭାଗ ସେତେବେଳେ ଅଲଗା ହୋଇ ନଥାଏ। ନିର୍ଦ୍ଦେଶାଳୟ ଗୋଟିଏ ମାତ୍ର ଥିଲା। ଏହା ଉନ୍ନୟନ ବିଭାଗର ଅଂତର୍ଗତ। ଜଣେ ଡାଇରେକ୍‌ଟର ଜଣେ ଡେପୁଟି ଡାଇରେକ୍‌ଟର ଓ ଜଣେ ସହକାରୀ ଡାଇରେକ୍‌ଟର ଘେନି ନିର୍ଦ୍ଦେଶାଳୟ କୃଷି ଓ ଖାଦ୍ୟ ଉତ୍ପାଦନ ବିଷୟରେ ରାଜ୍ୟ ତମାମ ନିର୍ଦ୍ଦେଶ ଦେଇଥିଲେ। ମଦନମୋହନ କୃଷି ବିଭାଗର ଅବସରପ୍ରାପ୍ତ ସହକାରୀ ଡିରେକ୍‌ଟର। ନିଜ ଦକ୍ଷତା ଓ ସାଧୁତା ନିମିତ୍ତ ତାଂକୁ ସରକାର ରାୟସାହେବ ଉପାଧିରେ ସମ୍ମାନିତ କରିଥିଲେ। ତାଂକ କଥାକୁ ଅବିଶ୍ୱାସ କରିବା କାହାର ଲୁ ନଥିଲା। ମାତ୍ର ସମସ୍ତଂକୁ ଆଶ୍ଚର୍ଯାନ୍ୱିତ ଦେଖି ସେ କହିଲେ'' ଶୁଣ ମୁଁ କଟକ ବିଦ୍ୟାଧରପୁର ଫାରମରେ ୧୯୩୨ ଆଗରୁ କୃଷି ଓଭରସିଅର୍ ଥିଲି। ମୋଟ ପଂଦର ବରଷରୁ ବେଶି ସେଇ ଫାର୍ମରେ ଥିଲି। ସେହି କୃଷି ଫାର୍ମ ଭାରତ ସରକାରଂକୁ ହସ୍ତାଂତର କରାଯିବା ଫଳରେ ସେଠାରେ ବର୍ତମାନ କେଂଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ହୋଇଛି। ମୋର ଦରମା ପଂଚସ୍ତରି ଟଂକାରୁ ବେଶି ନଥାଏ ।ପିଲାମାନେ ୪/୫ ଜଣ ପଢୁଥାଂତି। ସହରଠାରୁ ବିଦ୍ୟାଧରପୁର ୧୦-୧୨ କିଲୋ ମିଟର ଦୂର। ସବୁ ଜିନିଷ ଏତେ ଦୂରରୁଆସେ। ଆମର କୁଟୁଂବ ଚଳେଇ ସବୁ ସାମାଜିକ ଚଳଣି ମଧ୍ୟରେ ଥାଇ ଆମେ ସାଧୁତାର ମାପକାଠିରେ ଉଚ୍ଚ ସ୍ତରରେ ଥିଲୁ। ସରକାରୀ ନିର୍ଧାରିତ ଏକର ଜମିରେ ଧାନଚାଷ ହୁଏ। ତାଠାରୁ ଦୁଇ ଏକର ଅଧିକା ପଡ଼ିଆ ଜମି ଉଠିଆ ହେଲେ କିଛି ଯାଏ ଆସେ ନାହିଁ। ସେମିତି ରବିଫସଲ ହୁଏ। ଏକରେ ଅଧିକା ହେଲେ କିଛି ଫରକ ନଥାଏ। ଯାଂତ୍ରିକ କୃଷି ନଥାଏ। ବଳଦ ସବୁ କାମ କରଂତି। ତାଂକ ସାଂଗରେ ଦୁହାଁଳିଆ ଜାତିଆ ଗାଈ ପଟେ ଦି ପଟ ଚରେଇଲେ କ'ଣ କ୍ଷତି ? ମୋର ଧାନ, ମୁଗ, ଦୁଧ, ଘିଅ ଏଇଥିରୁ ବରଷକର ଉଠିଯାଏ। ଯେଉଁ ହଳିଆ କାମ କରଂତି ତାଂକୁ ମୋର ବିଲ କାମପାଇଁ ମୁଁ ଅଧିକ କିଛି ପାରିଶ୍ରମିକ ଦେଲେ ସେମାନେ ଖୁସିରେ କାମ କରଂତି। ସରକାର ବାର୍ଷିକ ଉତ୍ପାଦନ ଲକ୍ଷ୍ୟ ଧାର୍ଯ କରିଥାଂତି। ପ୍ରତିବର୍ଷ ତା ଅପେକ୍ଷା ଅଂତତଃ ଶତକଡ଼ା ଦଶଭାଗ ଅଧିକା ଆୟ ମୁଁ ଦେଖାଇବା ଫଳରେ ଡେପୁଟି ଡାଇରେକ୍‌ଟର ମହାଖୁସି। କାହା ଜିଭରେ ହାଡ଼ ଅଛି ସେ କହିବ, ମୋର ଉପୁରି ଆୟ ଅଛି। ଫାର୍ମକୁ ଥରେ ଗଲେ ଅତି କମ୍‌ରେ ପାଂଚବରଷ ରହିବାକୁ ପଡ଼େ। କାମ ଭଲ ଦେଖିଲେ ସରକାର ଆଉରି ବେଶି ଦିନ ରଖଂତି। ତେଣୁ ନିଜେ ଉଠିଆ କରିଥିବା ବିଲରେ ଫସଲ ଅମଳ କରିବା ଆଗରୁ ବଦଳି ହେବାର ଡର ନଥାଏ। ଏବେ ତମର ସ୍ଥାନିତ ଚାକିରିର ନିର୍ଧାରିତ ସମୟ ନାହିଁ। ତମେ ଅମଳ ଯାଏ ରହିବାର ଆଶା ନ ଦେଖି ବିହନରୁ ଖାଇଲ। ସରକାର ଖପ୍ପା। ତମେ ବେଇଜତ୍। ଫାର୍ମରେ କ୍ଷତି ଫି ବରଷ ବଢ଼ି ଚାଲିଲା।''

ସବୁଶୁଣି କାହାର କିଛି ପାଟି ଫିଟାଇବାର ନଥିଲା। ନିରବରେ ସେମାନେ ଘରକୁ ଫେରିଲେ। କୃଷିଜୀବୀ ପରିବାରରେ ଜନ୍ମିତ ମଦନମୋହନଂକର ଘର ଗୋଡ଼ଭଗା ନିକଟ ଅଂତେପଲି ଗ୍ରାମରେ। କମଗାଁ ମାଇନର ସ୍କୁଲ ଜିଲ୍ଲାର ଖୁବ୍ ପୁରୁଣା ଅନୁଷ୍ଠାନ ମଧ୍ୟରୁ ଗୋଟିଏ। ସେଠାରୁ ସେ ବୃତ୍ତିପାଇ ସଂବଲପୁର ଜିଲ୍ଲା ସ୍କୁଲରେ ପଢ଼ିଲେ। ମାଟ୍ରିକ୍ ପାସ୍ କରି ସରକାରୀ ଚାକିରି ୧୯୧୩ ଫେବ୍ରୁଆରିରେ କୃଷି ବିଭାଗରେ ଆରଂଭ କଲେ। କାର୍ଯକାଳ ମଧ୍ୟରେ ନିଜର କର୍ତବ୍ୟ ନିଷ୍ଠା, ବୃତ୍ତିଗତ ଦକ୍ଷତା ଓ ଅମାୟିକ ବ୍ୟବହାର ନିମିତ୍ତ ସେ ସର୍ବଜନପ୍ରିୟ ଥିଲେ। କୃଷି ବିଭାଗର କର୍ମୀମାନେ ଓ ପ୍ରଗତିଶୀଳ କୃଷକମାନେ ପାରଂପରିକ କୃଷିରୁ ପାଦେ ଆଗକୁ କି ପଛକୁ ଯିବାକୁ ପ୍ରସ୍ତୁତ ନଥିଲେ। ନୂଆ ଧରଣର ଫସଲ ଚାଷ କରିବାକୁ ପଛାଉଥିଲେ। ସେମାନଂକୁ ଜ୍ଞାନ ଦେବାକୁ ନୂତନ ମାର୍ଗରେ ଉତ୍ସାହିତ କରିବାକୁ କୌଣସି ପୁସ୍ତକ ନଥିଲା। ୧୯୨୦ରେ ମଦନମୋହନ ବହୁ ସମୟ ଓ ଶ୍ରମ ବ୍ୟୟରେ 'କୃଷକ ବଂଧୁ' ନାମରେ ଏକ ପୁସ୍ତକ ରଚନା କଲେ। ଏହାକୁ ଏଚ୍.ଆର.ସେଠି, (ଭାରତୀୟ କୃଷି ସେବା) କୃଷି ଡାଇରେକ୍ଟର ଓ ଡକ୍ଟର ବାଦାମି ଅଶେଷ ପ୍ରଶଂସା କରି ମୁଖବଂଧରେ ମଦନମୋହନଂକର ଗୁଣ ବର୍ଣନାକଲେ। କୃଷି ସଂକ୍ରାଂତରେ ଓଡ଼ିଶାରେ ପ୍ରଚଳିତ ବୋଲି ଓ ଡାକ ଋଷିଂକର ପାଣିପାଗ ପ୍ରବଚନ ସଂଗ୍ରହ କରାଯାଇ ଏଥିରେ ଦିଆଯାଇଥିଲା। ଓଡ଼ିଶାରେ କୃଷି ମହାବିଦ୍ୟାଳୟ ହେବା ପର୍ଯଂତ ଏ ପୁସ୍ତକଟି ସର୍ବଜନ ଆଦୃତ ଥିଲା। ପରେ ଅନ୍ୟ ଲେଖକ ମାନେ ନୂତନ ତଥ୍ୟଯୁକ୍ତ ପୁସ୍ତକ ପ୍ରକାଶ କଲାପରେ ତାଂକ ପୁସ୍ତକର ଉପାଦେୟତା ହ୍ରାସ ପାଇଲା। ମାତ୍ର ତଥାପି ପୁସ୍ତିକାଟିର ଉପାଦେୟତା ସର୍ବଜନ ସ୍ୱୀକୃତ। ଡାକବଚନ ସଂଗ୍ରହ କରି ସେ ଚାଷୀମାନଂକୁ ସେମାନଂକର ଦାୟିତ୍ୱ ସୂଚେଇ ଦେଇଥିଲେ। ଗୋଟିଏ ଦୁଇଟି ଡାକବଚନ ଏହିପରି। ଚାଷୀର କେତେ ପାଣି ଦରକାର ଧାନ ଫସଲ ପାଇଁ।

'ଆଠ ଦୁମୁକାଣି ଷୋଳ ଅସରା
ବତିଶ ଫରିଫିରି ଚଉଷଠି କୁଂଡାଝରା
ତେବେ ଯାଇ ଚାଷୀର ପେଟ ହୁଏ ପୂରା।'

ବେଶି ଗୁଡ଼ାଏ ଜମି ନ ଚଷି, ଅଳ୍ପ ଜମି ଭଲ ଚାଷ କରିବା ଉପଦେଶ-

ଛାଡ଼ିବୁ ଚଉଦ ଧରିବୁ ଚାରି। କମାଣ କରିବୁ ଚାଷ କିଆରି
ବୁଣ ଖରଡି ପକା ଖତ। ହିଡ଼ ଖଂଡରେ ନଦେବୁ ହାତ
ଦୀର୍ଘରେ ହାତେ ପ୍ରତିରେ ହାତେ। ହିଡ଼ ବାଂଧିବୁ ଘାସ ସହିତେ
ପର୍ବତ ଶିଖରେ ବୁଣିବୁ ଧାନ। ନହେଲେ କାଟିବୁ ଡାକର କାନ

ପୁଣି ଆପେ ଚଷିବୁ ପୂରା ଚାଷ । ଛଡା ଢୋଡା ଅଧାଚାଷ
ମୂଲିଆ ଚାଷ ଫସର ଫାସ ।

ବର୍ତ୍ତମାନ ମଧ୍ୟ ଏହା ଉପାଦେୟ

ମଦନ ମୋହନ ୧୯୩୭ ପର୍ଯ୍ୟନ୍ତ ଅଣଗେଜେଟେଡ଼ ଚାକିରିରେ ଥାଇ ସରକାରୀ ଫାର୍ମ ମାନଂକରେ କାର୍ଯକରି ନିଜ ଦକ୍ଷତା ପ୍ରତିପାଦନ କରିଥିଲେ। ୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ପରେ ସେ ଜୁନିଅର ମାର୍କେଟିଂ ଅଫିସର ଭାବେ ପ୍ରମୋସନ ପାଇଲେ। ଛଅ ବର୍ଷ ପରେ ଏହି ପଦବିକୁ ଉଚ୍ଚତର ମର୍ଯାଦା ଦିଆଗଲା ଓ ସେ କୃଷି ବିଭାଗର ସହକାରୀ ନିର୍ଦ୍ଦେଶକ ହେଲେ। ପରେ ତାଂକୁ ଯୁଦ୍ଧୋତ୍ତର କାଳରେ ଖାଦ୍ୟ ଉତ୍ପାଦନ ସହକାରୀ ନିର୍ଦ୍ଦେଶକ ଭାବେ ନିଯୁକ୍ତି ଦିଆଗଲା। ସେ ଏହି ପଦବୀରୁ ୧୯୪୫ରେ ଅବସର ଗ୍ରହଣ କଲେ ମାତ୍ର ତାଂକର ଅଭିଜ୍ଞତା କାର୍ଯଦକ୍ଷତା ବିଚାର କରି ତାଂକୁ ସଂବଲପୁର ଜିଲ୍ଲାର ଖାଦ୍ୟ ଉତ୍ପାଦନ ଅଧିକାରୀ ଭାବେ ନିଯୁକ୍ତି ମିଳିଲା। ଏହି ସମୟରେ ସରକାର ହୀରାକୁଦ ବଂଧ ନିର୍ମାଣ ଯୋଜନା କାର୍ଯକାରୀ କରିବାକୁ ନିଷ୍ପତ୍ତି ନେଲେ। ପୁରୁଣା ଗାଁ ଗୁଡ଼ିକ ବୁଡ଼ିଗଲେ ଯେଉଁ ନୂତନ ଜନବସତିମାନ ସୃଷ୍ଟି ହେବ ସେଠାରେ ଜମିର ବିଭାଗ ଓ ମୃତ୍ତିକା ପରୀକ୍ଷା କରି କି ପ୍ରକାର ଫସଲ ଚାଷ ହେବ ଏବିଷୟରେ ପରାମର୍ଶ ଦେବାକୁ ତାଂକୁ ହୀରାକୁଦ ବଂଧ ଯୋଜନାର କୃଷି ଅଧିକାରୀ କରାଗଲା।

ଏହାପରେ ନଦୀ ଉପତ୍ୟକା ବିକାଶ ବିଭାଗ ଅଧୀନରେ ତାଂକୁ ସହକାରୀ କୃଷି ଉନ୍ନୟନ ଅଧିକାରୀ ନିଯୁକ୍ତି ଦିଆଗଲା। ସେଠାରେ ମଧ୍ୟ ସେ ନିଜ ଦକ୍ଷତା ପ୍ରତିପାଦନ କଲେ, ଅବଶେଷରେ ୬୦ ବର୍ଷ ବୟସରେ ସେ ୧୯୪୯ ଶେଷରେ ସରକାରୀ ଚାକିରିରୁ ଅବ୍ୟାହତି ନେଲେ। ଅବସର ଗ୍ରହଣ ପରେ ସେ ସଂବଲପୁର ସହରରେ ରହୁଥିଲେ। ବହୁ ଉଚ୍ଚପଦସ୍ଥ କର୍ମଚାରୀ କୃଷିଯୋଜନା ପ୍ରଣୟନ ନିମିତ୍ତ ତାଂକର ପରାମର୍ଶ ଲୋଡ଼ୁଥିଲେ ଓ ଏହା ତାଂକର ଅଭିଜ୍ଞତା ପ୍ରତି ଯଥେଷ୍ଟ ସମ୍ମାନ ଥିଲା। ମଦନ ମୋହନଂକର ୨ ପୁଅ ଫକୀର ଚରଣ ଓ ସାଧୁଚରଣ ଓଡ଼ିଶା ପ୍ରଶାସନିକ ସେବାର ସର୍ବୋଚ୍ଚ ପଦବିରୁ ଅବସର ଗ୍ରହଣ କରିଛଂତି। ତାଂକ କନ୍ୟା ସରସ୍ୱତୀ ପ୍ରଧାନ ଓଡ଼ିଶାରେ ଭଟଲିରୁ ବ୍ୟବସ୍ଥାପିକା ଓ ରାଜ୍ୟର ମଂତ୍ରୀ ଥାଇ ପରବର୍ତ୍ତୀ କାଳରେ ରାଜ୍ୟ ସଭାର ସାଂସଦ ହୋଇଥିଲେ। ବହୁ କୃଷିବିତ୍ ଆମ ରାଜ୍ୟରେ ସୃଷ୍ଟି ହୋଇଥିଲେ ମଧ୍ୟ ମଦନମୋହନଂକ ପରି କେହି ଗାଁର ସାଧାରଣ ଚାଷୀମାନଂକୁ ପ୍ରଭାବିତ କରିବାରେ ସକ୍ଷମ କରିପାରିନାହାଂତି ଓ ସେହି ଦୃଷ୍ଟିରୁ କୃଷିବିତ୍ ରାୟସାହେବ ମଦନମୋହନ ସ୍ମରଣୀୟ।





# ଓଡ଼ିଶାରେ ପ୍ରଥମ ବୟନକଳା ବିଶେଷଜ୍ଞ

# ଗଣେଶ ପ୍ରସାଦ ପୂଜାରୀ

ଓଡ଼ିଶାର ପ୍ରଥମ ବୟନଶିଳ୍ପ ବିଶେଷଜ୍ଞ ଭାବରେ ଗଣେଶ ପ୍ରସାଦ ପୂଜାରୀ ଏକଦା ପ୍ରଦେଶରେ ସୁପରିଚିତ ଥିଲେ। ୧୮୯୫ରେ ସେ ସଂବଲପୁର ସହରରେ ଜନ୍ମ ଗ୍ରହଣ କରିଥିଲେ। ବୟନ ଶିଳ୍ପ ବିଷୟରେ ବିଶେଷ ଯୋଗ୍ୟତା ଅର୍ଜନ କରି ସେ ୧୯୧୯ରେ ବିହାର ଓଡ଼ିଶା ସରକାର ଅଧିନରେ ଚାକିରି ଜୀବନ ଆରଂଭ କଲେ। ଓଡ଼ିଶା ପ୍ରଦେଶ ଗଠନ ପରେ ତାଂକୁ ୧୯୩୮ରେ ବୟନ ଶିଳ୍ପ ବିଶେଷଜ୍ଞ ଭାବରେ ନିଯୁକ୍ତି ଦିଆଗଲା। ସେ କଟକରେ ଅବସ୍ଥାପିତ ହେଲେ। ୧୯୪୭ରେ ଏହି ପଦବୀର ନାମ ସହକାରୀ ବୟନଶିଳ୍ପ ନିର୍ଦ୍ଦେଶକ ଭାବରେ ପରିବର୍ତ୍ତିତ କରାଗଲା। ଏହି ସମୟରେ ସେ ରାଜ୍ୟର ଉନ୍ନୟନ ନିର୍ଦ୍ଦେଶକ ଓ କଳକାରଖାନାର ମୁଖ୍ୟ ପରିଦର୍ଶକ ପଦରେ ଅସ୍ଥାୟୀଭାବେ କାର୍ଯ କରିଥିଲେ, ସେ ୧୯୫୦ରେ କାର୍ଯରୁ ଅବସର ଗ୍ରହଣ କଲେ। ଅବସର ଗ୍ରହଣ ପରେ ସେ ସଂବଲପୁର ସହର ବାଲିବଂଧାଠାରେ ନିଜ ବାସଭବନରେ୧୯୫୮ରେ ପ୍ରାଣତ୍ୟାଗ କଲେ। ସଂବଲପୁରର ପାରଂପରିକ ବୟନଶିଳ୍ପକୁ ବୃହତ୍ତର ଓଡ଼ିଶା ଓ ସମଗ୍ର ଭାରତବର୍ଷରେ ଲୋକପ୍ରିୟ କରିବାରେ ପ୍ରଥମେ ତାଂକର ଉଦ୍ୟମ ସ୍ମରଣୀୟ।

❑ ❑ ❑



# ଇତିହାସ ଅଧ୍ୟାପକ
# ଘନଶ୍ୟାମ ଦାସ

୧୯୪୬ରେ ସମଗ୍ର ସଂବଲପୁର ଜିଲ୍ଲାରେ ବୁଡ଼ି ଅଂଚଳକୁ କେନ୍ଦ୍ରକରି ସରକାରଂକ ବିରୋଧରେ ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ଉଗ୍ରଭାବରେ ତେଜି ଉଠିଲା । ଏହାର ମୁକାବିଲା କରିବାକୁ ସରକାର ଅନ୍ୟ ଜିଲ୍ଲାମାନଂକରେ କାର୍ଯକରୁଥିବା ସଂବଲପୁରର ଉଚ୍ଚ ରାଜକର୍ମଚାରୀମାନଂକୁ ସଂବଲପୁର ବଦଳି କଲେ । ସଂବଲପୁର ଜିଲ୍ଲାର ଏକମାତ୍ର ସଂବଲପୁର କଲେଜ ସେତେବେଳକୁ ସ୍ୱଭାବ କବି ଗଂଗାଧର ମେହେରଂକ ନାମରେ ନାମିତ ହୋଇ ନଥାଏ । ପ୍ରଥମେ ଅଧ୍ୟାପକ ଘନଶ୍ୟାମ ଦାସ ଓ ତାଂକ ପରେ ପରଶୁରାମ ମିଶ୍ର କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଲେ । ଅଧ୍ୟାପକ ଘନଶ୍ୟାମ ବହୁଦିନ ଧରି କଟକର ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ ଥିଲେ । ତାଂକ ପିଲାମାନେ ସେତେବେଳକୁ ଉଚ୍ଚଶିକ୍ଷା ପ୍ରାୟ ସମାପ୍ତ କରିସାରିଥିଲେ । ତାଂକର କୌଣସି ସହରରେ ବାସଗୃହ ନଥିଲା । ଶ୍ରୀମତୀ ଦାସ ତତ୍‌କାଳୀନ ଡେପୁଟି କମିଶନର ରାୟବାହାଦୁର ଦୁର୍ଗାଚରଣ ଦାସଂକୁ ସହରରେ ତାଂକୁ ଲିଜସୂତ୍ରେ ଦିଆଯାଇଥିବା ସରକାରୀ ନଜୁଲ ଘରଡ଼ିହ ଚିହ୍ନଟ କରିଦେବାକୁ ଅନୁରୋଧ କଲେ । ଏହି ସଂପର୍କରେ ପୁରୁଣା ନଥିପତ୍ର ଜିଲ୍ଲା ଅଫିସର

ମହାଫିଜଖାନା (ରେକର୍ଡରୁମ)ରୁ ଖୋଜାଗଲା। ସେଥିରୁ ଜଣାଗଲା ଯେ ୧୯୨୭ରେ ଅଧ୍ୟାପକ ଘନଶ୍ୟାମ ଲଂଡନ ବିଶ୍ୱବିଦ୍ୟାଳୟରୁ ବି.ଏ. ଡିଗ୍ରି ହାସଲ କରି ରେଭେନ୍‌ସା କଲେଜରେ ଯୋଗଦାନ କଲେ। ସଂବଲପୁରର ପ୍ରଥମ ଓଡ଼ିଆ ଡେପୁଟି କମିସନର୍ ରାୟବାହାଦୁର ରାଧାଚରଣ ଦାସ ତାଂକୁ ଅଭିନଂଦନ ଜଣାଇ ଏକ ପତ୍ର ଲେଖିଲେ। ସେତେବେଳେ ସଂବଲପୁର ଏକ ଛୋଟିଆ ସହର ଥିଲା। ଜନବସତି ଅତି ଅଳ୍ପ ଜାଗାରେ ସୀମିତ ଥାଇ ପରିମଳ ଆଦି ନାନା ସମସ୍ୟା ସୃଷ୍ଟି କରୁଥିଲା। ଏହା ଦୂର କରିବାକୁ ସହରର ପୂର୍ବଦିଗରେ ଏକଦା ଝରଣା ଓ ଅରଣ୍ୟଥିବା ବୁଦ୍ଧସହିଲ ଅଂଚଳରେ ଏକ ନୂତନ ଜନ ବସତି ବସାଇବାକୁ ସରକାର ପରିକଳ୍ପନା କଲେ। ସହର ମଧ୍ୟରେ ନଜୁଲ ଜମି ପାଇଁ ଯେଉଁ ଜରସମନ (ମୂଲ୍ୟ) ଓ ମାଲଗୁଜାରି (ଖଜଣା) ଦେବାକୁ ପଡ଼େ ନୂତନ ବସ୍ତି ଅଂଚଳକୁ ଉଠିଯିବାକୁ ଲୋକଂକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଏହା ଅଧାକୁ କମାଇ ଦିଆଗଲା। ଡେପୁଟି କମିଶନର ଅଧ୍ୟାପକଂକୁ ସେ ସଂବଲପୁରର ଜଣେ କୃତୀ ସଂତାନ ଓ ଜନପ୍ରିୟ ଅଧ୍ୟାପକ ଥିବା ହେତୁ ତାଂକୁ ବାସଗୃହ ନିମିତ୍ତ ଅଧଏକର ଜମି ପଟ୍ଟାରେ ଦେବାକୁ ଅନୁରୋଧ କଲେ। ସହରର କେଂଦ୍ର ନଂଦପଡ଼ା ଓ ଝାଡ଼ୁଆପଡ଼ାଠାରୁ ଏହା ସାମାନ୍ୟ ଦୂରଥିବା ଯୋଗୁଁ ଶୀଘ୍ର ବସ୍ତି ଗଢ଼ି ଉଠିବା କଷ୍ଟକର ଥିଲା। ଅଧ୍ୟାପକ ଦାସ ଏଥିରେ କୌଣସି ଆଗ୍ରହ ଦେଖାଇଲେ ନାହିଁ। ଡେପୁଟି କମିସନର୍ ବାରଂବାର ଚିଠି ଲେଖିଲେ। ଶେଷରେ ସେ ବିରକ୍ତ ହୋଇ ନିଜ ଅନିଚ୍ଛା ବ୍ୟକ୍ତ କରି ୨୦/୨୫ ଡିସିମିଲ ଜମି ପଟ୍ଟାନେବାକୁ ସମ୍ମତି ଦେଲେ। ସେହି ଅନୁସାରେ ପଟ୍ଟା ଦିଆଗଲା, ଏଥିରେ ସର୍ତଥିଲା ଜମିରେ ତିନିବର୍ଷ ମଧ୍ୟରେ ଘର ତିଆରି କରିବାକୁ ପଡ଼ିବ ମାତ୍ର ଅଧ୍ୟାପକ ଦୂରରେ ରହୁଥିବାରୁ ଏ ସର୍ତ ପ୍ରତି ଗୁରୁତ୍ୱ ଦିଆଗଲା ନାହିଁ। ନୋଟିସ୍ ପାଇବା ପରେ ସେ ବୁଦ୍ଧସହିଲ ଜମିରେ ଘର ତିଆରି କଲେ। ବର୍ତମାନ ତାଂକ ଉତ୍ତରାଧିକାରୀଂକ ଦଖଲରେ ଥିବା ଏହି ଘର ସୁଂଦର ପରିବେଶ ମଧ୍ୟରେ ଅବସ୍ଥିତ। ଅଧ୍ୟାପକ ଘନଶ୍ୟାମ ଓଡ଼ିଶାରେ ଜଣେ ପୁରାତନ ଗବେଷକ, ଐତିହାସିକ ଓ ଆଧୁନିକ ଇଉରୋପ ପଢ଼ାଇବାରେ ଅବିଭକ୍ତ ଭାରତବର୍ଷରେ ଜଣେ ଉଚ୍ଚକୋଟିର ଶିକ୍ଷକ ଭାବରେ ସୁପରିଚିତ ଥିଲେ।

୧୯୦୨ ଏପ୍ରିଲ ୪ ତାରିଖରେ ସଂବଲପୁର ଜିଲ୍ଲା ରେମଂଡା ଥାନା କଟାପାଲି ଗ୍ରାମରେ ତାଂକର ଜନ୍ମ। ୧୯୨୦ରେ ଜିଲ୍ଲାସ୍କୁଲରୁ ମାଟ୍ରିକ୍ ପାସ୍‌କରି ଜିଲ୍ଲା ବୃତ୍ତିପାଇ ସେ ରେଭେନ୍‌ସା କଲେଜରେ ନାମଲେଖାଇଲେ। ବି.ଏ ପଢ଼ିବା ସମୟରେ ବିଖ୍ୟାତ ଐତିହାସିକ ସାର ଯଦୁନାଥ ସରକାରଂକର ସେ ଅତି ପ୍ରିୟ ଛାତ୍ର ଥିଲେ। ମୋଗଲ ଇତିହାସ ଉପରେ ସାର ଯଦୁନାଥଂକର ଅଗାଧ ପାଂଡିତ୍ୟ ଥିଲା। ମୂଳ ପାରସୀ ଓ ଆରବୀ ଦଲିଲମାନ ସେ

ସଂଗ୍ରହ କରିଥିଲେ, ଏସବୁ ଅନୁଧ୍ୟାନ କରି ସେ ମୋଗଲ ସମ୍ରାଟ ଆଉରଂଗଜେବ୍‌ଙ୍କ ଉପରେ ଛଅଖଂଡ ପ୍ରମାଣାତ୍ମକ ମୌଳିକ ଗ୍ରଂଥ ରଚନା କରି ନିଜ ଅଗାଧ ପାଂଡିତ୍ୟର ପରିଚୟ ଦେଇଥିଲେ। ସାର ଯଦୁନାଥ ଭାରତୀୟ ଶିକ୍ଷା ସେବା ସଦସ୍ୟ ଥିଲେ। ରେଭେନ୍‌ସା କଲେଜରୁ ଯାଇ ସେ ପରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ହେଲେ। ଏହି ସମୟରେ ଲଂଡନରେ ଅଧ୍ୟୟନ ନିମିତ୍ତ ଏକ ରାଜବୃତ୍ତି (ସ୍କଲାର୍‌ସିପ୍) ଦିଆଯିବାର ସୁଯୋଗ ଆସିଲା। ଘନଶ୍ୟାମ ପାଟଣାରେ ଇତିହାସରେ ଏମ.ଏ. ପଢୁଥିବା ସମୟରେ ଏଥିପାଇଁ ପ୍ରାର୍ଥୀ ହେଲେ। ଜଣେ ଓଡ଼ିଆ ଛାତ୍ରଭାବରେ ନିଜର ଯୋଗ୍ୟତା ବ୍ୟତୀତ ତାଂକର ଅନ୍ୟକୌଣସି ପୃଷ୍ଠପୋଷକତାର ଅଭାବ ଥିଲା। ଖ୍ୱାଜା ମହମ୍ମଦ ନୁର କୁଳପତି, ପାଟଣା ହାଇକୋର୍ଟର ଜଷ୍ଟିସ୍ ଅଧ୍ୟକ୍ଷ ଥାଇ ଶିକ୍ଷାନିର୍ଦ୍ଦେଶକ (ଡିପିଆଇ) ଫକସ୍ ସାହେବ, ପାଟଣା କଲେଜର ଅଧ୍ୟାକ୍ଷ ଜ୍ୟାକସନ୍ ସାହେବ, ରେଭେନ୍‌ସା କଲେଜର ଅଧ୍ୟକ୍ଷ ଲାଂବଟ ସାହେବ, ପାଟଣା କଲେଜର ରସାୟନ ଅଧ୍ୟାପକ କଲଡୁୱେଲ, ବିହାର ଓଡ଼ିଶା କାଉନସିଲ ସଭ୍ୟ ଦ୍ୱାରକା ପ୍ରସାଦ ଓ ଲକ୍ଷ୍ମୀଧର ମହାଂତିକୁ ନେଇ ଗଠିତ କମିଟି ବହୁ ପ୍ରାର୍ଥୀଂକୁ ସାକ୍ଷାତ୍ କରି ଶେଷରେ ଘନଶ୍ୟାମ ଦାସଂକୁ ଏଥିପାଇଁ ମନୋନୀତ କଲେ। ସେ ଲଂଡନରୁ ବି.ଏ.ପାସ୍ କରି ଆସି ରେଭେନ୍‌ସା କଲେଜରେ ଅଧ୍ୟାପକ ଭାବରେ ଯୋଗ ଦେଲେ। ବହୁ ଗବେଷଣା ମୂଳକ ପ୍ରବଂଧ ତାଂକର ପ୍ରକାଶିତ ହେଲା। ଓଡ଼ିଶାର ପୁରାତନ ସଂସ୍କୃତି ଐତିହ୍ୟ ଓ ବିଭବକୁ ଲୋକପ୍ରିୟ କରାଇବାକୁ ଅଧ୍ୟାପକ ଆର୍ତବଲ୍ଲଭ ମହାଂତି ପ୍ରାଚୀ ଗବେଷଣା ସମିତି ଗଠନ କରିବା ସମୟରେ ସେ ମଧ୍ୟ ଜଣେ ସହଯୋଗୀ ପ୍ରତିଷ୍ଠାତା ଥିଲେ। ଓଡ଼ିଶାର ନିଜର ସଂଗ୍ରହାଳୟ (ମିଉଜିଅମ) ନ ଥିବା ସେ ନିଜେ ଉପଲବ୍ଧି କରି ରେଭେନ୍‌ସା କଲେଜର ପରିତ୍ୟକ୍ତ ମୁସଲିମ ହଷ୍ଟେଲରେ ଅନୁମତି ନେଇ ସେ ଏହି କାର୍ଯ ଆରଂଭ କଲେ। ସହକର୍ମୀ ଅଧ୍ୟାପକ ନିର୍ମଳ କୁମାର ବାନାର୍ଜୀଂକ ସହଯୋଗରେ ଏଦିଗରେ ତାଂକର ଉଦ୍ୟମ ପ୍ରଶଂସନୀୟ ଓ ଲୋକପ୍ରିୟ ଥିଲା। ପ୍ରାଚୀନ କାରୁକାର୍ଯ ସହିତ ଅନେକ ଦୁର୍ଲଭ ଗ୍ରଂଥର ପୋଥି ପାଂଡୁଲିପି ସେ ସଂଗ୍ରହ କରାଇଲେ। ଏହିପରି ପ୍ରାୟ ତିନିଶହ ପାଂଡୁଲିପି ସଂଗୃହୀତ ହେଲା। କେତେକ ଦୁଷ୍ପ୍ରାପ୍ୟ ଗ୍ରଂଥର ପାଂଡୁଲିପି ମାଂଦ୍ରାଜର ପ୍ରାଚ୍ୟ ଗବେଷଣା ପୁସ୍ତକାଗାରରେ ଥିଲା। ଗବେଷଣାର ସୁବିଧା ନିମିତ୍ତ ଏହାର ନକଲ ଅଣାଯାଇ ରଖାଗଲା। ବର୍ତମାନ ଭୁବନେଶ୍ୱରରେ ଯେଉଁ ବିରାଟ ଓଡ଼ିଶା ମିଉଜିୟମ ଅଛି, ତାହାର ସୃଷ୍ଟି ମୂଳରେ ଅଧ୍ୟାପକ ଘନଶ୍ୟାମ ତାଂକର ସହକର୍ମୀ ଓ ଛାତ୍ରମାନଂକର ଅକ୍ଲାଂତ ଉଦ୍ୟମ ରହିଅଛି।

ତାଂକର ପ୍ରକାଶିତ ପ୍ରବଂଧମାନଂକ ମଧ୍ୟରେ ମହିମାଧର୍ମ ସଂପର୍କୀୟ ପ୍ରବଂଧ ମୌଳିକ ଓ ବିଶେଷ ଲୋକପ୍ରିୟ ଥିଲା। କଟକ ସହରର ବିଭିନ୍ନ ବଜାର ଗଳି ଓ ସାହିମାନଂକର ନାମକରଣ ଇତିହାସ ସହିତ ବାବନ ବଜାର ତେପନ ଗଳି ଯୁକ୍ତ କଟକ ସହରର ଇତିହାସ

ସଂକ୍ରାଂତରେ ସେ ନିଜ ଛାତ୍ରମାନଂକ ମାଧ୍ୟମରେ ବହୁ ତଥ୍ୟ ସଂଗ୍ରହ କରିଥିଲେ। ମାତ୍ର ୨ୟ ବିଶ୍ୱଯୁଦ୍ଧ ଆରଂଭ ଫଳରେ ଏ ଉଦ୍ୟମ ବ୍ୟାହତ ହେଲା ଓ ସଂଗୃହୀତ ତଥ୍ୟ ଉପରେ ପୁସ୍ତକ ମଧ୍ୟ ପ୍ରକାଶିତ ହୋଇ ପାରିଲା ନାହିଁ। ରେଭେନ୍‌ସା କଲେଜର ଅଧ୍ୟାପକ ଭାବରେ ସେ ନାଟକ ସଂସଦର ପରାମର୍ଶଦାତା ଥାଇ ବାର୍ଷିକ ନାଟକ ଉତ୍ସବ ସଫଳ କରାଉଥିଲେ। ଏଥିରେ ଅନେକ ନୂତନ କଳାକାର ସୃଷ୍ଟିହେଲେ। ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ସେ ସିନେଟର ଜଣେ ପ୍ରଭାବଶାଳୀ ସଭ୍ୟ ଥିଲେ । ୧୯୪୯ରେ ରାଜନୀତି ବିଜ୍ଞାନକୁ ଏକ ନୂତନ ବିଷୟ ଭାବରେ ଶିକ୍ଷା ଦେବାକୁ ବିଶ୍ୱବିଦ୍ୟାଳୟ ନିଷ୍ପତ୍ତି ନେଲେ। ପୂର୍ବରୁ ଏହି ବିଷୟ ଇତିହାସ ଓ ଅର୍ଥନୀତି ଉଭୟ ସିଲାବସର ଅଂତର୍ଗତ ଥିଲା। କୁଳପତି ଇତିହାସ ଓ ଅର୍ଥନୀତିର ପାଠ୍ୟ ମଂଡଳର ଏକ ମିଳିତ ଅଧିବେଶନ ଆହ୍ୱାନ କଲେ ଓ ଅଧ୍ୟାପକ ଘନଶ୍ୟାମ ଏହାର ଅଧ୍ୟକ୍ଷ ହେଲେ। ସେମାନେ ତାଂକ ନିର୍ଦ୍ଦେଶନାରେ ରାଜନୀତିବିଜ୍ଞାନ ନିମିତ୍ତ ଏକ ନୂତନ ପାଠ୍ୟ ଖସଡ଼ା ପ୍ରସ୍ତୁତ କରିଥିଲେ। ପରବର୍ତ୍ତୀ କାଳରେ ସେ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ଇତିହାସ ପ୍ରଣୟନ ନିମିତ୍ତ ଗଠିତ କମିଟି, ଓଡ଼ିଶା ଐତିହାସିକ ଗବେଷଣା ଜର୍ନାଲର ସଂପାଦକ ମଂଡଳୀ, ଓଡ଼ିଶାର ପୂର୍ଣାଂଗ ଇତିହାସ ପ୍ରସ୍ତୁତି ନିମିତ୍ତ ଗଠିତ କମିଟିର ସଭ୍ୟ ଥାଇ ନିଜ ଅଭିଜ୍ଞତାର ସଦୁପଯୋଗ କରିଥିଲେ। ଶାଂତ, ମିଷ୍ଟଭାଷୀ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ସମସ୍ତଂକର ପ୍ରିୟ ଥିଲେ। ୧୯୨୭ରୁ ଦୀର୍ଘ କୋଡ଼ିଏ ବରଷ ସେ ରେଭେନ୍ସା କଲେଜର ଅଧ୍ୟାପକ ଥାଇ ୧୯୪୭ ଅକ୍ଟୋବରରେ ସଂବଲପୁର କଲେଜର ଅଧ୍ୟକ୍ଷ ଭାବେ ଯୋଗଦାନ କରିଥିଲେ। ପରବର୍ଷ ବାଲେଶ୍ୱର କଲେଜକୁ ବଦଳି ହେଲେ ମାତ୍ର ପରେ ରେଭେନ୍‌ସା କଲେଜକୁ ଫେରିଆସି ସେହିଠାରୁ ଅବସର ନେଲେ। ସଂବଲପୁର କଲେଜର ଅଧ୍ୟକ୍ଷ ଥିବା ସମୟରେ ସେ ପ୍ରଥମ କରି ବରପାଲିଠାରେ ଶ୍ରାବଣ ପୂର୍ଣିମା (ଗହ୍ମା ପୂର୍ଣିମୀ) ଦିନ ଗଂଗାଧରଂକର ଜନ୍ମଉତ୍ସବ ପାଳନର ବ୍ୟବସ୍ଥା ଆରଂଭ କଲେ, ପରବର୍ତ୍ତୀ କାଳରେ ଏହା ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା। ରେଭେନ୍‌ସା କଲେଜରେ ଉପାଧ୍ୟୁତ୍ତର ଇତିହାସ ଶ୍ରେଣୀର ଅଧ୍ୟାପକ ଭାବରେ ତାଂକୁ ନିଯୁକ୍ତି ନ ମିଳିବାରୁ ସେ ମର୍ମାହତ ହେଲେ। ଚାକରିରୁ ଅବସର ନେଲେ। ୧୯୫୭ ସାଧାରଣ ନିର୍ବାଚନରେ ସେ ସଂବଲପୁର ଯୁଗ୍ମ ଲୋକସଭା ନିର୍ବାଚନ ମଂଡଳୀରୁ କଂଗ୍ରେସ ପ୍ରାର୍ଥୀ ଭାବରେ ପ୍ରତିଦ୍ୱଂଦ୍ୱିତା କଲେ ମାତ୍ର ନିଜର ପ୍ରିୟ ଛାତ୍ର ଗଣତଂତ୍ର ପରିଷଦର ନେତା ଶ୍ରଦ୍ଧାକର ସୂପକାରଂକ ହାତରେ ଶୋଚନୀୟ ଭାବରେ ପରାସ୍ତ ହେଲେ। ଶ୍ରଦ୍ଧାକର ସୂପକାର ୧୩୧,୯୭୪ ଖଂଡ ଭୋଟ ପାଇଥିବା ବେଳେ ଅଧ୍ୟାପକ ଘନଶ୍ୟାମ ମାତ୍ର ୮୪,୬୬୫ ଭୋଟ ପାଇପାରିଥିଲେ। ଏହି ବିପର୍ଯ୍ୟୟ ପରେ ସେ ନିଜକୁ ସମସ୍ତ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମରୁ ଦୂରେଇ ନେଲେ। ଜାନୁଆରି ୧୪ ତାରିଖ ୧୯୫୯ରେ ସେ ଶେଷ ନିଶ୍ୱାସ

ତ୍ୟାଗ କଲେ। ତାଂକର ୨ୟ ପୁତ୍ର ୧୯୪୪ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ରସାୟନରେ ଅନର୍ସ ଓ ଡିଷ୍ଟିଂସନ ପାଇ ବିଏସ୍.ସି ଉପାଧି ନେଲେ, ସରକାରୀ ବୃତ୍ତିପାଇ ବିଲାତର ଏଡିନବରା ବିଶ୍ୱବିଦ୍ୟାଳୟରୁ ଜଂଗଲ ବିଦ୍ୟାରେ ଉପାଧି ହାସଲ କଲେ। ଭାରତୀୟ ବନ ସେବାରେ ଯୋଗଦେଇ ରାଜ୍ୟର ସର୍ବୋଚ୍ଚ ମୁଖ୍ୟ ବନ ସଂରକ୍ଷଣ ପଦବିରୁ ଅବସର ନେଲେ। କନ୍ୟା ଇଲା ପଂଡା ଚାରୁକଳାରେ ବିଶ୍ୱଭାରତୀରୁ ଯୋଗ୍ୟତା ଲାଭ କରି ଶିଳ୍ପପତି ଡକ୍‌ଟର ବଂଶୀଧର ପଂଡାଂକୁ ବିବାହ କଲେ। ଇମ୍‌ଫା ଶିଳ୍ପ ଗୋଷ୍ଠୀର ସେ ଅଧିକାରିଣୀ ଓ ରାଜ୍ୟସଭା ସାଂସଦ ଭାବରେ ୧୯୯୨ରୁ ୧୯୯୬ ପର୍ଯ୍ୟଂତ କାର୍ଯ୍ୟ କରିଥିଲେ।

ଓଡ଼ିଶାରେ ଇତିହାସ ଶିକ୍ଷା ଓ ଗବେଷଣା ପ୍ରତି ଆଗ୍ରହ ସୃଷ୍ଟି କରିବାରେ ଅଧ୍ୟାପକ ଘନଶ୍ୟାମଂକର ଅବଦାନ ସ୍ମରଣୀୟ। ଡକ୍ଟର ନବୀନ କୁମାର ସାହୁ, ଡକ୍‌ଟର ଭବାନୀ ଚରଣ ରାୟ, ରାଜେଂଦ୍ର ପ୍ରସାଦ ଦାସ ଆଦି ଓଡ଼ିଶାର ବହୁ ଲବ୍‌ଧପ୍ରତିଷ୍ଠ ଐତିହାସିକ ଓ ଗବେଷକ ତାଂକରି ପ୍ରେରଣାରେ ଇତିହାସ ଲେଖନ ଓ ଗବେଷଣାରେ ସୁଖ୍ୟାତି ଅର୍ଜନ କରିଅଛଂତି।





# କଳିଂଗ ଶିଳ୍ପୀ

# ଡକ୍ଟର ମୁରଲୀଧର

ଭାରତର ସାଂପ୍ରତିକ କଳାକ୍ଷେତ୍ରରେ ଯେଉଁ କେତେକ ପ୍ରଖ୍ୟାତ ଶିଳ୍ପୀ ନିଜକୁ ପ୍ରତିଷ୍ଠା କରାଇ ପାରିଛଂତି ସେମାନଂକ ମଧ୍ୟରେ ଡକ୍‌ଟର ମୁରଲୀଧର ଟାଲି ଅନ୍ୟତମ। ଓଡ଼ିଶାର କଳାକୃତିକୁ ବିଶ୍ୱଦରବାରରେ ଉପସ୍ଥାପନ କରିବାରେ ତାଂକ ପ୍ରତିଷ୍ଠା ଅବିସ୍ମରଣୀୟ। ସେ ଯେପରି ଧୁରୀଣ ଶିଳ୍ପୀ ଥିଲେ ସେହିପରି ଜଣେ ସ୍ୱାଭିମାନଶୂନ୍ୟ ଅମାୟିକ ବ୍ୟକ୍ତି। କଳା ଜଗତରେ ଏହି ଅନନ୍ୟ ପ୍ରତିଭାବଂତ ଶିଳ୍ପୀ ଛାଡ଼ିଯାଇଛଂତି ଅସଂଖ୍ୟ କଳାକୃତି। ତାହା ସଂରକ୍ଷିତ ହୋଇ ରହିଛି ଦେଶ ବିଦେଶର ବହୁ ଚିତ୍ରାଗାର ବିଭିନ୍ନ ଭବନ, ରାଜ୍ୟ ବିଧାନ ସଭା, ଭାରତର ଲୋକସଭା କକ୍ଷ, ରାଷ୍ଟ୍ରୀୟ ଚିତ୍ରାଗାର ଓ କେନ୍ଦ୍ର ଲଳିତ କଳା ଏକାଡ଼େମୀ ପ୍ରଭୃତି ବହୁ ଅନୁଷ୍ଠାନରେ। ଖାଲି ଜଳରଂଗ ଚିତ୍ର ନୁହେଁ ତୈଳଚିତ୍ର ରଚନା କରିବାରେ ମଧ୍ୟ ସେ ସିଦ୍ଧହସ୍ତ। ତାଂକର ଅକ୍ଳାଂତ ପରିଶ୍ରମରେ ହୋଇଥିବା ଓଡ଼ିଶା ବସ୍ତ୍ର ଶିଳ୍ପ ପାଇଁ ବିଭିନ୍ନ ଓଡ଼ିଶୀ ନମୁନା ଓଡ଼ିଶାର ବସ୍ତ୍ରଶିଳ୍ପକୁ ସର୍ବାଦୃତ କରିବାରେ ସକ୍ଷମ। ଜଣେ ସଫଳ କଳାଶିକ୍ଷକ ଭାବରେ ତାଂକର ବହୁ ଛାତ୍ରଛାତ୍ରୀ ଆଜି ଭାରତର କଳାକ୍ଷେତ୍ରରେ ଅବତୀର୍ଣ୍ଣ।

କଳା କ୍ଷେତ୍ରରେ ତାଂକର ବିଶେଷ ଅବଦାନ ନିମିତ୍ତ ସେ ବହୁ ସରକାରୀ ବେସରକାରୀ ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟରେ ସମ୍ମାନିତ ଓ ସର୍ବଭାରତୀୟ କ୍ଷେତ୍ରରେ ପୁରସ୍କୃତ । ୧୯୧୮ରେ ସଂବଲପୁରରେ ଜନ୍ମଗ୍ରହଣ କରି ୧୯୯୭ରେ ସେ ଇହଲୀଳା ସାଂଗକଲେ । ଏହି ସମୟ ସୀମା ମଧ୍ୟରେ ସେ ଯେଉଁ ଅନବଦ୍ୟ କାର୍ଯ କରିଯାଇଛଂତି ଏହି ପ୍ରବଂଧରେ ତାହାର ଏକ ଝଲକ ମାତ୍ର ଉପସ୍ଥାପିତ ।

ଓଡ଼ିଶାର ପଶ୍ଚିମାଂଚଳ ସଂବଲପୁର ସହରର ମହାଂତି ପଡାର ରଘୁନାଥ ମହାଂତି ଥିଲେ ଜଣେ କଳାପ୍ରେମୀ ସାଧାରଣ ଗୃହସ୍ଥ । ଟାଲି ପରିବାର ଯାଜପୁରରୁ ରାଜାଂକର କରଣ କାର୍ଯ କରିବାକୁ ସଂବଲପୁର ଯାଇ ସେଠାରେ ସ୍ଥାୟୀ ବସବାସ କଲେ । ରଘୁନାଥଂକର ଆଉ ଦୁଇ ସଂତାନ । ଜ୍ୟେଷ୍ଠ ଦୁର୍ଗାପ୍ରସାଦ । ସେ ମାଟ୍ରିକ ପାସ୍‌କରି ଜିଲ୍ଲା ଅଫିସରେ ଅମଲା ଥିଲେ । କନିଷ୍ଠ ଶିବପ୍ରସାଦ ମୁରଲୀଧର ମଧ୍ୟମ । ରଘୁନାଥଂକର ଗୋଟିଏ ଛୋଟ ଷ୍ଟେସନାରି ଦୋକାନ ଥିଲା । ଅବସର ସମୟରେ ସେ ମୂର୍ତ୍ତି ଗଢୁଥିଲେ । ତାଂକ ସ୍ତ୍ରୀ ବିଷ୍ଣୁପ୍ରିୟା କଳାନୁରାଗିଣୀ ଥାଇ ଏଥିରେ ସାହାଯ୍ୟ କରୁଥିଲେ । ଆର୍ଥିକ ଅନଟନ ମଧ୍ୟରେ ମୁରଲିଧରଂକର ଜନ୍ମ ୧୯୧୮ ଅକ୍ଟୋବର ୨୨ ତାରିଖରେ । ବାଲ୍ୟକାଳରୁ ତାଂକ ଉପରେ ପିତାମାତାଂକର କଳା ଅଭିରୁଚିର ପ୍ରଭାବ ପଡ଼ିଲା । ବିଦ୍ୟାଳୟ ପାଠପଢ଼ା ଅପେକ୍ଷା ଚିତ୍ରାଂକନରେ ସେ ବେଶି ଧ୍ୟାନ ଦେଲେ ଘରୋଇ ପରିବେଶ, ପୁରପଲ୍ଲୀର ଦୃଶ୍ୟ, ଜନଜୀବନର ବିଭିନ୍ନ ବିକାଶରେ ଓ ଏଥିରେ ସେ ବିଲୀନ ହୋଇ ଯାଇଥିଲେ । ପ୍ରଭୁଦତ୍ତ ପ୍ରତିଭା, ଅଂତର୍ନିହିତ ଭାବ ଚିତ୍ରକଳା ମାଧ୍ୟମରେ ପ୍ରକାଶ କରିବାକୁ ସେ ଶୈଶବ ଅବସ୍ଥାରୁ ବ୍ୟାକୁଳ ଥିଲେ । ଖଡ଼ି ପେନ୍‌ସିଲ ଓ ରଂଗକୁ ନେଇ ସେ ନିଜ ମନରୁ ଚିତ୍ରାଂକନ କରି ସେଥିରେ ମଜ୍ଜିଯାଉଥିଲେ । ଏହା ସ୍ୱାଧୀନତା ଆଂଦୋଳନର ସମୟ । ମୁରଲୀଧର ଘରପାଖ ପଟ୍ଟନାୟକ ପଡ଼ା ମାଇନର ସ୍କୁଲରୁ ପାସ୍ କରି ଜିଲ୍ଲା ସ୍କୁଲରେ ମାଟ୍ରିକ ପଢ଼ିଲେ । ତାଂକ ବଡ଼ଭାଇ ତାଂକୁ ଚିତ୍ରବିଦ୍ୟାରେ ବିଶେଷ ଶିକ୍ଷା ଦେବାକୁ ହେଡ଼ମାଷ୍ଟର ଭବାନୀ ଶଂକର ପଟ୍ଟନାୟକଂକ ଦ୍ୱାରା ପ୍ରଭାବିତ ହେଲେ ।

ମାଟ୍ରିକ୍ ପାସ୍‌କରି ପାରଂପରିକ ଶିକ୍ଷାରେ ମୁରଲୀଧରଂକର ଆଗ୍ରହ ନ ଥାଏ । ସେ ସମୟରେ ଦେଶରେ କଳାଶିକ୍ଷାକ୍ଷେତ୍ର କେବଳ ବଡ଼ ବଡ଼ ସହରମାନଂକରେ ଥାଏ । ଏହା ବ୍ୟୟବହୁଳ । ମାତ୍ର କଳାହିଁ ଜୀବନ ଏହା ଉପଲବ୍‌ଧି କରି ନିଜ କଳା ପ୍ରତିଭାର ବିକାଶ ପାଇଁ ମୁରଲୀଧର ଏପରି ପାଗଳ ଥିଲେ ଯେ ବଡ଼ଭାଇ ଓ ପିତାମାତା ଅଭାବ ଅନାଟନ ମଧ୍ୟରେ ତାଂକୁ କଳା ଶିକ୍ଷା ଦେବାକୁ ନିଷ୍ପତ୍ତି ନେଲେ, ମାତ୍ର ଏହା କାର୍ଯକାରୀ କରିବା ସହଜ ନଥିଲା । ଅନୁସଂଧାନରୁ ଜଣାଗଲା, ଇଂରେଜମାନଂକର ଚାରୁକଳା ଶିକ୍ଷା ପଦ୍ଧତି

ଅନୁସରଣ କରି ତିନିଗୋଟି ଚାରୁକଳା ବିଦ୍ୟାଳୟ ବଂବେ, ମାଂଦ୍ରାଜ ଓ କଲିକତାରେ ସ୍ଥାପିତ ହୋଇଛି । ପରିବାର ନିଷ୍ପତ୍ତି କଲେ ଅଭାବ ଅନଟନ ସତ୍ତ୍ୱେ ତାଂକୁ କଲିକତା କଳା ବିଦ୍ୟାଳୟରେ ଶିକ୍ଷାଦେବେ । ନାମ ଲେଖାଇବାକୁ ଗୋଟିଏ ଏନ୍‌ଟ୍ରାନ୍‌ସ ପରୀକ୍ଷା କଲିକତାରେ କରାଯାଏ । ବଛାବଛି ପରେ ତରୁଣ କଳାକାରମାନଂକୁ ଅଧ୍ୟୟନର ସୁଯୋଗ ଦିଆଯାଉଥିଲା । ବହୁକଷ୍ଟରେ ଅର୍ଥ ବ୍ୟବସ୍ଥା କରି ମୁରଲୀଧର ସଂବଲପୁରରୁ ଯାଇ ୧୯୩୬ରେ ୧୮ ବର୍ଷ ବୟସରେ ଏହି ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ଯୋଗଦେଲେ । ମୁରଲୀଧର ଅତୀବ ଶାଂତ ଓ ଲାଜକୁଳା ସ୍ୱଭାବର କିଶୋର ଥିଲେ । ମଫସଲରୁ ଆଗତ ଜଣେ ଛାତ୍ର ଭାବରେ ତାଂକୁ ବହୁ ବିଦ୍ରୂପ ଶୁଣିବାକୁ ହେଲା । ମା' ସମଲେଶ୍ୱରୀଂକୁ ସ୍ମରଣକରି ସେ ପରୀକ୍ଷାରେ ବସିଲେ । ଫଳ ବାହାରିଲା । କୃତୀ ଛାତ୍ରମାନଂକର ନାମ ଶୀର୍ଷରେ ତାଂକ ନାମ ଦେଖାଦେଲା । ବିଦ୍ୟାଳୟର ଶିକ୍ଷକ ମଂଡଳୀ ଏପରି ପ୍ରତିଭାବାନ୍ ଯୁବକର ଭବିଷ୍ୟତ ଉଜ୍ଜ୍ୱଳ ଓ ସେ ବିଦ୍ୟାଳୟର ସୁନାମ ରଖିବ ଏହି ଭବିଷ୍ୟତ ବାଣୀ କଲେ । ସେଠାରେ ଛାତ୍ରାବାସ ନଥାଏ । ରହିବା ଚିଂତା ତାଂକୁ ଗ୍ରାସିଲା । ଗୌରୀ ଚରଣ କାନୁନଗୋଂକ ନେତୃତ୍ୱରେ କେତେଜଣ ଓଡ଼ିଶାର ଛାତ୍ର 'ଓଡ଼ିଶା ହୋମ' ନାମରେ ଏକ ଅନୁଷ୍ଠାନ ଗଢ଼ି ସେଥିରେ ଓଡ଼ିଆ ଛାତ୍ରମାନଂକୁ ରଖିବାର ବ୍ୟବସ୍ଥା କରୁଥିଲେ । ଏହାର ଆର୍ଥିକ ବ୍ୟବସ୍ଥା ଗୌରୀଚରଣଂକ ହାତରେ ଥିଲା । ଜ୍ଞାନପୀଠ ବିଜେତା କବି ସଚ୍ଚିଦାନଂଦ ରାଉତରାୟ, ଶଶାଂକ ପଟ୍ଟନାୟକ ଆଦି ବଂଧୁମାନେ ତାଂକର ସହାୟକ ଥିଲେ । ଗୌରୀଚରଣ କିଏ ? ଏହି ପ୍ରସଂଗରେ ବ୍ରହ୍ମପୁରରୁ ପ୍ରକାଶିତ ନବୀନର ତା ୧୧.୨.୩୬ ରିଖ ସଂଖ୍ୟାରୁ ଏକ ସଂବାଦ ପ୍ରଣିଧାନ ଯୋଗ୍ୟ । ''କଲିକତାର ଉତ୍ସାହୀ କର୍ମୀ ଗୌରୀ କାନୁନଗୋ ଗତ କେତେଦିନ ହେଲା ଅସୁସ୍ଥ ଅଛଂତି । ଓଡ଼ିଆ ଛାତ୍ର ମହଲରେ ସେ ଜଣେ ବିଶିଷ୍ଟ ସାଧାରଣ କର୍ମୀ ଓ ଜନ ସେବକ । କଲିକତାର ଯାବତୀୟ ଓଡ଼ିଆ ଅନୁଷ୍ଠାନ ସଂଗେ ସେ ଘନିଷ୍ଠଭାବରେ ଜଡ଼ିତ । ସେ ଗତବର୍ଷ କଲିକତାରୁ 'ଯୁଗବାର୍ତା' ନାମକ ଏକ ସାପ୍ତାହିକ ପତ୍ରିକା ବହୁ ବାଧାବିଘ୍ନ ସତ୍ତ୍ୱେ ବାହାର କରି ନିର୍ଯାତିତ ଓଡ଼ିଆମାନଂକର ମାନ ସଂଭ୍ରମ ରକ୍ଷା କରିବାରେ ବ୍ରତୀ ହୋଇଥିଲେ । ତାଂକର ଆଶୁ ରୋଗମୁକ୍ତି କାମନା କରୁ ।'' ଏହି ଗୌରୀଚରଣ ପୂର୍ବତନ ରାଜ୍ୟପାଳ ନିତ୍ୟାନଂଦ କାନୁନଗୋ ଓ ଓଡ଼ିଶାର ସ୍ୱନାମଧନ୍ୟା ନାରୀନେତ୍ରୀ ସରଳାଦେବୀଂକର କନିଷ୍ଠ ଭ୍ରାତା ଥାଇ ଓଡ଼ିଆ ମାନଂକର କଲିକତାରେ ସର୍ବବିଧ ଉଦ୍ୟମରେ ସଂଶ୍ଳିଷ୍ଟ ଥିଲେ । ତାଂକ ଅନୁଗ୍ରହରୁ 'ଓଡ଼ିଶା ହୋମ'ରେ ମୁରଲୀଧରଂକୁ ବାସସ୍ଥାନ ମିଳିଗଲା ଓ ଅଧ୍ୟୟନ କ୍ଷେତ୍ରର ସମସ୍ତ ପ୍ରତିବଂଧକ ଦୂର ହେଲା ।

କଲିକତା ସରକାରୀ କଳା ବିଦ୍ୟାଳୟରେ ଅଧ୍ୟୟନରତ ଏହି କିଶୋର ଜଣକ ତାଂକର ରଂଗତୁଳିର ଚାତୁରୀ ଓ ଡ୍ରଇଂ ଆଂକିବାରେ ଦକ୍ଷତା ଦେଖାଇ ସମସ୍ତ ଶିକ୍ଷାଗୁରୁଂକୁ

ବିମୁଗ୍‌ଧ କଲେ। ଛାତ୍ର ଅବସ୍ଥାରେ ତାଂକର ଚିତ୍ର ବିଭିନ୍ନ ପ୍ରଦର୍ଶନୀରେ ସ୍ଥାନ ପାଇ କଳା ସମୀକ୍ଷକମାନଂକୁ ମୁଗ୍‌ଧ କରିଥିଲା। ଇଂରେଜି ଓ ବଂଗଳା ପତ୍ରପତ୍ରିକାଗୁଡ଼ିକରେ ତାଂକର କଳା ପ୍ରତିଭାର ଉଚ୍ଚ ପ୍ରଶଂସା ପ୍ରକାଶିତ ହୋଇଥିଲା। ପ୍ରତିଷ୍ଠିତ ଶିଳ୍ପୀ ଓ କଳାପ୍ରେମୀଂକଠାରୁ ପ୍ରେରଣା ପାଇ ପ୍ରତିକୃତି ଅଂକନ ଓ ଭାରତୀୟ ଜନଜୀବନର ବିଭିନ୍ନ ପ୍ରତିଚ୍ଛବି ଅଂକନ କରି ସେ ବିଭିନ୍ନ ପ୍ରଦର୍ଶନୀରେ ଅଂଶ ଗ୍ରହଣ କରିବାକୁ ଲାଗିଲେ। ପ୍ରଦର୍ଶନୀରେ ପୁରସ୍କୃତ ମେଧାବୀ କଳାଛାତ୍ର ମୁରଲୀଧର ଆଲୋଚନାକୁ ଆସିଲେ। ନିଜର କଳା ପାରଦର୍ଶିତା ନିମିତ୍ତ ସେ ବଂଗ ସରକାରଂକଠାରୁ ବୃତ୍ତି ପାଇଲେ। ବିଳଂବରେ ଓଡ଼ିଶା ସରକାର ତାଂକ ପ୍ରତିଭା ସ୍ୱୀକାର କରି ବୃତ୍ତି ପ୍ରଦାନ କଲେ। ସେ ଶ୍ରେଣୀରେ ପ୍ରତିବର୍ଷ ପ୍ରଥମସ୍ଥାନ ଅଧିକାର କରୁଥିଲେ। କଳାପ୍ରେମୀ ବିଶିଷ୍ଟ ବଦାନ୍ୟ ବ୍ୟକ୍ତି ମାନେ ପ୍ରତିଚ୍ଛବି ଅଂକନ ନିମିତ୍ତ ତାଂକୁ ନିଯୋଜିତ କଲେ। କଳା ଶିକ୍ଷା ଶେଷରେ ସେ ଯେପରି ବିଦ୍ୟାଳୟରେ ଜଣେ ଶିକ୍ଷକ ହୋଇ ପାରିବେ ସେଥିପାଇଁ ସ୍ୱତଂତ୍ର ତାଲିମ ମଧ୍ୟ ନେଲେ। ୧୯୩୬ରୁ ଦୀର୍ଘ ଦଶବର୍ଷ ଧରି କଳା ବିଦ୍ୟାଳୟରେ ତାଲିମ କ୍ୱଚିତ ଶିଳ୍ପୀଂକୁ ମିଳିଥାଏ। ସ୍ୱାଧୀନତା ପୂର୍ବର କଥା। ସର୍ବଭାରତୀୟ ରାଜନୈତିକ ସାମାଜିକ କଳା ଓ ସଂସ୍କୃତି କ୍ଷେତ୍ରରେ ବଂଗୀୟମାନଂକର ଅବଦାନ ଓ ପ୍ରତିପତ୍ତି ପର୍ଯାପ୍ତ ଥିଲା। ବଂଗଦେଶରୁ କବିଗୁରୁ ରବୀଂଦ୍ରନାଥ, ଯୋଗୀ ଅରବିଂଦ, ଶିଳ୍ପୀ ଅବନୀଂଦ୍ର ନାଥ ଓ ନଂଦଲାଲ ରାଜନେତା ଚିତ୍ତରଂଜନ ପ୍ରଭୃତି, ବହୁ ଶିଳ୍ପୀ ଓ ଦେଶଭକ୍ତ ଏକ ଦୃଢ଼ ସାହିତ୍ୟିକ ପରଂପରା ସୃଷ୍ଟି କରିପାରିଥିଲେ। ମୁରଲୀଧର କଲିକତାରେ ଅଧ୍ୟୟନ କରିବା ସମୟରେ ପ୍ରସିଦ୍ଧ ଚିତ୍ରକର ମୁକୁଳ ଦେ ସେଠାରେ ଅଧ୍ୟକ୍ଷ ଥିଲେ। ପରେ ରମେନ ଚକ୍ରବର୍ତୀ ମଧ୍ୟ ଅଧ୍ୟକ୍ଷ ହେଲେ। ପ୍ରସିଦ୍ଧ ଶିଳ୍ପୀ ବସଂତ ଗାଂଗୁଲି ସେଠାରେ ଶିକ୍ଷକ ଥିଲେ। ଶାଂତି ନିକେତନରେ କଳା ଶିକ୍ଷକ ସ୍ୱନାମଧନ୍ୟ ନଂଦଲାଲ ବୋଷ। ଶାଂତିନିକେତନରେ ଭାରତର ପାରଂପରିକ କଳା ଶିକ୍ଷା ଦିଆଯାଉଥିବା ବେଳେ କଲିକତାରେ ପାଶ୍ଚାତ୍ୟ କଳା ଶିକ୍ଷା ଦିଆଯାଉଥିଲା। ସେ କାଳରେ କଳାଶିକ୍ଷକମାନଂକୁ ଶିକ୍ଷା ବିଭାଗର କୌଣସି ସମ୍ମାନ ବା ସ୍ୱୀକୃତି ମିଳୁନଥିଲା। ଫଳରେ ପ୍ରତିଭାସଂପନ୍ନ ଶିକ୍ଷକମାନେ ପ୍ରତିଭା ହଜାଇ କଳାପଟାରେ ଜହ୍ନି ବାଇଗଣ ଚିତ୍ର ଶିକ୍ଷା ଦେଇ ଜୀବିକାର୍ଜନ କରୁଥିଲେ। ମୁରଲୀଧରଂକ ଭଳି ଜଣେ ପ୍ରତିଭାବାନ କଳା ଶିକ୍ଷକଂକୁ ସ୍ଥାୟୀଭାବେ କଲିକତାରେ ରହିବାକୁ ପ୍ରଭାବିତ କରାଗଲେ ମଧ୍ୟ ସେ ନିଜ ମାତୃଭୂମିର ସେବା ପାଇଁ ଓଡ଼ିଶା ପ୍ରତ୍ୟାବର୍ତନ କଲେ – ୧୯୪୭ରେ ସ୍ୱାଧୀନତା ପ୍ରାପ୍ତିର ଅଳ୍ପଦିନ ପରେ। ସେତେବେଳକୁ ସେ ବହୁ ସୁନାରୂପା ମେଡ଼ାଲ୍ ସହିତ ୧୯୪୩ରେ ବଂବେର ଶିଳ୍ପ ପ୍ରଦର୍ଶନୀରେ ଏକ ଚିତ୍ର ପାଇଁ ଏକହଜାର ଟଂକା ପୁରସ୍କାର ପାଇଁ ସାରିଥାଆଂତି। ୧୯୪୪ରେ କଲିକତାର ଚାରୁକଳା ଏକାଡ଼େମୀ ତାଂକର 'ଇଭ୍‌ସଡ୍ରପ୍' ଚିତ୍ରକୁ ପ୍ରଥମସ୍ଥାନ ପ୍ରଦାନ କରିଥାଆଂତି।

ଯୁଦ୍ଧ କାଳରେ ଜାତୀୟ ସଂଚୟ ଯୋଜନାରେ ଏକ ଚିତ୍ର ପାଇଁ କଲିକତାରେ ଏକ ଶିଳ୍ପ ପ୍ରଦର୍ଶନରେ ତାଂକୁ ସ୍ୱତଂତ୍ର ପୁରସ୍କାର ମିଳିଥାଏ। ଭାରତୀୟ ଚାରୁକଳା ଏକାଡ଼େମୀ ଆୟୋଜିତ ପ୍ରଦର୍ଶନୀରେ ସେ ନିଜର ଚିତ୍ର 'ମାଏ ମଦର୍' ନିମିତ୍ତ ଶ୍ରେଷ୍ଠ କଳା ଶିଳ୍ପୀ ଭାବେ ସ୍ୱୀକୃତ ହୋଇ ଏକ ସ୍ୱର୍ଣପଦକ ପାଇଥାଆଂତି। ଓଡ଼ିଶା ଫେରି ସେ ଜୀବନର ବାସ୍ତବତା ଅନୁଭବ କଲେ। କଳା ଉପରେ ନିର୍ଭର କରି ଚଳିବା କଷ୍ଟକର ଥିଲା।

ଗଂଜାମ ଜିଲ୍ଲା ଚିକିଟି ଜମିଦାରିର ରାଜାଂକ ଭାଇ ଶରତ ଚଂଦ୍ର ଦେବ ଜଣେ ଉଦାର କଳାପ୍ରେମୀ ଶିଳ୍ପୀ ଥିଲେ। ଲଂଡନରେ ଚିତ୍ରକଳାରେ ତାଲିମ ପାଇ ସେ ଦେଶକୁ ଫେରି ବ୍ରହ୍ମପୁର ସହରରେ ଗୋଟିଏ ଚିତ୍ରକଳା ବିଦ୍ୟାଳୟ ପ୍ରତିଷ୍ଠା ନିମିତ୍ତ ଉଦ୍ୟମରତ ଥିଲେ। ମୁରଲୀଧରଂକର କଳାପ୍ରତିଭା ଅବଗତ ଥାଇ ସେ ତାଂକୁ ଏହାର ଅଧ୍ୟାପକ ହେବାକୁ ପ୍ରବର୍ତାଇଲେ। ମାତ୍ର କଟକ ସହର ସଂପୂର୍ଣ ତ୍ୟାଗ କରିବାକୁ ଅକ୍ଷମ ମୁରଲୀଧର ସପ୍ତାହରେ ଦୁଇଦିନ ମାତ୍ର ଯାଇ ବ୍ରହ୍ମପୁରରେ ଶିକ୍ଷାଦାନ କଲେ। ଅନେକ ତରୁଣ ଶିଳ୍ପୀ ଏହି ସମୟରେ ତାଂକ ସଂସ୍ପର୍ଶରେ ଆସି ନିଜ ପ୍ରତିଭା ବିକାଶର ସୁଯୋଗ ପାଇଲେ। ମାତ୍ର ଆର୍ଥିକ ଦୁଃସ୍ଥିତି ଫଳରେ ଅନୁଷ୍ଠାନଟି ଭାଂଗିଗଲା। ସେ କଟକରେ ଗୋଟିଏ ଷ୍ଟୁଡିଓ ପ୍ରତିଷ୍ଠା କଲେ। ଚିତ୍ର ଅଂକନ କରି ଆର୍ଥିକ ଦୁରବସ୍ଥା ମଧ୍ୟରେ ସେ କାଳ କଟାଇଲେ, ମାତ୍ର ବ୍ରହ୍ମପୁର କଳା ବିଦ୍ୟାଳୟରେ ସେ ଯେଉଁ ଯୁବକ ମାନଂକ ହାତରେ ଖଡ଼ି ଧରାଇଥିଲେ ସେମାନଂକ ମଧ୍ୟରେ ଲକ୍ଷ୍ମୀଧର ଦାନ୍ ନିତ୍ୟାନଂଦ ମହାପାତ୍ର, ରବିନାରାୟଣ ନାୟକ ଚାରୁକଳା କ୍ଷେତ୍ରରେ ବର୍ତମାନ ଜଣେ ଜଣେ ଧୁରୀଣ ଶିଳ୍ପୀ ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଅଛଂତି।

କଟକରେ ଶିଳ୍ପୀ ବିଭୂତି ଭୂଷଣ କାନୁନଗୋଂକ ସହିତ ତାଂକର ଆଂତରିକତା ଆସିଲା। ସ୍ୱାଧୀନତା ପରବର୍ତୀ କାଳରେ ଶାସନର ଦୃଷ୍ଟିଭଂଗି ବଦଳିବାରେ ଲାଗିଲା। ଓଡ଼ିଶାର ଶିଳ୍ପ ମଂତ୍ରୀଥିଲେ କଳାପ୍ରେମୀ ନିତ୍ୟାନଂଦ କାନୁନଗୋ। ରାଜ୍ୟ ସରକାରଂକ ପକ୍ଷରୁ ଓଡ଼ିଶାରେ ବସ୍ତ୍ର ଶିଳ୍ପର ବିକାଶ ନିମିତ୍ତ ଉଦ୍ୟମ ଆରଂଭ ହେଲା। ଉଚ୍ଚମାନର ବସ୍ତ୍ର ଉତ୍ପାଦନ କରି ତାହାର ରପ୍ତାନି ଫଳରେ ବୁଣାଳିମାନଂକୁ ଆର୍ଥିକ ଲାଭ ଦେଇ ଉତ୍ସାହିତ କରିବାକୁ କାନୁନଗୋ ଏକ ଯୋଜନା ଆରଂଭ କଲେ। ଓଡ଼ିଶାର ଗାଁ ଗହଳିରେ ଥିବା ଲୋକକଳା ଓ ପାରଂପରିକ କଳାର ବିଭିନ୍ନ ଡିଜାଇନକୁ ଆଧୁନିକତାର ପୁଟ ଦେଇ ପ୍ରସ୍ତୁତି କରି ଉଚ୍ଚମାନର ବସ୍ତ୍ର ଉତ୍ପାଦନରେ ଏହାର ବ୍ୟବହାର ନିମିତ୍ତ ଏକ ସ୍ୱତଂତ୍ର ଉପବିଭାଗର ସୃଷ୍ଟି ହେଲା। ଏହି ଯୋଜନାକୁ ସଫଳ କରିବାକୁ ମୁରଲୀଧରଂକୁ ନିଯୁକ୍ତି ଦିଆଗଲା। ଯୋଜନାଟି ସଫଳ ହେଲା। ସଂବଲପୁର, ସୋନପୁର, ବରଗଡ଼, ନୂଆପାଟଣା ଆଦି ସ୍ଥାନରେ

ଥିବା ଭୁଲିଆ ଓ କୋଷ୍ଟା (ତଂତି) ମାନେ ନୂତନ ଡିଜାଇନ ଅନୁସାରେ ବସ୍ତ୍ର ପ୍ରସ୍ତୁତ କରି ଓଡ଼ିଶାର ବୟନଶିଳ୍ପର ହୃତ ଗୌରବ ଫେରାଇ ଆଣିବା ସହିତ ନିଜେ ଆର୍ଥିକ ଲାଭ ପାଇଲେ। ମୁରଲୀଧରଂକର ଅବଦାନ, ଖ୍ୟାତି ଓ ପ୍ରତିଭା ଭାରତ ସରକାରଂକର ଦୃଷ୍ଟି ଆକର୍ଷଣ କଲା। ଶିଳ୍ପ ଓ ବୟନକଳା ମଂତ୍ରଣାଳୟ ତାଂକୁ ପ୍ରଥମେ ୧୯୫୭ରେ ସହକାରୀ ନିର୍ଦ୍ଦେଶକ ଭାବରେ ନିଯୁକ୍ତି ଦେଲେ। କଲିକତା, ମାଂଦ୍ରାଜ, ବନାରସ, ଇଂଦୋରଠାରେ ଥିବା ବୁଣାକାର ସେବା କେଂଦ୍ରଗୁଡ଼ିକରେ କାର୍ଯ କରି ସେ ନିର୍ଦ୍ଦେଶକ ପାହ୍ୟାକୁ ଉନ୍ନୀତ ହେଲେ ଓ ଭୁବନେଶ୍ୱରରେ ଅବସ୍ଥାପିତ ଥାଇ ୧୯୭୫ରେ ଅବସର ନେଲେ।

ଅବସର ଗ୍ରହଣ ପରେ ସେ କଟକରେ ଶିଳ୍ପୀ ବିଭୂତି ଭୂଷଣଂକ ସହାୟତାରେ ଗୋଟିଏ ଚାରୁକଳା ମହାବିଦ୍ୟାଳୟ ସ୍ଥାପନ କରି ଏହାର ଅଧ୍ୟକ୍ଷ ହେଲେ। ବିଭୂତିଭୂଷଣଂକ ଦେହାଂତ ପରେ ରାଜ୍ୟ ସରକାର ଏହି ଅନୁଷ୍ଠାନଟିକୁ ନିଜ ହାତକୁ ନେଇ ଅନ୍ୟ ରୂପରେ ଭୁବନେଶ୍ୱରରେ ବି.କେ ଆର୍ଟ କଲେଜର ପ୍ରତିଷ୍ଠା କଲେ। ଏହି ଅନୁଷ୍ଠାନରୁ ପୃଥକ୍ ହେବାପରେ ମୁରଲୀଧର ରାଜ୍ୟରେ ଶିଶୁ ଶିକ୍ଷାରୁ ଉଚ୍ଚମାନର କଳାଶିକ୍ଷା ଦେବା ଓ ତରୁଣ ଶିଳ୍ପୀମାନଂକୁ ଆଗେଇ ନେବା ନିମିତ୍ତ 'ଚିତ୍ରାଂକନ' ନାମକ ଏକ ଅନୁଷ୍ଠାନର ପ୍ରତିଷ୍ଠା କଲେ। ଓଡ଼ିଶା ଲଳିତା କଳା ଏକାଡ଼େମୀର ଅବସରପ୍ରାପ୍ତ ସଚିବ କୁଶଳୀ କଳା ଶିଳ୍ପୀ ଜଗଦୀଶ କାନୁନଗୋଂକର ସହାୟତା ସୌଭାଗ୍ୟକ୍ରମେ ତାଂକୁ ମିଳିଗଲା। ଶିଶୁ ଶିଳ୍ପୀମାନଂକୁ ଏଠାରେ ଶିକ୍ଷା ଦିଆଗଲା। ୨୪ ଡିସେଂବର ୧୯୯୭ରେ ଭୁବନେଶ୍ୱରରେ ସେ ଅଣାଅଶୀ ବର୍ଷ ବୟସରେ ପରଲୋକ ଗମନ କଲେ।

କଳାକ୍ଷେତ୍ରକୁ ତାଂକର ଦାନ ଅସରଂତି ଓ ଅବିସ୍ମରଣୀୟ। ଓଡ଼ିଶାକୁ ଫେରି ୧୯୪୭ରେ କଟକରେ ଆୟୋଜିତ ଏକ ଚାରୁକଳା ପ୍ରଦର୍ଶନୀରେ ତାଂକର ଏକ ତୈଳଚିତ୍ର ପ୍ରଥମ ସ୍ଥାନ ଅଧିକାର କରିଥିଲା। ୧୯୬୧ରେ ତାଂକର ଜଳରଂଗର ଚିତ୍ର 'ସ୍ୱମୁଖାଂକନ' କଲିକତା ଏକାଡେମି ଅଫ୍ ଫାଇନ୍ ଆର୍ଟସ୍‌ର ନିଖିଳ ଭାରତ ପ୍ରଦର୍ଶନୀରେ ପ୍ରଥମସ୍ଥାନ ଅଧିକାର କରି ସୁବର୍ଣ ପଦକ ଲାଭ କରିଥିଲା। ସେହି ବର୍ଷ ମଧ୍ୟ ଓଡ଼ିଶା ଲଳିତ କଳା ଏକାଡେମୀ ପ୍ରଥମ ନିଖିଳ ଉତ୍କଳ ଚାରୁକଳା ପ୍ରଦର୍ଶନୀ ଆୟୋଜନ କରି ତାଂକର 'ଦୁଇ ଭଉଣୀ' ଏବଂ 'ଗାଁ ଉପକଂଠ' ନାମକ ଦୁଇଟି ଚିତ୍ରପାଇଁ ଦୁଇ ସ୍ୱର୍ଣପଦକ ଦେଇ ତାଂକୁ ସମ୍ମାନିତ କରିଥିଲେ।

କଳା କ୍ଷେତ୍ରରେ ମୁରଲୀଧରଂକର ଦକ୍ଷତାର ନମୁନା ବର୍ତମାନ ବିଭିନ୍ନ ଚିତ୍ରାଗାର ସରକାରୀ ଓ ବେସରକାରୀ ପ୍ରତିଷ୍ଠାନର ଶୋଭାବର୍ଧନ କରୁଅଛି। ତାଂକର 'ଦୁଇ ଭଉଣୀ'

ଚିତ୍ରଟି ଓଡ଼ିଶା ସରକାର ଖରିଦ କରିନେଲେ। ଏହା ବର୍ତ୍ତମାନ ରାଜଭବନରେ ପ୍ରଦର୍ଶିତ। ଭାରତ ସରକାରଙ୍କର ସିମଳାସ୍ଥିତ ରାଷ୍ଟ୍ରପତି ଭବନରେ ତାଙ୍କର କେତୋଟି ଚିତ୍ର ସ୍ଥାନ ପାଇଛି। ଭାରତର ସ୍ୱାଧୀନତା ସଂଗ୍ରାମରେ ମହାତ୍ମା ଗାଂଧିଙ୍କର ନେତୃତ୍ୱରେ ଯେଉଁ ମହାନ ବିପ୍ଳବ ହେଲା ସେଥିର ଚଉଦଗୋଟି ବିରାଟ ତୈଳଚିତ୍ର ଅଦ୍ୟାବଧି କଟକସ୍ଥିତ ବାରବାଟି ଷ୍ଟାଡିୟମର କ୍ଲବ ହାଉସରେ ପ୍ରଦର୍ଶିତ ହେଉଅଛି। ଶିଳ୍ପୀଙ୍କ ଦ୍ୱାରା ଅଂକିତ ଓଡ଼ିଶାର ପ୍ରତିଷ୍ଠିତ ବ୍ୟକ୍ତିମାନଂକର ତୈଳଚିତ୍ର ରାଜ୍ୟ ସୂଚନା ଭବନରେ ସଂରକ୍ଷିତ। ଓଡ଼ିଶାର ଆଦିବାସୀ ଜନଜୀବନ ଓ ଜଗତଗୁରୁ ଶଂକରାଚାର୍ଯ୍ୟଂକ ଉପରେ କେତେକ ତୈଳଚିତ୍ର 'ଇମ୍‌ଫା' ଦ୍ୱାରା କାଲେଂଡର ଭାବରେ ମୁଦ୍ରିତ ହୋଇ ଓଡ଼ିଶାରେ ପ୍ରସାରିତ ଓ ସର୍ବଜନ ଆଦୃତ ହୋଇପାରିଅଛି। କେଂଦ୍ର ଲଳିତକଳା ଏକାଡେମୀ, ଯୁଗୋସ୍ଲୋଭିଆ ସରକାରୀ ଭବନ ପ୍ରଭୃତି ବିଭିନ୍ନ ଦେଶ ବିଦେଶରେ ଥିବା ଶିଳ୍ପୀଂକ ଅସଂଖ୍ୟ କଳାକୃତି ଲୋକାଦୃତ। ଓଡ଼ିଶାର ରାଜ୍ୟ ସଂଗ୍ରହାଳୟ, ଓଡ଼ିଶା ଲଳିତକଳା ଏକାଡେମୀ ଚିତ୍ରାଗାର, ସାହିତ୍ୟ ଏକାଡେମୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଭୃତ୍ତି ଅନୁଷ୍ଠାନ ମାନଂକରେ ତାଂକର କୃତିଗୁଡ଼ିକ ସଂରକ୍ଷିତ ହୋଇଛି।

ମୁରଲୀଧର ନିଜ ଜୀବଦ୍ଦଶାରେ ନାନା ପ୍ରକାରେ ସମ୍ମାନିତ ହୋଇଅଛଂତି। ଚାରୁକଳା କ୍ଷେତ୍ରରେ ସର୍ବଶ୍ରେଷ୍ଠ 'ଧର୍ମପଦ' ୧୯୯୨ରେ ଓଡ଼ିଶା ଲଳିତକଳା ଏକାଡେମୀ ତରଫରୁ ତାଂକୁ ପ୍ରଦତ୍ତ କରାଯାଇଅଛି। ଏହି ସମ୍ମାନ ତାଂକର ସାମଗ୍ରିକ କୃତି ଓ ଜୀବନର କାର୍ଯ୍ୟାବଳି ଉପରେ ଆଧାରିତ। ଏଥିପାଇଁ ତାମ୍ରଫଳକ ଅଂଗବସ୍ତ୍ର ସହିତ ନଗଦ ପଚିଶ ହଜାର ଟଂକା ତାଂକୁ ଏକାଡେମୀ ତରଫରୁ ଏକ ସ୍ୱତଂତ୍ର ରାଜ୍ୟସ୍ତରୀୟ ଉତ୍ସବରେ ଦିଆଯାଇଛି। ରାଜ୍ୟ ସରକାରଂକ ଦ୍ୱାରା ମନୋନୀତ ହୋଇ ସେ ୧୯୭୮ ରୁ ୧୯୮୧ ପର୍ଯ୍ୟଂତ ଓଡ଼ିଶା ଲଳିତ କଳା ଏକାଡେମୀର ଉପସଭାପତି ଭାବେ ଏକ ଗୁରୁଦାୟିତ୍ୱ ତୁଲାଇ ଥିଲେ। ବ୍ରହ୍ମପୁର ସଂବଲପୁର ଓ ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଶା ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ, ଖଲିକୋଟ ଚାରୁକଳା ମହାବିଦ୍ୟାଳୟ ଆଦି ବହୁ ଅନୁଷ୍ଠାନ ସହିତ ସେ ନିଜ ପ୍ରତିଭାବଳରେ ସଂପୃକ୍ତ ଥିଲେ ଓ ତାଂକର ମୂଲ୍ୟବାନ ପରାମର୍ଶ ଏହି ସଂସ୍ଥାମାନେ ନିର୍ବିଚାରରେ ଗ୍ରହଣ କରୁଥିଲେ। ସର୍ବଭାରତୀୟ କଳା କ୍ଷେତ୍ରରେ ତାଂକର ଅବଦାନ ଓ ଓଡ଼ିଶାର କଳା ସଂସ୍କୃତିର ଜଣେ ଦିଗଦ୍ରଷ୍ଟା ଭାବରେ ୧୯୭୯ରେ ସଂବଲପୁର ବିଶ୍ୱବିଦ୍ୟାଳୟ ତାଂକୁ ସମ୍ମାନ ସୂଚକ ଡି.ଲିଟ ଉପାଧି ପ୍ରଦାନ କରି ସମ୍ମାନିତ କରିଅଛଂତି। ଓଡ଼ିଶାରେ ଚାରୁକଳା କ୍ଷେତ୍ରରେ ଏହି ଗୌରବ ଅର୍ଜନ କରିବାରେ ସେ ସର୍ବପ୍ରଥମ।

୧୯୭୯ ମାର୍ଚ୍ଚ ୧୭ ତାରିଖରେ ବିଶ୍ୱବିଦ୍ୟାଳୟର ୧୨ଶ ସମାବର୍ତ୍ତନ ଉତ୍ସବରେ ବିଜୁପଟ୍ଟନାୟକ, ଭୁବନେଶ୍ୱର ବେହେରାଂକ ସହିତ ତାଂକୁ ସମ୍ମାନିତ କରାଯାଇଥିଲା। ଦେଶର

କଳା ସଂସ୍କୃତି ଓ ଶିକ୍ଷା କ୍ଷେତ୍ରରେ ବିଶେଷ ଅବଦାନର ଅବତାରଣା କରାଯାଇ ତାଂକୁ ଏହି ସମ୍ମାନରେ ଭୂଷିତ କରାଯାଇଥିଲା। ୧୯୭୦ରେ ସଂବଲପୁରର ଓଡ଼ିଶା ସାଂସ୍କୃତିକ ସମାଜ, ୧୯୭୩ରେ ଓଡ଼ିଶା ଲଳିତ କଳା ଏକାଡେମୀ, ୧୯୭୮ରେ ଓଡ଼ିଶା ରାଜ୍ୟ ଶିକ୍ଷାବିଭାଗ, ୧୯୭୯ରେ ସଂବଲପୁର କଳାପରିଷଦ, ୧୯୮୧ରେ ନୟାଗଡ଼ ଯଦୁମଣି ସାହିତ୍ୟ ସଂସଦ ଓ କଟକ ଜିଲ୍ଲା ଝଂକଡ଼ସ୍ଥିତ ଶାରଳା ସ୍ମାରକ, ୧୯୮୨ରେ ରଜତ ଜୟଂତୀ ଉପଲକ୍ଷେ ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୮୪ରେ ଇମ୍‌ଫା ଶିଳ୍ପଗୋଷ୍ଠୀ ପକ୍ଷରୁ ଶାରଳା ପୁରସ୍କାର, ୧୯୮୯ରେ ପ୍ରଜାତଂତ୍ର ପ୍ରଚାର ସମିତି ପକ୍ଷରୁ ବିଷୁବ ମିଳନ ଅବସରରେ ପ୍ରଜାତଂତ୍ର କଳାପୁରସ୍କାର, ୧୯୯୦ରେ ଭୁବନେଶ୍ୱର ଜନନୀ ସେବାସଦନର ଜ୍ଞାନ ପଲ୍ଲବୀ ପୁରସ୍କାର, ୧୯୮୯ରେ ଓଡ଼ିଶା ରାଜ୍ୟ ସଂସ୍କୃତି ପରିଷଦ ପକ୍ଷରୁ ରାଜ୍ୟପାଳଂକ ସମ୍ମାନ ବ୍ୟତୀତ ବହୁ ଅନୁଷ୍ଠାନ ତାଂକର କଳାକ୍ଷେତ୍ରରେ ବିଶେଷ ଅବଦାନ ନିମିତ୍ତ ତାଂକୁ ସମ୍ମାନିତ କରିଅଛଂତି। ଜୀବନରେ କର୍ମମୟ ଚଲାପଥର ଜଣେ ପଥିକ ଭାବରେ ସେ କେଉଁଠି ଅଟକି ନ ଥିଲେ। ଦୈନଂଦିନ ଜୀବନରେ ସେ କଳାକୁ ନିଜର ସାଥୀଭାବେ ଗ୍ରହଣ କରିଥିଲେ। ଅସଂଖ୍ୟ ଚିତ୍ର ସେ ସୃଷ୍ଟିକରି ଯାଇଛଂତି। କଳାପ୍ରାଣ ଡକ୍‌ଟର ଟାଲିଂକର ଦୃଷ୍ଟିଭଂଗୀ ବ୍ୟାପକ ଓ ଉଦାର। ସମସ୍ତଂକ ପାଇଁ ଆଦର ଥିବା ଛବି ପ୍ରକୃତ ଛବି ଏହା ତାଂକର ବିଶ୍ୱାସ ଥିଲା। ପାରଂପାରିକ କଳାରେ ଶ୍ରଦ୍ଧାଳୁ ଥାଇ ସେ ଭାରତ ବିଖ୍ୟାତ ଶିଳ୍ପୀ ଓ ପାଶ୍ଚାତ୍ୟ ଶିଳ୍ପୀଂକର କଳାସାଧନାକୁ ଯଥେଷ୍ଟ ସମ୍ମାନ ଦେଖାଇ ନିଜକୁ ପ୍ରଭାବିତ ଓ ଅନୁପ୍ରାଣିତ କରି ରଖିଥିଲେ।

ତାଂକର ଅବିସ୍ମରଣୀୟ ପ୍ରତିଭା ଦେଶରେ ବୃହତ୍ତର ଜନସମାଜର ଦୃଷ୍ଟିକୁ ଆସି ପାରିଲା ନାହିଁ। ଏହା ଏକ ଦୁର୍ଭାଗ୍ୟ।



| | |
|---|---|
| ଅସତ୍ୟବାଦୀ ନିଷ୍ଠାହୀନ। | ନାସ୍ତିକକ୍ରୋଧ ହତଜ୍ଞାନ |
| ବିରୋଧ ବାକ୍ୟ କୁବଚନ। | କଂଦଳ ଆଚାର ଲଂଘନ |
| ପରହିଂସନ ପରବାଦ। | ପରରମଣୀ ଧନେ ସଧ |
| ନୀଚ ଜନର ଏ ସ୍ୱଭାବ। | ସାମାନ୍ୟେ ଶୁଣ ହେ ଉଦ୍ଧବ |

—ଭାଗବତ



## ବାଂଧକଳା ଶିଳ୍ପୀ

# ପଦ୍ମଶ୍ରୀ ଯଦୁନାଥ ସୂପକାର

କର୍ତବ୍ୟନିଷ୍ଠା, ଉଚ୍ଚାଭିଳାଷ, କଠିନ ଅଧ୍ୟବସାୟ ବଳରେ ଜଣେ ଦକ୍ଷ ଓ ଉତ୍ସର୍ଗୀକୃତ କଳାକାର ସାଧାରଣ ପରିବେଶରୁ ଉଠି ଭାରତବର୍ଷରେ ନିଜର ପ୍ରତିଷ୍ଠା ଅର୍ଜନ କରିବା ଓ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ ହେବାରେ ଯଦୁନାଥ ସୂପକାର ଏକ ଅନନ୍ୟ ପ୍ରତିଭା।

ସଂବଲପୁର ସହରର ଝାଡୁଆପଡ଼ାରେ ୧୯୩୧ରେ ଯଦୁନାଥଙ୍କର ଜନ୍ମ। ତାଂକର ପିତା ଦୁର୍ଗାମାଧବ ମଧ୍ୟ ଜଣେ ପରିଚିତ ଚିତ୍ରଶିଳ୍ପୀ ଥିଲେ। ପରିବାରର ପରିବେଶରେ କଳାର ଆଦର ଥିଲା। ତେଣୁ ପିଲାଦିନୁ ସେ ରଂଗ ଓ ତୁଳି ପ୍ରତି ଆକୃଷ୍ଟ ହେଲେ। ପାଠପଢ଼ା ସାଂଗରେ ନିଜ ସାଂଗସାଥୀମାନଂକର ଚିତ୍ର ଆଂକି ସେ ସେମାନଂକର ମନ ମୁଗ୍ଧ କରୁଥିଲେ। ଚିତ୍ରକାର ଭାବରେ ସେ ପ୍ରତିଷ୍ଠିତ ହେବେ ଏହା ସହଜରେ ସେହି ସମୟରୁ ଅନୁମାନ କରି ହେଉଥିଲା। ଯଦୁନାଥ ଆଇ.ଏ. ପାସ୍ କରି କଳା ଶିକ୍ଷା କରିବାକୁ ଶାଂତିନିକେତନ ଗଲେ। ସେଠାରେ ଚାରି ବର୍ଷ ରହି ଚାରୁକଳା ଅଧ୍ୟୟନ କଲେ। ବିଶ୍ୱଭାରତୀର କଳାଭବନରୁ ଶିକ୍ଷା ଶେଷରେ ଆଉ ଏକ ବର୍ଷ ସେ ଚିତ୍ରକଳା ଶିକ୍ଷା କରି ସେଥିରେ ଡିପ୍ଲୋମା ମଧ୍ୟ ଲାଭ କଲେ। କୃତୀ ଚିତ୍ର ଶିଳ୍ପୀ ଭାବରେ ସେ ଛାତ୍ର ଜୀବନ

ଶେଷ କଲେ। ସଂବଲପୁରରେ ଜନ୍ମିତ ଶିଳ୍ପୀଂକର ବାଲ୍ୟକାଳରୁ ସ୍ଥାନୀୟ ଲୋକକଳା ଓ ବୟନ ଶିଳ୍ପରେ ଆଗ୍ରହ ଯୋଗୁଁ ଏହା ତାଂକ ପରବର୍ତ୍ତୀ ଜୀବନକୁ ପ୍ରଭାବିତ କଲା। ସଂବଲପୁର ଫେରିଆସି ସେ ସେଠାରେ ବାଂଧକଳା ବିଷୟରେ ବିଶେଷ ଅଧ୍ୟୟନ କରିବାକୁ ଆଗ୍ରହୀ ହେଲେ। ସୋନପୁର ବାଂଧକଳାର ମୁଖ୍ୟକେଂଦ୍ର। ସେ ଚାରିବର୍ଷ କାଳ ସେଠାରେ ରହି ଏହା ଅଧ୍ୟୟନ କଲେ। ବାଂଧକଳାରେ ତାଂକର ଦକ୍ଷତା ଦେଖି ତାଂକୁ ଓଡ଼ିଶା ସରକାରଂକର ସୋନପୁରସ୍ଥିତ 'ୱିଭିଂ ଫେକ୍ଟ୍ରି'ରେ ବୟନ ଶିଳ୍ପ ବିଭାଗରେ ପାଟଂର୍ନ ମେକିଂ ସୁପରିଟେଂଡ ପଦରେ ନିଯୁକ୍ତି ମିଳିଲା। ଚାକିରିରେ ତାଂକୁ ଆତ୍ମ ସଂତୋଷ ମିଳିଲାନାହିଁ। ନିଜର ଅଂତର୍ନିହିତ କଳା ପ୍ରତିଭାର ବିକାଶରେ ଏହା ସହାୟକ ହେବ ନାହିଁ ବୋଲି ସେ ଅନୁଭବ କଲେ। ଯଦୁନାଥଂକ ଚିତ୍ରରେ ଭରିରହିଥିଲା ପାରଂପରିକ ଚିତ୍ରର ଅଫୁରଂତ ମଂଡନ କଳା। ଭାରତୀୟ ଚିତ୍ରକଳା ପଦ୍ଧତିରେ ଚିତ୍ରାଂକନ କରି କଳାରସିକମାନଂକୁ ସେ ଉଦ୍‌ବୁଦ୍ଧ କରିପାରୁଥିଲେ। ତାଂକର ବହୁଚିତ୍ରରେ ଓଡ଼ିଶାର ପାରଂପରିକ କଳାର ପ୍ରଭାବ ପରିଲକ୍ଷିତ ହୁଏ। ଅନ୍ୟଆଡ଼େ ରୋଜଗାର ସୁଯୋଗ ଖୋଜିବା ଅବସରରେ ୧୯୫୨ରେ ତାଂକୁ ନିଖିଳ ଭାରତ ହସ୍ତତଂତ ବୋର୍ଡରେ ଡିଜାଇନର୍ ଭାବରେ ଚାକିରି ମିଳିଗଲା। ସେ ମାଂଦ୍ରାଜର ବୁଣାକାର ସେବା କେଂଦ୍ରରେ ଯୋଗଦେଲେ। ସେହି ପଦବିରେ ଥାଇ ବୟନ ଶିଳ୍ପର ଧାରା, କାରୁକାର୍ଯ୍ୟର ତୁଳନାତ୍ମକ ବିଶେଷତ୍ୱ ଅନୁଶୀଳନ କରିବାରେ ତାଂକୁ ବିଶେଷ ସୁବିଧା ସୁଯୋଗ ମିଳିଲା ଓ ଏହାର ସେ ସଂପୂର୍ଣ ଉପଯୋଗ କଲେ। ୧୯୫୯ରେ ତାଂକୁ ବନାରସରେ ନିଯୁକ୍ତି ମିଳିଲା।

ବାରାଣସୀରେ ତାଂକ କଳା ପ୍ରତିଭା ବିଶେଷ ଭାବରେ ବିକଶିତ ଓ ପ୍ରଶଂସିତ ହେଲା। ବନାରସର ଜନଜୀବନ ସହିତ ସେ ଓତପ୍ରୋତ ଭାବରେ ଜଡିତ ହୋଇଯାଇଥିଲେ। ସ୍ଥାନୀୟ କଳାକାର ତାଂକୁ ସେଠାକାର ଶିଳ୍ପୀ ଓ ଜଣେ ସାଧାରଣ ନାଗରିକ ଭାବେ ଗ୍ରହଣ କରିନେଲେ। ବନାରସ 'ୱାର୍କିଂ ଆଟିଷ୍ଟ ଏସୋସିଏସନ୍'ର ସେ ଜଣେ ମୁଖ୍ୟ କର୍ମକର୍ତା ଥିଲେ। ସେ ଅନୁଭବ କଲେ ସୂତାରେ ଓଡ଼ିଶାରେ କଳା ପ୍ରଦର୍ଶନ ହେଉଛି। ରେସମ ଶିଳ୍ପରେ ମଧ୍ୟ ଏହା କରାଯାଇ ପାରିବ। ଚିତ୍ରକଳା ତାଂକ ଜୀବନର ବ୍ରତ ଥିଲା। ଏହାକୁ ସେ ରେସମ ଶିଳ୍ପରେ ବ୍ୟବହାର କରିବାକୁ ଆଗ୍ରହୀ ହେଲେ। ସେ ନିଜେ ଚିତ୍ରକଳା ଡିଜାଇନ କଲେ। ତାଂକର ଚିତ୍ର ଓ ଡିଜାଇନରେ ସେ ଦୁର୍ଲଭ ସୂକ୍ଷ୍ମାତିସୂକ୍ଷ୍ମ କାର୍ଯଦେଖାଇ ଛଂତି। ବନାରସୀ ଶାଢ଼ିରେ ଏହି ଡିଜାଇନମାନ ପ୍ରୟୋଗ କଲେ। ଏହା ଲୋକପ୍ରିୟ ହେଲା। ସେଇ ନୂଆଡିଜାଇନର ଶାଢ଼ିମାନଂକର ଚାହିଦା ଦେଶ ବିଦେଶରେ ବଢିଗଲା। ଶାଢ଼ିର ସୁଖ୍ୟାତି ମଧ୍ୟ ବଢ଼ିଚାଲିଲା। ସ୍ୱାଧୀନତା ପ୍ରାପ୍ତିପରେ ବୟନ ଶିଳ୍ପ ନିଜସ୍ୱ କଳା କାରିଗରି ହରାଇ ନିଃସ୍ୱ ହୋଇଯାଇଥିଲା। ବର୍ତମାନ ଏହି ବୟନ ଶିଳ୍ପର ରୂପରେଖ ବଦଳିଗଲା।

ବୁଣାକାରମାନଂକର କଳା ପ୍ରତି ସମସ୍ତଂକର ଦୃଷ୍ଟି ପଡ଼ିଲା ଓ ସେମାନଂକର ଶ୍ରମ ମର୍ଯାଦା ବଢ଼ିଗଲା । ଭାରତ ସରକାରଂକର ଅନୁଦାନରେ ନିଖିଳ ଭାରତ ବୁଣାକାର ସଂଘ ଗଠିତ ହେଲା । ଏହାର ସହ ନିର୍ଦ୍ଦେଶକ ଭାବରେ ଯଦୁନାଥ ନିଯୁକ୍ତି ପାଇଲେ । ବୁଣାକାର ଓ ବୁଣାକାର ସଂଘର ଉନ୍ନତି ନିମିତ୍ତ ସେ ମନପ୍ରାଣ ଦେଇ ଉଦ୍ୟମ କଲେ । ବନାରସୀ ଶାଢ଼ିରେ ନାନା ପ୍ରକାରର ନୂଆ ଡିଜାଇନ୍ ଦେଇ ସେ ତିଆରି କରାଇଲେ । ଦେଶ ବିଦେଶରେ ଚାହିଦା ଆଶାତୀତ ଭାବରେ ବୃଦ୍ଧି ପାଇଲା । ନୂଆ ଡିଜାଇନ୍‌ରେ ବନାରସୀ ଶାଢ଼ିର ନିଉୟର୍କ, ଲଂଡନ, ପାରିସ ଆଦି ଆଂତର୍ଜାତିକ ସହରରେ ପ୍ରଦର୍ଶନୀ ଆୟୋଜିତ ହେଲା । ଯଦୁନାଥଂକର ସୃଜନୀ ପ୍ରତିଭାର ଆଦର ତାଂକ ପାଇଁ ଚାରିଆଡୁ ସମ୍ମାନ ଆଣିଦେଲା । ୧୯୮୫ରେ ତାଂକର ଗୌରବମୟ କଳାକୃତି ପାଇ ଭାରତ ସରକାର ତାଂକୁ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ କଲେ । ନିଖିଳ ଓଡ଼ିଶା ଚିତ୍ରକଳା ପ୍ରଦର୍ଶନୀରେ ୧୯୬୧ରେ ତାଂକର ଚିତ୍ରକଳା 'ଋତୁରାଜର ସଂଦେଶ' ପ୍ରଦର୍ଶିତ ହୋଇଥିଲା ଓ ଏଥିପାଇଁ ତାଂକୁ ଓଡ଼ିଶା ଲଳିତକଳା ଏକାଡେମୀ ପକ୍ଷରୁ ସ୍ୱର୍ଣପଦକ ପ୍ରଦାନ କରାଯାଇଥିଲା । ଓଡ଼ିଶା ବାହାରେ ମଧ୍ୟ ଅନେକ ପ୍ରଦର୍ଶନରେ ସେ ନିଜ ଚିତ୍ର କଳା ଓ ଡିଜାଇନ୍ ନିମିତ୍ତ ସଂବର୍ଧିତ ହୋଇ ଅଛଂତି ।

ଦକ୍ଷ ଚିତ୍ରକାର ଓ ଶିଳ୍ପୀ ବ୍ୟତୀତ ଯଦୁନାଥ ଜଣେ ସଂଗୀତଜ୍ଞ ଭାବରେ ପ୍ରଶଂସା ପାଇଥିଲେ । ତବଲା ବାଦକ ଭାବରେ ତାଂକର ଖ୍ୟାତି ଥିଲା । ସଂବଲପୁରରେ ହୀରାଖଂଡ ସଂଗୀତ ଅନୁଷ୍ଠାନରେ ଓ ପରେ ବନାରସରେ ଦଶବର୍ଷକାଳ ବିଶିଷ୍ଟ ତବଲାଗୁରୁ କଂଠେ ମହାରାଜାଂକଠାରୁ ସେ ତବଲା ବାଦନ ଶିକ୍ଷା କରିଥିଲେ । ଆକାଶବାଣୀର କଳାକାର ଭାବରେ ସେ ତବଲା ବାଦନ କାର୍ଯକ୍ରମରେ ଅଂଶ ଗ୍ରହଣ କରି ଦର୍ଶକମାନଂକୁ ଆମୋଦିତ କରୁଥିଲେ । ନିଜର ସାଂସ୍କୃତିକ ପରଂପରାକୁ ଅକ୍ଷୁର୍ଣ ରଖି ପ୍ରାଚୀନ କଳାର ପୁନରୁଦ୍ଧାର ଓ ନୂତନ ଜୀବନ ସଂଚାର କରି ଯଦୁନାଥ ଦେଶ ଓ ଜାତିର ମର୍ଯାଦା ରକ୍ଷା କରିଅଛଂତି । ୧୯୭୯ରେ ତାଂକର ସୃଜନାତ୍ମକ କର୍ମ ଜୀବନର ଅବସାନ ଘଟେ । ଓଡ଼ିଶାର ବାଂଧ ବୟନ କଳାକୁ ବିଶ୍ୱରେ ଅମର କରି ସେ ଆମର ସ୍ମରଣୀୟ ହୋଇଛଂତି ।



ବନାରସ ଶାଢ଼ିର ଲୋକପ୍ରିୟ ଡିଜାଇନ୍‌ର ନମୁନା



# କବି
# ବିନୋଦ ନାୟକ

ଓଡ଼ିଆ ସାହିତ୍ୟ ଆକାଶର ଏକ ଉଜ୍ଜ୍ୱଳ ତାରକା ଭାବରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କୃତ କବି ବିନୋଦଚଂଦ୍ର ନାୟକ ପ୍ରତିଷ୍ଠା ଅର୍ଜନ କରିଥିଲେ। ଓଡ଼ିଆ କବିତାରେ ଗଦ୍ୟଛଂଦର ସେ ଅନ୍ୟତମ ପ୍ରବର୍ତ୍ତକ। ଆଧୁନିକ ଓଡ଼ିଆ କବିତାକୁ ରସାଳ ଋଦ୍ଧିମଂତ ଓ ପ୍ରତିଷ୍ଠିତ କରିବାରେ ତାଂକ ଅବଦାନ ସ୍ମରଣୀୟ। ୧୯୧୫ରେ ସୁଂଦରଗଡ଼ ଜିଲ୍ଲାର ତେଲିପାଲି ଗ୍ରାମରେ ତାଂକର ଜନ୍ମ। ସୁଂଦରଗଡ଼ ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରି ସେ ରେଭେନ୍ସା କଲେଜରୁ ବି.ଏ. ପାସ୍ କଲେ। ପ୍ରଥମେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ରେଭେନ୍ସା କଲେଜରୁ ଇଂରେଜୀରେ ଏମ୍.ଏ ପାସ୍ କଲେ। ଉତ୍କଳ ବିଶ୍ୱବିଦ୍ୟାଳୟ ଗଠନ ପରେ ସେ ଓଡ଼ିଆରେ ସ୍ନାତକୋତ୍ତର ଉପାଧି ଲାଭ କଲେ। କିଛିଦିନ ସରକାରଂକର ଅନ୍ୟ ବିଭାଗରେ କାମ କଲେ। ତାଂକ କାବ୍ୟିକ ମନକୁ ଏହା ପାଇଲା ନାହିଁ। ସରକାରୀ ଚାକିରି ଛାଡ଼ି ଯାଜପୁର ନୃସିଂହ ଚଉଧୁରୀ କଲେଜର ଅଧ୍ୟାପକ ହେଲେ। ପରବର୍ତ୍ତୀ କାଳରେ ଦୀର୍ଘଦିନ ଧରି ସେ ଓଡ଼ିଶାର ବିଭିନ୍ନ କଲେଜରେ ଅଧ୍ୟାପନା ଦାୟିତ୍ୱ ତୁଲାଇ ଅଛଂତି। ବୃତ୍ତି ତାଂକର ବିଭିନ୍ନ କଲେଜରେ ଭାଷା ଓ ସାହିତ୍ୟ ଅଧ୍ୟାପନା। ମାତ୍ର କବିତା ଲେଖା

ତାଂକର ପ୍ରଧାନ ନିଶା ଥିଲା। ଗ୍ରାମ୍ୟ ଜୀବନର ମନୋଜ୍ଞ ତଥା ଜୀବଂତ ଚିତ୍ର ବର୍ଣନାରେ ସେ ସିଦ୍ଧହସ୍ତ ଥିଲେ। ପୁଣି ଜଣେ ରୋମାଂଟିକ୍ କବି ଭାବରେ ମଧ୍ୟ ସେ ପ୍ରତିଷ୍ଠା ଅର୍ଜନ କରିପାରିଥିଲେ। ତାଂକ କାବ୍ୟ ଚେତନାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର କଳାବୋଧ ଓ ଜୀବନ ଦୃଷ୍ଟି ଅତି ସଫଳତାର ସହିତ ପ୍ରତିଫଳିତ ହୋଇଛି। କେତୋଟି ଉଦାହରଣ ନିଆଯାଇପାରେ।

"ହେ ଦେବୀ !
ଜୀବନ ନଦୀ ମୋର
ବହଳଛଳଛଳ
ଗାଥ କଳକଳ
ଦୂର ପଶ୍ଚାତେ ପଡ଼ି ରହିଲାଣି
ଢାଲୁ ଜମି ଆଗେ ସମତଳ
ହେ ମୋର ଜୀବନ ନଦୀଗୋ
ହେ ମୋରଅନୁରାଧା
କଂଠେ ତୋ ଫୁଟୁ ଛଂଦେ ସଖିରେ
ମାଳଶ୍ରୀ ତାଳ ଅବିରଳ।

(ସାଗରସଂଗମ କବିତାରୁ)

ସଖି ମୁହିଁ ଯେ ଆକାଶ ବିଳାସୀ
ଦୂର ତାରା ସଂଚିତ ଅୟନେ,
ବସି ଲେଖେଁ ମୁଁ ମାଟିର କବିତା
ରୂପ ବିଳାସେ ମେଘର ଶୟନେ।
କେବେ ଇଂଦ୍ରଧନୁର ଉରସେ
ଯାଏଁ ଉଡ଼ି ମୁଁ ପୁଲକରଭସେ,
କେବେ ବଜାଏ ବିଧୁର ମୁରଲୀ
ରଖି ଅଳସ ସପନ ନୟନେ।
ସଖି କି ହେବ ମାଟିର ଦୀପାଳି
ଜାଳି ତୋହରି ସଂଧ୍ୟା କୁଟୀରେ
ପୋଛ ନୟନ ଲୋତକ ରାଧିକା
ସାଥି ଶୟନୁ ମୁଁ ନେଲି ଲୁଟିରେ।

ତୋର ଶସ୍ୟ ଶୋଭନା ଧରଣୀ
　　　　　ମୁଁ ତ ସାରୁଛି ସାରିଛି ସଜନି
ଯିବି ଜ୍ୟୋତି ବଲ୍ଲରୀ ବିତାନେ
　　　　　ମୋତେ ଡାକେ ଅପସରା ନଟୀରେ।
ସଖି ରଖ ନୀଳମାୟା ବେଣୀର
　　　　　ଓଠ ରଂଗ ଲେପରେ ରସନା
ବନ ଗଂଧ କୁସୁମେ ଆଜିର
　　　　　ବାହୁବଂଧ କରନା ରଚନା
କରି ମଂଜିର ରବେ ରଣିତ
　　　　　ଛାୟା ପଥେ ଦେଖ ଆହା ମିଳିତ
କେଉଁ କିନ୍ନରୀ ପ୍ରୀତି ମଗ୍ନା
　　　　　ଉଦଭ୍ରାଂତା ଦିକ ବସନା।
ମୁଁ ଗୋ ସଂତରି ନଭ ନୀଳରେ
　　　　　ରଚି ରସର ପରିଧି ନୃତ୍ୟ
ତାର ଭୁଜ ବଲ୍ଲରୀ ବଂଧେ
　　　　　ପୀନ ଭରଜରେ ହେବି ଲୁପ୍ତ
ତାରେ ରମଣରେ କରିଅଧିରା
　　　　　ନେବି ଓଠରୁ ଚିପୁଡ଼ି ମଦିରା
ମୁହିଁ ମଚୁଆଳୀ ହୋଇ ସଘନେ
　　　　　ଘନ ଜଘନେ ରହିବି ସୁପ୍ତ

(‘ଆକାଶର କବିତା’ରୁ)

‘‘ହୋମାଗ୍ନିର ପରିବେଶ
　　　　　ତିଳ ଓ କାଂଚନ। କର୍ପୂର ଚଂଦନ
　　　　　ଆଉ ଶଂଖ ମଂଦିରାର – ସକାଳର ଚିହ୍ନ।
　　　　　ରୁଦ୍ରାକ୍ଷ ମାଳାର ସମ
　　　　　ଘୁରି ଘୁରି ସମାପିତ
　　　　　ତୁମ ଜନ୍ମଦିନ।
ଅନେକ ଫସଲ କ୍ଷେତେ ଅନେକ ସୁବର୍ଣ୍ଣ
　　　　　ହରିଦ୍ର ମେଘ ପାଗୋଡ଼ା ରୌଦ୍ରେ ସପ୍ତବର୍ଣ୍ଣ

ମାଣିକ୍ୟ ପ୍ରଦୀପ ଜାଳେ ସପ୍ତପର୍ଣ୍ଣା ପର୍ଣେ
ନୂତନ ସକାଳ ଆସେ
ଗଂଧେ ଗାନେ ବର୍ଣେ,
ଆଲୋକ ଲହଡ଼ି ଛୁଟେ ଉତ୍ତରେ ଦକ୍ଷିଣେ
ତୁମ ଜନ୍ମଦିନେ ।
''କୌଣସି ବାଂଧବୀର ଜନ୍ମଦିନେ''ରୁ ।

ରାଜ୍ୟର ସମକାଳୀନ କବିମାନଂକର ରଚନାମଧ୍ୟରୁ ଯେଉଁ କେତୋଟି କବିତା ଓଡ଼ିଶାର ସାଧାରଣ ଜନ ମାନସକୁ ଛୁଇଁ ପାରିଛି ତାହା ମଧ୍ୟରେ ବିନୋଦ ଚଂଦ୍ରଂକର 'ଗ୍ରାମ୍ୟପଥ କବିତା' ଅନନ୍ୟ ।

ଏଥିରେ ଅଛି :-

(୧)

''ଦୂରେ ତାଳବଣ ଆକାଶେ ଶୁଣାଏ
ମାଟିର କବିତା କିସେ
ଏ ଗ୍ରାମର ପଥ ତହିଁ ଦିଗଂତେ ମିଶେ
କ୍ଷେତ୍ର ପରେ କ୍ଷେତ କାଶଫୁଲ ଆଉ
ବେଣାରେ ଜଟିଳ ପାଟ
ପାଟ ପରେ ବଣ
ବଣ ପାରି ହେଲେ
ମାମୁଁ ଘର ଗାଆଁ ଦିଶେ ।

(୨)

ପଥର ଏପାଖେ ବୁଣା ହରଡ଼ ଓ ବୁଟ
ଆଗରେ ଚାରଣ ପଡ଼ିଆ, ଗୋରୁର ଗୋଠ
ଶିମୁଳି ଶାଖାରେ ବାହୁନେ କପୋତୀ
ଉଠ୍ ପୁତ ଉଠ୍
ଉଠ ପୁରିଲାଣି ମାଣ
ଏ ପାଖେ କଇଁର ପୋଖରୀ
ଗାଧୁଆ ତୁଠ ।

(୩)

ଭୁଆଶୁଣି ମାଜେ ପାଦର ପାହୁଡ଼ ଏଥି
ମୁକୁଳା ବେଣୀରେ ପଖାଳେ ଦେଇଣ ମେଥି
ନଣଂଦିନୀ ତାର ଅଧିକ ଚତୁରୀ
ଗାଲରେ ହଳଦୀ ମାଖେ
ହଲିଲା ପାଣିରେ ମୁହଁର ଛାଇଟି ଦେଖେ ।

(୪)

ପୋଇ ଶାଗ ଆଉ ପାଣି କଖାରୁର ଲତା
ମାଡ଼ି ମାଡ଼ି ଆସି ଛୁଇଁଲାଣି ଘରମଥା ।
ସଜନାର ଶାଖୁ ଝରିପଡ଼େ କେତେ
ଧୂଳି ଶେଯେ କଷି ଫୁଲ
ବାଡ଼ ଦେହେ ପୁଣି ଅପରାଜିତାର ଛଟା ।

(୫)

ସେଇପଥେ ଫେରେ ଗ୍ରାମ ବଧୂ
ସାରି ସକାଳ ସ୍ନାହାନ ଏକା
ଧୂଳିରେ ଆଂକି ସଜଳ ଚରଣ ରେଖା
ମାଆ ବୋଲି ଥରେ ଡାକିବାକୁ ପ୍ରାଣଲୋଡ଼େ
ପୃଥିବୀର ସମ ସହନଶୀଳ ସେ ଅସୀମ କରୁଣାବତୀ
ନୟନେ ଶତେକ ଯୁଗର ବେଦନା ଲେଖା ।

(୬)

ଏ ପଥେ ଗ୍ରାମର ତରୁଣ ବିଦେଶ ଯାଏ
ଲେଉଟା ପଥକୁ ନୂତନା ଘରଣୀ
ଆକୁଳେ ଅନାଇ ଥାଏ
କି ବାରତା ତାରେ ଆଣେ କିଏ ଜାଣେ
ଅଧାର ଲୋଭୀ ଏ କାକ
ଏ ଗ୍ରାମ ଦେବତା ସେ ବ୍ୟଥାବୁଝେ କି ହାୟ ।

(୭)

ଏ ପଥରେ ଗ୍ରାମେ ପ୍ରବେଶ ହୁଅଇ ବଧୂ
ବିତରି ବୁକୁର ମମତା ମୁଖର ମଧୁ,
ପୁଅ ଝିଅ ନାତି ନାତୁଣୀରେ ରଖି
ମଶାଣି ଏ ପଥେ ଫେରେ
ଆସିବା ଦିନର ସାକ୍ଷୀ ଏ ପଥ
ଫେରିବା ଜନର ବଂଧୁ।

ଏମିତି ୧୬ ପଦ କବିତାର ଶେଷରେ କବି ଲେଖିଛଂତି -

ଭିକ୍ଷାଶୀ ପ୍ରାଣ ପୀଡ଼େ ମତେ ଅହରହ
ପାଥେୟ ବିହୀନ ପଥିକ ମୁଁ ମଣେ
ଯାତ୍ରା ଏ ଦୁରବହ
ଖଇ ଓ ତୁଳାରେ ଶୁଭ୍ର କରି ତୋ ତନୁ
ରାମନାମ ସତ ମଂତେ ଚଳିବି
ତୋ ତୀର ଶ୍ମଶାନେ
କେବେ କହ କେବେ କହ।

ତାଂକର ଏହି କାଳଜୟୀ କବିତାଗୁଡ଼ିକ ନିମିତ୍ତ ସେ ସ୍ମରଣୀୟ ରହିବେ। ସୁଂଦରଗଡ଼ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେ ସଂବଲପୁର। (ପରେ ଝାରସୁଗଡ଼ା) ଜିଲ୍ଲାର ସାହାସ ପୁରକୁ ନିଜ ବାସସ୍ଥାନ ରୂପେ ବାଛି ନେଲେ। ତାଂକ ଶଶୁର ଏହି ଗ୍ରାମର ଏକଦା ପ୍ରଭାବଶାଳୀ ଗୌଂତିଆ ଥିଲେ। ବିନୋଦ ଚଂଦ୍ରଂକର ରଚିତ ହୈମଂତୀ, ନଂଦାଦେବୀ, ନୀଳଚଂଦ୍ରର ଉପତ୍ୟକା, ଚଂଦ୍ର ଓ ତାରା, ଇଜାବୃତ୍ତ, ସାତ ତାରାର ଦ୍ୱୀପ, ପୋହଳା ଦ୍ୱୀପର ଉପକଥା, ସରୀସୃପ, ଅନ୍ୟ ଏକ ଅସରପି ଆଦି କାବ୍ୟଗ୍ରଂଥ ଓଡ଼ିଆ ବାଣୀ ଭଂଡାରର ଉଲ୍ଲେଖନୀୟ କାବ୍ୟ ସଂପଦ। ତାଂକର କାବ୍ୟଗ୍ରଂଥ ସରୀସୃପ ନିମିତ୍ତ ସେ କେଂଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ। କବିଗୁରୁ ରବୀଂଦ୍ରନାଥଂକ ସଂପର୍କରେ ଏକ ସମାଲୋଚନା ଗ୍ରଂଥ ଇଂରାଜୀରୁ ଓ କବି ନଜରୁଲ ଇସଲାମଂକ କବିତା ବଂଗଳାରୁ ସେ ଓଡ଼ିଆରେ ଅନୁବାଦ କରିଛଂତି। ତାଂକ ସାରସ୍ୱତ ପ୍ରତିଭା ନିମିତ୍ତ ସେ ସଂବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନ ସୂଚକ ଡିଲିଟ୍ ଉପାଧିରେ ଭୂଷିତ ହୋଇଥିଲେ।

୨୦୦୦ ଫେବ୍ରୁଆରି ୩ ତାରିଖ ଦିନ ସେହି ବିଶ୍ୱବିଦ୍ୟାଳୟର ୧୯ଶ ସମାବର୍ତ୍ତନ ଉତ୍ସବରେ ତାଂକୁ ଏହି ଉପାଧି ପ୍ରଦାନ କରାଯାଇଥିଲା । ସଂବଲପୁର ବିଶ୍ୱବିଦ୍ୟାଳୟ ତାଂକୁ ଭାରତଚଂଦ୍ର ନାୟକ ସ୍ମୃତି ପୁରସ୍କାର ମଧ୍ୟ ପ୍ରଦାନ କରିଥିଲେ। କବି ପ୍ରତିଭା ନିମିତ୍ତ ପ୍ରଜାତଂତ୍ର ପ୍ରଚାର ସମିତିର ବିଷୁବ ମିଳନ ପୁରସ୍କାର ଓ ଭଂଜ ପ୍ରଦୀପ ସମ୍ମାନ ମଧ୍ୟ ସେ ଅର୍ଜନ କରିଥିଲେ । କୋଶଳ ସାହିତ୍ୟ ସମାଜ, ଗଂଗାଧର ସାହିତ୍ୟ ପରିଷଦ, ଅଭିମନ୍ୟୁ ସାହିତ୍ୟ ପରିଷଦ ତଥା ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଂକୁ ମାନପତ୍ର ଓ ଉପାୟନ ଦେଇ ସଂବର୍ଧନା ଜଣାଇଥିଲେ। ଦୀର୍ଘଦିନ ଧରି ଓଡ଼ିଶା ସାହିତ୍ୟ ଏକାଡେମୀର ସେ ସଂପାଦକ ଓ ପରେ ଉପସଭାପତି ଭାବରେ କାର୍ଯ କରିଥିଲେ । ସାହିତ୍ୟ ଏକାଡେମୀର ମୁଖପତ୍ର 'କୋଣାର୍କ'ର ମଧ୍ୟ ସେ ସଂପାଦନ ଦାୟିତ୍ୱ ତୁଲାଉଥିଲେ । ସଂପାଦକ ଭାବରେ ସେ ଯେଉଁ କେତୋଟି ଅତି ମୂଲ୍ୟବାନ ସଂପାଦକୀୟ ଲେଖିଥିଲେ ତାହା ତାଂକ ଶାସ୍ତ୍ରଦର୍ଶିତା ତଥା ନାଂଦନିକ ଅବବୋଧର ନିଦର୍ଶନ। ଜୀବନର ଶେଷ ପର୍ଯଂତ ତାଂକର ଲେଖନୀ କବିତାର ରସ ବର୍ଷଣ କରୁଥିଲା ।

୮୪ ବର୍ଷ ବୟସରେ ସାହାସ୍‌ପୁରଠାରେ ୧୫ ନଭେଂବର ୨୦୦୩ରେ ସେ ପ୍ରାଣତ୍ୟାଗ କଲେ ।





# ବିଦ୍ୟାବାଚସ୍ପତି
# ଶ୍ରଦ୍ଧାକର

ତାଂକ ରଚିତ ପୁସ୍ତକ 'ଅମର ଜୀବନ'ର ଭୂମିକାରେ ସେ ୧୯୬୨ରେ ଲେଖିଥିଲେ ''ସଂବଲପୁର ଜିଲ୍ଲାର ୩ ଜଣ ସଂତାନ ଚିରସ୍ମରଣୀୟ ହୋଇ ରହିବେ। ସେମାନେ ହେଉଛଂତି ବୀର ସୁରେଂଦ୍ର ସାଏ, ସ୍ୱଭାବ କବି ଗଂଗାଧର ମେହେର ଓ ପ୍ରାତଃ ସ୍ମରଣୀୟ ଡାକ୍ତର ଜନାର୍ଦ୍ଦନ ପୂଜାରୀ''। ମାତ୍ର ବୀର ସୁରେଂଦ୍ର ସାଏ ୧୮୮୪ରେ ସହିଦ ହେଲେ। ବିଂଶ ଶତାବ୍ଦୀରେ ତିନିଜଣ ଚିର ସ୍ମରଣୀୟ ସଂତାନମାନଂକ ମଧ୍ୟରେ ସ୍ୱୟଂ ଏହି ଶ୍ରଦ୍ଧାକର ସୂପକାର ନିର୍ବିବାଦରେ ଜଣେ ବୋଲି ପରିଗଣିତ ହେବେ। ୧୯୯୮ ମାର୍ଚରେ ଓଡ଼ିଶା ବିଧାନସଭା ସଚିବାଳୟରୁ ଗବେଷଣା ସୂଚନା ଗ୍ରଂଥାଗାର ଓ ତାଲିମ ବିଭାଗ ସଂପାଦିତ ତାଂକର ଜୀବନୀ ପ୍ରକାଶ ପାଇଥିଲା। ସେଥିରେ ପ୍ରଥମ ବାକ୍ୟ 'ସେ କେବଳ ଶ୍ରଦ୍ଧାର ଆକର ନ ଥିଲେ ସେ ଥିଲେ ସିଦ୍ଧିର ସୂପକାର। ଫଳତଃ ଜନୈକ ବୁଦ୍ଧିଜୀବୀ, ଆଇନଜୀବୀ, ଜନନାୟକ, ବିଧାୟକ, ସାଂସଦ, ସାହିତ୍ୟିକ, ଶିକ୍ଷାବିତ୍, ଶିକ୍ଷା ପ୍ରଶାସକ ଭାବରେ ଶ୍ରଦ୍ଧାକର ଥିଲେ ଅସାଧାରଣ ସାଧନ ଓ ସିଦ୍ଧିର ପାଚକ ତଥା ସୂପକାର'। ଏହି ମହାନ ପ୍ରତିଭାଂକର

ଜୀବନୀ ଏକ କ୍ଷୁଦ୍ର ପ୍ରବଂଧରେ ସୀମିତ କରିବା ଦୁଃସାଧ୍ୟ। ତେଣୁ ବିଭିନ୍ନ କ୍ଷେତ୍ରରେ ତାଂକର ସଫଳତା ବା ବିଫଳତାର ସଂକ୍ଷିପ୍ତ ପରିଚୟ ମାତ୍ର ଦିଆଯାଉଛି।

## କୃତୀଛାତ୍ର :

ପ୍ରସିଦ୍ଧ ବ୍ରହ୍ମପୁରା ମଂଦିର ନିକଟସ୍ଥ ସଂବଲପୁର ସହରର ଝାଡୁଆପଡ଼ାରେ ସେ ୧୯୧୫ ଏପ୍ରିଲ ଆଠ ତାରିଖରେ ଜନ୍ମ ଗ୍ରହଣ କରିଥିଲେ। ତାଂକ ଜେଜେବାପା ବଳଭଦ୍ର ସୂପକାର ଭାଷା ଆଂଦୋଳନର ଜଣେ ପ୍ରଖ୍ୟାତ ମହାରଥୀ ଥିଲେ। ପିତା ଜନାର୍ଦନ ଓ ମାତା ତ୍ରିବେଣୀଦେବୀ ମଧ୍ୟ ସହରର ପ୍ରତିଷ୍ଠିତ ବ୍ୟକ୍ତି ଥିଲେ। ୧୯୧୫ର ସଂବଲପୁର ସହରରେ ବୁଢ଼ାରଜା ପାହାଡ଼ ତଳେ ଉତ୍କଳ ସମ୍ମିଳନୀ ଅଧିବେଶନ ବସିଥିଲା। ବଳଭଦ୍ର ସୂପକାର ଏହାର ଉଦ୍ୟୋକ୍ତାମାନଂକ ମଧ୍ୟରୁ ଜଣେ ଥିଲେ। ଏଥିରେ ଓଡ଼ିଶାର ତତ୍‌କାଳୀନ ପ୍ରଖ୍ୟାତ ନେତୃବୃଂଦ କୁଳବୃଦ୍ଧ ମଧୁସୂଦନ, ବ୍ୟାସକବି ଫକୀରମୋହନ, ସ୍ୱଭାବକବି ଗଂଗାଧର, ପଲ୍ଲୀକବି ନଂଦ କିଶୋର ଆଦିଂକ ସହିତ ଅନେକ ଦେଶୀୟ ରାଜା ମଧ୍ୟ ଯୋଗ ଦେଇଥିଲେ। ବଳଭଦ୍ରଂକ ନାତି ଶ୍ରଦ୍ଧାକରଂକୁ ସେହି ପୁଣ୍ୟାତ୍ମାମାନେ ବୋଧହୁଏ ଆଶୀର୍ବାଦ କରି ପ୍ରତ୍ୟେକଂକର ସ୍ୱସୌରଭରୁ କିଛି କିଛି ପ୍ରଦାନ କରିଥିଲେ। ସହରର ଗୁରୁପଡ଼ା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ତାଂକର ବିଦ୍ୟାଶିକ୍ଷା ଆରଂଭ ହୁଏ। ପିତା ଜନାର୍ଦନ ତାଂକ ଶିକ୍ଷା ସର୍ବାଂଗ ସଂପନ୍ନ ଓ ସଫଳ ହେବା ନିମିତ୍ତ ସେ ୨ୟ ଶ୍ରେଣୀରେ ପଢ଼ିବା ସମୟରୁ ତାଂକୁ ବଂଗଳା ଓ ହିଂଦିଭାଷା ଶିକ୍ଷା ଦେଲେ। ସଚିତ୍ର ଓଡ଼ିଆ ପୁସ୍ତକର ଅଭାବ ଥାଏ, ମାତ୍ର କଲିକାତାରୁ ମଗା ଯାଉଥିବା ଅନ୍ୟ ଭାଷାର ଶିଶୁ ସାହିତ୍ୟ ସେ ପଢ଼ିଲେ। ପରବର୍ତୀ ସାହିତ୍ୟ ସାଧନା ନିମିତ୍ତ ହୁଏତ ଏହାର ପ୍ରଭାବ ପଡ଼ିଥିଲା। ତାଂକର ପ୍ରାଇମେରି ଶିକ୍ଷା ପରେ ଜିଲ୍ଲା ସ୍କୁଲରେ ପାଠପଢ଼ା ଆରଂଭ ହେଲା।

ତାଂକ ମହାମନା ଜେଜେବାପା ଓ ଜେଜେମା ଅନେକ ଛାତ୍ରଂକୁ ଘରେ ଖୁଆଇ ପିଆଇ ରଖି ବିଦ୍ୟା ଶିକ୍ଷାର ବ୍ୟବସ୍ଥା କରିଥାଂତି। ତାଂକ ଘରେ ବହୁତ ଖାଲି ଜାଗା ଥାଏ। ପିଲାମାନେ ପାଠ ପଢ଼ିବାକୁ ନିରୋଳା ଜାଗା ଆଶାରେ ସେଠାକୁ ଆସଂତି। ଜିଲ୍ଲା ସ୍କୁଲରେ ପୁରୀର ପଂଡିତ ଫକୀର ମିଶ୍ର କାବ୍ୟତୀର୍ଥ ସଂସ୍କୃତ ଶିକ୍ଷକ ଥାଆଂତି। ସେ ଶ୍ରଦ୍ଧାକରଂକର ଭଡ଼ା ଘରେ ରହୁଥାଆଂତି। ସେ ଜଣେ ଆଦର୍ଶ ଶିକ୍ଷକ ଥିଲେ। ସଂବଲପୁରରେ ସେ ୧୫ ବର୍ଷ ଶିକ୍ଷକତା କରିଥିଲେ। ଏକ ସମୟରେ ଜିଲ୍ଲାର ଯେ କୌଣସି କ୍ଷେତ୍ରରେ ପ୍ରତିଷ୍ଠିତ ବ୍ୟକ୍ତି ନିଜକୁ ତାଂକର ଛାତ୍ର ବୋଲି ଗର୍ବ କରୁଥିଲେ। ଛାତ୍ରମାନଂକ ବ୍ୟତୀତ ସେମାନଂକର ପିତାମାତା ମଧ୍ୟ ତାଂକୁ ଭକ୍ତି କରୁଥିଲେ। ଘରୋଇ ଭାବରେ ବାଲ୍ୟକାଳରେ ସେ ଶ୍ରଦ୍ଧାକରଂକୁ ସଂସ୍କୃତ ଶିକ୍ଷା ଦେଇ ତାଂକର ଭବିଷ୍ୟତ ସାହିତ୍ୟ ପ୍ରୀତି ଓ ଆଦର୍ଶ ଚରିତ୍ରର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ। ଏହି ସମୟରେ ଦେଶରେ ଜାତୀୟ ଆଂଦୋଳନ ଚାଲୁରହିଥାଏ।

ସଂବଲପୁର ସହରର ବାତାବରଣ ମଧ୍ୟ ଏଥିରୁ ବାଦପଡ଼ି ନ ଥାଏ। ଶ୍ରଦ୍ଧାକର ସାନପିଲା ଥାଇ ଅନ୍ୟ ବରିଷ୍ଠ ଛାତ୍ରମାନଂକ ସହିତ ରବିବାର ଓ ଛୁଟିଦିନମାନଂକରେ କାଂଧରେ ଥାନେ କି ଦୁଇଥାନ ଖଦଡ଼ ଲୁଗା ଧରି ସ୍ୱଦେଶୀ କପଡା ବୋଲି ଡାକି ଡାକି ବିକ୍ରି କରିବାକୁ ଯାଉଥିଲେ। ୧୯୨୧ରୁ ଖଦଡ଼ ବ୍ୟବହାର ଆରଂଭ କରି ଜୀବନତମାମ ସେ ଏହା ଚାଲୁରଖିଥିଲେ। ୧୯୨୩ରେ ସେ ଜିଲ୍ଲାସ୍କୁଲର ଛାତ୍ର ହେଲେ ଓ ଏଠାରୁ ୧୯୩୧ରେ ମାଟ୍ରିକ ପରୀକ୍ଷା ଦେଲେ। ବିଦ୍ୟାଳୟରୁ ସମଗ୍ର ଓଡ଼ିଶାରେ ପଂଚମସ୍ଥାନ ଅଧିକାର କରି ପାସ୍ କଲେ।

ପାଠ୍ୟ ପୁସ୍ତକ ବ୍ୟତୀତ ସେ ଅନେକ ପତ୍ର ପତ୍ରିକା ପଢୁଥିଲେ। ତାଂକ ବାପା ଏ ସବୁ ଡାକଯୋଗେ ନିଜ ବ୍ୟବହାର ପାଇଁ ମଗାଉଥିଲେ। ଫକୀର ପଂଡିତ ତାଂକୁ ସଂସ୍କୃତ ପାଠରେ ଆଗେଇ ନେଇ ବ୍ୟାକରଣ, ତର୍କ ସଂଗ୍ରହ ଓ ରଘୁବଂଶ ପରି କାବ୍ୟ ମଧ୍ୟ ପଢିବାରେ ଉତ୍ସାହିତ କଲେ। ଡାକ୍ତର ଜନାର୍ଦ୍ଦନ ପୂଜାରୀ ସହରରେ ସେତେବେଳେ ନାଟକ ଅଭିନୟ କରୁଥାଆଂତି। ବଂଗଳାରୁ ନାଟକମାନ ଅନୁବାଦିତ ହୋଇ ମଂଚସ୍ଥ ହେଉଥିଲା। ଏହା ତାଂକୁ ଭଲ ଲାଗୁଥାଏ। ସମବୟସୀ ସମପାଠୀ ଅନେକ ପିଲା ଏଠାରେ ଭାଗ ନେଉଥିବା ନାଟକରେ ମିଶିବାକୁ ତାଂକ ମନ ହେଉଥିଲେ ମଧ୍ୟ ଜଣେ ମେଧାବୀ ଛାତ୍ର ଥିବାରୁ ଏହା ତାଂକୁ ମନା ଥିଲା। ବୈଷ୍ଣବ ପାଣି ଗଣକବି ଭାବରେ ନିଜର ଯାତ୍ରାଦଳ ଧରି ସହରକୁ ଯାଇ ଗୀତାଭିନୟ (ସୁଆଂଗ) ଦେଖାଉଥିଲେ। ଏହା ମଧ୍ୟ ତାଂକର ପ୍ରିୟ ଥିଲା। ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷା ଦେଇ ସେ ବୃତ୍ତି ପାଇ ନ ଥିଲେ। କାରଣ ସେ ଗଣିତରେ ଦୁର୍ବଳ ଥିଲେ। ଅଥଚ ଭାଗ୍ୟର ବିଡଂବନା ବି.ଏ ପାସକଲେ ସେ ଗଣିତରେ ଅନର୍ସ ନେଇ। ପଂଡିତ ନୀଳକଂଠ ଦାସ ସଂବଳପୁରରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କଲେ ମାତ୍ର ଏହା ବେଶି ଦିନ ରହି ପାରିଲା ନାହିଁ। ଲୋକଂକର ଉତ୍ସାହ ଛିଡ଼ିଗଲା। ଏସବୁ ଛାତ୍ରଭାବରେ ଲକ୍ଷ୍ୟକରିବାର ସୁଯୋଗ ତାଂକୁ ମିଳିଥିଲା। ଶ୍ରେଣୀରେ ସେ ପ୍ରଥମ ହେଉଥିଲେ। ତାଂକର ସହପାଠୀମାନଂକ ମଧ୍ୟରେ ଆଡଭୋକେଟ ସତ୍ୟନାରାୟଣ ନାୟକ, ରାଜାରାମ ଦୁବେ, ମାନଭଂଜନ ବହିଦାର, ଖଣିଜ ବିଜ୍ଞାନ ବିଶାରଦ ତାରାପ୍ରସାଦ ମିଶ୍ର, ପରବର୍ତୀ କାଳରେ ସ୍ୱସ୍ୱ ବୃତ୍ତିରେ ଯଶସ୍ୱୀ ଓ ପ୍ରତିଷ୍ଠିତ ହୋଇପାରିଥିଲେ। ମଧୁସୂଦନ ଦାଶ (ନିମାପଡ଼ା) ଆନଂଦ ଚଂଦ୍ର ପତି ପ୍ରଭୃତି ସୁବିଖ୍ୟାତ ପ୍ରଧାନ ଶିକ୍ଷକଂକର ଶୃଂଖଳା ଓ କର୍ତବ୍ୟବୋଧ ତାଂକ ଉପରେ ପ୍ରଭାବ ପକାଇଲା। ହାଇସ୍କୁଲରେ ପଢୁଥାଆଂତି। ତାଂକର ମାଆ ମାତ୍ର ୩୦ ବର୍ଷ ବୟସରେ ମରିଗଲେ। ପିତା ୨ୟ ବାର ବିବାହ କଲେ। ତତ୍କାଳୀନ ପ୍ରଚଳିତ ପ୍ରଥା ଅନୁସାରେ ଏହି ସମୟରେ ତାଂକର ବାଲ୍ୟବିବାହ ମଧ୍ୟ ହୋଇଥିଲା। ୧୯୩୦ରେ ଗାଂଧୀଜିଂକର ଲବଣ ସତ୍ୟାଗ୍ରହ ଆରଂଭ ହେଲା। ସତ୍ୟାଗ୍ରହ, ଆଇନ ଅମାନ୍ୟ ଆଂଦୋଳନ, ନିଶାନିର୍ବାରଣ ପାଇଁ ମଦ ଗଂଜେଇ ଦୋକାନ ଆଗରେ ପିକେଟିଂ ହେଲା। ସେ ମଧ୍ୟ ସେଥିରେ ମିଶିଗଲେ। ପୋଲିସ ହାତରେ ମାଡ଼ ଖାଇଲେ ମାତ୍ର

ଜେଲଦଂଡ ଭୋଗିବାରୁ ବର୍ତିଗଲେ। ମାଟ୍ରିକ ପରୀକ୍ଷା ଦେଇସାରି କଲେଜରେ ନାମ ଲେଖାଇବା ପର୍ଯଂତ ତାଂକର କିଛି କାମ ନ ଥାଏ। ସେତେବେଳେ ସେ କଂଗ୍ରେସର ନିଷ୍ଠାପର କର୍ମୀ ହୋଇଗଲେ। ସେ ସମୟରେ ପ୍ରତିଭାବାନ ଛାତ୍ରମାନେ ଭବିଷ୍ୟତରେ ସରକାରୀ ଚାକିରି ଓ ଆଇ.ସି.ଏସ. (ଦେଶର ସର୍ବୋଚ୍ଚ କ୍ଷମତାଶୀଳ ପଦବିର) ସ୍ୱପ୍ନ ଦେଖୁଥାଆଂତି ମାତ୍ର ସ୍ୱାଧୀନତା ଆଂଦୋଳନର ରୂପରେଖ ଦେଖି ସେ ମୂଳରୁ ଏହି ମୋହ ତ୍ୟାଗ କରିଥିଲେ। ରେଭେନ୍‌ସା କଲେଜରେ ନାମ ଲେଖାଇଲେ। ବିଜ୍ଞାନ ପଢ଼ିଲେ। ଜିଲ୍ଲାସ୍କୁଲରେ ପଢ଼ିବା ବେଳେ କଲେରା ବସଂତ ରୋଗ ଦେଖାଗଲେ ସେ ଅନ୍ୟମାନଂକ ସହିତ ରୋଗୀମାନଂକର ସେବା କରିବାକୁ ବାହାରି ପଡୁଥିଲେ। କଲେଜରେ ମଧ୍ୟ ସେଇଆ କଲେ। କଟକ ଜିଲ୍ଲାରେ ୧୯୩୩ରେ ପ୍ରଳୟଂକରୀ ବନ୍ୟା ହେଲା। ସେ ପୂଜ୍ୟ ଅଧ୍ୟାପକ ପରଶୁରାମ ମିଶ୍ରଂକ ନେତୃତ୍ୱରେ ଅନେକ ସହକର୍ମୀଂକୁ ଧରି ସେଠାରେ ରିଲିଫ ବାଂଟିବାକୁ ବାହାରିପଡ଼ିଲେ। ଆଇ.ଏସ୍.ସି.ରେ ସେ ପ୍ରାକ୍‌ଟିକାଲ ପରୀକ୍ଷାରେ ଭଲ କରି ପାରି ନ ଥିଲେ। ରସାୟନ ବିଜ୍ଞାନରେ ଫେଲ ହେବାକୁ ଯାଉଥିଲେ। ଅନ୍ୟ ବିଷୟରେ ତାଂକ କୃତିତ୍ୱ ଦେଖି ତାଂକୁ ପାସ୍ କରାଇ ଦିଆଗଲା। ତଥାପି ବିଶ୍ୱବିଦ୍ୟାଳୟରେ ବିଜ୍ଞାନରେ ୨ୟ ସ୍ଥାନ ରଖି ସେ ପାସ୍ କଲେ। ନିଜର ଭବିଷ୍ୟତ ସେ ନିର୍ଣୟ କଲେ। ସରକାରୀ ଚାକିରି ନକରି ସ୍ୱାଧୀନ ଓକିଲାତି ବ୍ୟବସାୟ କରିବା ଉଦ୍ଦେଶ୍ୟରେ ବି.ଏ.ରେ ସଂସ୍କୃତ ଗଣିତ ଇଂରାଜୀ ଭାଷା ସାହିତ୍ୟ ସହିତ ଗଣିତରେ ଅନର୍ସ ନେଇ ପାସ୍ କଲେ। କଲେଜର ପତ୍ରପତ୍ରିକାରେ ସେ ସାହିତ୍ୟ ଚର୍ଚା କଲେ। ବନ୍ୟା ସାହାଯ୍ୟ ସମୟରେ ରିଲିଫ ଦାନ ବେଳର ଦୃଶ୍ୟ ଫଟୋ ଉଠାଇ ନିଜ ପ୍ରବଂଧ ରେ ପ୍ରକାଶ କଲେ। କଲେଜର ଗୋରୀ ଅଧ୍ୟକ୍ଷ ଡିଉକ୍ ଏଥିପାଇଁ ତାଂକର ଉଚ୍ଚ ପ୍ରଶଂସା କରିଥିଲେ। ବି.ଏ ପାସ କରି ପାଟଣା ଯାଇ ଶ୍ରଦ୍ଧାକର ସେଠାରେ ଇଂରେଜୀରେ ଏମ.ଏ ଓ ଆଇନ ପଢ଼ିଲେ। ଏହି ସମୟରେ ନିଜର ସଉକ ମେଂଟାଇବାକୁ ସେ ସଂସ୍କୃତରେ କାବ୍ୟତୀର୍ଥ ଉପାଧି ଲାଭ କରିଥିଲେ। ବଲାଂଗିର ଯାଇ ସେଠାରେ ଏହି ପରୀକ୍ଷା ଦେବାର ଥିଲା।

ତାଂକର ଇଂରାଜୀରେ ଅନର୍ସ ନ ଥିଲା। ତଥାପି ଇଂରାଜୀ ଏମ.ଏରେ ତାଂକର ଭାଷା ବ୍ୟୁତ୍ପତ୍ତି କଲେଜର ଦୁଇଜଣ ନାମଜାଦା ଇଂରେଜୀ ଅଧ୍ୟାପକ ପ୍ରଫେସର ଜେ.ଏସ୍. ହିଲ୍ ଓ ଏଚ୍.ଏସ୍. ଅନ୍‌ୱାରଂକ ଉଚ୍ଚ ପ୍ରଶଂସା ଲାଭକଲା। ପରବର୍ତୀ କାଳରେ ତାଂକ ସହିତ ଖେଳ ଖେଳିଥିବା ଭାଗ୍ୟଲକ୍ଷ୍ମୀ ତାଂକୁ ମାତ୍ର ତୃତୀୟ ଶ୍ରେଣୀ ପାଇବାର ସୁଯୋଗ ଦେଲେ। ଶତକଡ଼ା ପଚାଶରେ ୨ୟ ଶ୍ରେଣୀ ମିଳେ। ସେ ପାଇଲେ ଶତକଡ଼ା ଅଣଚାଶ। ୧୯୩୭ରେ ଏମ.ଏ. ଓ ୧୯୩୮ରେ ଆଇନ ପାସ୍‌କରି ଶ୍ରଦ୍ଧାକର ସଂବଲପୁର ଫେରିଲେ। ସେତେବେଳେ ଏମ.ଏ ଦୁଇବର୍ଷ ଓ ଆଇନ ଦୁଇବର୍ଷ ପାଠ୍ୟ ଥିଲେ ମଧ୍ୟ ଏକତ୍ରରେ ଏହା ୩ ବର୍ଷରେ ସମାପ୍ତି ହେଉଥିଲା। ୧୯୩୯ରେ ସେ ଲାଇସେନ୍‌ସ ପାଇ ଓକିଲାତି ଆରଂଭ କଲେ।

## ଓକିଲ ଜୀବନ :

ଓକିଲ ଜୀବନରେ ଅର୍ଥଲାଳସା ନ ରଖି ସେ ବ୍ୟବସାୟରେ ସମାଜସେବା, ଅଭାବୀ ପକ୍ଷମାନଂକର ସମର୍ଥନ ମୁଖ୍ୟ ଲକ୍ଷ୍ୟ ରଖିଲେ। ତେଣୁ ଜ୍ଞାନ ଥିଲେ ମଧ୍ୟ ଅଧ୍ୟବସାୟ ସହିତ ସେ ବୃତ୍ତିକୁ ଦେଖୁ ନ ଥିଲେ। କଚେରି ଗଲେ କେବଳ ପୂର୍ବ ନିର୍ଧାରିତ ମକଦ୍ଦମା ଗୁଡ଼ିକ ପରିଚାଳନା କରୁଥିଲେ। ନୂଆ ମକଦ୍ଦମା ଗ୍ରହଣ କରୁ ନ ଥିଲେ। ସେଠାରେ ମକଦ୍ଦମା ପଡ଼ିବା ପର୍ଯ୍ୟଂତ ସେହି ଇଜଲାସରେ ନ ହେଲେ ଓକିଲଖାନାରେ ପୁସ୍ତକପାଠ ତାଂକର ସ୍ୱଭାବ ଥିଲା। ଅନେକ ଗରିବ ମହକିଲ ବିନା ଫିସ୍‌ରେ ତାଂକୁ ନିଯୁକ୍ତ କରୁଥିଲେ, ମାତ୍ର ସେ ନିଷ୍ଠାର ସହିତ ସେମାନଂକର ବିଶ୍ୱାସକୁ ସମ୍ମାନ ଦେଉଥିଲେ। ସମକାଳୀନ ସାମାଜିକ ଓ ରାଜନୈତିକ ସମସ୍ୟା ଉପରେ ସହକାର, ନବଭାରତ ମାସିକ ପତ୍ରରେ ସେ ପ୍ରବଂଧ ଲେଖୁଥିଲେ। ନିଜର ସ୍ୱାଧୀନ ମତବାଦ ଯୋଗୁଁ ଅନେକ ସମୟରେ ତାଂକ ପ୍ରବଂଧମାନ ବିବାଦୀୟ ହୋଇଉଠୁଥିଲା। ସମାଜସେବ ସହିତ ସେ ରାଜନୀତିକୁ ଆକର୍ଷିତ ହେଲେ । ନିଜ ୱାର୍ଡ଼ରୁ ମୁନିସିପାଲଟିକୁ ପ୍ରାର୍ଥୀ ହେଲେ ମାତ୍ର ହାରିଗଲେ। ନିଜର ନିର୍ବାଚନୀୟ ଅନଭିଜ୍ଞତା ଏଥିରେ କାରଣ ଥିଲା। ୧୯୩୭ରେ ପ୍ରଥମ କଂଗ୍ରେସ ମଂତ୍ରୀମଂଡଳରେ ସଂବଲପୁରର ବୋଧରାମ ଦୁବେ ଶିକ୍ଷାମଂତ୍ରୀ ଥିଲେ। ସେ ଶ୍ରଦ୍ଧାକରଂକୁ ପାଠ୍ୟପୁସ୍ତକ ନିର୍ବାଚନ କମିଟିର ସଭ୍ୟ କଲେ। ଫଳରେ ସେ ଓଡ଼ିଶାରେ ପରିଚିତ ହେଲେ। ଜିଲ୍ଲାବୋର୍ଡ ସଭ୍ୟଭାବରେ ମଧ୍ୟ ସେ କଂଗ୍ରେସରୁ ନିର୍ବାଚିତ ହେଲେ। କଂଗ୍ରେସ ଦଳର ସଭ୍ୟ ସଂଖ୍ୟା ବେଶି। ସେ ଚେୟାରମେନ୍ ହୋଇପାରିଲେ ନାହିଁ। ଜଣେ ପ୍ରଭାବଶାଳୀ ପୁରୁଖା ଓକିଲ ତାଂକୁ ହଟାଇ ଦେଲେ। ଶ୍ରଦ୍ଧାକର ଦଳୀୟ ରାଜନୀତିର ପ୍ରଥମ ତିକ୍ତ ସ୍ୱାଦ ଚାଖିଲେ। କଂଗ୍ରେସର ପ୍ରାଦେଶିକ କମିଟିର ସେ ସଭ୍ୟ ଥିଲେ। ନିଜେ ଜିଲ୍ଲାରେ କଂଗ୍ରେସ ସଭ୍ୟ ସଂଗ୍ରହ, ସୂତାକଟା କାମ ଯୋଗୁ କର୍ମୀମାନଂକ ମହଲରେ ପରିଚିତ ହେଲେ। କଂଗ୍ରେସ ବାର୍ଷିକ ଅଧିବେଶନମାନଂକରେ ସେ ମଧ୍ୟ ଯୋଗ ଦେଲେ। ଓକିଲାତିରେ ସଂବଲପୁରରେ ରୋଜଗାର ବିଶେଷ ନ ଥାଏ। ତେଣୁ ପାଖର ଦେଶୀୟ ରାଜ୍ୟ ସୋନପୁର, ବାମଂଡା, ବଣେଇ ଆଦି ରାଜ୍ୟକୁ ସେ ଯାଉଥିଲେ। ଅର୍ଥ ଲୋଭ ନ ରଖି ମହକିଲମାନଂକର ମକଦ୍ଦମା ଲଢ଼ି ନିଜର ଲୋକପ୍ରିୟତା ବଢ଼ାଇଲେ। ଭାରତଛାଡ଼ ଓ ବ୍ୟକ୍ତିଗତ ସତ୍ୟାଗ୍ରହ ଆଂଦୋଳନରେ ସେ ଭାଗ ନେଇ ନ ଥିଲେ। ଯୁଦ୍ଧ ସମୟରେ ଜିଲ୍ଲାରୁ ଚାଉଳ ରପ୍ତାନି ଉପରେ ଜିଲ୍ଲାପାଳ ଅଧିକ ଟିକସ ଅସୁଲ କରୁଥିଲେ। ତାହା ଯୁଦ୍ଧ ପାଂଠିକୁ ଯାଉଥିଲା। ଯୁଦ୍ଧ ସରିବା ବେଳକୁ ଏହି ପାଂଠିରେ ସାତଲକ୍ଷ ଟଂକା ବଳକା ଥିଲା। ଏଥିରେ ଏକ ଟ୍ରଷ୍ଟ ଫଂଡ ଗଢ଼ାଗଲା। ଜିଲ୍ଲାର ଅନେକ ଦୂରଦୃଷ୍ଟି ସଂପନ୍ନ ନେତୃସ୍ଥାନୀୟ ବ୍ୟକ୍ତିଂକ ପରି ସେ ମଧ୍ୟ ଏହାର ସୁପରିଚାଳନା ନିମିତ୍ତ ପରାମର୍ଶ ଦେଇ ଏହା ସହିତ ସଂପୃକ୍ତ ହେଲେ।

୧୯୪୬ରେ ଉପକୂଳ ଅଂଚଳରେ ବନ୍ୟା ପ୍ରତିକାର ପାଇ ହୀରାକୁଦ ବଂଧର ଶୁଭ ଦିଆଗଲା । ଏଥିରେ ସଂବଲପୁରର ଉର୍ବର ଅଂଚଳ ବୁଡ଼ି ଯିବାର ଆଶଂକା ଥିଲା । ବହୁମୁଖୀ ବଂଧ ନିର୍ମାଣର ଉପକାରିତା ଲୋକମାନଂକୁ ଭଲ ଭାବରେ ବୁଝାଇ ଦିଆଗଲା ନାହିଁ । ଜନମତ ଏହାର ବିରୋଧ କଲା । ବିଧାୟକ ଇସ୍ତଫା ଦେଲେ । ଏହାର ଉପନିର୍ବାଚନରେ କଂଗ୍ରେସ ଜଣେ ଧନୀ କେଂଦୁପତ୍ର ବ୍ୟବସାୟୀଂକୁ ପ୍ରାର୍ଥୀ କଲା । ଶ୍ରଦ୍ଧାକର ଏହାର ବିରୋଧ କଲେ ଓ ସ୍ୱାଧୀନ ପ୍ରାର୍ଥୀ ଭାବରେ ବିଧାନ ସଭାକୁ ୧୯୪୮ରେ ନିର୍ବାଚିତ ହେଲେ । ବୈଧାନିକ ରାଜନୀତିରେ ସେହିଦିନଠାରୁ ସେ ସଂପୃକ୍ତ ହେଲେ । ହୀରାକୁଦ ବଂଧ ବିରୋଧୀ ଆଂଦୋଳନରେ ସେ ମୁଖ୍ୟ ଭୂମିକା ନେଲେ । ସରକାର ତାଂକ ନ୍ୟାୟୋଚିତ ସମାଲୋଚନାରେ ବିବ୍ରତ ହୋଇ ଶେଷରେ ତାଂକ ପରାମର୍ଶ ବହୁ ପରିମାଣରେ ଗ୍ରହଣ କଲେ ।

କଚେରିରେ ସେ ଓକିଲ ଭାବରେ ଖୁନି ମକଦ୍ଦମା ମାନଂକରେ ଆସାମୀ ନିଜ ପକ୍ଷ ସମର୍ଥନ ପାଇ ଓକିଲ ଦେଇ ନ ପାରିଲେ ସରକାରଂକ ତରଫରୁ ସେମାନଂକ ପାଇଁ ଧର୍ମ ଓକିଲ ଭାବରେ ନିଯୁକ୍ତ ହୋଇ ମକଦ୍ଦମା ପରିଚାଳନା କଲେ । ମାତ୍ର ଗୋଟିଏ ଦେଓ୍ୱାନି ମକଦ୍ଦମା ତାଂକୁ ସଂବଲପୁରର ଅବିସଂବାଦୀ ନେତା ଭାବରେ ଚିରସ୍ମରଣୀୟ କରି ରଖିବ । ବ୍ରଜରାଜ ନଗରରେ ବିରଳା କଂପାନି ଗୋଟିଏ କାଗଜ କଳ ପ୍ରତିଷ୍ଠା କରିଥିଲେ । ଏହା ଏକ ପ୍ରଧାନ ଶିଳ୍ପ ଭାବରେ ସେ ସମୟରେ ଓଡ଼ିଶାରେ ଗଣାଯାଉଥିଲା । ସେମାନେ କାରଖାନାର ଦୂଷିତ ଜଳ ମହାନଦୀର ଉପନଦୀ ଇବ୍‌କୁ ଛାଡ଼ି ଦେଉଥିଲେ । ଫଳରେ ଦୁଇ ନଦୀର ଜଳ କୂଳବାସୀ ମନୁଷ୍ୟ ଓ ପଶୁ ବ୍ୟବହାର ପାଇଁ ଅନୁପଯୁକ୍ତ ହେଉଥିଲା । ବିରଳା କଂପାନି ସରକାରଂକର ମୁଖ୍ୟ ସମର୍ଥକ । ତାଂକ ବିରୋଧରେ ଆପତ୍ତି ଅରଣ୍ୟରୋଦନ ଥିଲା । ଶ୍ରଦ୍ଧାକର କଷ୍ଟକର ଥିଲେ ମଧ୍ୟ ରାଜ୍ୟ ଆଡଭୋକେଟ ଜେନେରାଲଂକ ଅନୁମତି ନେଇ ସରକାରଂକୁ ପକ୍ଷକରି ମକଦ୍ଦମା କଲେ । ସାକ୍ଷ୍ୟ ପ୍ରମାଣ ସଂଗ୍ରହ କଲେ । ହଜାର ହଜାର ଟଂକା ଖରଚ କରି ପାଟଣା କଲିକତାରୁ ବଡ଼ ଓକିଲ ଆଣି କଂପାନି ମକଦ୍ଦମା ଲଢ଼ିଲେ ମଧ୍ୟ ଶ୍ରଦ୍ଧାକର ଜିତିଲେ । ତାଂକୁ ନାନା ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡୁଥିଲା । ତାଂକ ବ୍ୟକ୍ତିଗତ ପାଂଠିକୁ ଲକ୍ଷ ଲକ୍ଷ ଟଂକା ଦାନର ଲୋଭ ସଂବରଣ ଏକ ଅସାଧାରଣ ଚରିତ୍ରର ପରିପ୍ରକାଶ ଥିଲା । ଶେଷରେ ସରକାର ନଦୀକୂଳ ଅଧିବାସୀମାନଂକର ଅସୁବିଧା ଉପଲବ୍ଧି କରି ବିଶେଷ ଆଇନ କଲେ ।

## ରାଜନୀତି ସମାଜସେବା :

୧୯୪୮ରେ ପ୍ରଥମେ ସ୍ୱାଧୀନ ବିଧାୟକ ଭାବରେ ସେ ବ୍ୟବସ୍ଥାପକ ଜୀବନ ଆରଂଭ କଲେ । ବଂଧ ବିରୋଧୀ ଆଂଦୋଳନର ସେ ପ୍ରତିନିଧି ଥିଲେ । ସେମାନଂକର

ଦାବି ସେ ଦୃଢ଼ତାର ସହିତ ଉପସ୍ଥାପନ କଲେ। ବନ୍ୟା ନିୟନ୍ତ୍ରଣ ବ୍ୟତୀତ ବିଦ୍ୟୁତଶକ୍ତି ଉତ୍ପାଦନ ଓ ଜଳସେଚନର ସୁବିଧା ପଶ୍ଚିମାଂଚଳରେ ଉପଲବ୍ଧି ହେବ ଏହା ସରକାର ଲୋକମାନଙ୍କୁ ବୁଝାଇବାରେ ଆଂଶିକ କୃତକାର୍ଯ ହେଲେ। ସେମାନଙ୍କୁ ଜମି ହରାଇବାକୁ ପଡୁଥିଲା। ନୂତନ ବସତିକୁ ଯିବାକୁ ହେଉଥିଲା। ଶ୍ରଦ୍ଧାକରଂକ ବିଧାନ ସଭାରେ ବାଗ୍ମିତା ଓ ତାଂକ ଯୁକ୍ତି ସରକାରଂକୁ ଏ ଦିଗରେ ସଂଶୋଧିତ କରିଥିଲା। ବିରୋଧୀ ଦଳ ସଦସ୍ୟ ଭାବରେ ୧୯୪୯ ରୁ ୧୯୫୧ ମଧ୍ୟରେ କାଟପ୍ରସ୍ତାବ ପ୍ରଶ୍ନୋତ୍ତର ଛଳରେ ସରକାରଂକୁ ବ୍ୟତିବ୍ୟସ୍ତ କରିପକାଇଲେ। କ୍ରମେ ଅନ୍ୟ ବିଧାୟକମାନେ ମଧ୍ୟ ତାଂକ ଯୁକ୍ତିର ବୈଧତା ଗ୍ରହଣ କରି ନେଲେ। ସରକାର ବାସଚ୍ୟୁତ ବ୍ୟକ୍ତିମାନଂକର ଥଇଥାନ ଓ ସମୁଚିତ କ୍ଷତି ପୂରଣର ବ୍ୟବସ୍ଥା କଲେ। ୧୯୫୧ରେ ଦେଶରେ ସାବାଳକ ଭୋଟ ଅଧିକାରରେ ଯେଉଁ ସାଧାରଣ ନିର୍ବାଚନ ହେଲା ସେଥିରେ ସେ ପ୍ରାଦେଶିକ ଗଣତଂତ୍ର ପରିଷଦର ପ୍ରାର୍ଥୀ ଭାବେ ଜୟଯୁକ୍ତ ହୋଇ ବିଧାନ ସଭାରେ ୨ୟ ବାର ପ୍ରତିନିଧିତ୍ୱ କଲେ ଓ ବିରୋଧୀ ଦଳର ନେତା ହେଲେ। ଏହି ପଦରେ ସେ ନିଜର ଯୁକ୍ତିଯୁକ୍ତ ଭାଷଣ, ଆଲୋଚନା, ପରିପୂରକ ପ୍ରଶ୍ନ ମାଧ୍ୟମରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ। ସେହି ବିଧାନସଭାରେ ପଂଡିତ ନୀଳକଂଠ, ପଂଡିତ ଗୋଦାବରୀଶ, ଖଲିକୋଟ ରାଜା, ଦିବାକର ପଟ୍ଟନାୟକ ଗୋବିଂଦ ପ୍ରଧାନ, ଡକ୍‌ଟର ପ୍ରାଣକୃଷ୍ଣ ପରିଜାଂକ ପରି ବିରାଟ ବ୍ୟକ୍ତିତ୍ୱ ବିରୋଧୀ ଦଳରେ ଥାଇ ମଧ୍ୟ ତାଂକ କାର୍ଯ ପଦ୍ଧତି ଓ ନିଷ୍ଠାର ପ୍ରଶଂସା କରୁଥିଲେ। ୧୯୫୩ରେ ରାଜ୍ୟ ପୁନର୍ଗଠନ କମିସନ ବସିଲା। ସରେଇକଲା, ଖରସୁଆଁ ଓଡ଼ିଶାରେ ମିଶାଇବାକୁ ସେମାନେ ୧୯୫୫ରେ ରିପୋଟରେ ସୁପାରିଶ ନ କରିବାରୁ ରାଜ୍ୟରେ ବିକ୍ଷୁବ୍ଧ ପ୍ରତିକ୍ରିୟା ଦେଖାଗଲା। ସଂବଲପୁରରେ ତାଂକର ପୁଅ ଗୁଳି ମାଡ଼ରେ ଆହତ ହୋଇ ଅଳ୍ପକେ ବଂଚିଗଲେ। କଟକ ଓ ପୁରୀରେ ପୁଲିସ ଗୁଳିରେ ଲୋକ ମଲେ। ବିରୋଧୀ ଦଳ ନେତା ଭାବରେ ସେ ବିଧାନ ସଭାରେ ଏଥିପାଇଁ ତୀବ୍ର ସମାଲୋଚନାରେ ସରକାରଂକୁ ବ୍ୟତିବ୍ୟସ୍ତ କରି ପକାଇଲେ। ପବ୍ଲିକ ଏକାଉଂଟ କମିଟିର ଅଧ୍ୟକ୍ଷ ଭାବରେ ମଧ୍ୟ ସେ ସରକାରଂକର ତ୍ରୁଟି ଜନ ସାଧାରଣଂକ ଦୃଷ୍ଟିକୁ ଆଣିଥିଲେ। ୧୯୫୭ରେ ୨ୟ ସାଧାରଣ ନିର୍ବାଚନ ହେଲା। ସେ ଲୋକସଭାକୁ ଗଣତଂତ୍ର ପରିଷଦ ପ୍ରାର୍ଥୀ ଥାଇ ବରଗଡ଼ ଯୁଗ୍ମ ଲୋକସଭା ଆସନରୁ ନିର୍ବାଚିତ ହେଲେ। ଲୋକ ସଭାରେ ମଧ୍ୟ ସେ ଜଣେ ସକ୍ରିୟ ସଭ୍ୟ ଭାବରେ ସ୍ୱୀକୃତ ହେଲେ। ସରକାରୀ ହିସାବ କମିଟି, ପ୍ରାକକଳନ କମିଟି ଓ ସ୍ୱାଧିକାର କମିଟିର ସଭ୍ୟ ଭାବରେ ନିର୍ବାଚିତ ହେଲେ। ଗଣତଂତ୍ର ଏକ ଛୋଟ ଦଳ ଥିଲା। ତେଣୁ ଏହାର ସଭ୍ୟମାନଂକୁ କହିବାର ସୁଯୋଗ ବିଶେଷ ମିଳୁ ନ ଥିଲେ ମଧ୍ୟ ତାଂକ ନିଷ୍ଠାଫଳରେ ସେ ନିଜ ନିର୍ବାଚନ ମଂଡଳି ଓ ରାଜ୍ୟର ସମସ୍ୟା ଲୋକ ସଭାରେ ଉପସ୍ଥାପନର ସୁଯୋଗ ପାଇ ପାରୁଥିଲେ। ଜଣେ ଧୂରୀଣ ସଭ୍ୟ ଭାବରେ ତାଂକୁ ନାନାଦିଗରୁ ସମ୍ମାନ ମିଳିଥିଲା।

୧୯୬୧ରେ ଓଡ଼ିଶାରେ ମଧ୍ୟବର୍ତୀ କାଳୀନ ବିଧାନସଭା ନିର୍ବାଚନ ହେଲା। ଲୋକସଭା ସଭ୍ୟପଦ ସରିବାକୁ ତାଂକର ଆଉ ବରଷେ ସମୟ ଥାଏ। ଦଳ ପକ୍ଷରୁ ତଥାପି ତାଂକୁ ସଂବଲପୁର ନିର୍ବାଚନ ମଂଡଳୀରୁ ପ୍ରାର୍ଥୀ କରାଗଲା। ଶୃଂଖଳିତ ଭାବରେ ସେ ପ୍ରତିଯୋଗିତା କଲେ। ରେଲଲାଇନ ସଂପ୍ରସାରଣ ଜିଲ୍ଲାରେ ଶିକ୍ଷାର ବିସ୍ତାର, ପାରାଦୀପ ବଂଦରର ପ୍ରତିଷ୍ଠା ଆଦି ଦିଗରେ ସେ କାର୍ଯ କରିଥିଲେ ମଧ୍ୟ ତାଂକ ବିରୋଧରେ ତାଂକ ନିଜ କର୍ମୀମାନେ ଘରଢ଼ିଂକି କୁମ୍ଭୀର ପରି କାମ କଲେ। ସେ ହାରିଗଲେ। ରାଜନୀତିର ନିଷ୍ଠୁର ବାସ୍ତବତା ଉପଲବ୍ଧି କରି ସେ ନିଜର ବ୍ୟବସାୟକୁ ଫେରି ଆସିଲେ। ଦୀର୍ଘଦିନ ବ୍ୟବସାୟରୁ ଓହରି ଯାଇଥିଲେ ମଧ୍ୟ ଗୋଟିଏ ନିର୍ବାଚନ ମକଦ୍ଦମାରେ ଜୟଲାଭ କରି ସେ ନିଜ ପ୍ରତିଷ୍ଠା ଫେରାଇ ଆଣିଲେ। ହୀରାକୁଦ ବଂଧ ଫଳରେ ୧୯୫୫ରେ ଜଳମଗ୍ନ ଜମିର କ୍ଷତି ପୂରଣ ଚାଷୀକୁ ମିଳି ନ ଥାଏ। ଅନେକ ଗ୍ରାମୀଣ ଦେବ ଦେବୀଂକ ପୂଜା ନୀତି ବଂଦ। କାରଣ ଦେବୋତ୍ତର ଜମି ଦଖଲ କ୍ଷତି ପୂରଣ ଦିଆ ହୋଇ ନ ଥାଏ। ତାଂକ ଦାବି ଫଳରେ ପ୍ରତିଷ୍ଠିତ ଆର୍‌ବିଟ୍ରେଟରଂକ ପାଖରେ ସେବାୟତ ମକଦ୍ଦମା କରି ଜିତିଲେ। ଜିଲ୍ଲା ଟ୍ରଷ୍ଟ ଫଂଡର ଉପାଦେୟତା ଅନୁଭବ କରି ସେ ଏହାର ସକ୍ରିୟ'ସଭ୍ୟ ଥାଇ ମହିଳା କଲେଜ ସ୍ଥାପନ କରାଇଲେ। ବୁର୍ଲା ମେଡିକାଲ ଇଂଜିନିଅରିଂ କଲେଜର ସୁପରିଚାଳନା ଓ ଶ୍ରୀବୃଦ୍ଧି ନିମିତ୍ତ ସେ ଲାଗିଲେ। ବହୁ ସାଂସ୍କୃତିକ ଅନୁଷ୍ଠାନ ତାଂକ ଉଦ୍ୟମ ଓ ପରାମର୍ଶରେ ସ୍ଥାପିତ ହେଲା। ରାଜ୍ୟ ସଭାରେ ଗଣତଂତ୍ର ପରିଷଦର ଗୋଟିଏ ସ୍ଥାନ ପାଇବାର ଥାଏ। ଏହା ପରୋକ୍ଷ ନିର୍ବାଚନ। ଜୟ ସୁନିଶ୍ଚିତ। ତଥାପି ଦଳ ତାଂକୁ ପ୍ରାର୍ଥୀ କଲା ନାହିଁ। ତେଣୁ ରାଜନୀତିରେ ଆଉ ସେ ଆଗ୍ରହୀ ହେଉ ନ ଥାଂତି। ପ୍ରଥମ ବ୍ୟବସ୍ଥାପକ ଥିବା ସମୟରେ ସେ ୧୯୪୮ ରୁ ୧୯୫୧ ପର୍ଯଂତ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ସଭ୍ୟ ଥିଲେ। ୧୯୬୩ ରେ ସେ ସେହି ରେଜିଷ୍ଟର୍ଡ ଗ୍ରାଜୁଏଟ ନିର୍ବାଚନ ମଂଡଳୀରୁ ସିନେଟକୁ ଯାଇ ସେଠାରୁ ସିଂଡିକେଟକୁ ନିର୍ବାଚିତ ହେଲେ। ସିଂଡିକେଟ ସଭ୍ୟ ଥାଇ ସଂବଲପୁରର ଆଇନ କଲେଜ ସ୍ଥାପନ ନିମିତ୍ତ ଉଦ୍ୟମ କଲେ। ସେଠାରେ ବିଶ୍ୱବିଦ୍ୟାଳୟର ସହବଂଧନ ନ ମିଳିବାରୁ ପ୍ରତିବାଦରେ ସେ ସିନେଟରୁ ଇସ୍ତଫା ଦେଲେ ମାତ୍ର ତାଂକ ନିର୍ମଳ ବ୍ୟକ୍ତିତ୍ୱ ହେତୁ କଲେଜ ସ୍ଥାପନର ଯୌକ୍ତିକତା ଅବଗତ ଥାଇ ପୁନର୍ବିଚାର କରି କୁଳପତି ଡକ୍‌ଟର ପରିଜା ଏହା ସିଂଡିକେଟରେ ମଂଜୁରି କରାଇଲେ। ଫଳରେ ୧୯୬୫ରେ ଲାଲା ଲଜପତ ରାୟ ଶତ ବାର୍ଷିକୀ ଉତ୍ସବ ଅବସରରେ ଏହା ରାଜ୍ୟପାଳଂକ ଦ୍ୱାରା ଉଦ୍‌ଘାଟିତ ହେଲା। ପରବର୍ତୀ କାଳରେ ଏହା ଭାଗ୍ୟର ବିଡଂବନା ଯେ ଏହି ଆଇନ କଲେଜ ତାଂକ ପ୍ରତି ଅବିଚାର କରିଥିଲା।୧୯୭୦ରେ ସେ ଆଂଡାମାନ ନିକୋବର ଦ୍ୱୀପ ଭ୍ରମଣ କରିଆସିଲେ। ଯେତେବେଳେ ୧୯୭୧ରେ ଲୋକସଭା ନିର୍ବାଚନରେ ପରାଜିତ ହୋଇ ସେ ତିନିଶହ ମାତ୍ର ଟଂକାରେ ଅଧ୍ୟାପକ ହେଲେ ସେତେବେଳେ ସେ ସିଂଡିକେଟ ପଦ ଏଥିପାଇଁ

ହରାଇଲେ। ତାଂକୁ ଅଧ୍ୟକ୍ଷ ମଧ୍ୟ କରାଯାଇ ପାରିଥାଆଂତା। ତାହା ହେଲାନାହିଁ। କୁଳପତି ଭାବରେ ଡକ୍ଟର ପରଶୁରାମ ମିଶ୍ର ବା ତାଂକପରେ ଅସମୟରେ ମୃତ୍ୟୁ ବରଣ କରିଥିବା ଆର. କେ. କାପୁରଂକ ସ୍ଥାନରେ ସେ ଗୃହୀତ ହୋଇ ନ ଥିଲେ। ହିଂଦୁ ଆଇନ ପଢ଼ାଇବା ଅବସରରେ ସେ 'ସପ୍ତର୍ଷି'ରେ ମନୁସ୍ମୃତିରେ ଆଇନ ଶୀର୍ଷକ ପ୍ରବଂଧମାଳା ପ୍ରକାଶ କରୁଥିଲେ। ୧୯୭୩ରେ ସେ ଘରୋଇ ଭାବରେ ପରୀକ୍ଷା ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏଲ୍.ଏଲ୍.ଏମ. ପରି କଠିନ ପରୀକ୍ଷାରେ କୃତିତ୍ୱ ହାସଲ କଲେ ଓ ପରେ ଏହି ମନୁସ୍ମୃତି ଉପରେ ଥେସିସ ପ୍ରସ୍ତୁତ କରି ସଂବଲପୁର ବିଶ୍ୱବିଦ୍ୟାଳୟରୁ ଆଇନର ପି.ଏଚ୍.ଡି. ଉପାଧି ପାଇଲେ। ୧୯୭୪ରେ ଭାରତ ସରକାରଂକର ଭାଷା (ଆଇନ) ଆୟୋଗର ସଭ୍ୟ ଭାବରେ ସେ ଯୋଗଦାନ କରି ୧୯୭୬ରେ ଅବସର ନେଲେ। ଏହା ଏକ ବେତନ ଭୋଗୀ ପଦ ଥିବାରୁ ସେ କଲେଜରୁ ଇସ୍ତଫା ଦେଇ ଦିଲ୍ଲୀ ଗଲେ। ଫେରିଆସି ପୁଣି ଆଇନ କଲେଜରେ ଅଧ୍ୟକ୍ଷ ହେଲେ। ୧୯୭୯ ପର୍ଯଂତ ସେ ଅଧ୍ୟକ୍ଷ ଥିଲେ। 'ଦି ଲ ଅଫ୍ ଏଭିଡେନ୍ସ ଇନ୍ ଏନ୍‌ସିଏଂଟ୍ ଇଂଡିଆ' ବିଷୟରେ ସେ ନିଜର ଥେସିସ ପ୍ରସ୍ତୁତ କରି L.L.D ପାଇ ଦାଖଲ କଲେ। ମାତ୍ର ଅବସ୍ଥା ଚକ୍ରରେ ସେ ଡିଗ୍ରିରୁ ବଂଚିତ ହେଲେ। ଅଥଚ ବିଶ୍ୱବିଦ୍ୟାଳୟର ସମ୍ମାନ ସୂଚକ ଡିଲିଟ୍ ଡିଗ୍ରି ସେଇ ବର୍ଷ ବିଜୁପଟ୍ଟନାୟକଂକୁ ମିଳିଥିଲା। ଡିଗ୍ରି ନ ମିଳିବା ସତ୍ତ୍ୱେ ସେ ଉକ୍ତ ପୁସ୍ତକର ପ୍ରକାଶନ ନିମିତ୍ତ ଉଦ୍ୟମ କଲେ। ଏହା ଛପାଗଲା। ମୂଲ୍ୟ ୨୮୦ ଟଂକା ରଖାଗଲା। ମାତ୍ର ମୁଦ୍ରଣଗତ ଓ ତଥ୍ୟଗତ ତ୍ରୁଟି ଏପରି ରହିଗଲା ଯେ ନିବଂଧର ଲେଖକ ନିଜେ ମଧ୍ୟ ଏହା ପଢ଼ି ସିନେଟ ନିଷ୍ପତ୍ତିକୁ ଉଚିତ ମନେ କରିବା ଭାବିଲେ। ପୁଣି ପ୍ରବଂଧର ଓଡ଼ିଆ ଅନୁବାଦ ପ୍ରକାଶନ ପାଇ ପଠାଇଲେ। କଟକରେ ପ୍ରକାଶକ ଏହା ଫେରାଇ ଦେଲେ। ଆଇନ ଅଧ୍ୟୟନ, ଅଧ୍ୟାପନା ଏହିପରି ତାଂକ ଭାଗ୍ୟରେ ପ୍ରତିକୂଳ ଥିଲା।

ସେ ୧୯୬୫ରେ କଂଗ୍ରେସକୁ ଫେରି ଆସିଲେ। ଦଳ ତରଫରୁ ରାଜ୍ୟ ସଭାକୁ ପ୍ରାର୍ଥୀ ନିର୍ବାଚିତ ହେଲେ। ତାଂକ ପୂର୍ବ ସାଂସଦୀୟ ଅଭିଜ୍ଞତା ଫଳରେ ରାଜ୍ୟସଭା ଚେୟାରମେନ୍ ଡକ୍ଟର ଜାକିର ହୋସେନଂକର ସେ ଦୃଷ୍ଟିକୁ ଆସିପାରିଥିଲେ। ଏହାଫଳରେ ରାଷ୍ଟ୍ରପତି ଥିବାବେଳେ ତାଂକୁ ପ୍ରଭାବିତ କରି ଶ୍ରଦ୍ଧାକର ୧୯୬୮ ଜାନୁଆରିରେ ସଂବଲପୁର ବିଶ୍ୱବିଦ୍ୟାଳୟର ଭିତ୍ତି ତାଂକ ଦ୍ୱାରା ସ୍ଥାପନ କରାଇ ପାରିଥିଲେ। ଏହା ସରିଗଲାପରେ ୧୯୬୭ରେ ସେ ପୁଣି ଲୋକସଭାକୁ ନିର୍ବାଚିତ ହେଲେ। ଏହି ସମୟରେ ୧୯୬୮ରେ ଏକ ସଂସଦୀୟ ପ୍ରତିନିଧି ଦଳରେ ସେ ରୁଷ ଭ୍ରମଣରେ ଯାଇଥିଲେ। ରୁଷର ବିଭିନ୍ନ ଅଂଚଳ ଓ ଅନୁଷ୍ଠାନ ସହିତ ସେ ଇଂଲଂଡ, ଫ୍ରାନ୍ସ, ହଂଗେରୀ ଆଦି ଦେଶ ଭ୍ରମଣ କରି ନିଜ ଅଭିଜ୍ଞତାକୁ ନେଇ ଭ୍ରମଣ ପୁସ୍ତକ 'ରୁଷିଆ ଭ୍ରମଣ' ରଚନା କରିଥିଲେ।

ଏହା ପୂର୍ବରୁ ୧୯୬୦ରେ ଉତ୍ତର ଭାରତର ତୀର୍ଥ ଭ୍ରମଣ ଓ ୧୯୭୦ରେ ଆଂଡାମାନ ନିକୋବର ଭ୍ରମଣ କରି ଅଭିଜ୍ଞତା ଲିପିବଦ୍ଧ କରିଥିଲେ। ୧୯୭୧ରେ ସେ ଲୋକସଭାକୁ ପ୍ରାର୍ଥୀ ଥାଇ ପରାଜିତ ହେଲେ। ଏହାପରେ ପ୍ରାୟ ସେ ରାଜନୈତିକ ସନ୍ୟାସ ଗ୍ରହଣ କରିଥିଲେ। ତାଂକର ଆର୍ଥିକ ସଂକଟ ଗୁରୁତର ଥିଲା। ୧୯୮୩ -୧୯୮୪ରେ ସେ ଗୁରୁତର ଅସୁସ୍ଥ ଥାଇ ବଂବେରେ ଚିକିତ୍ସିତ ହୋଇ ଆରୋଗ୍ୟ ଲାଭ କରିଥିଲେ। ତଥାପି ୧୯୮୫ରେ ସେ ଓଡ଼ିଶା ବିଧାନସଭାକୁ ଦୀର୍ଘ ବ୍ୟବଧାନପରେ ଫେରିଆସିଲେ। ରାଜ୍ୟବାସୀ ସମସ୍ତଂକର ଆଶା ଥିଲା ସେ କୌଣସି ଗୋଟିଏ ଗୁରୁତ୍ୱପୂର୍ଣ ଦାୟିତ୍ୱରେ ରହିବେ, ମାତ୍ର ସେଠାରେ ମଧ୍ୟ ତାଂକୁ ଭାଗ୍ୟଦେବୀ ସୁପ୍ରସନ୍ନ ନ ଥିଲେ। ଦଳୀୟ ନୈତିକ ମାନ ଯେଉଁ ନିମ୍ନ ସ୍ତରକୁ ଖସିଯାଇଥିଲା ସେଥିରେ ତାଂକ ପରି ନୀତିନିଷ୍ଠ ମୂଲ୍ୟବୋଧଗ୍ରାହୀ ବିଧାୟକଂକର ସ୍ଥାନ ନ ଥିଲା। ଶ୍ରଦ୍ଧାକରଂକ ବିଧାୟକ ଜୀବନ ଏହିପରି ନିଷ୍ଫଳତା ସହିତ ଶେଷ ହୁଏ।

## ଅଧ୍ୟାପକ ଓ ଅଧ୍ୟକ୍ଷ ଶିକ୍ଷାବିତ୍ ଶ୍ରଦ୍ଧାକର :

ଆଇନ କଲେଜରେ ତାଂକର ଅଧ୍ୟୟନ ଓ ଅଧ୍ୟାପନା ଅଭିଜ୍ଞତା ପୂର୍ବରୁ ସୂଚିତ। ୧୯୮୧ରେ ପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପୁରୀର ପ୍ରଥମ ସିଂଡିକେଟକୁ ସେ ନିଜର ସଂସ୍କୃତିରେ ବ୍ୟୁତ୍ପତ୍ତି ନିମିତ୍ତ ମନୋନୀତ ସଭ୍ୟଥାଇ ବିଶ୍ୱବିଦ୍ୟାଳୟର ବିକାଶ ସାଧନରେ ସହାୟକ ହୋଇଥିଲେ। ୧୯୮୩ରେ କୁଳପତି ଡ. ସତ୍ୟବ୍ରତ ଶାସ୍ତ୍ରୀଂକ ଅନୁପସ୍ଥିତିରେ ସେ କୁଳପତି ଦାୟିତ୍ୱ ତୁଲାଇଥିଲେ। ୧୯୮୫ରେ ମଧ୍ୟ ସେ ବିଧାନସଭାରୁ ସଂସ୍କୃତ ବିଶ୍ୱବିଦ୍ୟାଳୟ ସିନେଟକୁ ନିର୍ବାଚିତ ହୋଇଥିଲେ।

## ସାଂବାଦିକ ଶ୍ରଦ୍ଧାକର :

ଛାତ୍ର ଜୀବନରୁ ସେ ପତ୍ର ପତ୍ରିକାରେ ଲେଖା ପ୍ରକାଶ କରୁଥିଲେ। ଆଇନ ବ୍ୟବସାୟ ଆରଂଭରେ ମଧ୍ୟ ନବଭାରତ, ସହକାର, ନବଯୁଗ, ଚତୁରଂଗ, ଶଂଖ ଆଦି ପତ୍ରିକାରେ ତାଂକ ପ୍ରକାଶିତ ପ୍ରବଂଧ ଲୋକପ୍ରିୟ ଥିଲା। ୧୯୩୫ର ଭାରତ ଶାସନ ଆଇନ ଅନୁସାରେ ସମଗ୍ର ସଂବଲପୁର ଜିଲ୍ଲା ଆଂଶିକ ବହିର୍ଭୂତ ଅଂଚଳ ରୂପେ ଗଣାଯାଉଥିଲା। ଫଳରେ ସବୁ ସାଧାରଣ ଆଇନ ସେଠାରେ କାର୍ଯ କରୁନଥିଲା। ଏହାର ପ୍ରତିବାଦରେସେ ଅନେକ ପ୍ରବଂଧ ଲେଖିଥିଲେ, ଏହା 'ସଂବଲପୁର ଓ ହସ୍ତମୁଦି ମାହାଲ' ନାମରେ ଏକ ପୁସ୍ତକରେ ପ୍ରକାଶିତ। ଏହା ଫଳରେ ଓଡ଼ିଶା ସରକାର ସ୍ୱର୍ଗତଃ ଅମୃତଲାଲ ଠକ୍କର ବାପ୍ପାଂକ ଅଧ୍ୟକ୍ଷତାରେ ଏଥିରେ ସଂସ୍କାର ଆଣିବାକୁ ଏକ କମିଟି

ବସାଇଥିଲେ। ଲୋକସଭା ରାଜ୍ୟସଭା ସଦସ୍ୟ ଥାଇ ମଧ୍ୟ ସେ 'ଶଂକର୍ସ ୱିକ୍ଲି' ସାପ୍ତାହିକ ପତ୍ରିକାରେ ବ୍ୟଂଗାତ୍ମକ ଲେଖାମାନ ପ୍ରକାଶ କରୁଥିଲେ। ୧୯୮୧ରେ କଟକରେ ପ୍ରଜାତଂତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ଡକ୍ଟର ହରେକୃଷ୍ଣ ମହାତାବଂକ ପ୍ରୋତ୍ସାହନରେ ସଂବଲପୁରରୁ ଏକ ଦୈନିକ 'ହୀରାଖଂଡ' ନାମରେ ପ୍ରକାଶ ପାଇଲା । ଶ୍ରଦ୍ଧାକର ଏହାର ବର୍ଷାଧିକ କାଳ ପ୍ରଥମ ସଂପାଦକ ହେଲେ। ରାଜ୍ୟପାଳ ସି.ଏମ୍ ପୁନାଚ୍ଚା ଏହାର ଉଦ୍‌ଘାଟନ କଲେ। ଜିଲ୍ଲାର ବରିଷ୍ଠ ସାଂବାଦିକ ବିଶ୍ୱକସେନ ବହିଦାର, ଗୋପାଳକୃଷ୍ଣ ରଥ, କୁମାର ହୋସେନ ଆଦି ତାଂକୁ ସଂପାଦନାରେ ସାହାଯ୍ୟ କଲେ। ପ୍ରବଳ ଉତ୍ସାହ ସହିତ ଉଦ୍‌ଘାଟିତ ଦୈନିକର ଗ୍ରାହକ ସଂଖ୍ୟା ଯଥେଷ୍ଟ ଥିଲା। ପରବର୍ତ୍ତୀ କାଳରେ ଏହା ସଂବଲପୁରରେ ଶ୍ରୀପଂଚମୀ ଦିନ ବାର୍ଷିକ ବସଂତ ଉତ୍ସବ ଅନୁଷ୍ଠାନ ଆରଂଭ କରି କବି ଲେଖକମାନଂକୁ ସଂବର୍ଧନା ଦ୍ୱାରା ଉତ୍ସାହିତ କରୁଥିଲେ। ବିତରଣ ପ୍ରଣାଳୀରେ ଅବ୍ୟବସ୍ଥା ଫଳରେ ଏହା ପରବର୍ତ୍ତୀ କାଳରେ ବଂଦ ହୋଇଯାଇଥିଲା।

## ସାହିତ୍ୟିକ ଶ୍ରଦ୍ଧାକର :

ରାଜନୀତିଜ୍ଞ, ବ୍ୟବସ୍ଥାପକ, ଅଧିବକ୍ତା, ସମାଜସେବୀ, ଆଇନ ଅଧ୍ୟାପକ ଅଧ୍ୟକ୍ଷ ବ୍ୟତୀତ ଅନ୍ୟ ଏକ କ୍ଷେତ୍ରରେ ଶ୍ରଦ୍ଧାକରଂକର ପ୍ରତିଷ୍ଠା ସ୍ମରଣୀୟ। ସାହିତ୍ୟ ସେବା ତାଂକୁ ଅମର କରି ରଖିବ। ଭାଗ୍ୟଦେବୀ ତାଂକୁ ଅନ୍ୟ କ୍ଷେତ୍ରରେ ପ୍ରତିକୂଳ ଥାଇ ଏ କ୍ଷେତ୍ରରେ ମଧ୍ୟ ସୁପ୍ରସନ୍ନ ନ ଥିଲେ। ଏଥିରୁ ଅର୍ଥ ବା ଯଶ ଲାଭ ତାଂକ ଭାଗ୍ୟରେ ରହିଲାନାହିଁ। ତାଂକର ରଚନାବଳୀରୁ ତାଂକର ବିଦ୍ୟାର ବିବିଧତା ଜଣାପଡ଼େ।

**କ) ଗଳ୍ପ ସଂଗ୍ରହ/କବିତା**

୧) ଗଳ୍ପାଂଜଳି
୨) ବିଷକନ୍ୟା
୩) ଜୁଆର ଭଟ୍ଟା
୪) ଗୋଟିଏ କରୁଣ ରାତି
୫) ହଂଗେରୀୟ ଗଳ୍ପମାଳା
୬) ଦେଶବିଦେଶର ଗଳ୍ପ
୭) ପ୍ରେମର ଅନେକ ରଂଗ (କବିତା ଗୁଚ୍ଛ)

**ଖ) ନାଟକ ଏକାଂକିକା**

୧) ସୁରେଂଦ୍ର ସାଏ
୨) କସ୍ତୁରୀ ମୃଗ (ଏକାଂକିକା)

ଗ) ଜୀବନ ଚରିତ

୧) ଅମର ଜୀବନ (ଡକ୍ଟର ଜନାର୍ଦ୍ଦନ)
୨) ଲେନିନ୍
୩) ଆର୍ତ୍ତବଂଧୁ ଆଇଜାକ୍ ସାଂତରା
୪) ଆତ୍ମ ଜୀବନୀ ୧ମ ଭାଗ 'ମଧ୍ୟମ ପୁରୁଷ'
୫) ଅସ୍ତରାଗ (୨ୟ ଭାଗ)

ଘ) ଭ୍ରମଣ କାହାଣୀ

୧) ତୀର୍ଥ ପଥେ
୨) ରୁଷିଆ କାହାଣୀ
୩) ହଂଗେରୀ ଭ୍ରମଣ
୪) ଆଂଡାମାନ ନିକୋବର କଥା

ପ୍ରବଂଧ

୧) ସଂବଲପୁର ଜିଲା ଓ ହସ୍ତମୁଦିମାହାଲ
୨) ହୀରାକୁଦ ବୁଡ଼ି ଅଂଚଳ ଲୋକଂକ ଦୁର୍ଦ୍ଦଶା
୩) ଆଇନ ଓ ଆମେ
୪) ମନୁ ସ୍ମୃତିରେ ଆଇନ
୫) ସୂପ (ରମ୍ୟ ରଚନା)
୬) ଓଡ଼ିଶା ବିଧାନ ସଭାରେ ପାଂଚବର୍ଷ
୭) ଲୋକସଭାର ପାଂଚବର୍ଷ
୮) ଆମେରିକା ଅନୁଭୂତି

ଶ୍ରଦ୍ଧାକରଂକର ରାଜନୈତିକ ଅବଦାନ ଅପେକ୍ଷା ତାଂକର ସାରସ୍ୱତ ସାଧନା ଅଧିକ ମୂଲ୍ୟବାନ । ଶ୍ରଦ୍ଧାକରଂକର ଜୀବନ ସାଧନା ଅମୃତ ରାଗରେ ରଂଜିତ । ଏହି ପ୍ରଜ୍ଞାପୁରୁଷ, ଜ୍ଞାନୀ, ତପସ୍ୱୀ, ବିଳାସ ତ୍ୟାଗୀ, ଅଧ୍ୟବସାୟୀ, ସାରସ୍ୱତ ସେବକ ଯେଉଁମାନେ ତାଂକ ସଂସ୍ପର୍ଶରେ ଆସୁଥିଲେ ସେ ସମସ୍ତଂକୁ ସେ ନାନା ଭାବେ ଉଦ୍‌ବୁଦ୍ଧ କରିପାରୁଥିଲେ ।

୧୯୯୦ ବିଧାନ ସଭା ନିର୍ବାଚନ ପରେ ସାଧାରଣ ଜୀବନରୁ ସ୍ୱାସ୍ଥ୍ୟଗତ କାରଣରୁ ସେ ଓହରିଗଲେ । ୧୯୯୧ରେ ହୃଦ୍‌ରୋଗରେ ଆକ୍ରାଂତ ହେଲେ । ୧୯୯୨ରେ ଏକ ଅସ୍ତ୍ରୋପଚାର ପରେ ଶଯ୍ୟାଶାୟୀ ହୋଇ ପ୍ରାୟ ଚଳତ୍ ଶକ୍ତି ହରାଇଲେ । ଶେଷରେ ୧୯୯୩ ଜାନୁଆରି ପାଂଚ ତାରିଖ ଦିନ ୭୮ ବର୍ଷ ବୟସରେ ଏହି ପ୍ରତିଭାଧରଂକର ଇହଲୀଳା ସମାପନ ହୁଏ ।



# ଅସହଯୋଗୀ
# ଚିଂତାମଣି ପୂଜାରୀ

ବିଗତ ଶତାବ୍ଦୀର ୩ୟ ଦଶାବ୍ଦୀଠାରୁ ଅବିଭକ୍ତ ସଂବଲପୁର ଜିଲ୍ଲାରେ ମହାତ୍ମାଗାଂଧିଙ୍କର ଅସହଯୋଗ ଆଂଦୋଳନ, ତତ୍‌ସଂକ୍ରାଂତ ବିଭିନ୍ନ କାର୍ଯକ୍ରମ ଓ ସ୍ୱାଧୀନତା ସଂଗ୍ରାମର ବାର୍ତା ତୃଣମୂଳ ସ୍ତରରେ ଗାଁ ଗହଳିରେ ପହଂଚାଇଥିବା ନିଃସ୍ୱାର୍ଥ ଜନସେବୀମାନଂକ ମଧ୍ୟରେ ଚିଂତାମଣି ପୂଜାରୀ ଅନ୍ୟତମ। ଅପରିଣତ ବୟସରେ ପ୍ରାଣତ୍ୟାଗ କରି ସେ ସ୍ୱାଧୀନତାପ୍ରାପ୍ତିର ସୁଖ ଆସ୍ୱାଦନରୁ ବଂଚିତ ହେଲେ। ଜିଲ୍ଲା କଂଗ୍ରେସରେ ପଂଚସଖା ଭାବରେ ପରିଚିତ ଥିଲେ ପଂଡିତ ଲକ୍ଷ୍ମୀନାରାୟଣ, ଭାଗୀରଥି ପଟନାୟକ, ପଂଡିତ ନୃସିଂହ ଗୁରୁ, ଦୟାନିଧି ଶତପଥୀଂକ ସହିତ ଚିଂତାମଣି ପୂଜାରୀ। ଚିଂତାମଣିଂକର ଜୀବନରେ ସବୁ କିଛି ସାଧାରଣ ମାତ୍ର ସଂଗଠନ ଶକ୍ତି ଓ ଆଦର୍ଶ ପ୍ରତି ଅନୁରକ୍ତି ଥିଲା ଅସାଧାରଣ।

ଜନ୍ମସ୍ଥାନ ଅଜଣା। ୧୯୨୧ରେ ଅସହଯୋଗ ଆଂଦୋଳନରେ ଯୋଗ ଦେଲେ। ଖଦିର ପ୍ରଚାର ଓ ଅସ୍ପୃଶ୍ୟତା ନିବାରଣ କାର୍ଯକ୍ରମ ଲୋକପ୍ରିୟ କରିବାରେ ତାଂକର ବିଶେଷ ଆଗ୍ରହ ଥିଲା। ଜନସାଧାରଣଂକୁ ସଂଗଠିତ କରି ନିଜ ଗାଁରେ ସେ ଏକ ଖଦି କେଂନ୍ଦ୍ର ପ୍ରତିଷ୍ଠା କଲେ। ହାତକଟା ସୂତା ସେଠାରେ ସଂଗୃହୀତ ହୋଇ ଲୁଗା ବୁଣା ଗଲା। କଂଗ୍ରେସ କର୍ମୀମାନଂକୁ ସେଇ ହାତକଟା ସୂତାର ଖଦି ବ୍ୟବହାର ପାଇଁ ଦିଆଗଲା। ଲୋକଂକୁ କାମ ମିଳିଲା, କଟାଳିମାନେ ଉପକୃତ ହେଲେ ଓ ଗଂଡା ଶ୍ରେଣୀର ବୁଣାଳିମାନେ ମଧ୍ୟ ନିଜର ଦକ୍ଷତା ପ୍ରତିପାଦନର ସୁଯୋଗ ପାଇଲେ। ନୈଷ୍ଠିକ ବ୍ରାହ୍ମଣ ଓ ଉଚ୍ଚବର୍ଗର ହିଂନ୍ଦୁମାନେ ଡଂବ, ଗଂଡା, ଘାସିମାନଂକ ହାତରୁ କେବଳ ଜଳସ୍ପର୍ଶ କରୁ ନଥିଲେ ତାହା ନୁହେଁ, ସେମାନଂକୁ ସମାଜରେ କୌଣସି ଅର୍ଥନୈତିକ ଉନ୍ନତି କାର୍ଯକ୍ରମରେ ମଧ୍ୟ ଭାଗନେବାକୁ ସୁଯୋଗ ଦେଉ ନ ଥିଲେ। ଫଳରେ ଉଦର ପ୍ରତିପୋଷଣ ନିମିତ୍ତ ସେମାନେ ଅନେକ ଅପରାଧ କରିବାକୁ ବାଧ୍ୟ ହେଉଥିଲେ। ସେମାନେ ପେଟଭୋକ ଭୁଲିଯିବାକୁ ନିଶା ସେବନ କରୁଥିଲେ। ପଂଡିତ

ଲକ୍ଷ୍ମୀନାରାୟଣ ଓ ପଂଡିତ ନୃସିଂହ ଗୁରୁ ହରିଜନ ସେବା ସଂଘ ସହିତ ସଂପୃକ୍ତ ଥିଲେ। ପଂଚପଲ୍ଲୀ ଗ୍ରାମରେ ଖଦି କେଂଦ୍ର ପାଖରେ ହରିଜନ ସେବା ନିମିତ୍ତ ସେ ଏକ କୁଟୀର ନିର୍ମାଣ କରି ଲୋକମାନଂକୁ ଅସ୍ପୃଶ୍ୟତାର କୁପ୍ରଭାବ ଓ ନିଶାନିବାରଣର ଆବଶ୍ୟକତା ଦିଗରେ ସଚେତନ କରାଇଲେ। ଜିଲାରେ କୃଷକମାନଂକୁ ସଂଗଠିତ କରାଇ କଂଗ୍ରେସର ବାର୍ତା ପ୍ରଚାର ଅସ୍ପୃଶ୍ୟତା ନିବାରଣ ସହିତ ନିଶା ବିରୋଧ ନିମିତ୍ତ ଏକ ପତ୍ରିକାର ଆବଶ୍ୟକତା ଅନୁଭବ କରି ସେ ସହଯୋଗୀ ଲକ୍ଷ୍ମୀନାରାୟଣ ଓ ଭାଗୀରଥିଂକ ସହିତ ନିଜ ଜମି ବିକ୍ରିକରି କିଛି ଧନ ଯୋଗାଡ଼ କଲେ। ଏକ ଛାପାଖାନା ଖରିଦ କଲେ, ମାତ୍ର ଏହା ସରକାରଂକର କୋପଦୃଷ୍ଟିକୁ ଆସିଲା। ରାଜଦ୍ରୋହ ପ୍ରଚାର ନିମିତ୍ତ ଏହା ଉଦ୍ଦିଷ୍ଟ ଥିବା ଦର୍ଶାଇ ସରକାର ଏହି ଛାପାଖାନାକୁ ବାଜ୍ୟାପ୍ତ କରିନେଲେ। ଜିଲା କଂଗ୍ରେସର ଚିଂତାମଣି ସଭାପତି ଭାଗୀରଥି ସଂପାଦକ ଥାଇ ପଂଡିତ ଲକ୍ଷ୍ମୀନାରାୟଣ, ପଂଡିତ ନୃସିଂହ ଗୁରୁ ଝାରସୁଗୁଡ଼ାର ନିଃସ୍ୱାର୍ଥ ଜନସେବୀ ମହାବୀର ସିଂହଂକ ସହିତ ଏମାନେ କଂଗ୍ରେସକୁ ଶକ୍ତିଶାଳୀ ଜନ ସଂଗଠନ୍‌ ଭାବେ ଗଢ଼ି ବସିଲେ। ସେମାନଂକର ପ୍ରେରଣାରେ ଝାରସୁଗୁଡ଼ାରୁ ବିହାରୀ ତଂତୀ, କଷ୍ଟରାମ ତଂତୀ, ସୁଖରାମ ତଂତୀ, କରଦରାମ ତଂତୀ ଆଦି ଗଂଡା ସଂପ୍ରଦାୟର କର୍ମୀ କଂଗ୍ରେସରେ ଯୋଗଦେଇ ଝାରସୁଗୁଡ଼ାରେ ଅନୁଷ୍ଠାନକୁ ଲୋକପ୍ରିୟ କରି କାର୍ଯକ୍ଷମ କରାଇଲେ। ୧୯୨୯ ମସିହା କଲିକତା କଂଗ୍ରେସରେ ଚିଂତାମଣି ଓ ଲକ୍ଷ୍ମୀନାରାୟଣ ଜିଲା ପ୍ରତିନିଧିଭାବେ ଯୋଗ ଦେଇ ସର୍ବଭାରତୀୟ ସ୍ତରର କଂଗ୍ରେସ କାର୍ଯକ୍ରମ ଅନୁଧ୍ୟାନ କଲେ। ମହାତ୍ମା ଗାଂଧି ପଂଡିତ ନେହେରୁଂକ ସହିତ ଆଲୋଚନା କରି ଜିଲାର କଂଗ୍ରେସ ଅନୁଷ୍ଠାନ ଦୃଢ଼ୀକରଣ ନିମିତ୍ତ ଯୋଜନା କଲେ।

୧୯୨୯ ମସିହା ନିଶା ନିବାରଣ ଆଂଦୋଳନରେ ଗଂଜେଇ ଦୋକାନ ଆଗରେ ପିକେଟିଂ କରି ଲୋକମାନଂକୁ ଏହାର ବ୍ୟବହାରରୁ ନିବୃତ୍ତ କରାଇବା, ମଦ ଦୋକାନ ଆଗରେ ସେହିପରି ଶୋଇରହି ପୁଲିସ୍ ଲାଠିମାଡ଼ ଖାଇ ମଦ୍ୟପମାନଂକୁ ଭାଟି ଭିତରକୁ ନ ଛାଡ଼ିବା କାର୍ଯକ୍ରମ ଉଗ୍ରତର ଆକାର ଧାରଣ କଲା। ଲୋକମାନେ ନିଶା ନିବାରଣ ନିମିତ୍ତ ସଚେତନ ହେଲେ। ମଦ ବିକ୍ରି ନ ହେବାରୁ ମଦଭାଟି ଠିକାଦାରମାନେ ନିଜର ଲାଇସେନ୍ସ ମଧ୍ୟ ସରକାରଂକୁ ଫେରସ୍ତ ଦେଇଦେଲେ। ପ୍ରତିବର୍ଷ ଆରଂଭରେ ମଦଭାଟିମାନ ନିଲାମ କରାଇ ସରକାର ରାଜସ୍ୱ ଆଦାୟର ଲକ୍ଷ୍ୟ ରଖିଥାଆଂତି, ମାତ୍ର ଲୋକପ୍ରିୟ ଆଂଦୋଳନ ଫଳରେ ଭାଟିସବୁ ନିଲାମ ନେବାକୁ କେହି ଆଗେଇ ଆସିଲେନାହିଁ। ଜିଲ୍ଲା ପ୍ରଶାସନର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା ଓ ଜିଲ୍ଲାର ଡେପୁଟି କମିସନର ଗୋରା ହାକିମ ସରକାରଂକ ଦ୍ୱାରା ଭର୍ତ୍ସିତ ହେଲେ। ପରେ ପରେ ଲବଣ ସତ୍ୟାଗ୍ରହ ଆରଂଭ ହେଲା। ମହାତ୍ମାଗାଂଧିଂକର

ପ୍ରେରଣାରେ ଓଡ଼ିଶାରେ ଇଂଚୁଡ଼ିଠାରେ ଦାଣ୍ଡିଯାତ୍ରା ପରି ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା। ସଂବଲପୁର ଜିଲ୍ଲା ଉପକୂଳ ଶୂନ୍ୟ। ତେଣୁ ଚିଂତାମଣି ସ୍ୱେଚ୍ଛାସେବୀମାନଂକୁ ଏକତ୍ର କରି ସେମାନଙ୍କୁ ଧରି ଇଂଚୁଡ଼ି ଯାଇ ସେଠାରେ ଆଇନ ଅମାନ୍ୟ ଆଂଦୋଳନ ଆରଂଭ କରିବାକୁ ପ୍ରସ୍ତୁତ ହେଉଥିବା ସମୟରେ ପ୍ରତିଷେଧାତ୍ମକ ଭାବରେ ଗିରଫ ହୋଇ ଜେଲ୍‌କୁ ପଠାଗଲେ। ପରବର୍ଷ ପୁଣି ମଦ ଦୋକାନ ଆଗରେ ପିକେଟିଂ କରି ସେ ଗିରଫ ହୋଇ କାରାବରଣ କଲେ। ପାରିବାରିକ ଆର୍ଥିକ ଅନଟନ, ନିଃସ୍ୱାର୍ଥ ଜନସେବା ଓ ନିଜ ଆଦର୍ଶ ପୂରଣ ନିମିତ୍ତ କଠିନ ପରିଶ୍ରମ ଚିଂତାମଣିଂକର ସ୍ୱାସ୍ଥ୍ୟ ଉପରେ ଗଭୀର ପ୍ରତିକ୍ରିୟା ଆଣିଲା। ଜିଲ୍ଲା ସଭାପତି ପଦରୁ ଅବ୍ୟାହତି ନେଇ ସେ କେବଳ କାର୍ଯକାରୀ କମିଟିର ସଭ୍ୟ ଭାବେ ଆଂଦୋଳନ ସହିତ ଜଡ଼ିତ ହେଲେ। ଗ୍ରାମ ସ୍ତରରେ ଆଂଦୋଳନକୁ ଲୋକମୁଖୀ କରାଇବାରେ ନିଜ ଉଦ୍ୟମ ସେ ଅବ୍ୟାହତ ରଖିଲେ। ୧୯୩୪ ମସିହାରେ ଗାଂଧି ହରିଜନ କାର୍ଯକ୍ରମ ନେଇ ଝାରସୁଗୁଡ଼ାରେ ପହଂଚିଲେ। ତାଂକର କାର୍ଯକ୍ରମ ସଫଳ କରାଇବାରେ ସେ ନିଜ ସହକର୍ମୀମାନଂକ ସହିତ ମୁଖ୍ୟ ଭୂମିକା ଗ୍ରହଣ କଲେ। କୃଷକ ସଂଗଠନକୁ ଦୃଢ଼ କରିବାରେ ଲାଗିଲେ। ନବଗଠିତ ପ୍ରଦେଶରେ ଲୋକପ୍ରିୟ ମଂତ୍ରୀମଂଡଳ ଗଠନ ଆରଂଭ ହୁଏ। ସଂବଲପୁର ଜିଲ୍ଲାର ପ୍ରତିନିଧି ଓଡ଼ିଶା ମଂତ୍ରୀମଂଡଳରେ ସ୍ଥାନ ପାଆଂତି, ତୃଣମୂଳ ସ୍ତରରେ କଂଗ୍ରେସକୁ ସକ୍ରିୟ ଓ ଲୋକପ୍ରିୟ ରଖିଥିବା ନିର୍ବାଚନ ଜିଣିବା ଚିଂତାମଣିଂକ ପରି ନିଃସ୍ୱାର୍ଥ କର୍ମୀମାନଂକର ଏଥିରେ ଭୂମିକା ଗୌଣ ନ ଥିଲା। ମାତ୍ର ଭଗ୍ନସ୍ୱାସ୍ଥ୍ୟ ହେତୁ ସେ ଏହି ସମୟରେ ବିଶେଷ ସକ୍ରିୟ ନ ଥିଲେ। ହୃଦ୍‌ରୋଗରେ ଆକ୍ରାଂତ ହୋଇ ୧୯୪୨ ମସିହା ଜୁନ୍ ମାସରେ ସେ ପ୍ରାଣତ୍ୟାଗ କଲେ। ଦେଶ ଏକ ନିଃସ୍ୱାର୍ଥ ନିରଳସ ଜନସେବକଂକୁ ହରାଇଲା।

(ଶ୍ରୀ ଭାଗବତ ପ୍ରସାଦ ନଂଦଂକ ପ୍ରବଂଧ ଉପରେ ଆଧାରିତ)



କିଛି ରହେ ନାହିଁ
କାଳଗର୍ଭେ ସବୁ
ହୁଅଇ ଧ୍ୱଂସ
ସଂଚି ପାରିଥିଲେ
ଚିରକାଳ ଏକା
ରହଇ ଯଶ

– ବଡ଼କୁମାର ବଳଭଦ୍ର ଦେବ

ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ ମସିହାରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାଂକ ସଂପାଦିତ ଓ ପ୍ରକାଶିତ "ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ" ଗ୍ରଂଥରୁ ନିମ୍ନୋକ୍ତ ପାଂଚଜଣ ବିସ୍ମୃତ ରଚୟିତାମାନଂକର ନାମ ଓ ରଚନାବଳୀ ଗୃହୀତ।

# କମଳ ଲୋଚନ ଷଡ଼ଂଗୀ

ବୃତ୍ତିରେ ଶିକ୍ଷକ। ଘର ମୁଦିପଡ଼ା ସଂବଲପୁର ଟାଉନରେ। ବହୁଗ୍ରଂଥର ରଚୟିତା ଥାଇ ଲେଖକ ଭାବରେ ଶେଷ ଜୀବନରେ ସେ କଳାକାର ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ।

# ସଂଜୟ କୁମାର ସୂପକାର

ସଂଜୟ କୁମାର ସୁପକାରଂକ ଘର ସଂବଲପୁର ଟାଉନର ଝାଡୁଆ ପଡ଼ାରେ। ପ୍ରତିପଦ 'ଅ' ରେ ଆରଂଭ କରି ସେ ଅଖଂଡ ମଂଡଳ ଅଂଗନ କାବ୍ୟ ରଚନା କରିଥିଲେ।

# ସ୍ୱପ୍ନେଶ୍ୱର ବେହେରା

ସ୍ୱପ୍ନେଶ୍ୱର ବେହେରା ଅବିଭକ୍ତ ସଂବଲପୁର ଜିଲ୍ଲାର ଲଇଡ଼ା ଗ୍ରାମରେ ୧୯୧୭ରେ ଜନ୍ମଗ୍ରହଣ କରିଥିଲେ। ମୋଟ ପ୍ରାୟ ୪୫ ଖଂଡ କାବ୍ୟ କବିତାର ସେ ରଚୟିତା।

# ଶ୍ରୀକୁଂଜ ବିହାରୀ ବହିଦାର

୧୯୧୭ରେ ଶ୍ରୀକୁଂଜ ବିହାରୀ ବହିଦାର ସଂବଲପୁର ଫ୍ରେଜର୍ ପ୍ରେସର ନିଜ ରଚନା ଶ୍ରୀକୁଂଜ ବିହାରୀ ସଂଗୀତ ପ୍ରକାଶ କରିଥିଲେ ।



# ସୁନୀଲ ମିଶ୍ର

ସୁନୀଲ ମିଶ୍ରଂକ ଜନ୍ମ ୧୯୨୫ ରେ ସଂବଲପୁରରେ । ବୃତ୍ତିରେ ଆଡଭୋକେଟ ଥାଇ ସେ ବିଦ୍ରୂପାତ୍ମକ କବିତା ଲେଖି ଖ୍ୟାତି ଅର୍ଜନ କରିଥିଲେ । ତାଂକ କୃତି ମଧ୍ୟରେ ଖଦଡ଼ମୁଣି (ବ୍ୟଂଗାତ୍ମକ ଗଳ୍ପ ସଂକଳନ) କ୍ଲାଂତ ବୃହନ୍ନଳା ଉପନ୍ୟାସ ଓ ବହୁ ରମ୍ୟରଚନା । ସେ ଅଳ୍ପ ବୟସରେ ୧୯୮୬ରେ ପ୍ରାଣତ୍ୟାଗ କରିବା ପୂର୍ବରୁ ସାହିତ୍ୟ ଜଗତକୁ ତାଂକର ବହୁତ ଅବଦାନ ରହିଛି । ତାଂକର ପିତା ରତ୍ନାକର ମିଶ୍ର ତୁଳସୀ ସ୍ତବକ ଅନୁବାଦ କରିଥିଲେ । ତାଂକ ଘର ଦଂତା ନଦୀକୂଳରେ ବରଗଡ଼ ପାଖରେ କଳାପାଣି ଗ୍ରାମରେ ଥିଲା ।

❑ ❑ ❑

# ଜ୍ୟୋତିର୍ବିଦ୍ ପଂଡିତ
# ବିନାୟକ ନଂଦ

ସଂସ୍କୃତ ସାହିତ୍ୟ ବିଶାରଦ, ପରମ ବିଦ୍ୱାନ୍, ବୈଦ୍ୟ ବାଚସ୍ପତି ଜ୍ୟୋତିର୍ବିଦ୍ ପଂଡିତ ବିନାୟକ ନଂଦ ଶାସ୍ତ୍ରୀ ସଂବଲପୁର ସହରରେ ନଂଦପଡ଼ାରେ ପଂଡିତ ବାସୁଦେବ ନଂଦଂକର ସହଧର୍ମିଣୀ କମଳା ଦେବୀଂକର ଗର୍ଭରୁ ୧୯୦୮ ଫେବ୍ରୁଆରି ୭ ତାରିଖରେ ଜନ୍ମଗ୍ରହଣ କରିଥିଲେ।

ପାଟଣା ରାଜସଭାର ସଭାପଂଡିତ କୃତ୍ତିବାସ ନଂଦଂକର ସୁଯୋଗ୍ୟ ଦାୟାଦ ଭାବରେ ପଂଡିତ ମହାଶୟ ନିଜର ଗଭୀର ଅଧ୍ୟବସାୟ ପ୍ରଦର୍ଶନ କରି ଏକାଧାରରେ ଆୟୁର୍ବେଦ, ଜ୍ୟୋତିର୍ବିଦ୍ୟା, ଧର୍ମଶାସ୍ତ୍ର, ତଂତ୍ରଶାସ୍ତ୍ର, କର୍ମକାଂଡ, ବେଦ, ବେଦାଂତ, ଉପନିଷଦ୍ ତଥା ପୁରାଣ ଆଦି ଦର୍ଶନ ଶାସ୍ତ୍ରରେ ଅଗାଧ ପାଂଡିତ୍ୟ ଲାଭ କରିଥିଲେ।

ଜ୍ୟୋତିଷ ଗବେଷକ ଭାବରେ ପଂଡିତ ନଂଦ ସମଗ୍ର ଓଡ଼ିଶାରେ ସୁପରିଚିତ। ନିଜର ଗବେଷଣାଲବ୍ଧ ଜ୍ଞାନକୁ ମାସିକ ଜ୍ୟୋତିଷ ପତ୍ରିକା "ନିୟତି" ତଥା "ତାଂତ୍ରିକ" ଆଦିରେ ପ୍ରକାଶ କରିବା ସଂଗେ ସଂଗେ "ହୋରା ଦର୍ପଣ" ଆଦି ଜ୍ୟୋତିଷ ଗ୍ରଂଥର ପ୍ରଣେତା ଭାବରେ "ନିୟତି ଜ୍ୟୋତିର୍ବିଜ୍ଞାନ ମହାସଭା" ତଥା "ନିୟତି ଜ୍ୟୋତିଃ ଗବେଷଣା କେଂଦ୍ର" ଠାରୁ ପ୍ରମାଣ ପତ୍ର ସହ ସ୍ୱର୍ଣପଦକ ଲାଭ କରିଥିଲେ।

ସାହିତ୍ୟ କ୍ଷେତ୍ରରେ ତାଂକର ଅବଦାନ ଅତୁଳନୀୟ। ସଂସ୍କୃତ ସାହିତ୍ୟର ଅଭିବୃଦ୍ଧି ପାଇଁ ''କଲ୍ୟାଣ ଶତକ'', ''ଅଧ୍ୟାତ୍ମ ଶତକ'', ''ମାଂଗଲ୍ୟ ଶତକ'' ତଥା ''ପରମାର୍ଥ ଶତକ'' ଆଦି ଗ୍ରଂଥ ରଚନା କରି ସେ ସଂବଲପୁର ଜିଲ୍ଲା ଲେଖକ ସମ୍ମିଳନୀ ପ୍ରଜାତଂତ୍ର ପ୍ରଚାର ସମିତି, ତଥା ପୁରୀ ମୁକ୍ତି ମଂଡପ ପଂଡିତ ସଭା ଦ୍ୱାରା ବହୁ ଭାବରେ ସମ୍ମାନିତ।

ପୁରୀ ମୁକ୍ତି ମଂଡପ ସଭା ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିବା ସଂସ୍କୃତ ଭାଷାରେ ବୈଦିକ ଯଜ୍ଞ ସଂବଂଧୀୟ ଏକ ସର୍ବ ଭାରତୀୟ ମୁକ୍ତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ପଂଡିତ ମହାଶୟଂକର ସଂଦର୍ଭ ସ୍ୱନାମଧନ୍ୟ ପଂଡିତ ଅନଂତ ତ୍ରିପାଠୀ ଶର୍ମାଂକ ଦ୍ୱାରା ସଂପାଦିତ ମାସିକ ପତ୍ରିକା ''ମନୋରମା''ରେ ଧାରାବାହିକ ଭାବରେ ପ୍ରକାଶତ ହୋଇ ପରେ ଏକ ଗ୍ରଂଥ ଆକାରରେ ''ଯଜ୍ଞ ତତ୍ତ୍ୱ ପ୍ରକାଶ'' ଗ୍ରଂଥ ଭାବରେ ପ୍ରକାଶ ପାଇଛି। ଏହି ଗ୍ରଂଥ ପାଇଁ ସେ ଭାରତ ସରକାରଂକର ସଂସ୍କୃତି ବିଭାଗ ଦ୍ୱାରା ପ୍ରଶଂସିତ ହେବା ସଂଗେ ସଂଗେ ଏକ ଆଜୀବନ ଜାତୀୟ ବୃତ୍ତି ଲାଭ କରୁଥିଲେ।

ସେ ସ୍ୱକୀୟ ଜ୍ଞାନ, ନିଷ୍ଠା ଓ ସାଂଗଠନିକ ଶକ୍ତି ଦ୍ୱାରା ଆୟୁର୍ବେଦୀୟ ଚିକିତ୍ସା ପଦ୍ଧତି ପ୍ରତି ଜନସାଧାରଣଂକର ଗଭୀର ଆସ୍ଥା ସୃଷ୍ଟି କରିବା ସହିତ ସଂବଲପୁର ଜିଲ୍ଲା ବୈଦ୍ୟ ସଂଗଠନ ସମିତି ଓ ପଶ୍ଚିମ ଉତ୍କଳ ବୈଦ୍ୟ ସଂଗଠନ ସମିତି ଆଦି ଗଠନ କରି ତାହାର ଆଜୀବନ ସଭାପତିପଦ ଅଳଂକୃତ କରିଥିଲେ। ସେ ନିଖିଳ ଉତ୍କଳ ବୈଦ୍ୟ ସଂଗଠନ ସମିତିର କାର୍ଯକାରୀ ସମିତିର ସଦସ୍ୟ ଭାବରେ ଓଡ଼ିଶା ସୁପରିଚିତ।

''ବସଂତ ରୋଗ ଚିକିତ୍ସା'', ''ଶିଶୁର ଔଷଧ ପେଡ଼ି'', ''ମକର ଧ୍ୱଜ ପ୍ରୟୋଗ'' ଓ ''ସହଜ ରୋଗ ବିଜ୍ଞାନ'' ଆଦି ଆୟୁର୍ବେଦ ଗ୍ରଂଥର ରଚୟିତା ଭାବରେ ସେ ନିଖିଳ ଉତ୍କଳ ବୈଦ୍ୟ ସଂଗଠନ ସମିତିଠାରୁ ମଧ୍ୟ ତାମ୍ର ଫଳକ ଲାଭ କରି ଉଚ୍ଚ ପ୍ରଶଂସିତ ହୋଇଛଂତି।

ତଂତ୍ର ବିଦ୍ୟାରେ ମଧ୍ୟ ନିଜର ଗବେଷଣା ଜାରି ରଖି ''ବୃହଦ୍ ସ୍ୱରୋଦୟ ତଂତ୍ର'' ଆଦି ଗ୍ରଂଥ ରଚନା କରିବା ସଂଗେ ଐତିହାସିକ ଶିବ ପ୍ରସାଦ ଦାଶଂକ ଦ୍ୱାରା ରଚିତ ସଂବଲପୁର ଇତିହାସ ନାମକ ପୁସ୍ତକରେ ନିଜର ସଂଦର୍ଭ ପ୍ରକାଶ କରି ସେ ନିଜର ପାଂଡିତ୍ୟର ପରିଚୟ ଦେଇ ଯାଇଛଂତି।

ପଂଡିତ ମହାଶୟଂକର ଏତାଦୃଶ ପାଂଡିତ୍ୟ ତଥା ସାଂଗଠନିକ କର୍ମକୁଶଳତା ଯୋଗୁଁ ସେ ''ସଂବଲପୁର ଜିଲ୍ଲା ବୈଦ୍ୟ ସଂଗଠନ ସମିତି'', ''ନିଖିଳ ଉତ୍କଳ ବୈଦ୍ୟ ସମ୍ମେଳନ'', ''ବିହାର ଓଡିଶା ସଂସ୍କୃତ ପରିଷଦ'', ''ନିଖିଳ ଭାରତ ବିଦ୍ୱାନ୍ ପରିଷଦ'' ଆଦି ସଂଗଠନ ଦ୍ୱାରା ତାମ୍ର ଫଳକ, ରୌପ୍ୟପଦକ, ସ୍ୱର୍ଣପଦକ ତଥା ପ୍ରଶଂସା ପତ୍ର ପ୍ରାପ୍ତ ହୋଇ ବହୁଭାବରେ ସମ୍ମାନିତ ହେବା ସଂଗେ ସଂଗେ ଓଡ଼ିଶାର ଜଣେ ଗଣ୍ୟମାନ୍ୟ ସଂସ୍କୃତ ପଂଡିତ ଭାବରେ ନିଜର ପରିଚୟ ଦେଇ ଯାଇଅଛଂତି।

ବ୍ରାହ୍ମଣ ସମାଜର ଉନ୍ନତି କଳ୍ପେ ସେ ''ଗାୟତ୍ରୀ ତତ୍ତ୍ୱ'', ''ଯଜ୍ଞୋପବୀତ'' ଆଦି ପୁସ୍ତକ ରଚନା କରିବା ସଂଗେ ସଂଗେ ସଂବଲପୁର ଜିଲ୍ଲା ଉତ୍କଳୀୟ ବ୍ରାହ୍ମଣ ସମାଜର ସଂପାଦକ ଭାବରେ ନିଜର ସାଂଗଠନିକ ପରିଚୟ ଦେଇଛଂତି।

ଏହି ନିରବଚ୍ଛିନ୍ନ ସାଧକଂକର ମୃତ୍ୟୁ ୨୫-୦୮-୧୯୯୬ ରେ ନିଜର ବାସସ୍ଥାନ ନଂଦପଡ଼ାରେ ହୋଇଥିଲା।





## ଭାଷାତତ୍ତ୍ୱ ଆଲୋଚକ

# ଅଶ୍ୱିନୀ କୁମାର ପୂଜାରୀ

ସଂବଲପୁରୀ ଭାଷାର ସ୍ୱତଂତ୍ରତା ପ୍ରତିପାଦନ କରିବା ନିମଂତେ ଭାଷାତାତ୍ତ୍ୱିକ ପ୍ରବଂଧ ଓ ଆଲୋଚନା ଲେଖିବାରେ ଅଶ୍ୱିନୀ କୁମାର ପୂଜାରୀ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। କଟକରେ ଆଇନ ଶିକ୍ଷା ଗ୍ରହଣ କରୁଥିବା ସମୟରେ ସେ ଭାଷାତତ୍ତ୍ୱବିଦ୍ ଗୋଲୋକ ବିହାରୀ ଧଳଂକ ଅନେକ ଭ୍ରାଂତ ମତକୁ ଖଂଡନ କରିଥିଲେ। ଏଥି ଯୋଗୁଁ ସେ ଦୀର୍ଘକାଳ ପର୍ଯଂତ ଚର୍ଚାର ପରିଧିରେ ଥିଲେ।

୧୯୨୨ ନଭେଂବରରେ ସଂବଲପୁରର ଝାଡୁଆପଡ଼ାରେ ସେ ଜନ୍ମଗ୍ରହଣ କରିଥିଲେ ଓ ସେହିଠାରେ ୧୩ ଜାନୁଆରି ୧୯୮୬ରେ ତାଂକର ଦେହାବସାନ ଘଟିଥିଲା। ଜଣେ ଆଇନଜ୍ଞ, ଆଇନ ଅଧ୍ୟାପକ ଓ ସାହିତ୍ୟକାର ଭାବେ ସେ ବେଶ୍ ଜଣାଶୁଣା ଥିଲେ। ତାଂକ ରଚିତ ପୁସ୍ତକାବଳି ମଧ୍ୟରେ 'ଚଂଦ୍ରଲୋକରେ ପ୍ରଥମ ମଣିଷ, କଳା ମାଂକଡ଼ସା (ଉପନ୍ୟାସ), ଏକକ ସଂଗ୍ରାମୀ ସୁରେଂଦ୍ର ସାଏ (ନାଟିକା), ସଂଗ୍ରାମୀ ସୁରେଂଦ୍ର ସାଏ (ଜୀବନ ଚରିତ), ନାଟିକା ଏକାଦଶ ଏବଂ ସଂବଲପୁରୀ ଭାଷାର ସମାବେଶ, ଉତ୍ପତ୍ତି ଓ ପ୍ରକୃତି' ଇତ୍ୟାଦି ପ୍ରଧାନ।

ଏହି ବହୁମୁଖୀ ପ୍ରତିଭାଧର ବ୍ୟକ୍ତି ସ୍ୱଭାବତଃ ଏକାଂତ ପ୍ରିୟ ଓ ଲାଜକୁରା ହୋଇଥିବା ଯୋଗୁଁ ନିଜର ଖ୍ୟାତି ଓ ଯଶ ପ୍ରସାରିତ କରିପାରି ନ ଥିଲେ।



## କବିବର

# ଶ୍ରୀ ଦେବୀ ପ୍ରସାଦ ମିଶ୍ର

କବି ଶ୍ରୀ ଦେବୀ ପ୍ରସାଦ ମିଶ୍ର ୧୮୯୯ ଏପ୍ରିଲ୍ ୧୩ ତାରିଖରେ ଜ୍ୟୋତିଷାଚାର୍ଯ ପଂଡିତ ବନମାଳୀ ମିଶ୍ରଂକର ସହଧର୍ମିଣୀ ଶ୍ରୀମତୀ ସାବିତ୍ରୀ ଦେବୀଂକର ଗର୍ଭରୁ ନଂଦପଡା ସଂବଲପୁରରେ ଜନ୍ମଗ୍ରହଣ କରିଥିଲେ।

ତାଂକର ଅଜା ଜ୍ୟୋତିଷାଳଂକାର ପଂଡିତ କୃପାସିଂଧୁ ମିଶ୍ର ସୋନପୁର ପଂଡିତ ମହାସଭାର ଅଧ୍ୟକ୍ଷ ଥିଲେ। ତାଂକର ଜ୍ୟୋତିଷ ଶାସ୍ତ୍ର ଓ ସପ୍ତଶତୀ ଚଂଡୀ ଉପରେ ଅଗାଧ ଜ୍ଞାନ ଥିଲା। ତାଂକର ପିତା ପଂଡିତ ବନମାଳୀ ମିଶ୍ର ଥିଲେ ପଂଡିତ ମହାସଭାର ଜଣେ କର୍ମକର୍ତା, ତେଣୁ କବି ପ୍ରାୟ ଚାରିବର୍ଷ ପର୍ଯଂତ ନଂଦପଡ଼ା ତାଂକର ମାମୁଁ ପଂଡିତ ଶ୍ରୀ ନାରାୟଣ ରଥଂକ ପାଖରେ ରହି ପରେ ତାଂକର ବାପା ଓ ଅଜାଂକ ପାଖକୁ ସୋନପୁର ଚାଲିଯାଇଥିଲେ।

ସେଠାରେ ସେ ତାଂକର ବାଲ୍ୟଶିକ୍ଷା ସମାପ୍ତ କଲେ। ତାଂକର ଅଜାଂକର ତିରୋଧାନ ଓ ବାପାଂକର ଦେହ ଅସୁସ୍ଥ ହେବାରୁ ସଂବଲପୁର ଫେରିଆସିଲେ।

ସଂବଲପୁର ଜିଲ୍ଲା ସ୍କୁଲରେ ତାଂକର ଉଚ୍ଚଶିକ୍ଷା ଆରଂଭ କଲେ। କିଂତୁ ଆର୍ଥିକ ଅନଟନ ହେତୁ ତାଂକୁ ମଝିରେ ପାଠ ବଂଦ କରିବାକୁ ପଡ଼ିଲା। ପରିବାର ପରିପୋଷଣ ସକାଶେ ସେ ଶିକ୍ଷକତା ଗ୍ରହଣ କଲେ। କବି ଆର୍ଥିକ ଅନଟନରେ ଥାଇ ମଧ୍ୟ ତାଂକର ଲେଖନୀ ଚାଳନାରୁ ବିରତ ନ ଥିଲେ।

ସେତେବେଳେ ତତ୍‌କାଳୀନ ସୋନପୁର ରାଜ୍ୟର ମହାରାଜା ଶ୍ରୀ ବିରମିତ୍ରୋଦୟ ତାଂକର ଲେଖାରେ ମୁଗ୍‌ଧ ହୋଇ ତାଂକୁ କବିବର ଉପାଧି ପ୍ରଦାନ କରିଥିଲେ। କବି ଶ୍ରୀ ଦେବୀ ପ୍ରସାଦ ମିଶ୍ର କେବଳ କବି ନ ଥିଲେ। ସେ ଥିଲେ ଜଣେ ଭଲ ସଂଗୀତଜ୍ଞ ଓ ହସ୍ତଶିଳ୍ପୀ। ସଂବଲପୁର ଟାଉନ୍‌ରେ ଅଭିନୀତ ଯେତେ ନାଟକରେ ତାଂକୁ ଗୀତର ରଚୟିତା ଓ ସୁରଦାତା ହିସାବରେ ନିମଂତ୍ରଣ ଆସୁଥିଲା ଓ ସେ ତାହା ଅତି ନିଷ୍ଠାର ସହିତ ପାଳନ କରୁଥିଲେ। ତାଂକର କଂଠ ଏତେ ମଧୁର ଥିଲା ଯେ ପ୍ରାୟ ଅନେକ ନାଟକରେ ପ୍ରଚ୍ଛଦପଟ ଗାୟକ ହିସାବରେ ଗୀତ ଗାଉଥିଲେ, ତେଣୁ ତାଂକର ସମସାମୟିକ ବଂଧୁମାନେ ତାଂକୁ ''ଦେବୀମାଷ୍ଟ୍ରେ କଣ୍ଠଶିଳ୍ପୀ'' ବୋଲି ସଂବୋଧନ କରୁଥିଲେ।

ତାଂକର ହସ୍ତଶିଳ୍ପ ଯୋଗୁଁ ବାଂକିରେ ଥିବା ହସ୍ତଶିଳ୍ପ ଅନୁଷ୍ଠାନଠାରୁ ହସ୍ତଶିଳ୍ପ ପ୍ରଦର୍ଶନୀରେ ଉଚ୍ଚ ପ୍ରଶଂସିତ ହୋଇ ୧୯୩୨ରେ ପ୍ରଶସ୍ତି ପତ୍ର ପାଇଥିଲେ। ତାଂକର ଲେଖାରେ ଉଦ୍‌ବୁଦ୍ଧ ହୋଇ କୁଂତଳା କୁମାରୀ ସାବତ, ପଂଡିତ କୁଳମଣି ଦାଶ, ଶଶୀଭୂଷଣ ରାୟ, ପଂଡିତ ଲକ୍ଷ୍ମୀନାରାୟଣ ସାହୁ ଓ ସପ୍ତେଶ୍ୱର ଦାଶ ପ୍ରମୁଖ ତାଂକୁ ସବୁବେଳେ ଉତ୍ସାହ ପ୍ରଦାନ କରୁଥିଲେ। ତାଂକର ଜୀବଦ୍ଦଶାରେ ଅନେକ ସାହିତ୍ୟିକ ଅନୁଷ୍ଠାନରୁ ପ୍ରଶସ୍ତିପତ୍ର ଓ ଉପଢୌକନ ପାଇଛଂତି। ତାଂକର କବିତା ସେ ସମୟରେ ସହକାର, ମୁକୁର ଓ ଉତ୍କଳଦୀପିକା ପ୍ରଭୃତି ସାହିତ୍ୟିକ ପତ୍ରିକାରେ ପ୍ରକାଶିତ ହେଉଥିଲା।

୧୯୮୫ ଜାନୁଆରି ୪ ତାରିଖ ଦିନ ତାଂକର ଦେହାବସାନ ଘଟିଲା।



"ନୂଆ ନୂଆ ନୂଆ ବସନ
କରିଥାଂତି ଆଦର ମନ,
ନୂଆଠାରୁ ଯହୁଁ ପୁରୁଣା ହୁଅଇ
କରଂତି ତାହାକୁ ମଶାଲ ବତୀ।
ନୂଆ ନୂଆ ନୂଆ ପଥର
କରିଥାଂତି ଗଳାର ହାର,
ନୂଆଠାରୁ ଯହୁଁ ପୁରୁଣା ହୁଅଇ
ସେହି ତ ଦିଶଇ ମଳିନ ଜ୍ୟୋତି।"

–ସଦାନଂଦ ବ୍ରହ୍ମା କବିସୂର୍ଯ

# କବି
# ଗୋପାଳ ତେଲେଂଗା

ଅଷ୍ଟାଦଶ ଶତାବ୍ଦୀର କବି ଗୋପାଳ ତେଲେଂଗା ସଂବଲପୁରର ବୋଲି ଜଣାଯାଏ। ୧୭୪୧ରେ ସେ ଅଧ୍ୟାତ୍ମ ରାମାୟଣର ଅନୁବାଦ କରିଥିଲେ। ମାତ୍ର ସୁପ୍ରସିଦ୍ଧ ଐତିହାସିକ ଓ ଗବେଷକ କେଦାରନାଥ ମହାପାତ୍ର ଟିଟିଲାଗଡ ଡି.ଏ.ଭି. କଲେଜ ଆନୁକୂଲ୍ୟରେ ପ୍ରଦତ୍ତ ୧୯୭୭ର କୋଶଳ ବକ୍ତୃତାମାଳର ପ୍ରଥମ ଅଭିଭାଷଣରେ ତାଂକୁ ଜାତିରେ ତେଲେଂଗା ଥିବାର ବର୍ଣନା କରି ସେ ସଂବଲପୁରର ମହାରାଜା ଅଜିତ ସିଂହଂକ ଅଧୀନରେ ସୈନିକ କାର୍ଯ କରୁଥିବାର କହଂତି। ତାଂକ ରଚିତ ଅଧ୍ୟାତ୍ମ ରାମାୟଣରେ ସେ ନିଜକୁ 'ତେଲେଂଗା କୁଳେ ମୁହିଁ ଜାତ, ନାମ ମୋ ଗୋପାଳ ପତିତ' ବୋଲି ଚିହ୍ନାଇ ଅଛଂତି। ନିଜ ଅବସରର ସମୟରେ କବି ନଅରର ପୂର୍ବକୁ ଥିବା ଜଗନ୍ନାଥ ମଂଦିରର ମଂଡପରେ ରାଜଗୁରୁ କହ୍ନାଇ ମିଶ୍ରଂକଠାରୁ ନିତ୍ୟ ରାମାୟଣ ଓ ପୁରାଣାଦି ଶ୍ରବଣ କରୁଥିଲେ। ମନଯୋଗ ସହିତ ପୁରାଣ ଶୁଣି ସେ ଓଡ଼ିଆ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ। ସଂସ୍କୃତ ଅଧ୍ୟାତ୍ମ ରାମାୟଣକୁ ସେ ଲୋକପ୍ରିୟ ନବାକ୍ଷରୀ ବୃତ୍ତରେ ଅନୁବାଦ କରିଥିଲେ। ମହାରାଜଂକ ସଂପର୍କରେ ସେ ଲେଖିଛଂତି –

"ଅଜିତ ସିଂହ ମହାରାଜ । ଶ୍ରୀ ଛତ୍ର ସାହୀଂକ ଆତ୍ମଜ
ସଂବଲପୁରର ଈଶ୍ବର । ସଂବଲେଶ୍ବରୀ ଇଷ୍ଟ ଯାର ।

* * *

ଦକ୍ଷିଣ ରାୟ ଦିଆନକୁ । ସମର୍ପି ସକଳ କାର୍ଯକୁ
ବିଶାସେ (୧୨୦) କୋଶ ଆୟତନ । ଭୋଗ କରଂତି ନିଷ୍ଚିଂତେଣ
ଯେ ଅବା ତାର ଦଂଡପାଟ । ଭୟରେ ସେବନ୍ତି ନିକଟ ।"

ପ୍ରସିଦ୍ଧ ମରହଟ୍ଟା ସେନାପତି ଭାସ୍କର ରାଓପଂଥ ବା ଭାସ୍କର ପଂଡିତ ଓ ନାଗପୁର ଅଧିପତି ପ୍ରଥମ ରଘୁଜି ଭୋଁସ୍‌ଲା ବଂଗଲାର ଶାସକ ଆଲିବର୍ଧିଖାଁଂକ ବିରୋଧରେ ଏବଂ ଗଂଜାମର ପୂର୍ବଖଂଡ ଆକ୍ରମଣ ପାଇ ସଂବଲପୁର ମହାରାଜା ଅଜିତ ସିଂହଂକ ସୈନ୍ୟମାନଂକୁ ବହୁହସ୍ତୀ ଉପହାର ଦେଇଥିଲେ ।

ଦକ୍ଷିଣଦେଶୀ ମରଠାୟେ,
ଧ୍ୱସିଂଲେ ପୂର୍ବଖଂଡ ପାୟେ
ସେ ପୁଣି ସଂବଲପୁରେଣ
ଭୟରେ ନରୁଅଁଂତି ପୁଣ
ଆବର ରାଜାଂକୁ ଭେଟଂତି
ଯେ ତାଂକ ସୈନ୍ୟ ସେନାପତି
ଭାସ୍କର ଆଦି ରଘୁରାୟେ
ସେମାନଂକୁ ଦିଅଂତି ହସ୍ତୀ ଏ
ଯେ ରୂପେ ପ୍ରତାପ ଯେତେକ
ତାହା ମୁଁ କହିବି କେତେକ ।

ଏହି ସରଳ ପ୍ରାଂଜଳ ଲୋକପ୍ରିୟ ଅଧ୍ୟାତ୍ମ ରାମାୟଣ ୧୭୪୧ରୁ ୧୭୪୫ ମଧ୍ୟରେ ରଚିତ ହୋଇଥିଲା । କିଂତୁ ଦୁଃଖର ବିଷୟ ଓଡ଼ିଶା ମିଉଜିଅମ୍‌ର ପୋଥି ଓଆର୍ ଏମ୍‌ଏସ୍ ୨୯ ତାଂକର ଲେଖା ରାମାୟଣ ଏଯାଏଁ ଅପ୍ରକାଶିତ ।

ବ୍ରିଟିଶ ରାଜତ୍ୱ ପୂର୍ବରୁ କୋଶଳ ଭୂଖଂଡରେ ଓଡ଼ିଆ ସାହିତ୍ୟ ଚର୍ଚାର ଅଧ୍ୟୟନକରି ସେ ଯୁଗର ବହୁ ଅଜ୍ଞାତ କବିଂକର ଗ୍ରଂଥରାଜିର ସଂଧାନ ଆଲୋଚନା ଓ ପରିପ୍ରକାଶ ସର୍ବଦା କର୍ତବ୍ୟ । ଗୋପାଳ ତେଲେଂଗାଂକ ବ୍ୟତୀତ ଆଉ ଦୁଇଜଣ ସାହିତ୍ୟକାରଂକ ବିଷୟରେ କେଦାରନାଥ ବର୍ଣନା କରିଛଂତି ।

**କଂଧକବି ଯୋଗଦାସ** ଗୋପାଳ ତେଲେଂଗାଂକର ପରବର୍ତ୍ତୀ ଯୁଗର କନ୍ଧ ଜାତିର କବି, ସେ ପ୍ରସିଦ୍ଧ ଦେବତା ନରସିଂହନାଥଂକ ସଂବଂଧରେ ଏକ ପୌରାଣିକ ବିବରଣୀ ସରଳ ପ୍ରାଂଚଳିକ ଭାଷାରେ ରଚନା କରିଥିଲେ। ଏହା କଂଧ ଜାତିର ଇତିହାସ ଜାଣିବାରେ ଅତି ଉପାଦେୟ। ପଦ୍ମପୁରର ଜମିଦାର ଲାଲା ରାଜେଂଦ୍ର ସିଂହ ବରିହା ଏହି ଗ୍ରଂଥଟି ପରିବର୍ଧିତ ଆକାରରେ ପ୍ରକାଶ କରିଥିବାର ଜଣାଯାଏ।

**ରତ୍ନାକର ଦାସ ଭୁଲିଆ** ଜାତିର କବି ଥାଇ କବି ରତ୍ନାକର ଦାସ ବା ସାଧୁ ରତ୍ନାକରଦାସ ସାରସ୍ୱତ ଗୀତାର ପ୍ରଣେତା ରୂପେ ବିଖ୍ୟାତ। ଏହି ଗ୍ରଂଥରେ ସେ ଯୋଗଶାସ୍ତ୍ର ଓ ଧର୍ମ ତତ୍ତ୍ୱ ବିଷୟକ ତଥ୍ୟମାନ ଅତି ସରଳ ନବାକ୍ଷରୀ ବୃତ୍ତରେ ବୁଝାଇ ଦେଇଛଂତି। ପଂଚସଖା ଯୁଗରେ ରଚିତ ବହୁ ପ୍ରସିଦ୍ଧ ଗୀତାପରି ଏହା ମଧ୍ୟ ସମଗ୍ର ଉତ୍କଳରେ ସୁପରିଚିତ ଥିଲା। କବି ନିଜ ସଂବଂଧରେ ନିମ୍ନୋକ୍ତ ପ୍ରକାରେ ଲେଖିଛଂତି।

''ଶ୍ୟାମସୁଂଦର ପୁତ୍ର ମୁହିଁ। ହୀନ ରତ୍ନଦାସ ବୋଲାଇ
ମାତାଂକ ନାମ ଅପଦାସୀ। ଶ୍ରୀ ହରି ପାଦେ ଦାସଦାସୀ
ତାହାଂକ ଗର୍ଭୁଜାତ ମୁହିଁ। ଜାତିରେ ଭୁଲିଆ ଅଟଇ
ମୁଁ ଛାର ଜାତି ଲୁଗାବୁଣା, ସୂତା ରଙ୍ଗାରେ ତନମନା

୧୪ଶ ଅଧ୍ୟାୟ

କହଇ ହୀନ ରତ୍ନଦାସ। ଶ୍ୟାମ ସୁଂଦର ଜ୍ୟେଷ୍ଠ ଶିଷ୍ୟ।

୧୮ଶ ଅଧ୍ୟାୟ

ତାଂକର ଜଣେ ଶିଷ୍ୟଂକର ନାମ କୃଷ୍ଣ ଦାସ

ଷୋଳପଦୀ ଗୀତ ଏ ଗୁରୁ ଉପଦେଶ।
କୃଷ୍ଣ ଦାସ ଆଗରେ ଫେଡେ ରତ୍ନାକର ଦାସ।।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ କୃଷ୍ଣ ଦାସ ନାମଧେୟ ପାଂଚ ସାତଜଣ କବି ଥିବାରୁ ଶିଷ୍ୟ କୃଷ୍ଣଦାସଂକ ପରିଚୟ ଜଣା ପଡୁନାହିଁ। ରତ୍ନାକରଂକୁ ଅଷ୍ଟାଦଶ ଶତାବ୍ଦୀରେ ଅବସ୍ଥାପିତ କରାଯାଇ ପାରେ। ଭୁଲିଆ ଜାତିର କବି ରତ୍ନାଦାସଂକ ସାରସ୍ୱତ ଗୀତା ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ସମୁଜ୍ଜ୍ୱଳ ରତ୍ନ।



## ବରଗଡ଼

| ଆୟତନ | ୫୮୩୦ ବର୍ଗ କି.ମି. |
| --- | --- |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୧୩,୪୫,୬୦୧ |

### ଉତ୍କଳଲକ୍ଷ୍ମୀ (୧୯୧୪)

'ଛିରା', 'ଦଂଡା', 'ଝାଉଁ', 'ରାଂଜ', 'କୁଲିଆରୀ'
ଉତ୍ସବେ ହୋଇ ଯାତ୍ରିକ,
ନିଜ ଦଳ ମଧ୍ୟେ କରୁଥିଲେ ମୋଦେ,
ମନୋଭର ତୌର୍ଯତ୍ରିକ
'ଭେଡନ', 'ମାଳତୀ', 'ଅଣିକା', 'ଘୋଷାଳୀ'
ସହିତ ମିଳି, 'ଉତ୍ତାଳୀ'
ସରଳ ତରଳ ଗୀତଗାଇ ମୁଦେ
ମାରୁଥିଲେ କରତାଳି।
ଅଲକ୍ଷ୍ୟରେ ଖରେ, ଆସି ସେ ପାଖରେ
ନୃତ୍ୟ କଲା 'ଖରଖରୀ'
'ହରଡ଼' ହରଷେ, ହରବର ହୋଇ
ଧାଇଥିଲା 'ବୀଣା' ଧରି
ଅଂବୁପତି ଅତି, ଗଂଭୀର ନାଦରେ, ବଜାଇଲେ କୋଟି ଅଂବୁ
ସାଗର ସଲିଳେ ଆଦ୍ୟ ଅଭିଷେକେ କଲେ ଲୋକନାଥ ଶଂଭୁ।
*(ଜିଲ୍ଲାର ଉପନଦୀମାନ ନାମିତ)*

– ଗଂଗାଧର



# ସଂବଲପୁରର ଗୌରବ
# ବ୍ରଜମୋହନ ପଂଡା

ବ୍ରଜମୋହନ ପଂଡାଂକ ପିତା ଥିଲେ ଧର୍ମପ୍ରାଣ ବୃଂଦାବନ ପଂଡା। କାଶୀନାଥ, ବ୍ରଜମୋହନଂକ ପିତାମହ। ସ୍ୱଭାବକବି ଗଂଗାଧର ତାଂକ କବିତା ଗୁଚ୍ଛ, ଭାରତୀଭାବନାରେ 'କାଶୀନାଥ ପଂଡାଂକ ପ୍ରତି' ବୋଲି ଗୋଟିଏ କବିତା ଲେଖିଛଂତି। ସେଥିରୁ ଜଣାଯାଏ ତାଂକର ଷୋଳଖଂଡ ଗ୍ରାମରେ ୫୦ ବର୍ଗ ମାଇଲ ପରିମିତ ଭୂମି ରହିଥିଲା। ପ୍ରାୟ ଅଧଲକ୍ଷ ଟଂକାର ତାଂକର ମହାଜନୀ କାରବାର ଥିଲା। ବ୍ରଜମୋହନଂକ ମାତା ସଂବଲପୁର ସହରର ଝାଡୁଆରପଡ଼ାର ପଂଡିତ ତ୍ରିଲୋଚନ ସୂପକାରଂକର କନ୍ୟା। ବ୍ରଜମୋହନ ୧୮୯୦ ଜୁନ ୫ ତାରିଖ ଶ୍ରାବଣ ଅମାବାସ୍ୟାଦିନ ଲଇଂଭାରେ ଜନ୍ମ ଗ୍ରହଣ କରିଥିଲେ। ସଂବଲପୁର ଜିଲ୍ଲା ସେ ସମୟରେ ମଧ୍ୟପ୍ରଦେଶର ଅଂତର୍ଗତ। ଓଡ଼ିଆ ଭାଷା ଶିକ୍ଷାର ବିଶେଷ ସୁଯୋଗ ନଥିଲା। ଗ୍ରାମର ବିଦ୍ୟାଳୟଟି ଉଠିଯାଇଥାଏ। ତିନିମାଇଲ ଦୂରରେ ଟାଂପରସରାରେ ମାଇନର ସ୍କୁଲ। ସେଠାକୁ ଯିବାକୁ ନାନା ପ୍ରକାର ଅସୁବିଧା। ତେଣୁ ଜଣେ ଗୃହ ଶିକ୍ଷକ ତାଂକୁ ଶିକ୍ଷା ଦେବାକୁ ନିଯୁକ୍ତି ପାଇଲେ। ବ୍ରଜମୋହନଂକର ସ୍ମରଣଶକ୍ତି ବାଲ୍ୟକାଳରୁ ଅତି

ପ୍ରଖର ଥିଲା। ଘରେ ଦୁଇ ବର୍ଷପାଠ ପଢ଼ି ସେ ସଂବଲପୁର ଆସିଲେ। ପଟ୍ଟନାୟକପଡ଼ା ମାଇନର ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଇଲେ। ସହରରେ ରହିବାକୁ ନିଜର ଘର ଥାଏ। ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥାଆଂତି ବିଶିଷ୍ଟ ଗଣିତବିଦ୍ ଦାଶରଥି ପାଣିଗ୍ରାହୀ, ବାଲେଶ୍ୱରର ଲୋକ। ଥରେ ସବୁ ୪ର୍ଥ ଶ୍ରେଣୀ ଛାତ୍ର ମାନଂକୁ ଏକତ୍ର କରି ଗୋଟିଏ ପରୀକ୍ଷା କଲେ। ବ୍ରଜମୋହନ ଏଥିରେ ୧ମ ସ୍ଥାନ ଅଧିକାର କଲେ। ୧୯୦୫ ଅକ୍ଟୋବର୍ ୧୦ ତାରିଖ ସଂବଲପୁର ମଧ୍ୟପ୍ରଦେଶରୁ ଆସି ଓଡ଼ିଶାରେ ମିଶିଲା। ସେତେବେଳକୁ ବ୍ରଜମୋହନ ପାଠପଢ଼ାରେ ବ୍ୟାଘାତ ହେଲାରୁ ନିଜ ଗାଁରେ ରହି ପଢୁଥାଂତି। ପୁଣି ସେ ଆସିଲେ ସଂବଲପୁର। ଜିଲ୍ଲାସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲେ। ସେହିବର୍ଷ ସହରରେ ଭୟଂକର ହଇଜା ମହାମାରୀ ଦେଖାଗଲା। ବିଶୁଦ୍ଧ ପାନୀୟ ଜଳ, ଉପଯୁକ୍ତ ଚିକିତ୍ସା ଅଭାବ ଓ ପ୍ରଚଳିତ କୁସଂସ୍କାର ଯୋଗୁ ଅନେକ ଲୋକ ଏଥିରେ ମଲେ। ପିତାମହ କାଶୀନାଥ ଆସି ତାଂକୁ ଘରକୁ ନେଇଗଲେ। ସେହିବର୍ଷ ମଧ୍ୟ କାଶୀନାଥ ନିଜ ବ୍ୟୟରେ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କଲେ। ବ୍ରଜମୋହନ ନବମ ଶ୍ରେଣୀରେ ଜିଲ୍ଲା ସ୍କୁଲରେ ପ୍ରଥମ ହେଲେ ମଧ୍ୟ ତାଂକୁ ନିଜର ପଢ଼ାପଢ଼ି ସଂତୋଷଜନକ ହେଉନାହିଁ ବୋଲି ହୃଦବୋଧ ହେଲା। ତେଣୁ କଟକ ସହରର ସରକାରୀ ରେଭେନ୍ସା କଲେଜିଏଟ୍ ସ୍କୁଲକୁ ଯାଇ ସେଠାରେ ସେ ନାମ ଲେଖାଇଲେ। ସେତେବେଳେ ସେଠାରେ ପ୍ରଧାନ ଶିକ୍ଷକ ଥିଲେ ବେଣୀମାଧବ ଦାସ। ସେ ମଧ୍ୟ ସୁଭାଷ ବୋଷ ସେହି ସ୍କୁଲରେ ପଢୁଥିବା ସମୟରେ ତାଂକର ପ୍ରଧାନ ଶିକ୍ଷକ ଥିଲେ। ବେଣୀମାଧବଂକ ବ୍ୟକ୍ତିତ୍ୱ, ଦେବୋପମ ଚରିତ୍ର ଓ ସ୍ୱଦେଶବତ୍ସଳତା ବ୍ରଜମୋହନଂକୁ ବହୁଭାବରେ ପ୍ରଭାବିତ କରିଥିଲା। ୧୯୧୦ରେ କଟକ କଲେଜିଏଟ୍ ସ୍କୁଲ୍‌ରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କରି ସେ କଲିକତା ଗଲେ। ପ୍ରେସିଡେନ୍ସି କଲେଜରୁ ବି.ଏ ପାସ୍‌କଲେ। ସେଠାର ଆଇନ ମଧ୍ୟ ପଢ଼ିଲେ, ମାତ୍ର ଆଇନ ବ୍ୟବସାୟ ପ୍ରତି ନିଜର ବିଶେଷ ଆଗ୍ରହ ନ ଥିବାରୁ ପରୀକ୍ଷା ଦେଲେ ନାହିଁ କି ଡିଗ୍ରି ନେଲେ ନାହିଁ। ଏହି ସମୟରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଲେ।

୧୯୨୦ରେ ନାଗପୁର ଓ ୧୯୨୧ରେ ଅହମଦାବାଦଠାରେ କଂଗ୍ରେସର ବାର୍ଷିକ ଅଧିବେଶନରେ ସେ ପ୍ରତିନିଧିଭାବରେ ଯୋଗ ଦେଇଥିଲେ। ପରବର୍ତୀ କାଳରେ ଜିଲ୍ଲାର ଅପ୍ରତିଦ୍ୱଂଦ୍ୱୀ କଂଗ୍ରେସ ନେତା ଚଂଦ୍ରଶେଖର ବେହେରାଂକ ପ୍ରେରଣାରେ ତାଂକର ସହକର୍ମୀ ଥାଇ ସେ ଅସହଯୋଗ ଆଂଦୋଳନରେ ଭାଗନେଲେ। ସଂବଲପୁର ସହରରେ ନିଜ ବାସଭବନରେ ସେ ଜାତୀୟ ପତାକା ଉଡ଼ାଇଲେ। ଛାତ୍ରମାନଂକର ସରକାରୀ ବିଦ୍ୟାଳୟ ବର୍ଜନପରେ ପଂଡିତ ନୀଳକଂଠଦାସ ୧୯୨୧ରେ ସଂବଲପୁରରେ ଏକ ଜାତୀୟ ବିଦ୍ୟାଳୟ

ଖୋଲିଥିଲେ । ଏଥିରେ ବ୍ରଜମୋହନଙ୍କ ସହଯୋଗ ଓ ସହାୟତା ରହିଥିଲା । ପରବର୍ତ୍ତୀକାଳରେ ପରିବର୍ତ୍ତିତ ରାଜନୀତିରେ କଂଗ୍ରେସରୁ ସେ ଦୂରେଇ ଗଲେ ମଧ୍ୟ ରାଜନୀତି ସମାଜସେବା ଓ ସାହିତ୍ୟ ଚର୍ଚ୍ଚାରେ ସେ ଜିଲ୍ଲାର ଅପ୍ରତିଦ୍ୱଂଦ୍ୱୀ ନେତା ହୋଇ ରହିଲେ। ୧୯୧୯ର ଭାରତ ଶାସନ ଆଇନ ବଳରେ ବିହାର ଓଡ଼ିଶା ପ୍ରାଦେଶିକ କାଉନସିଲକୁ ସଂବଲପୁରରୁ ଜଣେ ମାତ୍ର ସଭ୍ୟ ନିର୍ବାଚିତ ହେଉଥିଲେ। ବିହାର ଓଡ଼ିଶା ବିଧାନ ପରିଷଦରେ ରାମନାରାୟଣ ମିଶ୍ରଂକ ପରେ ସଂବଲପୁରର ପ୍ରତିନିଧିତ୍ୱ କରିଥିଲେ ବ୍ରଜମୋହନ ପଂଡା । ୧୯୨୬ ନଭେଂବରରେ ସେ ନିର୍ବାଚନରେ ନିର୍ବାଚିତ ହୋଇଥିଲେ । ବିହାରର ତତ୍‌କାଳୀନ ଗଭର୍ନର ଥିଲେ ସାର ହେନରୀ ହୁଇଲର । ଓଡ଼ିଶାରୁ ୧୦ ଜଣ ସଭ୍ୟ ନିର୍ବାଚିତ ହୋଇଥିଲେ । ବ୍ରଜମୋହନଂକ ସହିତ ଅନ୍ୟ ନିର୍ବାଚିତ ପ୍ରତିନିଧିମାନେ ଥିଲେ ମୁସଲମାନ ସଂରକ୍ଷିତ ସ୍ଥାନରୁ ମହମଦ ନୁରୁଲ ହୋଦା, ରାୟବାହାଦୁର ଲୋକନାଥ ମିଶ୍ର, କଟକରୁ ନାରାୟଣ ବୀରବର ସାମଂତ ଓ ଲକ୍ଷ୍ମୀଧର ମହାଂତି, ପୁରୀରୁ ପଂଡିତ ଗୋଦାବରୀଶ ମିଶ୍ର ଓ ଲିଂଗରାଜ ମିଶ୍ର, ବାଲେଶ୍ୱରରୁ ନଂଦକିଶୋର ଦାସ ଓ ହରେକୃଷ୍ଣ ମହତାବ ଓ ଜମିଦାରମାନଂକ ଆସନରୁ କନିକା ରାଜା ରାଜେଂଦ୍ର ନାରାୟଣ ଭଂଜଦେଓ ।

ଏହିପରି ନିର୍ବାଚିତ ହୋଇ ବ୍ରଜମୋହନ ଦଶବରଷ କାଳ ବିହାର ଓଡ଼ିଶା ଲେଜିସଲେଟିଭକାଉନସିଲର ସଭ୍ୟ ଥିଲେ । ୧୯୩୬ ଏପ୍ରିଲରେ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେଲା । ନିର୍ବାଚିତ ଲୋକପ୍ରତିନିଧି ଶାସନ ହେବାପର୍ଯ୍ୟଂତ ଲାଟସାହେବଂକୁ ପରାମର୍ଶଦେବା ନିମିତ୍ତ ଗଠିତ କମିଟିର ସେ ୨୪ ଏପ୍ରିଲ ୧୯୩୬ ରୁ ସଭ୍ୟଥିଲେ। ସ୍ୱାଧିନୋତ୍ତର ରାଜନୈତିକ ଜୀବନରେ ସେ ୧୯୫୧-୫୨ରେ ଅତାବିରା ନିର୍ବାଚନ ମଂଡଳୀରୁ ରାଜ୍ୟ ବିଧାନସଭା ପାଇଁ ପ୍ରାର୍ଥୀ ଥିଲେ, ମାତ୍ର ନିଜର ଅତୀତ ଅଭିଜ୍ଞତା ଓ ଲୋକପ୍ରିୟତା ସତ୍ୱେ ଜଣେ ଅପେକ୍ଷାକୃତ ଅଜ୍ଞାତ ଯୁବକଂକ ହାତରେ ପରାଜିତ ହେଲେ । ଅତୀତର ଦେଶ ସେବା ସତ୍ତ୍ୱେ ତାଂକ ପ୍ରତିଦ୍ୱଂଦ୍ୱୀ ବିପିନ ବିହାରୀ ଦାସ ୭୨୨୯ ଭୋଟ ପାଇଥିବା ସ୍ଥଳେ ସେ ମାତ୍ର ୫୪୨୭ ଭୋଟ ପାଇଥିଲେ । ଏହା ପରେ ୧୯୫୭ ସାଧାରଣ ନିର୍ବାଚନରେ ସେ ସ୍ୱାଧୀନପ୍ରାର୍ଥୀ ଭାବେ ପ୍ରତିଦ୍ୱଂଦ୍ୱିତା କରି ମଧ୍ୟ ହାରିଗଲେ ଓ ରାଜନୀତିରୁ ଚିରବିଦାୟ ନେଲେ ।

୧୯୦୮ ଏପ୍ରିଲ୍ ୧୬ ତାରିଖରେ କବିବର ରାଧାନାଥଂକର ମହାପ୍ରୟାଣ ଘଟିଲା । ତାଂକୁ କଟକର ସତୀଚଉରାଠାରେ ସମାଧି ଦିଆଗଲା । ଉତ୍କଳଗୌରବ ମଧୁସୁଦନଂକର ଆର୍ଥିକ ସହାୟତାରେ କବି ଗଂଗାଧର ମେହେରଂକର କୀଚକବଧ କାବ୍ୟ ୧୯୦୪ରେ ପ୍ରକାଶିତ ହୋଇଥିଲା । ଏହା ପୂର୍ବରୁ ୧୮୯୪ରେ ମୟୂରଭଂଜ ମହାରାଜାଂକ ସହାୟତାରେ

କବିଂକର ଇଂଦୁମତୀ କାବ୍ୟ ମଧ୍ୟ ପ୍ରକାଶିତ ହୋଇସାରିଥିଲା। କବି ଏହି ସମୟରେ ସଂବଲପୁରରେ ରହୁଥାଆଂତି। ତାଂକ କବି ପ୍ରତିଭା ଜଣା ପଡ଼ିଥିଲେ ମଧ୍ୟ ତାଂକର କେହି ପୃଷ୍ଠପୋଷକ ନ ଥିଲେ। ଗୁଣଗ୍ରାହୀ ବ୍ରଜମୋହନ, ଗଂଗାଧର ମେହେରଂକୁ ସମଗ୍ର ଓଡ଼ିଶାରେ ରାଧାନାଥଂକର ଦାୟାଦ ବୋଲି ଧରିନେଲେ ଓ ତାଂକ ରଚନାମାନ ଲୋକଲୋଚନକୁ ଆଣିବା ନିମିତ୍ତ ସେ ଆଜୀବନ ଉଦ୍ୟମ ଚାଲୁ ରଖିଥିଲେ। ୧୯୧୦ରୁ ଗଂଗାଧରଂକର କବି ଜୀବନର ଉତ୍ତର ପର୍ଯାୟ ଆରଂଭ ହୁଏ ଓ ବ୍ରଜମୋହନ ଏହି କବି ପ୍ରତିଭାର ବିକାଶରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିବା ତାଂକର ବିଭିନ୍ନ ରଚନାରେ ପରିସ୍ଫୁଟ। ତପସ୍ୱିନୀ କାବ୍ୟ ୧୯୧୪ରେ ପ୍ରକାଶିତ ହୋଇଥିଲା। ଏହା ରାମନାରାୟଣ ମିଶ୍ରଂକୁ ଉତ୍ସର୍ଗ କରାଯାଇଥିଲେ ମଧ୍ୟ କବି 'ମୋର ପ୍ରିୟ  ସୁହୃଦ ବ୍ରଜମୋହନ ପଂଡାଂକ ଉତ୍ସାହ' ସ୍ମରଣ କରାଇ ଅଛଂତି। ୧୮୯୪ରେ ପ୍ରକାଶିତ ଉତ୍କଳ ଲକ୍ଷ୍ମୀ କାବ୍ୟ ଆଲୋଚିତ ହୋଇଥିଲେ ମଧ୍ୟ ଏହାକୁ ପୂର୍ଣାଂଗ ଭାବରେ ପ୍ରକାଶିତ ହେବାପାଇଁ ନିଜ ଜ୍ୟେଷ୍ଠ ଭ୍ରାତା ମଧୁସୂଦନ ପଂଡାଂକ ସହିତ ବ୍ରଜମୋହନ ସମଗ୍ର ଅର୍ଥଭାର ବହନ କରିଥିଲେ। କଲିକତାରେ ସେତେବେଳେ ସେ ଛାତ୍ର ଥାଇ ଏଡେନ ହିଂଦୁହଷ୍ଟେଲର ଅଂତେବାସୀ। ଗଂଗାଧରଂକର ଫଟୋଚିତ୍ର ପ୍ରଥମ ଥର ପାଇଁ ତାଂକରି ଉଦ୍ୟମରେ ସଂଗୃହୀତ ହୋଇ ଏଥିରେ ପ୍ରଦତ୍ତ ହୋଇଥିଲା। ଅଯୋଧ୍ୟା ଦୃଶ୍ୟ କାବ୍ୟଟି କବି ବ୍ରଜମୋହନଂକୁ ଉତ୍ସର୍ଗ କରି ଭୂମିକାରେ ଲେଖିଛଂତି। ''ବିଜେପୁର ତା ୨୦ ଜାନୁଆରି ୧୯୧୪, ଯେ ମୋତେ ପ୍ରିୟବଂଧୁ ରୂପେ ଗ୍ରହଣ କରି ମୋର ସାହିତ୍ୟ ଚର୍ଚ୍ଚାର ପଥ ପ୍ରଶସ୍ତ ଓ ସୁଗମ କରିବାରେ ସତତ ଯତ୍ନଶୀଳ ସେହି କବିତ୍ୱ ରସିକ ସୁହୃଦ୍ ଉତ୍ତମ ଶ୍ରୀ ବ୍ରଜମୋହନ ପଂଡାଂକ ଲେଖନୀଶୋଭିତ କରକମଳରେଏହି ପୁସ୍ତକ ପ୍ରୀତିର ନିଦର୍ଶନ ସ୍ୱରୂପ ଅର୍ପଣ କଲି।'' ୧୯୨୩ରେ ପ୍ରକାଶିତ 'ଭାରତୀ ଭାବନା'ରେ କବି ତାଂକୁ ସଂବଲପୁରର 'ଆଶା କିଶୋର ପାଦପ', 'କବି ହୃଦୟର ଅଭିନ୍ନ ବଂଧୁ' ବୋଲି ବର୍ଣନା କରିଅଛଂତି। ୧୯୧୫ରେ ପ୍ରକାଶିତ ପ୍ରଣୟ ବଲ୍ଲରୀ କାବ୍ୟ ବୋଡ଼ାସଂବର ପଦ୍ମପୁର ଜମିଦାର ରାୟବାହାଦୁର ରାଜେଂଦ୍ରସିଂହ ବରିହାଂକର ସଂପୂର୍ଣ ବ୍ୟୟରେ ମୁଦ୍ରିତ ହୋଇଥିଲେ ମଧ୍ୟ ଭୂମିକାରେ ବ୍ରଜମୋହନଂକ ପୃଷ୍ଠପୋଷକତା ଉଲ୍ଲେଖ କରିବାକୁ କବି ଭୁଲି ନାହାଂତି।

ଅଧ୍ୟାପକ ଅସିତ କବି ଗଂଗାଧରଂକ ସହିତ ବ୍ରଜମୋହନଂକ ପତ୍ରାଳାପକୁ ଏକ ପୁସ୍ତକାକାରରେ ପ୍ରକାଶିତ କରି ଅନେକ ଅନାଲୋଚିତ ବିଷୟ ପାଠକମାନଂକର  ଦୃଷ୍ଟିକୁ ଆଣିପାରିଛଂତି। ୧୯୬୨ ଶ୍ରାବଣ ପୂର୍ଣିମା ଦିନ ସମଗ୍ର ଓଡ଼ିଶାରେ ଗଂଗାଧରଂକର ଶତବାର୍ଷିକୀ ଉତ୍ସବ ପାଳିତ ହେଲା। ସଂବଲପୁରରେ ଏହି ଉତ୍ସବ ପାଳନର ବ୍ୟୟଭାର



ଓଡ଼ିଶା ପରାମର୍ଶଦାତା କମିଟି ୧୯୩୬

ଠିଆ : (ବାମରୁ ଡାହାଣ-ଗୋପୀନାଥ ବିଶୋୟୀ, ନିକୁଞ୍ଜ କିଶୋର ଦାସ, ରାୟସାହେବ, ଏଚ୍.ସି.ରାୟ, ବାବୁ ଲୋକନାଥ ମିଶ୍ର, ପିଟିମାବ୍ବଫିଲ୍ଡ ଚିଫ ସେକ୍ରେଟାରୀ, ସି. ଗୋବିନ୍ଦ ନାୟାର ରା.ବା. ଲକ୍ଷ୍ମୀଧର ମହାନ୍ତି, ଭାଇସ ପ୍ରେସିଡେଂଟ୍, ମୌଲବୀ ମହମ୍ମଦ ଜଲିଲ, ବୀରବର ନାରାୟଣ ଚନ୍ଦ୍ର ଧୀରନରେନ୍ଦ୍ର, ଲାଲ ଆର୍ତତ୍ରାଣ ଦେଓ, ବି.ଏନ୍. ସାମଂତରାୟ

ବସିଛଂତି : ହରିହର ଦାସ, ରାଧାରଂଜନ ଦାସ, ଜଗନ୍ନାଥ ଦାସ, ଗୋଦାବରୀଶ ମିଶ୍ର, ବ୍ରଜମୋହନ ପଂଡା, ଗଭର୍ଣ୍ଣର ସାର ଜନ ଅଷ୍ଟିନ ହବାକ, ମିଷ୍ଟର ବ୍ରଜନଂଦ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ, ରାଜା ସାର ରାଜେନ୍ଦ୍ର ନାରାୟଣ ଭଂଜଦେଓ, ଚୁଂବନାଥ ପାଂଡୁରୁଗାରୁ, ମାଂଧାତା ଗୋରାଚାଂଦ ପଟ୍ଟନାୟକ

ବହୁଭାବରେ ବ୍ରଜମୋହନ ବହନ କରିଥିଲେ। ଏହି ଉପଲକ୍ଷେ କବିଂକର ଏକ ବ୍ରୋଂଜ ମୂର୍ତି ୩୫ ହଜାରଟଂକାରେ କଲିକତାରେ କିଣାଯାଇ ଅଣାଗଲା ଓ ଏହା ମେହେର କଲେଜ ହତାରେ ପ୍ରତିଷ୍ଠା କରାଗଲା। ଏହା ସେହି ଦିନଠାରୁ ଅଗଣିତ ଯୁବକ ସାହିତ୍ୟସେବକଂକୁ ସାହିତ୍ୟ ସାଧନା ନିମିତ୍ତ ପ୍ରେରଣା ଦେଇ ଆସୁଅଛି।

ରାଜନୀତିରେ ବୀତସ୍ପୃହ ହୋଇ ବ୍ରଜମୋହନ ଶିକ୍ଷାପ୍ରସାର ଦିଗରେ ମନୋନିବେଶକଲେ, ସଂବଲପୁର କଲେଜ୍‌ଟ୍ରଷ୍ଟ ଫଂଡ୍‌ର ସେ ଜଣେ ସକ୍ରିୟ ସଭ୍ୟଥିଲେ। ୧୯୪୦ ବେଳକୁ ବରଗଡ଼ ଅଂଚଳରେ କେବଳ ବରଗଡ଼ରେ ଗୋଟିଏ ମାତ୍ର ହାଇସ୍କୁଲ ଥିଲା। ଏହା ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିଲା। ପଦ୍ମପୁର ବରପାଲି ଓ ଟାଂପରସରାରେ ଗୋଟିଏ ଲେଖା ମାଇନର ସ୍କୁଲ ଓ ସୋହେଲା, କମଗାଁ, ଲରଂଭା ରୁଚିଦା ଓ ଆଂବାଭୋନାରେର ମୋଟ ପାଂଚଗୋଟି ମଧ୍ୟଭର୍ନକୁଲାର ସ୍କୁଲ ଥିଲା। ଶିକ୍ଷାଲାଭର ସୀମିତ ସୁଯୋଗ ଏଥିରୁ ସହଜରେ ଅନୁମିତ। ଲରଂଭାରେ ତାଂକଦ୍ୱାରା ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ହେଲା, ବ୍ୟକ୍ତିଗତ ଉଦ୍ୟମରେ ସେଠାରେ ସେ ମଧ୍ୟ ଏକ କଲେଜ ପ୍ରତିଷ୍ଠା କରି ଏ ଦଗରେ ଆଦର୍ଶ ଉପସ୍ଥାପନ କଲେ। ଅନ୍ୟାନ୍ୟ ଅନେକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାରେ ସେ ପ୍ରତ୍ୟକ୍ଷ ବା ପରୋକ୍ଷରେ ସଂପୃକ୍ତ ଥିଲେ। ଏକ ଅନୁନ୍ନତ ଅଂଚଳରେ ଶିକ୍ଷାର ବିସ୍ତାର ଦିଗରେ ତାଂକର ଭୂମିକା ତାଂକୁ ଚିରସ୍ମରଣୀୟ ଓ ଯଥାର୍ଥରେ ସଂବଲପୁରର ଗୌରବ ବୋଲି ପରିଚିତ କରିବ। ବ୍ରଜମୋହନ ମଧ୍ୟ ଜଣେ ଆଦର୍ଶ କୃଷକ ଭାବେ ପ୍ରଥମେ ପନାସି (ଶିଶାଲହେଂପ) ଚାଷ ନିଜ ଚାଷ ଗ୍ରାମ ଶୀତଲେନପାଲିଠାରେ ଆରଂଭ କରି ପନାସି ରଶି ଉତ୍ପାଦନ କରିଥିଲେ। ଏହାକୁ ଆଗରୁ ସଂବଲପୁରକୁ ଆସି ସାହେବମାନେ ଚାଷକରି ରପ୍ତାନି କରୁଥିଲେ ଓ ଏ ଦିଗରେ ବ୍ରଜମୋହନ ଯଥାର୍ଥରେ ପଥପ୍ରଦର୍ଶକ ଥିଲେ। ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ସମୟରେ ସଂପୂର୍ଣ ସାଂବିଧାନିକ ପଂଥାରେ ଚାଷୀମାନଂକର ସମୁଚିତ କ୍ଷତି ପୂରଣ ହାସଲ କରିବା ନିମିତ୍ତ ସେ କର୍ତୃପକ୍ଷଂକୁ ଉଚିତ ଦିଗଦର୍ଶନ ଦେଇ ଆସୁଥିଲେ। ଚାଷୀମାନେ ଏହା ଫଳରେ ଯଥେଷ୍ଟ ଉପକୃତ ହୋଇଥିଲେ ଓ ଏ ଦିଗରେ ସେ ଜିଲ୍ଲାର ପ୍ରଭୂତ ଉପକାର କରିଥିଲେ। ତାଂକର ନିଜର ସାହିତ୍ୟିକ କୃତି ମଧ୍ୟରେ 'ପ୍ରବଂଧାବଳୀ' ଓ 'ଯୌବନ ଗାଥା', 'ପ୍ରତୀକ୍ଷିତା' 'ରାଧା', 'ପଲ୍ଲୀବାଣୀର ଗାନ' ପ୍ରଧାନ। ୧୯୧୦ରୁ ୧୯୧୪ ପର୍ଯଂତ ଲିଖିତ ତାଂକର ସମସ୍ତ କବିତା ଯୌବନଗାଥାରେ ସନ୍ନିବେଶିତ ଓ ଏହା ୧୯୬୧ରେ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା।

ସେ ମୃତ୍ୟୁ ପର୍ଯଂତ ସାଧାରଣ ସମାଜ ସେବା କ୍ଷେତ୍ରରେ ସକ୍ରିୟ ଥାଇ ସେ ୧୯୫୬ ମାର୍ଚ୍ଚ ୧୩ ତାରିଖରେ ପ୍ରାଣତ୍ୟାଗ କଲେ।





# କବିଭୂଷଣ
# ସ୍ୱପ୍ନେଶ୍ୱର

ଗଂଗାଧର ମେହେରଂକର ଜନ୍ମର ପ୍ରାୟ ୧୪ ବର୍ଷ ପରେ ବରଗଡ଼ ପାଖ ରୋହିଣିଆ ଗାଁରେ ସ୍ୱପ୍ନେଶ୍ୱର ଜନ୍ମଗ୍ରହଣ କରିଥିଲେ। ପ୍ରାୟ ୮୬ ବର୍ଷ ତାଂକର ଜୀବନ କାଳ ଥିଲା ଓ ଏହି ସମୟ ମଧ୍ୟରେ ଛୋଟବଡ଼ ପ୍ରାୟ ୧୩୫ ଖଂଡ ପୁସ୍ତକ ସେ ରଚନା କରିଥିଲେ। କାବ୍ୟ କବିତା ଛଡ଼ା ଓଡ଼ିଶାର ତତ୍‌କାଳୀନ ପ୍ରତିଷ୍ଠିତ ବହୁ ସଂବାଦପତ୍ର ସହିତ ସେ ଲେଖକ ପରିଚାଳକ ବା ସଂପାଦକ ଭାବରେ ଜଡ଼ିତ ଥିଲେ। ସେ ମଧ୍ୟଭର୍ନାକୁଲର ପାସ୍ କରି ପ୍ରଥମେ ଶିକ୍ଷକତା କଲେ। ଜିଲ୍ଲାର ରେମଂଡା ଟାଂଫରସରା ଓ ରଂପେଲା ମାଇନର ସ୍କୁଲମାନଂକରେ ସେ ଶିକ୍ଷକ ଥିଲେ। କାବ୍ୟ କବିତା ଓ ଧର୍ମଗ୍ରଂଥ ପ୍ରତି ତାଂକର ଆଗ୍ରହ ଯୋଗୁ ସବୁସ୍ତରର ଲୋକେ ତାଂକ ପ୍ରତି ଆକର୍ଷିତ ହେଉଥିଲେ। ପଶ୍ଚିମ ଓଡ଼ିଶାରୁ ସେ ସମୟରେ ସଂବଲପୁର ଓ ବାମଂଡା ରାଜଧାନୀ ଦେବଗଡ଼ ରୁ ପ୍ରକାଶ ପାଇବା ସଂବାଦ ପତ୍ର ପତ୍ରିକା ସହିତ ସେ କ୍ରମାଗତ ଭାବେ ନିଜକୁ ମିଶାଇ ଦେଇ ପାରିଥିଲେ। ସ୍ୱପ୍ନେଶ୍ୱର ଅଳ୍ପ ବୟସ୍କ ଥାଇ ମଧ୍ୟ ବିଭିନ୍ନ କାଗଜରେ ନିଜର ରଚନା ପ୍ରକାଶ କରିବାରେ ଆଗ୍ରହୀ ଥିଲେ, ମାତ୍ର ସେ ନିଜେ ୧୯୧୩ରେ ସଂପାଦକ ଥାଇ ଫ୍ରେଜର ପ୍ରେସରୁ 'ଉତ୍କଳ

ସେବକ' ନାମକ ଏକ ପତ୍ରିକା ର ପ୍ରକାଶନ ଦାୟିତ୍ୱ ନେଲେ। ତାଂକୁ ସଂପାଦନରେ ନିତ୍ୟାନଂଦ ବହିଦାର ଓ ବିଶ୍ୱକେସନ ବହିଦାର ସାହାଯ୍ୟ କରୁଥିଲେ। ୧୯୧୯ରେ ସେହି ପ୍ରେଜର ପ୍ରେସ୍‌ରୁ ସ୍ୱୟଂ ସ୍ୱପ୍ନେଶ୍ୱର ସଂପାଦକ ଥାଇ 'ହୀରାଖଂଡ' ନାମରେ ଆଉ ଏକ ପତ୍ରିକା ପ୍ରକାଶ ପାଇଥିଲା। ୧୯୨୧ ଅସହଯୋଗ ଆଂଦୋଳନରେ ସେ ସହଯୋଗ କରିଥିଲେ। ଯେତେବେଳେ ପଂଡିତ ନୀଳକଂଠ ସଂବଲପୁର ଯାଇ ଜାତୀୟ ବିଦ୍ୟାଳୟ ଖୋଲିଲେ ସେ ସେଠାରୁ ଭାଗୀରଥି ମିଶ୍ରଂକ ସହିତ ମିଶି 'ସେବା' ନାମରେ ଗୋଟିଏ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ। ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପରି ଏହି ବିଦ୍ୟାଳୟ ମଧ୍ୟ ବେଶିଦିନ ବଂଚି ନ ଥିଲା। ସେହି ପ୍ରେଜର ପ୍ରେସ୍‌ରୁ ୧୯୨୮ରେ ଦୟାନିଧି ମିଶ୍ର ଓ କପିଳେଶ୍ୱର ପ୍ରସାଦ ନଂଦ ସଂପାଦକ ଥାଇ 'ନବଯୁଗ' ନାମରେ ଏକ ମାସିକ ପତ୍ରିକା ମଧ୍ୟ ପ୍ରକାଶିତ ହେଲା। ଉତ୍କଳ ସେବକ କିଛିଦିନ ବଂଦ ହୋଇଯିବା ପରେ ୧୯୨୩ରେ ସଂପାଦକ ନିତ୍ୟାନଂଦ ବହିଦାର ପୁଣି ଏହାକୁ ଚାଲୁ କରାଇ ଥିଲେ।

୧୯୩୩ରେ ବାମଂଡାର ଦେବଗଡ଼ରୁ ସାଧୁଚରଣ ଜଗଦେବଂକ ସଂପାଦନାରେ ବାମଂଡା ଶିକ୍ଷକ ସଂଘ ତରଫରୁ ସାହିତ୍ୟିକ ପ୍ରବଂଧମାନ ଥାଇ 'ଉପହାର' ନାମକ ଏକ ପତ୍ରିକା ପ୍ରକାଶ ପାଇଥିଲା। ୧୯୩୬ ରେ ବଲାଂଗୀର କଳାମଂଡଳର ପ୍ରେସରୁ ଶଂକର ପ୍ରସଦ ମିଶ୍ର ସଂପାଦକ ଥାଇ ହୀରାଖଂଡ ସମାଚାର ପ୍ରକାଶ ପାଇଥିଲା। ୧୯୩୭ ରେ ସ୍ୱପ୍ନେଶ୍ୱର ବରଗଡ଼ ରେ ନିଜର ସାଧନା ପ୍ରେସ ସ୍ଥାପନା କଲେ ଓ ସେଠାରୁ 'ସାଧନା' ନାମରେ ଏକ ପତ୍ରିକା ପ୍ରକାଶିତ ହେଉଥିଲା। ଏସବୁ ବ୍ୟତୀତ ବ୍ରହ୍ମପୁର ରାଜମଣି ପ୍ରେସରୁ ବାହାରୁଥିବା 'ଓଡ଼ିଆ' ଓ ରୟାଲ ପ୍ରେସ୍ ରୁ ବାହାରୁଥିବା 'ନବୀନ' ପତ୍ରିକା ର ସେ ପ୍ରଚ୍ଛନ୍ନ ସଂପାଦକ ଥିଲେ । ଏତେଗୁଡ଼ିଏ ସଂବାଦପତ୍ର ସହିତ ସଂପୃକ୍ତ ହେବା ସାଂବାଦିକତା କ୍ଷେତ୍ରରେ ତାଂକର ଦକ୍ଷତା ଓ ବିଚକ୍ଷଣତାର ପରିଚୟ ଦିଏ। ତାଂକ ଲିଖିତ ପୁସ୍ତକ ମଧ୍ୟରେ କବିତା ପେଟିକା, କବିତା ବାଟିକା, ବୀର ସୁରେଂଦ୍ର ସାଏ, ସୀତାପତି ଜଣାଣ, ଶ୍ରୀକୃଷ୍ଣ କଥାମୃତ, ଜାତୀୟ ସଂଗୀତ, ଦୟାସୁଂଦରୀ, ଅଭିଷେକ ଉତ୍ସବ, କୋଷାଂକୁର, ରଂପେଲା ଚିତ୍ରାବଳୀ, ଗାଂଧୀ ବୋଲି, ସଂବଳ ମନସା, ପ୍ରବାଦ ପ୍ରବଚନ ସଂଗ୍ରହ ଆଦି ପ୍ରଧାନ। ମାତ୍ର ୨୯ ବର୍ଷ ବୟସରେ ଦୀର୍ଘଦିନ ପରିଶ୍ରମକରି ସେ ସର୍ବପ୍ରଥମେ ସଂଥ ତୁଳସୀଦାସଂକର ହିଂଦି ଶ୍ରୀରାମଚରିତ ମାନସର ପଦ୍ୟଅନୁବାଦ ପ୍ରକାଶ କରିଥିଲେ। ଏହି ଗ୍ରଂଥଟି ୧୯୨୪ ରେ କଟକରୁ ପ୍ରକାଶିତ ହୋଇଥିଲା। ପୁସ୍ତକଟି ଲୋକ ପ୍ରିୟ ହେବାରୁ ଏହାର ଦ୍ୱିତୀୟ ସଂସ୍କରଣ ମଧ୍ୟ ଛପାଯାଇଥିଲା। ସଂବଲପୁର ଜିଲ୍ଲାରେ ବୈଦ୍ୟମାନେ ଚିକିତ୍ସା କରିବା ସମୟରେ ଏକ ପୁରାତନ ଆୟୁର୍ବେଦ ଗ୍ରଂଥ ଉପରେ ନିର୍ଭର କରୁଥିଲେ। ଚିକିତ୍ସାମଂଜରୀ ନାମକ

ଏହି ଉପାଦେୟ ଗ୍ରଂଥ ଅତି ଦୁର୍ଲଭ ଥିଲା ଓ ନାନା ସ୍ଥାନରେ ଏହା ବିକୃତ ଭାବରେ ଲିଖିତ ଓ ପ୍ରଚଳିତ ଥିଲା। ଏହି ଅଭାବ ଦୂର କରିବା ପାଇଁ କବି ସ୍ୱପ୍ନେଶ୍ୱର ନିଜର ସାଧନ ପ୍ରେସ୍‌ରେ ୧୯୨୨ରେ ଏହାର ପୁନର୍ମୁଦ୍ରଣ କରାଇଥିଲେ। ଏହି ଗ୍ରଂଥଟି ଲୋକ ପ୍ରିୟ ହୋଇଥିଲା ଓ ବୈଦ୍ୟମାନେ ଏହି ପୁସ୍ତକ ସାହାଯ୍ୟରେ ଚିକିତ୍ସା କରି ଅର୍ଥ ଓ ଯଶ ଅର୍ଜନ କରୁଥିଲେ। ଏହା ଦେଖି ସେ ବୈଦ୍ୟ କଳ୍ପଦ୍ରୁମ ନାମରେ ଏକ ବିରାଟ ଆୟୁର୍ବେଦ ସଂକଳନ ରଚନା କରିଥିଲେ । ଏହା ସେ ପ୍ରକାଶ କରି ପାରିଲେ ନାହିଁ। 'ପ୍ରବଚନ ତରଂଗ' ନାମରେ ସେ ଲୋକମୁଖରୁ ୩୦୭୪ ଗୋଟି ପ୍ରବଚନ ସଂଗ୍ରହ କରିଥିଲେ। ଏହି ସଂକଳନ ମଧ୍ୟ ଅପ୍ରକାଶିତ ମାତ୍ର ଆନଂଦର ବିଷୟ ଯେ ତାଂକ ସଂକଳିତ ଓଡ଼ିଆ ପଦ୍ୟ ଅନୁବାଦ ସହିତ ଆଦି ଶଂକରଚାର୍ଯଂକର ରଚନାଯୁକ୍ତ ଏକ ଗ୍ରଂଥାବଳୀ ୧୯୬୩ରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ତତ୍‌କାଳୀନ କୁଳପତି ଡକ୍‌ଟର ପ୍ରାଣକୃଷ୍ଣ ପରିଜାଂକ ଉଦ୍ୟମରେ ପ୍ରକାଶିତ ହୋଇଥିଲା।

କବି ସ୍ୱପ୍ନେଶ୍ୱର ସଂବଲପୁରକୁ ନିଜର କାର୍ଯକ୍ଷେତ୍ର ରୂପେ ବାଛିଥିଲେ ମଧ୍ୟ ସାଂବାଦିକତା କ୍ଷେତ୍ରରେ ତାଂକର ପଟୁତା ଯୋଗୁ ସେ ବିଭିନ୍ନ ଗଡ଼ଜାତମାନ ଭ୍ରମଣ କରୁଥିଲେ ଓ ରାଜଦରବାରରେ ନିଜର କାବ୍ୟକବିତା ନିମିତ୍ତ ପ୍ରଶଂସିତ ହେଉଥିଲେ। ତାଂକ ପ୍ରତିଭାର ପରିଚୟ ସ୍ୱରୂପ ସେ ବିଭିନ୍ନ ରାଜଦରବାରରେ 'କାବ୍ୟକଂଠ' 'କାବ୍ୟବିନୋଦ' ଆଦି ନାନା ଉପାଧିରେ ଭୂଷିତ ହୋଇଥିଲେ। ମାତ୍ର ପାଟଣା ମହାରାଜା ଶ୍ରୀ ପୃଥିରାଜ ସିଂହଦେଓ ବଲାଂଗିରଠାରେ ଏକଦରବାର କରି ତାଂକୁ ଦେଇଥିବା କବିଭୂଷଣ ଉପାଧି ତାଂକର ସବୁଠାରୁ ପ୍ରିୟ ଥିଲା ଓ ସେଥିପାଇଁ ସେ ଓଡ଼ିଶା ତମାମ କବିଭୂଷଣ ସ୍ୱପ୍ନେଶ୍ୱର ନାମରେ ବିଶେଷ ପରିଚୟ ପାଉଥିଲେ। ଜୀବନର ଶେଷ ପର୍ଯାୟରେ ସେ ବରଗଡ଼କୁ ନିଜର ବାସସ୍ଥାନ ବାଛିନେଇ ସେଠାରେ ଜୀବନ କଟାଇଲେ ଓ ନିଜର ଆୟୁର୍ବେଦ ପ୍ରେମର ନିଦର୍ଶନ ସ୍ୱରୂପ ବିଭିନ୍ନ ବୃକ୍ଷଲତା ଗୁଳ୍ମଯୁକ୍ତ ଗୋଟିଏ ଆୟୁର୍ବେଦୀୟ ଉଦ୍ୟାନ ପ୍ରତିଷ୍ଠା କରି ଏହାର ଉନ୍ନତି ଦିଗରେ ଧ୍ୟାନ ଦେଇଥିଲେ। ସ୍ୱପ୍ନେଶ୍ୱର କବିଭୂଷଣ ସୋନପୁର ଦରବାର ସହିତ ମଧ୍ୟ ସଂପୃକ୍ତ ଥିଲେ। ୧୯୦୪ ରେ କୃତଜ୍ଞତା ପୁଷ୍ପାଂଜଳି ଓ ୧୯୨୩ରେ ତାଂକର ସଂବଳ ମାନସ ପ୍ରକାଶିତ ହୋଇଥିଲା। ସୋନପୁରର ରାଜା ଥିଲେ ବୀରମିତ୍ରୋଦୟ ସିଂହ ଦେଓ। ସ୍ୱପ୍ନେଶ୍ୱରଂକର ପୂର୍ବପୁରୁଷ ପୁରୀର ବୀରରାମଚଂଦ୍ରପୁର ଶାସନରୁ ଆସି ପ୍ରଥମେ ସୋନପୁରର ବିନିକାରେ ବସବାସ କରିଥିଲେ। ଏହି ଦୁଇ କାବ୍ୟରେ କବି ସୋନପୁରର କେତେକ ଐତିହାସିକ ବିବରଣୀ ପ୍ରଦାନ କରିଅଛଂତି। ତାଂକର ବରଗଡ଼ରେ କବିକୁଟୀର ନାମରେ ନାମିତ ବାସଗୃହରେ ସେ ନିଜ ଜୀବନ କାହାଣୀ 'ମୋ ଜୀବନ' ନାମଦେଇ ୩୨ ଖଂଡରେ ରଚନା କରିଥିଲେ। ସ୍ୱପ୍ନେଶ୍ୱରଂକର ରଚନାରେ ବିବିଧତା

ଥିଲା । ଅଭିଧାନଠାରୁ ଆୟୁର୍ବେଦ, ଇତିହାସଠାରୁ ଲୋକକଥା, ଜୀବନୀଠାରୁ ଭୌଗୋଳିକ ଇତିହାସ – ତାଂକ ରଚନାର ପରିସର ଥିଲା । ତାଂକ ରଚନା ସଂଭାରକୁ ଅନୁବାଦ କାବ୍ୟ ଓ ବିବିଧ ରଚନା ଏହିପରି ତିନିଭାଗରେ ବିଭକ୍ତ କରାଯାଇପାରେ । ତାଂକର ଅନୁବାଦ, ମଧ୍ୟରେ ଶ୍ରୀରାମ ଚରିତ ମାନସ, ଗାଂଧିବୋଲି, ଆଁଶୁ, ଶଂକରଚାର୍ଯ ଗ୍ରଂଥାବଳୀ ଓ ସାକେତ ପ୍ରଧାନ । କାବ୍ୟମାନଂକ ମଧ୍ୟରେ କବିତା ଝଟିକା, କବିତା କୁଜ୍ଝଟିକା, କବିତା ବାଟିକା, କବିତା ପେଟିକା, ରାଜାରାମ କାବ୍ୟ, ସଂଗୀତ ମଂଜରୀ ଉଲ୍ଲେଖନୀୟ । ତାଂକର ବିବିଧ ରଚନାମାନଂକ ମଧ୍ୟରେ ବୈଦ୍ୟ କଳ୍ପଦ୍ରୁମ, ପର୍ବ ପର୍ବାଣି, କୋଷାଂକୁର ବ୍ୟାକରଣ ସ୍ତବ, ଅଂତ୍ୟେଷ୍ଟି ଯାଗ, ସଂବଲମାନସ, କୃତଜ୍ଞତା ପୁଷ୍ପାଂଜଳି ଲୋକପ୍ରିୟ ଥିଲା । ସଂପାଦନା କ୍ଷେତ୍ରରେ ସେ 'ସାଧନା' 'ଉତ୍କଳ ସେବକ' ଓ 'ହୀରାଖଂଡର' ସଂପାଦକ ଥିଲେ । ସଂବଲ ମାନସ ରାଣୀ ପାର୍ବତୀ ଦେବୀଂକର ଆର୍ଥିକ ସହାୟତାରେ ପ୍ରକାଶିତ । ରାଜା ବୀର ମିତ୍ରୋଦୟ କବିଂକୁ ୧୯୨୧ ମଇ ରେ ସାଧନା ପ୍ରେସ ଦାନ କରିଥିବା ହେତୁ ସେହି ଉପଲକ୍ଷେ 'କୃତଜ୍ଞତା ପୁଷ୍ପାଂଜଳି' ରଚିତ ହୋଇଥିଲା । ଗ୍ରଂଥରେ କବି ଚୌହାନ ନରପତି ମାନଂକର ରାଜକୀୟ ବଦାନ୍ୟତା ଓ ଉଦାରତା ଉଲ୍ଲେଖ କରି ନିଜର କୃତଜ୍ଞତା ପ୍ରକାଶ କରିଅଛଂତି । ନିଜର ପୃଷ୍ଠପୋଷକ ସୋନପୁର ନରପତିଂକୁ କବି 'ସାହିତ୍ୟ କୁଂଜ କଳକଂଠି ଭାବେ ପ୍ରଶଂସା କରିଅଛଂତି । ୧୯୬୨ରେ ବରଗଡ଼ର ହାଟପଦାରେ ନିଜଘରେ ଥାଇ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।





# କପଡ଼ା ଦୁକାନରୁ ପଦ୍ମଶ୍ରୀ ଓ ବିଦ୍ୟାବାଚସ୍ପତି
# କୃତାର୍ଥ ଆଚାର୍ଯ୍ୟ

ସଂବଲପୁର ଜିଲ୍ଲାର ଏକ ଗ୍ରାମରେ ୧୯୦୦ରେ କୃତାର୍ଥ ଆଚାର୍ଯ୍ୟ ଓରଫ ମାଷ୍ଟ୍ରଙ୍କର ଜନ୍ମ। ତାଂକ ମାମୁଁଘର ବରପାଲିରେ ଥିଲା। ଅତି ଦୟନୀୟ ଅବସ୍ଥାରେ ସେ ସେଠାରେ ପଡିରହି ପ୍ରାଥମିକ ଶିକ୍ଷା ଶେଷକଲେ। ଅତି ଅସହାୟ ମାତ୍ର ମେଧାବୀ ଛାତ୍ର ଥିବାରୁ ତାଂକର ଶିକ୍ଷକମାନେ ତାଂକୁ ସାହାଯ୍ୟ କଲେ। କିଛିଦିନ ସେ ମେସ୍‌ରେ ରାଂଧୁଣିଆ କାର୍ଯ୍ୟ ମଧ୍ୟ କଲେ ଓ ୧୯୧୭ରେ ସଂବଲପୁର ଜିଲ୍ଲାସ୍କୁଲରେ ଭର୍ତିହେଲେ। ପଂଡିତ ନୀଳକଣ୍ଠ ୧୯୨୧ରେ ସଂବଲପୁରରେ ଜାତୀୟ ବିଦ୍ୟାଳୟ ସ୍ଥାପନ କଲେ। ଅନେକ ମେଧାବୀ ଛାତ୍ର ଆସି ଏଠାରେ ନାମ ଲେଖାଇଲେ। ଏହି ଛାତ୍ରମାନେ ଦେଶଭକ୍ତିରେ ଉଦ୍‌ବୁଦ୍ଧ ହୋଇଥିଲେ। କୃତାର୍ଥ ସେଠାରେ ନାମ ଲେଖାଇବାକୁ ଆଗ୍ରହୀ ଥିଲେ ମଧ୍ୟ ଆବଶ୍ୟକ ସଂବଳ ଅଭାବରୁ ପାଠ ପଢ଼ି ପାରିନଥିଲେ। ଜାତୀୟତାବାଦୀ ଭାବରେ ନାନା ଦୁଃଖ କଷ୍ଟ ମଧ୍ୟରେ ସେ ପାଠପଢ଼ା ଚାଲୁରଖିଲେ ମାତ୍ର ମାଟ୍ରିକ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ। ସଂବଲପୁର ସହରରେ ସେ ନିଜର ଜୀବିକା ଅର୍ଜନର କୌଣସି ସୁଯୋଗ ନପାଇବାରୁ ବରଗଡ଼ ଚାଲିଆସିଲେ। ସେଠାରେ ସେ ଛୋଟ ଛୋଟ ପିଲାମାନଂକୁ ଟିଉସନ କରି ପାଠ

ପଢ଼ାଇବାକୁ ଲାଗିଲେ । ଅବସର ସମୟରେ ସେ ସ୍ଥାନୀୟ ବ୍ୟବସାୟୀ ମାନଂକ ସିରସ୍ତାରେ ମଧ୍ୟ କାମକରୁଥିଲେ । ସେମାନଂକ ପାଇଁ ଦଲିଲ ଦସ୍ତାବିଜ୍ ଓ ହିସାବ ଲେଖାଲେଖି କରୁଥିଲେ ଓ ଏଥିରୁ ତାଂକର ଦିପଇସା ରୋଜଗାର ମଧ୍ୟ ହେଉଥିଲା । ବରଗଡ଼ରେ ସେ ବିଶେଷ ଜଣାଶୁଣା ହେଲାରୁ ତାଂକ ନାମ କୃତାର୍ଥ ମାଷ୍ଟ୍ର ହେଲା । ଜୀବନର ଶେଷପର୍ଯଂତ ସେ ସର୍ବସାଧାରଣରେ ଏହି ନାମରେ ପରିଚିତ ଥିଲେ ।

ମାରୱାଡ଼ୀମାନଂକ ପାଖରେ କାମକରିବା ସମୟରେ ସେ 'ବାଣିଜ୍ୟେ ବସତି ଲକ୍ଷ୍ମୀ' ର ତାତ୍ପର୍ଯ୍ୟ ଠିକ୍ ବୁଝିଲେ । ଦେଶରେ ବିଲାତୀ ବସ୍ତ୍ର ବର୍ଜନ ଓ ସ୍ୱଦେଶୀ ବସ୍ତ୍ରର ଆଦର ଆଂଦୋଳନ ତାଂକ ମନରେ ବିଶେଷ ପ୍ରଭାବ ଆଣିଲା । ବଂଗଳାର ଜଣେ ବିଶିଷ୍ଟ ରସାୟନ ଶାସ୍ତ୍ର ଅଧ୍ୟାପକ ଥିଲେ ଆଚାର୍ଯ ପ୍ରଫୁଲ ଚଂଦ୍ର ରାୟ । ସେ ସ୍ୱଦେଶୀ ଶିଳ୍ପର ପ୍ରବର୍ତକ ଥିଲେ ଓ ଯେଉଁମାନେ ସ୍ୱାଧୀନ ଉଦ୍ୟମ ଆରଂଭ କରୁଥିଲେ ସେମାନଂକୁ କୃତୀ କାରିଗର ହେବାରେ ତାଂକ ଜ୍ଞାନଦ୍ୱାରା ଉଦ୍‌ବୁଦ୍ଧ କରୁଥିଲେ । କୃତାର୍ଥ ତାଂକର କେତେଖଂଡି ବହି ପଢ଼ିଲେ । ଏହି ସମୟରେ ଜିଲ୍ଲାରେ ଭୁଲିଆମାନେ ସୂତା ଲୁଗାବୁଣୁଥିଲେ ଓ କୋଷ୍ଟା ମାନେ ମଠା ସୂତାକାଟିବା ଓ ବୁଣିବାରେ ନିଜର ବିଶେଷତ୍ୱ ଦେଖାଉ ଥିଲେ । ମାତ୍ର କଠିନ ପରିଶ୍ରମ ଓ ଜ୍ଞାନ କୌଶଳ ସତ୍ୱେ ସେମାନଂକର ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ହାତବୁଣା ସୂତା ଶାଢ଼ିର ଆଦର ବହୁତ ଥିଲା । ପଶ୍ଚିମାଂଚଳର ସ୍ତ୍ରୀ ଲୋକମାନେ ମିଲଶାଢ଼ି ପିଂଧୁ ନଥିଲେ । କୋଷ୍ଟା, ଭୁଲିଆ ଆଦି ବୁଣାକାରମାନେ ତିଆରି କରିବା ଶାଢ଼ିର ଚାହିଦା ଦେଶରେ ଜାତୀୟତା ବାଦ ସହ କ୍ରମଶଃ ବୃଦ୍ଧି ପାଉଥିବାର ଦେଖି ସେ ଗୋଟିଏ କପଡ଼ା ଦୋକାନ ଆରଂଭ କଲେ ଓ ଏହାର ନାମ ସଂବଲପୁରୀ ବସ୍ତ୍ରାଳୟ ଦେଲେ । ପୂର୍ବରୁ ସେ ବରଗଡ଼ର ଅଂବାପଲିଠାରେ ଗୋଟିଏ ଖଦିବୁଣା କେଂଦ୍ର ପ୍ରତିଷ୍ଠା କରିଥିଲେ । ହରିଜନମାନେ ସେଠାରେ ବୁଣାକାମ କରୁଥିଲେ ଓ ଛୁଆଁ ଅଛୁଆଁ ଭେଦଭାବ ସେଠାରେ ନ ଥିଲା । ସ୍ୱାଧୀନତା ସଂଗ୍ରାମୀମାନେ ସେଠାକୁ ଯାଉଥିବାରୁ କୃତାର୍ଥ ପୋଲିସର କୋପଦୃଷ୍ଟିରେ ପଡିଲେ । ତାଂକ ଘର ଓ ଦୋକାନ ତଲାସ କରାଗଲା । ଦିନକୁ ଦିନ ପାଂଠିର ମଧ୍ୟ ଅଭାବ ପଡ଼ିଲା ତେଣୁ ସେ ନିଜର ସମସ୍ତ ଶକ୍ତି ନୂତନ ବସ୍ତ୍ରାଳୟକୁ ବଢ଼ାଇବାରେ ବ୍ୟୟ କଲେ । ଦୋକାନରେ ସେ କୋଷ୍ଟା, ଭୁଲିଆ, ବୁଣାକାରମାନଂକଠାରୁ ଶାଢ଼ି ସଂଗ୍ରହ କରି ବିକ୍ରିପରେ ସେମାନଂକୁ ଅର୍ଥ ଦେଇଦେଉଥିଲେ । ସେମାନେ ଅନ୍ୟଠାରେ ଯାହା ପାଉଥିଲେ ଏହା ତାହାଠାରୁ ବେଶୀ ହେବାରୁ ଲୋକଂକର ତାଂକ ଉପରେ ପତିଆରା ବଢ଼ିଗଲା । ବାଂଧକଳାର କୁଶଳୀ କାଳାକାରମାନଂକଠାରୁ ସେ ଗଛପତ୍ରରୁ ରଂଗବାହାର କରି ତାହାଦ୍ୱାରା କପଡ଼ା ଓ ସୂତା ରଂଗାଇବା କୌଶଳ ଶିକ୍ଷାକଲେ । ଲୁଗାବୁଣାଳି (ମେହେର) ମାନେ ନୂଆଜ୍ଞାନ କୌଶଳଦ୍ୱାରା

ସେମାନେ ଉପକୃତ ହେବେ ଓ ତାଂକ ଦ୍ୱାରା ଭବିଷ୍ୟତରେ ଭୁଲିଆ ସମାଜର ଅର୍ଥନୈତିକ ପ୍ରଗତି ହେବ ଏହି ଆଶାରଖି ତାଂକୁ ସବୁପ୍ରକାର ସାହାଯ୍ୟ କଲେ। ପ୍ରଥମେ କୃତାର୍ଥ ଶାଢ଼ି ସଂଗ୍ରହ କରି ବିକ୍ରିକରୁଥିଲେ। ପରେ ସୂତା ରଂଗ କରିବାର କୌଶଳ ଜାଣି ରଂଗସୂତା ଯୋଗାଇଲେ ଓ ତଂତିଂକଠାରୁ ଏହିସୂତା ତିଆରି ଲୁଗା ସଂଗ୍ରହ କରି ଆଣିଲେ। ପ୍ରଥମେ ଖଦିସୂତା ଓ ପରେ ମିଲ୍ ସୂତା ରଂଗେଇ କରିଦେଲେ। ଏଥିରେ ବୁଣାକାରମାନେ ଲାଭପାଇଲେ। ବ୍ୟବସାୟ ଧୀରେ ଧୀରେ ବଢ଼ିଲା। ତେଣୁ ବରଗଡ଼ ପାଖରେ ତୋରା ଗ୍ରାମରେ ସେ ଲୁଗାବୁଣା କେନ୍ଦ୍ର ଗୋଟିଏ ଆରଂଭ କଲେ। ସେଇଠି ସଂବଲପୁରୀ ବସ୍ତ୍ରାଳୟରୁ ନିଜର ଜ୍ଞାନ କୌଶଳରେ ରଂଗାଯାଇଥିବା ସୂତାରେ ଚୁଆଚୁଆ ଡିଜାଇନ୍ ଦେଇ ଉନ୍ନତ ବାଂଧକଳାରେ ତିଆରି ସଂବଲପୁରୀବସ୍ତ୍ର ବଜାରକୁ ଛାଡ଼ିଲେ। ଏହି ବସ୍ତ୍ର ଏପରି ଲୋକ ପ୍ରିୟ ହୋଇଗଲା ଯେ ଚାହିଦା ପୂରଣ ତାଂକ ପକ୍ଷରେ କଷ୍ଟକର ହେଲା।

୧୯୪୨-୪୩ରେ ବଂଗଳା ଦୁର୍ଭିକ୍ଷ ସମୟରେ ଇଂରେଜ ସରକାର ଭାରତର ସମସ୍ତ ରାଜ୍ୟରୁ ଚାଉଳ ସଂଗ୍ରହ ପାଇଁ ଉଦ୍ୟମ କଲେ। ସେହି ଯୋଜନା ଅନୁସାରେ ଓଡ଼ିଶା ସରକାରଂକର ଯୋଗାଣ ବିଭାଗ ପ୍ରତ୍ୟେକ ଜିଲ୍ଲାରେ ବଡ଼ ବଡ଼ ଚାଉଳ ବ୍ୟବସାୟୀଂକୁ ଏକତ୍ର କରି ସରକାରୀ ଖରିଦ୍‌ଦାର ଏଜେଂଟ୍ ଭାବରେ ନିୟୋଜିତ କଲେ। ସଂବଲପୁର ଜିଲ୍ଲାରେ ୭୦ ଜଣ ଚାଉଳ ବ୍ୟବସାୟୀଂକୁ ଘେନି ଗୋଟିଏ କଂପାନି ଗଢ଼ାହେଲା। ଏହାର ନାମ ସଂବଲପୁର ଇଉନାଇଟେଡ ଟ୍ରେଡିଂ କଂପାନି ସଂକ୍ଷେପରେ 'ସୁଟକୋ' ରଖାଗଲା। ସରକାରଂକ ପଇସାରେ ଚାଉଳ କିଣାହୁଏ। କଂପାନିକୁ ଖରିଦ ଉପରେ କମିସନ ମିଳେ। ଲକ୍ଷ ଲକ୍ଷ ଟନ୍ ଚାଉଳ ଏହିପରିଭାବରେ ସଂବଲପୁର ଜିଲ୍ଲା ଓ ଆଖପାଖ ଗଡ଼ଜାତମାନଂକରୁ ସଂଗୃହୀତ ହେଲା ଓ ତାହା ସରକାରୀ ନିର୍ଦ୍ଦେଶ ଅନୁସାରେ ରାଜ୍ୟ ବାହାରକୁ ରପ୍ତାନି ହେଲା। କିଛିଦିନ କଂପାନି କାମ କଲାପରେ ଦେଖାଗଲା ଯେ ଚାଷୀମାନଂକୁ କଂପାନି ନିଜର ଏକଚାଟିଆ ଖରିଦ କରିବାର ଅଧିକାର ଯୋଗୁ ଶୋଷଣ କରୁଛି। ଚାଉଳ କିସମକୁ ନିମ୍ନ କିସମ ଦେଖାଇବା ଆଳରେ ଚାଷୀଂକୁ ଅଳ୍ପଟଂକା ଦେଉଛି। ସରକାରଂକ ପାଖରୁ ଟଂକା ଆସିନାହିଁ, କହି ଚାଷୀମାନଂକୁ ମୂଲ୍ୟ ଦେବାରେ ଟାଳଟୁଳ କରୁଛି। ଏହା ଫଳରେ ଚାଷୀ ଅସଂତୋଷ ବଢ଼ିଲା। ୧୯୪୮ ବେଳକୁ ବିଶିଷ୍ଟ ବ୍ୟବସାୟୀ ଦୟାଲାଲ ଯୋଷୀ ଓ ଅନ୍ୟ କେତେଜଣ ମିଶି ଗୋଟିଏ ଲିମିଟେଡ୍ ପବ୍ଲିକ୍ କଂପାନି ଗଢ଼ି ଚାଷୀମାନଂକୁ ଅଂଶଧନ ବିକି ଏହି ଖରିଦଦାରୀ ଏଜେନ୍‌ସି ନେବାକୁ ବାହାରିଲେ। କଂପାନିର ନାମ ଦିଆଗଲା କୃଷକ ଟ୍ରେଡିଂ କମ୍ପାନି। ମୋଟରେ ୧୨୦୦ଟି ଅଂଶ ଥାଇ ପ୍ରତି ଅଂଶର ମୂଲ୍ୟ ଦଶଟଂକା ରହିଲା ଓ ୨୫୦ ଟିରୁ ଅଧିକ ଅଂଶ ଯେପରି କେହି ପ୍ରଭାବଶାଳୀ ବ୍ୟକ୍ତି କିଣି ନ ପାରିବେ ତାହା ଉପରେ କଟକଣା ରଖାଗଲା। ସେତେବେଳକୁ କୃତାର୍ଥ ଆଚାର୍ଯ୍ୟ ରାୟସାହେବ ଉପାଧି

ପାଇ ସାରିଲେଣି ଓ ସରକାର ତାଂକୁ ସମ୍ମାନ ଦେଉଥିଲେ। ତାଂକୁ ଏହାର ମେନେଜିଂ ଡାଇରେକ୍‌ଟର ନିର୍ବାଚିତ କରାଗଲା। 'ସୁଟକୋ'ର ସରକାରୀ କର୍ମଚାରୀମାନଂକ ଉପରେ ଯଥେଷ୍ଟ ପ୍ରଭାବ ଥାଏ। ତେଣୁ ଶେଷରେ ସମଗ୍ର ଜିଲ୍ଲା ପାଇଁ ନ କରି ଗୋଟିଏ ମାତ୍ର ଥାନାରେ ନୂଆ କଂପାନିକୁ ପୁରୁଣା କଂପାନି ସହିତ ମିଶି ସଂଗ୍ରହ କରିବାର ଦାୟିତ୍ୱ ମିଳିଲା। ନିଜର ଦକ୍ଷତା ଦେଖାଇ ପରେ କଂପାନି ସମଗ୍ର ଜିଲ୍ଲାର ଦାୟିତ୍ୱ ପାଇଲା। ୧୯୪୮ରୁ ୧୯୫୨ ପର୍ଯଂତ କାର୍ଯକରି କଂପାନି ଲାଭଅଂଶ ଶତକଡ଼ା ୬ ରୁ ୮ ଯାଏ ପାଉଥିଲା। ନାନା ଉତ୍‌ଥାନ ପତନ ମଧ୍ୟରେ ଏହି କଂପାନି କାର୍ଯ କରିଥିଲା ଓ ଏହାର ପରିଚାଳନାରେ କୃତାର୍ଥ ନିଜର ଦକ୍ଷତା ପ୍ରମାଣିତ କରିଥିଲେ। ୧୯୫୪ରେ ସଂବଲପୁରରେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ଏକ ବିଶେଷ ପୂର୍ଣାଂଗ ଅଧିବେଶନ ବସିଥିଲା। ସହରର ଏହି ଅଂଚଳର ନାମ ପୂର୍ବେ ଭୁତାପଡ଼ା ଥିଲା। ଅଧିବେଶନ ସମୟରେ ଏହାର ନାମ ବୀରସୁରେଂଦ୍ର ସାଏ ନଗର କରାଯାଇଥିଲା ଓ ସେହିଦିନୁ ଏହି ନୂତନ ନାମଟି ପ୍ରଚଳିତ। ଏହି ଅଧିବେଶନର ସମସ୍ତ ସଜାସଜି କେବଳ ସଂବଲପୁରୀ କପଡ଼ାରେ କରାଯାଇଥିଲା। ବୟୋଜ୍ୟେଷ୍ଠ କଂଗ୍ରେସ କର୍ମୀ ରାଧାଶ୍ୟାମ ମେହେର ଓ ତାଂକ ପୁଅ ଲକ୍ଷ୍ମଣ ମେହେର କୃତାର୍ଥ ମାଷ୍ଟରଂକ ସହିତ ମିଶି ଏହି ସଜାସଜିକୁ ନୂତନ ରୂପ ଦେଇଥିଲେ। ଫଳରେ ସଂବଲପୁର ବସ୍ତ୍ରର ଖ୍ୟାତି ସମଗ୍ର ଭାରତକୁ ବ୍ୟାପିଲା। ସଂବଲପୁରୀ ଶାଢ଼ି ପରଦା ଓ ଅନ୍ୟାନ୍ୟ ଘର ସଜା ଉପକରଣର ଚାହିଦା ସବୁ ବଡ଼ ବଡ଼ ସହରରେ ବଢ଼ିଗଲା। ସଂବଲପୁରୀ ବସ୍ତ୍ରାଳୟ ସହିତ ସହରର ପରଦା ଏଜେନ୍‌ସି ଓ ମେହର ଆର୍ଟ ପାଂବ୍ରିକ୍‌ସ ଏହି ଲୋକପ୍ରିୟତା ଅର୍ଜନ ନିମିତ୍ତ ବହୁତ ଯତ୍ନ କରିଥିଲେ। ଡକ୍‌ଟର ରାଧାକୃଷ୍ଣନ୍, ପଂଡିତ ନେହେରୁ, ବିଜୟଲକ୍ଷ୍ମୀ ପଂଡିତ, ଇଂଦିରାଗାଂଧୀ ଆଦି ଭାରତ ବର୍ଷର ପ୍ରତିଷ୍ଠିତ ଜନନାୟକ ମାନେ ଏହି ବୟନ କଳାର ଉଚ୍ଚ ପ୍ରଶଂସକ ହେଲେ। ସମଗ୍ର ଭାରତ ବର୍ଷରେ ଉଚ୍ଚ କୋଟିର ପ୍ରସ୍ତୁତ ସଂବଲପୁରୀ ବସ୍ତ୍ର ଆଦର ପାଇବା ସହିତ ଭାରତ ବାହାରେ ସୁଦୂର ଆମେରିକା, ଫ୍ରାନ୍‌ସ ଓ ଜାପାନରେ ଏହି ବାନ୍ଧକଳା ପ୍ରସ୍ତୁତ ବସ୍ତ୍ର ବିକ୍ରି ହେବାରେ ଲାଗିଲା। ଅନ୍ୟ କେତେଜଣଂକ ସହିତ ଏଥିପାଇଁ କୃତିତ୍ୱ ଥିଲା କୃତାର୍ଥ ଆଚାର୍ଯଂକର। ଫଳରେ ତାଂକୁ ଯଥେଷ୍ଟ ଗୌରବ ଯଶ ଓ ଅର୍ଥମଧ୍ୟ ମିଳିଥିଲା। କୁଶଳୀ କାରିଗରମାନେ ମଧ୍ୟ ଏହା ଫଳରେ ଉପକୃତ ହୋଇଥିଲେ ଓ ଜଣେ ଦକ୍ଷ ସଂଗଠକ ଓ ସଫଳ ବ୍ୟବସାୟୀ ଭାବରେ ଓଡ଼ିଆଂକର ସ୍ୱାଭିମାନ ଓ ଆତ୍ମବିଶ୍ୱାସ ପ୍ରତିଷ୍ଠା କ୍ଷେତ୍ରରେ ସେ ଭବିଷ୍ୟତ ପିଢ଼ି ପାଇଁ ଦିଗ୍‌ଦର୍ଶକ ହୋଇ ରହିଲେ।

ତାଂକର ଦୃଢ଼ ମନୋବଳ, ଭବିଷ୍ୟତ ଉପରେ ଭରସା, କଠିନ ଶ୍ରମ ଓ ବ୍ୟବସାୟିକ ନେତୃତ୍ୱ ନିମିତ୍ତ ସେ ବହୁଭାବରେ ସମ୍ମାନିତ ହୋଇଅଛଂତି। ୧୯୪୫ରେ ଇଂରେଜ ସରକାର କୃତୀତ୍ୱ ପାଇଁ ତାଂକୁ 'ରାୟସାହେବ' ଉପାଧି ଦେଇଥିଲେ। ସଂବଲପୁରୀ ବସ୍ତ୍ରାଳୟକୁ ସେ ଏକ ସମବାୟ ସଂସ୍ଥାରେ ୧୯୫୪ ରେ ପରିଣତ କରିଥିଲେ। ସେହିବର୍ଷ ଓଡ଼ିଶା ସମବାୟ

ଶିକ୍ଷା ଅନୁଷ୍ଠାନଟି ତାଂକ ନାମରେ ନାମିତ କରାଯାଇଥିଲା। ବରଗଡ଼ ଅଂଚଳର ଜଣେ ବିଶିଷ୍ଟ ବ୍ୟବସାୟୀ ଓ ଜନସେବକ ଭାବରେ ସେ ବରଗଡ଼ ପଂଚାୟତ କଲେଜ ସହିତ ମହିଳା କଲେଜ ଓ ବହୁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ସହିତ ସଂପୃକ୍ତ ଥିଲେ। ଜିଲ୍ଲା କେଂନ୍ଦ୍ର ସମବାୟ ବ୍ୟାଂକର ଦୀର୍ଘଦିନ ଧରି ସେ ସଭାପତି ଥିଲେ। ବୟନ ଶିଳ୍ପର ବିଶେଷ ଉନ୍ନତି ପାଇଁ ତୋରାଗ୍ରାମରେ ପାୱାରଲୁମ ଓ ସମବାୟ ସୂତା କଳ ପ୍ରତିଷ୍ଠା ତାଂକ ଉଦ୍ୟମର ଫଳ। ବହୁ ସାମାଜିକ ଓ ଧାର୍ମିକ ଅନୁଷ୍ଠାନ ମଧ୍ୟ ତାଂକ ଦ୍ୱାରା ଉପକୃତ ହୋଇଥିଲେ। ୧୯୫୫ରେ ମହମ୍ମଦ ମୂଷାଖାଁଂକ ରଚିତ 'ମିନାର' କବିତାପୁସ୍ତକ ସେ ନିଜ ବ୍ୟୟରେ ପ୍ରକାଶ କରିଥିଲେ। ଭାରତ ସରକାର ୧୯୬୫ରେ ତାଂକୁ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ କରିଥିଲେ। ୧୯୭୫ରେ ସଂବଲପୁର ବିଶ୍ୱବିଦ୍ୟାଳୟ ତରଫରୁ ତାଂକୁ ସମ୍ମାନସୂଚକ ଡି.ଲିଟ୍ (ବିଦ୍ୟାବାଚସ୍ପତି) ଉପାଧିରେ ସମ୍ମାନିତ କରାଯାଇଥିଲା। ଜୀବନର ଶେଷ ପର୍ଯଂତ କର୍ମଠ ଥାଇ ୧୯୭୯ ମେ ରେ ବୁର୍ଲାମେଡିକାଲ୍ କଲେଜରେ ସେ ଶେଷ ନିଃଶ୍ୱାସ ତ୍ୟାଗକଲେ ଓ ଉତ୍କଳ ଜନନୀ ତାଂକର ଜଣେ ସୁଯୋଗ୍ୟ ସଂତାନଂକୁ ହରାଇଲା। ତାଂକର ଦୁଇ ପୁଅ ଆନଂଦ ଓ ପ୍ରସନ୍ନ ରାଜନୀତି କ୍ଷେତ୍ରରେ ସକ୍ରିୟ ଅଛଂତି।



''ବଂଧୁ ଉପହାର ନିମନ୍ତେ କୋଷାବସ୍ତ୍ର ବିଶେଷ
ପ୍ରସ୍ତୁତ ସକାଶେ କୋଷ୍ଟାଏ ପାଇଲେଣି ଆଦେଶ
ସଂବଲପୁରିଆ ଚାଂଦୁଆ ପଡ଼ି ଶାଢ଼ି ଆସିବ
ବିପ୍ର ସୀମଂତିନୀମାନଂକ ମାନସକୁ ତୋଷିବ
ବିନିକା ଗ୍ରାମରୁ ଆସିବ ହଂସାବଳୀ କପଟା
ଭଦ୍ର ମହିଳା ପିଂଧିବା ପାଇଁ ହୋଇବ ବଂଟା
ସାମଂତଂକ ମୁଖରଂଜନ ପାଇଁ ହେବ ପ୍ରଦାନ
ରାୟଗଡ଼ ଚୋଖି ଖଇର ସ୍ୱର୍ଣ ପୁରିଆ ଗାନ
ନବ କୁମାରଂକ ସୁବର୍ଣ ହରେ ହେବ ଖଚିତ
ହୀରାକୁଦ ଜାତ ହୀରକ ଆଣିବାର ଉଚିତ।''
ବରପାଲି ରାଜାଂକ ପୁତ୍ର ଜନ୍ମ ଏକୋଇଶା
ଉପଲକ୍ଷେ କୁଂଫାର ଜନ୍ମୋତ୍ସବରେ।

—ସ୍ୱଭାବକବି ଗଂଗାଧର



# ମୁକୁର ସଂପାଦକ ସାହିତ୍ୟସେବୀ
# ଦୟାନିଧି ମିଶ୍ର

ତୁଲଂଡି ଗ୍ରାମଟି ବରଗଡ଼ ଜିଲ୍ଲା ବରପାଲି ଠାରୁ ପ୍ରାୟ ତିନିମାଇଲ ଦୂରରେ । ସେ ଗାଁର ଲୋକନାଥ ମିଶ୍ର ପଟୁଆରି କାମ କରୁଥିଲେ । ଗାଁର ଜମି ଖୁବ୍ ଉର୍ବର । ଲୋକେ ପରିଶ୍ରମୀ । ଚାଷ ଉପରେ ନିର୍ଭର କରି ଗାଁଟି ସମୃଦ୍ଧ ଥିଲା । ଲୋକନାଥଂକର ଚାରିପୁଅ ଥିଲେ । ବାଂଛାବଟ ବଡ଼ ପୁଅ । ସେ ମାଟ୍ରିକ୍ ପାସ୍ କରି ସେ ଯୁଗରେ ଉଚ୍ଚ ଶିକ୍ଷିତ ଥିଲେ । ଶିକ୍ଷା ପ୍ରତି ନିଜର ଆଗ୍ରହ ଯୋଗୁ ଅନ୍ୟ ତିନିଭାଇଂକୁ ବେଶ ଉଚ୍ଚ ଶିକ୍ଷା ଦେଇଥିଲେ । ବାଂଛାବଟଂକର ଏକମାତ୍ର ସଂତାନ-କନ୍ୟା ସ୍ନେହଲତା । ସେ ଓଡ଼ିଶାର ପ୍ରଖ୍ୟାତ ଇଂରାଜୀ ଅଧ୍ୟାପକ ଡକ୍‌ଟର ପ୍ରଫୁଲ୍ଲ କୁମାର ପତିଂକୁ ବିବାହ କରିଥିଲେ ।

ବାଂଛାବଟଂକର ୨ୟ ଭାଇ ଥିଲେ ଦୟାନିଧି । ୧୮୯୧ ଜୁନ ୨୧ ତାରିଖରେ ସେ ଜନ୍ମ ହୋଇଥିଲେ । ସଂବଲପୁର ଜିଲ୍ଲାସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍‌କରି ସେ ରେଭେନ୍‌ସା କଲେଜରେ ବି.ଏ. ପଢ଼ିଲେ । ଦୟାନିଧି ଆଇ.ଏ ପଢୁଥାଆଂତି । ମାତ୍ର ସେହି ସମୟରେ ମଧ୍ୟ ନିଜର ବାଗ୍ମିତା, ଅଭିନୟ କୁଶଳତା, ସମାଜସେବା ଓ ସାହିତ୍ୟସାଧନା ନିମିତ୍ତ ସେ ସମସ୍ତଂକର ଦୃଷ୍ଟି ଆକର୍ଷଣ କରିପାରିଥିଲେ ।

୧୯୧୫ ରେ ରେଭେନ୍‌ସା କଲେଜରୁ ସେ ବି.ଏ. ପାସ୍‌କଲେ। ଏକଦା ସାର ଜନ ଉଡ୍‌ବର୍ନ ବଂଗଳାର ଲେଫ୍‌ଟନାଂଟ୍ ଗଭର୍ନର ଥିଲେ। ୧୮୯୯ରେ କଟକର ଜଣେ ରାଜଭକ୍ତ ଜମିଦାର ରାୟବାହାଦୁର ଯୋଗେଶ୍ବର ଚଂଦ୍ର ତାଂକ ନାମରେ ଗୋଟିଏ ପୁରସ୍କାର ରେଭେନ୍‌ସା କଲେଜରେ ଦିଆଯିବାର ବ୍ୟବସ୍ଥା କରିଥିଲେ। ଏଥିପାଇଁ ଗୋଟିଏ ପାଂଠି ସେ ସୃଷ୍ଟି କରିଥିଲେ। କଟକର ଜିଲ୍ଲାମାଜିଷ୍ଟ୍ରେଟ ରେଭେନ୍‌ସା କଲେଜର ଅଧ୍ୟକ୍ଷଂକ ସହିତ ପରାମର୍ଶ କରି ବି.ଏ., ବି.ଏସି. ଦୁଇ ପରୀକ୍ଷାକୁ ମିଶାଇ ଯେଉଁ ଛାତ୍ର ସର୍ବାପେକ୍ଷା ଅଧିକ ନଂବର ରଖିଥିବେ ତାଂକୁ ଏହି ଉଡ୍‌ବର୍ନ ପୁରସ୍କାର ଦେଉଥିଲେ। ୧୯୧୫ରେ ଏହି ପୁରସ୍କାର ଦୟାନିଧିଂକୁ ମିଳିଥିଲା। ତା'ପରେ ସେ ଏଲ.ଟି. (ଲାଇସେନସିଏଟ୍ ଇନ୍ ଟିଚିଂ) ଉପାଧି ଲାଭକରି ମାଂଦ୍ରାଜ ପ୍ରଦେଶ ଅଂତର୍ଗତ ତତ୍‌କାଳୀନ ଗଂଜାମ ଜିଲ୍ଲାରେ ବିଦ୍ୟାଳୟ ପରିଦର୍ଶକ ଭାବରେ ନିଯୁକ୍ତି ପାଇଲେ। ବିଭିନ୍ନ ପାହିଆରେ କାର୍ଯକରି ବହୁତ ଅଭିଜ୍ଞତା ଅର୍ଜନ କଲେ।

ପାଠ ପଢ଼ିବା ଦିନଠାରୁ ଦୟାନିଧିଂକର ଓଡ଼ିଆ ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ଫଳରେ ସେ ନିଜେ ଜଣେ ସୃଜନଶୀଳ ସାହିତ୍ୟିକ, ଗାଳ୍ପିକ ଓ ଔପନ୍ୟାସିକ ଭାବରେ ସୁନାମ ଅର୍ଜନ କଲେ। ତାଂକ ପ୍ରକାଶିତ ପୁସ୍ତକ ଗୁଡ଼ିକ କଥାକଦଂବ, ନୟନତାରା, ସଂଯୁକ୍ତା। (୧୯୨୪) 'ମାନଭଂଜନ', 'ରାଣାପ୍ରତାପ', 'ରୋହିଣୀ', 'ଧ୍ରୁବ', 'ସୁଭଦ୍ରା', 'ବିରହ ବଂଶୀ' ବେଶ୍ ଲୋକପ୍ରିୟ ଥିଲା ଓ ଏହା ତାଂକୁ ସାହିତ୍ୟିକ ମହଲରେ ସମଗ୍ର ଓଡ଼ିଶାରେ ସୁପରିଚିତ କରି ପାରିଲା। ମହାତ୍ମାଗାଂଧିଂକର ୧୯୨୧ ଅସହଯୋଗ ଆଂଦୋଳନର ଡାକରାରେ ସେ ସରକାରୀ ଚାକିରି ଛାଡିଦେଲେ। କଟକ ଆସି ଓକିଲାତି କରି ସ୍ୱାଧୀନ ବ୍ୟବସାୟରେ ପ୍ରତିଷ୍ଠା ଲାଭ ଓ ତତ୍‌ସହିତ ଦେଶସେବା କରିବା ଉଦେଶ୍ୟରେ ସେ ଆଇନ ପଢ଼ିଲେ। ଏହି ସମୟରେ କଟକ ସହରରୁ ବିଶ୍ବନାଥ କରଂକ ସଂପାଦିତ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ପ୍ରକାଶିତ ହେଉଥାଏ। ଓଡ଼ିଶାର ସାହିତ୍ୟିକମାନଂକୁ ଲୋକଲୋଚନକୁ ଆଣି ସେମାନଂକର ପ୍ରତିଭା ବିକଶିତ କରିବାରେ ଏହାର ଗୁରୁତ୍ୱପୂର୍ଣ ଭୂମିକା ଥିଲା। ଦୟାନିଧିଂକର କେତେକ ଲେଖା ଏଥିରେ ମଧ୍ୟ ପ୍ରକାଶ ପାଇଥିଲା। ଏହି ସମୟରେ ଉତ୍କଳ ସମ୍ମିଳନୀର ପ୍ରଧାନ ଉଦ୍‌ଯୋକ୍ତା, ବ୍ରଜସୁଂଦର ଦାସ 'ମୁକୁର' ନାମରେ ଆଉ ଗୋଟିଏ ମାସିକ ସାହିତ୍ୟ ପତ୍ରିକା ପ୍ରକାଶ କଲେ। ଦୟାନିଧିଂକୁ ସେ ଏହାର ସଂପାଦନା ଓ ପରିଚାଳନା ଦାୟିତ୍ୱ ଦେଲେ। ୧୯୨୧ରୁ ୧୯୨୬ ପର୍ଯଂତ ସେ ସଂପାଦକ ଥିଲେ। ଦୟାନିଧି ନିଷ୍ଠାର ସହିତ ଛାପାଖାନାରୁ ଅନେକ ଉପାଦେୟ ପୁସ୍ତକ ପ୍ରକାଶନର ବ୍ୟବସ୍ଥା ମଧ୍ୟ କଲେ। ତାଂକର ସାନଭାଇ ଡକ୍‌ଟର ପରଶୁରାମ ସେତେବେଳେ ରେଭେନ୍‌ସା କଲେଜରେ ଉଦ୍ଭିଦ ବିଦ୍ୟା ଅଧ୍ୟାପକ ଥିଲେ । ସେ ଯୁଗରେ ସାହିତ୍ୟ ସେବା ଅର୍ଥକାରୀ ନଥିଲା। ଆଇନ ପାସ୍‌କରି

ଦୟାନିଧି ସଂବଲପୁର ଆସି ଓକିଲାତି ଆରଂଭ କଲେ। ତା ସହିତ ସାଂବାଦିକତା ଦିଗରେ ଆଗ୍ରହୀ ଥାଇ ୧୯୨୮ରେ ସାହିତ୍ୟ ଚର୍ଚା ପାଇ 'ନବଯୁଗ' ନାମକ ଏକ ପତ୍ରିକାର ସଂପାଦନା କଲେ। କଂଗ୍ରେସ ବାର୍ତା ମଧ୍ୟ ଏଥିରେ ସ୍ଥାନ ପାଇଲା। ପରବର୍ତୀ କାଳରେ ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶାର କୃଷିମନ୍ତ୍ରୀ ହୋଇଥିବା କପିଳେଶ୍ବର ପ୍ରସାଦ ନଂଦ ମଧ୍ୟ ଏହି ନବଯୁଗ ସହିତ ସଂପୃକ୍ତ ଥିଲେ। ନିଜର ଜମିବାଡ଼ି ଜଂଜାଳ ସଂଭାଳିବାକୁ ଦୟାନିଧି ବରଗଡ଼କୁ ଆସିଲେ ଓ ସେଠାରେ ଓକିଲାତି କଲେ। ଓକିଲାତିରେ ମଧ୍ୟ ସେ ସଫଳତା ଲାଭ କରିଥିଲେ। ନିଜର ସାହିତ୍ୟିକ ଭାଷାର ଛଟା ଶବ୍ଦଭଂଡାର ପ୍ରୟୋଗକରି ସେ ଭଲ ଜବାବ ସୁଆଲ କରୁଥିଲେ। ପୋଖତ ହାକିମ ଓ ଜିଲାର ଅଭିଜ୍ଞ ଓକିଲମାନେ ବରଗଡ଼ରେ ବାଲୁଂକେଶ୍ବରଂକ ମୁଜାହିଦା (ଡ୍ରାଫ୍‌ଟିଂ) ବିଶ୍ବକେଶନଂକର ଜେରା ଜବାନବଂଦୀ ଓ ଦୟାନିଧିଂକର ଜବାବ ସୁଆଲ ଓଡ଼ିଶା ତମାମ ଉଚ୍ଚ ପ୍ରଶଂସା କରୁଥିଲେ। ଜାତୀୟ ଆଂଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ। ନିଜର ଲୋକପ୍ରିୟତା ଓ କର୍ତବ୍ୟନିଷ୍ଠା ଫଳରେ ସେ ତତ୍‌କାଳୀନ ବରଗଡ଼ ସବଡିଭିଜନ୍‌ର ବିଶିଷ୍ଟ ଜନସେବକ ଭାବେ ସମ୍ମାନିତ ହେଉଥିଲେ। ୬୪ବର୍ଷ ବୟସରେ ୧୯୫୫ରେ ସେ ପ୍ରାଣତ୍ୟାଗକଲେ।

୧୯୯୧ରେ ଦୟାନିଧି ମିଶ୍ରଂକର ଜନ୍ମ ଶତବାର୍ଷିକୀ ପାଳିତ ହୋଇ ସମଗ୍ର ଓଡ଼ିଶାରେ ତାଂକ ପ୍ରତି ଶ୍ରଦ୍ଧାଂଜଳି ଜ୍ଞାପନ କରାଯାଇଅଛି। ତାଂକର ଜ୍ୟେଷ୍ଠପୁତ୍ର ସ୍ୱର୍ଗତ ଡକ୍‌ଟର ଅମୂଲ୍ୟକୃଷ୍ଣ ମିଶ୍ର ଜଣେ ବୈଜ୍ଞାନିକ, ଅଧ୍ୟାପକ, ଲେଖକ ଓ ସମାଜସେବୀ ଭାବରେ ସୁଖ୍ୟାତି ଅର୍ଜନ କରିଥିଲେ।



ଦେଖିଲି ବୁଲି ବହୁ ଦୂର କାଂଚି କାମାକ୍ଷୀ କାନପୁର
ପାଇଲି ନାହିଁ ଘୂରି ଘୂରି ମୋ ମାତୃଭୂମିର ମାଧୁରୀ ।।

x x x

ପଢ଼ିଲି ନାନା ଦେଶ ଭାଷା କାହିଁ ତ ନପୂରିଲା ଆଶା
ହେଉ ପଛକେ ସେ ନିକୃଷ୍ଟ, ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।।

–ଫକୀର ମୋହନ



# କୁଳପତି ଅଧ୍ୟାପକ
# ଆଚାର୍ଯ୍ୟ ପରଶୁରାମ

ପରଶୁରାମ ବରପାଲି ନିକଟ ତୁଲଂଡି ଗ୍ରାମର ପ୍ରସିଦ୍ଧ ମିଶ୍ର ପରିବାରରେ ୧୮୯୪ରେ ଜନ୍ମ ଗ୍ରହଣ କରିଥିଲେ। ତାଂକର ପିତା ଲୋକନାଥ ମିଶ୍ର ମାତା କୁଂତୀ ଦେବୀ। ଲୋକନାଥ ପଟୁଆରି କାମ କରୁଥିଲେ। ସେତେବେଳେ ଏହା ମଧ୍ୟପ୍ରଦେଶରେ ଥାଏ। ତାଂକ ବଡପୁଅ ବାଂଛାବଟ। ସେ ନିଜେ ସେ ସମୟରେ ନାନା ବାଧାବିଘ୍ନ ଅତିକ୍ରମ କରି ମାଟ୍ରିକ୍ ପାସ୍ କରିଥିଲେ ଓ ନିଜ ଭାଇମାନଂକୁ ସେ ଉଚ୍ଚଶିକ୍ଷା ଦେବା ନିମିତ୍ତ ସବୁ ପ୍ରକାର ବ୍ୟବସ୍ଥା କରିଥିଲେ। ପରଶୁରାମଂକ ସହିତ ତାଂକର ଅନ୍ୟ ଦୁଇଭାଇ ଦୟାନିଧି ଓ ବଂଶୀଧର। ୧୯୦୫ରେ ସଂବଲପୁରରୁ ଏନ୍‌ଟ୍ରାନ୍‌ସ ପାସ୍‌କରି ପରଶୁରାମ ରେଭେନ୍‌ସା କଲେଜରେ ବିଜ୍ଞାନ ସ୍ନାତକ ଶିକ୍ଷା ଲାଭକଲେ। ତାଂକ ସାଂଗରେ କଲେଜରେ ସହପାଠୀ ଥିଲେ ଡେପୁଟି ନାରାୟଣ ନଂଦ, ବାଳମୁକୁଂଦ ଦୋରା, ସବରେଜିଷ୍ଟ୍ରାର ପ୍ରସନ୍ନ କୁମାର ପୂଜାରୀ, ପୁରୁଷୋତ୍ତମ ମହାପାତ୍ର ଓ ଭାନୁ ପ୍ରଧାନ ଏମିତି ସାତଜଣ। ପରଶୁରାମ କଲିକତାରୁ ଏମ.ଏସ.ସି. ପାସ୍‌କରି ୧୯୨୦ରେ ରେଭେନ୍‌ସା କଲେଜରେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ହେଲେ। କଲିକତାରେ ପ୍ରସିଦ୍ଧ ଉଦ୍ଭିଦବିତ୍ ଡକ୍‌ଟର ଜଗଦୀଶଚଂଦ୍ର ବୋଷଂକର ସେ ପ୍ରିୟ

ଛାତ୍ର ଥିଲେ। ଗଛଲତାମାନେ ମନୁଷ୍ୟ ପରି ନିଜେ ସୁଖଦୁଃଖ ଅନୁଭବ କରିପାରଂତି ଏହା ଜଗଦୀଶଚଂଦ୍ର ଗବେଷଣା କରି ସମଗ୍ର ବିଶ୍ୱକୁ ଜଣାଇ ଦେଇଥିଲେ।

ଅଧ୍ୟାପକ ପରଶୁରାମ ତାଂକଠାରୁ ପ୍ରେରଣା ପାଇ ବିଜ୍ଞାନ କଂଗ୍ରେସରେ ନିଜ ଗବେଷଣା ମୂଳକ ପ୍ରବଂଧମାନ ପାଠକରୁଥିଲେ ଓ ପରିଣତ ବୟସରେ ୧୯୩୮ରେ ଇଂଲଂଡର ଲିଡ୍‌ସ ବିଶ୍ୱବିଦ୍ୟାଳୟକୁ ଯାଇ ସେଠାରୁ ଡକ୍‌ଟରେଟ ଉପାଧି ଅର୍ଜନ କଲେ । ଭାରତକୁ ପ୍ରତ୍ୟାବର୍ତନ କରି ସେ ଅବସର ନେବା ପର୍ଯଂତ ରେଭେନ୍‌ସା କଲେଜରେ ଅଧ୍ୟାପନା ଓ ଗବେଷଣା କରୁଥିଲେ। ଦୀର୍ଘଦିନ ଧରି ସେ ପୂର୍ବ ଛାତ୍ରାବାସର ସୁପରିଟେଂଡ ଥାଇ ଛାତ୍ରମାନଂକୁ ଆଦର୍ଶ ନାଗରିକ ହେବା ଓ ଚରିତ୍ର ଗଠନ ନିମିତ୍ତ ପରାମର୍ଶ ଦେବାରେ ବ୍ରତୀଥିଲେ। ସଂବଲପୁର ଗଂଗାଧର ମେହେର କଲେଜର ଅଧ୍ୟକ୍ଷ ଥାଇ ସେ ୧୯୫୦ ଜାନୁଆରିରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ।

ଉତ୍କଳ ବିଶ୍ୱବିଦ୍ୟାଳୟର ସେ ଡ. ପ୍ରାଣକୃଷ୍ଣ ପରିଜା ଓ ଚିଂତାମଣି ଆଚାର୍ଯଂକ ପରେ ତୃତୀୟ କୁଳପତି ହେଲେ। ସେହି ସମୟରେ ସେ ନିଜର ଗସ୍ତଖର୍ଚ୍ଚରୁ ଯାହା ଆୟ କଲେ ସେ ସବୁ ରେଭେନ୍‌ସା କଲେଜରେ ଭୂବିଜ୍ଞାନ (ଜିଓଲୋଜି) ବିଭାଗ ପ୍ରତିଷ୍ଠା ପାଇ ଦାନ କରିଥିଲେ। ଏହା ଅନ୍ୟ ଏକ ଅଭୂତପୂର୍ବ କୃତି। ତାଂକର ବିଶେଷ କିଛି ପରିବାର ଜଂଜାଳ ନ ଥିବାରୁ ସେ ଏହା କରିବାକୁ ସକ୍ଷମ ହୋଇଥିବାର କୁହାଯାଏ। ଅଧ୍ୟାପକ ପରଶୁରାମ ନିଜର କର୍ମମୟ ଜୀବନ କଟକ ସହରରେ କଟାଇଥିଲେ ମଧ୍ୟ ଅବସର ଗ୍ରହଣ ପରେ ସଂବଲପୁର ସହରକୁ ନିଜ କର୍ମକ୍ଷେତ୍ର ବାଛି ନେଇଥିଲେ ଓ ସେଠାରେ ବ୍ରୁକ୍‌ସ ହିଲ ଅଂଚଳରେ ନିଜ ଘରେ ରହି ସହରର ବିକାଶ ନିମିତ୍ତ ଧ୍ୟାନ ଦେଉଥିଲେ। ସମଗ୍ର ସଂବଲପୁର ଜିଲ୍ଲାରେ ଶିକ୍ଷାର ଅଗ୍ରଗତି, ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ଆଇନ ଡାକ୍ତରି ଓ ଇଂଜିନିଅରିଂ କଲେଜମାନ ପ୍ରତିଷ୍ଠାରେ ତାଂକର ନିରଳସ ନିଷ୍ଠାପର ଉଦ୍ୟମ ତାଂକୁ ରାଜ୍ୟର ସବୁ ସ୍ତରରେ ଆଦର୍ଶ କରି ଠିଆକରାଇ ପାରିଥିଲା। ୧୯୬୭ରେ ଜାନୁଆରି ପହିଲା ଦିନ ସଂବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା ଓ ସେ ଏହାର ପ୍ରଥମ କୁଳପତି ଥାଇ ନୂତନ ବିଶ୍ୱବିଦ୍ୟାଳୟର ସବୁ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିବା ନିମିତ୍ତ ନିଜର ସମସ୍ତ ଅଭିଜ୍ଞତା ଓ କର୍ମକୁଶଳତା ପ୍ରୟୋଗ କଲେ। ସେତେବେଳେ ସ୍ଥାନୀୟ ସବୁଶ୍ରେଣୀର ସରକାରୀ କର୍ମଚାରୀ ପ୍ରାୟ ତାଂକର ଛାତ୍ର ବା ଛାତ୍ରଂକର ଛାତ୍ର ଥିବାରୁ, ସେ ପଦମର୍ଯାଦା ନିର୍ବିଶେଷରେ ସମସ୍ତଂକଠାରୁ କୌଣସି ନିଷ୍ପତ୍ତିର ପ୍ରତିକ୍ରିୟା କ'ଣ ହେବ ଏବିଷୟରେ ପରାମର୍ଶ ଗ୍ରହଣ କରିବାକୁ କୁଂଠାବୋଧ କରୁ ନ ଥିଲେ। ବୁର୍ଲା ଇଂଜିନିଅରିଂ କଲେଜ ବିଶ୍ୱବିଦ୍ୟାଳୟର ପ୍ରତ୍ୟକ୍ଷ ପରିଚାଳନାରେ ରହିଲା। ରାଉରକେଲା ଆଂଚଳିକ ଇଂଜିନିଅରିଂ

କଲେଜ ଆଜି ଓଡ଼ିଶାର ବୈଷୟିକ ବିଶ୍ୱବିଦ୍ୟାଳୟର କେନ୍ଦ୍ର ହୋଇଅଛି। ସଂବଲପୁର ବିଶ୍ୱବିଦ୍ୟାଳୟର ପଂଚମ ସମାବର୍ତ୍ତନ ଉତ୍ସବରେ ୧୯୭୨ରେ ତାଂକୁ ତାଂକର ଦେଶ ଓ ସମାଜପ୍ରତି ଅବଦାନର ପ୍ରତୀକ ସ୍ୱରୂପ ସମ୍ମାନ ସୂଚକ ଡି.ଏସ୍‌ସି. ଉପାଧିରେ ଭୂଷିତ କରାଯାଇଥିଲା। ଭାରତ ସରକାର ପରେ ତାଂକୁ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ କରିଥିଲେ।

ବିଶ୍ୱବିଦ୍ୟାଳୟ ନିୟମାବଳୀ ପ୍ରଣୟନରେ ମଧ୍ୟ ତାଂକର ଦାନ ଅବିସ୍ମରଣୀୟ। ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମୟରେ ଏହି କାର୍ଯ ସଂପାଦନ ନିମିତ୍ତ ଓଡ଼ିଶା ସରକାର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ କୁଳ ସଚିବ ଶ୍ରୀଯୁକ୍ତ ମେକଲିନ୍‌ଙ୍କୁ ନିଯୁକ୍ତି କରିଥିଲେ। ୧୯୬୮ରେ ଭାରତର ରାଷ୍ଟ୍ରପତି ଶିକ୍ଷାବିତ୍ ଜାକିର ହୁସେନ ଆସି ବୁର୍ଲାରେ ବିଶ୍ୱବିଦ୍ୟାଳୟର ଶିଳାନ୍ୟାସ କଲେ। ବିଶ୍ୱବିଦ୍ୟାଳୟ କ୍ୟାଂପସ୍‌ରେ ବିଭିନ୍ନ ଅନୁଷ୍ଠାନର ସ୍ଥାନ ନିରୂପଣରେ ଅଧ୍ୟାପକ ପରଶୁରାମ ନିଜର ବିରାଟ ଅଭିଜ୍ଞତା ଓ କର୍ମଦକ୍ଷତା ପରିସ୍ଫୁଟ କରାଇ ପାରିଥିଲେ। ସେହିବର୍ଷ ସେ କୁଳପତି ପଦରୁ ଅବସର ନେଲେ। ଅଠାଅଶୀ ବର୍ଷ ବୟସରେ ୧୯୮୨ରେ ସେ ପରଲୋକ ଗମନ କଲେ। ସଂବଲପୁରର ଉଚ୍ଚପ୍ରଶିକ୍ଷଣ ଶିକ୍ଷା ସଂସ୍ଥାନ ତାଂକ ନାମରେ ନାମିତ। ଏଠାରେ ବି.ଡି.ଏମ. ଇଡି. ସହିତ ଏମ.ଫିଲ ଶିକ୍ଷାଦାନର ବ୍ୟବସ୍ଥା ରହିଛି।



ପାସୋରିବାକୁ ଚାହେଁ ବିଶେଷ ପୀଡ଼ା ପାଏ
ଲୁଣଛଟା ସେ ଖୁଣ ସାଥିକି ଗୋ।
ମେଂଟି ନାହିଁ ପିପାସା ମେଂଟିବ ନାହିଁ ଆଶା
କୀଟ କାଟୁଛି ମାତ୍ର ଛାତିକି ଗୋ।

–କବି କୃଷ୍ଣମୋହନ।



# କାଳଜୟୀ ଗବେଷକ
# ଶିବପ୍ରସାଦ

ବିଗତ ଶତାବ୍ଦୀର ତିରିଶ ଓ ଚାଳିଶ ଦଶକରେ ମଧ୍ୟ ଇଂରାଜୀ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଭାରତ ଇତିହାସ ବାଧ୍ୟତାମୂଳକ ପାଠ୍ୟ ଥିଲା। ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଇଂଲଂଡର ଇତିହାସ ମଧ୍ୟ ପଢ଼ା ଯାଉଥାଏ। ଉଚ୍ଚ ଶ୍ରେଣୀରେ ଇଂରେଜୀରେ ପଢ଼ାଯାଉଥିଲେ ମଧ୍ୟ ମାତୃଭାଷାରେ ଉତ୍ତର ଦେବାର ସୁଯୋଗ ଥାଏ। ଏହି ସମୟରେ ଉଭୟ ଭାରତ ଓ ଇଂଲଂଡ ଇତିହାସର ଖଂଡେ ପାଠ୍ୟପୁସ୍ତକର ଲେଖକ ଥାଆଂତି ଶିବପ୍ରସାଦ ଦାସ। ପ୍ରଥମେ ଗ୍ରଂଥକାର ନିଜ ନାମ ସହିତ ବି.ଏ ଡି.ଇଡି ଯୋଡୁଥିଲେ। ପରେ ଏମ୍.ଇଡି ଲେଖାଯାଉଥିଲା। ପ୍ରଥମ ଛପା ବହିରୁ ଜଣାଯାଉଥାଏ ସେ ବରଗଡ଼ ଜର୍ଜ ହାଇସ୍କୁଲର ଶିକ୍ଷକ।

ଶିବପ୍ରସାଦ ୧୯୦୧ରେ ବରଗଡ଼ ନିକଟ ରୋହିଣିଆଁ ଗାଁରେ ଜନ୍ମ ହୋଇଥିଲେ। ତାଂକ ପିତା ସୂର୍ଯମଣି ଦାସ। ମାତାଂକ ନାମ ଥିଲା ଭାନୁମତୀ। ପିତା ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ। ଅଳ୍ପ ବୟସରେ ସେ ପ୍ରାଣତ୍ୟାଗ କଲେ। ସେତେବେଳେ ଶିବପ୍ରସାଦଂକୁ ମାତ୍ର ପାଂଚବର୍ଷ। ସେହି ଦିନଠାରୁ ପରିବାରର ଦାୟିତ୍ୱ

ତାଂକ ମୁଂଡ ଉପରେ ଲଦି ହୋଇଗଲା। ତାଂକ ଜେଜେବାପା କାର୍ତିକେଶ୍ୱର ଓ ମାଆ ତାଂକର ବାଲ୍ୟଶିକ୍ଷାର ବ୍ୟବସ୍ଥା କଲେ। ବାପାଂକ ବଡ଼ଭାଇ ବିଖ୍ୟାତ ଲେଖକ କବିଭୂଷଣ ସ୍ୱପ୍ନେଶ୍ୱର ଦାସ। ସେତେବେଳେ ସେ ରେମଂଡା ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ଥାଆଂତି। ସେ ଶିବପ୍ରସାଦଂକୁ ନିଜ ପାଖକୁ ନେଇ ପଢ଼ାଇଲେ। ତାଂକର ଦିଗ୍‌ଦର୍ଶନ ପାଇବା ଫଳରେ ବିଦ୍ୟାଶିକ୍ଷାରେ ଶିବପ୍ରସାଦଂକର ଆଗ୍ରହ ବଢ଼ିଲା। ସେ ମାଇନର ସ୍କୁଲର ବୃତ୍ତି ପାଇ ଉତ୍ତୀର୍ଣ ହେଲେ। ହାଇସ୍କୁଲ କେବଳ ସଂବଲପୁର ସହରରେ ଥାଏ। ଜିଲ୍ଲାରୁ ଏହା ଏକମାତ୍ର ବିଦ୍ୟାଳୟ। ସେଠାରେ ପଢ଼ିବାକୁ ଅର୍ଥ ଆବଶ୍ୟକ। ଏହା ତାଂକର ପ୍ରଧାନ ପ୍ରତିବଂଧକ ହେଲାରୁ ସେ ଅର୍ଥ ଉପାର୍ଜନ କରିବାକୁ କିଛିଦିନ ଓକିଲ ମୋହରିର (ମୁନ୍‌ସି) ହେଲେ। ବରଗଡ଼ର ସେତେବେଳେ ତହସିଲଦାର ଥାଆଂତି ଗୋପୀନାଥ ଦାସ। ସେ ଜଣେ ସ୍ୱାଧୀନଚେତା ବିଦ୍ୟୋତ୍ସାହୀ କର୍ମଚାରୀ ଥିଲେ। ଗାଂଧିବାଦୀ ଓ ଶିକ୍ଷାବିଦ ଇଂରେଜୀ ସାହିତ୍ୟ ଅଧ୍ୟାପକ ସର୍ବେଶ୍ୱର ଓ ଆଉ ୩ ଜଣ କୃତୀ ସଂତାନଂକର ସେ ପିତା। ଉପଜିଲାପାଳ ଜଣେ ଆଇସିଏସ ଅଫିସର ଥିଲେ। ସେମାନେ ଗୋଟିଏ ହାଇସ୍କୁଲ ଖୋଲିଲେ। ଜିଲ୍ଲାର ସର୍ବୋଚ୍ଚ କର୍ମକର୍ତା ଗୋରା ସାହେବ। ଦୁଇଗୋଟି ହାଇସ୍କୁଲ, ଗୋଟିଏ ଅନୁନ୍ନତ ଆଂଶିକ ବହିର୍ଭୂତ ଅଂଚଳରେ ପ୍ରତିଷ୍ଠା ହେବାର ବିରୋଧ କଲେ। ଗୋପୀନାଥ ତାଂକୁ ବୁଝାଇ ଦେଲେ ଯେ ଜିଲ୍ଲାର ଦୁଇଟି ସବ୍‌ଡିଭିଜନ ସଂବଲପୁର ଓ ବରଗଡ଼ ଅଂଚଳ ଦୁଇଟି ଆଖି। ଖାଲି ଗୋଟିଏ ଆଖି ରହିଲେ କିପରି ଚଳିବ। ଫଳରେ ଅନୁମତି ମିଳିଗଲା। ଓକିଲ ରାମନାରାୟଣ ଖଣିମାଳିକ ଶଂକର ପ୍ରସାଦଂକ ସାହାଯ୍ୟରେ ଶିବପ୍ରସାଦ ସେଠାରେ ନାମ ଲେଖାଇଲେ। ଏକାଦଶ ଶ୍ରେଣୀ (ମାଟ୍ରିକ୍‌ର ଶେଷ ବରଷ) ଖୋଲିବାକୁ ବିଶ୍ୱବିଦ୍ୟାଳୟ ଠାରୁ ସହାନୁବଂଧନ ପାଇବାରେ ବିଳଂବ ହେଲା। ତେଣୁ ଶିବପ୍ରସାଦ ସଂବଲପୁର ଜିଲ୍ଲା ସ୍କୁଲରେ ପଢ଼ି ସେଠାରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍‌କଲେ। ଶିବପ୍ରସାଦ କଟକ ଆସିଲେ। ଝାରସୁଗୁଡ଼ା ଖଡ଼ଗପୁର ଦେଇ କଟକକୁ ଆସିବାକୁ ହୁଏ। ସେ ରେଭେନ୍‌ସା କଲେଜରୁ ଆଇ.ଏ. ପାସ୍‌କଲେ। ତାପରେ ଆସି ବରଗଡ଼ ହାଇସ୍କୁଲରେ ଶିକ୍ଷକ ହେଲେ। କିଛିଦିନ ପରେ ବି.ଏ. ପାସ୍‌କଲେ। ତାପରେ କଟକ ଆସି ଟ୍ରେନିଂ କଲେଜରେ ପଢ଼ି ବି.ଇଡି. ପାସ୍‌କଲେ। ପୁଣି ବରଗଡ଼ରେ କିଛିଦିନ ଶିକ୍ଷକତା କଲେ। ଓଡ଼ିଶାର ଏକମାତ୍ର ଶିକ୍ଷା ପରିଦର୍ଶକ ସଚ୍ଚିଦାନଂଦ ରାୟ ଏକଦା ଉକ୍ତ ହାଇସ୍କୁଲ ପରିଦର୍ଶନରେ ଆସିଥିଲେ। ଶ୍ରେଣୀରେ ଛାତ୍ରମାନଂକୁ ପରୀକ୍ଷା କରି ଶିକ୍ଷାଦାନ ପଦ୍ଧତିର ଉତ୍କର୍ଷ ଦେଖି ସେ ତାଂକୁ ସରକାରୀ ବିଦ୍ୟାଳୟରେ ଶିକ୍ଷକ ନିଯୁକ୍ତି ଦେଲେ। ସରକାରୀ ଚାକିରିରେ ନିଯୁକ୍ତିର ବୟସ ସୀମା ପଚିଶ ବରଷ ଥିଲେ ମଧ୍ୟ ସେ ନିଜର ବିଶେଷ କ୍ଷମତା ପ୍ରୟୋଗ କଲେ। ଜଣେ ଯୋଗ୍ୟ ପ୍ରାର୍ଥୀ କ୍ଷେତ୍ରରେ ନିୟମ କୋହଳ କରି ସରକାରଂକୁ ଜଣାଇ ତାଂକୁ ନିଯୁକ୍ତି ଦେଲେ।

ଶିବପ୍ରସାଦଙ୍କ ସରକାରୀ ଚାକିରି ଆରମ୍ଭ ଫଳରେ ସେ ଜିଲ୍ଲାରୁ ଅଲଗା ହୋଇ ରହିଗଲେ। ସରକାରୀ ଉଚ୍ଚ ବିଦ୍ୟାଳୟ ଓଡ଼ିଶାରେ ସେତେବେଳେ ୫ଟି ଜିଲ୍ଲାରେ ମାତ୍ର ପାଂଚଗୋଟି। ତେଣୁ ସେ ବାଲେଶ୍ୱର ଅନୁଗୁଳ ସଂବଲପୁର ଜିଲ୍ଲା ସ୍କୁଲରେ ସହକାରୀ ଶିକ୍ଷକ ଗୁରୁ ତାଲିମ ପ୍ରତିଷ୍ଠାନର ପ୍ରଧାନ ଶିକ୍ଷକ ଓ ଅନୁପରିଦର୍ଶକ ଭାବେ କାର୍ଯକଲେ।

ଓଡ଼ିଶାରେ ୧୯୪୮ରେ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ଫଳରେ ସେ ବଣେଇ ଧରଣୀଧର ହାଇସ୍କୁଲ, ଢେଂକାନାଳ ବ୍ରଜନାଥ ବଡଜେନା ହାଇସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ସୁଚାରୁ ରୂପେ ନିର୍ବାହ କରି ୧୯୫୬ରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ। ନିଜର ଶିକ୍ଷା ବିଷୟରେ ସ୍ନାତକୋତ୍ତର ଡିଗ୍ରି ଥିଲା। ସେ ସମୟରେ ଏହି ଯୋଗ୍ୟତା ଓଡ଼ିଶାରେ ଅଳ୍ପ କେତେଜଣଙ୍କର ଥିଲା। ତଥାପି ତାଂକ ବିଦ୍ୟାର ସଦୁପଯୋଗ କ୍ଷେତ୍ର ଅଭାବରୁ ହୋଇପାରି ନ ଥିଲା। ଏସବୁ ଥିଲା, ଶିବପ୍ରସାଦଙ୍କର ଜୀବନର ସାଧାରଣ ଦିଗ ମାତ୍ର ସେ ଜଣେ ଶିକ୍ଷାବିଦ ଐତିହାସିକ ଓ ସୁଲେଖକ ଭାବରେ ଓଡ଼ିଶା ବାସୀଂକ ହୃଦୟ ପଟରେ ଚିତ୍ରିତ ହୋଇ ଦୀର୍ଘଦିନ ରହିବେ।

ବାଲ୍ୟକାଳରୁ ତାଂକର ଲେଖାଲେଖି ଅଭ୍ୟାସ ଆରମ୍ଭ ହୋଇଥିଲା। ବଡ଼ବାପା କବିଭୂଷଣଙ୍କର ଅବଶ୍ୟ ଏଥିରେ ପ୍ରଭାବ ଥିଲା। ସେ ପ୍ରଥମେ ବିଦ୍ୟାଳୟର ମେଗେଜିନରେ ଲେଖିବା ଆରମ୍ଭ କଲେ। ପରେ ପତ୍ରିକାରେ ଲେଖାଦେଲେ ଓ ବହି ଲେଖିଲେ। କ୍ରମେ କ୍ରମେ ତାଂକ ଲିଖିତ ପୁସ୍ତକ ସଂଖ୍ୟା ବଢ଼ି ଚାଲିଲା। ସେ ବିଦ୍ୟାଳୟ ପାଠ୍ୟପୁସ୍ତକ ମଧ୍ୟ ଲେଖିଲେ। ସୁନାମ ଅର୍ଜନ କଲେ। ଇତିହାସ ଓ ଐତିହାସିକ ତଥ୍ୟ ସଂବଳିତ ଅନେକ ପୁସ୍ତକ ଓ ପ୍ରବଂଧ ସେ ରଚନା କଲେ। ଶିକ୍ଷାର୍ଥୀମାନଙ୍କର ଭାଷାଜ୍ଞାନର ବିକାଶ ଓ ଭାରତୀୟ ସଂସ୍କୃତିର ଅବବୋଧ ନିମିତ୍ତ ସେ ଅବିରତ ଲେଖନୀ ଚାଳନା କଲେ। ସାଧାରଣ ଶିକ୍ଷାବ୍ୟତୀତ ଶିକ୍ଷକ ପ୍ରଶିକ୍ଷଣ ପାଠ୍ୟପୁସ୍ତକ ମଧ୍ୟ ସେ ରଚନା କଲେ। କ୍ରୀଡ଼ା ଓ ଇଂଦ୍ରିୟାନୁଭୂତି ଶିକ୍ଷା, ପାରିପାର୍ଶ୍ୱିକ ଶିକ୍ଷା, ଅଳଂକାର ପରିଚୟ ପାଠ୍ୟପୁସ୍ତକ ଭାବେ ମଂଜୁରି ପାଇଲା। ପୁସ୍ତକ ଗୁଡ଼ିକର ଉପାଦେୟତା ଦୃଷ୍ଟେ ଏହାର ହିଂଦି ଅନୁବାଦ ମଧ୍ୟପ୍ରଦେଶ ଓ ଅନ୍ୟ ହିଂଦି ରାଜ୍ୟରେ ପ୍ରଶିକ୍ଷଣ ବିଦ୍ୟାଳୟରେ ପାଠ୍ୟପୁସ୍ତକରୂପେ ଗୃହୀତ ହେଲା। ଭଗବଦ୍ ଗୀତାର ଓଡ଼ିଆ ଭାଷ୍ୟ ମଧ୍ୟ ସେ ରଚନା କରି ପ୍ରକାଶ କରିଥିଲେ। ସାଂଖ୍ୟ ଦର୍ଶନ ଉପରେ ଲିଖିତ ତାଂକର ଗ୍ରଂଥ ଅପ୍ରକାଶିତ ରହିଗଲା। ମୋଟ ୨୮ ଖଂଡରୁ ଅଧିକ ବହି ସେ ଲେଖିଥିଲେ। କର୍ନେଲ ଟଡଂକର ରାଜସ୍ଥାନର ଇତିହାସ ପୁସ୍ତକର ବିଷୟବସ୍ତୁ ଗ୍ରହଣ କରି ସେ ଜୟସଲମିର, ମାରବାର ଆଦି ରାଜସ୍ଥାନର ଦେଶୀୟ ରାଜ୍ୟର ଐତିହ୍ୟ ପରଂପରା ଉପରେ ପୁସ୍ତକ ରଚନା କଲେ। ଏହି ପୁସ୍ତକଗୁଡ଼ିକ ମଧ୍ୟ ଲୋକପ୍ରିୟ ହେଲା। ଆମଦେଶର ଓଡ଼ିଆ ରାଜା ସୋମ ବଂଶ, କେଶରୀ, ଗଂଗ ଓ

ସୂର୍ଯବଂଶର ରାଜାମାନଂକର ଚରିତାବଳୀ, ଆମ ଦେଶର ବୀର, ଗୁରୁ ନାନକ, ଗୁରୁ ଗୋବିଂଦ ସିଂହ, ବୀର ରଣଜିତ ସିଂହ, ଶିଖପ୍ରକାଶ, ଆମ ଦେଶର ନାରୀ (ଦୁର୍ଗାବତୀ, ଅହଲ୍ୟାବାଈ, ଶୁକଦେବୀ ଆଦି ଦଶଜଣଂକର ବୀରତ୍ୱ କାହାଣୀ) ଆମ ଦେଶର ମହାମାନବ (ଗୌତମ ବୁଦ୍ଧ, ଅଶୋକ, ଶଂକର, ମହାତ୍ମାଗାଂଧି ଚାରିଜଣଂକର ଜୀବନୀ) ଆମ ଦେଶର ଯୋଦ୍ଧା (ରାଣାପ୍ରତାପ, ଦୁର୍ଗାଦାସ, ଶିବାଜୀ, ସୁରେଂଦ୍ର ସାଏଂକର ବୀରତ୍ୱ ଓ କୃତି) ଆମ ଦେଶର ସାଧୁ (ଜୟଦେବ, ଜଗନ୍ନାଥ ଦାସ ଆଦି ନଅଜଣ ସଂଥଂକର ଚରିତ୍ର) ତାଂକ ରଚନା ମଧ୍ୟରେ ପ୍ରଧାନ ଥିଲା। ଛାତ୍ରମାନଂକ ମନରେ ଧର୍ମଭାବନା ଓ ଦେଶଭକ୍ତି ଜାଗ୍ରତ କରାଇବାରେ ପୁସ୍ତକଗୁଡ଼ିକ ସହାୟକ ହୋଇଥିଲା। ତାଂକ ରଚିତ ଅନେକ ଗୁଡ଼ିଏ ଜୀବନୀ କଟକର ଯୁଗ ସାହିତ୍ୟ ମଂଦିର ପ୍ରକାଶ କରିଥିଲେ ମଧ୍ୟ ସେ ଗୁଡିକ ପ୍ରାୟ ଦୁଷ୍ପ୍ରାପ୍ୟ, ଏହାର ନୂତନ ସଂସ୍କରଣ କେହି ପ୍ରକାଶକ ଲୋକ ଲୋଚନକୁ ଆଣିବା ଆବଶ୍ୟକ। ସ୍ୱଭାବକବି ଗଂଗାଧର ମେହେରଂକ ପତ୍ରାବଳୀ ମଧ୍ୟ ସେ ସଂପାଦିତ କରି ପ୍ରକାଶ କରିଥିଲେ।

ଗବେଷଣା କ୍ଷେତ୍ରରେ ସେ ଅନେକ ତଥ୍ୟପୂର୍ଣ ପ୍ରବଂଧ ତତ୍‌କାଳୀନ ଗବେଷଣା ପ୍ରତିଷ୍ଠାନର ପତ୍ରିକାମାନଂକରେ ପ୍ରକାଶ କରାଇଥିଲେ। ଅତୀତର ଓଡ଼ିଶା ଓ ଏହାର ଇଂରେଜୀ ଅନୁବାଦ ରଶ୍ମିଲେଖା, ଜ୍ୟୋତିଲେଖା ଆଦି ଐତିହାସିକ ତଥ୍ୟଯୁକ୍ତ ପୁସ୍ତକ ତାଂକ ବିଦ୍‌ବତ୍ତାର ପ୍ରମାଣ ଦିଏ ମାତ୍ର ଶିବପ୍ରସାଦଂକର ଶ୍ରେଷ୍ଠକୃତି ହେଲା 'ସଂବଲପୁର ଇତିହାସ'। ଏହା ତାଂକର ଦୀର୍ଘ ଛତିଶବର୍ଷର ଅକ୍ଳାଂତ ପରିଶ୍ରମ ଓ ଗବେଷଣାର ଫଳ ଥିଲା। ଏହାର ପ୍ରଥମ ସଂସ୍କରଣ ୧୯୬୨ରେ ପ୍ରକାଶିତ ହେଲା। ୪୦୦ ପୃଷ୍ଠାରୁ ଅଧିକ ଗ୍ରଂଥର ମୂଲ୍ୟ ମାତ୍ର ତିରିଶ ଟଂକା ଥିଲା। ୧୯୬୯ରେ ୨ୟ ସଂସ୍କରଣ ମଧ୍ୟ ବାହାରିଥିଲା। ନିଜର ଆଦ୍ୟ ପୃଷ୍ଠପୋଷକ ଓକିଲ ପଂଡିତ ରାମନାରାୟଣ ମିଶ୍ରଂକୁ ପୁସ୍ତକଟି ଉତ୍ସର୍ଗ କରାଯାଇଥିଲା। ପ୍ରାଚୀନ ଯୁଗରୁ ଆରଂଭ କରି ସୁରେଂଦ୍ର ସାଏଂକ ଉଲଗୁଲାନ (ବିପ୍ଳବ) ଇଂରେଜ ଶାସନରେ ସଂବଲପୁର ଜାତୀୟବାଦୀ ଆଂଦୋଳନ ପର୍ଯଂତ ସଂବଲପୁର ଅଂଚଳର ଐତିହ୍ୟ ଓ ଇତିବୃତ୍ତ ଲୋକଲୋଚନକୁ ଆଣିବାର ଗୌରବ ଏହି ଲେଖକ ଅର୍ଜନ କରିଅଛଂତି। ନିଜର ପୁସ୍ତକମାନ ପ୍ରକାଶ କରବାକୁ ସେ ନିଜର ବିଶ୍ୱ ଭାରତୀ ପ୍ରେସ ପ୍ରତିଷ୍ଠା କରିଥିଲେ। ନିଜ ବୃତ୍ତି ଓ ପାଠ୍ୟପୁସ୍ତକରୁ ଆୟ ଧନ ସେ କେବଳ ସାରସ୍ୱତ ସେବାରେ ବ୍ୟୟ କରି ଏ ଦିଗରେ ଆଦର୍ଶ ସ୍ଥାପନ କରିଥିଲେ। ସାରସ୍ୱତ ସାଧନା ଅବ୍ୟାହତ ରଖି ପଂଚସ୍ତରି ବର୍ଷ ବୟସରେ ୧୯୭୬ରେ ସେ ବରଗଡ଼ରେ ଶେଷ ନିଶ୍ୱାସ ତ୍ୟାଗ କଲେ।



''ଛୋଟର ଆଦର କରିଥାଏ ଛୋଟ
ବଡ଼ର ଆଦର ବଡ଼
ଫୁଟିଥିବା ଫୁଲ ସଂଗେ ସରି କିବା
ହେବ କେବେ ଫୁଲ କଢ଼ା।''

–କୁଂତଳା କୁମାରୀ

# ରାଜା ପୁଅ ପାଇଲଟ୍‌ରୁ ପ୍ରତିନିଧି
# ଲାଲ୍ ରଣଜିତ୍ ସିଂହ ବରିହା

*ସର୍ଦାର ପଟେଲଂକୁ ଲାଲ୍ ରଣଜିତ୍ ସିଂହ ବରିହାଂକର ଲିଖିତ ଗୋଟିଏ ଚିଠି।*

୫୦ ବିସପ୍ସ ଆଭେନିଉ ବ୍ରୋମଲି,
କେଂଟ୍, ଇଂଲଂଡ — ତା ୩୧ ଡିସେଂବର ୧୯୪୫

ମହାଶୟ,

ମୁଁ ଆପଣଂକର ସଂପୂର୍ଣ ଅପରିଚିତ। ମୋର ଆପଣଂକୁ ପ୍ରାରଂଭିକ ବକ୍ତବ୍ୟ ଅତି ସଂକ୍ଷେପରେ ମୁଁ ଜଣାଉଅଛି। ବ୍ୟକ୍ତିଗତ ଭାବରେ ଆପଣଂକୁ ପତ୍ର ଲେଖିବାର ସୌଭାଗ୍ୟ କେଉଁ ପରିସ୍ଥିତିରେ ଉଠୁଛି ତାହା ମଧ୍ୟ ଆପଣଂକୁ ଜଣାଉଛି। ଓଡ଼ିଶାର ସଂବଲପୁର ଜିଲ୍ଲାର ବୋଡ଼ାସଂବର ରାଜାଂକର ମୁଁ ଚତୁର୍ଥ ପୁତ୍ର। ମୁଁ ଆଇନ ପଢ଼ିବାକୁ ୧୯୩୭ରେ ଇଂଲଂଡ ଆସିଥିଲି। ଯୁଦ୍ଧ ଲାଗିଯିବା ଫଳରେ ମୋର ପାଠପଢ଼ାରେ ବ୍ୟାଘାତ ଘଟିଲା। ଲଂଡନରେ ମୁଁ ଏକବର୍ଷ ଆଂବୁଲାନ୍‌ସ ଗାଡ଼ିର ଡ୍ରାଇଭର ଭାବରେ କାମ କରିବା ପରେ ମୁଁ ୧୯୪୦ରେ ଇଂଲଂଡର ରାଜକୀୟ ବିମାନ ବାହିନୀରେ

ଯୋଗଦେଲି। ସାଢ଼େ ୫ ବରଷ ସେଥିରେ କାମ କଲି। ବର୍ତ୍ତମାନ ଯୁଦ୍ଧ ଶେଷରେ ମୁଁ ବିମାନ ବାହିନୀରୁ ମୁକ୍ତ। ଯୁଦ୍ଧ ସମୟରେ ଏଠାରେ ମୁଁ ଜଣେ ଇଂରେଜ ମହିଳାଂକୁ ବିବାହ କରିଥିଲି। ମୋର ବର୍ତମାନ ଗୋଟିଏ ଏଗାର ମାସର ଝିଅ ଅଛି। ମୋ ବିଷୟରେ ଅନ୍ୟାନ୍ୟ ତଥ୍ୟ ଆପଣଂକୁ ମୋର ବଂଧୁ ଓ ସଂପର୍କୀୟ ମାନେ ଜଣାଇବେ। ସେମାନେ ପ୍ରାଦେଶିକ ଓ ସର୍ବଭାରତୀୟ କର୍ମକର୍ତାଙ୍କୁ ଭେଟିବେ। ଯଦି ସଂଭବ ହୁଏ ମୋତେ ରାଜ୍ୟ ବିଧାନ ସଭାକୁ ମୋର ଭାଇଂକ ସଂବଲପୁର ଜିଲ୍ଲା ଜମିଦାରୀ ବୋଡ଼ାସଂବରରୁ କଂଗ୍ରେସ ପ୍ରାର୍ଥୀ ହେବାପାଇଁ ମୁଁ ଆଗ୍ରହ ପ୍ରକାଶ କରୁଅଛି।

ଆପଣଂକର ଅନୁଗତ
**ରଣଜିତ୍ ସିଂହ**

ଏହି ପତ୍ରଟି କଂଗ୍ରେସର ସଂସଦୀୟ କମିଟିର ମୁଖ୍ୟ ସର୍ଦାର ପଟେଲଂକୁ ଲେଖାଯାଇଛି। ସେ କଂଗ୍ରେସର ପ୍ରାର୍ଥୀ ହେଉଥିବାର ସଂବାଦ ପ୍ରଚାରିତ ହେବାପରେ ସଂବଲପୁରର କଂଗ୍ରେସ ନେତା ଶ୍ରଦ୍ଧାକାର ସୂପକାର ଏହାର ବିରୋଧ କରି ୧୯୪୬ ୧୮ ତାରିଖ ଜାନୁଆରିରେ ସର୍ଦାର ପଟେଲଂକୁ ଚିଠି ଲେଖିଥିଲେ। ସେ ଜଣାଇଲେ ସଂବଲପୁର ପଶ୍ଚିମ ବରଗଡ଼ ନିର୍ବାଚନ ମଂଡଳୀରୁ ରଣଜିତ୍ ସିଂହକୁ ପ୍ରାର୍ଥୀ କରାଯାଉଅଛି। ଖବର କାଗଜରେ ବାହାରିଛି ଯେ ରଣଜିତ୍ ସିଂହ ନିଜ ନାମ ଏବେ ଭୋଟର ତାଲିକାରେ ଦର୍ଜ କରିବାରେ ସକ୍ଷମ ହୋଇଛଂତି। ଏହି ନିଷ୍ପତ୍ତି ଲୋକମାନଂକ ମନରେ ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି କରିଛି। ରାଜକୀୟ ବିମାନ ବାହିନୀରେ କାର୍ଯକରି ଇଂରେଜ ସାମ୍ରାଜ୍ୟବାଦ ରକ୍ଷାନିମିତ୍ତ ସରକାରଂକୁ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିଥିବା ଜଣେ କର୍ମଚାରୀ ହଠାତ୍ କଂଗ୍ରେସ ଦଳର ପ୍ରିୟ ପାତ୍ର ହେବା ବିସ୍ମୟ ସୃଷ୍ଟି କରୁଛି। ଏହାର ଉତ୍ତର ଫେବ୍ରୁଆରି ଆଠ ତାରିଖରେ ସର୍ଦାର ପଟେଲ ଶ୍ରଦ୍ଧାକରଂକୁ ଜଣାଇଲେ। ସେ ଲେଖିଥିଲେ "କଲିକତା କଂଗ୍ରେସରେ ନିଷ୍ପତ୍ତି ହୋଇଛି ଦେଶରକ୍ଷା ବାହିନୀରୁ ଉପଯୁକ୍ତ ଭାରତୀୟ ପ୍ରାର୍ଥୀ ମିଳିଲେ ସେମାନଂକୁ କଂଗ୍ରେସ ନିଜର ସମର୍ଥନ ଦେବ। ଏହା ସତ୍ୟ ଯେ ଦେଶରକ୍ଷା ବାହିନୀରୁ କଂଗ୍ରେସର ପରଂପରା ନ ଜାଣିଥିବା ବ୍ୟକ୍ତିମାନେ ଆସିଲେ ହଠାତ୍ କଂଗ୍ରେସର କାର୍ଯରେ ନିଜକୁ ମିଶାଇ ପାରିବେନାହିଁ। ମାତ୍ର ସେମାନେ ଯେ ଏପରି କରି ନ ପାରିବେ ଏହା ଭାବିବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ। ସେମାନେ ସ୍ୱେଚ୍ଛାକୃତ ଭାବରେ କଂଗ୍ରେସ ସମରରେ ସୈନିକ ହେବାପାଇଁ ଆବେଦନ କରି ଅଛଂତି। ସେମାନଂକର ସୈନ୍ୟବାହିନୀର ଶୃଂଖଳାଜ୍ଞାନ ଅଛି। କଂଗ୍ରେସର ତ୍ୟାଗୀ ନେତାମାନେ ଅନେକ ସମୟରେ ଶୃଂଖଳା ମାନି ନ ଥାଂତି ଓ ଆଇନ ସଭାରେ ଶୃଂଖଳିତ

ଆଚରଣ ଦେଖାଇ ନ ଥା'ନ୍ତି। କଂଗ୍ରେସ କାର୍ଯକାରୀ କମିଟିର ମତ ହେଲା ପରିବର୍ତ୍ତିତ ପରିସ୍ଥିତିରେ ଦେଶରକ୍ଷା ବିଭାଗର କର୍ମଚାରୀମାନେ ଦେଶର ଶତ୍ରୁ ବା ବହିରାଗତ ବୋଲି ବିବେଚିତ ହେବେ ନାହିଁ। ଦେଶପ୍ରେମୀ ଭାବରେ କାର୍ଯ କରିବାକୁ ସେମାନଙ୍କୁ ସବୁ ପ୍ରକାର ସୁଯୋଗ ଦିଆଯିବ ଓ ସେମାନେ ଦେଶସେବାରେ ନିଜର ନିଷ୍ଠା ପ୍ରଦର୍ଶନ କରିବେ।'' ଏହାପରେ ଏ ପ୍ରତିବାଦ ଆଉ ଆଗେଇଲା ନାହିଁ। ସେଇ ବରଷ ଫେବ୍ରୁଆରି ୧୮ ତାରିଖରେ ରଣଜିତ୍ ସିଂହ ତାଂକୁ ପଶ୍ଚିମ ବରଗଡ଼ରୁ କଂଗ୍ରେସ ପ୍ରାର୍ଥୀ କରାଯାଇଥିବାରୁ କୃତଜ୍ଞତା ଜଣାଇ ସର୍ଦାର ପଟେଲଂକୁ ଚିଠି ଦେଲେ। ପଟେଲଂକ ଟେଲିଗ୍ରାମ ଫଳରେ ବ୍ରିଟିଶ ସରକାର ଭାରତ ଫେରିବାକୁ ତାଂକର ସବୁ ସୁବିଧା କରିଦେଲେ। ଜାନୁଆରି ୩୧ ତାରିଖ ତାଂକର କାର୍ଯର ଶେଷ ଦିନ ଥିଲା। ତା ପରଦିନଠାରୁ ସେ ଚାକିରିରୁ ଅବ୍ୟାହତି ନେଲେ। ଏହି ଚିଠିର ପ୍ରାପ୍ତିସ୍ୱୀକାର କରି ସର୍ଦାର ପଟେଲ ତାଂକୁ ଫେବ୍ରୁଆରି ୨୨ତାରିଖରେ ଜଣାଇଲେ ସେ ଯୁଦ୍ଧ ଉଦ୍ୟମରେ ସକ୍ରିୟଅଂଶ ଗ୍ରହଣ କରିଥିବାରୁ ଓ ନିଜେ ଜଣେ ଜମିଦାର ହେଉଥିବାରୁ ତାଂକ ପ୍ରାର୍ଥୀତ୍ୱ ବିରୋଧରେ ସେ ଅନେକ ଅଭିଯୋଗ ପାଇଥିଲେ। ଏହାସତ୍ତ୍ୱେ ତାଂକୁ କଂଗ୍ରେସ ନିଜ ଦଳ ଟିକେଟ ଦେଇଛି। ଦେଶର ସ୍ୱାଧୀନତା ସଂଗ୍ରାମ ବିନା ଅସ୍ତ୍ରଶସ୍ତ୍ରରେ ଲଢ଼ାଯାଇଛି। ତେଣୁ ବର୍ତ୍ତମାନ ଜଣେ କଂଗ୍ରେସ ସୈନିକ ଭାବରେ ସେ ନିଜ ନେତାଂକର ବିଶ୍ୱସ୍ତ ହେବା, ନିଜେ ଜଣେ ଜମିଦାର ବୋଲି ଭୁଲିଯିବା, ଲୋକମାନଂକ ସହିତ ଘନିଷ୍ଠ ଭାବରେ ମିଳାମିଶା କରି ସେମାନଂକର ମନୋଭାବ ସହିତ ସଂପୂର୍ଣ ଭାବରେ ନିଜକୁ ମିଶାଇ ନେବା ପାଇଁ ରଣଜିତ୍ ସିଂହକୁ ପରାମର୍ଶ ଦିଆଯାଇଥିଲା। ତାଂକୁ ରାଜନୀତିରେ ଯୋଗଦାନ ଫଳରେ ଆଖି କାନ ମୁକ୍ତ ରଖିବା ଓ ତୁଂଡ ବଂଦ ରଖିବାକୁ ସର୍ଦାର ପଟେଲ ଉପଦେଶ ଦେଇଥିଲେ। ସେ ତାଂକୁ ଶୁଣାଇଥିଲେ ଏପରି କିଛି ତମେ କରନାହିଁ ଯେଉଁଥିରୁ ଲୋକେ ଆମର ପ୍ରାର୍ଥୀ ନିର୍ବାଚନ ତ୍ରୁଟିପୂର୍ଣ ବୋଲି ଭାବିବେ।

ବୋଡାସଂବର ଜମିଦାରି ବରଗଡ଼ ସବ୍‌ଡିଭିଜନର ଅଂଶ ଥିଲା। ଏକଦା ପାଟଣା ରାଜ୍ୟର ଜଣେ ନରପତି ଜଣେ ବିଂଝାଲ ସଂପ୍ରଦାୟର ମୁଖ୍ୟକୁ ଏହି ଜମିଦାରି ଦେଇଥିଲେ। ରଣଜିତ୍ ସିଂହ ରାୟସାହେବ ରାଜେଂଦ୍ର ସିଂହ ବରିହାଂକର ୪ର୍ଥ ପୁତ୍ର ଥିଲେ। ତାଂକର ୧ମ ପୁତ୍ର ସଦାନଂଦ ସିଂହ ପିତାଂକ ମୃତ୍ୟୁପରେ ଜମିଦାର ହୋଇଥିଲେ। ସ୍ୱଭାବ କବି ଗଂଗାଧର ଏହି ଜମିଦାରିରେ ଚାକିରି କରୁଥିଲେ। ରାଜାଂକଠାରୁ ଅର୍ଥସାହାଯ୍ୟ ଓ ଉତ୍ସାହ ପାଇଥିଲେ। ଉଚ୍ଚଶିକ୍ଷାପାଇଁ ରଣଜିତ୍ ସିଂହ (ବାରିଷ୍ଟରୀ ପଢ଼ିବାକୁ ବୋଧହୁଏ) ବିଲାତ ଯାଇଥିଲେ ଓ ଉଦାରପଂଥୀ ସାମାଜିକ କର୍ମୀ ଥିଲେ।

ନିର୍ବାଚନରେ ରଣଜିତ ସିଂହ ବରିହା ବିଜୟୀ ହେଲେ। ୧୯୪୬ ଏପ୍ରିଲ ଚବିଶ ତାରିଖରେ ହରେକୃଷ୍ଣ ମହତାବଂକ ନେତୃତ୍ୱରେ ଓଡ଼ିଶାରେ ଏକ ପାଂଚଜଣିଆ ମଂତ୍ରୀମଂଡଳ ଶପଥ ନେଲା। ପରବର୍ତୀ କାଳରେ ମଂତ୍ରୀମଂଡଳ ପରିବର୍ଧିତ ହେଲା। ଲାଲ ରଣଜିତ୍ ସିଂହ ନିର୍ମାଣ ବିଭାଗର ମଂତ୍ରୀ ହେଲେ। ୧୯୪୮ରେ ଗଠିତ ହରେକୃଷ୍ଣ ମହତାବ ମଂତ୍ରୀମଂଡଳ ଓ ୧୯୫୦ ମେ ୧୨ ତାରିଖରେ ଗଠିତ ନବକୃଷ୍ଣ ଚୌଧୁରୀ ମଂତ୍ରୀମଂଡଳରେ ଲାଲ୍ ରଣଜିତ୍ ସିଂହ ବରିହା ସଭ୍ୟ ଥିଲେ। ଓଡ଼ିଶାର ନୂତନ ରାଜଧାନୀ ଭୁବନେଶ୍ୱରରେ ନିର୍ମାଣ ହେଉଥାଏ। ପ୍ରଥମେ କଟକକୁ ଓ ପରେ ରାଜଧାନୀ ଭୁବନେଶ୍ୱରକୁ ଆସି ସେ ଏହି ନିର୍ମାଣକାର୍ଯ ତ୍ୱରାନ୍ୱିତ କରିବାରେ ନିଜର ଦକ୍ଷତା ଦେଖାଇ ଥିଲେ। ରାଜପୁତ୍ର ଥାଇ ମଧ୍ୟ ନିଜକୁ ବିଂଝାଲ ସଂପ୍ରଦାୟର ପ୍ରତିନିଧି ମନେ କରୁଥିଲେ ଓ ସେଥିପାଇଁ ୧୯୫୨ରେ ପ୍ରଥମ ସାଧାରଣ ନିର୍ବାଚନରେ ସେ ସଂରକ୍ଷିତ ଆସନରୁ ନିର୍ବାଚିତ ହୋଇଥିଲେ। ପୂର୍ବେ ସଂବଲପୁରର ରାଜସ୍ୱ ପରିଷଦର ସଭ୍ୟ ଓ କମିସନର ପଦବି ବଳରେ ଖଣି ବିଭାଗର ନିର୍ଦେଶକ ଥିବାରୁ ଖଣି ନିର୍ଦେଶାଳୟ କାର୍ଯ ସଂବଲପୁରରେ ହେଉଥିଲା। ଏହାର ଭୁବନେଶ୍ୱରକୁ ଉଠିଯିବାକୁ ସେ ମଂତ୍ରୀମଂଡଳରେ ବିରୋଧ କରିଥିଲେ। ୧୯୫୩ ବେଳକୁ ସେ ମାନସିକ ବ୍ୟାଧି ରୋଗରେ ଆକ୍ରାଂତ ହୋଇ ରାଂଚି ମାନସିକ ଚିକିତ୍ସାଳୟରେ ଚିକିତ୍ସିତ ହୋଇଥିଲେ। ବ୍ୟାଧି ଉପଶମ ହେଲାନାହିଁ। ସେ ୧୯୫୪ରେ ପ୍ରାଣତ୍ୟାଗ କଲେ। ୧୯୫୭ ନିର୍ବାଚନ ପୂର୍ବରୁ ତାଂକର ମୃତ୍ୟୁରେ ରାଜ୍ୟ ଜଣେ ଦକ୍ଷ ବିଧାୟକ ଓ କର୍ମଠ ମଂତ୍ରୀଂକୁ ହରାଇଲା।



ରାଜାର ଜୀବନ ଧନ ସର୍ବପ୍ରଜା ପାଇଁ  
ଆତ୍ମ ପରିବାର ସ୍ୱାର୍ଥ ନୃପତିର କାହିଁ  
ରାଜାର କର୍ତବ୍ୟ ଭାଇ ପ୍ରକୃତି ରଂଜନ  
କର୍ତବ୍ୟ ବିଭ୍ରଷ୍ଟ ହେଲେ ବିଫଳ ଜୀବନ

– ନଂଦ କିଶୋର



# କବି ଖଗେଶ୍ୱର

କବିବର ରାଧାନାଥ ଯଥାର୍ଥରେ ଲେଖିଥିଲେ :-

*"ଶୁଷ୍କବଂଧ୍ୟ ଯଶ ସଂଗେ ଅର୍ଧାଶନ*
*ପ୍ରତିଭାର ସିନା ଲଲାଟ ଲିଖନ।"*

ଏହି ଉକ୍ତିଟି କବି ଖଗେଶ୍ୱରଂକ ପ୍ରତି ବହୁଭାବରେ ପ୍ରଯୁଜ୍ୟ ।

ବରଗଡ଼ ଥାନାର ସରସରା ଗ୍ରାମରେ ୧୯୦୬ ଅକ୍ଷୟ ତୃତୀୟା ଦିନ ସେ ଜନ୍ମଗ୍ରହଣ କରିଥିଲେ। ଓଡ଼ିଶାର ବିଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାଂତି ୧୯୪୬ରେ ବରଗଡ଼ରେ ହାକିମ ଥିବା ସମୟରେ ଖଗେଶ୍ୱରଂକର କବି ପ୍ରତିଭାର ପରିଚୟ ପାଇଁ ତାଂକ ବିଷୟରେ ଲେଖିଥିଲେ "କବି ଶ୍ରୀ ଖଗେଶ୍ୱର ସେଠ ଜଣେ ପ୍ରତିଭାଶାଳୀ କବି। ପ୍ରାଚୀନ ଓଡ଼ିଆ ସାହିତ୍ୟ ତାଂକର କଂଠସ୍ଥ ଅଛି। ନିଜର ରଚନା ବହୁତ। ବାଳ ପାଚିଲାଣି, ଜୀବନର ଧୁକା ଗରଡ଼ିରେ ସ୍ୱାସ୍ଥ୍ୟ ମଉଳି ପଡିଛି, କିନ୍ତୁ କବିତାର ନାଁ ଶୁଣିଲେ ଅଦ୍ୟାପି ଆଖିରେ ବିଜୁଳି ଖେଳିଯାଏ। କଲମ ଅଟକି ନାହିଁ। ଯେଉଁ ପାରିପାର୍ଶ୍ୱିକ ଅବସ୍ଥା ମଝିରେ ଏହାଂକର କାବ୍ୟ କୁସୁମାବଳୀର ବିକାଶ ହୋଇଛି ଶୁଣିଲେ ସ୍ତବ୍ଧ ହୋଇରହିବାକୁ ପଡ଼େ। ଏ କବି ଜାତିରେ କୈବର୍ତ। ସାମାଜିକ ସ୍ତରରେ ଚାଷୀ ମୂଲିଆ ଶ୍ରେଣୀର, କବି ମୂଲ ଲାଗଂତି, ହଳ କରଂତି,

ଜଂଗଲରୁ କାଠ କାଟିଆଣି ମୁଡ଼ି ଲିଆ ଭାଙ୍ଗଂତି। ମହାତ୍ମାମାନଂକର ଏପରି ବେଉସା ଇତିହାସରେ ବିରଳ ନୁହେଁ। କବି ବର୍ନସ ହଳ କରୁଥିଲେ। ପୃଥିବୀର ଶ୍ରେଷ୍ଠ ଔପନ୍ୟାସିକ ଟ୍ୟାଟ୍‌ହାମ୍‌ସନ୍ ଆଳୁ କ୍ଷେତ୍ରରେ ଖତ ମଢ଼େଇବା ମୂଲିଆ ଥିଲେ। ସେହପରି କବି ଖଗେଶ୍ୱର ସେଠ। ବୀର ସଂଭଳ ସଂବଲପୁର ଜିଲ୍ଲାରେ ଯେଉଁଠି ଗଂଗାଧର ବିହାର କରିଗଲେ, ତାଂକର କୀଚକ ଭୂଇଁ ବିଜେପୁର ଥାନା ଇଲାକାରେ ବୁରୋମାଳ ଗ୍ରାମରେ ପୁଣ୍ୟ ଶ୍ଳୋକ କବି ଖଗେଶ୍ୱର ସେଠଂକର କବି କୁଟୀର ଇତ୍ୟାଦି।'' କବି ଖଗେଶ୍ୱରଂକର ଜୀବନୀ ଆଲୋଚନା କଲେ ଜଣାପଡ଼େ ସେ କୌଣସି ବିଦ୍ୟାଳୟରେ ପାଠ ପଢ଼ିନାହାଂତି। ତାଂକ ପିତାଂକ ନାମ ଥିଲା ହୃଷୀକେଶ ସେଠ।

ଲୋକେ ତାଂକୁ ତାଂକ ଗାଁରେ ଖେଡୁସେଠ ବୋଲି ଡାକୁଥିଲେ। ସେ ସାହିତ୍ୟ ଅନୁରାଗୀ ଥିଲେ। ପୁରାଣ ପଢୁଥିଲେ ଓ ତାଂକର ସାହିତ୍ୟ ଚର୍ଚା ସମସ୍ତଂକୁ ଜଣାଥିଲା। ଖଗେଶ୍ୱର ସ୍କୁଲରେ ପିଲାମାନଂକୁ ମାଡ଼ ଖାଉଥିବା ଦେଖି ଡରରେ ଆଉ ସ୍କୁଲକୁ ଗଲେନି। ତାଂକୁ କେବଳ ଗଣିତ ଆସୁନଥିଲା। ମାତ୍ର ଆଉ ସବୁ ବିଷୟ ସେ ନିଜବୟସର ସହପାଠୀଂକ ଠାରୁ ବୁଝି ଆୟତ୍ତ କରିଥିଲେ। ପିତା ତାଂକର ଗାଁର ଲୋକମାନଂକୁ ପୁରାଣ ସହିତ ଭଂଜ, ଅଭିମନ୍ୟୁ, ଦୀନକୃଷ୍ଣ, ପ୍ରଭୃତିଂକ ସାହିତ୍ୟ ଅର୍ଥକରି ବୁଝାଇବା କବି ଶୁଣୁଥିଲେ। ଫଳରେ ସାହିତ୍ୟ ପ୍ରତି ତାଂକର ବିଶେଷ ଆଗ୍ରହ ରହିଲା। ତାଂକର ଆଉ ତିନି ଭାଇ ଓ ତିନି ଭଉଣୀ ଥିଲେ। ସବା ବଡ଼ଭାଇ ତାଂକୁ ପାଠ ପଢ଼ିବାକୁ ଉତ୍ସାହିତ କରୁଥିଲେ। କବିଂକୁ ଏଗାର ବାର ବର୍ଷ ବୟସ ବେଳେ ଗାଁ ବାଲାଂକ ସାଂଗରେ ମତଭେଦ ହେଲାରୁ ତାଂକ ବାପା ସେ ଗାଁରୁ ଚାଲିଯାଇ ସରଗିପାଲି ଗ୍ରାମରେ ବସବାସ କଲେ। ଏହା ଓଡ଼ିଶା ବାହାରେ ରାୟପୁର ଜିଲ୍ଲାରେ ଫୁଲଝର ବିସ୍‌ନା ଥାନାରେ। ସେଠାରେ କବିଂକୁ ଷୋହଳ ବର୍ଷ ବେଳେ ତାଂକର ମା ମରିଗଲେ। ଠିକ୍ ଛଅମାସ ପରେ ବାପା ମଧ୍ୟ ଚାଲିଗଲେ। କିଛିଦିନ ସେ ବଡଭାଇଂକର ଆଶ୍ରୟରେ ରହିଲେ ମାତ୍ର ନିଜେ କିଛି ରୋଜଗାର କରିବା ପାଇଁ ସେ ଫୁଲଝରର ଆଉ ଗୋଟିଏ ଗାଁକୁ ଚାଲିଗଲେ। ଲୋକମାନେ ଓଡ଼ିଆ ଥିବାରୁ ଓଡ଼ିଆ ଯାତ୍ରାଦଳ ଗଢ଼ି ଯାତ୍ରା କରୁଥିଲେ। କୃଷ୍ଣଲୀଳା ମଧ୍ୟ ଦେଖାଉଥିଲେ। ଖଗେଶ୍ୱର ସେଠାରେ ନାଟ୍ୟ ଗୁରୁ ଭାବରେ ଶିକ୍ଷାଦେଲେ। ଗାଁର ଯାତ୍ରା ଦଳରେ ସେ ଗୋଟିପୁଅ ଭାବରେ ନାଚୁଥିଲେ। ନିଜେ ଅଭିନୟ କରିବା ବେଳେ ନିଜ ମନରୁ ମଉଳିଆ ଗୀତ ରଚନା କରି ଲୋକମାନଂକୁ ଶୁଣାଇ ଆନଂଦ ଦେଉଥିଲେ। କିଛିଦିନ ସେଠାରେ ରହିବାପରେ ସେ ସୋହେଲା ଥାନା ପାଖ ପାଣିମୋରା ଗାଁକୁ ଆସିଲେ। ସେଠାରେ ତାଂକର ମାମୁଘର। ତାଂକର ସେତିକିବେଳେ ବାହାଘର ହେଲା। କିଛିଦିନ ସେଠାରେ ରହିବାପରେ ସେ ବିଜେପୁର ଥାନା ତାଳପଦର ଗାଁରେ ନିଜ ଶଶୁର

ଘରକୁ ଚାଲିଆସିଲେ। ସେଠି ସେ ପ୍ରାୟ ଚଉଦ ପନ୍ଦର ବର୍ଷ କଟାଇଲେ। ପରିବାର ବଢ଼ିବା ସଂଗେ ସଂଗେ ତାଂକର ଗୃହ ଜଂଜାଳ ମଧ୍ୟ ବଢ଼ିଲା। ସାମାନ୍ୟ ଜମିବାଡ଼ି ଅର୍ଜନ କଲେ ମାତ୍ର ତାହା କୁଟୁଂବ ଚଳାଇବାକୁ ଯଥେଷ୍ଟ ନ ଥିଲା। ୧୯୪୬ରେ ସେ ତାଳପଦରରୁ ବୁରୋମାଳ ଗ୍ରାମକୁ ଆସି ସେଠାରେ ଦଶବର୍ଷ ଥିଲେ। ଏହି ଗ୍ରାମରେ ତାଂକର ଗୋପୀନାଥଂକ ସହିତ ସାକ୍ଷାତ ହୋଇଥିଲା। ସାତପ୍ରାଣୀ କୁଟୁଂବ ପୋଷିବାକୁ କବି ପ୍ରତିଦିନ ଭୋରରୁ ଉଠୁଥିଲେ, ଧାନ କୁଟୁଥିଲେ, ମୁଢ଼ି ଓ ଲିଆ ଭାଜିବାର ପ୍ରାରଂଭିକ କାମ ସାରୁଥିଲେ। ତାଂକୁ ଜଂଗଲରୁ କାଠ ଆଣିବାକୁ ପଡୁଥିଲା। ମାତ୍ର ମନରୁ କବିତା ରଚନା ପ୍ରବୃତ୍ତି କେବେହେଲେ କମୁନଥିଲା। ଯାତ୍ରାଦଳରେ ଯୋଗଦେଇ ସେ ଗୀତ ଓ ଗୀତିନାଟ୍ୟ ରଚନା କଲେ। ନିଜନାଟ୍ୟଦଳରେ ଏହାର ଅଭିନୟ କରାଇଲେ ଓ ଏଗୁଡ଼ିକ ଲୋକପ୍ରିୟ ହେଲା। ନିଜର ବୟସ ବୃଦ୍ଧି ସଂଗେ ସଂଗେ ସେ ବିଭିନ୍ନ ପୁରାଣ, ଛାଂଦଗ୍ରଂଥ, ଧର୍ମଗ୍ରଂଥ ଆଦି ଅଧ୍ୟୟନ କରିବାର ସୁଯୋଗ ପାଇଲେ। ଏହି ସମୟରେ ବରଗଡ଼ ଅଂଚଳରେ ସ୍ୱାମୀଦୟାନଂଦଂକ ପ୍ରବର୍ତ୍ତିତ ଆର୍ଯ ସମାଜର କିଛି ପ୍ରଭାବ ଥିଲା। ଫଳରେ ସେ ସମାଜ ସଂସ୍କାର ଉଦେଶ୍ୟରେ ବୈଦିକଗ୍ରଂଥ ଅଧ୍ୟୟନ କରିବାର ସୁଯୋଗ ପାଇଲେ। ସେ ସଂସ୍କାର ମୂଳକ କେତୋଟି କବିତା ଲେଖି 'ଆର୍ଯ' ପତ୍ରିକାରେ ପ୍ରକାଶ କରିଥିଲେ। ଓଡ଼ିଶାରେ ଆର୍ଯ ସମାଜର ବିଶିଷ୍ଟ ପ୍ରବର୍ତ୍ତକ ଓ ଦୟାନଂଦଂକର ଶିଷ୍ୟ ସମାଜ ସଂସ୍କାରକ ଶ୍ରୀବତ୍ସ ପଂଡା ଏହି ପତ୍ରିକାର ସଂପାଦକ ଥିଲେ। ସେ ଏହି କବିତା ଗୁଡ଼ିକ ପଢ଼ି କବିପ୍ରତିଭାର ପରିଚୟ ପାଇଁ ଖଗେଶ୍ୱରଂକୁ ସାହିତ୍ୟପ୍ରାଣ ଭାବରେ ବର୍ଣନା କରିଥିଲେ। ସୁଂଗରିପାଲିରେ ଥିଲାବେଳେ ବୈଦେହୀଶ ବିଳାସକୁ ଅନୁକରଣ କରି ରାଧାକୃଷ୍ଣଂକର ପ୍ରେମଲୀଳା ବର୍ଣନାଯୁକ୍ତ ବସଂତବିଳାସ ନାମକ ଏକ ଗ୍ରଂଥ ସେ ରଚନା କଲେ। ଆଉ ଗୋଟିଏ ଗ୍ରଂଥ ଚଉତିଶା କଳ୍ପଲତା ନାମଦେଇ ସେ ରଚନା କରିଥିଲେ।

ଦୁଇଟି ଯାକ କାଳକ୍ରମେ ନଷ୍ଟ ହୋଇଗଲା। ସରଗିପାଲି ପାଖରେ ଥିବା ନଦୀର ନାମ ସୁରଂଗ। କବି ଏହି ସୁରଂଗୀ ନଦୀକୂଳରେ ଜୀବନର ସୁଖ, ଦୁଃଖ, ରୋଗ ଭୋଗ କରିଥିଲେ। ସେ ଏହାକୁ ବର୍ଣନା କରି ସୁରଂଗୀ ନାମରେ ଗୋଟିଏ କାବ୍ୟ ରଚନା କରିଛଂତି। ୧୯୧୨ରେ ପ୍ରକାଶିତ କବିଶେଖର ଚିଂତାମଣି ମହାଂତିଂକର ମଧ୍ୟ ଗୋଟିଏ କାବ୍ୟର ନାମ ସୁରଂଗୀ। ଏହି ସୁରଂଗୀ ଓଡ଼ିଶାର ଦକ୍ଷିଣରେ ଆଂଧ୍ରପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାରେ ଅବସ୍ଥିତ ଏକ ରାଜ୍ୟ। ସେହି ରାଜ୍ୟର ରାଜା କବି ଚିଂତାମଣିଂକର ଜଣେ ବଡ଼ ପୃଷ୍ଠପୋଷକ ଥିଲେ। ଖଗେଶ୍ୱରଂକର ସୁରଂଗୀ ଏକ ରାଜ୍ୟନୁହେଁ ମାତ୍ର ଫୁଲଝର ଅଂଚଳର ପ୍ରଧାନ ନଦୀ। ଚିଲିକା କାବ୍ୟର ଛାୟା ଏଥିରେ ପଡ଼ିଥିଲେ ମଧ୍ୟ ଏହିକାବ୍ୟଟିର ସ୍ଥାନ ଓ ବିଷୟ ବର୍ଣନା ଅତି ରମଣୀୟ ହୋଇଅଛି। କବି ଜୀବନ ଜଂଜାଳ ମଧ୍ୟରେ ଫୁରୁସତ ପାଇଲେ କାବ୍ୟ କବିତା, ଚଉତିଶା ଲେଖିବାରେ ନିଜ ଲେଖନୀ ଚାଳନା କରୁଥିଲେ। ତାଂକର ରଚନା

ମଧ୍ୟରେ ଷୋଳଟି କବିତାଯୁକ୍ତ ଚଉତିଶା ଚଂଦ୍ରକଳା ତାଂକ ଗ୍ରଂଥାବଳୀରେ ପ୍ରଥମସ୍ଥାନ ପାଇଅଛି। ଏଥିର କବିତାମାନ ହେଲା ମଂଗଳାଚରଣ, ସତ୍ୟସମାଚାର, ସଜନୀ, ଗୁପ୍ତନିବେଦନ, ନୂଆବୂଆଷୁଣୀ, ପ୍ରଭାତ କୋଇଲି, ହରିଜନ ଗୁହାରୀ, କନକଲତା, କୃତ୍ରିମ ସାଧନା, ଚଷା ମୁଲକି ହସା ସୂକ୍ତିମାଳା, ହଳିଆଭାଇ, ପ୍ରଭୁଭକ୍ତି, ଗରିବ, ଅଂତିମଚିଂତା। ଏହା ବ୍ୟତୀତ ତାଂକର ଅନ୍ୟ ରଚନା ଗୁଡ଼ିକ ହେଲା ନୃସିଂହନାଥ, ଚଇତ ଅମାବାସ୍ୟା, ପ୍ରଣୟ ନିର୍ଝର, ଆମେ ଗରିବ କାହିଁକି, ପାଏର୍ଛା ସତୀ (ସଂବଲପୁର କଥିତ ଭାଷାରେ ରଚିତ) ସୂକ୍ତି ମୁକ୍ତାବଳୀ, ମହାପ୍ରଭୁ, ଧନ୍ୟକଳିକାଳ, ବିପାଦନିଶା ଓ ଉତ୍କଳ କବିତା। 'ଆମେ ଗରିବ କାହିଁକି' କବିତାରେ ସେ ଲେଖିଛଂତି।

ସତକଥା ଯାହା ନୀତିଶାସ୍ତ୍ର କହେ — 'ଗରିବର ନଷ୍ଟ ବୁଦ୍ଧି'
ଗରିବହିଁ ଆମ ଦେଶରେ କରୁଛି — ଗରିବ ସୃଷ୍ଟିର ବୃଦ୍ଧି।
ଆତ୍ମନିର୍ଭରତା ଆମେହରାଇଛୁ — କା ଆଗେ କହିବୁ ଆଉ,
ଠାକୁରକୁ ଆଜି କୁକୁର କରିଛି — ଦାରୁଣ ପେଟର ଦାଉ।

ସୂକ୍ତିମାଳା ଚାଣକ୍ୟ ନୀତିର ଏକ ନବୀନ ସଂସ୍କରଣ। ଏହାଛଡ଼ା ଚାଷୀଭାଇଂକ ପ୍ରତି ତାଂକର ସମବେଦନା, ଗରିବମାନଂକ ପ୍ରତି ସଂବେଦନଶୀଳତା ଏବଂ ଦାର୍ଶନିକ ଭାବରେ ଆତ୍ମତତ୍ତ୍ୱ ଚିଂତନ କବିଂକର ଅନ୍ୟାନ୍ୟ ଛାଂଦ ମାନଂକରେ ପ୍ରକାଶ ପାଇଅଛି। ଅଶ୍ରୁତର୍ପଣ ମହାତ୍ମା ଗାଂଧିଂକର ଅକାଳ ବିୟୋଗରେ, ମର୍ମସ୍ପର୍ଶୀ କବିବେଦନାର ପ୍ରକାଶ। ମହାତ୍ମାଂକର ଅନୁଗାମୀ ମାନେ ନୀତି ଭ୍ରଷ୍ଟଦେଖି ମର୍ମାହତ ହୋଇ କବି ସେମାନଂକର ସମାଲୋଚନା କରିଅଛଂତି। କବି ଦୀନକୃଷ୍ଣଂକର ଆରତ ତ୍ରାଣ ଚଉତିଶା ଅନୁକରଣରେ ତାଂକର ମହାପ୍ରଭୁ ଶୀର୍ଷକ ଜଣାଣଟି ରଚିତ। କବି ଗାଇଛଂତି।

ଉଦରେ ଦାବାନଳ, — ହୃଦରେ ହଳାହଳ
ଅଧରେ ଅମୃତ ରହିଲା,
ପଦନଖରେ ଗଂଗା — ବଂଦନ ଭବ ତଂଗା
ବଦନ କଦନ ଦହିଲା ହେ, ମହାପ୍ରଭୁ
କିକରି ନପାରିଛ — କେବେ ?
କିଂକରୀ ଶଂକରୀତ ହେବେ,
ହେଜି ତବ ମହିମା, — ତେଜି ତର୍କ ବଢ଼ିମା
ବେଜିତ ହୋଇଛଂତି ଦେବେହେ।

ସଂକ୍ଷେପରେ କହିବାକୁ ଗଲେ ଜଣେ ପ୍ରତିଭାଶାଳୀ କବିଭାବରେ ଖଗେଶ୍ୱର ରାଜ୍ୟରେ ପ୍ରତିଷ୍ଠିତ ହୋଇପାରିଛଂତି। ସ୍ୱଜନ୍ମ ଭୂମିର ଶ୍ରେଷ୍ଠ ସ୍ୱଭାବ କବି ଗଂଗାଧରଂକର

ଗୁରୁମଂଡଳୀ ତାଂକର ପରମଗୁରୁ ହୋଇଉଠିଛଂତି । ଲୋକଲୋଚନ ଅଗୋଚରରେ ଦୀର୍ଘଦିନ ଧରି ରହିଥିବା ଏହି ପ୍ରତିଭାଶାଳୀ କବି ବହୁ ବିଳଂବରେ ବୃହତ୍ତର ପାଠକ ଗୋଷ୍ଠୀର ଦୃଷ୍ଟିକୁ ଆସିଲେ । ଜଣାଗଲା କବିଂକର ରଚନାବଳୀର ଆଭିମୁଖ୍ୟ ମୁଖ୍ୟତଃ ସମାଜ ସଂସ୍କାର । ସମାଜରେ ପ୍ରଚଳିତ ନାନା ଅଂଧ ବିଶ୍ୱାସ, ଅନ୍ୟାୟ ଅତ୍ୟାଚାର, ଭ୍ରଷ୍ଟାଚାର, ଦୋଷ ଦୁର୍ନୀତି, ପ୍ରବଳର ଅତ୍ୟାଚର ଦୁର୍ବଳ ଦୁର୍ଗତି ତାଂକୁ ଲେଖନୀ ଚାଳନା ନିମିତ୍ତ ଉଦବୁଦ୍ଧ କରିଅଛି । ନାରୀପ୍ରତି ଅବିଚାର ଅତ୍ୟାଚାର, ବ୍ୟଭିଚାର, ନିଜ ଅଂଗରେ ସେ ଲିଭାଇ ତାହାକୁ ସମାଜ ସଂସ୍କାର ଉଦ୍ଦେଶ୍ୟରେ ସେ ନିଜ ଲେଖନୀରେ ରଂଗ ଦେଇଛଂତି ।

ଲୋକଲୋଚନକୁ ଆସିବାପରେ ୧୯୫୭ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଂକର ବାଇଶି ଖଂଡ କାବ୍ୟ କବିତା ଯୁକ୍ତ ଗ୍ରଂଥାବଳୀ ପ୍ରକାଶ କରିଥିଲେ । ଏହାର ଦ୍ୱିତୀୟ ସଂସ୍କରଣ ମଧ୍ୟ ୧୯୭୩ରେ ପ୍ରକାଶ ପାଇଅଛି । ତାଂକର ସମସ୍ତ ରଚନା ଏକତ୍ର କରି ପଂଦରଖଂଡ କାବ୍ୟ କବିତାକୁ ନେଇ ଦ୍ୱିତୀୟ ଭାଗ, ସଂବଲପୁରୀ ଭାଷାରେ ଲିଖିତ କାବ୍ୟ କବିତାକୁ ଏକତ୍ର କରି ତୃତୀୟ ଭାଗ ଓ ସମସ୍ତ ଗଦ୍ୟରଚନା ଏକତ୍ରରେ ଚତୁର୍ଥଭାଗରେ ପ୍ରକାଶିତ ହେବାର ସଂଭାବନା ରହିଛି । ଭାରତର ରାଷ୍ଟ୍ରପତି ୧୯୬୮ ଜାନୁଆରି ପାଂଚତାରିଖରେ ନୂତନ ସଂବଲପୁର ବିଶ୍ୱବିଦ୍ୟାଳୟ ଉଦଘାଟନ କରିବା ଅବସରରେ ବିଶ୍ୱବିଦ୍ୟାଳୟ ପରିସର ନାମକରଣର ଗୌରବ ଖଗେଶ୍ୱରଂକୁ ମିଳିଥିଲା । ସେ ଏହାର ନାମ 'ଜ୍ୟୋତି ବିହାର' ଦେଲେ । ନୂତନ ଗୃହରେ ବିଶ୍ୱବିଦ୍ୟାଳୟ ୧୯୭୨ରୁ ଚାଲୁହେଲା । କବି ୧୯୭୩ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ମାନପତ୍ର ପାଇ ସମ୍ମାନିତ ହୋଇଥିଲେ । ୧୯୭୪ରେ ପ୍ରଜାତଂତ୍ର ପ୍ରଚାର ସମିତି, ଖଡ଼ିଆଳ ସାହିତ୍ୟ ସମିତି, ଓଡ଼ିଶା ସାଂସ୍କୃତିକ ସମାଜ ସଂବଲପୁର ଓ ସଂବଲପୁର ବିଶ୍ୱବିଦ୍ୟାଳୟ ତାଂକୁ ପରବର୍ତ୍ତୀ ବର୍ଷମାନଂକରେ ସଂବର୍ଧନା ଦେଇଥିଲେ ଜୀବନରେ ଶେଷ ପର୍ଯଂତ ଦାରିଦ୍ର୍ୟର ନିର୍ମମ କଷାଘାତ ମଧ୍ୟରେ ରହି ସେ ଲେଖନୀ ଚାଳନା କରୁଥିଲେ । ୧୯୮୭ ଫେବ୍ରୁଆରି ଅଠର ତାରିଖରେ ସେ ପରଲୋକ ଗମନ କଲେ ।



ଖର୍ବ ଗୋବର୍ଦ୍ଧନ ଗିରୀଂଦ୍ର ବୋଲାୟେ
ମହାତୀର୍ଥ ରୂପେ ଲୋକେ ପୂଜା ପାଏ
ସ୍ୱଭାବେ ଗିରୀଂଦ୍ର ହେଇ ମେଘାସନ
ଲଭିନାହିଁ ଗିରି ସମାଜେ ଆସନ – ।

– କବିବର ରାଧାନାଥ



# କବିପୁତ୍ର
# ଭଗବାନ ମେହେର

ଉତ୍କଳ ସାହିତ୍ୟ ସମାଜର ଶତବାର୍ଷିକୀ ଉପଲକ୍ଷେ ଶ୍ରୀରାମଚଂଦ୍ର ଭବନରେ ୨୦୦୩ ମେରେ ତାଂକର ପ୍ରତିକୃତି ଉନ୍ମୋଚନ ସମୟରେ ବହୁ ଶ୍ରୋତା ଓ ଦର୍ଶକ ଭଗବାନ ମେହେରଂକୁ ସ୍ୱଭାବ କବି ଗଂଗାଧର ମେହେରଂକର ପୁତ୍ରଭାବେ ସ୍ମରଣ କରିଥିଲେ। ମାତ୍ର ଭଗବାନଂକର ନିଜସ୍ୱ ପ୍ରତିଭା ମଧ୍ୟ ସ୍ମରଣୀୟ ଥିଲା।

ଗଂଗାଧରଂକର ଜ୍ୟେଷ୍ଠପୁତ୍ର ଭଗବାନ ୧୮୯୨ ଅଗଷ୍ଟରେ ବରପାଲିରେ ଜନ୍ମ ଗ୍ରହଣ କରିଥିଲେ। ନିଜ ପିତାଂକ ପରି ତାଂକର ମଧ୍ୟ ଉଚ୍ଚଶିକ୍ଷାଲାଭର ସୁଯୋଗ ନ ଥିଲା। ମାତ୍ର ପିତାଂକର ଜୀବନାଦର୍ଶ ଓ ସାହିତ୍ୟସେବାକୁ ଜୀବନର ବ୍ରତ ଭାବେ ଗ୍ରହଣ କରି ସେ ନିଜ ଗୁଣରେ ମଧ୍ୟ ପ୍ରଶଂସନୀୟ ହୋଇଥିଲେ। ଷଷ୍ଠଶ୍ରେଣୀ ପର୍ଯଂତ ପାଠ ପଢ଼ି ସେ ପୋଥିରେ ଡୋରି ବାଂଧିଥିଲେ ମାତ୍ର ନିଜ ପିତାଂକ ସମସ୍ତ ରଚନାର ପ୍ରତିଲିପି ସୁଂଦର ନିର୍ଭୁଲ୍ ଅକ୍ଷରରେ ନକଲ କରିବା, ରଚନାଗୁଡ଼ିକ ସଜ୍ଜିତ ଓ ଶୃଂଖଳିତ କରି ରଖିବାରେ ସେ ଯେଉଁ ସମୟ ବ୍ୟୟ କରିଥିଲେ ତାହା ତାଂକୁ କାବ୍ୟ ରଚନା ପାଇଁ ସୁବିଧା ସୁଯୋଗ ଓ ପ୍ରେରଣା ଦେଇଥିଲା। ୧୯୧୧ରେ ସେ ବିବାହ କଲେ।

ଚାରୋଟି ପୁତ୍ର ତିନୋଟି କନ୍ୟାର ଜନକ ଭାବରେ ଗୃହସ୍ଥ ଜୀବନ ଯାପନ କରି ସେମାନଂକୁ ଶିକ୍ଷିତ ଓ ସତ୍‌ପାତ୍ରସ୍ଥ କରିବାରେ ସେ କୃତକାର୍ଯ୍ୟ ହୋଇଥିଲେ।

ଭଗବାନ ନିଜର କବିତା ରଚନା କରି ସମକାଳୀନ ପତ୍ରପତ୍ରିକା ଆଶା, ସଂବଲପୁର ହିତୈଷିଣୀ, ଉତ୍କଳ ମଧୁପ, ସେବା, ହୀରାଖଂଡ ଆଦିରେ ପ୍ରକାଶ ପାଇଁ ପଠାଉଥିଲେ। କବି ହେବାର ଉଚ୍ଚାକାଂକ୍ଷା ନ ଥିଲେ ମଧ୍ୟ ଏହା ଫଳରେ ତାଂକ ରଚନା ପ୍ରଚାରିତ ଓ ଆଦୃତ ହେବାର ସୁଯୋଗ ମିଳିଲା। କବିତାଗୁଡିକରେ ତାଂକର ଅନୁଭବୀ ଆତ୍ମାର ଭାବପ୍ରକାଶ ପାଠକମାନଂକୁ ମୁଗ୍ଧ କରିଥାଏ। ପିତାଂକର ଅସଂପୂର୍ଣ୍ଣ ପଦ୍ମିନୀର ରଚନାକୁ ସଂପୂର୍ଣ୍ଣ କରି ସେ କାବ୍ୟ ପ୍ରକାଶ କଲେ। ପିତାଂକ ଜୀବନୀ କାର୍ଯ୍ୟ ଓ ଜୀବନଚର୍ଯ୍ୟାକୁ ସେ 'ପିତୃପ୍ରସଂଗ' ନାମ ଦେଇ ପୁସ୍ତକାକାରରେ ପ୍ରକାଶ କରିଥିଲେ। ତାଂକର କବିତାଗୁଡ଼ିକ ବିକ୍ଷିପ୍ତ ଭାବରେ ରହିଥିଲା। ମାତ୍ର ତାଂକର ଶତବାର୍ଷିକୀ ଅବସରରେ ଏଗୁଡ଼ିକ ୧୯୯୨ରେ 'ଚୟନିକା' ନାମରେ ପ୍ରକାଶିତ ହେଲା। ବିଳଂବରେ ହେଲେ ମଧ୍ୟ ଏହା ପାଠକ ସମାଜକୁ ମିଳିପାରିଲା। ମାତ୍ର ଭଗବାନଂକର ଓଡ଼ିଆ ସାହିତ୍ୟକୁ ଶ୍ରେଷ୍ଠ ଅବଦାନ ଗଂଗାଧର ମେହେର ଗ୍ରଂଥାବଳୀର ସଂପାଦନା ଓ ପ୍ରକାଶନ। ବିକ୍ଷିପ୍ତ ଭାବରେ ରହିଥିବା ସମସ୍ତ ଗଦ୍ୟ ଓ ପଦ୍ୟରଚନା ସଂଗ୍ରହ କରି ସେ ପ୍ରଥମ ଗ୍ରଂଥାବଳୀ ପ୍ରକାଶ କଲେ ଓ ଏହାକୁ ଲୋକପ୍ରିୟ କରାଇ ପାରିଲେ। ପରବର୍ତ୍ତୀ କାଳରେ ବହୁ ବ୍ୟାବସାୟୀକ ସଂସ୍ଥା ସୁଦୀର୍ଘ ଭୂମିକାଯୁକ୍ତ ବ୍ୟୟବହୁଳ ଗ୍ରଂଥାବଳୀ ପ୍ରକାଶ କରିଥିଲେ ମଧ୍ୟ କେବଳ ରଚନାଗୁଡ଼ିକ ସୁଲଭ ମୂଲ୍ୟରେ ଗ୍ରଂଥାବଳୀ ଆକାରରେ ପାଠକମାନଂକୁ ମିଳିପାରିନାହିଁ।

ଭଗବାନ କବି ବ୍ୟତୀତ ଜଣେ ସମାଜସେବୀ ଭାବରେ ବରଗଡ଼ରେ ପ୍ରତିଷ୍ଠା ଲାଭ କରିଥିଲେ। ବରପାଲିର କଲେଜ, ହାଇସ୍କୁଲ, ବାଳିକା ହାଇସ୍କୁଲ ପ୍ରତିଷ୍ଠା ଓ ପରିଚାଳନା ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ ଥିଲେ। ପଂଚାୟତର ପ୍ରଥମ ସରପଂଚ ଓ ଗ୍ରେନଗୋଲାର ପ୍ରଥମ ସଭାପତିଭାବେ କାର୍ଯ୍ୟକରି ପିତାଂକର ପଂଚାୟତ ରାଜ କଳ୍ପନାର ରୂପାୟନରେ ନିଜକୁ ନିୟୋଜିତ କରିପାରିଥିଲେ। ଗଂଗାଧରଂକର ସ୍ମୃତିରକ୍ଷା ନିମିତ୍ତ ସବୁ ଉଦ୍ୟମ ସହିତ ସେ ସଂଶ୍ଳିଷ୍ଟ ଥିଲେ। କବିଂକର ଜନ୍ମ ଗୃହ, ତାଂକର ଦୈନଂଦିନ ବ୍ୟବହାର ଜିନିଷ, ସ୍ୱହସ୍ତ ଲିଖିତ ପାଂଡୁଲିପି ସହିତ ଚିଠିପତ୍ରମାନ ସେ ସୁରକ୍ଷିତ କରି ଆଗ୍ରହୀ ପରିଦର୍ଶକ ଓ ଯାତ୍ରୀମାନଂକର ଦର୍ଶନ ନିମିତ୍ତ କବିତୀର୍ଥରେ ରଖିଆସିଅଛଂତି। ଏହା ଏବେ ମ୍ୟୁଜିୟମର ମର୍ଯ୍ୟାଦା ଅଲିଖିତ ଭାବରେ ଲାଭ କରି ଆସୁଅଛି। ୧୯୭୨ରେ ଭଗବାନ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଓ ୧୯୭୬ରେ ରାଉରକେଲା ପ୍ରଗତି ସଂଘ ଦ୍ୱାରା ସଂବର୍ଦ୍ଧିତ ହୋଇଅଛଂତି। ଗଂଗାଧରଂକ ସ୍ମୃତିସହ ଚିରକାଳ ଜଡ଼ିତ ଓ ନିଜର ସତ୍ତାବିସ୍ମୃତ ହୋଇ ଏଥିରେ ନିୟୋଜିତ ଏହି କବିଂକର ୧୯୭୭ ଡିସେଂବରରେ ଜୀବନ ଅବସାନ ଘଟିଥିଲା।





## ଗବେଷକ

# ପ୍ରହ୍ଲାଦ ପ୍ରଧାନ

ଓଡ଼ିଶା ସଂସ୍କୃତ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ସଂସ୍କୃତ ଅଧ୍ୟାପକ, ଭାରତ ଓ ଭାରତ ବାହାରେ ଖ୍ୟାତିସଂପନ୍ନ ପ୍ରତିଭାଦୀପ୍ତ ଗବେଷକ, ସଂକଳକ ଓ ବୌଦ୍ଧ ସାହିତ୍ୟ ଧର୍ମଦର୍ଶନର ଆଲୋଚକ ଥିଲେ ପ୍ରହ୍ଲାଦ ପ୍ରଧାନ। ବରଗଡ଼ ଜିଲ୍ଲାର ଭଟଲିଥାନା ଅଂତର୍ଗତ କମଗାଁ ନିକଟ ଅଂତପାଲି ନାମକ ଏକ କ୍ଷୁଦ୍ର ପଲ୍ଲୀଗ୍ରାମରେ ୧୯୧୦ ଅଗଷ୍ଟରେ ଜନ୍ମାଷ୍ଟମୀ ଦିନ ତାଂକର ଜନ୍ମ। ପିତା ଚିଂତାମଣି ପ୍ରଧାନ ଜଣେ ସଚ୍ଛଳ କୃଷିଜୀବୀ ଥିଲେ। ଜଣେ ଆଦର୍ଶ କୃଷକ ଭାବରେ ତାଂକର ସୁନାମ ଥିଲା। ସେ ଜଣେ ସଚ୍ଚରିତ୍ର, ସାଧୁ ଓ ବିଦ୍ୟାପ୍ରେମୀ ଗୃହସ୍ଥ ଥିଲେ। ପିଲାଦିନେ ପ୍ରହ୍ଲାଦ ମାଆଂକୁ ହରାଇଲେ। ଚିଂତାମଣି ଦ୍ୱିତୀୟ ବିବାହ ପାଇଁ ମନା କଲେ। ନିଜେ ନିଜ ପିଲାମାନଂକୁ ଲାଳନ ପାଳନର ଭାର ନେଲେ। ଗାଁରେ ପ୍ରହ୍ଲାଦଂକର ପାଠ ଆରଂଭ। ତାପରେ ସେ କମଗାଁର ଜିଲ୍ଲାବୋର୍ଡ ବିଦ୍ୟାଳୟରେ ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କଲେ। ଘରଠାରୁ ବରଗଡ଼ ଷୋଳ କି.ମି. ବାଟ। ସେଠାରେ ଗୋଟିଏ ହାଇସ୍କୁଲ ଥିଲା। ସେଇଟା ସେତେବେଳେ ଅବିଭକ୍ତ ସଂବଲପୁର ଜିଲ୍ଲାର ୨ୟ ଉଚ୍ଚ ଇଂରାଜୀ ବିଦ୍ୟାଳୟ। ସେଠି ସେ ନାମ ଲେଖାଇଲେ

ମାତ୍ର କୌଣସି ଉପର ଶ୍ରେଣୀକୁ ଯିବା ଆଗରୁ କମଗାଁରେ ଗୋଟିଏ ସଂସ୍କୃତ ଟୋଲ ଖୋଲିଲା। ସେଥିପାଇଁ ଛାତ୍ର ଆବଶ୍ୟକ ପଡିଲା। ପିତା ଚିଂତାମଣି ସଂସ୍କୃତ ପ୍ରେମୀ ଥିଲେ। ସେ ନିଜ ପୁତ୍ରକୁ ଆଣି ସେଇ ଟୋଲରେ ଭରତି କରାଇଲେ। ନିଜର ସଂସ୍କୃତ ପ୍ରତି ଆଗ୍ରହ ଦେଖାଇବାକୁ ଚିଂତାମଣି ନିଜେ ମଧ୍ୟ ସେଇ ଟୋଲରେ ନାଁ ଲେଖାଇ ପାଠ ପଢ଼ିଲେ ମାତ୍ର କିଛିଦିନ ପରେ ବାପ ପାଠ ଛାଡ଼ିଦେଲେ। ପୁଅ ଏକା ପଢ଼ାରେ ଲାଗିଲେ। ତାଂକୁ ଜଣେ ଭଲ ଗୁରୁ ମିଳିଗଲେ। ସେ ସଂସ୍କୃତ ସାହିତ୍ୟ ପ୍ରତି ତାଂକର ଆଗ୍ରହ ସୃଷ୍ଟି କରାଇଲେ। ଏହି ଗୁରୁ ଗୁଡ଼ିଆ ବାବାଜି ବା ଗୋବର୍ଧନ ଦାସଂକ ଉତ୍ସାହ ଫଳରେ ସଂସ୍କୃତ ଟୋଲରୁ ପାଣିନି ବ୍ୟାକରଣ ଓ ମଧ୍ୟମା ପାସ୍ କରିବା ବେଳକୁ ଟୋଲଟି ଛାତ୍ର ଓ ସରକାରୀ ଅନୁଦାନ ଅଭାବରୁ ଭାଂଗିଗଲା। ପ୍ରହ୍ଲାଦଂକର ମନ ଉଚ୍ଚଶିକ୍ଷା ପାଇ ଛଟପଟ ହେଲା। ଓଡ଼ିଶାରେ ସେତେବେଳେ ସଂସ୍କୃତରେ ଉଚ୍ଚଶିକ୍ଷାପାଇଁ ଏକମାତ୍ର ପୁରୀ ସଂସ୍କୃତ କଲେଜ ଥିଲା। ପୁରୀ ଅନେକ ଦୂର। ବରଗଡ଼ ସଂବଲପୁର ମଧ୍ୟରେ ସବୁଦିନିଆ ରାସ୍ତା ନ ଥାଏ। ସଂବଲପୁରରୁ ରେଲ ଧରି ଝାରସୁଗୁଡ଼ା ଯାଇ ସେଠାରୁ ଖଡ଼ଗପୁର ବାଟେ କଟକ ପୁରୀ ଯିବାକୁ ହୁଏ। ଏତେଦୂରକୁ ବାପା ପୁଅକୁ ଛାଡ଼ିବାକୁ ନାରାଜ। ଯେତେ କାକୁତି ମିନତି କଲେ ମଧ୍ୟ ବାପା ଅଟଳ। ପ୍ରହ୍ଲାଦ ଠିକ କଲେ କାହାକୁ କିଛି ନ କହି ସେ ଘରୁ ଲୁଚି କରି ପଳେଇ ଯିବେ। ସେଇଆ ମଧ୍ୟ କଲେ। ଥରେ ସଂବଲପୁର ଯିବା ବାଟରେ ଧରା ପଡ଼ି ଘରକୁ ଅଣାହେଲେ। ଆଉଥରେ ସଂବଲପୁରରେ ପହଂଚି ରେଲଗାଡ଼ି ଧରିବାକୁ ଉଦ୍ୟମ କରୁଥାଆଂତି ନିଜର ଜଣେ ଆତ୍ମୀୟଂକ ନଜରରେ ପଡ଼ିଲେ। ସେଠାରୁ ପୁଣି ଧରାହୋଇ ଘରକୁ ଆସିଲେ। ଶେଷକୁ ଠିକ୍ କଲେ ଟଂକା ପଇସା କାହାକୁ ମାଗିବେ ନାହିଁ। ଯିବା କଥା କାହାକୁ କହିବେ ନାହିଁ। ବାପାଂକ ସିଂଦୁକରୁ ଟଂକା ଚୋରାଇ ନେଇ ପଳାଇବେ। ପୁରୀରେ ପହଂଚି ସାରିଲେ ବାପାଂକୁ ସବୁକଥା ଚିଠିରେ ଲେଖି ଜଣାଇବେ। ସେତେବେଳେକୁ ଆଉ ଆପତ୍ତି କରିବାର ଅବକାଶ ନ ଥିବ। ତାଂକ ଯୋଜନା କାର୍ଯକାରୀ ହେଲା। ଦରକାର ମୁତାବକ ଟଂକା ଧରି ସବୁରି ଅଜାଣତରେ ଲୁଚି ଲୁଚି ସଂବଲପୁରରୁ ଝାରସୁଗୁଡ଼ା, ପୁଣି ଝାରସୁଗୁଡ଼ାରୁ ଟ୍ରେନରେ ଖଡ଼ଗପୁର ଗଲେ। ସେଇଠି ପୁରୀଗାଡ଼ି ମିଳେ। ୧୯୨୭ର ବରଷା ଦିନ। ଖଡ଼ଗପୁରରୁ ଯିବା ଗାଡ଼ି ବାଲେଶ୍ୱରର ଗୋଟିଏ ଷ୍ଟେସନରେ ଅଟକିଗଲା। ଜଣାଗଲା ଆଗକୁ ଗାଡ଼ି ଯାଇପାରିବ ନାହିଁ। ବରଷାରେ ରେଲଲାଇନ ଧୋଇହୋଇ ଯାଇଛି। ମାତ୍ର ଭଂଗା ଲାଇନ ଆରପଟେ ପୁରୀ ଗାଡ଼ି ଅପେକ୍ଷା କରିଛି। ମନରେ ସାହସ ବାଂଧି ନିଜ ଗଂଠିଲି ପତର ମୁଂଡାଇ ସେ ଆର ପାଖକୁ ଗଲେ। ରେଳ ଷ୍ଟେସନରେ ପୁରୀ ଗାଡ଼ି ଠିଆହୋଇଥାଏ। ସେଠାରୁ ଗାଡ଼ିଚଢ଼ି ଯାଇ ପୁରୀରେ ପହଂଚିଲେ। ବାପା ଚିଂତାମଣି ସିଂଦୁକରୁ ଟଂକା ଚୋରି ସହିତ ପୁଅର ଅଂତର୍ଧାନକୁ ଯୋଡ଼ି ଧରିନେଲେ ଯେ ନିଜ ଜିଦ୍

ରକ୍ଷାପାଇଁ ପୁଅ ଟଂକା ଧରି ପୁରୀ ପଳେଇଛି। ଚାରିଆଡ଼େ ଖୋଜାଲୋଡ଼ା ହେଲା। ବରଗଡ଼, ସଂବଲପୁର କେଉଁଠି ପ୍ରହ୍ଲାଦଂକର ପତ୍ତା ମିଳିଲା ନାହିଁ। ଅଗତ୍ୟା ପିତା ପୁରୀ ସଂସ୍କୃତ କଲେଜର ଅଧ୍ୟକ୍ଷଙ୍କୁ ତାର ଯୋଗେ ପୁଅର ଖବର ଜଣାଇଲେ। ଛାତ୍ର ପ୍ରହ୍ଲାଦ ପୁରୀରେ ପହଂଚିବା ଆଗରୁ ଅଧ୍ୟକ୍ଷ ତାରଯୋଗେ ସଂବାଦ ପାଇ ତାଂକ ଅପେକ୍ଷାରେ ଥିଲେ। ତାଂକୁ ପଚରା ଉଚରା କରି ପାଠ ପଢ଼ିବାରେ ତାଂକର ଅଦମ୍ୟ ଉତ୍ସାହ ଲକ୍ଷ୍ୟ କଲେ। ସେହି ବିଦ୍ୟୋତ୍ସାହୀ ଅଧ୍ୟକ୍ଷ ଡକ୍ଟର କରୁଣାକର କର ପରବର୍ତୀ କାଳରେ ପ୍ରହ୍ଲାଦଂକର ସହକର୍ମୀ ହେଲେ। ସେ ଚିଂତାମଣିଂକୁ ପୁଅ ଖବର ତାର କରି ଜଣାଇଲେ। ବ୍ୟାକରଣ ପଢ଼ିବାରେ ଛାତ୍ରଂକର ବିଶେଷ ଆଗ୍ରହ। ବ୍ୟାକରଣ ଆଚାର୍ଯ ରାମାଞ୍ଜା ପାଂଡେ। ସେ ପ୍ରହ୍ଲାଦଂକଠାରୁ ସବୁକଥା ଧୈର୍ଯର ସହିତ ଶୁଣି ତାଂକର ଉତ୍ସାହର ପ୍ରଶଂସା ନ କରି ରହିପାରିଲେନାହିଁ।

ମାତ୍ର ସେତେବେଳେ ସଂସ୍କୃତ କଲେଜ ରକ୍ଷଣଶୀଳ ବ୍ରାହ୍ମଣ ସମାଜର ଅଭେଦ୍ୟ ଦୁର୍ଗ। ଅବ୍ରାହ୍ମଣ ସଂସ୍କୃତ ଶିକ୍ଷାର ଅଧିକାରୀ ନୁହେଁ। ପ୍ରହ୍ଲାଦ ଜାତିରେ କୁଲତା, ତେଣୁ ଶୂଦ୍ର। ସେ ସଂସ୍କୃତ ପଢ଼ିଲେ ବେଦର ପବିତ୍ରତା ନଷ୍ଟ ହୋଇଯିବ, ଏଥିପ୍ରତି ସବୁ ଅଧ୍ୟାପକ ସଜାଗ। ମାତ୍ର ବାଳକର ଆଗ୍ରହ ଦୁର୍ଦମନୀୟ। ଅଧ୍ୟକ୍ଷଂକ ସହିତ ଅନ୍ୟମାନଂକର ଗଭୀର ଆଲୋଚନା ପରେ ବ୍ୟାକରଣାଚାର୍ଯ ରାମାଞ୍ଜା ପାଂଡେଂକର ପରାମର୍ଶ ଅବ୍ରାହ୍ମଣ ହେଲେ ମଧ୍ୟ ସଂସ୍କୃତ ବିଦ୍ୟାପ୍ରତି ଉତ୍ସାହ ଦୃଷ୍ଟେ ଏହି ଛାତ୍ରକୁ ପଢ଼ିବାକୁ ଅନୁମତି ମିଳୁ। ଏଇ ପ୍ରସ୍ତାବ ଗୃହୀତ ହେଲା। ବ୍ରାହ୍ମଣ ବିଦ୍ୟାଧ୍ୟାୟୀମାନେ ମଧ୍ୟ ଆପତ୍ତି କଲେ, ମାତ୍ର ରାମାଞ୍ଜା ପାଂଡେ ତାଂକୁ ହଷ୍ଟେଲରେ ରହିବାର ସୁବିଧା କରିଦେଲେ। ପ୍ରହ୍ଲାଦଂକ ପାଇଁ ପାଂଡେ ପଂଡିତ ଯେପରି ଜଣେ ଦେବଦୂତପରି ଥିଲେ। ସେ ସାହାଯ୍ୟ କଲେ ଓ ନିଜର କଠୋର ଅଧ୍ୟବସାୟ ପରିଶ୍ରମ ଓ ପ୍ରତିଭାର ବିନିଯୋଗରେ ପ୍ରହ୍ଲାଦ କଠିନ ସଂସ୍କୃତ ବ୍ୟାକରଣ ଓ ଶାସ୍ତ୍ରରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କଲେ। ଶେଷରେ ସେ ୧୯୩୩ରେ ସର୍ବୋଚ୍ଚ ନଂବର ରଖି ପ୍ରଥମ ହୋଇ ବ୍ୟାକରଣାଚାର୍ଯ ପରୀକ୍ଷାରେ କୃତକାର୍ଯ ହେଲେ।

ରାମାଞ୍ଜା ପାଂଡେଂକୁ ନିଜ ଯୋଗ୍ୟତା ହାସଲ ନିମିତ୍ତ କୃତଜ୍ଞତା ଜଣାଇବାକୁ ଯିବାବେଳେ ସେ ନିଜର ଗୁରୁ ଦକ୍ଷିଣା ସ୍ୱରୂପ ପ୍ରହ୍ଲାଦଂକୁ ସଂସ୍କୃତରେ ଏମ.ଏ. ପାସ୍ କରିବା ମାଗିଲେ। ଇଂରେଜୀରେ ଅନଭିଜ୍ଞ ଥିଲେ ଏମ୍.ଏ ପରୀକ୍ଷା ଦେଇ ହେବନାହିଁ। ତେଣୁ ଛାତ୍ର ଗାଁକୁ ଆସି ବରଗଡ଼ ହାଇସ୍କୁଲରେ ନାଁ ଲେଖାଇ ମାଟ୍ରିକ୍ ପାସ୍ କଲେ। ବରଷେ ପଢ଼ି ପରୀକ୍ଷା ଦେଇ ସେ ଜିଲ୍ଲାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ। ତା ପରେ ସେ ପାଟଣା ଯାତ୍ରାକଲେ। ସେଠାରେ ୧୯୩୫ରେ ଆଇ.ଏ ଓ ୧୯୩୭ରେ

ବି.ଏ. ପାସ୍ କଲେ। ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣ ପଦକ ବିଜେତା ଥିଲେ। ୧୯୩୯ରେ ସଂସ୍କୃତ ଏମ୍.ଏ. ପରୀକ୍ଷା ଦେଲେ। ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସେ ଗୁରୁଙ୍କୁ ତାଂକ ଉପଯୁକ୍ତ ଦକ୍ଷିଣା ପ୍ରଦାନ କଲେ। ପାଟଣା ରହଣି କାଳରେ ସେ ୧୯୩୬ରେ ବେଦଶାସ୍ତ୍ରୀ ଓ ୧୯୩୮ରେ ସାହିତ୍ୟ ଶାସ୍ତ୍ରୀ ଉପାଧି ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ। ତାପରେ ଜୀବନ ସଂଗ୍ରାମର ଚିଂତା। ଓଡ଼ିଶାରେ ଏକମାତ୍ର ସରକାରୀ ଡିଗ୍ରି କଲେଜ କଟକର ରେଭେନ୍ସା କଲେଜ। ସେଠାରେ ଅଧ୍ୟାପକ ପଦ ଖାଲି ନ ଥାଏ। ହେବାର ସଂଭାବନା ମଧ୍ୟ ନ ଥାଏ। ଓଡ଼ିଶାରେ ବିଶ୍ୱନାଥ ଦାଶଂକ ପ୍ରଥମ କଂଗ୍ରେସ ମନ୍ତ୍ରୀ ମଂଡଳ। ସେମାନେ ପଚାଶଟଂକିଆ ଗୋଟିଏ ବୃତ୍ତି ମଂଜୁର କଲେ। ଫଳରେ ବୌଦ୍ଧଧର୍ମ ଓ ପାଲି ଭାଷା ଉପରେ ଗବେଷଣା କରିବାକୁ ୧୯୩୯ରେ ପ୍ରହ୍ଲାଦ ଶାଂତି ନିକେତନ ଯାତ୍ରା କଲେ। ଦୁଇ ବର୍ଷ ପରେ ବୃତ୍ତି ବଂଦ ହୋଇଗଲା। ସେ ଓଡ଼ିଶାକୁ ଫେରି ଆସିଲେ, ମାତ୍ର ଏହି ସମୟ ମଧ୍ୟରେ ସେ ପାଲି ଓ ବୌଦ୍ଧଧର୍ମ ଉପରେ ପ୍ରଭୂତ ଜ୍ଞାନ ଅର୍ଜନ କଲେ। ଭବିଷ୍ୟତରେ ନିଜର ଗବେଷଣାମୂଳକ ପ୍ରବଂଧ ପାଇଁ ଯଥେଷ୍ଟ ଉପାଦାନ ମଧ୍ୟ ସଂଗ୍ରହ କଲେ। ଶାଂତିନିକେତନ ପ୍ରତିଷ୍ଠାତା ଗୁରୁଦେବ ରବୀଂଦ୍ରନାଥ ସେତେବେଳେ ଜୀବିତ ଥିଲେ। ତାଂକ ଦର୍ଶନ ପାଇ ସେଠାକୁ ଅନେକ ଜ୍ଞାନୀ ଗୁଣୀ ପ୍ରତିଭାଶାଳୀ ଲୋକ ଆସୁଥିଲେ। ମହାତ୍ମା ଗାଂଧି ମଧ୍ୟ ସମୟ ସମୟରେ ଆସୁଥିଲେ। ଯୁବକ ପ୍ରହ୍ଲାଦ ଏ ସମସ୍ତଂକ ପ୍ରତ୍ୟକ୍ଷ ସଂପର୍କରେ ଆସିବାର ସୁଯୋଗ ପାଇଲେ। ବିଭିନ୍ନ ଧର୍ମ ଆଲୋଚନା ଓ ଶାସ୍ତ୍ର ପାଠରେ ଭାଗ ନେବାକୁ ମଧ୍ୟ ସେ ପଛାଇଲେ ନାହିଁ।

ଓଡ଼ିଶାକୁ ଫେରି ପୁଣି ଚାକିରି ଚିଂତା। ବାରିପଦା ମହାରାଜାଂକର ହାଇସ୍କୁଲରେ ଶିକ୍ଷକ ପଦ ଖାଲି ଦେଖି ସେ ପ୍ରାର୍ଥୀ ହେଲେ। ନିଯୁକ୍ତି ମଧ୍ୟ ପାଇଲେ, ମାତ୍ର ଉଚ୍ଚ ଯୋଗ୍ୟତା ସତ୍ତ୍ୱେ ତାଂକର ଶିକ୍ଷକ ଟ୍ରେନିଂ ଯୋଗ୍ୟତା (ବି.ଇଡି) ନଥିବାରୁ ତାକୁ ଅନଟ୍ରେଂଡ ଗ୍ରାଜୁଏଟର ଦରମା ମିଳିଲା। ବରଷେ ଖଂଡେ ଚାକିରି କରି ସେ ବାରିପଦା ଛାଡ଼ିଲେ। ଏହି ସମୟରେ ସେ ଓଡ଼ିଆରେ ମଧ୍ୟ ଏମ୍.ଏ ପାସ୍‌କଲେ। ରେଭେନ୍ସା କଲେଜରେ ଅଧ୍ୟାପକ ପଦ ଖାଲିପଡ଼ିଲାରୁ ୧୯୪୩ରେ ସେ ଆସି ସେଠାରେ ଯୋଗ ଦେଲେ। ସେ ସମୟରେ ଓଡ଼ିଆ ଓ ସଂସ୍କୃତ ଏକ ବିଭାଗ। ଉଭୟ ବିଷୟ ସେ ଆଇ.ଏ, ବି.ଏ ଶ୍ରେଣୀରେ ପଢ଼ାଇଲେ। ବିଭାଗର ମୁଖ୍ୟ ଥିଲେ ଓଡ଼ିଆ ସାହିତ୍ୟ ଓ ଗବେଷଣାର ମହାରଥୀ ରାୟ ସାହେବ ଆର୍ତ୍ତବଲ୍ଲଭ ମହାନ୍ତି। ତାଂକ ନିର୍ଦ୍ଦେଶନାରେ ପ୍ରହ୍ଲାଦଂକର ଅଧ୍ୟାପନା ଛାତ୍ରମାନଂକର ଗ୍ରହଣୀୟ ହୋଇଥିଲା। ତା ସହିତ ସମାଲୋଚନା ଓ ଅଧ୍ୟୟନ ପାଇଁ ଏଥର ତାଂକ ଜୀବନୀରେ ଏକ ନୂଆମୋଡ଼ ଦେଖାଗଲା। ଅଧ୍ୟୟନ ନିମିତ୍ତ ସେ ବିଶେଷ ସୁଯୋଗ ପାଇଲେ।

'ଅଳଂକାର ତତ୍ତ୍ୱ ଓ ତାର ପ୍ରୟୋଗ' ସଂପର୍କରେ ସେ ଗବେଷଣାକରି ବହୁ ପ୍ରବଂଧ ପ୍ରକାଶ କଲେ ଓ ଏହା ଆଦୃତ ହେଲା । ପାରଳାଖେମୁଂଡି ମିଳିତ ମଂତ୍ରୀମଂଡଳ ଓଡ଼ିଶାରେ ଅଧିକା କଲେଜ ଖୋଲିଲା । ସଂବଲପୁର କଲେଜକୁ ସେ ଅଧ୍ୟାପକ ଭାବରେ ବଦଳି ହେଲେ ।

ଅଧ୍ୟାପକ ପ୍ରଧାନ ସଂବଲପୁର କଲେଜରେ କାର୍ଯ କରୁଥିବା ସମୟରେ ଚୀନ ସରକାରଂକର ଗୋଟିଏ ଫେଲୋସିପ୍ ବୃତ୍ତି ପାଇଲେ । ଏହା ଚୀନରେ କମ୍ୟୁନିଷ୍ଟ ଶାସନ ଆରଂଭ ପୂର୍ବର କଥା । ସେ ଶାଂତିନିକେତନର ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଏଥି ନିମିତ୍ତ ଯୋଗ ଦେଲେ । ତାଂକୁ ବଛାଯିବାର ବିଶେଷ କାରଣ ଥିଲା । ଆଗରୁ ଶାଂତିନିକେତନ ରହଣି ସମୟରେ ସେ ପାଲି ଓ ଚାଇନିଜ୍ ଭାଷା ଶିକ୍ଷା କରି ସାରିଥିଲେ । ଓଡ଼ିଶା ସରକାରଂକର ସହଯୋଗ ମିଳିଲା । ବିଶ୍ୱକବି ରବୀଂଦ୍ର ନାଥଂକୁ ରାଜ୍ୟ ସଂବର୍ଦ୍ଧନା ଜଣାଇବାରେ ଓଡ଼ିଶା ପ୍ରଥମ ଥିଲା । ସେଠାରେ ଓଡ଼ିଆରେ ଏମ.ଏ. ଶ୍ରେଣୀ ଖୋଲିଲା । ଅଧ୍ୟାପକ ପ୍ରଧାନ ସେଠାରେ ଅନେକ ଉପାଦେୟ ସଂଦର୍ଭ ରଚନା କରି ନିଜର ପାଂଡିତ୍ୟର ପରିଚୟ ଦେଇଥାଆଂତି । ଚୀନ ସରକାରଂକର ବୃତ୍ତି ପାଇ ସେ ଚୀନ ଯାତ୍ରା କଲେ । ଏହା ତାଂକ ଜୀବନର ଶ୍ରେଷ୍ଠ ଉଲ୍ଲେଖଯୋଗ୍ୟ ଘଟନା । ୧୯୪୯ରୁ ୧୯୫୨ପର୍ଯଂତ ସେ ଚୀନ ଦେଶରେ ଥିଲେ । ଏହି ସମୟ ମଧ୍ୟ ଚୀନ ଦେଶର ଇତିହାସରେ କୋମିନଟାଣ୍ଡ ଶାସନର ଅବସାନ ଓ କମ୍ୟୁନିଷ୍ଟ ଶାସନର ପ୍ରବର୍ତ୍ତନ ନିମିତ୍ତ ଗୁରୁତ୍ୱପୂର୍ଣ ଥିଲା । ଚୀନର ରାଜଧାନୀ ପେକିଂ । ସେଠାରେ ସେ ପ୍ରାଚ୍ୟ ବିଦ୍ୟା ଶିକ୍ଷା ଓ ଗବେଷଣାଗାରରେ ହିଂଦି ଓ ସଂସ୍କୃତ ବିଭାଗର ଅଧ୍ୟାପକ ଥିଲେ । ଏହି ସୁଯୋଗରେ ସେ ଚୀନ ଭାଷା ଓ ସାହିତ୍ୟର ଗଭୀର ଅଧ୍ୟୟନର ସୁଯୋଗ ପାଇଲେ ଓ ସେଥିରେ ଦକ୍ଷତା ହାସଲ କଲେ । ଚୀନଭାଷାରେ ବୌଦ୍ଧଧର୍ମ ଉପରେ ସେ ସଂଦର୍ଭ ଲେଖିଲେ । ଏହା ପତ୍ରପତ୍ରିକାରେ ପ୍ରକାଶିତ ହୋଇ ତାଂକୁ ଯଥେଷ୍ଟ ସମ୍ମାନ ଆଣିଲା । ଚୀନ ଭାଷା ଶିକ୍ଷା ଅତି କଷ୍ଟ କର । ଏହାର ବର୍ଣମାଳା ଆୟତ୍ତ କରି ଲେଖିବା ଅଧିକ କଷ୍ଟ । ଭାରତରେ ବୌଦ୍ଧ ଧର୍ମର ଉତ୍ପତ୍ତି ହୋଇଥିଲେ ମଧ୍ୟ ଭାରତରେ ବୌଦ୍ଧ ସାହିତ୍ୟ ଅତି ଅଳ୍ପ ଥିଲା । ବହୁତ ଗ୍ରଂଥ ପ୍ରାୟ ଲୁପ୍ତ ହୋଇଯାଇଥିଲା । ସେମିତି ଗ୍ରଂଥମାନ କିଂତୁ ଚୀନ ଭାଷାରେ ଅନୁବାଦିତ ହୋଇ ସେ ଦେଶରେ ରହିଥିଲା । ବସୁବାଂଧୁ ନାମକ ଜଣେ ଲେଖକଂକର 'ଅଭିଧର୍ମ କୋଷ ଭାଷ୍ୟ' ନାମରେ ଏକ ଗ୍ରଂଥ ଭାରତରେ ଅସଂପୂର୍ଣ ଭାବରେ ମିଳୁଥିଲା । ମାତ୍ର ଅଧ୍ୟାପକ ପ୍ରଧାନ ସମୁଦାୟ ଗ୍ରଂଥଟିର ସଂସ୍କୃତ ଅନୁବାଦ କଲେ । ଏହା ସଂପାଦିତ ହୋଇ ୧୯୪୬ରେ ପ୍ରକାଶ ପାଇଲା । କେବଳ ଭାରତବର୍ଷ ନୁହେଁ ପୃଥିବୀର ଅନ୍ୟ ଯେଉଁ ଦେଶମାନଂକରେ ବୌଦ୍ଧ ଧର୍ମ ଓ ସାହିତ୍ୟ ଚର୍ଚା ହେଉଛି ସେଠାରେ ମଧ୍ୟ ଏହି ଗ୍ରଂଥ ଆଦର ପାଇଲା । ପରବର୍ତୀ କାଳରେ ଟୋକିଓ ବିଶ୍ୱବିଦ୍ୟାଳୟର ଆକାର ହୀରାକଓ୍ୱା ୧୯୭୩ ଡିସେଂବର ୧୪ ତାରିଖରେ ଅଧ୍ୟାପକ

ପ୍ରଧାନଂକୁ ଏକ ଚିଠି ଲେଖି ସେହି ଗ୍ରଂଥର ସାହାଯ୍ୟ ନେଇଥିବାର ଉଲ୍ଲେଖ କରିଥିଲେ। ସେତେବେଳକୁ ଅଧ୍ୟାପକ ପ୍ରଧାନଂକର ସଂପାଦିତ ଗ୍ରଂଥ ବଜାରରେ ନିଃଶେଷ ହୋଇ ସାରିଥାଏ।

ଏହା ବ୍ୟତୀତ ଅନ୍ୟ ଏକ ବୌଦ୍ଧ ଗ୍ରଂଥର ସଂକଳନ ମଧ୍ୟ ସେ ପ୍ରକାଶ କରିଥିଲେ। ଅଭିଂଗ ହେଉଛଂତି ଅଭିଧର୍ମ ସମୁଚ୍ଚୟର ପ୍ରଣେତା। ଏହି ଗ୍ରଂଥର ଅସଂପୂର୍ଣ ଓ ବିକୃତ ପୋଥି ତିବ୍ବତ ଦେଶରୁ ମିଳିଥିଲା। ଏହା ସହିତ ମିଳାଇ ଶୁଦ୍ଧ ପାଠ ବାହାର କରିବାକୁ ଅନ୍ୟ କୌଣସି ପୋଥି ନ ଥିଲା। ମାତ୍ର ଏହାର ଅନୁବାଦ ଚୀନ ଓ ତିବ୍ବତୀୟ ଭାଷାରେ ଥିଲା। ଏହି ଅନୁବାଦକୁ ମୂଳକରି ଅଧ୍ୟାପକ ପ୍ରଧାନ ଶୁଦ୍ଧ ପାଠ କଲେ। ଏହାର ଅନୁକ୍ରମଣିକା ମଧ୍ୟ ପ୍ରକାଶ କଲେ। କଠିନ ପରିଶ୍ରମ କରି ସେ ଏହି ଦୁର୍ଲଭ ଗ୍ରଂଥ ଲୋକ ଲୋଚନକୁ ଆଣିବାରେ ସମର୍ଥ ହେଲେ। ଭାରତରେ ବିଶ୍ୱଭାରତୀ କର୍ତ୍ତୃପକ୍ଷ ଏହାକୁ ପ୍ରକାଶ କରିଥିଲେ। ଏହି ଦୁଇଟି ବିଶ୍ୱପ୍ରସିଦ୍ଧ ଗ୍ରଂଥ ବ୍ୟତୀତ ଆହୁରି ଅନେକ ଗବେଷଣାତ୍ମକ ପ୍ରବଂଧ ଓ ପୁସ୍ତକମାନ ରଚନା କରି ଅଧ୍ୟାପକ ପ୍ରଧାନ ଦେଶର ଜଣେ ଅଗ୍ରଣୀ ପ୍ରାଚ୍ୟବିଦ୍ୟା ବିଦ୍ୱାନ୍ ଭାବରେ ଖ୍ୟାତି ଅର୍ଜନ କଲେ। ବହୁ ମାନସମ୍ମାନର ସେ ଅଧିକାରୀ ହୋଇଥିଲେ। ବହୁକାଳଧରି ସେ କେଂଦ୍ରୀୟ ସାହିତ୍ୟ ଏକାଡେମୀରେ ସଦସ୍ୟ ଥିଲେ। ରାଜ୍ୟ ସାହିତ୍ୟ ଏକାଡେମୀର ପ୍ରତିଷ୍ଠା ଦିନଠାରୁ ସେ ଏହାର ସଦସ୍ୟ ଥିଲେ। ସଂସ୍କୃତ ଶିକ୍ଷା ପରିଷଦର ସଭାପତି ଓ ସାହିତ୍ୟ ପତ୍ରିକା ପ୍ରଜାତନ୍ତ୍ର ପ୍ରଚାର ସମିତିର 'ଝଂକାର'ର ସହଯୋଗୀ ସଂପାଦକ ଭାବେ ସେ ସମ୍ମାନିତ। ୧୯୭୮ ନାଗପୁର ବିଶ୍ୱ ହିଂଦି ସାହିତ୍ୟ ସମ୍ମିଳନୀରେ ସେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ। ଆଲିଗଡ଼ରେ ଅନୁଷ୍ଠିତ ୧୯୬୮ର ପ୍ରାଚ୍ୟ ସମ୍ମିଳନୀରେ ପାଲି ଓ ବୌଦ୍ଧଧର୍ମ ସଂକ୍ରାଂତ ଆଲୋଚନାଚକ୍ରରେ ତାଂକୁ ସଭାପତି ଦାୟିତ୍ୱ ଦିଆଯାଇଥିଲା। ସଂସ୍କୃତ ଭାଷା ଓ ସାହିତ୍ୟରେ ବିଶେଷ ଅବଦାନହେତୁ ଜଣେ ପ୍ରାଚ୍ୟ ବିଦ୍ୟା ବିଶାରଦ ଭାବରେ ସେ ରାଷ୍ଟ୍ରପତିଂକଠାରୁ ଆର୍ଥିକ ଅନୁଦାନ ଲାଭ କରିଥିଲେ। ଜଣେ ବିଦ୍ୱାନ୍ ଶିକ୍ଷାବିତ୍ ଭାବରେ ସେ ଭାରତରେ ସର୍ବତ୍ର ଯଥେଷ୍ଟ ମର୍ଯାଦା ଲାଭ କରିଅଛଂତି।

ଚୀନରୁ ୧୯୫୭ରେ ସେ ସଂବଲପୁର ପ୍ରତ୍ୟାବର୍ତ୍ତନ କଲେ। କିଛିଦିନପରେ ସେଠାରେ ସେ ମୁଖ୍ୟ ଅଧ୍ୟାପକ ହେଲେ ଓ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ଅଧ୍ୟାପକ ଶେଷରେ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଅବସର ଗ୍ରହଣ କଲେ। କର୍ମଠ ଥାଇ ୧୯୬୨ରେ ଭୁବନେଶ୍ୱରରେ ତାଂକର ଦେହାଂତ ହୋଇଥିଲା ମାତ୍ର ଭବିଷ୍ୟତ ବଂଶଧରମାନେ ପାଲି, ପ୍ରାକୃତ, ସଂସ୍କୃତ ଚୀନ ଓ ତିବ୍ବତୀୟ ଭାଷାର ଗବେଷକ ଅଧ୍ୟାପକ ପ୍ରଧାନଂକୁ ତାଂକର ବିରଳ କୃତି ଓ ମାର୍ଗ ନିର୍ଦ୍ଦେଶକ ରୂପେ ଚିରକାଳ ସ୍ମରଣ କରିବେ।





# ଦିବ୍ୟକିଶୋର ସାହୁ

ଯେତେବେଳେ ମହାତ୍ମାଗାଂଧୀଂକର ଅସହଯୋଗ ଆଂଦୋଳନରେ ଯୋଗଦେବାକୁ ଡାକରା ଆସିଲା ସେହିସମୟରେ କବି ବାଂଛାନିଧି ଗାଇଉଠିଲେ –

''କାହୁଁ ଆଇଲେ ଏ ଦେଶକୁ ବେପାରୀ,
ସବୁ ନେଇଲେ ହେଲୁ ଆମେ ଭିକାରୀ।

କିଂବା ଜାତୀୟ କବି ବୀରକିଶୋର ଲେଖି ଚାଲିଲେ :-

''ତୁମେ ମାର ଯେତେବେତ ମାରିବ
ଜୀବନକୁ ଆମେ ପାଣି ଛଡ଼ାଇଛୁ
ତୁମେ କି ଆମକୁ ପାରିବ।''

ବରଗଡ଼ର ଗ୍ରାମାଂଚଳରେ କବି ଦିବ୍ୟକିଶୋର ସାହୁ ଅନେକ ଦେଶାତ୍ମ ବୋଧକ ସଂଗୀତ ରଚନା କରିଥିଲେ। ଦୁର୍ଭାଗ୍ୟର ବିଷୟ ତହିଁରୁ ଗୋଟିଏ ହେଲେ ବର୍ତମାନ ମିଳୁନାହିଁ। ଦିବ୍ୟକିଶୋର ସୋହେଲା ଥାନା ଅଂତର୍ଗତ ପାଣିମୋରା ଗ୍ରାମରେ ୧୮୯୧ରେ ଜନ୍ମ ଗ୍ରହଣ କରିଥିଲେ। ଏହି ପାଣିମୋରା ଗ୍ରାମର ସ୍ୱାଧୀନତା ସଂଗ୍ରାମରେ ଏକ ବିଶେଷ ଭୂମିକା ଥିଲା। ସେ ଜାତିରେ ଶୁଂଡିଥିଲେ। ମଦବ୍ୟବସାୟ ତାଂକର କୌଳିକ ବୃତ୍ତି ଓ ଆୟର ଏକମାତ୍ର ପ୍ରଧାନ ପଂଥା, ତଥାପି ମହାତ୍ମାଗାଂଧୀଜର

ଆଦର୍ଶରେ ସେ ଅନୁପ୍ରାଣିତ ହୋଇ ଏସବୁ ପରିତ୍ୟାଗ କଲେ। କବି ପ୍ରଥମରୁ ଜଣେ ଈଶ୍ୱର ପ୍ରେମୀ ଓ ସଂସ୍କାରବାଦୀ ଥିଲେ। ସ୍ୱାମୀ ଦୟାନଂଦଂକର ସମସ୍ତ ଗ୍ରଂଥ ଗଭୀର ଭାବରେ ପାଠ କରି ଗୁଡ଼ିଏ କବିତା ପୁସ୍ତକ ନିଜେ ରଚନା କରି ଲୋକମାନଂକ ମଧ୍ୟରେ ପ୍ରଚାର କରିଥିଲେ। ନିଜର ଦୃଢ଼ ଈଶ୍ୱର ଭକ୍ତି ଓ ବିଶ୍ୱାସ ଥିଲା। ତେଣୁ ନିଜ ରଚନା ମାନଂକରେ ସେ ଧର୍ମ, ଭକ୍ତି ଓ ମୁକ୍ତିର ସ୍ୱରୂପ ଓ ଭଜନର ମାର୍ଗ ଆଦି ଲେଖୁଥିଲେ। ଏହା ବ୍ୟତୀତ ଯେତେବେଳେ ସ୍ୱାଧୀନତାର ଡାକରା ଆସିଲା, ସେ ନିର୍ବିଚାରରେ ଏଥିରେ ଯୋଗଦେଇ ଗାଁ ଗାଁରେ ଅସହଯୋଗ ବାର୍ତା ପ୍ରଚାର କରିବାକୁ ଲାଗିଲେ। ଧାର୍ମିକ ଓ ଦେଶାତ୍ମବୋଧକ ଗୀତ ବ୍ୟତୀତ ସେ କେତେକ ସାମାଜିକ ଐତିହାସିକ ତଥ୍ୟଯୁକ୍ତ ପୁସ୍ତକ ଓ ଭ୍ରମଣ କାହାଣୀ ରଚନା କରିଥିଲେ।

ସେ ମୋଟରେ ୪୨ ଖଂଡ ପୁସ୍ତକ ଲେଖିଅଛଂତି। ତାହା ମଧ୍ୟରୁ ୨୯ ଖଂଡ ପୁସ୍ତକ ପ୍ରକାଶିତ ହୋଇଛି। ସେଥିରୁ ତାଂକର ରଚନାର ବିବିଧତାର ପ୍ରମାଣ ମିଳେ। ପୁସ୍ତକଗୁଡ଼ିକର ନାମ ୧) ଉତ୍କଳମାତା, ୨) ଭାରତ ଜୟଗାନ, ୩) କବିତାଂଜଳି, ୪) ଆର୍ଯ୍ୟ ପରିବାର, ୫) ଆର୍ଯ୍ୟବଧୂ, ୬) ଐର (କାବ୍ୟ), ୭) ହିଂଦୁକୁମାରୀ, ୮) ଜନ୍ମରୁ ଜାତି କି କର୍ମରୁ ଜାତି, ୯) ହରିଜନ ଜଣାଣ, ୧୦) ବିଧବା ଜଣାଣ, ୧୧) ପୁରୀ ଭ୍ରମଣ, ୧୨) ବ୍ରହ୍ମଚର୍ଯ୍ୟ, ୧୩) କବିବର ଗଂଗାଧର ମେହେର, ୧୪) ବଳରାମ ଦେବ, ୧୫) ରମାଇଦେଓ (ପାଟଣା), ୧୬) କମଳ କୁମାରୀ, ୧୭) ହିଂଗୁଳାର କିଶୋରଚଂଦ୍ର, ୧୮) ସୁଂଦର ରାଜଧାନୀ (ସୁଂଦରଗଡ଼), ୧୯) ବରପାଲି, ୨୦) ନରସିଂହ ନାଥ, ୨୧) ଆଠମଲ୍ଲିକ, ୨୨) ମହାନଦୀ, ୨୩) ଭାରତ ପତନର କାରଣ ୨୪) ସ୍ୱାଧୀନତା, ୨୫) ସ୍ୱରାଜ୍ୟ, ୨୬) ହୃଦୟଚଂଦ୍ର ପଂଚାୟତ, ୨୭) ଅସହଯୋଗ, ୨୮) ବିଚ୍ଛିନ୍ନ ହିଂଦୁ ସମାଜ, ୨୯) ଭଗିନୀଠାରେ ଭିକ୍ଷା। ପୁସ୍ତକମାନ ପାଠକଲେ ଲେଖକଂକର ବର୍ଣନା ଚାତୁରୀ, ରଚନା ଶୈଳୀ ଓ କାବ୍ୟିକ ଗୁଣ ପାଠକର ମନମୁଗ୍ଧ କରେ। ତାଂକର ଏକ ଭ୍ରାମ୍ୟମାଣ ଜୀବନ ଥିଲା। ଭ୍ରମଣର ଫଳ ସେ ପୁସ୍ତକ ଆକାରରେ ପ୍ରକାଶ କରୁଥିଲେ। ସ୍ୱାମୀ ଦୟାନଂଦଂକ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଆର୍ଯ୍ୟ ସମାଜୀ ବୋଲାଇ ଥିଲେ। ନିଜେ ଜାତିରେ ଶୁଂଡିଥିଲେ ମଧ୍ୟ ନିଜକୁ ହୀନମନା ନ ଭାବି ଜନ୍ମରୁ ଜାତି କି କର୍ମରୁ ଜାତି ପୁସ୍ତକରେ ନିଜର ମତ ପ୍ରକାଶ କରିଯାଇଅଛଂତି। ଜାତୀୟତାବାଦୀ ଭାବରେ ୧୯୨୭ ଓ ୧୯୨୮ରେ ସକ୍ରିୟ ଆଂଦୋଳନରେ ଭାଗ ନେଇ ପାଣିମୋରା ଗ୍ରାମକୁ ସେ ସ୍ୱାଧୀନତା ଆଂଦୋଳନର ଏକ କେଂଦ୍ରରୂପେ ପ୍ରସ୍ତୁତ କରିଥିଲେ। ଲବଣ ସତ୍ୟାଗ୍ରହ ବ୍ୟକ୍ତିଗତ ସତ୍ୟାଗ୍ରହ ଆଂଦୋଳନ

ଓ ଅଗଷ୍ଟ ବିପ୍ଳବରେ ଏହି ଗ୍ରାମରୁ ତାଂକ ପ୍ରରୋଚନାରେ ଅନେକ କର୍ମୀ ଝାସ ଦେଇଥିଲେ। ତାଂକର ଦେଶାତ୍ମକ ରଚନା ସେମାନଂକୁ ପ୍ରଭାବିତ କରିଥିଲା। ତାଂକର ହୃଦୟ ଚଂଦ୍ର ପଂଚାୟତ, ସ୍ୱରାଜ୍ୟ, ଅହିଂସା ସ୍ୱାଧୀନତା ଆଦି କେତେକ ପୁସ୍ତକ ଏହି ସମୟରେ ଓ ଏହି କର୍ମୀମାନଂକ ଉଦ୍ଦେଶ୍ୟରେ ରଚନା କରାଯାଇଥିଲା।

ସେ ସମୟର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଓ ସମାଜସେବୀଂକ ସହିତ ତାଂକର ସୁସମ୍ପର୍କ ଥିଲା। ଶେଷ ଜୀବନରେ ସେ ଆର୍ଯସମାଜୀ ଥାଇ ମଧ୍ୟ ତୀର୍ଥାଟନ କରି ନିଜ ଗ୍ରାମକୁ ଫେରି ସେଠାରେ ଆଶ୍ରୟ ନେଲେ। ତାଂକର ପୁତ୍ର ଚଂଦ୍ରଶେଖର ଓ ନାତି ଅମୂଲ୍ୟ କୁମାର ଅଧ୍ୟାପକ ହୋଇଛଂତି। ତାଂକର ଭାଇ ଦିବ୍ୟ କୁମାର ଜଣେ ଖ୍ୟାତନାମା କବିରାଜ ଥିଲେ। ଜୁନ୍ ୨୮ ତାରିଖ ୧୯୪୬ରେ ଦିବ୍ୟକିଶୋର ହୃଦ୍‌ରୋଗରେ ଆକ୍ରାଂତ ହୋଇ ପ୍ରାଣତ୍ୟାଗ କଲେ।

ଆନଂଦର ବିଷୟ ତାଂକର ଜୀବନୀ ଆର୍ଯପଦ୍ମ ବୀରବର ଦାଶ ରଚନା କରିଥିଲେ ଓ ପୁତ୍ର ଚଂଦ୍ରଶେଖର ଏହାକୁ ୧୯୮୩ରେ ପ୍ରକାଶ କରିଅଛଂତି।





# ଅଭିମନ୍ୟୁ ଦେବତା

ବରଗଡ଼ ମାଟିର ଜଣେ ଲେଖକ ଅଭିମନ୍ୟୁ ଦେବତା। ଜୀବନର ଶେଷ ଆଡ଼କୁ ୭୫ ବର୍ଷ ବୟସରେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସଂବଲପୁର ଓଡ଼ିଶା ସାଂସ୍କୃତିକ ସମାଜ ତାଂକୁ ସଂବର୍ଦ୍ଧନା ଦେଇ ଲୋକ ଲୋଚନକୁ ଆଣିବାକୁ ସାମାନ୍ୟ ପ୍ରୟାସ କରିଥିଲେ। କବି ଅଭିମନ୍ୟୁଂକର ଜନ୍ମ ୧୯୦୩ରେ ଘେଁସ ଗ୍ରାମରେ ହୋଇଥିଲା। ସେ ଜିଲ୍ଲାସ୍କୁଲରୁ ମାଟ୍ରିକ ପାସ୍ କଲେ ଓ ସରକାରୀ ଚାକିରି ପାଇଲେ। କଚେରିରେ ନାଏବ ନାଜିର ହେଲେ ମାତ୍ର ଚାକିରି ତାଂକ ମନକୁ ପାଇଲା ନାହିଁ। ସେ ଚାକିରି ଛାଡ଼ିଦେଲେ। ତାପରେ ପୋଲିସ ବିଭାଗରେ ଚାକିରି କଲେ। ସେଥିରେ କ୍ଷମତା ଓ ଧନଅର୍ଜନର ସୁଯୋଗ ଥିଲେ ମଧ୍ୟ ଏହା ତାଂକ ମନକୁ ନପାଇବାରୁ ଚାକିରି ଛାଡ଼ିଲେ। ପରେ ଏକ ସମବାୟ ଅନୁଷ୍ଠାନରେ କିଛିଦିନ ଚାକିରି କରିଥିଲେ। ଘେଁସ ଗୋଟିଏ ଜମିଦାରିର ନାମ। ଏହାର ଜମିଦାର ଘେଁସ ଗ୍ରାମରେ ରହୁଥିଲେ। ତତ୍‌କାଳୀନ ଜମିଦାର ଶିକ୍ଷିତ ଯୁବକ ଥିବାରୁ ଅଭିମନ୍ୟୁ ତାଂକୁ ପ୍ରଭାବିତ କଲେ ଓ ସେଠାରେ ଗୋଟିଏ ବାଳିକା ବିଦ୍ୟାଳୟ, ମାଇନର ସ୍କୁଲ ଖୋଲିଲେ। ସ୍କୁଲଟି ପରେ ହାଇସ୍କୁଲର ମାନ୍ୟତା ପାଇଥିଲା ଓ ଏବେ ତାହା ଏକ କଲେଜ ହେଲାଣି। ଆଖ ପାଖ ଆହୁରି କେତୋଟି ଗାଁରେ ମଧ୍ୟ ସେ

ଲୋକମାନଂକୁ ପ୍ରଭାବିତ କରି ପ୍ରାଥମିକ ବିଦ୍ୟାଳୟ ଖୋଲାଇଲେ ଓ ସେମାନଂକୁ ସରକାରୀ ସାହାଯ୍ୟ ମିଳିବାରେ ସହାୟକ ହେଲେ। ଓଡ଼ିଶା ପ୍ରଦେଶ ୧୯୩୬ରେ ଗଠନ ହେଲା। କିଂତୁ ସଂବଲପୁରକୁ ଲାଗିକରି ଫୁଲଝରର ବିଂଦ୍ରା ନୂଆଗଡ଼ ସରେଇପାଲି, ରାଇଗଡ଼ ଆଦି ଅଂଚଳ ବାହାରେ ରହିଗଲା। ଅଭିମନ୍ୟୁ ଉତ୍କଳ ସମ୍ମିଳନୀରେ ଜଣେ ସଭ୍ୟହୋଇ ବିଚ୍ଛିନ୍ନାଂଚଳରେ ଗସ୍ତ କରିବାକୁ ଆରଂଭ କଲେ। ସ୍ଥାନୀୟ ଲୋକମାନଂକୁ ସେ ସେମାନଂକର ଭାଷାର ସୁରକ୍ଷା ନିମଂତେ ଦାବି କରିବାକୁ ଉତ୍ସାହିତ କଲେ। ସୀମା ପୁନର୍ଗଠନ କମିସନ ବସିବା ସମୟରେ ସେ ଏହି ଅଂଚଳର ଲୋକ ପ୍ରତିନିଧିମାନଂକଠାରୁ ସେମାନଂକର ଦାବି ପତ୍ର ସଂଗ୍ରହ କରି କମିସନ ଆଗରେ ଦାଖଲ କରାଇଲେ। ସେ କଂଗ୍ରେସରେ ବିଧିବଦ୍ଧ ଭାବରେ ଯୋଗଦାନ ନକରିଥିଲେ ମଧ୍ୟ ଜଣେ ନିରଳସ ଗାଂଧୀଭକ୍ତ ଓ ଜାତୀୟତାବାଦୀ କର୍ମୀ ଥିଲେ। ସେ ନିଜେ କବିତା ଲେଖୁଥିଲେ। ତେଣୁ ନିଜର ମନର ଭାବକୁ, ତାହା ଗୋହତ୍ୟା ବିରୋଧୀ ହେଉ ଅବା ଗାଂଧୀବାର୍ତା ପ୍ରଚାର ହେଉ ସେ ଲୋକମାନଂକ ମଧ୍ୟରେ ସହଜରେ ପ୍ରଚାର କରାଇପାରୁଥିଲେ। ତାଂକର ପଦ୍ୟ ରଚନା ମଧ୍ୟରେ ମହାରାଷ୍ଟ୍ର କେଶରୀ, ସାଂତ୍ୱନା, ତରଣୀ ସେନ, ଦୀପାଳି, କୃଷକ କୋଇଲି, ସମରକବିତା, ପ୍ରେମ ପୁଷ୍ପାଂଜଳି, ଜୟଂତିକା, ଦଂଡକ ରାମାୟଣ, ଭାବଧାରା ଆଦି ପ୍ରଧାନ। ଗଦ୍ୟ ରଚନା କ୍ଷେତ୍ରରେ ସେ ଜବାହାର ଦର୍ଶନ, ଦଳବଦଳ ବିରୋଧରେ ଯୁବଶକ୍ତିର ଭୂମିକା, ସଂବଲପୁରୀ ଭାଷାର ଉତ୍ପତ୍ତି ଓ କ୍ରମ ବିକାଶ ଆଦି କେତେଗୋଟି କ୍ଷୁଦ୍ରପୁସ୍ତିକା ଲେଖି ତାହା ଲୋକପ୍ରିୟ କରିଥିଲେ। ତାଂକ ରଚନା ମୁଖତଃ ବୀର ରସଯୁକ୍ତ ଥିବାରୁ ଏଗୁଡ଼ିକ ଦେଶପ୍ରେମ ବହ୍ନି ପ୍ରଜ୍ୱଳିତ କରିବାକୁ ସମର୍ଥ ହୋଇଥିଲା। ଜନ୍ମ ସଂଗେ ସଂଗେ ମୃତ୍ୟୁ ଧ୍ରୁବ ସତ୍ୟ। ମୃତ୍ୟୁ ଭୟ ନକରି ସ୍ୱସ୍ୱ କର୍ତବ୍ୟ ସଂପାଦନ ସମୟରେ ମୃତ୍ୟୁ ହେଲେ ତାହା ବୀର ମୃତ୍ୟୁ ହୁଏ, ଏହି ଭାବଧାରା ପ୍ରକାଶ କରି ସେ ଲେଖିଛଂତି-

> ''ମରିବାକୁ ଦିନେ ହେବ ଯେତେବେଳେ ବୀର ଭାବେ କିଆଁ ମରିବି ନାହିଁ
> ରଣେଜୟ କଲେ ଯଶ ଅରଜିବି ମଲେ ସ୍ୱର୍ଗପୁରେ ରହିବି ଯାଇ।''

କର୍ମବ୍ୟସ୍ତଥାଇ କବି ୧୯୮୦ ମେରେ ଶେଷ ନିଶ୍ୱାସ ତ୍ୟାଗକଲେ।



# ମୁକ୍ତି ସଂଗ୍ରାମୀ ମାଧବ ସାଥୁଆ

ମହାତ୍ମା ଗାଂଧୀଂକ ଅସହଯୋଗ ଆଂଦୋଳନ ସମୟରେ ନିଷ୍ଠାପର ଭାବରେ ଗାଁକୁ ଗାଁ ବୁଲି ଜିଲ୍ଲାର ପ୍ରତିଷ୍ଠିତ ନେତାମାନଂକ ଠାରୁ ପ୍ରେରଣା ପାଇ ଜାତୀୟତା ଭାବ ଓ ଗାଂଧିବାର୍ତା ପ୍ରଚାର କରୁଥିଲେ ମାଧବ ସାଥୁଆ। ସେ ୧୮୭୦ରେ ରେମଂଡା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ଅସହଯୋଗ ଆଂଦୋଳନ ଆରଂଭ ସମୟରେ ତାଂକର ପରିଣତ ବୟସ ମାତ୍ର ନିଜ ଶରୀର ଓ ଶ୍ରମବିମୁଖତା ପ୍ରତି ଭ୍ରୂକ୍ଷେପ ନକରି ସେ ସ୍ୱାଧୀନତା ଆଂଦୋଳନରେ ଯୋଗଦେଲେ। ଇଂରେଜ ସରକାର ବିରୋଧରେ ସଭାସମିତି କରି ଗାଂଧୀବାର୍ତା ପ୍ରଚାର କରିବାରୁ ପୋଲିସ ହାତରେ ନାନା ପ୍ରକାର ନିର୍ଯାତିତ ହୋଇଥିଲେ ମାତ୍ର ସେସବୁ ସତ୍ୱେ ନିଜ ଅଂଚଳରେ ସେ ଗ୍ରାମ ଗ୍ରାମ ବୁଲି ଅସ୍ପୃଶ୍ୟତା ନିବାରଣ ଓ ଖଦି ପ୍ରଚାର କରୁଥିଲେ। ତାଂକର ବାର୍ତା ଗାଁ ଗହଳରେ ସହଜରେ ପହଂଚି ପାରୁଥିଲା ଓ ଏହା ଫଳରେ ତାଂକ ଗ୍ରାମଟି କଂଗ୍ରେସ ଆଂଦୋଳନର ପରବର୍ତୀ କାଳରେ ଏକ ପୀଠ ହୋଇଥିଲା। ବରଗଡ଼ରେ ଖଦିର ଉତ୍ପାଦନ କାର୍ଯରେ ସେ ବିଶେଷ ଅଂଶ ନେଇଥିଲେ।





# ସମାଜସେବୀ କବିରାଜ ସତ୍ୟବାଦୀ

ବରଗଡ଼ ଅଂଚଳର ଆଉଜଣେ ଆର୍ଯ ସମାଜ ପ୍ରଚାରକ ଓ ସ୍ୱାମୀ ଦୟାନଂଦଂକର ଆଦର୍ଶରେ ଅନୁପ୍ରାଣିତ ବ୍ୟକ୍ତି ଥିଲେ କବି ସତ୍ୟବାଦୀ ଦାସ । ବରଗଡ଼ ପାଖରେ ଜନ୍ମହୋଇ ସେ ଘେଁସକୁ ନିଜ କର୍ମକ୍ଷେତ୍ର ବାଛିଥିଲେ । ତାଂକ ଭାଇ କୃଷ୍ଣଚଂଦ୍ର ଦାସ ଅବସରପ୍ରାପ୍ତ ଜିଲ୍ଲା ଚିକିତ୍ସା ଅଧିକାରୀ । ବୃତ୍ତିରେ ସେ କବିରାଜ ଥିଲେ ଓ ସୁଦୂର ଉତ୍ତର ପ୍ରଦେଶର ଝାନସିରୁ ଆୟୁର୍ବେଦ ଶିକ୍ଷା କରିଆସି ନିଜଗ୍ରାମ ଘେଁସ ଅଂଚଳରେ ନିଜର ଚିକିତ୍ସା ସେବା ଆରଂଭ କଲେ । ଆର୍ଯ ସମାଜବାଦୀ ଥିବାରୁ ସେ ସ୍ୱାମୀ ଦୟାନଂଦଂକର ଆଦର୍ଶରେ ସମାଜରୁ କୁସଂସ୍କାର ଦୂର କରିବାକୁ ସର୍ବଦା ଉଦ୍ୟମ କରୁଥିଲେ ଓ ଏହି ଉଦ୍ଦେଶ୍ୟରେ କେତେଖଂଡି ପୁସ୍ତକ ମଧ୍ୟ ରଚନା କରିଥିଲେ । ସତ୍ୟବାଦୀ ଜଣେ ଅମୃତହସ୍ତା ବୈଦ୍ୟ ଥିଲେ । ତେଣୁ ସ୍ଥାନୀୟ ଲୋକଂକ ଉପରେ ତାଂକର ଯଥେଷ୍ଟ ପ୍ରଭାବ ଥିଲା । ସେ ଜଣେ ଉନ୍ନତ ଧରଣର ଚାଷୀ ମଧ୍ୟ ଥିଲେ ଓ ସର୍ବୋପରି ଜଣେ ସୁଲେଖକ ନାଟ୍ୟକାର ଓ ଅଭିନେତା ଭାବରେ ସେ ଜନସାଧାରଣଂକର ସେବାରେ ନିଜକୁ ଉତ୍ସର୍ଗ କରିପାରିଥିଲେ । ମାତ୍ର ୬୩ ବର୍ଷ ବୟସରେ ୧୯୯୦ରେ ତାଂକର ଦେହାଂତ ହେଲା ।

❑❑❑



ଶ୍ରୀ ବାଲୁଂକେଶ୍ୱର ମିଶ୍ର, ଶ୍ରୀ ନରଭେରାମ ଯୋଶୀ, ଶ୍ରୀ ବିଶ୍ୱକେସନ ମିଶ୍ର

## ଆଇନଜୀବୀ

# ବିଶ୍ୱକେସନ ମିଶ୍ର

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସମଗ୍ର ଅବିଭକ୍ତ ସଂବଲପୁର ଜିଲ୍ଲାରେ ରାଜନୈତିକ ଚେତନା ଓ ଜନଜାଗରଣ ଆଣିବାରେ ଯେଉଁ କେତେଜଣଂକର ଗୁରୁତ୍ୱପୂର୍ଣ ଭୂମିକା ଥିଲା ସେମାନଂକ ମଧ୍ୟରେ ବରଗଡ଼ର ବାଲୁଂକେଶ୍ୱର ମିଶ୍ର, ବିଶ୍ୱକେସନ ମିଶ୍ର, ଭାଗୀରଥି ପଟ୍ଟନାୟକ ତାଂକ ପତ୍ନୀ ଜଂବୁବତୀଂକର ନାମ ବିଶେଷ ଉଲ୍ଲେଖଯୋଗ୍ୟ। ଋଷି ପ୍ରତିମ ବିଶ୍ୱକେସନ ୧୮୬୪ରେ ସଂବଲପୁରରେ ଜନ୍ମହୋଇଥିଲେ। ସେ ଜିଲ୍ଲାସ୍କୁଲରୁ ମାଟ୍ରିକ ପାସ୍ କରି କଲିକତାରେ ଆଇ.ଏ, ବି.ଏ, ଓ ଆଇନ ପାସ୍ କରି ବରଗଡ଼କୁ ନିଜ କର୍ମଭୂମି ରୂପେ ବାଛି ନେଇଥିଲେ। କଲିକତାରେ ପଢ଼ିବା ସମୟରେ ସେ ପଂଡିତ ନୀଳକଂଠ ଗୋଦାବରୀଶ, ସ୍ୱାମୀ ବିଚିତ୍ରାନଂଦ ଆଦି ବଂଧୁମାନଂକର ସଂସ୍ପର୍ଶରେ ଆସିଥିଲେ। ସେମାନଂକ ଦ୍ୱାରା ପ୍ରଭାବିତ ହୋଇ ପରବର୍ତ୍ତୀ କାଳରେ ସେ ଜଣେ ଜାତୀୟତାବାଦୀ ଭାବରେ ପରିଚିତ ହୋଇଥିଲେ। ବରଗଡ଼ର ସେ ପ୍ରଥମ ଉଚ୍ଚଶିକ୍ଷାସମ୍ପନ୍ନ ଓକିଲ ଥିଲେ। ତାଂକର ବ୍ୟବସାୟର ପ୍ରସାର ବଢ଼ିଲା। ଉଚ୍ଚ କୋଟୀର ଆଇନଜ୍ଞ ଭାବରେ ନାଁ କମେଇଲେ। ଯଥେଷ୍ଟ ଅର୍ଥ ଉପାର୍ଜନ କଲେ, ମାତ୍ର ଜଣେ ନୀତିବାଦୀ ସଚ୍ଚୋଟ ଓକିଲ ଭାବରେ ସେ ସମସ୍ତଂକ ପାଖରେ ପ୍ରିୟ ହୋଇ ପାରିଲେ।

ବହୁ ଦରିଦ୍ର ପ୍ରତିଭାବାନ ଛାତ୍ରଂକୁ ଅର୍ଥ ସାହାଯ୍ୟ ଦେଇ ସେ ପ୍ରତିଷ୍ଠିତ କରାଇ ପାରିଥିଲେ। ବରଗଡ଼ରେ ସେତେବେଳେ ହାଇସ୍କୁଲ ନଥିଲା। ସ୍ଥାନୀୟ ତହସିଲଦାର ଗୋପୀନାଥ ଦାସ ଓ ସ୍ଥାନୀୟ ଅନ୍ୟ ଓକିଲମାନଂକର ସାହାଯ୍ୟ ଓ ପରାମର୍ଶ ନେଇ ସେ ସବଡିଭିଜନର ଏକ ମାତ୍ର ଓ ଜିଲ୍ଲାର ଦ୍ୱିତୀୟ ହାଇସ୍କୁଲ ପ୍ରତିଷ୍ଠା କରାଇ ପାରିଥିଲେ। ବରଗଡ଼ର ଶିକ୍ଷା, ସାହିତ୍ୟ ରାଜନୀତି, କୃଷି, ବାଣିଜ୍ୟ ଆଦି ସବୁ କ୍ଷେତ୍ରରେ ସେ ନିଜର ଚରିତ୍ରବତ୍ତା ଓ ଦୃଢ଼ ନିଷ୍ଠା ନିମିତ୍ତ ସୁପରିଚିତ ଥିଲେ। ଜାତୀୟ କଂଗ୍ରେସରେ ସେ ଯୋଗଦାନ କଲେ। ଖଦି ପିଂଧିଲେ। ଅରଟରେ ସୂତା କାଟିଲେ ମାତ୍ର କୋର୍ଟ କଚେରୀ ବର୍ଜନ କରିନଥିଲେ। ଏହାଫଳରେ ଯେଉଁମାନେ ଜେଲ୍ ଯାଉଥିଲେ ସେମାନଂକୁ ଜାମିନରେ ଆଣିବା ଓ ସେମାନଂକର ମକଦ୍ଦମା ପରିଚାଳନା କରିବା ଦାୟିତ୍ୱ ସେ ନିଜ ଇଚ୍ଛାରେ ବରି ନେଉଥିଲେ। ନିଜର ଆଦର୍ଶ ଚରିତ୍ର ଯୋଗୁ ସବୁ କର୍ମୀ ତାଂକର ଅନୁଗତ ଥିଲେ। ଗୃହସ୍ଥ ଆଶ୍ରମରେ ଥାଇ ମଧ୍ୟ ସେ ସନ୍ୟାସୀ ପରି ଜୀବନଯାପନ କରୁଥିଲେ। ବରଗଡ଼ ସହରର ଉପକଂଠରେ ଅଛି ଅଂବାପଲ୍ଲୀ ଗ୍ରାମ। ପ୍ରସିଦ୍ଧ ଧନୁଯାତ୍ରା ସମୟରେ ଏହା ଗୋପପୁରରେ ପରିଣତ ହୁଏ। ସେଇଠାରେ ପରିଣତ ବୟସରେ ବିଶ୍ୱକେସନ ଏକ ରାଧାମାଧବ ମଂଦିର ପ୍ରତିଷ୍ଠା କରିଥିଲେ। ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରୁ ସ୍ନାନ ତର୍ପଣ ସାରି ସେ ଏହି ମଂଦିରରେ ଗୀତା ଓ ଭାଗବତ ପାଠ କରୁଥିଲେ। କାଳକ୍ରମେ ଏହା ଧର୍ମଗ୍ରଂଥ ପାଠର ଏକ ଲୋକପ୍ରିୟ କେଂଦ୍ର ହୋଇ ଉଠିଲା। ସେ ଅତି କଷ୍ଟରେ ନିଜ ପାଠପଢ଼ାସାରି ଥିବାରୁ ଛାତ୍ର ଜୀବନରେ ଅଭାବ ଅସୁବିଧାର ଭୁକ୍ତଭୋଗୀ ଥିଲେ। ତେଣୁ ଜର୍ଜ ହାଇସ୍କୁଲରୁ ଦଶଜଣ ମେଧାବୀ ଅଥଚ ଦରିଦ୍ର ଛାତ୍ରଂକୁ ସେ ନିଜେ ମାସିକ ଅର୍ଥ ସାହାଯ୍ୟ ଦେଇ ଅଧ୍ୟୟନରେ ସାହାଯ୍ୟ କରୁଥିଲେ। ଯୁବକମାନଂକୁ ଖାଲି ପାଠପଢ଼ିବାରେ ସେ ସାହାଯ୍ୟ କରୁ ନ ଥିଲେ। ପରବର୍ତୀ କାଳରେ ସେମାନଂକର ଭବିଷ୍ୟତ ଜୀବନ ପାଇଁ ଦିଗଦର୍ଶନ ଦେଇ ସେମାନଂକୁ ଶିଳ୍ପ ଓ ବାଣିଜ୍ୟ ଦିଗରେ ଆକର୍ଷିତ କରାଉଥିଲେ। ବରଗଡ଼ର କୃତାର୍ଥ ଆଚାର୍ଯ ତାଂକଠାରୁ ବୟସରେ ତେର ବର୍ଷ ସାନ ଥିଲେ। ତାଂକ ପ୍ରତିଭାର ପରିଚୟ ପାଇ ବିଶ୍ୱକେସନ ସଂବଲପୁର ବାଂଧ ବସ୍ତ୍ର ବୟନକଳାର ପ୍ରସାର ନିମଂତେ ତାଂକୁ ପ୍ରଥମରୁ ଉତ୍ସାହିତ କରୁଥିଲେ। କୌଣସି ପଦପଦବିର ନିଶା ବିଶ୍ୱକେସନଂକୁ ଘାରି ନଥିଲା ଓ ଏହିପରି ନିରାଡଂବର ନିଷ୍କଳଂକ ଜୀବନଯାପନ କରି ସେ ୧୯୫୭ ବିଜୟା ଦଶମୀରେ ଇହଲୀଳା ସଂବରଣ କଲେ।



# ସମାଜସେବୀ
# ବାଲୁଂକେଶ୍ୱର ମିଶ୍ର

ସ୍ୱାଧୀନତା ଆଂଦୋଳନର ଆରଂଭରେ ବରଗଡ଼ରେ ବିଶ୍ୱକେସନଙ୍କ ସହିତ ଆଉ ଚାରିଜଣ ସକ୍ରିୟ ଭାଗୀଦାର ଥିଲେ । ସେମାନେ ହେଲେ ବାଲୁଂକେଶ୍ୱର ମିଶ୍ର, ହରନାରାୟଣ ସେଠ, ନରଭେରାମ ଯୋଷୀ ଓ କୃତାର୍ଥ ଆଚାର୍ଯ । ନରଭେରାମ ଯୋଷୀ ବରଗଡ଼ର ପ୍ରଖ୍ୟାତ ସମାଜସେବୀ ଓ ସୁଲେଖକ ଦୟାଲାଲ ଯୋଷୀଂକର ପିତା । ନରଭେରାମ (ନିର୍ଭୟର ଗୁଜରାଟି ଉଚ୍ଚାରଣ) ଗୁଜୁରାଟ କଚ୍ଛ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ । ସଂବଲପୁରରେ ଠିକାଦାରି କରି ସେ ବରଗଡ଼କୁ ନିଜ କର୍ମକ୍ଷେତ୍ର ବାଛି ନେଇଥିଲେ ଓ ନିଜକୁ ସାମାଜିକ ବ୍ୟବସାୟଗତ ଓ ପ୍ରାଶାସନିକ ସ୍ତରରେ ଲୋକପ୍ରିୟ କରିପାରିଥିଲେ । ସେହିଠାରେ ସେ ୧୯୫୬ରେ ପ୍ରାଣତ୍ୟାଗ କଲେ । ବାଲୁଂକେଶ୍ୱର ମଧ୍ୟ ଆଉ ଜଣେ ଓକିଲ । ବିଶ୍ୱକେସନ ତାଂକଠାରୁ ବୟସରେ ସାନ ଥିଲେ । ୧୮୯୩ରେ ସେ ସଂବଲପୁର ଜିଲ୍ଲା ସ୍କୁଲରୁ ମାଟ୍ରିକ ପାସ୍ କଲେ । ନାଗପୁର ଓ କଲିକତାରେ ପଢ଼ିଲେ । ଆଇନ ପାସ୍ କରି ସେ ମଧ୍ୟ ବରଗଡ଼ରେ ଓକିଲାତି ଆରଂଭ କଲେ । କ୍ରମାଗତ ଶିକ୍ଷା ନିମିତ୍ତ ତାଂକର ଯଥେଷ୍ଟ ଅର୍ଥବଳ ନ ଥିଲା । ତେଣୁ ସେ ସାମୟିକ ଶିକ୍ଷକ ବୃତ୍ତି କରୁଥିଲେ ।

ବଲାଂଗିର ମାଇନର ସ୍କୁଲରେ ସେ କିଛିଦିନ ପ୍ରଧାନ ଶିକ୍ଷକ ଥିଲେ ଓ ପରେ ସଂବଲପୁର ଜିଲ୍ଲାସ୍କୁଲରେ ମଧ୍ୟ କିଛିଦିନ ଶିକ୍ଷକତା କରିଥିଲେ। ଏହି ସମୟରେ ବରଗଡ଼ର ସ୍ୱନାମଧନ୍ୟ ଲେଖକ ଦୟାନିଧି ମିଁଶ୍ର, ସଂବଲପୁରର ପ୍ରଥମ ମଂତ୍ରୀ ବୋଧରାମ ଦୁବେ ରାଜସ୍ୱ କମିଶନର ସାମୁଏଲ ଦାସ, କୁଷ୍ଠରୋଗ ବିଶେଷଜ୍ଞ ଡାକ୍ତର ଆଇଜାକ ସାମଂତରା ତାଂକର ଛାତ୍ର ଥିଲେ। ଓକିଲ ଥିବା ସମୟରେ ସେ ମଧ୍ୟ ବିଶ୍ୱକେସନ ମିଶ୍ରଂକ ପରି ବହୁ ବେସରକାରୀ ଲୋକ ଓ ସ୍ଥାନୀୟ ସରକାରୀ କର୍ମଚାରୀମାନଂକ ସାହାଯ୍ୟରେ ଶିକ୍ଷାର ପ୍ରସାର ନିମିତ୍ତ ହାଇସ୍କୁଲ ପ୍ରତିଷ୍ଠାରେ ଅଂଶ ଗ୍ରହଣ କରିଥିଲେ। ଏହାର ପ୍ରଥମ ସଂପାଦକ ଥାଇ ବହୁ ମେଧାବୀ ଅଥଚ ଦରିଦ୍ର ଛାତ୍ରଂକୁ ଶିକ୍ଷାଦାନରେ ସେ ସମର୍ଥ ହୋଇଥିଲେ। ଓଡ଼ିଶାର ବିଶିଷ୍ଟ ଜନନାୟକ ଓ ଜାତୀୟତାବାଦୀ ନେତାମାନଂକ ସହିତ ତାଂକର ଘନିଷ୍ଠ ସମ୍ପର୍କ ଥିଲା ଓ ବିଚ୍ଛିନ୍ନ ଅଂଚଳରେ ଓଡ଼ିଆ ଭାଷାର ସଂରକ୍ଷଣ ନିମିତ୍ତ ସେ ଏହି ଅଂଚଳମାନ ବୁଲି ଲୋକମତ ସଂଗ୍ରହ କରୁଥିଲେ। ୧୯୧୫ରେ ସଂବଲପୁରରେ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଥିଲା। ଏହାର ସଭାପତି ଥିଲେ ସିଂହଭୂମ କେରାର ରାଜା ବାଲୁଂକେଶ୍ୱର ଲକ୍ଷ୍ମୀନାରାୟଣ ସିଂହ ଦେଓ ଅଭ୍ୟର୍ଥନା ସମିତିର ସଭାପତି ଥିଲେ। କଟକରୁ ପ୍ରକାଶିତ 'ମୁକୁର' ପତ୍ରିକାର ସଂପାଦକ ବ୍ରଜସୁଂଦର ଦାସ ଉତ୍କଳ ସମ୍ମିଳନୀର ଜଣେ ଟାଣୁଆ ନେତା ଥିଲେ। ସେ ବାଲୁଂକେଶ୍ୱରଂକ ବଂଧୁ ଥିବାରୁ ତାଂକଦ୍ୱାରା ପ୍ରଭାବିତ ହୋଇ ବାଲୁଂକେଶ୍ୱର ଅନେକ ଉଚ୍ଚକୋଟିର ପ୍ରବଂଧ ରଚନାକରି ମୁକୁରରେ ପ୍ରକାଶ କରିଥିଲେ। ସରକାରୀ ଓ ବେସରକାରୀ ସବୁ ସ୍ତରରେ ବାଲୁଂକେଶ୍ୱରଂକର ଯଥେଷ୍ଟ ସମ୍ମାନ ଥିଲା। ସଂବଲପୁର ସହରର ପଟ୍ଟନାୟକ ପଡ଼ାରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ସେ ବରଗଡ଼କୁ ନିଜର କର୍ମକ୍ଷେତ୍ର ରୂପେ ବାଛିନେଇଥିଲେ ଓ ୧୯୪୯ରେ ସେଠାରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ।





## ମୁକ୍ତିସୈନିକ ଦଂପତି

# ଭାଗୀରଥି ପଟ୍ଟନାୟକ, ଜଂବୁବତୀ ଦେବୀ

ସଂବଲପୁର ଜିଲ୍ଲାର ପ୍ରଥମ ନାରୀ ସ୍ୱାଧୀନତା ସଂଗ୍ରାମୀ ଜଂବୁବତୀ ଦେବୀ। ସେ ଓ ତାଂକ ସ୍ୱାମୀ ଭାଗୀରଥି ପଟ୍ଟନାୟକ ନାନା ଅଭାବ ଅନାଟନ ଓ ଲାଂଛନା ସତ୍ତ୍ୱେ ଶେଷ ପର୍ଯଂତ ନିସ୍ୱାର୍ଥ ଭାବରେ ଜାତୀୟତା ଆଂଦୋଳନରେ କାର୍ଯ କରିଥିଲେ। ଭାଗୀରଥି ୧୮୮୪ରେ ବରପାଲିରେ ଜନ୍ମଗ୍ରହଣ କରିଥିଲେ। ତାଂକୁ ୧୯ ବର୍ଷ ବୟସ ବେଳେ ତାଂକର ପିତା ଯଦୁନାଥ ମରିଯିବାରୁ ପ୍ରଥମ ପୁତ୍ର ଭାବେ ତାଂକୁ ସଂସାରର ସବୁ ଜଂଜାଳ ଆବୋରି ନେବାକୁ ପଡ଼ିଥିଲା। ଜିଲ୍ଲା ସ୍କୁଲର ନବମ ଶ୍ରେଣୀରୁ ତାଂକ ପାଠରେ ଡୋରି ବଂଧା ହେଲା। ସେ ପରିବାରର ପୋଷଣ ନିମଂତେ ଚାକିରି ଖୋଜି ବୁଲିଲେ। ମଧ୍ୟପ୍ରଦେଶର ଓଡ଼ିଆ ଅଂଚଳ ଧନଂତାରୀ ଓ ସିମ୍‌ଗାରେ ସେ ଓଡ଼ିଆ ଶିକ୍ଷକ ଭାବରେ କାମ କଲେ ମାତ୍ର ବେତନ ଯଥେଷ୍ଟ ନ ହେବାରୁ ଫେରି ଆସି ବରପାଲିରେ ଜଣେ ବ୍ୟବସାୟୀଂକ ସିରସ୍ତାରେ ହିସାବରକ୍ଷକ କାମ କଲେ। ତାଂକୁ ଏହି କାମରେ ଅନେକ ସ୍ଥାନକୁ ଯିବାକୁ ପଡୁଥିଲା। ଏହି ସମୟରେ ଦେଶରେ ବଂଗ ବିଭାଜନ ବିରୋଧ ଓ ସ୍ୱଦେଶୀ ଆଂଦୋଳନର ଆରଂଭ ହେଲା। ଏହାର

ପ୍ରଭାବରେ ସେ ଚାକିରି ଛାଡ଼ିଦେଲେ ମାତ୍ର ପରେ ଆର୍ଥିକ ଦୁରବସ୍ଥା ଯୋଗୁ ପୁଣି ଚାକିରି କରିବାକୁ ପାଟଣା ଦେଶୀୟ ରାଜ୍ୟକୁ ଗଲେ। ସେଠାରେ ସେ ଲୋକମାନଙ୍କୁ ଜାତୀୟତା ଆଂଦୋଳନର ଉଦ୍ଦେଶ୍ୟ ବୁଝାଇବା ଦ୍ୱାରା ରାଜାଂକର କୋପଦୃଷ୍ଟିରେ ପଡିଲେ। ତାଂକ ଘର ଖାନତଲାସ କରାଯାଇ ଆପତ୍ତି ଜନକ କାର୍ଯକଳାପ ଯୋଗୁଁ ତାଂକୁ ରାଜଦ୍ରୋହରେ ଦଂଡିତ କରାଗଲା ଓ ୧୯୨୦ରେ ସେ ସେଠାରେ ଦଶମାସ ଜେଲ ଦଂଡ ଭୋଗିଲେ। ଏହା ପୂର୍ବରୁ ଜଂବୁବତୀ ଦେବୀଂକ ସହିତ ତାଂକର ବିବାହ ହୋଇଥାଏ। ପରିବାରର ଦାୟିତ୍ୱ ବଢ଼ିଯାଇଥାଏ। ମାତ୍ର ଏଥିପ୍ରତି ଦୃଷ୍ଟି ନ ଦେଇ ଭାଗୀରଥି ୧୯୨୨ରେ ଅସହଯୋଗ ଆଂଦୋଳନରେ ଯୋଗ ଦେଲେ। କଂଗ୍ରେସ ସଭ୍ୟ ସଂଗ୍ରହ କରିବା ନିମଂତେ ସେ ଗ୍ରାମ ଗ୍ରାମ ବୁଲିଲେ। ହାତରେ ସୂତା କାଟିଲେ। ଖଦଡ଼ ଲୁଗା ବୁଣିଲେ ଓ ପିଂଧିଲେ। ଖଦଡ଼ ବିକି ସେହି ଅର୍ଥରେ ପରିବାର ପୋଷଣ କଲେ। ଅସ୍ପୃଶ୍ୟତା ନିବାରଣ ଓ ମାଦକ ଦ୍ରବ୍ୟର ବର୍ଜନ ନିମିତ୍ତ ସେ ନିଜେ ବେକରେ ଢୋଲ ପକାଇ ଡେଙ୍ଗୁରା ପିଟି ଆବଶ୍ୟକ ପ୍ରଚାର ପତ୍ର ବାଂଟୁଥିଲେ ଓ ସଂବଲପୁର ଜିଲ୍ଲାରେ ତାଂକର କାର୍ଯ ମହାତ୍ମାଗାଂଧୀ ଆସିବା ସମୟରେ ପ୍ରଶଂସା ପାଇଥିଲା। ନିଜେ ଅତି ଅଭାବରେ ଜୀବନ ଯାପନ କରୁଥିଲେ ମଧ୍ୟ ୧୯୨୨ରେ ଗୟା, ୧୯୨୩ରେ କାକିନାଡ଼ା ଓ ୧୯୨୪ରେ ବେଲଗାଁଓ କଂଗ୍ରେସ ଅଧିବେଶନରେ ସେ ଯୋଗଦେଇଥିଲେ। ଏହି ଯାତ୍ରା ସମୟରେ ଅନେକ ସମୟରେ ସେ ଅର୍ଥଭାବରୁ କେତେ ଦୂରବାଟ ପାଦରେ ଚାଲୁଥିଲେ।

୧୯୨୯ରେ ଭାଗୀରଥି ସଂବଲପୁର ଜିଲ୍ଲା କଂଗ୍ରେସର ସଂପାଦକ ହୋଇଥିଲେ। ୧୯୩୦ରେ ଗାଂଧିଜୀଂକର ଲବଣ ସତ୍ୟାଗ୍ରହ ଆରଂଭ ହେଲା। ଜିଲ୍ଲାର ଅନ୍ୟାନ୍ୟ ନେତାମାନଂକ ସହିତ ମିଶି ବରଗଡ଼ ଓ ସଂବଲପୁରରେ ୧୪୪ ଧାରା ଅମାନ୍ୟ କରି ସେ ପୁଲିସ୍ ଜୁଲମର ପ୍ରତିବାଦ କରିଥିଲେ। ନିଜର ସ୍ତ୍ରୀ ଜଂବୁବତୀଂକ ସହିତ ୧୯୩୧ ଓ ୧୯୩୨ରେ ଆଇନ ଅମାନ୍ୟକରି ଦଂଡିତ ହୋଇଥିଲେ ଓ ପାଟଣା କ୍ୟାଂପ ଜେଲ୍‌ରେ ତାଂକୁ ଦଂଡ ଭୋଗିବାକୁ ପଡ଼ିଥିଲା। ଜଂବୁବତୀ ମଧ୍ୟ ସ୍ୱାମୀଂକର ଉପଯୁକ୍ତ ସହଧର୍ମିଣୀ ଭାବରେ ଆଂଦୋଳନରେ ଝାସ ଦେଇ କାରାବରଣ କରିଥିଲେ। ନିଶାନିବାରଣ, ଅସ୍ପୃଶ୍ୟତା ବର୍ଜନ, ଖଦଡ଼ର ପ୍ରସାର ଦିଗରେ କାର୍ଯକରି ସେ ମଧ୍ୟ ଜିଲ୍ଲାରେ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲେ। ବାରଂବାର ଜେଲ ଦଂଡ ଭୋଗି ସେ ଭାଗଲପୁର ଜେଲ୍‌ରେ ମଧ୍ୟ ବଂଦୀ ହୋଇଥିଲେ ଓ ଏହି ସମୟରେ ଓଡ଼ିଶାର ବିଖ୍ୟାତ ନାରୀନେତ୍ରୀମାନଂକ ସଂସ୍ପର୍ଶରେ ଆସି ସେ ନିଜର ଶିକ୍ଷା ଓ ସଂସ୍କାର

ଦିଗରେ ବହୁଭାବରେ ଉପକୃତ ହୋଇଥିଲେ। ସ୍ୱାମୀ ସ୍ତ୍ରୀ ଉଭୟ ବିହାରରେ ଥିବା ସମୟରେ ଠକ୍କର ବାପାଂକଠାରୁ ପ୍ରେରଣା ପାଇଥିଲେ। ଆଦିବାସୀମାନଂକର କଲ୍ୟାଣ ନିମିତ୍ତ ସାଂତାଳ ପ୍ରଗଣାରେ ଆଶ୍ରମ ପ୍ରତିଷ୍ଠା କରିଥିଲେ। ଶେଷ ଜୀବନରେ ଜଂବୁବତୀ ବିହାରକୁ ନିଜ କର୍ମକ୍ଷେତ୍ରରୂପେ ବାଛିନେଇଥିଲେ। ସେଠାରେ ଭାରତଛାଡ଼ ଆଂଦୋଳନରେ ଜେଲ୍ ଭୋଗିଥିଲେ। ତାଂକ ସ୍ୱାମୀ ଓ ପୁତ୍ର ପ୍ରଫୁଲ୍ଲ ଜେଲ୍‌ରେ ଥିବା ସମୟରେ ଜଂବୁବତୀ ୧୯୪୩ରେ ୫୭ ବର୍ଷ ବୟସରେ ବିହାରର ଦୁମ୍‌କାଠାରେ ଜଣେ ବିଖ୍ୟାତ ନେତା ବିନୋଦାନଂଦ ଝା (ପରେ ବିହାରର ମୁଖ୍ୟମନ୍ତ୍ରୀ)ଂକ ଘରେ ଥିବାବେଳେ ପ୍ରାଣତ୍ୟାଗ କଲେ। ଭାଗୀରଥି ଅଗଷ୍ଟ ବିପ୍ଳବ ସମୟରେ ୧୯୪୨ରେ ପୋଲିସ୍‌ଠାରୁ ଲୁଚିରହି ସତ୍ୟାଗ୍ରହୀମାନଂକୁ ସଂଗଠିତ କରି ଆଂଦୋଳନକୁ ତେଜାଇଥିଲେ ମାତ୍ର ଶେଷରେ ଧରା ପଡ଼ି ଜେଲ ଗଲେ। ସର୍ବମୋଟ ଛଅ ଥର ଜେଲ୍ ଭୋଗି ନିଜ ଆଦର୍ଶରେ ଅଟଳ ଥାଇ ନାନା ଅଭାବ ଅନଟନ ମଧ୍ୟରେ କୌଣସି ଲାଭର ଆଶା ନରଖି ନିଜ ସ୍ତ୍ରୀ ଓ ପୁତ୍ରଂକୁ ସେଇ ପଥରେ ପଥିକ କରାଇ ପରବର୍ତୀ କାଳରେ ନିଜକୁ ସେ ପ୍ରତାରିତ ମନେକଲେ। ଭାଗୀରଥି ଭୂଦାନ ଆଂଦୋଳନ ଓ କମ୍ୟୁନିଷ୍ଟ ମତବାଦର ସମର୍ଥକ ହୋଇପଡ଼ିଲେ। ରାଜନୈତିକ ସ୍ୱାଧୀନତା ପରେ ଦେଶରେ ଅର୍ଥନୈତିକ ସ୍ୱାଧୀନତା ଓ ଦାରିଦ୍ର୍ୟ ଦୂରୀକରଣ ନଦେଖି ତାଂକୁ ଶେଷକୁ ଲାଗିଲା ଯେପରି ତାଂକର ସମସ୍ତ ତ୍ୟାଗ ଓ କଠୋର ଶ୍ରମ ବୃଥାହୋଇ ଯାଇଛି। ୧୯୮୦ ଜୁଲାଇରେ ୯୬ ବର୍ଷ ବୟସରେ ଭାଗୀରଥିଂକର ମୃତ୍ୟୁ ସହିତ ସଂବଲପୁର ଜିଲ୍ଲାର ସ୍ୱାଧୀନତା ସଂଗ୍ରାମର ଚଳଂତି ଇତିହାସର ଏକ ଗୁରୁତ୍ୱପୂର୍ଣ ଅଧ୍ୟାୟର ପରିସମାପ୍ତି ଘଟିଲା।



''ଜୀବନ ନୁହେଁ ମୋ ସ୍ୱପନ ଛଳନା<br>
ଜୀବନ ଆନଂଦମୟ ହେ<br>
କରମ ଲାଗି ଜନମ ଲଭିଛି<br>
କରମେ ଲଭିବି ଜୟ ହେ।<br>
ଶୁଭ କରମେ ହୋଇବି ଛଡ଼ା<br>
ବାଧୁ ଯେତେ ମୋତେ ଯାତନା ପୀଡ଼ା<br>
କରମ ମୋହର ଜପମଂତ୍ର ସାର<br>
ଜ୍ଞାନ ଧ୍ୟାନ ସୁଖମୟ ହେ।''

–କୁନ୍ତଳାକୁମାରୀ



# ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍

# ଡ଼ ନବୀନ କୁମାର ସାହୁ

ସ୍ୱାଧୀନ ଭାରତର ଜଣେ ସ୍ୱନାମଧନ୍ୟ ଶିକ୍ଷାବିଦ୍ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଭାବରେ ଡକ୍ଟର ନବୀନ କୁମାର ସାହୁ ସୁପରିଚିତ। ୧୯୨୦ରେ ବରଗଡ଼ ଜିଲ୍ଲାର ବରପାଲିରେ ଏକ ଦରିଦ୍ର ମଧୁବୈଶ୍ୟ (ଗୁଡ଼ିଆ) ପରିବାରରେ ତାଂକର ଜନ୍ମ। ବଲାଂଗିର ପୃଥ୍ୱୀରାଜ ହାଇସ୍କୁଲରୁ ସେ ୧୯୪୦ରେ ମାଟ୍ରିକ ପାସ୍ କଲେ। ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବାରୁ ମହାରାଜାଂକ ସ୍ୱର୍ଣପଦକ ସେ ପାଇଥିଲେ। ପରିବାରର ଦରିଦ୍ର ଅବସ୍ଥା ତାଂକ ଉଚ୍ଚଶିକ୍ଷାରେ ଅଂତରାୟ ହୋଇଥିଲା। ସେତେବେଳକୁ ସେ ବିବାହ ମଧ୍ୟ କରିସାରିଥିଲେ। ତେଣୁ କଟକରେ ସି.ଟି. (ଶିକ୍ଷକ ଟ୍ରେନିଂ) ପାସ୍ କରି ବରଗଡ଼ ହାଇସ୍କୁଲରେ ସେ ଶିକ୍ଷକ ହେଲେ। ନିଜର ଉଚ୍ଚ ଆକାଂକ୍ଷା ଯୋଗୁ ବିଦ୍ୟା ଶିକ୍ଷାରେ ସେ ହେଳା କରିନଥିଲେ। ବରପାଲିରେ ହାଇସ୍କୁଲ ଖୋଲିଲା। ସେଠାରେ ସେ ଆସି ଯୋଗଦେଲେ। ଘରୋଇ ଭାବରେ ଆଇ.ଏ. ପାଶ୍ କଲେ। ଏହି ସମୟରେ ସେ ଓଡ଼ିଶାର ବିଖ୍ୟାତ ଇତିହାସ ଅଧ୍ୟାପକ ଶିକ୍ଷାପ୍ରେମୀ ସଂବଲପୁରର

ଘନଶ୍ୟାମ ଦାଶଂକର ଦୃଷ୍ଟିରେ ପଡ଼ିଲେ। ତାଂକଠାରୁ ପ୍ରେରଣା ପାଇ ନବୀନ ୧୯୪୭ରେ ରେଭେନ୍‌ସା କଲେଜରୁ ଇତିହାସରେ ଅନର୍ସ ନେଇ ପାସ୍ କଲେ। ଆଲ୍ଲାହାବାଦ ଯାଇ ଏମ୍.ଏ. ପଢ଼ିଲେ ଓ ଦୁଇବର୍ଷ ପରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ। ଏହି ସମୟରେ ତାଂକ ଗବେଷକ ମନୋବୃତ୍ତିର ପରିଚୟ ମିଳିଥିଲା। ୧୯୪୯ରେ ସେ କିଛିଦିନ ପାଇଁ କଟକର ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଥିବାବେଳେ ସରକାରୀ ଚାକିରି ପାଇଲେ। ବାରିପଦା ମହାରାଜା ପୂର୍ଣ୍ଣଚଂଦ୍ର ମହାବିଦ୍ୟାଳୟରେ ଇତିହାସ ଅଧ୍ୟାପକ ଭାବରେ ଯୋଗଦେଲେ। ଅଧ୍ୟାପନା ସହିତ ସେ ଗବେଷଣା ଚାଲୁ ରଖିଲେ ଓ କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନଳୀନାକ୍ଷ ଦତ୍ତଂକ ତତ୍ତ୍ୱାବଧାନରେ ଓଡ଼ିଶାରେ ବୌଦ୍ଧଧର୍ମ ଶୀର୍ଷକ ନିବଂଧ ଲେଖି ପି.ଏଚ୍‌ଡି ଡିଗ୍ରି ପାଇଲେ। ଏହି ପୁସ୍ତକଟି ଓଡ଼ିଶାରେ ବୌଦ୍ଧ ଧର୍ମର ଆବିଷ୍କାରକ ଭାବରେ ତାଂକୁ ଭାରତ ଓ ଆଂତର୍ଜାତିକ କ୍ଷେତ୍ରରେ ପରିଚିତ କରାଇଲା। ନିଜ ଗବେଷଣା ପୁସ୍ତକରେ ବୌଦ୍ଧ ଧର୍ମର ହୀନଯାନ, ମହାଯାନ, ଯୋଗାଚାର ଯାନ, ତଂତ୍ରଯାନର ମୌଳିକ ଆଲୋଚନା ଓ ତୀବତର ଧର୍ମ ଓ ସଂସ୍କୃତିକୁ ଓଡ଼ିଶାର ଅବଦାନର ଆଲୋଚନା କରି ସେ ବୌଦ୍ଧିକ ଜଗତରେ ନିଜକୁ ପ୍ରତିଷ୍ଠିତ କରାଇପାରିଲେ। ବୌଦ୍ଧ ଧର୍ମ ଓଡ଼ିଶାରେ ଦୀର୍ଘକାଳ ଥିଲେ ମଧ୍ୟ ଓ ଅନେକ ବୌଦ୍ଧ କୀର୍ତ୍ତି ଲୋକଲୋଚନକୁ ଆସିଥିଲେ ସୁଦ୍ଧା ସେଦିଗରେ ବୌଦ୍ଧିକ ଆଲୋଚନାର ଅଭାବ ଥିଲା। ଚଳିତ ଶତାବ୍ଦୀରେ ବୈଜ୍ଞାନିକ ପଦ୍ଧତିରେ ସତ୍ୟର ଅନୁଶୀଳନ କରି ଐତିହାସିକ ଘଟଣାକୁ ଯଥାଯଥ ଭାବରେ ଉପସ୍ଥାପନ କରିବାରେ ଡକ୍ଟର ନବୀନ କୁମାର ପ୍ରଥମେ ମୁଖ୍ୟ ଭୂମିକା ଗ୍ରହଣ କଲେ।

୧୯୬୦ରୁ ୧୯୬୭ ପର୍ଯଂତ ରାଜ୍ୟସରକାର, ଜିଲ୍ଲା ଗେଜେଟିଅର ସଂକଳନ ଓ ସଂପାଦନା ଦାୟିତ୍ୱ ଗ୍ରହଣ କଲେ। ୧୯୬୮ରେ ସଂବଲପୁରର ନବ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରି ଏହାର କୁଳସଚିବ ହେଲେ। ୧୯୭୦ରେ ସେ ଇତିହାସ ବିଭାଗର ମୁଖ୍ୟ ଓ ପ୍ରଫେସର ପଦକୁ ଉନ୍ନୀତ ହେଲେ। ୧୯୭୯ରେ ସେ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ କାର୍ଯଭାର ଗ୍ରହଣ କରିଥିଲେ। ଐତିହାସିକ ଗବେଷଣା କ୍ଷେତ୍ରରେ ସେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ। ଭାରତୀୟ ଐତିହାସିକ ରେକର୍ଡ କମିସନର ସେ ସଦସ୍ୟ ହେଲେ। ତାଂକ ଉଦ୍ୟମରେ ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ ଜର୍ନାଲ ପ୍ରକାଶିତ ହେଲା। ଏଥିରେ ଉଚ୍ଚକୋଟିର ଗବେଷଣାତ୍ମକ ପ୍ରବଂଧ ପ୍ରକାଶନ ଓ ଗବେଷଣାକୁ ଶୃଂଖଳିତ କରିବାକୁ ସେ ଉଦ୍ୟମ କରୁଥିଲେ। ଆଠଗୋଟି ଜିଲ୍ଲାର ଗେଜେଟିଏର ସେ ସଂପାଦନା କରିଛଂତି। ଏହା ସହିତ ଜନ ବିମ୍‌ସ ଷ୍ଟର୍ଲିଂଗ,

ହଂଟର ପ୍ରଭୃତି କେତେକ ପୁରାତନ ଐତିହାସିକମାନଂକର ବିବରଣୀର ସେ ସଂପାଦନା କରିଛଂତି ଓ ସେଥିରେ ନିଜେ ମଧ ସ୍ୱତଂତ୍ର ଭାବରେ ଓଡ଼ିଶା ଇତିହାସର ବହୁ ଜ୍ଞାତବ୍ୟ ତଥ୍ୟ ସନ୍ନିବେଶ କରିଅଛଂତି । ତାଂକର ଗବେଷଣା ପୁସ୍ତକ ମଧ୍ୟରେ Buddhisim in Orissa, A History of Orissa Police, Kharavela, Veera Surendra Sai, New Aspect of History of Orissa (ED), A History of Orissa Volume-I & Volume-II (ed) ଓଡ଼ିଶାରେ ବୌଦ୍ଧ ଧର୍ମ, ଓଡ଼ିଆ ଜାତିର ଇତିହାସ ପ୍ରଧାନ । ଯୁଗେ ଯୁଗେ ଭାରତୀୟ ନୌବାଣିଜ୍ୟ, ଜୟଦେବ ବହୁ ଐତିହାସିକ ପ୍ରତ୍ନତାତ୍ତ୍ୱିକ ଗବେଷଣା ଯୁକ୍ତ ନିବଂଧ ତାଂକର ପାଂଡିତ୍ୟର ପରିଚୟ ଦିଏ । ଓଡ଼ିଆ ଜାତିର ଇତିହାସ ପ୍ରଥମ ଖଂଡରେ କଳିଂଗର ପରିଚୟ, ଆଦିମ ମାନବ ଜାତି, ନଂଦ ରାଜତ୍ୱ, ମୌର୍ଯ୍ୟ ଶାସନାଧୀନରେ କଳିଂଗ, ମହାମେଘବାହନ ଖାରବେଳ, ପ୍ରାଚୀନ ଓ ମଧ୍ୟଯୁଗରେ ସଂଧିକାଳ, ଦ୍ୱୀପାଂତର କଳିଂଗ ଓ କଳିଂଗର ଭାଷା ପ୍ରଭୃତି ଆଲୋଚନା ଗୁଡ଼ିକ ସାର୍ଥକ ଇତିହାସ ଚର୍ଚ୍ଚାର ପରିଚୟ ଦିଏ । ସଂବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ସପ୍ତର୍ଷି ପତ୍ରିକାର ମୁଖ୍ୟ ସଂପାଦକ ଭାବରେ ସେ ଉକ୍ତ ପତ୍ରିକା ମାଧ୍ୟମରେ ଶିକ୍ଷା, ସଂସ୍କୃତି, ଭାଷା ସାହିତ୍ୟର ଗବେଷଣା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲେ । ତାଂକର ପଶ୍ଚିମ ଓଡ଼ିଶାର ଇତିହାସ ଓ ସଂସ୍କୃତି ଉତ୍କଳର ପରିଚୟ ଓ ତୋଷଳୀର ଭୌମ ରାଜବଂଶ ପରି ଗବେଷଣାତ୍ମକ ଗ୍ରଂଥ ଅପ୍ରକାଶିତ ରହିଗଲା । ବ୍ୟବସ୍ଥାପକ ମଧୁସୂଦନ ତାଂକରି କୃତି ।

ଜୟଦେବଂକ ସଂପର୍କରେ ତାଂକ ସଂପାଦନାରେ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ପ୍ରକାଶିତ ସ୍ମରଣିକାରେ ସେ ଜୟଦେବଂକର ଜନ୍ମପୀଠ ସଂକ୍ରାଂତରେ ଓଡ଼ିଶାର ଜୟ ବିଜୟ ଶିଳାଲେଖ, ଇତ୍ୟାଦି ବିଷୟରେ ଅନୁଶୀଳନ କରି ଜୟଦେବ ଓଡ଼ିଶାର ନୁହଂତି ବୋଲି ଭିନ୍ନ ମତକୁ ଛିନ୍ନ ଭିନ୍ନ କରିଅଛଂତି । ସୁଖର ବିଷୟ ଯେ ତାଂକ ମୃତ୍ୟୁ ପରେ ତାଂକର ଏହି ମତ ସର୍ବସ୍ୱୀକୃତି ଲାଭକରିଛି । ଇଂରାଜୀରେ ଲିଖିତ ଏହି ପୁସ୍ତକଟି ବହୁ ଜ୍ଞାତବ୍ୟ ତଥ୍ୟ ଯୋଗୁ ଗବେଷକ ମହଲରେ ବିଶେଷ ଆଦର ପାଇଅଛି । କଳିଂଗ ଯେ ପାଲି ଭାଷାର ଜନ୍ମଭୂମି ଏହା ସେ ନିଜ ପ୍ରକାଶିତ ପ୍ରବଂଧମାନଂକରେ ଦୃଢ଼ ଭାବରେ ପ୍ରମାଣିତ କରିଛଂତି । ଓଡ଼ିଶାର ସଂସ୍କୃତି, ପ୍ରାଚୀନ କୀର୍ତ୍ତି ପ୍ରଭୃତି ସଂପର୍କରେ ତାଂକର ଅର୍ଦ୍ଧ ଶତରୁ ଊର୍ଦ୍ଧ୍ୱ ପ୍ରବଂଧ ପ୍ରକାଶିତ ହୋଇଛି । ଲଂକା ସଂପର୍କରେ ଗବେଷଣା କରି ସେ ଲଂକାକୁ ଉଡ୍‌ଡୀୟନ ପୀଠର ଅଂତର୍ଗତ ବୋଲି ଦାବି କରି ନିଜ ମତର ସପକ୍ଷରେ ସୋନପୁର ରାଜା ସୋମେଶ୍ୱର ଦେବଂକ ତାମ୍ର ଶାସନର ଉଲ୍ଲେଖ କରିଛଂତି । ଭାରତ ବାହାରେ ସୋଭିଏଟ୍ ଋଷ ଓ ପୂର୍ବ ଇଉରୋପର ବହୁ ଦେଶରେ ଭ୍ରମଣ କାଳରେ ଓଡ଼ିଶାର ଓ ଭାରତ ବର୍ଷର ଇତିହାସ ସଂପର୍କରେ ବହୁ ପାଂଡିତ୍ୟ ପୂର୍ଣ୍ଣ

ବିବରଣୀ ଦେଇ ବିଦେଶରେ ସେ ଜାତିର ଗୌରବ ବୃଦ୍ଧି କରିଅଛନ୍ତି । ସଂବଲପୁର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟ ତାଂକରି ଉଦ୍ୟମରେ ପ୍ରତିଷ୍ଠିତ। ଓଡ଼ିଶାର ପ୍ରାଚୀନ ପୋଥି, ମୁଦ୍ରା, ଶିଳାଲେଖ ସବୁ ସଂଗ୍ରହ କରି ସେ ଏହି ସଂଗ୍ରହାଳୟରେ ସାଇତି ରଖିଛନ୍ତି । ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଖନନରେ ତାଂକର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ୧୯୪୭ରେ ଉତ୍ତର ପ୍ରଦେଶର କୋଶାଂବି, ୧୯୪୮ରେ ଭୁବନେଶ୍ୱର ନିକଟ ଶିଶୁପାଳଗଡ଼, ୧୯୫୫ରେ ଭୂଆଷୁଣୀ ପାହାଡ଼, ୧୯୫୭ରେ ଜୟଗଡ଼ ଭୂଖୋଦନ କାର୍ଯରେ ସେ ବିଶେଷ ଭୂମିକା ଗ୍ରହଣ କରିଥିଲେ। ଅମାପ ଜ୍ଞାନର ଅଧିକାରୀ ଥାଇ ନବୀନଚଂଦ୍ର ନିଜର ବିନୟ ଓ ଅନୁସଂଧିତ୍ସୁଙ୍କୁ ପ୍ରେରଣା ଦେବାରେ ଅଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ। ତାଂକର ତତ୍ତ୍ୱାବଧାନତାରେ ଇତିହାସ ଓ ସାହିତ୍ୟ (ଓଡ଼ିଆ ଓ ହିଂଦି ଉଭୟ)ରେ ସେ ଦିଗ୍‌ଦର୍ଶନ ଦେଇ ୨୦ଜଣରୁ ଊର୍ଦ୍ଧ୍ୱ ଗବେଷକଂକ ପି.ଏଚ୍.ଡି. ଉପାଧି ଅର୍ଜନରେ ସହାୟକ ଥିଲେ। ନିଜେ ମଧ୍ୟ ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍ ଅର୍ଜନ କରିଥିଲେ। ୧୯୬୪ରେ ଲିଖିତ ତାଂକର ଓଡ଼ିଶାର ଇତିହାସ ପ୍ରାଚୀନକାଳରୁ ଖ୍ରୀ ୫୦୦ ପର୍ଯଂତ ତାଂକର ପାଂଡିତ୍ୟର ନିଦର୍ଶନ ଓ ଏହା ଓଡ଼ିଆ ଜାତିକୁ ଅଂତର୍ଜାତୀୟ ସ୍ତରରେ ପରିଚିତ କରିବାକୁ ଯଥେଷ୍ଟ ଥିଲା। ତାଂକର ରଚନାଗୁଡ଼ିକରୁ ତାଂକର ଅସାଧାରଣ ଜ୍ଞାନର ସୁସ୍ପଷ୍ଟ ପରିଚୟ ମିଳିଥାଏ।

ଓଡ଼ିଆ ଜାତିର ଇତିହାସ ଗ୍ରଂଥର ଭୂମିକାରେ ସେ ଲେଖିଥିଲେ ପ୍ରତ୍ନତାତ୍ତ୍ୱିକ ବିଭବରେ ପରିପୂର୍ଣ ଏହି ରାଜ୍ୟର ଗୌରବମୟ ଅତୀତ ତିମିରାଛନ୍ନ ହୋଇପଡ଼ିଲେ ଭାରତ ବର୍ଷର ଇତିହାସ  ଯେ ବିକଳାଂଗ ହୋଇଯିବ ତାହା ସୁନିଶ୍ଚିତ। ସେଥିପାଇଁ ସେ ପଶ୍ଚିମ ଓଡ଼ିଶାର କଳାହାଂଡିର ଅସୁରଗଡ଼ ଖୋଦନ, ଅଂଗନଦୀ ଉପତ୍ୟକାର ମେହ୍ଛାମୁଂଡା ନିକଟରେ ଗଣିଆ ପାଲି ବୌଦ୍ଧ ବିହାରର ଅଂଶ ବିଶେଷର ଆବିଷ୍କାର ଓ ସୋନପୁର ନିକଟବର୍ତୀ ଅସୁରଗଡ଼ ଖୋଦନକରି ନୂତନ ତଥ୍ୟ ପାଇଁ ଓଡ଼ିଶା ଇତିହାସକୁ ସୁସଂକଳିତ କରିଅଛଂତି। ସେହିପରି ଭାବରେ କଳାହାଂଡିର ଗୁଡହାଂଡି ପାହାଡ଼ର ଚିତ୍ର, ଯୋଗୀ ମଠର ତାମ୍ର ସଭ୍ୟତା, କେଂଦୁଝରର ସୀତା ବିଂଝିଠାରେ ରାବଣ ଛାୟାର ଭିତ୍ତିଚିତ୍ର, ନୃସିଂହନାଥ ଗଂଧମାର୍ଦନ, ପରିମଳଗିରି ପାହାଡ଼ର ନାଗାର୍ଜୁନଂକର ବିଖ୍ୟାତ ବିହାର, କୋରାପୁଟର ଜଗମୁଂଡା ପାହାଡ଼ରେ ଧର୍ମକୀର୍ତ୍ତିଂକ ବିହାର, କେଂଦୁଝର ଜିଲ୍ଲାର ଆସନ ପାଟଠାରେ ଶିବପୂଜାର ସର୍ବ ପ୍ରାଚୀନ ନିଦର୍ଶନ, ବଲାଂଗିର ଜିଲ୍ଲାର ରାଣିପୁର ଝରିଏଲ ସୋମତୀର୍ଥ ଇତ୍ୟାଦି ବହୁ ଐତିହାସିକ ସ୍ଥାନ ଉପରେ ସେ ନୂତନ ତଥ୍ୟ ଆବିଷ୍କାର କରିପାରିଥିଲେ। ମହିମା ଧର୍ମ ଗବେଷଣା

ପରିଷଦର ସେ ସଭାପତି ଥାଇ, ମହିମା ଧର୍ମର ବିକାଶ ପାଇଁ ନିରବଚ୍ଛିନ୍ନ ଉଦ୍ୟମ କରିଥିଲେ। ତାଂକରି ଉଦ୍ୟମରେ ଭକ୍ତ କବି ଚୈତନ୍ୟ ଦାସ, ଓ ଚଂଦ୍ରମଣି ଦାସ ଆଲୋଚନା କ୍ଷେତ୍ରକୁ ଆସିପାରିଥିଲେ। ବରପାଲିଠାରେ କଲେଜ ପ୍ରତିଷ୍ଠା ତାଂକ ଉଦ୍ୟମର ଫଳ। ବହୁ ଶିକ୍ଷା ଓ ଧର୍ମ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ। ମାଟ୍ରିକ ସିଟି ଶିକ୍ଷକ ଭାବରେ କର୍ମଜୀବନ ଆରଂଭ କରି ପ୍ରଗାଢ଼ ଅଧ୍ୟବ୍ୟସାୟ ଜ୍ଞାନଲିପ୍ସା ଘେନି ସେ ବିଶ୍ୱବିଦ୍ୟାଳୟ କୁଳପତି ପଦରେ ଅଧିଷ୍ଠିତ ହୋଇପାରିଥିଲେ। ତାଂକଭଳି ଅସାଧାରଣ ଜ୍ଞାନ, ସ୍ମୃତି ଶକ୍ତି ଓ ବିନୟର ଅଧିକାରୀ ଆଂତର୍ଜାତିକ ସ୍ତରର ଐତିହାସିକ ଗବେଷକଂକୁ କୋଳରେ ଧାରଣ କରି ଓଡ଼ିଶା ଧନ୍ୟ ହୋଇଅଛି। ଜୀବନର ଶେଷ ପର୍ଯଂତ ସେ ଓଡ଼ିଶା ସରକାରଂକର ପ୍ରତ୍ନତାତ୍ତ୍ୱିକ ପରାମର୍ଶଦାତା ଥିଲେ। ଅପେକ୍ଷାକୃତ ଅଳ୍ପ ବୟସରେ ସେ ୧୯୮୫ ସେପ୍ଟେଂବରରେ ପରଲୋକ ଗମନ କଲେ। ତାଂକ ମୃତ୍ୟୁର ଦୁଇଦିନ ପୂର୍ବରୁ ଓଡ଼ିଶାର ରାଜ୍ୟପାଳ ବିଶ୍ୱଂବରନାଥ ପାଂଡେ ସଂବଲପୁରଠାରେ ବୀର ସୁରେଂଦ୍ରସାଏଂକ ପ୍ରତିମୂର୍ତ୍ତି ଉଦ୍‌ଘାଟନ ଅବସରରେମୌଳିକ ଗବେଷଣାତ୍ମକ ତାଂକ ରଚିତ ସୁରେଂଦ୍ରସାଏ ପୁସ୍ତକ ଉନ୍ମୋଚନ କରିଥିଲେ।



ଥାଉ ତାର ନାମ ଆଉ ଉଚ୍ଚପଦ
ଥାଉ ତାର ପଛେ ଅତୁଳ ସଂପଦ
ସବୁ ଅକାରଣ ସବୁ ବୃଥା ସିନା
ନ ବାଜିଲେ ହୃଦେ ଦେଶପ୍ରୀତି ବୀଣା।

— ଗଡ଼ନାୟକ



## ସର୍ବୋଦୟ କର୍ମୀ

# ମଦନମୋହନ ଓ ଅଲେଖ ପାତ୍ର

ବରଗଡ଼ର ସୁକୁଡ଼ା ଗ୍ରାମରେ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଗୋଟିଏ ସ୍ୱଚ୍ଛଳ ଚାଷୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ମଦନ ମୋହନ ସାହୁ। ତାଂକ ବାପା ସୋବନ ସାହୁ, ମା' ଥିଲେ ଯମୁନା ଦେବୀ। ଛୋଟ ଗାଁଟିରେ ପ୍ରାଥମିକ ବିଦ୍ୟାଳୟ ନଥାଏ। ମଦନମୋହନ ପାଖ ଗାଁ ସ୍କୁଲକୁ ଚାଲି ଚାଲି ଯାଇ ପାଠ ପଢୁଥିଲେ। ତାପରେ ବରପାଲି ମାଇନର ସ୍କୁଲ ଓ ଜର୍ଜ ହାଇସ୍କୁଲ ବରଗଡ଼ରେ ତାଂକ ଶିକ୍ଷା ଆରଂଭ ହୋଇଥାଏ। ହାଇସ୍କୁଲରେ ପଢ଼ିବା ବେଳେ ସେ ମହାତ୍ମା ଗାଂଧିଂକ ଚିଂତାଧାରା ଦ୍ୱାରା ପ୍ରଭାବିତ ହେଲେ। ଉତ୍ତମ ଛାତ୍ର ହୋଇ ସମାଜ ସେବା କରି ଦେଶର ସେବା କରିବା ତାଂକ ମନକୁ ପାଇଲା। ସେତେବେଳେ ଅସହଯୋଗ ଆଂଦୋଳନର ଯୁଗ। ମଦ ଗଂଜେଇ ଦୋକାନରେ ପିକେଟିଂ କରିବା ଆଦି କାମରେ ସେ ମିଶିଗଲେ। ପୋଲିସ ଦୃଷ୍ଟିରୁ ତାଂକୁ ଅଲଗା ରଖିବାକୁ ବାପମାଆ ତାଂକର ପାଠପଢ଼ା କିଛିଦିନ ବଂଦ ରଖିଲେ। କଂଗ୍ରେସ ଅସହଯୋଗ ଆଂଦୋଳନର ସବୁ ସଭାସମିତିରେ ସେ ଯୋଗ ଦେଉଥିଲେ। ଯାହା ଶୁଣୁଥିଲେ ବୁଝୁଥିଲେ ଦେଶର ହାନିଲାଭ ସବୁ ଲୋକମାନଂକୁ ସେ ଜଣାଇ

ଦେଉଥିଲେ। ସେ ଭାବିଲେ ଅକର୍ମା ହୋଇ କଅଣ କରିବେ। ପାଖ ଗାଁରେ ଅବଧାନି କଲେ। କିଛି ଦିନ କଟିଗଲା ପୁଣି ଆସି ଜର୍କ ହାଇସ୍କୁଲରେ ନାମ ଲେଖାଇଲେ। ମାଟ୍ରିକ୍ ପାସ୍‌କଲେ, ତାପରେ ଆଖପାଖ ସ୍କୁଲମାନଂକରେ କେତେ ବର୍ଷ ଶିକ୍ଷକତା କଲେ। ଶିକ୍ଷକ ଟ୍ରେନିଂ ଓ ଆଇ.ଏ. ମଧ୍ୟ ପାସ୍ କଲେ। ଛାତ୍ରମାନଂକୁ ଉଚିତ ଶିକ୍ଷା ଦେବା ସୁନାଗରିକ ଭାବରେ. ଗଢ଼ିବା ତାଂକର ଜନ୍ମଗତ ଗୁଣ ଥିଲା। ଅନ୍ୟ ଚାକିରି ତାଂକୁ ସେତେବେଳେ ମିଳିବା କଷ୍ଟ ନ ଥିଲା। ମାତ୍ର ଶିକ୍ଷକତା ବୃତ୍ତିକୁ ସେ ଆନଂଦରେ ଆଦରି ନେଲେ। ୧୯୩୪ରୁ ଶିକ୍ଷକତା କରି ଖୁବ୍ ଲୋକପ୍ରିୟତା ଅର୍ଜନ କଲେ। ଦେଶ ସ୍ୱାଧୀନ ହେଲା। ସରକାର ମୌଳିକ ଶିକ୍ଷା ଦେବାର ଯୋଜନା କଲେ। ମଦନ ମୋହନ ଏଥିରେ ଆଗ୍ରହ ପ୍ରକାଶ କରି ୧୯୪୯ରେ ୱାର୍ଧା ନିକଟ ସେବାଗ୍ରାମଠାରେ ତାଲିମ ନେଲେ। ୧୯୫୦–୫୧ରେ ବାଳମଂଦିର ଶିକ୍ଷୟିତ୍ରୀ ପ୍ରଶିକ୍ଷଣ କେଂଦ୍ରରେ ସେ ଶିକ୍ଷକ ହେଲେ। କିଛି ଦିନପରେ ଗ୍ରାମ ସହାୟକ ବିଦ୍ୟାଳୟର ସେ ଅଧକ୍ଷ ହେଲେ। ପାରମ୍ପରିକ ଶିକ୍ଷାଠାରୁ ଏହି ନୟି ତାଲିମ ଏକ ପ୍ରକାର ଅଲଗା ଥିଲା। ମଦନମୋହନ ପଦଯାତ୍ରା, ଶିବିର ଓ ସମ୍ମିଳନୀମାନ କରାଇ ସେଠାରେ କର୍ମୀମାନଂକୁ ନାନା ପ୍ରକାର ମୌଳିକ ତଥ୍ୟ ଓ ତତ୍ତ୍ୱଭିତ୍ତିକ ଶିକ୍ଷା ଦେଉଥିଲେ। ସେମାନେ ଯେପରି ଏହି ନୂତନ ଶିକ୍ଷାପ୍ରତି ଆକୃଷ୍ଟ ହେବେ ଏ ଦିଗରେ ସେ ପରିବେଶ ସୃଷ୍ଟି କରୁଥିଲେ। ସବୁ ପ୍ରକାର ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ ଥାଇ ସେ ଶିକ୍ଷକ ସହକର୍ମୀ ଛାତ୍ର ଓ ଅଭିଭାବକମାନଂକର ପ୍ରିୟ ହୋଇ ଉଠିଲେ। ଭୂଦାନ ଆଂଦୋଳନ ଓ ପରେ ସର୍ବୋଦୟ ଆଂଦୋଳନ ସହିତ ସେ ନିଜକୁ ଘନିଷ୍ଠ ଭାବରେ ସଂପୃକ୍ତ କଲେ। ପୂଜ୍ୟ ଗୋପବଂଧୁ ଚଉଧୁରୀ ମାଆ ରମାଦେବୀ ଓ ଆଚାର୍ଯ ହରିହରଂକର ସଂସ୍ପର୍ଶରେ ଆସି ସେ ସେମାନଂକର ନିରଳସ କର୍ମ ଓ ସେବା ଦ୍ୱାରା ପ୍ରଭାବିତ ହେଲେ। ଏହାକୁ ନୂତନ ସମାଜ ଗଠନର ଏକ ପଂଥା ବୋଲି ସେ ଗ୍ରହଣ କଲେ। ବିଭିନ୍ନ ସଂସ୍ଥା ତାଂକୁ କର୍ମକର୍ତା କରି ନେବାକୁ ଆଗ୍ରହୀ ହେଲେ। ୧୯୫୯ରୁ ୧୯୬୧ ପର୍ଯଂତ ସେ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସହ ସଂପାଦକ ଥିଲେ। ୧୯୬୧ରୁ ୧୯୭୦ ପର୍ଯଂତ ସେ ଗ୍ରାମ ସ୍ୱରାଜ ବିଦ୍ୟାଳୟ ଗୋପାଳବାଡ଼ିର ଅଧକ୍ଷ ଥିଲେ। ଏହି ସମୟରେ ସେ କର୍ମୀମାନଂକୁ ଗାଂଧି ଦର୍ଶନ, ଭୂଦାନ, ଗ୍ରାମଦାନ, ଗ୍ରାମ୍ୟ ଅର୍ଥନୀତି, ଗ୍ରାମ୍ୟ ସ୍ୱରାଜ୍ୟ, କୃଷି, ଗୋପାଳନ ଆଦିର ତତ୍ତ୍ୱମାନ ଶିକ୍ଷାଦେଇ ସେମାନଂକୁ ଗ୍ରାମ ସ୍ୱରାଜ ସ୍ଥାପନ କାର୍ଯରେ ଉଦ୍‌ବୁଦ୍ଧ କରିଥିଲେ। ମଦନମୋହନଂକ ପରାମର୍ଶ ସଂପୃକ୍ତ କର୍ମକର୍ତାମାନଂକ ପକ୍ଷରେ ଗ୍ରହଣୀୟ ଥିଲା। ୧୯୭୦ରୁ ୧୯୭୧ ଶାଂତିସେନା ଅଧ୍ୟକ୍ଷ, ୧୯୭୧ରୁ ୧୯୭୫ ପର୍ଯଂତ ଉତ୍କଳ ସର୍ବୋଦୟ ମଂଡଳର ସଭାପତି, ସର୍ବୋଦୟ ରିଲିଫ କମିଟିର ସଭାପତି ଓ

୧୯୭୭ରୁ ୧୯୮୦ ପର୍ଯ୍ୟନ୍ତ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସେ ସଭାପତି ଥିଲେ। ଖଦି ଓ ଗ୍ରାମୋଦ୍ୟୋଗ କମିସନର ସେ ପରାମର୍ଶଦାତା ଥାଇ ଗ୍ରାମସ୍ୱରାଜ ସ୍ଥାପନା କାର୍ଯ୍ୟକାରୀ କରିବାରେ ଜନମତ ସୃଷ୍ଟି କରିବାକୁ ଉଦ୍ୟମରତ ଥିଲେ। ଏହା ବ୍ୟତୀତ ସର୍ବସେବା ସଂଘ, ଗାଂଧି ସ୍ମାରକ ନିଧି, ଉତ୍କଳ ନବଜୀବନ ମଂଡଳ, ସର୍ବୋଦୟ ପତ୍ରିକା, ଆଦିମ ଜାତି ସଂଘ, ଲୋକ ସେବକ ମଂଡଳ ଆଦି ବହୁତ ଗାଂଧି ଦର୍ଶନରେ ବିଶ୍ୱାସୀ ଅନୁଷ୍ଠାନମାନଂକ ସହିତ ସେ ସକ୍ରିୟ ଭାବରେ ସଂପୃକ୍ତ ଥିଲେ।

ମାତ୍ର ବିନୋବା ଭାବେଂକର ଭୂଦାନ ଆଂଦୋଳନକୁ ସଂବଲପୁର ଜିଲ୍ଲାରେ ସଫଳ କରାଇବାରେ ସେ ସ୍ମରଣୀୟ ହୋଇ ରହିଗଲେ। ୧୯୫୩ରେ ସେ ପଦ୍ମପୁରର ଜମିଦାରଂକୁ ପ୍ରଭାବିତ କରାଇ ତାଂକ ପାଖରୁ ଏକ ହଜାର ଏକର ଜମି ଭୂଦାନ ଆଂଦୋଳନରେ ଆଣି ଭୂମିହୀନ ପ୍ରଜାମାନଂକୁ ବଂଟନ କରିବାରେ କୃତକାର୍ଯ୍ୟ ହେଲେ। ଭୂଦାନ କାର୍ଯ୍ୟରେ ସେ ସର୍ବୋଦୟ ନେତା ପୂଜ୍ୟ ଗୋପବଂଧୁ ଚଉଧୁରୀ ଓ ଆଚାର୍ଯ୍ୟ ହରିହରଂକ ସହିତ ସଂବଲପୁର ଓ ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନ ଗସ୍ତକରି ବହୁତ ଭୂଦାନ ଓ ଗ୍ରାମଦାନ ଜମି ସଂଗ୍ରହ କରି ପାରିଲେ। ମଦନମୋହନ ଜଣେ ଉତ୍ତମ ଛାତ୍ର, କୃତୀ ଶିକ୍ଷକ, ଶୃଂଖଳିତ ଆଦର୍ଶ ଲୋକପ୍ରିୟ ସଂଗଠକ ଓ ନିରଳସ କର୍ମୀ ଥାଇ ଭୂଦାନ ପାଇଁ ଚାରିଆଡ଼େ ବୁଲି ଭୂମି ସଂଗ୍ରହ କଲେ। ଜମି ବଂଟନ ହେଲା। ପଟ୍ଟା ମିଳିଲା, ଜମିର ଉନ୍ନତି ନିମିତ୍ତ ଅର୍ଥ ବ୍ୟବସ୍ଥା କରାଗଲା ଓ ଏହା ଫଳରେ ଗ୍ରାମ ସ୍ୱରାଜ୍ୟ ସ୍ଥାପନର ପରିକଳ୍ପନା କାର୍ଯ୍ୟକାରୀ ନିମିତ୍ତ କ୍ଷେତ୍ର ପ୍ରସ୍ତୁତ କରାଗଲା।

୧୯୬୫ ବେଳକୁ ସେ ବୋଡ଼ାସଂବର ପଦ୍ମପୁରରେ ଉତ୍କଳ ଖଦିମଂଡଳ ପ୍ରତିଷ୍ଠାରେ ଲାଗିପଡ଼ିଲେ। ତାଂକ ସହିତ ଆଉ ଜଣେ ସର୍ବୋଦୟ କର୍ମୀ ଅଲେଖ ପାତ୍ର ମିଶିଲେ। ସେ ପୁରୀ ଜିଲ୍ଲା ନିମାପଡ଼ା ଅଂଚଳର ଲୋକ। ଭାରତ ଛାଡ଼ ଆଂଦୋଳନରେ ଜେଲ ଖଟିଥିଲେ। ଜେଲରୁ ଖଲାସ ହୋଇ ସେ ଗାଂଧିଜିଂକର ରଚନାତ୍ମକ କାର୍ଯ୍ୟ ବିଶେଷକରି ଖଦି କାମରେ ଆଗ୍ରହୀ ଥିଲେ। ସେବାଗ୍ରାମ ଯାଇ ତାଲିମ ନେଲେ। ସେଠାରେ କୁଷ୍ଠରୋଗୀଂକର ସେବାରେ ସେ ମନ ଦେଲେ। ବିନୋବା ଭାବେଂକ ଆଶ୍ରମରେ କିଛି ସମୟ କଟାଇ ୧୯୫୦ରେ ଓଡ଼ିଶାକୁ ଫେରିଆସି ବଲାଂଗିର ଜିଲ୍ଲାର ସଇଁତଲା ଥାନା କେରୋମୁହାଣ ଗ୍ରାମରେ ଗୋଟିଏ କେଂଦ୍ର ସ୍ଥାପନ କଲେ। ଏହା ଭିତରେ ସେ ସଂବଲପୁରର କୁଷ୍ଠରୋଗ ବିଶେଷଜ୍ଞ ଡ. ଆଇଜାକ ସାଂତରାୟଂକ ହାତିବାରି ଆଶ୍ରମରେ କୁଷ୍ଠ ରୋଗୀ ସେବା ସଂପର୍କରେ ଶିକ୍ଷା ଗ୍ରହଣ କରି ଥାଆଂତି।

ବଲାଂଗିର ଜିଲ୍ଲାରେ ସେ ଅନୁନ୍ନତ ଆଦିବାସୀ ଅଂଚଳରେ ଲୋକମାନଂକ ମଧ୍ୟରେ ଖଦି ପ୍ରସାର, କୁଷ୍ଠରୋଗୀ ସେବା, ପ୍ରୌଢ଼ଶିକ୍ଷା ଓ ନିଶା ନିବାରଣ ଲୋକପ୍ରିୟ କରିବାକୁ ଉଦ୍ୟମ କରୁଥିଲେ। ଏହି ସମୟରେ ଦେଶରେ ଭୂଦାନ ଆଂଦୋଳନ ଆରଂଭ ହେଲା। ଆଦିବାସୀମାନେ ସାହୁକାରମାନଂକର ଶୋଷଣ ଫଳରେ ନିଜ ଜମିରୁ ଉଚ୍ଛେଦ ହେଉଥାଂତି। ଭୂଦାନ ନେତାମାନଂକ ସହିତ ଅଲେଖ ବୁଲିବାରେ ଲାଗିଲେ। କୋରାପୁଟର ରାୟଗଡାକୁ ସେ କର୍ମକ୍ଷେତ୍ର କରି ବାଛିଲେ। ଦେଶରେ ଖଦି ଗ୍ରାମୋଦ୍ୟୋଗ କମିସନ ଶାଖା ସ୍ଥାପିତ ହେଲା। ଜଣେ ଭୂଦାନ ସଂଗଠକ ଆନା ସାହେବ ସହସ୍ରବୁଦ୍ଧେ ଏହାର ଅଧ୍ୟକ୍ଷ ହେଲେ। କୋରାପୁଟ ଜିଲ୍ଲାରେ ବୁଲିବା ବେଳେ ସେ ଅଲେଖଂକୁ ଜାଣିଥିଲେ। ତାଂକର ସାହାଯ୍ୟରେ ଅଲେଖଂକୁ ଏହି କମିସନରେ ଗୋଟିଏ ସଂଗଠକ ପଦ ମିଳିଗଲା। ବିନୋବା ଭାବେଂକ ସଂବଲପୁର ଜିଲ୍ଲାରେ ୨ୟବାର ଗସ୍ତ ସମୟରେ ସେ ତାଂକ ସହିତ ରହିଥିଲେ। ସର୍ବୋଦୟ ଚିଂତାଧାରାର ପ୍ରବକ୍ତା ଗାଂଧିବାଦୀ ମଦନମୋହନ ସାହୁଂକର ଭଉଣୀଂକୁ ଅଲେଖ ବିବାହ କଲେ। ଖଦି କମିସନର ସଂଗଠକ ଥାଇ ସେ ୧୯୬୭ରୁ ୧୯୭୦ ପର୍ଯଂତ ପଦ୍ମପୁରରେ ଏକ କେଂଦ୍ର ସ୍ଥାପନ କରି ଖଦି ଉତ୍ପାଦନ ଘଣାରେ ସୋରିଷତେଲ, ସାବୁନ ତିଆରି, କୃଷି ଗୋପାଳନ ସହିତ ସେଠାରେ ଧାନ ଗହମ, ବିଭିନ୍ନ ପନିପରିବା ଆଦି ଚାଷ ଶିକ୍ଷାଦେଇ ଲୋକମାନଂକୁ ଆଦର୍ଶ କୃଷକ ହେବାରେ ଉତ୍ସାହିତ କରିଥିଲେ। ଖଦି କମିସନର କର୍ମକର୍ତାଂକ ସହିତ ତାଂକର ମତଭେଦ ହେବାରୁ ସେ ଚାକିରିରୁ ଇସ୍ତଫା ଦେଇ ସଂବଲପୁରର ପଦ୍ମପୁର ନୃସିଂହନାଥକୁ ଚାଲି ଆସିଲେ। ସେଠାରେ ନୃସିଂହନାଥ ଖଦି ମଂଡଳ ନାମକ ଏକ ସଂସ୍ଥା ଗଢ଼ାହେଲା। ମଦନମୋହନ ଓ ଅଲେଖ ଏହାର କର୍ମକର୍ତା ଥିଲେ। ସରକାରଂକଠାରୁ କିଛି ଜମି ମଧ ପଟ୍ଟା ମିଳିଲା। ସେମାନେ ବୁଦବୁଦିଆ ଜଂଗଲ ସଫା କଲେ। ଜଳସେଚନର ସୁବିଧା କରାଇଲେ ଓ ୧୯୭୧ରେ ସେଠାରେ ନିସର୍ଗ ନିବାସ ନାମରେ ଏକ ଆଶ୍ରମ ପ୍ରତିଷ୍ଠା କଲେ। ବାହାରୁ ଅର୍ଥ ସାହାଯ୍ୟ ନ ଆଣି କୌଣସି ରାସାୟନିକ ସାର ବା କୀଟନାଶକ ଔଷଧ ପ୍ରୟୋଗ ନକରି କେବଳ ଗୋବର ଖତ କଂପୋଷ୍ଟ ଜୈବିକ ସାର ବ୍ୟବହାର କରି କୃଷି କାର୍ଯ କରିବା ଓ ଲାଭ ପ୍ରଦ ଭାବରେ ଫସଲ ଅମଳ କରିବା ଏହି ପ୍ରୟୋଗ ଶାଳାର ବିଶେଷତ୍ୱ ଥିଲା। ମଦନମୋହନ ଏଠାରେ ୧୯୮୧ରୁ ୧୯୯୧ ପର୍ଯଂତ ରହି ଏହି କାର୍ଯ ତତ୍ତ୍ୱାବଧାନ କଲେ। ଭଗିନୀପତି ଅଲେଖ ତାଂକୁ ଏଥିରେ ସହାୟକ ହେଲେ।

ପରବର୍ତୀ କାଳରେ ବାଲକୋ ବିରୋଧୀ ଆଂଦୋଳନ, ଗଂଧମାର୍ଦନ ସୁରକ୍ଷା ପରିଷଦ ସହିତ ମଦନମୋହନ ସଂପୃକ୍ତ ହୋଇ ଆଂଚଳିକ ଶିଳ୍ପ ପ୍ରତିଷ୍ଠାର ଘୋର

ବିରୋଧ କରିଥିଲେ। ସେ ୧୯୩୮ରେ ଗୌରୀଦେବୀଂକୁ ବିବାହ କରିଥିଲେ ଓ ୨ ବରଷ ପରେ ପିତାଂକ ମୃତ୍ୟୁ ହେବାରୁ ଜମିବାଡ଼ି ସହିତ ଯୁଗ୍ମ ପରିବାର ଦାୟିତ୍ୱ ନିଜ ସ୍ତ୍ରୀଂକୁ ସମର୍ପିଦେଇ ଯାଯାବର ଜୀବନ ଯାପନ କରୁଥିଲେ। ୧୯୯୮ରେ ସଂବଲପୁରର ଶାସନ ଗ୍ରାମରେ ନିଜ ପୁତ୍ରଂକ ପାଖରେ ତାଂକର ମୃତ୍ୟୁ ହେଲା। ଅଲେଖ ଅର୍ଥନୀତିରେ ସରକାରଂକର ଉଦାରୀକରଣ ଓ ଜଗତ୍‌କରଣ ଅର୍ଥନୀତିର ବିରୋଧ କରୁଥିଲେ। ନର୍ମଦା ବଚାଓ ଆଂଦୋଳନ ଟେହେରି ଗରବାଲ ବଂଧ ବିରୋଧୀ ଆଂଦୋଳନ, ଆଇଓଡିନ ଲୁଣ ପ୍ରଚଳନ ବିରୋଧ ଆଦି ଜନ ଆଂଦୋଳନରେ ଅଲେଖ ଓଡ଼ିଶା ବାହାରକୁ ଯାଇ ଭାଗ ନେଉଥିଲେ। ତାଂକର ଦୃଢ଼ ବିଶ୍ୱାସ ଥିଲା କେବଳ ଗାଂଧିବାଦୀ ଅର୍ଥନୀତି ଦ୍ୱାରା ଦେଶର ଅର୍ଥନୀତିର ଉନ୍ନତି ସଂଭବ ହେବ ଓ ଏହି ଉଦ୍ଦେଶ୍ୟରେ ସେ ନିଜର ସମସ୍ତ ଶକ୍ତି ଓ ସମୟ ବ୍ୟୟ କରୁଥିଲେ। ଛଅସ୍ତରି ବର୍ଷ ବୟସରେ ୧୯୯୯ ନଭେଂବରରେ ନିଜ ନିସର୍ଗ ନିବାସରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ।





# ଗଣକବି
# ପଦ୍ମଲୋଚନ ଗଡ଼ତିଆ

ଦେଶ ଭାଷାରେ ମୁଁ ଗୀତ ରଚିଲଇ ସବୁଂକୁ ବୁଝିବା ପାଇଁ
ଏଥକୁ ମଂଦ ବୋଲି କେହି ନ ବୋଲିବ ଦୋଷ ମୋର କିଛି ନାହିଁ ।

ଯେଥୁ ଭାବ ରସ ସୁଜନେ ଶୁଣିବ ଭାଷାର କାର୍ଯ କିସ ।
ପଣସ ଉପରେ କଣ୍ଟକ ଭିତରେ ପୁରିତ ଅମୃତ ରସ ।

*(ନରସିଂହ ସେଣ ପରିମଳ କାବ୍ୟରୁ)*

୧୯୨୮ ନଭେଂବର ମାସରେ ପିତା ନୃପରାଜ ଓ ମାତା ସୁଭଦ୍ରାଂକର ପୁତ୍ର ଭାବରେ ପଦ୍ମଲୋଚନ ଜନ୍ମଗ୍ରହଣ କରିଥିଲେ । ସେ ବାପମାଆଂକର ଗେହ୍ଲା ପୁଅ । ବରପାଲିରେ ସପ୍ତମ ଶ୍ରେଣୀ ପର୍ଯଂତ ପଢ଼ି ପଦ୍ମଲୋଚନ ପଢ଼ା ଛାଡ଼ିଦେଲେ । କିଛିଦିନ ଶିକ୍ଷକ ହେଲେ । ମାତ୍ର ନିଜର ଚାଷବାସ କାମ ତଦାରଖ କରିବାକୁ ଚାକିରି ଛାଡ଼ି ଦେଲେ । ତାଂକର ଅନେକ ଗୁଣ ମଧ୍ୟରେ ସେ ଥିଲେ ବିଦ୍ୟା ଅନୁରାଗୀ ଓ ନିଜେ କୁସ୍ତି କସରତ କରି ଖଂଡା ତରବାରୀ ବନାଟି ଚାଳନାରେ ଧୁରଂଧର ଥିଲେ । ବରପାଲିରେ

ପ୍ରତିବର୍ଷ ଶୀତଳ ଷଷ୍ଠୀ ଯାତ୍ରା ହୁଏ। ନିଜ ଯୌବନ ଅବସ୍ଥାରେ ସେ ଏହି ଉତ୍ସବରେ ନିଜର ଚିତ୍ତାକର୍ଷକ ଶାରୀରିକ କୁସ୍ତି କସରତ ଦେଖାଇ ଲୋକମାନଙ୍କର ମନ କିଣିନେଇ ପାରୁଥିଲେ। କବିତା ଲେଖିବା ଅନେକ ଦିନରୁ ଆରଂଭ କରିଥିଲେ। ୧୯୨୨ ବେଳକୁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ। ସମାଜରେ ଦୁର୍ବଳ ଶ୍ରେଣୀ ପ୍ରତି ଅତ୍ୟାଚାର ଅନ୍ୟାୟ ଓ ଶୋଷଣ ତାଂକ ମନରେ ଗଭୀର ଆଘାତ ଆଣୁଥିଲା ନିଜର ମନୋଭାବ ସେ କବିତା ମାଧ୍ୟମରେ ପ୍ରକାଶ କରୁଥିଲେ। ନିଜର କବିତା ସେ ଆବୃତ୍ତି କରି ଲୋକମାନଂକୁ ଶୁଣାଇ ନିଜେ ଆନଂଦ ପାଇବା ସହିତ ସେମାନଂକ ମନରେ ଦଳିତ ଶୋଷିତ ଓ ଦୁଃଖୀରଂକିଂକ ପ୍ରତି ସହାନୁଭୂତି ଆଣୁଥିଲେ। ଲେଖନୀ ଚଳାଇବା ସହିତ ନିଜେ ମଧ୍ୟ ଅଭିନୟ କଲେ। କୃଷ୍ଣଗୁରୁ ସଂଘର କୀର୍ତନ ଜିଲ୍ଲା ତମାମ ଲୋକପ୍ରିୟ। ସେ କେବଳ ଝିଅମାନଂକୁ ନେଇ ଗୋଟିଏ କୃଷ୍ଣଗୁରୁ କୀର୍ତନ ମଂଡଳୀ ଗଠନ କଲେ। ଏହା ଖୁବ ଲୋକପ୍ରିୟ ହେଲା। ବରପାଲି, ଭଟଲି, ଭେଡ଼େନ ଛଡ଼ା ସେମାନଂକର କଳା ବଲାଂଗିର ଜିଲ୍ଲାର ରାମପୁର, ବଡ କରଲେ ଆଦି ଗ୍ରାମମାନଂକରେ ପ୍ରଦର୍ଶିତ ଓ ପ୍ରଶଂସିତ ହୋଇଥିଲା। ଗୋବିଂଦଚଂଦ୍ର ସନ୍ୟାସ ନାମରେ ସେ ଏକ ଗୀତାଭିନୟ ପ୍ରକାଶ କଲେ। ଓଡ଼ିଆ ଲୋକଗୀତ 'ଟୀକା ଗୋବିଂଦଚଂଦ୍ର' ଅନୁସରଣରେ ଏହା ରଚନା କରାଯାଇଥିଲା ଏହାର ଭାଷା ଓ ଭାବ ଅଭିନୟକୁ ଖୁବ ଲୋକପ୍ରିୟ କରାଇ ପାରିଥିଲା। କେତେଜଣ ପାଲିଆଂକୁ ଧରି ଦାସକାଠିଆ ଠାଣିରେ ସେ ଗ୍ରାମେ ଗ୍ରାମେ ବୁଲି ଏହାର ଅଭିନୟ ପ୍ରଦର୍ଶନ କରାଉଥିଲେ।

ଶ୍ରୀମଦ ଭାଗବତ ଓ ଗଂଗାଧର ସାହିତ୍ୟ ଚର୍ଚ୍ଚାରେ ସେ ବିଶେଷ ଧ୍ୟାନ ଦେଲେ। କବି ଗଂଗାଧରଂକର ଅଧିକାଂଶ କବିତା ତାଂକର କଂଠସ୍ଥ ଥିଲା। ଏସବୁ ସରଳ ଓ ଗ୍ରାମ୍ୟ ଭାଷାରେ ଲୋକମାନଂକୁ ବୁଝାଇ ସାହିତ୍ୟର ମହାନ ଭାବ ଓ ଉଚ୍ଚ ଆଦର୍ଶକୁ ସେ ସାଧାରଣ ଜନ ସମାଜରେ ଲୋକପ୍ରିୟ କରାଇ ପାରିଲେ। ନିଜର ରଚନା ମାନ ପ୍ରକାଶିତ ହେଲା। ଲୋକମାନଂକର ଆଦର ପାଇଲା ଓ ତାଂକୁ ସାହିତ୍ୟକାର ଭାବରେ ସୁଖ୍ୟାତି ମଧ୍ୟ ଆଣିଲା । ଏହା ଭିତରେ ମହିଷାସୁର ବଧ, କନକଚଂପା, ଗୋବିଂଦ ଚଂଦ୍ର ସନ୍ୟାସ, କର୍ଣ, ହରିଶ୍ଚଂଦ୍ର, ଚଂଦ୍ରହାସ, ସାବିତ୍ରୀ ସତ୍ୟବାନ ଗୀତିନାଟ୍ୟ ବିଶେଷ ସଫଳତା ହାସଲ କରିଥିଲା। ଅଜାମିଲ, ଲକ୍ଷ୍ମୀଲୀଳା, ଅନଂତବ୍ରତ, ସୁଦାମା ଦାରିଦ୍ର୍ୟଭଂଜନ ନାଟକ, ଛପା ନହୋଇ ରହିଗଲା। ଅପ୍ରକାଶିତ ରଚନା ମଧ୍ୟରେ ଚଷା ଦୁଃଖର କଥା ୧୯୬୪-୬୫ରେ ନିଜ ଦଳର ପ୍ରଚାର ପାଇଁ ସେ ରଚନା କରିଥିଲେ। ମନଦୁଃଖ ଚଉତିଶା ୧୯୮୬ରେ ମଧ୍ୟ ରଚିତ ହୋଇଥିଲା। ପଦ୍ମଲୋଚନଂକର

ହୃଦୟରେ ଚାଷୀ ମୂଲିଆଂକର ଅଂତର୍ବେଦନା ଝଂକୃତ ହୋଇ ଉଠୁଥିଲା । ତେଣୁ ସ୍ୱତଃ ପ୍ରବୃତ୍ତ ହୋଇ ସେ ନିଜ ମନୋଭାବ ଏଥିରେ ପ୍ରକାଶ କରୁଥିଲେ। ମନଦୁଃଖ ଚଉତିଶାରେ ସେ ଲେଖିଛଂତି :-

ଜଠର ଅଗ୍ନି ଜଳି କରୁ ହୁଂକାର
ଜାତୀୟ ହେଉ ଖାଦ୍ୟ ଶସ୍ୟ ବେପାର।
ଯାଆନ୍ତୁ ଚାଲି ପୁଂଜିପତି ବେପାରୀ
ଜାତୀୟ ହେଉ ସବୁ ମିଲ ଫାକ୍ଟରୀ।

ଚଷାକୁ ଉପଯୁକ୍ତ ନ୍ୟାୟ ମିଳୁ ନ ଥିବା ଅନୁଭବ କରି ସେ ଲେଖିଲେ-

''ଗାଁ ର ବିବାଦ ଗାଁରେ ମେଂଟିବ
ଗ୍ରାମବାସୀଂକି ବୁଝାଇ
କଳି ତକରାଳ ମାଲି ମକଦ୍ଦମା
ଗାଁରୁ ନ ପାରେ ଯାଇ''।

*(ନିର୍ବାପିତ ଅଗ୍ନିଶିଖା)*

ସୁଖବାସୀ ଖଟିଖିଆ ମଜୁରିଆଂକ ଦୁଃଖରେ ସହାନୁଭୂତିଶୀଳ ହୋଇ ସେ ଗାଇଲେ-

''ଭୂମିହୀନ ମଜୁରିଆ, କାମ ଖୋଜି ଖୋଜି ଆହା
ତିନିଦିନେ ଥରେ, ଚୁଲି ଜଳଇ ଘରେ,
ସେ ଦୁଃଖ କଲେ ସ୍ମରଣ, ତରଳିଯିବ ପାଷାଣ
ତା ପିଂଜରା ହାଡ଼ ଦେଖି ଛାତି ଶିହରେ
ସତେ ପ୍ରେତ ଆସେ କି ଚାଲି
ମଶାଣି ଭୂଇଁ ସବୁକୁ କରିଣ ଖାଲି''॥

*(ଭାରତ ମାଆ)*

ଅନ୍ୟାୟ ଅତ୍ୟାଚାର ବିରୋଧରେ ସଂଗଠିତ ହୋଇ ସଂଗ୍ରାମ କରିବାକୁ ସେ ପୁଣି ଲେଖିଥିଲେ -

ଚାକିରିଆ ବେପରିଆ ହୁଁ ପଦେ ଲେଖି
ହଇ ପାରୁଛନ୍ ମେଲ୍
ଚାଷୀଭାଇ ତୋର ମେଲ୍ ହେବାରକେ
ଘାଏ ନାଇଁଥାଏ ବେଲ୍ ?
ହେତୁ ଚେତା ଟିକେ କର୍ ଭାଇ
ତୋର୍ କାମ କମାନି ସବ୍ଲେ
କେନାଲ୍ ତଲିଆ ଚାଷୀ ଭାଇ ମୋର୍
ଶୁନ୍ ଥରେ କାନ୍ ଡେରିରେ''।

*(କେନାଲ ତଳିଆ ଚାଷୀଭାଇ)*

ଶତାଧିକ କବିତା ସହିତ ୧୦/୧୨ଟି ଚଉତିଶା ସେ ଲେଖି ଛାଡ଼ିଗଲେ। ନିଜର ଅପ୍ରକାଶିତ ରଚନା ପାଇ କ୍ଷୋଭ ନ କରି କହିଥିଲେ ''ଯେନଠାନେ ଝନ୍‌କର୍ ମୁହଁନୁ ଆର ଝନେକର ମୁହୁଁତକ ଯାଇ ପାରୁଛେ ମୋର ଲେଖା, ସେଠାନେ ଆକାଶ ବାଣୀର ଆବଶ୍ୟକତା କାଣା ଆଏ ?'' ନିଜର ନମ୍ରତା, ସାଧୁତା, ସ୍ପଷ୍ଟବାଦିତା, ଭଦ୍ରୋଚିତ ବ୍ୟବହାର ଓ କର୍ତବ୍ୟ ନିଷ୍ଠା ଫଳରେ ସେ ବିଶେଷ ଲୋକପ୍ରିୟ ଥିଲେ। ୧୯୯୮ ଜୁଲାଇ ୨୬ରେ ପ୍ରତିଦିନ ପରି ନିଜର ସମସ୍ତ ନିତ୍ୟକର୍ମ ସମାପନ କରି ଶୟନ କକ୍ଷରେ ମାତ୍ର ସତୁରି ବରଷ ବୟସରେ ସେ ଇହଲୀଳା ସାଂଗକଲେ। ମୃତ୍ୟୁ ପୂର୍ବରୁ ଜିଲ୍ଲାର ସ୍ଥାନୀୟ ଅନେକ ସାରସ୍ୱତ ସାହିତ୍ୟ ସମାଜ ତାଂକୁ ସଂବର୍ଦ୍ଧିତ କରିଥିଲେ। ସେ କହୁଥିଲେ –

''ଜୀବନଟା କିଛି ନୁହଁ ସେରେ ବୁଆ। ଅଛେ ଅଛେ ବଲୁଛେଁ ହେଲେ ଆର ଛନ୍‌କେ ନାଇଁ ଥାଏନା। ଗୁଟେ ମେଜିକ୍ ବାଲାର ଚେରେ (ଚଢ଼େଇ) ବଲି କହଲେ ଜୀବନ କେ କିଛି ଭୁଲ୍ ନେଇଁ ହୁଏ। ମେଜିକ ବାଲାଟା ହେଉଛେ ଉପରବାଲା। ତାର ଇଛା ଜାନି ଭ ଜୀବନ ଚେରେଟା ଫୁର୍ ହୋଇଯିବ'' ସେଇଆ ମଧ୍ୟ ହେଲା।

''ପାନ୍‌ତି ମାଏଝିର କାଏଁ ଜଲିଆ ଖୁସା
ହଲିଆ ମୁନୁସ୍‌ର କାଏଁ ବେହେରନ୍ ବସା।''





# ସର୍ବହରା କବି

# ରାଧାବଲ୍ଲଭ

ରାଧାବଲ୍ଲାଭ ମିଶ୍ରଂକ ଜନ୍ମ ୧୯୩୫ ଫାଲ୍‌ଗୁନ ଦୋଳ ଦଶମୀ ଦିନ। ତାଂକ ଅଜା ବାଲୁକେଶ୍ୱର ମିଶ୍ର ବରଗଡ଼ ହାଇସ୍କୁଲର ପ୍ରତିଷ୍ଠାତାମାନଂକ ମଧ୍ୟରୁ ଜଣେ ଥିଲେ। ସେ ମଧ୍ୟ ଜଣେ ଜାତୀୟତାବାଦୀ କଂଗ୍ରେସ ନେତା ଥିଲେ। ପିଲାଦିନୁ ରାଧାବଲ୍ଲାଭ ମାମୁ ଅଜାଂକଠାରୁ ମାନବ ସେବା ହିଁ ମାଧବ ସେବାବୋଲି ଧରିଥିଲେ। କବିତା ପ୍ରତି ତାଂକର ଜନ୍ମଗତ ଦୁର୍ବଳତା ରହିଲା। ଥିଲାଘର ଗୌଂତିଆର ପୁଅ, ମାତ୍ର ସେ ପ୍ରଥମେ ଖଟିଖିଆ ମଜୁରିଆଂକ କଥା ଚିଂତାକଲେ। ୧୯୫୧ରେ ସେ ବରଗଡ଼ ଚର୍ଚ୍ଚ ହାଇସ୍କୁଲରୁ ମାଟ୍ରିକ ପାସକଲେ। ଉଚ୍ଚ ଶିକ୍ଷାପାଇ କଲିକତା ଗଲେ। ସେଠାରେ ସେଂଟ୍‌ପଲ କଲେଜରେ ବିଜ୍ଞାନ ପଢ଼ିବା ସମୟରେ ଦେଶରେ ତେଲେଂଗାନା ଅଂଚଳରେ ଭୂମୀହୀନମାନଂକର ସଂଘର୍ଷ ଚାଲିଥାଏ। ବିରୋଧୀ ଦଳ କମ୍ୟୁନିଷ୍ଟମାନେ କଲିକତାରେ ନିଜର ଆଡ୍‌ଡା ଜମାଇ ଥାଆଂତି। ଶ୍ରେଣୀ ସଂଘର୍ଷକୁ କିପରି ଉତ୍କଟତର କରାଯିବ ଏଇଆ ସେମାନଂକର ଧ୍ୟେୟ ଥାଏ। ରାଧାବଲ୍ଲଭ ସେମାନଂକ ସହିତ ମାର୍କ୍ସବାଦୀ ଦର୍ଶନ ଆଲୋଚନା କଲେ। ବାଲ୍ୟକାଳରୁ ନିଷ୍ପେଷିତ ଦରିଦ୍ର ଖଟିଖିଆ ପ୍ରତି ଥିବା ତାଂକର ସହାନୁଭୂତି ଏହା ଫଳରେ ତାଂକୁ ମାର୍କ୍ସବାଦୀ କରି ଠିଆକରାଇଲା। ଦୁଇବର୍ଷ ସେଠାରେ ପାଠ ପଢିଲେ। ମାତ୍ର ଶରୀର ଉପରେ ନାନା ପ୍ରକାର ଅନିୟମିତତା ଓ ଅତ୍ୟାଚାର ଫଳରେ ସ୍ୱାସ୍ଥ୍ୟହାନି ହେଲା। ସେ ବରଗଡ଼ ଫେରି ଆସିଲେ। ଗଂଗାଧର ମେହେର କଲେଜରେ ବି.ଏ.ରେ ନାମ ଲେଖାଇଲେ। ତାଂକର

ବାଗ୍ମିତା ଯୋଗୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଚାନ୍‌ସେଲ୍‌ର ଡିବେଟ୍ ନିମିତ୍ତ ସଂବଲପୁରରୁ ମନୋନୀତ ହେଲେ। ଶ୍ରେଷ୍ଠ ପ୍ରତିଯୋଗୀମାନଂକ ମଧ୍ୟରେ ସେ ୨ୟସ୍ଥାନ ଅଧିକାର କଲେ। ଆଇନବୃତ୍ତି ଆବୋରି ଜନସେବା କରିବା ଉଦ୍ଦେଶ୍ୟରେ ସେ ବିଏ ପାଠପରେ କଟକ ମଧୁସୂଦନ ଆଇନ କଲେଜରେ ପଢ଼ିଲେ। ୧୯୫୬ରେ ସେ ଉକ୍ତ କଲେଜ ଛାତ୍ର ସଂସଦର ସଭାପତି ଭାବରେ ନିର୍ବାଚିତ ହେଲେ। ତାଂକର ବିଦ୍ରୋହୀମନ ଓ ଚିଂତାଧାରା ତାଂକୁ ପ୍ରତିଷ୍ଠିତ ବ୍ୟବସ୍ଥାର ବିରୋଧୀ କରି ଠିଆକରାଇଲା। ସୀମା ଆଂଦୋଳନ ସମୟରେ ସେ ଗିରଫ ହେଲେ ଓ ମାସାଧିକ କାଳ ବିଚାରାଧୀନ ବଂଦୀ ଭାବରେ ଜେଲରେ ରହିଲେ। ୧୯୬୧ ମଧ୍ୟବର୍ତୀ ନିର୍ବାଚନରେ ସେ ବରଗଡ଼ରୁ କମ୍ୟୁନିଷ୍ଟ ପ୍ରାର୍ଥୀ ଭାବରେ ପ୍ରତିଯୋଗିତା କରି ମାତ୍ର ୨୨୭୩ ଭୋଟ ପାଇ କଂଗ୍ରେସର ଭରତଚଂଦ୍ର ହୋତାଂକ ଦ୍ୱାରା ପରାଜିତ ହୋଇଥିଲେ। ୧୯୬୪ରେ ଓକିଲ ଥାଇ ସେ ସରକାରଂକର ଛାତ୍ରବିରୋଧୀ ନୀତି ବିରୋଧରେ ବରଗଡ଼ରେ ଆଂଦୋଳନ କରି ୨ୟବାର ଗିରଫ ହେଲେ ଓ ପୁଣି କିଛିଦିନ ଜେଲରେ କଟାଇଲେ। ଓକିଲାତି ଜୀବିକା, ରାଜନୀତି, ସମାଜସେବା ସଚେତନକ ନାଗରୀକ ଭାବରେ ତାଂକ ଦାୟିତ୍ୱ ଥିଲା। ୧୯୬୬ ମରୁଡ଼ି ସମୟରେ ପଦ୍ମପୁର ଖଡିଆଳ ଅଂଚଳରେ ନିଜ ଉଦ୍ୟମରେ ରିଲିଫ ସାମଗ୍ରୀ ସଂଗ୍ରହ କରି ସେ ବାଂଟୁଥିଲେ।

ବରଗଡ଼ରେ ଓକିଲାତି କରିବା ସମୟରେ ଅର୍ଥ ଉପାର୍ଜନ ଅପେକ୍ଷା ଦରିଦ୍ରମାନଂକୁ ନ୍ୟାୟ ମିଳିବା ସେ ନିଜର ବ୍ରତକରି ସବୁ ପ୍ରକାର ଅନ୍ୟାୟ ଅତ୍ୟାଚାର ଓ ଶୋଷଣ ବିରୋଧରେ ଅଂଟା ଭିଡ଼ିଲେ। ଆଇନ ଅଦାଲତରେ ଦଂଡର ସମ୍ମୁଖୀନ ହୋଇଥିବା ଆସାମୀମାନଂକର ମକଦ୍ଦମା ସେ ନିର୍ବିଚାରରେ ଗ୍ରହଣ କଲେ। ନିଜର ବାକପଟୁତା ଫଳରେ ନିଜର ମତବାଦକୁ ସହଜରେ ଲୋକମାନଂକୁ ଗ୍ରହଣୀୟ କରିବାକୁ ସେ ଲାଗି ପଡ଼ିଲେ। ଦେଶର ବିକାଶ ଦିଗରେ ଶକ୍ତିବ୍ୟୟ ନ କରି ସବୁ ପ୍ରକାର ବିଭେଦ ସୃଷ୍ଟିକାରୀ ଆଂଦୋଳନରେ ଭାଗ ନେବା ହେତୁ ତାଂକର ଶତ୍ରୁସଂଖ୍ୟା ବଢ଼ିଚାଲିଲା। ରାଜନୀତି, ସମାଜସେବା ତାଙ୍କୁ ପୋଷାଇଲା ନାହିଁ।

ରାଧାବଲ୍ଲଭଂକର ସାଂସ୍କୃତିକ ଚେତନା ଓ ସାହିତ୍ୟ ସେବା ତାଂକୁ ଯୁବଗୋଷ୍ଠୀର ଆଦର୍ଶ କରି ଟାଣି ପାରିଲା। ସାଂବାଦିକତାକୁ ସେ ସାମୟିକ ବୃତ୍ତି ଭାବେ ଗ୍ରହଣ କରି ଅନେକ ଗୁଡ଼ିଏ ପତ୍ରପତ୍ରିକାର ସଂବାଦଦାତା ଥିଲେ। ପାଠାଗାର ଆଂଦୋଳନର ସେ ବରଗଡ଼ରେ ପ୍ରଥମ ପ୍ରବର୍ତକ। ୧୯୫୬ରେ ସେ ଉତ୍କଳମଣି ସଂସ୍କୃତି ସଂସଦ ଗଠନ କରି ସ୍ଥାନୀୟ ଯୁବକମାନଂକୁ ସାହିତ୍ୟ ଓ ସଂସ୍କୃତିର ପ୍ରଚାର ଦିଗରେ ଉତ୍ସାହିତ କରିବାକୁ ଉଦ୍ୟମ କଲେ। ୧୯୫୮ରେ ଏହି ଅନୁଷ୍ଠାନଟି ଅଗ୍ରଗାମୀ ଯୁବକ ସଂଘ ସହିତ ମିଶିଗଲା। ବରଗଡ଼ରେ ଆଉ କେତୋଟି ସାଂସ୍କୃତିକ ଅନୁଷ୍ଠାନ, ରବିବାସରୀୟ ସାହିତ୍ୟ ସଂସଦ, ବାସଂତୀ ସାହିତ୍ୟ ପରିଷଦ ତାଂକରି ଉଦ୍ୟମରେ ପ୍ରତିଷ୍ଠିତ ହୋଇ ପାରିଥିଲା। ନିଜେ ଜଣେ ସୃଜନଶୀଳ ଲେଖକ ଓ ଅନୁବାଦକ ଥାଇ ସେ ଅନ୍ୟମାନଂକୁ କବିତା ରଚନାରେ ଉଦ୍‌ବୁଦ୍ଧ

କରୁଥିଲେ। ସାହିତ୍ୟ ପତ୍ରିକା 'ଝଂକାର'ରେ ଆଂତର୍ଜାତିକ ଓ ଜାତୀୟ ଖ୍ୟାତି ପ୍ରାପ୍ତ ଲେଖକମାନଂକର ରଚନାର ଓଡ଼ିଆ ଅନୁବାଦ ପ୍ରକାଶ କରୁଥିଲେ। ତାଂକର ରଚନା ଶୈଳୀ ପ୍ରଥମରୁ ରବୀଂଦ୍ରନାଥ, କାଜିନଜରୁଲ ଓ ସଚ୍ଚି ରାଉତରାୟଂକ ଦ୍ୱାରା ପ୍ରଭାବିତ ହୋଇଥିଲା। ବିଶ୍ୱସାହିତ୍ୟର ଶ୍ରେଷ୍ଠ କୃତିମାନ ସଂଗ୍ରହ କରି ସେ ଅଧ୍ୟୟନ କରୁଥିଲେ ଓ ନିଜ ରଚନାର ମାର୍ଗ ଏହାଦ୍ୱାରା ନିର୍ଣ୍ଣିତ ହେଉଥିଲା।

ମାତ୍ର ୧୬ ବର୍ଷ ବୟସରେ ମୁକ୍ତାଲୋକ ନାମକ ଏକ ସାହିତ୍ୟ ପତ୍ରିକାରେ ରାଧାବଲ୍ଲଭଂକର 'ସର୍ବହରାର କବି' ଶୀର୍ଷକ କବିତା ତାଂକ ଜୀବନର ଆଦର୍ଶ ଆଂଶିକ ଚିତ୍ରଣ କରିଅଛି।

ସର୍ବହରା ମୁଁ ସର୍ବହରାର କବି,
କବିତାର ଧାରେ ଲେଖିଯାଏ କେତେ ଛବି,
ଚାଷୀ ମୂଲିଆର ଶୁଖିଲା ଲୁହର ଧାର,
ଯୋଗାଏ ବିଷୟ ବସ୍ତୁ ମୋ କବିତାର।
ଦାନା ମୋର ନାହିଁ, ମୋହଠାରେ ନାହିଁ କନା,
ସାଥୀ ନାହିଁ, ନୁହେଁ ଜୀବନର ପଥ ଜଣା,
ଚାଲିଛି ତଥାପି ଜୀବନ ମୋହର ନିତି,
ନିରବଧି ଗାଇ ସମତାର ମହାଗୀତି।
ଗୋଟିଏ ଜୀବନ ଲାଗି ନାହିଁ ମୋର ମାୟା,
ନାଚେ ମୋ ଆଖିରେ ବିଶ୍ୱ ଜୀବନ ଛାୟା
ଚକ୍ରବାଳର ତଳେ ସେ ଜୀବନାଭାଷ,
ନିରେଖି ସରବହରା ମୋ ହୃଦରେ ଭରିଆସେ ଉଲ୍ଲାସ।

ଆଜିର ପ୍ରତିଷ୍ଠିତ ସମାଜର ପ୍ରବଂଚନା ଶଠତା ମିଥ୍ୟାଚାରରେ ମର୍ମାହତ ହୋଇ ନିଜର ମାର୍କ୍ସବାଦୀ ଦର୍ଶନ ଉପରେ ପ୍ରତିଷ୍ଠିତ ଏକ ଶୋଷଣ ଶୂନ୍ୟ ସମାଜବାଦୀ ବ୍ୟବସ୍ଥାର ସେ ସ୍ୱପ୍ନ ଦେଖୁଥିଲେ। ବିକାଶ ଧର୍ମୀ ସମାଜସେବା ହୁଏତ ତାଂକ ଚିଂତାଧାରା ବାହାରେ ରହିଗଲା। ଲୋକପ୍ରିୟତା ମିଳିଥିଲା ମାତ୍ର ଏହା ସୁସ୍ଥ ସମାଜଗଠନ ଓ ସୁସ୍ଥ ମାନବସେବାରେ ବ୍ୟୟିତ ହେବା ପୂର୍ବରୁ ୨୦୦୦ରେ ମସ୍ତିଷ୍କ କର୍କଟ ରୋଗରେ ଆକ୍ରାଂତ ହୋଇ ସେ ପ୍ରାଣ ହରାଇଲେ ମାତ୍ର ଜୀବନ ତମାମ ଅଗଣିତ ଅବହେଳିତ ଜନତାଂକ ପ୍ରତି ତାଂକର ଆଂତରିକତା ରହି ଆସିଥିଲା। ଜଣେ ପୁସ୍ତକକୀଟ ଥାଇ ସେ ସାମାଜିକ ଦାୟିତ୍ୱ ନିର୍ବାହ ନିମିତ୍ତ କାର୍ଲମାର୍କ୍ସଂକୁ ଯେପରି ପଢୁଥିଲେ ଜୀବନର ଦିଗଦର୍ଶନ ପାଇଁ ଉନ୍ନତ ମନୁଷ୍ୟ ହେବା ପାଇଁ ସେମିତି ସେ ଶ୍ରୀମଦ୍‌ଭଗବତ ଗୀତାର ମର୍ମଗ୍ରାହୀ ପାଠକ ଥିଲେ।





# ବହ୍ନିକନ୍ୟା
# ପାର୍ବତୀ ଗିରି

୧୯୪୨ର ଭାରତଛାଡ଼ ଆଂଦୋଳନ। କର ବା ମର ମନ୍ତ୍ରରେ ଦେଶ ଉଦବୁଦ୍ଧ। ମହାତ୍ମାଗାଂଧି ଓ କଂଗ୍ରେସରେ ସବୁ ତୁଂଗନେତାମାନେ ଜେଲରେ। ସଂବଲପୁରର ବାଗ୍ମୀନେତା ପଂଡିତ ଲକ୍ଷ୍ମୀନାରାୟଣ ଅଗଷ୍ଟ ମାସରେ ବଂବେ ଯାଇଥିଲେ। ଭାରତଛାଡ଼ ଆଂଦୋଳନ ପ୍ରସ୍ତାବ ପାସ ହେବା ପରେ ସେ ସେଠାରୁ ଚାଲି ଆସିଲେ। ଝାରସୁଗୁଡ଼ା ଷ୍ଟେସନରେ ବଂବେ ମେଲରୁ ଓହ୍ଲାଇବା ବେଳେ ପୁଲିସ୍ ହାତରେ ଧରା ପଡ଼ିଲେ। ମାତ୍ର କୌଶଳ କ୍ରମେ ସେଇ ଡବାରେ ଯାଉଥିବା ଜଣେ ସହଯାତ୍ରୀଂକୁ ଗୋଟିଏ ପ୍ୟାକେଟ ବଢ଼ାଇ ଦେଲେ। ସହଯାତ୍ରୀ ଥିଲେ ଜଣେ ଗାଂଧିବାଦୀ ଶିକ୍ଷକ। ସେତେବେଳେ ସେ ବରଗଡ଼ ହାଇସ୍କୁଲର ପ୍ରଧାନ ଶିକ୍ଷକ। ସ୍କୁଲ ଘରୋଇ ପରିଚାଳନାରେ ଥାଏ। ସେ ବରଗଡ଼ ଆସି ସେଠାରୁ ଗାଂଧି ସଂଦେଶ ବଂଟାଯିବାର ବ୍ୟବସ୍ଥା କଲେ। ବରଗଡ଼ ସଂବଲପୁର ଜିଲ୍ଲାର ସବୁଠାରୁ ବଡ ସବ୍‌ଡିଭିଜନ। ଶାସନର ଗୁରୁତ୍ୱ ଦୃଷ୍ଟିରୁ ଇଂରେଜ ସରକାର ସେଠାରେ ପ୍ରାୟ ଆଇ.ସି.ଏସ୍ ଉପଜିଲ୍ଲାପାଳ ରଖିଥାଆଂତି। ସେତେବେଳର

ଉପ ଜିଲ୍ଲାପାଳ ଜ୍ୟୋତି ମଜୁମଦାର। ଲଂଡନରୁ ବିଏ ପାସ୍‌କରି ଚାକିରି ଆରଂଭ କରିଥାଂତି। ଆଇସିଏସ୍ ଭାବରେ ତାଂକର ଚିଂତାଧାରା ପୁରୁଣା କାଳିଆ ନ ଥାଏ। ଇଂରେଜ ଶାସନରୁ ଦେଶ ଦିନେ ମୁକ୍ତହେବ ଏଇଟା ଜଣାଶୁଣା କଥା। ସେଥିଯୋଗୁଁ ସ୍ୱାଧୀନତା ସଂଗ୍ରାମୀମାନଂକ ପ୍ରତି ତାଂକର ସହାନୁଭୂତି ଥାଏ। ତାଂକର ପତ୍ନୀ ଗୀତା ମଧ୍ୟ ଜଣେ ଉଚ୍ଚ ଶିକ୍ଷିତା ସମାଜସେବୀ। ପରେ ସୁଧେନ୍ଦୁ ଜ୍ୟୋତି ସ୍ୱାଧୀନ ଭାରତରେ ଅନେକ ମର୍ଯାଦାବଂତ ପଦରେ ଅଧିଷ୍ଠିତ ହେଲେ। ତାଂକ ସ୍ତ୍ରୀଂକ ନାମରେ ବରଗଡ଼ରେ ଗୀତା ଛାତ୍ରାବାସ ନିର୍ମିତ ହୋଇଥିଲା। ଅଗଷ୍ଟ ମାସ। ଦିନେ ସେ କଚେରିକୁ ଆସି ଦେଖିଲେ ଅନେକ ଲୋକ ତା ଭିତରେ ବସି କାମ ଆରଂଭ କଲେଣି। କିଏ ପେସ୍‌କାର ହୋଇଯାଇଛି ତ ଆଉ କିଏ ହୋଦା  କାଂଧରେ ପକାଇ ଚପରାସୀ ହୋଇ ପକ୍ଷମାନଂକ ନାଁ ଧରି ଡାକୁଛି। ଉପଜିଲ୍ଲାପାଳଂକ ଆସନରେ ଗୋଟିଏ ଯୁବତୀ ଝିଅ ବସିଛି। ସେଦିନ ପାଇଁ ଧାର୍ଯ ସବୁ ମକଦମାର କାଗଜ ପତ୍ର ସେ ତନଖୁଥାଏ। ଝିଅଟି ହାକିମକୁ ଦେଖି ଓହ୍ଲାଇ ଆସି ତାଂକୁ ଅଭିବାଦନ କରି କହିଲା "ଆପଣ ଇଂରେଜ ସରକାରଂକର ଗୋଲାମ ହୋଇ ରହନ୍ତୁ ନାହିଁ। ଚାକିରି ଛାଡ଼ି ଆମ ସାଂଗରେ ଯୋଗ ଦିଅନ୍ତୁ। ଆମେ ଏଇଠି ସ୍ୱାଧୀନ ଭାରତ ସରକାର ଗଢ଼ିବା।" ହାକିମ ଜଣକ ପ୍ରଥମେ ହତବାକ୍ ହୋଇଗଲେ। ନକଲି ଚପରାସୀ ପେସ୍କାର ଏମାନଂକୁ ଧରି ହାଜତକୁ ପଠାଇଦେଲେ। ଝିଅଟିକୁ ବୁଝାଇବାକୁ ବହୁତ ଉଦ୍ୟମ କଲେ, ମାତ୍ର ଇଂରେଜ ଶାସନର ଉଚ୍ଛେଦ ବ୍ୟତୀତ ଅନ୍ୟ କୌଣସି କଥା ସେ ଶୁଣିବାକୁ ପ୍ରସ୍ତୁତ ନ ଥିଲେ। ଫଳରେ ହାକିମ ତାଂକୁ କଚେରିରେ ଛୁଟି ହେବା ଯାଏ ଅଟକ ରଖି ପରେ ଛାଡ଼ିଦେଲେ। ମାତ୍ର ଯୁବତୀ ଝିଅଟିର ଅଦମ୍ୟ ଉତ୍ସାହ ଓ ସାହସ ସେ ଜୀବନ ତମାମ ମନେରଖିଲେ। ଏହାପରେ ପୁଣି ଲୋକମାନେ ଏକାଠି ହୋଇ ଥାନା କଚେରି ପୋଡ଼ିବାକୁ ଆସିଲେ। ପୁଲିସ୍ ସେମାନଂକୁ ବାଧା ଦେଲେ। ବେଶି ବୟସର ଓ କମ ବିଚାରବଂତ ହାକିମ ହୋଇଥିଲେ ହୁଏତ ପୁଲିସ୍ ଗୁଳିକାଂଡ ଘଟାଇ ଥାଆଂତି। ଝିଅଟିର କଥାରେ ଲୋକମାନେ ସ୍ୱାଧୀନତା ଦାବି ଛଡା ଆଉ କିଛି ଚାହୁଁ ନ ଥିଲେ। ହାକିମ ଓ ତାଂକ ସହଧର୍ମଣୀ ଯେ କି ନିଜକୁ ଜଣେ ସାଧାରଣ ନାଗରିକ ବୋଲି ପରିଚୟ ଦେଇ ଲୋକମାନଂକୁ ଶାଂତ କରୁଥାଂତି ସେମାନେ ବହୁ କଷ୍ଟରେ ସେହି ବେଆଇନ ଜମାଏତକୁ ଘଉଡ଼ାଇ ଦେବାକୁ ସମର୍ଥ ହୋଇଥିଲେ। ସେହିଦିନ ଏହି ଆଂଦୋଳନର ଯୁବତୀ ଝିଅଟି ଥିଲା ପାର୍ବତୀ ଗିରି। ପରବର୍ତୀ କାଳରେ ସେ ବହ୍ନିକନ୍ୟା ନାମରେ ପରିଚିତ ହୋଇଥିଲା। ପରେ ସେଇ ଅଗଷ୍ଟ ଆଂଦୋଳନ ବେଳେ ଅନ୍ୟତ୍ର ପ୍ରଚାର ପତ୍ର ବାଣ୍ଟିବା ସରକାରୀ ସଂପତ୍ତିର କ୍ଷତି ଘଟାଇବା ଓ ଯୁଦ୍ଧ ଉଦ୍ୟମରେ ବାଧା ସୃଷ୍ଟି କରିବା ହେତୁ ସେ ଧରାଯାଇ ବିଚାରରେ ଭାରତରକ୍ଷା ଆଇନ ଅନୁସାରେ ସଜା ପାଇଥିଲେ।

## ବରଗଡ଼ର ବରପୁତ୍ର

ବହ୍ନିକନ୍ୟା ପାର୍ବତୀ ଗିରିଂକ ଜନ୍ମ ବରଗଡ଼ ଜିଲ୍ଲାର ବିଜେପୁର ଥାନାର ସମଲେଇ ପଦରୁ ଗାଁରେ ୧୯୨୬ରେ। ତାଂକ ବାପା ଧନଂଜୟ ଗିରି ଗାଁର ଗୌଂତିଆ ଥିଲେ। ମାଆ ଜଣେ ସାଧାରଣ ଗୃହିଣୀ। ସେମାନେ ସ୍ୱଚ୍ଛଳ ପରିବାରରେ ବଢ଼ିଥିଲେ। ସାଧାରଣ ମଣିଷ ଅପେକ୍ଷା ସେମାନେ ବେଶ ସ୍ୱଚ୍ଛଳ ଥିଲେ ମାତ୍ର କେମିତି କେଜାଣି ପାର୍ବତୀ ପିଲାଦିନୁ ସମାଜର ଦୁର୍ବଳ ଅବହେଳିତ ଲୋକଂକ ପ୍ରତି ସବୁବେଳେ ସହାନୁଭୂତି ଦେଖାଉଥିଲେ। ଗାଁ ଚାଟଶାଳୀରେ ପାଠ ପଢିଲେ। ଦେଶରେ କଂଗ୍ରେସ ଆଂଦୋଳନର ହାଓ୍ୱା ଚାଲୁଥାଏ। ସୂତାକଟା, ଖଦିପିନ୍ଧା, ନିଶା ନିବାରଣ କାର୍ଯକ୍ରମ ତାଂକୁ ଭଲ ଲାଗିଲା। ସେ ସମୟର କଂଗ୍ରେସର ସ୍ଥାନୀୟ ନେତାମାନଂକ ସହିତ ସେ ଯୋଗସୂତ୍ର ରଖି କଂଗ୍ରେସ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହେଲେ। ଜିଲ୍ଲାର ପୁରୁଣା କଂଗ୍ରେସ ନେତା ଭାଗିରଥି ପଟନାୟକ, ଦୟାନଂଦ ଶତପଥୀ ଓ ଲାଟସଭାରେ କଂଗ୍ରେସ ମେଂବର ଥିବା ପ୍ରହ୍ଲାଦ ରାୟ ଲାଠ ଆଦି ସମସ୍ତଂକ ସାଂଗରେ ସେ ସଂପର୍କ ରଖିଲେ। ଦେଶରେ ଓଡ଼ିଶା ପ୍ରଦେଶ ଗଠନ ଉତ୍ତାରେ ୧୯୩୭ରୁ ଲୋକ ପ୍ରତିନିଧି ଶାସନ ଚାଲିଲା। ସଂବଲପୁରର ଓକିଲ ବୋଧରାମ ଦୁବେ ଶିକ୍ଷାମଂତ୍ରୀ ହେଲେ। କର୍ମୀମାନେ ଗାଁ ଗଂଡାରେ ବୁଲି କଂଗ୍ରେସର ବାର୍ତା ପ୍ରଚାର କରିବାର ସୁଯୋଗ ପାଇଲେ। ପାର୍ବତୀଂକୁ ମାତ୍ର ବାରବରଷ। କଟକରୁ କଂଗ୍ରେସ ନେତାମାନେ ଆସିଲେ ବରଗଡ଼ରେ ସଭା କରିବାକୁ। ତାଂକ ଭିତରେ ଥାଆଂତି ମାଳତୀ ଦେବୀ। ପାର୍ବତୀ ମାତୃ ପ୍ରତିମ ଜଣେ ଲୋକଂକୁ ଦେଖି ସେମାନେ ସଭାସାରି ଫେରିବା ବେଳକୁ ସେମାନଂକର ସାଂଗରେ ଯିବାକୁ ଅଝଟ କଲେ। ମାଳତୀ ଦେବୀଂକ ଗୋଡ ଧରି ଛାଡ଼ିଲେ ନାହିଁ। ବରଗଡ଼ର ଲାଟସଭା ମେଂବର ବିଶି ଗଂଡା (ବିଭାର) ଫକୀର ବେହେରା ଆଦି ବହୁତ ବୁଝାଇଲେ ମଧ୍ୟ ସେ ନଛୋଡ଼ବଂଧା। ଶେଷରେ ମାଳତୀ ଦେବୀ କହିଲେ ତୁ ଏବେ ସାନ ପିଲା, ମୁଁ ଚାରିଆଡେ ବୁଲୁଛି। ମୋ ସାଂଗରେ ତୁ ବୁଲି ପାରିବୁ ନାହିଁ। ମୋର ଦେଢ଼ଶୁର ଯାଆ ପୂଜ୍ୟ ଗୋପବଂଧୁ ଚଉଧୁରୀ ଓ ମାଆ ରମାଦେବୀ ଯାଜପୁର ବରୀରେ ଆଶ୍ରମ କରିଛଂତି। ସେଠାରେ ଅନେକ ପୁଅଝିଅ ରହୁଛଂତି। ସେମାନଂକୁ ଗ୍ରାମର ଉନ୍ନତି ପାଇଁ ଗ୍ରାମ ମଂଗଳ କାର୍ଯ ଶିକ୍ଷା ଦିଆ ଯାଉଛି। ମୁଁ ତୁ ସେଠାରେ ଯାଇ ରହିବାର ବ୍ୟବସ୍ଥା କରିବି। ପାର୍ବତୀ ସେଥିରେ ରାଜିହୋଇ ରହିଲେ। ବାପ ମାଆ ବୁଝେଇଲେ ମାତ୍ର ବରୀ ଯାଇ ଆଶ୍ରମରେ ରହିବା ଆଶା ସେ ଛାଡୁ ନ ଥାଆଂତି। ଶେଷରେ ସେ ଭାଗିରଥି ପଟନାୟକ ଓ ତାଂକ ସ୍ତ୍ରୀ ଜଂବୁବତୀଂକ ସାଂଗରେ ଗାଁରୁ ବରଗଡ଼ ଆସିଲେ। ଲାଟସଭା ମେଂବର ବିଶି ବେଭାର ଓ ଫକୀର ବେହେରା କଟକ ଯିବାବେଳେ ତାଂକ ସାଂଗରେ ସେ ସଂବଲପୁରରୁ ରେଳରେ ଝାରସୁଗୁଡ଼ା ଖଡ଼ଗପୁର ବାଟେ କଟକ ଗଲେ। ଲାଟ ସଭା କାମ ସରିଲା।

ପ୍ରହଲ୍ଲାଦ ରାୟ ଲାଠ ଧନୀ ମାରବାଡିଥାଇ ଲାଟସଭା ସଭ୍ୟ ଥିଲେ। ସେ ସଂବଲପୁର ବରଗାଁର ନାରୀ ନେତ୍ରୀ ପ୍ରଭାବତୀ ପାଣିଗ୍ରାହୀଂକ ସାଂଗରେ ପାର୍ବତୀଂକୁ ବରୀ ପଠାଇ ଦେଲେ। କଟକରୁ କେଂଦ୍ରାପଡ଼ା ଇନ୍ଦୁପୁର ବ୍ରାହ୍ମଣୀ ନଦୀ ପାରି ହୋଇ ଆରପଟେ ବରୀ। କଟକରୁ ଦୂରରାସ୍ତା ନାଳ, ନଈ, ପାଣି ଓ କାଦୁଅକୁ ନ ଡରି ଚାଲିଚାଲି ୧୨/ ୧୪ ବରଷର ଝିଅଟି ବରୀରେ ପହଂଚିଲା। ତ୍ୟାଗୀ ଗୋପବଂଧୁ ଆଗରୁ ବରଗଡ଼ରେ ଡେପୁଟି କଲେକ୍ଟର ଥିଲେ। ରମାଦେବୀ ତାଂକ ସ୍ତ୍ରୀ। ସେ ମଧୁବାବୁ ବାରିଷ୍ଟରଂକର ଝିଆରି। ଦରିଦ୍ରନାରାୟଣଂକର ସେବା କରିବାକୁ ଗୋପବାବୁ ଏଡେ ବଡ ଚାକିରିକୁ ପଦାଘାତ କରି ବରୀରେ ଲୋକଶିକ୍ଷା ଓ ଜନସେବା ପାଇଁ ଆଶ୍ରମ କଲେ। ମାଆ,ରମାଦେବୀ ତାଂକର ସହକର୍ମିଣୀ ହେଲେ। ବରୀ ବ୍ରାହ୍ମଣୀ ବିରୂପା ଖରସୂଆ ନଦୀର ବଢ଼ି ପ୍ରପୀଡିତ ଅଂଚଳ। ବନ୍ୟାରେ ସବୁଠାରୁ କ୍ଷତି ଏଇ ଅଂଚଳରେ ହେଉଥିଲା। ଲୋକମାନେ ଦରିଦ୍ର ଭୂମିହୀନ ମଜୁରିଆ ଶ୍ରେଣୀର। ତାଂକରି ସେବାରେ ଲାଗିଥିବା ତ୍ୟାଗୀ ଗୋପବଂଧୁ ଓ ମାଆ ରମାଦେବୀ ଯୁବତୀ ଝିଅଟିର ମନରେ ଗଭୀର ପ୍ରଭାବ ପକାଇଲେ। ଦେଶସେବାକୁ ଜୀବନର ବ୍ରତଭାବରେ ଗ୍ରହଣ କରି ସେଥିରେ ସେ ଜୀବନ ଉତ୍ସର୍ଗ କଲେ।

ବରୀ ଆଶ୍ରମରେ ରଚନାଧ୍ୟକ କାର୍ଯ ଉପରେ ବହୁତ ଗୁରୁତ୍ୱ ଦିଆଯାଉଥାଏ। ପୁଅ ଝିଅ ସମସ୍ତେ ବିଦ୍ୟାଶିକ୍ଷା ସହିତ ଆଦର୍ଶ ଦେଶପ୍ରେମ ଶିକ୍ଷା କରୁଥିଲେ। ମାଆ ରମାଦେବୀ ଝିଅମାନଂକୁ ନିଜ ଝିଆଂକଠାରୁ ବେଶି ଆଦର କରୁଥିଲେ। ରଂଧାବଢ଼ା, ପରିବାକଟା, ବଗିଚାକାମ ପାଣି ଆଣିବା, ନିଜ କାମ ନିଜେ କରିବା ଝିଅମାନେ ତାଂକୁ ଆଦର୍ଶକରି ଶିଖୁଥିଲେ। ମୋଟା ବଗଡ଼ା ଭାତ ଖାଉଥିଲେ। ମୋଟା ଖଦି ଲୁଗା ପିନ୍ଧୁଥିଲେ। ଆଶ୍ରମରେ ଛୁଆଁ ଅଛୁଆଁ ଭେଦଭାବ ନଥାଏ। ତୁଳାଭିଣା, ଅଟେ ଚଲେଇବା ସୂତାକଟା ଖଦି ବୁଣା, ହରିଜନସେବା, ରାଷ୍ଟ୍ରଭାଷା, ଶିକ୍ଷା ଓ ପ୍ରଚାର, ପାଠଶାଳା, ନୈଶ ବିଦ୍ୟାଳୟ ପରିଚାଳନା, ଅସ୍ପୃଶ୍ୟତା ଲୋପ, ମୌଳିକ ଶିକ୍ଷା, ପ୍ରୌଢ଼ ଶିକ୍ଷା, ଗୋସେବା, ସହିତ ଚମଡ଼ା କଷେଇ, ଚମଡାରେ ଜିନିଷ ତିଆରି, ମହୁ ଚାଷ, ଏଂଡିଚାଷ, ଖଜୁରି ଗଛରୁ ନିଶା ତାଡ଼ି ନ କରି ରସରେ ଖଜୁରିଗୁଡ଼ ତିଆରି ଏମିତି ବହୁତ କୁଟୀର ଶିଳ୍ପ ବିଷୟ ଆଶ୍ରମରେ ଶିକ୍ଷା ଦିଆ ଯାଉଥାଏ। ସବୁ କର୍ମୀ ନିଜେ ଅରଟରେ ସୂତାକାଟି ଲୁଗାବୁଣି ନିଜ ଖରଚ ଚଳିବା ପାଇଁ ଉଠାଉଥିଲେ। ଆଶ୍ରମରେ ଗୋଟିଏ ମାତୃମଂଗଳ କେଂଦ୍ର ଥିଲା। ଗର୍ଭବତୀ ମହିଳା ଓ ଶିଶୁମାନଂକର ଚିକିସା ଓ ସେବା ସେଠାରେ ଶିକ୍ଷା ଦିଆଯାଉଥିଲା। କର୍ମୀମାନେ ପାଇଖାନା ସଫେଇ, ଗ୍ରାମ ସଫେଇ ରାସ୍ତାକାମରେ ମାଟି

ବୋହିବା ଆଦି କାମରେ ଲାଗୁଥିଲେ। ସଂଧ୍ୟାରେ ସମସ୍ତେ ଏକାଠି ପ୍ରାର୍ଥନା କରୁଥିଲେ। ଫଳରେ ଆଧ୍ୟାତ୍ମିକ ଚେତନାର ବିକାଶ ଘଟୁଥିଲା। ଓଡ଼ିଶାର ବହୁ ନାମଜାଦା ଲୋକ ଆସି ସେମାନଂକୁ ଶିକ୍ଷା ଦେଉଥିଲେ ଓ ଦେଶ ବିଦେଶର ହାଲ ବୁଝାଇଥିଲେ। ଦେଶ ପ୍ରତି ସମାଜପ୍ରତି କର୍ତବ୍ୟ ବିଷୟରେ କର୍ମୀମାନଂକୁ ସଚେତନ କରୁଥିଲେ।

ଏମିତି ଦୁଇବର୍ଷ କଠୋର ଜୀବନ ଯାପନ କରି ପାର୍ବତୀ ସେଠାରୁ ନିଜ ଗାଁକୁ ଫେରି ଆସିଲେ ଗ୍ରାମ ମଂଗଳ ଓ ସମାଜସେବାରେ ନିଜକୁ ସବୁଦିନ ପାଇ ଲଗେଇ ଦେବାକୁ। ଯୁଦ୍ଧ ଲାଗିଗଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ। ଚାରିଆଡେ ଯୁଦ୍ଧର ବିଭୀଷିକା ଓ ଜିନିଷର ଅଭାବ ଅନୁଭୂତ ହେଲା। ସଂବଲପୁରରେ ରହି କଂଗ୍ରେସ ସଭ୍ୟ ସଂଗ୍ରହ କରିବା କଂଗ୍ରେସ ବାର୍ତା ପ୍ରଚାର କରିବା କାମରେ ସେ ଅନ୍ୟ ନେତାମାନଂକ ସହିତ ଲାଗି ପଡିଲେ। ୧୯୪୨ ଭାରତଛାଡ଼ ଆଂଦୋଳନ ବରଗଡ଼ରେ ସେ ସାମିଲ ହେଲେ। ଜେଲ ଖଟିଲେ। ପ୍ରଥମେ ପୁଲିଶବାଲା ତାଂକୁ ଅଳ୍ପବୟସ୍କା ବୋଲି ଅବହେଳା କରି ଗିରଫ କରୁ ନ ଥିଲେ। ମାତ୍ର ତାଂକର ଅଗ୍ନିବର୍ଷୀ ଭାଷଣ ଶୁଣି ଶେଷରେ ତାଂକୁ ଆୟତ୍ତ କରିବାକୁ ବାଧ୍ୟ ହେଲେ। ଜେଲରୁ ମୁକ୍ତି ପାଇ ସେ ମହାତ୍ମାଗାଂଧିଂକର ୱାର୍ଧାର ମହିଳା ଆଶ୍ରମକୁ ତାଲିମ ପାଇବାକୁ ଗଲେ। ସେଠାରେ ସେ ୧୯୪୭ ପର୍ଯଂତ ଥିଲେ। ସେହି ସମୟରେ ଦେଶ ସ୍ୱାଧିନ ହେଲା। ଦେଶର ସ୍ୱାଧୀନତାରେ ସେ ଆନଂଦିତ ହୋଇ ନିଜକୁ ପୂର୍ବପରି ସମାଜ ସେବାରେ ଲଗାଇବାକୁ ଅଧିକା ଯୋଗ୍ୟତା ହାସଲ ନିମିତ୍ତ ମନସ୍ଥ କଲେ। ତାଂକୁ ସରକାରୀ ସୁବିଧା ମିଳିଲା। ସେ ପ୍ରୟାଗ ମହିଳା ବିଦ୍ୟାପୀଠରେ ଶିକ୍ଷା ନେବାକୁ ଗଲେ। ଚାରିବର୍ଷ କାଳ ସେଠାରେ ପାଠ ପଢ଼ିଲେ। ଗ୍ରାମରେ ଲୋକଂକର ସେବା କରିବାକୁ ଓ ବରୀ ଆଶ୍ରମ ଓ ଅନ୍ୟତ୍ର ନିଜେ ପାଇଥିବା ତାଲିମ ଓ ଅଭିଜ୍ଞତାର ସଦୁପଯୋଗ କରିବାକୁ ବାହାରିଲେ। ସେହି ସମୟରେ ବରପାଲିରେ ଆମେରିକାର ଏକ ମିସନାରି ସଂଗଠନ ଗ୍ରାମ ମଂଗଳ କାର୍ଯ ଆରଂଭ କରିଥାଂତି। ପାର୍ବତୀ ସେଠାରେ କାମ ଆରଂଭ କଲେ। ଲୋକଂକର ସ୍ୱାସ୍ଥ୍ୟ ସେବାର ଉନ୍ନତି ଲକ୍ଷ୍ୟରେ ସେ ଏଥିରେ ମନପ୍ରାଣ ଢାଳିଦେଲେ। ରାଲ୍‌ଫ ଭିକ୍‌ଟର ନାମରେ ଜଣେ ଉଚ୍ଚଶିକ୍ଷିତ ଚିକିତ୍ସକ ଓ ବୈଜ୍ଞାନିକ ଏହାର ମୁଖ୍ୟଥିଲେ। ଏହି ଅନୁଷ୍ଠାନ ଓଡ଼ିଶାରେ ବରପାଲି ପାଇଖାନା ପରି ଯୁଗାଂତକାରୀ ପରିମଳ ସେବାର ପ୍ରବର୍ତନ ଆରଂଭ କରିଥିଲା। ଭାରତଛାଡ଼ ଆଂଦୋଳନରେ ବଂଦୀଶାଳାରେ ଥିବା ସମୟରେ ମହାତ୍ମା ଗାଂଧିକ ସହଧର୍ମଣୀ କସ୍ତୁରବା ଗାଂଧି ପ୍ରାଣ ହରାଇଲେ। ଦେଶସେବାରେ ତାଂକର ଜୀବନ ଉତ୍ସର୍ଗୀକୃତ ଥିଲା। ତାଂକର ସ୍ମୃତିରକ୍ଷା ପାଇ ଜାକିର ହୁସେନ, ଘନଶ୍ୟାମ ଦାସ

ବିରଳା, ଜେଆରଡି ଟାଟା ଆଦି ଭାରତର ଧନୀ ଓ ଗୁଣୀ ବ୍ୟକ୍ତିମାନେ ଅର୍ଥସଂଗ୍ରହ କରି ଗୋଟିଏ ଟ୍ରଷ୍ଟ ଗଠନ କଲେ। ତାହାର ନାମ ହେଲା 'କସ୍ତୁରବାଗାଂଧି ସ୍ମାରକନିଧି'। ଗ୍ରାମାଂଚଳରେ ଶିଶୁ ଓ ନାରୀମାନଂକର ସ୍ୱାସ୍ଥ୍ୟ ସେବାର ଉନ୍ନତି ନିମିତ୍ତ ଏଥି ପାଂଠି ବ୍ୟୟ ହେଉଥିଲା। ମାଆ ରମାଦେବୀ ଓଡ଼ିଶାରେ ଏହି ପାଂଠିର ଦାୟିତ୍ୱରେ ଥାଇ ଗ୍ରାମାଂଚଳରେ ଶିଶୁ ଓ ମାତୃମଂଗଳ କେଂଦ୍ରମାନ ପ୍ରତିଷ୍ଠାରେ ଲାଗିଲେ। ସଂବଲପୁରର ପାଇକମାଲ ଥାନାରେ ଏମିତି ଗୋଟିଏ କେଂଦ୍ର ପ୍ରତିଷ୍ଠା ହେଲା। ପାର୍ବତୀ ଏହାର ଦାୟିତ୍ୱ ସଂଭାଳିଲେ। ଶିଶୁ, ମହିଳା ବିଶେଷକରି ରୋଗୀ ଓ ଗର୍ଭବତୀ ନାରୀଂକର ସେବାରେ ଲୋକେ ତାଂକୁ ଈଶ୍ୱରଂକର ଆଶୀର୍ବାଦ ବୋଲି ମନେକରି ସେହି ମାତୃନିକେତନର ତାଂକୁ ବଡ଼ମାଆ ବୋଲି ମାନିଲେ। ଜନ୍ମିତ ସଂତାନର ମାଆ ହେବାର ଦାୟିତ୍ୱ ସେ ନେଇ ନ ଥିଲେ। ମାତ୍ର ଅଗଣିତ ଶିଶୁ ଓ ମହିଳାଂକର ମାଆର ମର୍ଯାଦା ତାଂକୁ ସ୍ୱତଃ ମିଳିଲା। ଖାଲି ସେତିକିରେ ସନ୍ତୁଷ୍ଟ ହେବା ମଣିଷ ସେ ନ ଥିଲେ। ଯେଉଁଠି ବନ୍ୟା ବାତ୍ୟା ମରୁଡି ମହାମାରୀ ଆଦି ବିପର୍ଯ୍ୟୟ ଘଟିଲା ସେଠାକୁ ସେ ଗଲେ "ଯେଉଁଠାରେ ଖାଲି ଲୁହ ମହାପ୍ରଭୁ ଯେଉଁଠାରେ ଖାଲି ଲୁହ ସେଇଠାକୁ ମୋତେ ନିଅ।" ଏ ଯେମିତି ତାଂକର ଜୀବନର ମନ୍ତ୍ର ହେଲା।

୧୯୫୪ର ଦଳେଇଘାଇ ଭାଂଗି ପ୍ରଳୟଂକରୀ ବନ୍ୟା, ୧୯୬୪ରେ ରାଉରକେଲାର ସାଂପ୍ରଦାୟିକ ଦଂଗା, ୧୯୬୬ରେ ବଲାଂଗିର କଳାହାଂଡିର ଦୁର୍ଭିକ୍ଷ ତାଂକୁ ଲୋକମାନଂକର ସେବା କରିବାର ସୁଯୋଗ ଆଣିଦେଲା। କସ୍ତୁରବା ସ୍ମାରକ ନିଧିର କର୍ମୀମାନଂକୁ ଧରି ଏହି ସ୍ଥାନରେ ସେ ପହଂଚ୍ ଜନସେବାରେ ଲାଗି ପଡ଼ିଲେ। ଲୋକମାନଂକୁ ସାହାଯ୍ୟ ବାଂଟିଲେ। ଲୋକଂକୁ ସଦଭାବନା ଶିଖାଇଲେ। ହିଂଦୁ, ମୁସଲମାନ ଆଦିବାସୀ ହରିଜନ ସବୁରି ଭିତରେ ସଦଭାବ ଆଣିବାକୁ ଯଥାସାଧ୍ୟ ଉଦ୍ୟମ କଲେ। କଳାହାଂଡି ବଲାଂଗିର ଜିଲ୍ଲାର ମରୁଡ଼ି ସମୟରେ ପ୍ରଥମେ ସ୍ଥାନର ଦୂରତା ଯୋଗୁ ଲୋକଂକର ଦୁର୍ଗତି ରାଜଧାନୀ ଓ ରାଜ୍ୟବାହାରକୁ ଯାଇପାରୁ ନ ଥିଲା। ସେ କର୍ମୀମାନଂକୁ ଧରି ଜନମତ ସୃଷ୍ଟି କଲେ। ବିଧାନ ସଭାରେ ଆଲୋଚନା ହେଲା। ସରକାରୀ ଶାସନ କଳ କ୍ଷିପ୍ରତର ହୋଇ ଉଠିଲା। ପ୍ରଧାନମଂତ୍ରୀ ନିଜେ ଓଡ଼ିଶା ଆସି ଦୁର୍ଭିକ୍ଷ ପ୍ରପୀଡିତ ଅଂଚଳମାନ ବୁଲି ଲୋକଂକର ଦୁର୍ଦଶା ଦେଖି ବିଶେଷ ଦାରିଦ୍ର୍ୟ ଦୂରିକରଣ ଯୋଜନାର ବ୍ୟବସ୍ଥା କଲେ। ତାଂକ ଡକରାରେ ମାଆ ରମାଦେବୀ ନିଜେ ଏହି ଅଂଚଳମାନ ବୁଲିଲେ। ବେସରକାରୀ ରିଲିଫ ସାହାଯ୍ୟର ମଧ୍ୟ ସେ ସୁବିଧା କରାଇଦେଲେ।

## ବରଗଡ଼ର ବରପୁତ୍ର

ଗାଁ ଗହଳିରେ ଚାଷକାମ ସବୁଦିନେ ନଥାଏ। ମଜୁରି ସବୁଦିନେ ତ ମିଳେ ନାହିଁ। ଲୋକମାନଂକୁ ଧଂଦା ଯୋଗାଇଦେବାକୁ ସେ ସୂତାକଟା, ଲୁଗାବୁଣାର ପ୍ରସାର ନିମଂତେ ମନ ବଳାଇଲେ। ୧୯୬୪ରେ ନିଜେ ଇଂଦୋର ଗଲେ। ସେଠାରେ ତାଲିମ ପାଇଲେ। ଅନ୍ୟ ପ୍ରଦେଶରେ ସୂତା କଟାଳିମାନେ କିପରି କାମ ଦାମ ପାଇ ରୋଜଗାର କରୁଛଂତି ତାହା ଦେଖି ଆସିଲେ। ଉତ୍କଳ ଖଦି ମଂଡଳରେ ସେ ମିଶିଲେ। ପାଇକମାଲରେ ଏକ ସୂତାକଟା ଓ ଖଦୀ କେଂଦ୍ର ବସିଲା। ତାର ପରିଚାଳନା ଦାୟିତ୍ୱ ସେ ନେଲେ। ଦଳିତ, ପତିତ, ଅବହେଳିତ ବର୍ଗର ମହିଳାମାନଂକୁ ଧରି ସେମାନଂକର ସୁବିଧା ସୁଯୋଗ ପାଇଁ ଓ କାମ ଧଂଦା ଯୋଗାଇଦେବାକୁ ସେ ନୃସିଂହନାଥ ମଂଦିର ନିକଟରେ ଗୋଟିଏ ସ୍ୱେଚ୍ଛାସେବୀ ମହିଳା ଅନୁଷ୍ଠାନ ଗଢ଼ିଲେ। କସ୍ତୁରବା ଗାଂଧି ପାଂଠିରୁ ସେ ଏଥିପାଇଁ ସାହାଯ୍ୟ ପାଇଲେ। ସେହି ମାତୃ ନିକେତନରେ ଅନାଥ ବାଳକ ବାଳିକା ଯୁବକ ଯୁବତୀ ମାନଂକୁ ଆଣିରଖି କାମଧଂଦା ଶିଖାଇବାର ବ୍ୟବସ୍ଥା କଲେ। ଦୁର୍ଭିକ୍ଷ ସମୟରେ ବାପମାଆ ହରାଇ ଭିକ୍ଷାକରି ଉପାସରେ ରହୁଥିବା ଅନେକ ବାଳକ ବାଳିକା ଏମିତି ଥଇଥାନ ହେଲେ। କସ୍ତୁରବା ମାତୃନିକେତନ ଏକ ପ୍ରତିଷ୍ଠିତ ଅନୁଷ୍ଠାନ ଭାବରେ ଜନସେବା ଯୋଗାଇ ସୁନାମ ଅର୍ଜନ କରିଥିଲା। କସ୍ତୁରବା ପାଂଠି ସହିତ ସରକାରୀ ସାହାଯ୍ୟ ମିଳିଲା ଓ ପ୍ରାୟ ୧୪ ଏକର ଜମିରେ ଅନୁଷ୍ଠାନଟି ଗଢ଼ିଉଠିଲା। ଶତାଧିକ ଅନାଥ ବାଳକ ବାଳିକା ଏଠାରେ ନିଜ ଘର ପରି ରହିଲେ। କାମ ଦାମ କରି ନିଜର ଖରଚ ଉଠାଇଲେ। ନାନା ପ୍ରକାର ଧଂଦା ମଧ୍ୟ ଶିଖିଲେ। ସେଇ ଗୋଟିଏ ଅନୁଷ୍ଠାନରେ ପାର୍ବତୀ ସଂତୁଷ୍ଟ ନ ରହି ସଂବଲପୁର ସଦର ସବଡିଭିଜନର ଯୁଯୋମୁରା ଥାନାର ବୀରସିଂହଗଡ଼ଠାରେ କୁଷ୍ଠରୋଗ ବିଶେଷଜ୍ଞ ଜନସେବକ ଡାକ୍ତର ଆଇଜାକ ସାମଂତରାଂକ ନାମରେ ଏକ ଶିଶୁକଲ୍ୟାଣ ଅନୁଷ୍ଠାନ ଗଢ଼ିଲେ। ସେଠାରେ ପ୍ରାୟ ୫୦/୬୦ ପିଲା ରହିବାର ସୁବିଧା ରହିଲା। ସେମାନେ ସ୍ନେହ ଆଦର ପାଇ ବଡ ମଣିଷ ହୋଇ ନିଜର ଜୀବନ ଓ ଜୀବିକା ଯାପନରେ ସମର୍ଥ ହେଲେ। ଶିଶୁ ଓ ମହିଳାମାନଂକର ଉନ୍ନତି ନିମିତ୍ତ ଅନୁନ୍ନତ ଅଂଚଳରେ ପାର୍ବତୀ ନିଜର ସମସ୍ତ ସୁଖ ସୁବିଧାରେ ଜଳାଂଜଳି ଦେଇ ଆଦର୍ଶ ଅନୁଷ୍ଠାନ ଗଠନରେ କୃତକାର୍ଯ ହେଲେ। ସମାଜର ସବୁ ସ୍ତରରେ ଜାତି ଧର୍ମ ବର୍ଣ ବୟସ ନିର୍ବିଚାରରେ ସେ ଆଦର ପାଇଲେ। ଆଶ୍ରମରେ ଅଂତେବାସୀମାନେ ଧଂଦା ଶିକ୍ଷାର ସୁଯୋଗ ପାଇ ଥିବାରୁ ପରେ ଅର୍ଜନକ୍ଷମ ହୋଇ ସମାଜରେ ଆଉ କାହାର ବୋଝହୋଇ ରହିଲେ ନାହିଁ।

ସମାଜରେ ସବୁ ସ୍ତରରେ ତାଂକୁ ମର୍ଯାଦା ମିଳିଲା। ମାଆ ରମାଦେବୀ ଓଡ଼ିଶାକୁ ଆସୁଥିବା ଭାରତ ବିଖ୍ୟାତ ଜନନାୟକମାନଂକ ସହିତ ତାଂକର ପରିଚୟ କରାଇ ଦେଉଥିଲେ। କ୍ରାଂତିକାରୀ ଜୟପ୍ରକାଶ ନାରାୟଣ ଓ ସୀମାଂତ ଗାଂଧିଂକର ଓଡ଼ିଶା ଗସ୍ତ ସମୟରେ ପାର୍ବତୀଂକୁ ସେମାନଂକର ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ଦେଖିବା କାମରେ ନିୟୋଜିତ କରାଯାଇଥିଲା। ୧୯୭୧ରେ ବଂଗଳା ଦେଶର ସ୍ୱାଧିନତା ସଂଗ୍ରାମ ସମୟରେ ଭାରତୀୟ ସୀମାଂତ ଅଂଚଳରେ ସେବା କାର୍ଯ କରିବାକୁ ସେ ରମାଦେବୀଂକ ନେତୃତ୍ୱରେ ସେଠାକୁ ଯାଇ କାର୍ଯ କଲେ। ଅବିଭକ୍ତ ସଂବଲପୁର ଜିଲ୍ଲାର ପାଇକମାଳ କସ୍ତୁରବା ଗାଂଧି ମାତୃନିକେତନ ଯୁଜୋମୁରାର ସାଂତରା ବାଳନିକେତନରେ ତାଂକର କୀର୍ତି ସୀମାବଦ୍ଧ ରହିଲା ନାହିଁ। ଜନସେବା ନିମିତ୍ତ ନିଜର କର୍ମକ୍ଷେତ୍ର ବିସ୍ତୃତ ଓ ବ୍ୟାପକ ହେବାଫଳରେ ସେ ଓଡ଼ିଶା କେଂଦ୍ରୀୟ ବାଲ୍ୟାଶ୍ରମ କମିଟି, ହିଂଦ କୁଷ୍ଠ ନିବାରଣ ସଂଘ, ଜାତୀୟ ସମାଜ ସେବା ଅନୁଷ୍ଠାନ ପରି ବହୁ ଅନୁଷ୍ଠାନ ସହିତ ସଂପୃକ୍ତ ହେଲେ। ଜିଲ୍ଲାର ପ୍ରୌଢ଼ଶିକ୍ଷା ସମିତି ଶିଳ୍ପକେଂଦ୍ର କମିଟି, ଆଇନ ସହାୟତା କମିଟିରେ ତାଂକୁ ନିଆଗଲା। ତାଂକ ମତାମତକୁ ସମ୍ମାନ ଦେବାକୁ ସରକାର ତାଂକୁ କେଂଦ୍ର ଜେଲର ପରିଦର୍ଶକ,ଆକାଶବାଣୀ, ରେଡକ୍ରସ ଓ ବିଶ୍ୱବିଦ୍ୟାଳୟର ବିଭିନ୍ନ କାର୍ଯକ୍ରମ ସହିତ ସଂପୃକ୍ତ କରାଇଲେ। ଏସବୁ ଲୋକପ୍ରିୟତା ସତ୍ତ୍ୱେ ମାଆ ରମାଦେବୀଂକର ଆଦର୍ଶରେ ଅନୁପ୍ରାଣୀତ ପାର୍ବତୀ କେବେହେଲେ କ୍ଷମତା ରାଜନୀତି ପ୍ରତି ଆକୃଷ୍ଟ ହୋଇ ନ ଥିଲେ। ୧୯୮୩ରେ ଶିଶୁକଲ୍ୟାଣ କାର୍ଯ ନିମିତ୍ତ ସେ ଜାତୀୟ ପୁରସ୍କାର ଲାଭ କଲେ। ୧୯୮୪ରେ ରାଷ୍ଟ୍ରପତି ଜୈଲସିଂହ ତାଂକୁ ଅର୍ଥ ଓ ଉପାୟନ ପ୍ରଦାନ କରି ସମ୍ମାନିତ କରିଥିଲେ। ନିସ୍ୱାର୍ଥପର ସେବାରେ ଉତ୍ସର୍ଗୀକୃତ ଏହି ଜୀବନ ଦୀପ ଲିଭିଯାଏ ୧୯୯୫ ଅଗଷ୍ଟ ୧୭ରେ ମାତ୍ର ତା ପୂର୍ବରୁ ଅସଂଖ୍ୟ ଅବହେଳିତ ନିର୍ଯାତିତ ଲାଂଛିତ ଶିଶୁ ଯୁବତୀଂକ ମାନସକୁ ସେ ଆଲୋକିତ କରି ସ୍ମରଣୀୟ ହୋଇଗଲେ।



ବଂଧନ ବାଧା ବିଘ୍ନ ଦଳି
ଚରଣ ଯାହାର କରଇ ଗତି
ମାଧବ ଋତୁର ପାଦପ ସମ
ଶରୀର ତାହାର ସୌମ୍ୟ ଅତି।

–ରାଧାମୋହନ ଗଡ଼ନାୟକ



# ସମାଜସେବିକା

# ପ୍ରଭାବତୀ ଦେବୀ

ସମଗ୍ର ଓଡ଼ିଶାରେ ଜଣେ ଗାଂଧିବାଦୀ ସମାଜସେବିକା ଭାବରେ ଦୀର୍ଘକାଳ ସମାଜସେବାରେ ପ୍ରବୃତ୍ତ ଥିବା ପ୍ରଭାବତୀ ଦେବୀ ଉପକୂଳ ଅଂଚଳର ନାରୀନେତ୍ରୀ ସରଳାଦେବୀ ଓ ରମାଦେବୀସକର ସମତୁଲ୍ୟ। ତଥାପି ୧୯୮୯ ଜୁଲାଇ ଦୁଇ ତାରିଖରେ ସଂବଲପୁର ବିଶ୍ୱବିଦ୍ୟାଳୟର ଅଷ୍ଟାଦଶ ସମାବର୍ତନ ଉତ୍ସବରେ ସ୍ୱର୍ଗତ ନାରୀନେତ୍ରୀ ମାଳତୀଦେବୀ ଓ ବିଶିଷ୍ଟ ସମାଜବାଦୀ ନେତା ଓ ରାଜନୀତିଜ୍ଞ ସୁରେନ୍ଦ୍ରନାଥ ଦ୍ୱିବେଦୀଂକ ସହିତ ତାଂକୁ ସମ୍ମାନ ସୂଚକ ଡକ୍ଟର୍ ଅଫ ଲ ଉପାଧି ଦେବା ପର୍ଯ୍ୟଂତ ସେ ରାଜ୍ୟମଧ୍ୟରେ ବିଶେଷ ପରିଚିତ ନ ଥିଲେ।

ମନୁଷ୍ୟ ସମାଜର ଉନ୍ନତି କଳ୍ପେ ନିରବଚ୍ଛିନ୍ନ ସାଧନା ଓ ସମାଜରେ ଦୁଃସ୍ଥ ଓ ଆର୍ତମାନଂକର ସେବା ନିମିତ୍ତ ବିଶ୍ୱବିଦ୍ୟାଳୟ ତାଂକୁ ସର୍ବୋଚ୍ଚ ସମ୍ମାନସ୍ପଦ ଉପାଧିରେ ଭୂଷିତ କରିଥିଲା । ସେ ଜଣେ ପ୍ରକୃତ ଗାଂଧିବାଦୀ ସଂସ୍କାର ଧର୍ମୀ ସମାଜସେବୀ ଓ ସ୍ୱାଧୀନତା ସଂଗ୍ରାମୀ ଭାବରେ ସୁପରିଚିତ। ୧୯୧୦ରେ କୁମାର ପୂର୍ଣମା ଦିନ ବରଗଡ଼ର ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ।

ସେଠାରେ ଶିକ୍ଷାର ସୀମିତ ସୁଯୋଗ ଥିଲା ସେ ମାତ୍ର ପଂଚମ ଶ୍ରେଣୀ ଯାଏ ପଢ଼ିଥିଲେ। ତଥାପି ସେ ନିଜ ଉଦ୍ୟମରେ ନିଜକୁ ନୂତନ ଚିଂତାଧାରା ଓ ସାମାଜିକ ପରିବର୍ତ୍ତନ ସହିତ ପରିଚିତ କରାଇ ପାରିଥିଲେ। ତତ୍କାଳୀନ ସାମାଜିକ ବ୍ୟବସ୍ଥା ଓ ପରଂପରା ଅନୁସାରେ ତାଂକର ଅତି ଅଳ୍ପ ବୟସରେ ବିବାହ ହୋଇଥିଲା। ତାହାର ଅଳ୍ପଦିନ ପରେ ବିଧବା ହୋଇ ତାଂକୁ ଆଜୀବନ ବୈଧବ୍ୟ ଦଂଡ ଭୋଗିବାକୁ ପଡିଥିଲା। ପରିବାରର କଠୋର ଶାସନ ଗଂଡି ମଧ୍ୟରେ ତାଂକୁ ରହିବାକୁ ପଡୁଥିଲା। ମାତ୍ର ଭାଗ୍ୟର ବିଡଂବନା ଓ ବିଧିର ନିର୍ଦ୍ଦେଶ ଅନ୍ୟ ପ୍ରକାରର ଥିଲା। ସମାଜର କ୍ରୁର ଓ କଠୋର ବ୍ୟବସ୍ଥାକୁ ସେ ଭ୍ରୁକ୍ଷେପ ନ କରି ୧୯୨୮ରେ ପରଦା ଭାଂଗି ଅସହଯୋଗ ଆଂଦୋଳନରେ ଯୋଗ ଦେଲେ। ତାଂକୁ ଅଠେଇଶ ବରଷ ବୟସରେ ସେ ଜିଲ୍ଲାର ଅସହଯୋଗ ଆଂଦୋଳନରେ ସକ୍ରିୟ ହୋଇ ଉଠିଲେ। ମାଳତୀ ଦେବୀ ସଂବଲପୁର ଆସିଥିବା ଅବସରରେ ସେ ତାଂକଦ୍ୱାରା ପ୍ରଭାବିତ ହେଲେ। ତାଂକୁ ଆଦର୍ଶ ରଖି ନିଜର ଭବିଷ୍ୟତ ଜୀବନ ଗଢିବାକୁ ସେ ବଦ୍ଧପରିକର ହେଲେ। ତାଂକୁ ସ୍ଥାନୀୟ ପରିବେଶ ଛାଡ଼ିବାକୁ ପଡିଲା। ବରୀ ଆଶ୍ରମରେ ସେ ତାଲିମ ନେଲେ। ସମାଜସେବା ଓ ଦେଶାତ୍ମବୋଧ ଭାବରେ ଉଦ୍‌ବୁଦ୍ଧ ହୋଇ ସେ ସମାଜର ଅଗଣିତ ନିରକ୍ଷର ନିରନ୍ନ ଜନତାର ସେବାରେ ନିଜକୁ ଉତ୍ସର୍ଗ କଲେ। କଟକ ଓ ବରୀଠାରେ କାମକରି ସେ ଲୋକମତ ସୃଷ୍ଟି ଓ ପ୍ରଭାବିତ କରିବାର କୌଶଳ ଆୟତ୍ତ କଲେ। ସଂବଲପୁର ଫେରି ଆସି ସେ ପଂଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଫକୀର ବେହେରା ପ୍ରଭୃତି ପୁରାତନ କଂଗ୍ରେସ ସଂଗଠକମାନଂକ ସହିତ ସଂପର୍କ ରଖି ସାଂଗଠନିକ କାର୍ଯରେ ଯୋଗଦେଲେ। ତାଂକ ନିରଳସ ଉଦ୍ୟମ ଫଳରେ କର୍ମୀମାନଂକୁ ସେ ସଂଗଠିତ କରିପାରିଲେ ଓ ଭବିଷ୍ୟତ ଆଂଦୋଳନ ପାଇଁ ସେମାନଂକୁ ଜାଗ୍ରତ କରି ରଖିଲେ। ଦେଶରେ ରାଜନୈତିକ ପରିବର୍ତ୍ତନ ଘଟୁଥିଲା। ବିଶ୍ୱଯୁଦ୍ଧରେ ଇଂରେଜ ଶକ୍ତିର ଅବକ୍ଷୟ ଘଟୁଥିଲା। ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହ ଆଂଦୋଳନର ସେ କାରାବରଣ କରିଥିଲେ। ଭାରତଛାଡ଼ ଆଂଦୋଳନ ୧୯୪୨ରେ ଆରଂଭ ହେଲା। ସରକାର ବିରୋଧି ଧ୍ୱନିଦେଇ ସେ ଏକ ଶୋଭାଯାତ୍ରା ଧରି ଯାଉଥିବା ବେଳେ ପୁଲିସ୍ ଲାଠି ମାଡ଼ରେ ଆହତ ହେଲେ। ଗିରଫ ହୋଇ ଭାରତ ରକ୍ଷା ଆଇନ ଅନୁସାରେ ତାଂକର ବିଚାର ହେଲା ଓ ରାଜଦ୍ରୋହାତ୍ମକ କାର୍ଯ ନିମିତ୍ତ ତାଂକୁ ଦୁଇ ବରଷ ଜେଲ ଦଂଡ ମିଳିଲା। ଜେଲରୁ ଖଲାସ ହେବା ପରେ ସେ ଗାଂଧିଜୀଂକର ଚିଂତାଧାରା ଜନ ସମାଜରେ ପ୍ରଚାର ନିମିତ୍ତ ଦାୟିତ୍ୱ ନେଲେ। ଆଗରୁ ବରୀ ଆଶ୍ରମରେ ତାଲିମ ନେଇଥିଲେ। ପରେ ୱାର୍ଧାରେ ମଧ୍ୟ ତାଂକୁ ତାଲିମ ମିଳିଥିଲା। ନିଜର ଅଭିଜ୍ଞତାକୁ ପାଥେୟ କରି ସେ ସମାଜରେ ନାରୀ କଲ୍ୟାଣ ନିମିତ୍ତ କାର୍ଯ କଲେ। ପୂର୍ବରୁ ବିଦେଶୀ ଦ୍ରବ୍ୟ ବର୍ଜନ, ସ୍ୱଦେଶୀ ଦ୍ରବ୍ୟର ପ୍ରୋତ୍ସାହନ, ନିଶାନିବାରଣ, ଗ୍ରାମରେ ସ୍ୱାବଲଂବନଶୀଳତା ସେ ଲୋକମାନଂକ ମଧ୍ୟରେ

ପ୍ରଚାର କରୁଥିଲେ। ବର୍ତ୍ତମାନ ସରକାରୀ ପ୍ରୋତ୍ସାହନ ମିଳିବାର ସୁଯୋଗ ଆସିଲା। କସ୍ତୁରବା ଗାଂଧି ପାଂଠିରୁ ମହିଳା ଓ ଶିଶୁମଂଗଳ ନିମିତ୍ତ ସାହାଯ୍ୟ ଆଣି ସେ ଗାଁ ଗହଳରେ ପ୍ରସୂତି ସେବା ଓ ଅନାଥ ବାଳକମାନଂକର ଯତ୍ନ ନେବାରେ ସମୟ ଦେଲେ। ଗାଂଧିଜୀଂକର ଆଦର୍ଶ ଚିଂତାଧାରା ନିଜେ ଗ୍ରହଣ କରିଥିଲେ। ଅନ୍ୟମାନଂକୁ ପ୍ରଭାବିତ ମଧ୍ୟ କଲେ। ଫଳରେ ପ୍ରସୂତି କେଂଦ୍ର ଓ ବାଳାଶ୍ରମ ସ୍ଥାପନ ସହଜ ହେଲା ଓ ଉପାଂତ ଅଂଚଳରେ ନିଃସହାୟ ମହିଳା ଓ ଅବହେଳିତ ବାଳକମାନଂକୁ ତାଂକର ସେବା ଉପଲବ୍ଧ ହେଲା। କସ୍ତୁରବା ମହିଳା ଆଶ୍ରମ, ବାଳ ନିକେତନ ଓ ପ୍ରସୂତି ସେବା କେଂଦ୍ର ଗଠନ ଦ୍ୱାରା ସେ ନାରୀମାନଂକର ସେବା, ସେମାନଂକର ଅର୍ଥନୈତିକ ଉନ୍ନତି, ସ୍ୱାବଲଂବୀଭାବନା ପ୍ରଚାର ଦିଗରେ କୃତକାର୍ଯ ହେଲେ। ଧମାଥାନା ଅଂତର୍ଗତ ବରଗାଁକୁ ସେ ନିଜ କର୍ମକ୍ଷେତ୍ର ବାଛି ଏହି ଲକ୍ଷ୍ୟରେ ନିରବଚ୍ଛିନ୍ନ ଉଦ୍ୟମ କରିବାରେ ଲାଗିଲେ। ପୂର୍ବତନ ରାଜ୍ୟ ବିଧାୟକ ପ୍ରହଲ୍ଲାଦ ରାୟ ତାଂକ ସହଧର୍ମିଣୀ ରୁକ୍ମଣୀ ଦେବୀଂକ ସ୍ମୃତିରକ୍ଷା ନିମିତ୍ତ ଲକ୍ଷାଧିକ ଟଂକା ବ୍ୟୟରେ ଏଠାରେ ଏକ ଅଟ୍ଟାଳିକା ନିର୍ମାଣ କରିଥିଲେ। କ୍ଷମତା ରାଜନୀତିଠାରୁ ଦୂରରେ ରହି ସେ ସମାଜସେବାକୁ ଜୀବନର ଧ୍ୟେୟରୂପେ ଗ୍ରହଣ କଲେ। ଏହି ସବୁ କାର୍ଯ ଫଳରେ ସେ ଜିଲ୍ଲା ବାହାରେ ମଧ୍ୟ ସୁପରିଚିତ ହୋଇ ପାରିଲେ। ଅନେକ ପ୍ରତିଷ୍ଠିତ ଅନୁଷ୍ଠାନ ସମାଜ ପ୍ରତି ତାଂକର ଅବଦାନ ନିମିତ୍ତ ତାଂକୁ ସମ୍ମାନିତ କରିଥିଲେ। ଶେଷରେ ବିଶ୍ୱବିଦ୍ୟାଳୟ ମଧ୍ୟ ତାଂକୁ ଉପଯୁକ୍ତ ମର୍ଯଦା ଦେଇ ଏହା ସ୍ୱୀକାର କରିଥିଲା।

୧୯୪୫ରେ ଧମା ଥାନା ଅଂତର୍ଗତ ବରଗାଁରେ ପ୍ରତିଷ୍ଠିତ ତାଂକର ଆଶ୍ରମ ଗ୍ରାମୀଣ ମହିଳାମାନଂକର ଉନ୍ନତି, ଦୁଃସ୍ଥ ଅଭାବଗ୍ରସ୍ତ ଲୋକମାନଂକର ସହାୟତା ଦିଗରେ କାର୍ଯକରି ପ୍ରଂଶସିତ ହେଲା। ଗ୍ରାମୀଣ ଅନାଥ ମହିଳା ଓ ଶିଶୁ ମାନଂକର ଥଇଥାନ ତାଂକର ନିଃସ୍ୱାର୍ଥ ଓ ନିରବଚ୍ଛିନ୍ନ ସମାଜ ସେବାର ସୁଫଳ ଥିଲା ଓ ରାଜ୍ୟ ଓ କେଂଦ୍ର ସରକାର ତାଂକର ନିଷ୍ଠା ଓ ତ୍ୟାଗପୂତ ସମାଜ ସେବାର ପ୍ରଶଂସା କରି ତାଂକୁ ସମ୍ମାନ ଓ ପୁରସ୍କାର ପ୍ରଦାନ କରିଅଛଂତି। ୧୯୯୮ ଜାନୁଆରି ୧୩ରେ ସେ ପରଲୋକ ଗମନ କଲେ।



ଝାଡ୍ ମଲମଲ୍ ପିପଲ ପତର୍<br>
ପାଏନି ମଲମଲ୍ କେରାଲି<br>
ଗାଁ ମଲମଲ୍ ରାଆଁଡି ଛାଡ୍‌ରି<br>
ସଭା ମଲମଲ୍ ଭଁଡାରି।



# ନିଷ୍ଠାପର ଜନସେବୀ

# ଡାକ୍ତର କୃପାସିଂଧୁ

ବୃତ୍ତିରେ ସେ ଥିଲେ ଡାକ୍ତର। ଏକ ଅନୁନ୍ନତ ଅଂଚଳରେ ସେ ଡାକ୍ତରି ସେବା ମାଧ୍ୟମରେ ପ୍ରତିଷ୍ଠା ଅର୍ଜନ କରି ଲୋକପ୍ରିୟ ହୋଇପାରିଥିଲେ। ରାଜ୍ୟ ବିଧାନସଭାର ସଭ୍ୟହେଲେ। ରାଜ୍ୟରେ ମଂତ୍ରୀ ହେଲେ। ସବୁଠାରେ ଦକ୍ଷତା ଓ ସୁନାମର ସହିତ ନିଷ୍ଠାପର ଭାବରେ କାର୍ଯକରି ପ୍ରଶଂସିତ ହେଲେ ମାତ୍ର ତାଂକର ସବୁଠାରୁ ବଡ ଅବଦାନ ଥିଲା ସେ ଦିଲ୍ଲୀକୁ ଯେଉଁ ପ୍ରବାସୀ ଓଡ଼ିଆମାନେ ଅସାଧ୍ୟ ରୋଗର ଫଳପ୍ରଦ ଚିକିତ୍ସା ନିମିତ୍ତ ଅଖିଳ ଭାରତ ଆୟୁର୍ବିଜ୍ଞାନ ପ୍ରତିଷ୍ଠାନରେ ଭର୍ତି ହେବାକୁ ଯାଉଥିଲେ ସେମାନଂକୁ ଯଥାଶକ୍ତି ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ। ସେ କ୍ଷମତାରେ ଥାଆନ୍ତୁ ବା ନ ଥାଆନ୍ତୁ ରୋଗୀ ଚିହ୍ନା ଅଚିହ୍ନା ଧନୀ ଦରିଦ୍ର ଉନ୍ନତ ଅନୁନ୍ନତ ଅଂଚଳ ଯେଉଁଆଡୁ ହୋଇଥାଉ ପଛକେ ତାଂକ ସାହାଯ୍ୟ ଓ ଉଦ୍ୟମର ପଟାଂତର ନ ଥିଲା। ଅତି ଅଳ୍ପ ବୟସରେ ମାତ୍ର ସେ ପ୍ରାଣତ୍ୟାଗ କଲାବେଳେ ତାଂକର ଏହି ଗୁଣଟି ସମସ୍ତଂକ ମନରେ ବିଷାଦ ଓ ସହାନୁଭୂତି ଆଣିଥିଲା। ସେ ହେଉଛଂତି ଡାକ୍ତର କୃପାସିନ୍ଧୁ ଭୋଇ।

## ବରଗଡ଼ର ବରପୁତ୍ର

୧୯୪୨ ଏପ୍ରିଲ୍ ୫ ତାରିଖ ବରଗଡ଼ ଜିଲ୍ଲାର ଜଗଦଲପୁର ଥାନାର ଝାରବନ୍ଧ ବ୍ଲକ ଅଂତର୍ଗତ ଡାଂପିର ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ। ତାଂକ ବାପ ଜଣେ ଅବସ୍ଥାପନ୍ନ କୁଲ୍‌ତା ଗୌଂତିଆ ଥିଲେ। ବରଗଡ଼ର ଜର୍ଜ ହାଇସ୍କୁଲ ସଂବଲପୁରର ଗଂଗାଧର ମେହେର କଲେଜରେ ତାଂକର ଶିକ୍ଷା ସମାପ୍ତି ପରେ ସେ ବୁର୍ଲା ବୀର ସୁରେଂଦ୍ର ସାଏ ମେଡିକାଲ କଲେଜରେ ପଢି ଡାକ୍ତରି ଉପାଧି ପରୀକ୍ଷା ପାସ କଲେ। ପରେ ପାଇକମାଳରେ ତାଂକୁ ମିଳିଥିବା ସରକାରୀ ଡାକ୍ତରି ଚାକିରିକୁ ତୁଚ୍ଛ କରି ସମାଜସେବା ପାଇଁ ସେ ସେହି ପାଇକମାଲ୍ଲ ଅଂଚଳରେ ନିଜର ଘରୋଇ ଚିକିତ୍ସା ଆରଂଭ କଲେ। ଅଳ୍ପ ସମୟ ମଧ୍ୟରେ ସେ ବୃତ୍ତିଗତ ପ୍ରତିଷ୍ଠା ଓ ଲୋକପ୍ରିୟତା ଅର୍ଜନ କଲେ। ସମାଜ ସେବା ଦିଗରେ ତାଂକର ପିତାମାତ ଓ ବରଗଡ଼ର ଜଣେ ବିଶିଷ୍ଟ ସ୍ୱାଧିନତା ସଂଗ୍ରାମୀ ଓ ପୂର୍ବତନ ବିଧାୟକ ଫକୀର ବେହେରାଂକଠାରୁ ସେ ପ୍ରେରଣା ପାଇଥିଲେ। କଂଗ୍ରେସ ଦଳର ସେ ସକ୍ରିୟ କର୍ମୀ ଥିଲେ। ୧୯୭୧ରେ ସେ ପ୍ରଥମେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଲେ। ୧୯୭୧-୭୨ରେ ସେ କଂଗ୍ରେସ ସରକାରର ମନ୍ତ୍ରୀ ମଂଡଳରେ ପଂଚାୟତରାଜ ରାଷ୍ଟ୍ରମନ୍ତ୍ରୀ ଓ ପରେ ୧୯୭୪ ନିର୍ବାଚନରେ ଜୟଯୁକ୍ତ ହୋଇ ଖଣି ଭୂତତ୍ତ୍ୱ ଓ ପରିବହନ ବିଭାଗର ରାଷ୍ଟ୍ରମନ୍ତ୍ରୀ ଭାବରେ ଦାୟିତ୍ୱ ତୁଲାଇଲେ। ଖଣି ବିଭାଗରେ ସେ ସୁନାମର ସହିତ କାର୍ଯ କଲେ। ଅନେକ ସ୍ଥାନୀୟ ଅନୁଷ୍ଠାନ ପାଇଁ ସେ ଖଣି ସେସ୍ ଅନୁଦାନ ସାହାଯ୍ୟର ବ୍ୟବସ୍ଥା କଲେ। ଅନେକ ବେକାର ଯୁବକସକୁ ଖଣିରେ କର୍ମସଂସ୍ଥାନ ଯୋଗାଇ ପାରିଥିଲେ। ପରିବହନ ମଂତ୍ରୀ ଥାଇ ଓଡ଼ିଶା ରାଜ୍ୟ ଗ୍ରାମ୍ୟ ପରିବହନ ସଂସ୍ଥାକୁ ସେ ପୁନର୍ଜୀବିତ କରିବାକୁ ଉଦ୍ୟମ କରି କେତେକାଂଶରେ ସଫଳ ହୋଇପାରିଥିଲେ। ଫଳରେ ସମଗ୍ର ପଶ୍ଚିମ ଓଡ଼ିଶାରେ ମଂତ୍ରୀ ଭାବରେ ସେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ। କଂଗ୍ରେସ ବିଭାଜନ ସମୟରେ ସେ ଇଂଦିରାଗାଂଧିଂକ କଂଗ୍ରେସରେ ବିନା ଦ୍ୱିଧାରେ ରହିଥିବାହେତୁ ଦଳ କର୍ତୃପକ୍ଷଂକର ସୁନଜରରେ ଥିଲେ। ୧୯୮୦ରେ ସେ ସଂବଲପୁର ଲୋକ ସଭା ଆସନରୁ ନିର୍ବାଚିତ ହେଲେ। ଏହି ଆସନରୁ ପରବର୍ତୀ କାଳରେ ସେ ୧୯୮୫, ୧୯୯୪, ୧୯୯୭ରେ ଚାରିଥର ନିର୍ବାଚିତ ହୋଇ ନିଜର ଲୋକପ୍ରିୟତା ପ୍ରମାଣିତ କରିଥିଲେ। ୧୯୯୫ ରେ ସେ ନରସିଂହ ରାଓ ମଂତ୍ରୀମଂଡଳରେ ମାନବସଂବଳ ବିକାଶ ରାଷ୍ଟ୍ରମଂତ୍ରୀ ଭାବରେ ଯୋଗଦାନ କଲେ। ସେ ପାଇକମାଲଠାରେ ଶୀ ଶ୍ରୀ ନୃସିଂହନାଥ ଆୟୁର୍ବେଦିକ ମହାବିଦ୍ୟାଳୟ ଓ ଗବେଷଣା ପ୍ରତିଷ୍ଠାନ ସ୍ଥାପନ କରିଥିଲେ। ଯେଉଁ ଗଂଧମାର୍ଦନର ପାଦଦେଶରେ ଶ୍ରୀ ନୃସିଂହନାଥ ବିରାଜମାନ ସେହି ପାହାଡ଼ର ଆୟୁର୍ବେଦିକ ବୃକ୍ଷଲତାକୁ କିପରି ଚିକିତ୍ସକମାନେ ନିଜ ବ୍ୟବହାରରେ ଲଗାଇ ରୋଗୀମାନଂକର ସେବା କରି ପାରିବେ ସେନି ମହତ ଉଦ୍ଦେଶ୍ୟରେ ଏହି ମହାବିଦ୍ୟାଳୟର ପ୍ରତିଷ୍ଠା କରାଯାଇଥିଲା। ତାଂକ ଉଦ୍ୟମ ଫଳରେ ବର୍ତମାନ ଏହା ଏକ ପୂର୍ଣ୍ଣାଂଗ ଅନୁଷ୍ଠାନ। ଆବାସିକ ରୋଗୀ ରହିବା ବ୍ୟବସ୍ଥା, ଛାତ୍ର ଛାତ୍ରୀମାନଂକର ଛାତ୍ରାବାସ, ଯୋଗ ଚିକିତ୍ସା କେଂଦ୍ର, ସ୍ୱତଂତ୍ର

ଭ୍ରାମ୍ୟମାଣ ମାଗଣା ଚିକିତ୍ସା ବ୍ୟବସ୍ଥା ଫଳରେ ଏହା ଏକ ବିଶେଷ ଲୋକପ୍ରିୟ ଅନୁଷ୍ଠାନ। ଆଗ୍ରହୀ ସାଂସଦମାନଂକର ହାତ ପାଂଠିରୁ ଅର୍ଥ ଆଣି ସେ ଏହିପରି ଏକ ମହତ କାର୍ଯରେ ବ୍ୟୟ କରିଛଂତି। ବହୁ କୃତୀଛାତ୍ର ଏଠାରୁ ଉତ୍ତୀର୍ଣ୍ଣ। ଜନସାଧାରଣଂକୁ ସରଳ ଓ ଶସ୍ତା ଚିକିତ୍ସା ଯୋଗାଇବାରେ ସମର୍ଥ ହୋଇ ସେମାନେ ତାଂକର କୀର୍ତ୍ତି ଘୋଷଣା କରୁଛଂତି।

ଲୋକସଭାକୁ ପ୍ରଥମେ ୧୯୮୦ରେ ନିର୍ବାଚିତ ହେବାପରେ ସେ ସଂସଦ ତରଫରୁ ଆୟୁର୍ବିଜ୍ଞାନ ସଂସ୍ଥାନର ପରିଚାଳନା କମିଟିକୁ ଡାଇରେକ୍ଟର ଭାବେ ନିର୍ବାଚିତ ହୋଇଥିଲେ ଓ ୩ ଥର ସେ ଏହି ନିର୍ବାଚନରେ ସଫଳ ହୋଇଥିଲେ। ଜଣେ ସେବାଭାବାପନ୍ନ ଡାକ୍ତର ଭାବରେ ସେ ନିଜର ସରଳ ଓ ଅମାୟିକ ଗୁଣରେ ସୁସଂପର୍କ ରକ୍ଷା କରିବାକୁ ସଫଳ ହୋଇଥିଲେ ଓ ଦିଲ୍ଲୀ ରାଜନୈତିକ ମହଲରେ ବେଶ ସୁଖ୍ୟାତି ଅର୍ଜନ କରିପାରିଥିଲେ। ସଂସ୍ଥାନର ଡାକ୍ତର ଓ ଅନ୍ୟାନ୍ୟ କର୍ମଚାରୀମାନେ ତାଂକର ନିଷ୍ଠାପରତା ଯୋଗୁ ତାଂକୁ ଅଶେଷ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ। ୧୯୯୨ରୁ ୧୯୯୪ ପର୍ଯଂତ ସେ ସଂସଦୀୟ ଏଷ୍ଟିମେଟ କମିଟିର ଅଧ୍ୟକ୍ଷ ଥିଲେ। ଗୁରୁତ୍ୱପୂର୍ଣ୍ଣ ମାନବ ସଂବଳ ବିଭାଗର ମନ୍ତ୍ରୀଭାବରେ ମଧ୍ୟ ସେ ନିଜ ଦକ୍ଷତା ପ୍ରମାଣିତ କରିଥିଲେ। ନିଖିଳ ଭାରତ ଡାକ୍ତରି ଫେଡେରେସନର ସେ ସଭାପତି ଭାବରେ ନିର୍ବାଚିତ ହୋଇଥିଲେ। ଦଳ ମଧ୍ୟରେ ନିଖିଳ ଭାରତ କଂଗ୍ରେସ କମିଟିର ଡାକ୍ତରି ସେଲ (Cell)ର ମଧ୍ୟ ସେ ଆବାହକ ଥାଇ ଲୋକପ୍ରିୟତା ଅର୍ଜନ କରିଥିଲେ।

କେଂଦ୍ରରେ ମଂତ୍ରୀ ଥିବା ସମୟରେ ସେ ପଶ୍ଚିମ ଓଡ଼ିଶାର ବିକାଶ ନିମିତ୍ତ ଯଥାସାଧ୍ୟ ଉଦ୍ୟମ କରୁଥିଲେ। ଏହାର ଫଳ ସ୍ୱରୂପ ସଂବଲପୁରରେ ରେଲବାଇ ଡିଭିଜନ, ମହାନଦୀ କୋଲଫିଲ୍ଡ ଲିମିଟେଡର ଶାଖା ଓ ବିସ୍ତାରିତ ଟେଲିଫୋନ ସେବା ସଂଭବପର ହୋଇ ପାରିଲା। ଅଂଚଳ ବିକାଶ ଯୋଜନା ପରି ସ୍ଥାନୀୟ ବିକାଶ କାର୍ଯକ୍ରମର ସଫଳ ରୂପାୟନ ନିମିତ୍ତ ସେ ସର୍ବବିଧ ଉଦ୍ୟମ କରି ଆସୁଥିଲେ। ପଶ୍ଚିମ ଓଡ଼ିଶାର ବିକାଶ ଅବହେଳିତ ଅନୁଭବ କରି ସେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଗଠନ ସହିତ ଏହାକୁ ଶକ୍ତିଶାଳୀ ଓ ସ୍ୱୟଂଶାସିତ କରିବାକୁ ସଂସଦ ଭିତରେ ଓ ବାହାରେ ନିଜ ଉଦ୍ୟମ ଅବ୍ୟାହତ ରଖିଥିଲେ। ଓଡ଼ିଶାରେ ଅବହେଳିତ ପଶ୍ଚିମ ଅଂଚଳକୁ ବିକାଶରେ ପ୍ରାଧାନ୍ୟ ଦେବାକୁ ସେ ଦଳ ମଧ୍ୟରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ ।

ଆୟୁର୍ବିଜ୍ଞାନ ପ୍ରତିଷ୍ଠାନରେ ସେ ନିମୋନିଆ ଚିକିତ୍ସା ନିମିତ୍ତ ଭରତି ହୋଇଥିଲେ ମାତ୍ର ୨୦୦୩ ନଭେଂବର ମାସ ୧୫ ତାରିଖରେ ଡାକ୍ତରମାନଂକର ଅକ୍ଳାଂତ ଉଦ୍ୟମ ସତ୍ତ୍ୱେ ସେ ଶେଷ ନିଶ୍ୱାସ ତ୍ୟାଗକଲେ।



''ପୁରୁଷ ଶ୍ରୀ ଅଟେ ବୀର୍ଯ
ଜାତିଶିରି ଭାଷା
ଯାହା ଘେନି ଜାତି କରେ
ଉନ୍ନତି ପ୍ରତ୍ୟାଶା।''

–ଫକୀରମୋହନ

# ପଂଡିତ
# ହରିହର ମିଶ୍ର ଶର୍ମା

ସଂବଲପୁରର କଥିତ ଭାଷାରେ କବିତା ଓ ଗୀତ ରଚନାରେ ପ୍ରଥମ ଉଦ୍ୟମ କରିଥିବା ବ୍ୟକ୍ତିମାନଂକ ମଧ୍ୟରେ ସାହିତ୍ୟସେବୀ ଶଶିଭୂଷଣ ମିଶ୍ର (୧୮୯୬-୧୯୭୬) ବା ବୁଢ଼ାମାଷ୍ଟ୍ରେ ଅନ୍ୟତମ। ତାଂକର ସାହିତ୍ୟ ପ୍ରୀତି ସେ ଉତ୍ତରାଧିକାରୀ ଭାବରେ ନିଜ ପିତାଂକଠାରୁ ପାଇଥିବାର ଅନୁମାନ କରାଯାଏ। ପିତା ପଂଡିତ ହରିହର ୧୮୬୮ରେ ବରଗଡ଼ ଜିଲ୍ଲାରେ ଅଡଗାଁ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ଚାଟଶାଳୀ ପାଠ ପରେ ସେ ବରଗଡ଼ ମିଡିଲ ସ୍କୁଲରେ ପାଠ ପଢ଼ିଲେ। ସେଠାରେ ନରମାଲ ଟ୍ରେନିଂ ପ୍ରାପ୍ତ ଜଣେ ଶିକ୍ଷକ ମୁଳବସଂତର ପଂଡିତ ମାଧବାନଂଦକର ତାଂକୁ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ କରିବାକୁ ସକ୍ଷମ ହୋଇଥିଲେ। ସେ ମେଧାବୀ ଛାତ୍ର ଥିଲେ ମଧ୍ୟ ପାରିବାରିକ କାରଣରୁ ଉଚ୍ଚଶିକ୍ଷା ଲାଭରୁ ବଂଚିତ ହୋଇଥିଲେ। ନାଗପୁର ଓ ରାୟପୁରରେ ସେ କୃଷିବିଦ୍ୟା ଓ ଚିତ୍ରାଂକନ ଶିକ୍ଷାକରି ସେହି ବିଦ୍ୟାଳୟରେ ଶିକ୍ଷକତା କଲେ। ନିଜର ଶିକ୍ଷାଦାନ ପ୍ରଣାଳୀ ତାଂକୁ ଏକ ଲୋକପ୍ରିୟ ଶିକ୍ଷକ ଭାବରେ ପରିଚିତ କରାଇ

ପାରିଲା। ଭିଲେଜ ସ୍କୁଲମାନ କାଳକ୍ରମେ ମଧ୍ୟଇଂରାଜୀ ଓ ମଧ୍ୟ ଭର୍ନାକୁଲାର ବିଦ୍ୟାଳୟର ରୂପ ନେଲା। ହରିହର ବରଗଡ଼ରୁ ବଦଳି ହୋଇ ଟାଂପରସରା ଓ ଭେଡେନ ମାଇନର ସ୍କୁଲରେ ଶିକ୍ଷକତା କଲେ। ୧୯୨୫ ରେ ସେ ଅବସର ନେଲେ। ସେବା ନିବୃତ୍ତ ଥାଇ ୨୮ ବର୍ଷ କାଳ ସେ ସାହିତ୍ୟ ଚର୍ଚ୍ଚାରେ ବହୁ ଉପାଦେୟ କାବ୍ୟ କବିତା ରଚନାରେ ବ୍ୟୟିତ କରିଥିଲେ। ଅମର ପ୍ରାର୍ଥନା, ରାଘବ ବିଜୟ ଓ ଗୋଚାର ସିଦ୍ଧି କାବ୍ୟ ତାଂକର ଜୀବଦ୍ଦଶାରେ ପ୍ରକାଶିତ ହୋଇଥିଲା। ସମକାଳୀନ ରାଧାନାଥ ଓ ଗଂଗାଧରଂକ କାବ୍ୟଶୈଳୀ ତାଂକ ରଚନାରେ ଅନୁସୃତ! ଏହା ବ୍ୟତୀତ ପଦ୍ୟରେ କବିତା କଦଂବ, କିଶୋର, ବିଚ୍ଛେଦ, ସୁଭଦ୍ରା, ରୋଦନ, ପତିବ୍ରତା ଧର୍ମ, ସଂଗୀତ କୁମୁଦାକର, ଜରାସନ୍ଧ ବଧ, ମଧ୍ୟ ସେ ରଚନା କରିଥିଲେ। ତାଂକ ରଚନା ମଧ୍ୟରେ ଗୋଚାର ସିଦ୍ଧି କାବ୍ୟ ତାଂକର ଶ୍ରେଷ୍ଠ କଳାକୃତି ବୋଲି ସ୍ୱୀକୃତ। ପ୍ରଫେସର ଜାନକୀ ବଲ୍ଲଭ ଭରଦ୍ୱାଜ ଏହି ଗ୍ରଂଥର ମୁଖବଂଧରେ ଏହାକୁ ଏକ ମୂଲ୍ୟବାନ କୃତି ଓ ଏହା ସର୍ବତୋଭାବେ କବିଂକର ବହୁ ଶାସ୍ତ୍ର ଦର୍ଶିତାର ସ୍ୱାକ୍ଷର ବହନ କରିଅଛିବୋଲି ମତ ଦେଇ ଅଛଂତି। ରଘୁବଂଶର ପ୍ରଖ୍ୟାତ ନରପତି ଦିଲ୍ଲୀପ ସୁରଭି ନଂଦିନୀଂକୁ କିପରି ନିଷ୍ଠାର ସହିତ ସେବା କରି ପୁତ୍ରଲାଭରେ ସମର୍ଥ ହୋଇଥିଲେ ତାହା ଏହି କାବ୍ୟର ବିଷୟବସ୍ତୁ। ରାଜଧର୍ମ, ପାତିବ୍ରତ୍ୟର ପ୍ରଶଂସା, ଗୁରୁଭକ୍ତିର ପରାକାଷ୍ଠା, ଗୋସେବାର ମହତ୍ତ୍ୱ ଏହି କାବ୍ୟରେ ଦର୍ଶାଯାଇଅଚି। ଅପ୍ରକାଶିତ ଜରାସନ୍ଧ ବଧ କାବ୍ୟ ଅମିତ୍ରାକ୍ଷରରେ ରଚିତ। ମଂଦର ଅଧ୍ୟାୟରେ ଖଳନାୟକ ଜରାସନ୍ଧର ଜୀବନ ଚରିତ ଓ ଧର୍ମରାଜ ଯୁଧିଷ୍ଠିରଂକର ଶାଂତି ଯଜ୍ଞରେ ନିଧନ ଏହି କାବ୍ୟରେ ବର୍ଣ୍ଣିତ। କବି ୧୯୫୩ରେ ପ୍ରାଣତ୍ୟାଗ କଲେ।



# ବରପାଲି ରାଜା

# ଲାଲ ନୃପରାଜ ସିଂହ

ବ୍ୟାସକବି ଫକୀରମୋହନ ୧୮୯୨ ମସିହାରେ ପ୍ରକାଶିତ 'ଉତ୍କଳ ଭ୍ରମଣ'ରେ ଲେଖିଥିଲେ।

''ଲାଲ ନୃପରାଜ ସିଂହ ରାଜା ବରପାଲି
ତୁଂଭର ସୁଖ୍ୟାତି କରୁନାହିଁ ଖାଲି ଖାଲି।
ପାଂଡିତ୍ୟ କବିତ୍ୱ ଏଣେ ତେଣେ ରାଜଭୋଗ,
ଏହାଂକୁ ବୋଲଂତି ମଣି-କାଂଚନର ଯୋଗ।
ପ୍ରଜାଂକ ଉନ୍ନତି ପାଇଁ କରୁଛ ଯତନ
ଏହା ସିନା ଅଟେ ରାଜଧର୍ମ ସନାତନ।''

ରାଜା ନୃପରାଜ ସିଂହ ସରକାରଂକରଠାରେ ଭକ୍ତି, ଜ୍ଞାତିମାନଂକଠାରେ ଶ୍ରଦ୍ଧା ଓ ସ୍ନେହ, ବଂଧୁମାନଂକଠାରେ ସୌହାର୍ଦ୍ଦ୍ୟ, ପ୍ରଜାମାନଂକଠାରେ ପୁତ୍ର ବାତ୍ସଲ୍ୟ ଓ ସାଧାରଣଂକଠାରେ ସାରଲ୍ୟ ପ୍ରଦର୍ଶନ କରି ସମସ୍ତଂକର ପ୍ରୀତି ଆକର୍ଷଣ କରିପାରୁଥିଲେ।

ସଂବଲପୁରଠାରେ ମହାରାଜା ବଳିୟାରସିଂହ ୧୫୮୨ ଖ୍ରୀଷ୍ଟାବ୍ଦରେ ତାଂକ କନିଷ୍ଠ ପୁତ୍ରଂକୁ ବରପାଲି ଇଲାକା ଭରଣପୋଷଣ ପାଇଁ ଦେଇଥିଲେ। ଅଂଚଳଟି କ୍ଷୁଦ୍ର ଅରଣ୍ୟମୟ ଓ ଅଳ୍ପ ଆୟ ବିଶିଷ୍ଟ ଥିଲା। ମାତ୍ର ତାଂକ ଉତ୍ତରାଧିକାରୀମାନେ ଏହାର ଶ୍ରୀବୃଦ୍ଧି ସାଧନ କରିଥିଲେ। ୧୮୪୯ରେ ମୃତ ସଂବଲପୁର ରାଜ୍ୟର ଶେଷ ରାଜା

ନାରାୟଣ ସିଂହ ବରପାଲିରୁ ପୋଷ୍ୟ ପୁତ୍ର ହୋଇ ଯାଇ ୧୮୩୪ରେ ଗାଦି ପାଇଥିଲେ। ତାଂକ ମୃତ୍ୟୁ ପରେ ସୁରେନ୍ଦ୍ର ସାଏଂକ ବିଦ୍ରୋହ ଦେଖା ଦେଇଥିଲା। ପରେ ଜମିଦାରମାନେ ବିଦ୍ରୋହୀମାନଂକ ସହିତ ସହଯୋଗ କଲେ ମାତ୍ର ବରପାଲିର ତତ୍କାଳୀନ ରାଜା ଭବାନୀ ସିଂହ ଏଥିପ୍ରତି ଉଦାସୀନ ଥାଇ ଇଂରେଜ ସରକାରଂକୁ ବିଦ୍ରୋହ ଦମନରେ ସାହାଯ୍ୟ କଲେ। କମିସନର୍ ସାହେବ ସେଥି ପାଇଁ ତାଂକୁ ପ୍ରଶଂସା କଲେ। ରାଜ ପରିବାରରେ ରାଜଭକ୍ତି ପରଂପରା ରହିଲା। ନୃପରାଜଂକର ଜନ୍ମ ୧୮୫୨ରେ ତାଂକ ପିତାମହ ଭବାନି ସିଂହଂକର ପୁତ୍ର ଗଜେଂଦ୍ର ସିଂହ ତାଂକର ବାପା। ସେ ଟିକାୟତ ଭାବରେ ରାଜ୍ୟ ପରିଚାଳନା କରୁଥାଆଂତି। ତାଂକର ଦୁଇ ପୁଅ ଶେଷକୁ ଥିଲେ ରାଜେଂଦ୍ର ଓ ନୃପରାଜ। ୧୮୫୯ରେ ବରପାଲିରେ ଭୟଂକର ବିସୂଚିକା ରୋଗ ଦେଖାଦେଲା। ରାଜକୁମାର ଗଜେଂଦ୍ର ସିଂହଂକର ସେଥିରେ ମୃତ୍ୟୁ ହେଲା। ତାଂକର ଅକାଳ ମୃତ୍ୟୁରେ ବ୍ୟଥିତ ହୋଇ ରାଜା ଭବାନୀ ସିଂହ ଦୁଇମାସ ପରେ ମୃତ ହେଲେ। ପୁତ୍ର ରାଜେଂଦ୍ର ରାଜ୍ୟଭାର ଗ୍ରହଣ କଲେ ୧୮୫୯ରେ। ସେ ମଧ୍ୟ ଇଂରେଜ ସରକାର ପ୍ରତି ଅନୁରୂପ ଭକ୍ତି ପ୍ରଦର୍ଶନ କଲେ। ରାଜ୍ୟରେ ଗୋଟିଏ ଇଂରାଜି ଓଡ଼ିଆ ବିଦ୍ୟାଳୟ ସ୍ଥାପନ କଲେ। ସାନଭାଇ ନୃପରାଜଂକର ସେଠାରେ ପାଠ ପଢ଼ିବାର ବ୍ୟବସ୍ଥା କଲେ, ମାତ୍ର ଦଶବର୍ଷ ଉତ୍ତାରେ ପୁତ୍ରହୀନ ଭାବରେ ସେ ମଧ୍ୟ ପ୍ରାଣତ୍ୟାଗ କଲେ। ନୃପରାଜ ବିଦ୍ୟାଶିକ୍ଷା ସଂପୂର୍ଣ କରି ପାରିଲେ ନାହିଁ। ମାତ୍ର ୧୭ ବର୍ଷ ବୟସରେ ରାଜ୍ୟ ପରିଚାଳନା ଦାୟିତ୍ୱ ଗ୍ରହଣ କଲେ।

ରାଜେଂଦ୍ର ଅନେକ ଋଣ କରିଯାଇଥିଲେ। ନୃପରାଜ ଏହାର ପରିମାଣ ବାର୍ଷିକ ଆୟର ତିନିଗୁଣ ବୋଲି କଳନା କଲେ। ଏହି ଋଣଭାର ଲାଘବ କରିବା ତାଂକର ପ୍ରଥମ କର୍ତବ୍ୟ ହେଲା। ସୁଧହାର ମଧ୍ୟ ଭିନ୍ନ ଭିନ୍ନ ମହାଜନମାନେ ବିଭିନ୍ନ ଭାବରେ ହିସାବ କରୁଥିଲେ। ସବୁ ଋଣ ଜଣେ ମହାଜନଂକଠାରୁ ଆଣି ସୁଧହାର ସର୍ବନିମ୍ନ ରଖି ଉଚ୍ଚ ହାରରେ ଋଣ ଦେଇଥିବା ମହାଜନମାନଂକର ଋଣ ସୁଝିବା ଉଦ୍ୟମ ପ୍ରଥମେ ସେ ଆରଂଭ କଲେ। ରାଜ୍ୟର ଆୟ ମଧ୍ୟ ଭୂ ରାଜସ୍ୱ ଉପରେ ନିର୍ଭର କରୁଥିଲା। ପ୍ରଜାମାନେ ନଗଦ ଓ ଦ୍ରବ୍ୟ ଆକାରରେ ଖଜଣା ଦେଉଥିଲେ। ଚାଉଳ, ମୁଗ, ଘିଅ, କାଠ, ପରିବା ଆଦି ଦେଇ ମଧ୍ୟ ଖଜଣା ଅସୁଲ ହୋଇ ପାରୁଥିଲା। ଡେପୁଟି କମିସନରଂକ ଅନୁମତି ନେଇ ସେ ଦ୍ରବ୍ୟ-ମୂଲ୍ୟ ନିର୍ଧାରଣ କଲେ ଓ ନଗଦ ଟଂକା ଆକାରରେ ଖଜଣା ଦେବାର ବ୍ୟବସ୍ଥା କଲେ। ଗ୍ରାମର ମାଲଗୁଜାରି ଅସୁଲ

ଠିକାଦାରଂକମାନଂକୁ ଦିଆଯାଉ ଥାଏ। ସେମାନେ ନିଜର କମିସନ୍ ରଖି ବାକି ଆୟ ରାଜାଂକ ଖଜଣାଖାନାରେ ପଇଠ କରୁଥିଲେ। ପାଂଚ ବର୍ଷର ଦେୟ ସେମାନେ ଏକ ଥରକେ ଦେଇଦେଉଥିଲେ। ଋଣଶୋଧ ପାଇ ଅର୍ଥର ଜରୁରୀ ଆବଶ୍ୟକତା ଦେଖି ନୃପରାଜ ସେମାନଂକୁ ଦଶବରଷର ଦେୟ ଅଗ୍ରିମ ନେବାର ବ୍ୟବସ୍ଥା କଲେ। ଦେୟ ଅସୁଲର ଅସୁବିଧା ଦେଖି ଅସୁଲ ନିମିତ୍ତ କିସ୍ତି ବ୍ୟବସ୍ଥା କଲେ। ରାଜ ପରିବାର ଓ ରାଜ୍ୟର ବ୍ୟୟ ସଂକୋଚନ କରି ସେ ଏ ଦିଗରେ କିଂଚିତ୍ ସଫଳ ହେଲେ ମଧ୍ୟ ଠିକାଦାରମାନେ ଏତେ ପରିମାଣରେ ଅର୍ଥ ଦେଇ ନ ପାରି ଅକିଂଚନ ଓ ଋଣଗ୍ରସ୍ତ ହୋଇ ପଡ଼ିଲେ। ଡେପୁଟି କମିସନରଂକ ସହିତ ପରାମର୍ଶ କରି ସେ ସେମାନଂକର ଦୁରବସ୍ଥା ଦୂରୀକରଣର ଉଦ୍ୟମ କଲେ। ଠିକାଦାରମାନଂକର ଗ୍ରାମ ବଂଧକ ଦିଆ ଯାଇପାରିବ ନାହିଁ ବା ବିକ୍ରି ହୋଇ ପାରିବ ନାହିଁ ବୋଲି ଆଇନରେ ବ୍ୟବସ୍ଥା ହେଲା। ପ୍ରଜାମାନଂକଠାରୁ ଖଜଣା ଠିକାଦାରମାନେ ଅସୁଲ କରୁଥିଲେ, ମାତ୍ର ଏହି ଖଜଣା ନିର୍ଣ୍ଣୟ କରିବାରେ ସୁବଂଦୋବସ୍ତ ଅଭାବରୁ ହାର ଫରକ ରହୁଥିଲା। ଏକା କିସମ ଜମିର ଖଜଣାରେ ଭିନ୍ନ ଭିନ୍ନ ଗ୍ରାମରେ ଏକରୁ ୪ ଗୁଣ ପାର୍ଥକ୍ୟ ରହୁଥିଲା। ଏହା ସଂଶୋଧିତ ହେଇ ଅସଂଗତି ଦୂର ହେଲା। ମହାଜନମାନେ ମଧ୍ୟ ଠିକାଦାରମାନଂକୁ ଅର୍ଥ ଯୋଗାଇ ଯେପରି ଉତ୍ପୀଡ଼ନ ନ କରଂତି ତାହାର ମଧ୍ୟ ପ୍ରତିକାର ରଖାଗଲା। କିସ୍ତି ମଧ୍ୟ ବଢ଼ାଇ ଦିଆଗଲା। ବରପାଲି ଇଲାକାରେ ବିଦ୍ରୋହ ଦମନ ଉଦ୍ଦେଶ୍ୟରେ ପ୍ରାୟ ଏକ ହଜାର ପାଇକ ଜାଗିର ଥିଲା। ସେମାନେ ଅସ୍ତ୍ରଧାରୀ ସିପାହୀଥିଲେ। ପୁଲିସ୍ ବ୍ୟବସ୍ଥାରେ ଓ ଆଇନ ଶୃଂଖଳା ପରିସ୍ଥିତିରେ ଉନ୍ନତି ହେବାରୁ ସେମାନଂକର ଆବଶ୍ୟକତା ଆଉ ରହିଲା ନାହିଁ। ନୃପରାଜ ସିପାହୀମାନେ କେହି ନିଷ୍କର କେହି ସ୍ୱଳ୍ପକର ବା ଅର୍ଦ୍ଧକର ଦେଇ ଜମି ଭୋଗ କରୁଥିବା ବ୍ୟବସ୍ଥାକୁ ଲୋପକରି ସେମାନଂକ ଜମି ଉପରେ ସମହାରରେ ଖଜଣା ନିର୍ଦ୍ଧାରିତ କଲେ। ଏହା ଆୟ ବୃଦ୍ଧିରେ ସହାୟକ ହେଲା। ସଂବଲପୁରରୁ ରାଜଭ୍ରାତାମାନେ ବୃତ୍ତି ସ୍ୱରୂପ ଯେଉଁ ମୁକ୍ତ ଅଂଚଳ ପାଇ ତାହାର ଅଧୀଶ୍ୱର ବୋଲାଉ ଥିଲେ ତା ମଧ୍ୟରେ ଆୟ ଓ ଆୟତନରେ ସୋନପୁର ପ୍ରଥମ ଓ ବରପାଲି ଦ୍ୱିତୀୟ ଥିଲା। ସୋନପୁର ଓ ଅନ୍ୟମାନେ କରଦ ରାଜ୍ୟ ରୂପେ ପରିଗଣିତ, ମାତ୍ର ବରପାଲି ଜମିଦାରି ଥିଲା। ସଂବଲପୁର ଚୌହାନ ବଂଶୀୟ କ୍ଷତ୍ରିୟ। ବରପାଲି ତଦ୍ରୂପ। ନିଜର ଗୌରବ ବିସ୍ତାର ନିମିତ୍ତ ନୃପରାଜ ପାଟଣାରାଜା ଦଳଗଂଜନ, ସୋନପୁରର ନୀଳାଧର, ବାମଂଡାର ସାର ବାସୁଦେବ, ସୁରଗୁଜାର ରାଜା ରଘୁନାଥ ଶରଣଦେବ, ମୟୂରଭଂଜର ଶ୍ରୀ ରାମ ଭଂଜଦେଓଂକ ବ୍ୟତୀତ ବୌଦ ଓ କଳାହାଂଡିର

ଥୁଆମୂଳରାମପୁର ଅଧୀଶ୍ୱରମାନଂକ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ ଓ ବୈବାହିକ ବଂଧନ ସୂତ୍ରରେ ଆବଦ୍ଧ ରହି କ୍ଷତ୍ରିୟ ନରପତିମାନଂକ ସମାଜରେ ପ୍ରତିଷ୍ଠା ବୃଦ୍ଧି କରାଇଲେ। ରାଜା ହେବାର ଦୁଇ ବର୍ଷ ପରେ ସେ ସାନଖେମୁଂଡିର ଗଂଗ ବଂଶୀୟ ରାଜା ରଘୁନାଥଦେବଂକର କନ୍ୟାଂକୁ ବିବାହ କରିଥିଲେ। ନିଜର ସୌଜନ୍ୟ ସୌହାର୍ଦ୍ଧ ଓ ନିରଭିମାନ ପ୍ରକାଶ କରି ସେ ଏହି ନରପତିମାନଂକର ପ୍ରୀତି ଆକର୍ଷଣ କରି ପାରୁଥିଲେ। ଏହି ସବୁ ସାମାଜିକ କାର୍ଯରେ ସେ ୧୮୮୯ ରୁ ୧୯୦୨ ପର୍ଯଂତ ବହୁ ବ୍ୟୟ କଲେ। କୃପଣତା ତାଂକର ଅପ୍ରିୟ ଓ ଔଦାର୍ଯ ପରମପ୍ରିୟ ଗୁଣ ହୋଇ ରହିଥିଲା। ପ୍ରଜାମାନଂକର ଉନ୍ନତି ନିମିତ୍ତ ଏହା ପରେ ସେ ସାଧାରଣ ହିତକର କାର୍ଯାଦିରେ ଧନ ଓ ମନ ଲଗାଇଲେ। ଇଂରେଜ ସରକାର ତାଂକୁ ୧୮୭୫ରେ ୩ୟ ଶ୍ରେଣୀ ଅନରାରି ମାଜିଷ୍ଟ୍ରେଟ୍ କ୍ଷମତା ଦେଲେ। ପରେ ଏହା ୨ୟ ଶ୍ରେଣୀ କ୍ଷମତା ହେଲା। ନିଜ ଜମିଦାରି ଅଂଚଳ ବ୍ୟତୀତ ନିକଟବର୍ତ୍ତୀ ଖାଲସା (ପ୍ରତ୍ୟକ୍ଷ ଶାସନାଧୀନ) ଅଂଚଳରେ ମଧ୍ୟ ସୁବିଧା ଦୃଷ୍ଟିରୁ ଏହି କ୍ଷମତା ପ୍ରୟୋଗ ପାଇଁ ତାଂକୁ ଅଧିକାର ମିଳିଲା। ଏହା ସେ ଦକ୍ଷତାର ସହିତ ସଂପାଦନ କଲେ। ସରକାର ତାଂକୁ ଦେଓ୍ୱାନି ଅଦାଲତରେ ହାଜର ହେବାକୁ ଛାଡ଼ ଦେଲେ। ସମ୍ରାଟ ସପ୍ତମ ଏଡଓ୍ୱାର୍ଡଂକର ଅଭିଷେକ ଉତ୍ସବରେ ଦିଲ୍ଲୀ ଦରବାରରେ ଯୋଗଦାନ ନିମିତ୍ତ ସ୍ୱତଂତ୍ର ନିମଂତ୍ରଣ ଦେଇ ରାଜଭକ୍ତି ସ୍ୱୀକାର କଲେ। ତାଂକୁ ସେଠାରେ କାଇଜର୍-ଇ-ହିଂଦ୍ ରୌପ୍ୟପଦକ ମଧ୍ୟ ମିଳିଲା। ଆଇନଶୃଂଖଳା ରକ୍ଷା ନିମିତ୍ତ ସେ କେତେଗୁଡ଼ିଏ ପ୍ରସ୍ତାବ ଜିଲ୍ଲା ଡେପୁଟି କମିସନରଂକୁ ଦେଲେ। ଏହା ଗୃହୀତ ହେଲା। ଅପରାଧହାର କମିଲା। ୧୮୯୭ରେ ରାୟପୁର ଅଂଚଳରେ ଘୋର ଦୁର୍ଭିକ୍ଷ ଦେଖାଦେଲା। ନିଜ ଇଲାକାକୁ ଯେଉଁମାନେ ପଳାଇ ଆସିଲେ ସେମାନଂକ ପାଇଁ ସେ ଅନ୍ନଛତ୍ରର ବ୍ୟବସ୍ଥା କଲେ। ମହାରାଣୀ ଭିକ୍ଟୋରିଆଂକର ହୀରକ ଜୟଂତୀ ଉପଲକ୍ଷେ ମଧ୍ୟ ସେ ରାଜ୍ୟରେ ଉତ୍ସବ ପାଳନ କରି ନିଜ ରାଜଭକ୍ତି ଦେଖାଇ ଥିଲେ। ୧୮୯୯ ସାଲରେ ଜିଲ୍ଲାରେ ଦୁର୍ଭିକ୍ଷ ପଡ଼ିଲା। ସେ ସରକାରଂକୁ ସାହାଯ୍ୟ କଲେ। ନିଜ ପ୍ରଜାମାନଂକୁ ଚାଷ ବିହନ ଯୋଗାଇଦେଲେ। ଚମଡ଼ା ଓ ମାଂସ ଲୋଭରେ କେତେକ ସଂପ୍ରଦାୟର ଲୋକେ ଗୋରୁ ମାରି ଚମଡ଼ା ବେପାରୀଂକୁ ବିକି ଲାଭ ଉଠାଉଥିଲେ। ଲାଇସେନ୍ସ ପ୍ରଥା ଜାରି କରି ସେ ଏହି ଚମଡ଼ା ବେପାରୀଂକୁ ନିୟଂତ୍ରିତ କରାଇପାରିଲେ।

ଶିକ୍ଷାର ପ୍ରସାର ନିମିତ୍ତ ସେ ଅଧା ବ୍ୟୟ ଦେଇ ନିଜ ଇଲାକାରେ ଦଶଗୋଟି ବିଦ୍ୟାଳୟ ରଖିଥିଲେ। କେତେ ବର୍ଷପରେ ଏହି ସବୁ ଉଠିଗଲା। ସେ ବରପାଲିରେ

ଗୋଟିଏ ମାଇନର ସ୍କୁଲ୍ ରଖିଲେ। ତାର ପୁରୁଣା ଘରକୁ ନୂଆ କରି ତିଆରି କଲେ। ବାଳିକା ସ୍କୁଲ୍ ଗୋଟିଏ ବସାଇ ସେଥିପାଇଁ ଘର ତିଆରି କଲେ ଓ ନିଜ କନ୍ୟାମାନଂକୁ ସେଠାକୁ ବିଦ୍ୟାଶିକ୍ଷାପାଇଁ ପଠାଇ ନାରୀ ଶିକ୍ଷା ଅଗ୍ରଗତିରେ ସହାୟକ ହେଲେ। ନିଜ ସଂତାନମାନଂକ ନିମିତ୍ତ ୧୮୮୪ରୁ ୧୮୯୬ ପର୍ଯ୍ୟଂତ ଗୋଟିଏ ଇଂରେଜ ସ୍କୁଲ୍ ମଧ୍ୟ ପରିଚାଳନା କରିଥିଲେ। ବିଜ୍ଞାନ ଶିକ୍ଷା ନିମିତ୍ତ ଯଂତ୍ରପାତି କିଣିବାକୁ ସେ ଅର୍ଥଦାନ କଲେ। ଜିଲାର ଶିକ୍ଷକମାନଂକ ମଧ୍ୟରେ ସେମାନଂକର ମାନ ବୃଦ୍ଧି ନିମିତ୍ତ ପ୍ରତିଯୋଗିତା ସୃଷ୍ଟିକରି ଶ୍ରେଷ୍ଠ ଲେଖକ ବା ବକ୍ତାଂକୁ ଏକ ସ୍ୱର୍ଣ୍ଣ ପଦକ ଦେବାର ସୁଯୋଗ ନିଜେ ସୃଷ୍ଟି କଲେ। ଅନେକ ଦରିଦ୍ର ଛାତ୍ରଂକର ବିଦ୍ୟା ଶିକ୍ଷରେ ମଧ୍ୟ ସେ ସାହାଯ୍ୟ କଲେ।

ବରପାଲି ସହରକୁ ସୁଶୋଭିତ କରିବା ଉଦ୍ଦେଶ୍ୟରେ ସେ ଜଳାଶୟମାନଂକର ପୁନରୁଦ୍ଧାର କଲେ, ନିକଟରେ ଜଂଗଲ ନ ଥିବାରୁ ସବୁ ଗଛମାନ ଜାଳକାଠ ରୂପେ କଟା ହୋଇ ଯାଉଥିଲା। ଅନେକ ପ୍ରକାର ଆଂବ ଗଛ ଆଣି ଲଗାଇ ଗୋଟିଏ ଆଂବ ବୁରେଇ ସେ ବସେଇଲେ। ନିଜର ଧନୀ ପ୍ରଜାମାନଂକର ସାହାଯ୍ୟରେ ସେମାନଂକର ସୁଖ୍ୟାତି ନିମିତ୍ତ ସେ ଅନେକଗୁଡ଼ିଏ ଜଳାଶୟର ପଂକୋଦ୍ଧାର କରି ତାକୁ ଲୋକମାନଂକର ବ୍ୟବହାର ନିମିତ୍ତ ଉତ୍ସର୍ଗ କଲେ। ଅନେକ ପୁରୁଣା ଦେବ ମଂଦିରର ଜୀର୍ଣ୍ଣ ସଂସ୍କାର କରାଇ ଦେବ ପୂଜାର ବ୍ୟବସ୍ଥା କରି ପ୍ରଜାମାନଂକ ମଧ୍ୟରେ ଧର୍ମ ଭାବନା ବୃଦ୍ଧି କରାଇପାରିଲେ। ୧୮୯୯ରେ ନିଜ ଆଂବ ବୁରେଇରେ ଗୋଟିଏ ହରିଯଜ୍ଞ କରି ସେଠାରେ ସର୍ବସାଧାରଣ ପ୍ରସାଦ ପାଇବାର ବ୍ୟବସ୍ଥା କଲେ। ପ୍ରାୟ ୬୦ ହଜାର ଲୋକ ଆର୍ଥିକ ଓ ଜାତିଗତ ବିଭିନ୍ନତା ସତ୍ତ୍ୱେ ଏଠାରେ ପ୍ରସାଦ ସେବନ କରିଥିଲେ। ଶୀତଳ ଷଷ୍ଠୀ ଉତ୍ସବ ଜିଲାରେ କେବଳ ସଂବଲପୁର ସହରରେ ପାଳିତ ହେଉଥିଲା। ସେ ଏହା ବରପାଲି ଶିବ ମଂଦିରରେ ୧୮୭୭ରେ ନିଜର ପୁତ୍ର ଲାଭ ଉପଲକ୍ଷେ ସଂପାଦନ କଲେ ଓ ସେହିଦିନଠାରୁ ଏହା ଜିଲାର ଏକ ପ୍ରଧାନ ପର୍ବ ହୋଇଆସୁଛି। ଜଣେ ପ୍ରଜା ହରିହର ସାହୁ ବରଲା ବାହାଲ ଗ୍ରାମର ଗୌଂତି ହକ୍ ପାଇଲେ। ନୃପରାଜଂକ ପ୍ରେରଣାରେ ସେ ଭୋଗରା ଜମିରୁ ଯାହା ଧାନ ଆୟ ପାଇଲେ ତାକୁ ଗୋପାଳ ଜିଉ ମଠରେ ସଦାବର୍ତ୍ତ ନିମିତ୍ତ ଉତ୍ସର୍ଗ କଲେ। ରାଜା ନୃପରାଜ ଭୋଗରା ଜମିର ରାଜସ୍ୱ ଯାହା ଏହି ଗ୍ରାମରୁ ମିଳୁଥିଲା ତାକୁ ଜଗନ୍ନାଥ ମଂଦିରରେ ଠାକୁରାଣୀ ପର୍ବପର୍ବାଣିରେ ବ୍ୟୟ ହେବାର ବ୍ୟବସ୍ଥା ରଖିଗଲେ। ବରପାଲିରେ ୪/୫ଜଣ କବିରାଜ ରୋଗ ଚିକିତ୍ସା କରୁଥିଲେ। ନୃପରାଜ ପ୍ରସ୍ତୁତ ଔଷଧ ବଡ଼ଂବା ଆଦି ସ୍ଥାନରୁ ମଗାଇ ଚିକିତ୍ସା ନିମିତ୍ତ ପ୍ରଜାମାନଂକୁ ବିତରଣ କରୁଥିଲେ।

ନୃପରାଜ ନିଜର ଶିକ୍ଷା ସମାପ୍ତ କରି ନଥିଲେ ସୁଦ୍ଧା ସାହିତ୍ୟ ପ୍ରୀତି ଉଜ୍ଜୀବିତ ରଖିଥିଲେ। କବି ଗଂଗାଧରଂକ ପ୍ରତିଭାର ପ୍ରଶଂସକ ସେ ପ୍ରଥମେ ତାଂକୁ ୭ଟଂକା ଦରମାରେ ଅମିନ ଭାବରେ ନିଯୁକ୍ତ କରିଥିଲେ। ପରେ ସେ ମାଲମୋହରିର ଜୁଡିସିଆଲ୍ ପେସ୍କାର ଆଦି କାର୍ଯରେ ନିଯୁକ୍ତ ହୋଇ ଶେଷରେ ସରକାରଂକ କର୍ମଚାରୀ ଭାବରେ ପେନସନ ନେଲେ। ତାଂକ ପ୍ରତି ନୃପରାଜଂକର ଅଶେଷ ଶ୍ରଦ୍ଧା ଥିଲା, ସାହିତ୍ୟ ରଚନା କ୍ଷେତ୍ରରେ ନୃପରାଜ 'ବଳରାମଦେବ' ଓ 'ଆମୋଦ' ନାମରେ ଦୁଇଖଂଡ ପୁସ୍ତକ ପ୍ରକାଶ କଲେ। ୧୯୦୦ରେ ଏହି ପୁସ୍ତକ ମଧ୍ୟପ୍ରଦେଶରେ ରାଜ୍ୟ ଲାଇବ୍ରେରି ଓ ପୁରସ୍କାର ନିମିତ୍ତ ମନୋନୀତ ହୋଇଥିଲା। ଉତ୍କଳ ସାହିତ୍ୟ ମାସିକ ପତ୍ରରେ ମଧ୍ୟ ନୃପରାଜ ନିଜ ରଚନା ପ୍ରକାଶ କରିଥିଲେ। ସାହିତ୍ୟିକମାନଂକୁ ଉତ୍ସାହ ଓ ଯଥେଷ୍ଟ ସାହାଯ୍ୟ ଦେଇ ସେ ନିଜର ଗୌରବ ବୃଦ୍ଧି କଲେ। ପଂଡିତ ନୀଳମଣି ବିଦ୍ୟାରତ୍ନଂର ଅନୁରୋଧରେ କବି ଗଂଗାଧର ୧୯୦୫ରେ 'ନୃପରାଜ ସିଂହ' ନାମରେ ତାଂକର ଏକ ଜୀବନଚରିତ ପ୍ରକାଶ କରାଇଥିଲେ। ପ୍ରଦର୍ଶିତ ରାଜଭକ୍ତି, ପ୍ରଜାବତ୍ସଳତା, ଶିକ୍ଷାପ୍ରୀତି, ସାହିତ୍ୟ ପ୍ରେମ, ସାମାଜିକ ଓ ଧାର୍ମିକ କୀର୍ତିର ପୁରସ୍କାର ସ୍ୱରୂପ ଭାଇସ୍‌ରାୟ ବଡଲାଟ ଲର୍ଡ କର୍ଜନ ୧୯୦୦ ନବବର୍ଷ ଉପଲକ୍ଷେ ତାଂକୁ 'ରାୟ ବାହାଦୁର' ଉପାଧିରେ ଭୂଷିତ କରିଥିଲେ ଓ ୧୯୦୧ ମଇ ୨୦ ରେ କମିସନର୍ ବିଶେଷ ଦରବାରରେ ତାଂକର ଗୁଣ କୀର୍ତନ କରି ଏହି ଉପାଧି ପ୍ରଦାନ କରିଥିଲେ।

ନିରଳସ କର୍ମମୟ ଜୀବନଯାପନ କରି ସେ ୧୯୧୮ ଅକ୍ଟୋବର୍ ମାସରେ ପ୍ରାଣତ୍ୟାଗ କଲେ। ନିଜର ଉଦାରତା ଓ କୀର୍ତି ନିମିତ୍ତ ସେ ସ୍ମରଣୀୟ।

(କବି ଗଂଗାଧରଂକ ଜୀବନୀ ଉପରେ ଆଧାରିତ)



# ସର୍ବତ୍ୟାଗୀ ସ୍ୱାଧୀନତା ସଂଗ୍ରାମୀ
# ଫକୀର ବେହେରା

୧୯୩୭ରେ ଓଡ଼ିଶା ପ୍ରଦେଶ ଗଠନ ପରେ ଯେଉଁ ପ୍ରଥମ ନିର୍ବାଚନ ହେଲା ସେଥିରେ ବରଗଡ଼ ନିର୍ବାଚନ ମଂଡଳୀକୁ ଦୁଇଜଣ ପ୍ରାର୍ଥୀ ନିର୍ବାଚିତ ହେଲେ। ସାଧାରଣ ପ୍ରାର୍ଥୀ ଫକୀର ବେହେରା। ସଂରକ୍ଷିତ ଆସନରୁ ବିଶି ବିଭାର (ଗଂଡା) ବିଧାୟକ ହେଲେ। ଫକୀର ବେହେରାଂକର ଜୀବନ ସଂଗ୍ରାମମୟ ଥିଲା। ଜଷ୍ଟିସ୍ କୃଷ୍ଣପ୍ରସାଦ ମହାପାତ୍ର ତାଂକୁ ସର୍ବତ୍ୟାଗୀ ସ୍ୱାଧୀନତା ସଂଗ୍ରାମୀ ଭାବରେ ଚିତ୍ରଣ କରିଅଛଂତି। ଥରେ ମାତ୍ର ବିଧାୟକ ହେବା ଛଡ଼ା ଅନ୍ୟ କୌଣସି ସମ୍ମାନ ତାଂକୁ ମିଳି ନ ଥିଲା। ମୃତ୍ୟୁ ପରେ ମଧ୍ୟ ଜିଲ୍ଲା ବା ରାଜ୍ୟ ସ୍ତରରେ ସେ ନିଜ ପ୍ରାପ୍ୟ ପାଇ ନାହାଂତି।

ବରଗଡ଼ର ବାଲିଟିକରା ଗାଁ। ସେଠାରେ ଏକ ସ୍ୱଚ୍ଛଳ କୃଷିଜୀବୀ ପରିବାରରେ ବିଂଶ ଶତାବ୍ଦୀର ଆରଂଭରେ ତାଂକର ଜନ୍ମ। ସାଧାରଣ ଭାବରେ ଶିକ୍ଷା ଲାଭ କଲେ। ସବ୍‌ଡିଭିଜନ୍‌ରେ ଗୋଟିଏ ମାତ୍ର ହାଇସ୍କୁଲ ଓ ଅଳ୍ପ କେତୋଟି ମାଇନର୍ ସ୍କୁଲ୍ ଥାଏ। ଲୋକ କଲ୍ୟାଣ ନିମିତ୍ତ ସେ ରାଜନୀତି ପ୍ରତି ଆକୃଷ୍ଟ ହେଲେ। ମହାତ୍ମା ଗାଂଧିଂକଠାରୁ ପ୍ରେରଣା ପାଇ ସେ ଅସହଯୋଗ ଆଂଦୋଳନରେ ଯୋଗଦାନ କଲେ। ସରକାରଂକର କୋପ ଦୃଷ୍ଟିରେ ପଡ଼ିଲେ। ସେଥିପ୍ରତି ଭ୍ରୂକ୍ଷେପ ନ କରି ନିଜର ପରିବାର ଭୂସଂପତ୍ତିର ଲୋଭ ଏଡ଼ାଇ ଦେଇ ସେ ଆଂଦୋଳନର କର୍ମୀ ସଂଗ୍ରହ କଲେ। ସେମାନଂକୁ ନିଜ ଘରେ ରଖି ଖିଆପିଆର ବ୍ୟବସ୍ଥା କଲେ। ପାଦରେ ଜୋତା ନାହିଁ। ଦେହରେ ମୋଟା ହାତକଟା ଖଦଡ଼ ଧୋତି ସାଂଗକୁ ମୋଟା ଚାଦର। ମୁଂଡରେ ଗାଂଧି ଟୋପି। ଗାଁକୁ ଗାଁ

ବୁଲି ସେ ଅସହଯୋଗ ଆଂଦୋଳନର ବାର୍ତା ପ୍ରଚାରରେ ଲାଗିଲେ। ନିଶା ନିବାରଣ, ବିଦେଶୀ ବର୍ଜନ କାର୍ଯକ୍ରମରେ ସକ୍ରିୟ ଭାଗ ନେଇ କାରାଦଂଡ ଭୋଗିଲେ। ସମଗ୍ର ବରଗଡ଼ ଅଂଚଳରେ ସଂଗଠନ ଦାୟିତ୍ୱ ନେଇ ସ୍ୱାଧୀନତା ଆଂଦୋଳନକୁ ସଜୀବ ଓ କର୍ମମୁଖର କରିବା ଯେପରି ତାଂକର ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା। ବାଲିଚିଙ୍ଗରାର ନିଜ ଘରକୁ ସେ କଂଗ୍ରେସ ଅଫିସ୍ କଲେ। ଘର ଉପରେ ତ୍ରିରଂଗା ଜାତୀୟ ପତାକା ଉଡୁଥାଏ। ପୁଲିସ୍ ଆସେ। ଆପତ୍ତିଜନକ କାଗଜପତ୍ର ପାଇଁ ଘର ଖାନତଲାସ କରେ। ଜାତୀୟ ପତାକାକୁ ଉତାରି ଦିଏ। ମାତ୍ର ଯେ କୌଣସି ଦୁର୍ଭାଗ୍ୟଜନକ ପରିସ୍ଥିତିକୁ ମୁକାବିଲା କରିବାରେ ଅଭ୍ୟସ୍ତ ଥାଇ ସେ ପୁଣି ନିଜର ପ୍ରଚାର ଆଂଦୋଳନ ଆରଂଭ କରଂତି। ଜାତି, ଧର୍ମ, ବର୍ଣ, ଲିଂଗ ନିର୍ବିଶେଷରେ କଂଗ୍ରେସ କର୍ମୀମାନଂକୁ ଆତିଥ୍ୟ ପ୍ରଦାନରେ ବେହେରା ପରିବାର କୁଂଠିତ ନ ଥିଲେ। କଂଗ୍ରେସ କର୍ମୀ ଜେଲ୍ ଯିବା ପୂର୍ବରୁ ତାଂକ ପରାମର୍ଶ ନେଉଥିଲେ। ଜେଲରୁ ଫେରି ତାଂକ ଆତିଥ୍ୟ ଗ୍ରହଣ କରୁଥିଲେ। ସ୍ୱାଧୀନତା ସଂଗ୍ରାମ ଇତିହାସରେ କ୍ୱଚିତ୍ ଏପରି ନିଃସ୍ୱାର୍ଥ ଜନସେବା ଦେଖିବାକୁ ମିଳେ।

୧୯୩୭ରେ ସେ ବିଧାୟକ ହେଲେ। ପରବର୍ତୀ ନିର୍ବାଚନ ୧୯୪୬ରେ ହେଲା। ଦୀର୍ଘଦିନ ପଦବିରେ ରହି ମଧ୍ୟ ନିଜର ସୁଖ ସ୍ୱାଚ୍ଛଂଦ୍ୟ ପ୍ରତି ସେ କେବେ ସଚେତନ ନ ଥିଲେ। ଜିଲ୍ଲା ବାହାରେ ଯେଉଁ କର୍ମୀମାନେ ତାଲିମ ନେବାକୁ ଚାହୁଁଥିଲେ, ସେ ସେମାନଂକୁ ନେଇ ସେଠାରେ ନିଜ ଖର୍ଚରେ ପହଂଚାଇ ଦେଉଥିଲେ। କଂଗ୍ରେସର କର୍ମୀ ତାଲିମ କେଂଦ୍ର ଓ ଡେଲାଂଗରେ ୧୯୩୮ରେ ଗାଂଧିସେବା ସମ୍ମିଳନୀରେ ଅନେକ କର୍ମୀ ତାଂକ ସୌଜନ୍ୟରୁ ଅଂଶ ଗ୍ରହଣର ସୁଯୋଗ ପାଇଥିଲେ। ୧୯୪୧ରେ ବ୍ୟକ୍ତିଗତ ସତ୍ୟାଗ୍ରହ, ୧୯୪୨ରେ ଭାରତଛାଡ଼ ଆଂଦୋଳନରେ ଭାଗ ନେଇ ସେ ଜେଲ୍ ଭୋଗିଲେ। ତୃଣମୂଳ ସ୍ତରରେ ତାଂକର ପ୍ରଭାବ ଅଖଂଡ ଥିଲା। ବହୁ ବିଧାୟକଂକ ପରି ବିଧାନସଭା ବ୍ୟତୀତ ଅନ୍ୟ ସମୟରେ ରାଜଧାନୀରେ ନାନା ସୁବିଧା ସୁଯୋଗ ଉପଭୋଗ ନ କରି ସେ ନିଜ ନିର୍ବାଚନ ମଂଡଳୀକୁ ଫେରି ନିଜ ଭୋଟରମାନଂକୁ ଦଳୀୟ ଓ ଜାତୀୟ କାର୍ଯକ୍ରମ ବୁଝାଉଥିଲେ। ଇଂରେଜ ଶାସନ ଅମଳ। ଉନ୍ନୟନ କାର୍ଯ ନିମିତ୍ତ ପାଂଠିର ଘୋର ଅଭାବ। ବିଧାୟକମାନଂକର ମାସିକ ବେତନ ମାତ୍ର ପଂଚସ୍ତରି ଟଂକା। ତଥାପି ଜିଲା ବୋର୍ଡର ସହଯୋଗରେ ସେ ଯତ୍ସାମାନ୍ୟ ଲବ୍ଧ ଅର୍ଥର ସଦୁପଯୋଗ ନିମିତ୍ତ ନିଜେ କାର୍ଯ ତଦାରଖ କରି ଲୋକ ସେବାରେ ବ୍ରତୀ ଥିଲେ। ଭାରତଛାଡ଼ ଆଂଦୋଳନ ପରେ ସେ ଅନୁଭବ କଲେ ନିଜ ଦଳୀୟ ଉନ୍ନତିରେ ନିଜ ଦେଶ ଓ

ନିର୍ବାଚନ ମଂଡଳୀର ଉନ୍ନୟନ ସଂଭବ ନୁହେଁ। ଆଦର୍ଶଗତ କାରଣରୁ ସେ ନିଜେ ବଂଚାଇଥିବା କଂଗ୍ରେସରୁ ଓହରିଗଲେ। କମ୍ୟୁନିଷ୍ଟ ଦଳରେ ଯୋଗ ଦେଲେ। ଆଉ ବିଧାୟକ ହେବାର ସୁଯୋଗ ତାଂକୁ ମିଳିଲା ନାହିଁ। ମାତ୍ର ନିଜର ଲୋକ ସଂପର୍କ ତାଂକର ଅତୁଟ ଥିଲା। ନିରଳସ ସହକର୍ମୀମାନଂକୁ ଧରି ସେ ସ୍ୱାଧୀନ ଭାରତ ବର୍ଷରେ ଗାଁ ଗଂଡାରେ ଗାଇ ବୋଲିଲେ –

ଗାଲି ଗୁଲଲ୍ ଡର ନାଇଁ ଦେଇଛୁ କବାର୍ ସାରି<br>
ହଁସା କଁଦା କାହୁଁ ହେବା ତୋର୍<br>
ଦେଖୁନ୍ ଆଏଁଖ୍ ଫାରି<br>
ଡର୍ ନାଇଁ ତୋର୍ ମେଘ ଘଡ଼ଘଡ଼ି<br>
ହେଉ ନାଇଁ ଯେ ଯେତେ<br>
ତୋର୍ କାୟଁ ଯାଏ ଏନ୍‌ତା<br>
ବିଜୁଳି ମଲ୍‌ମଲାଲେଁ କେତେ<br>
x x x<br>
କଲକାଲ ନାଇଁ<br>
ଧିମ୍‌ଧାମ୍ ନାଇଁ<br>
ଯାଇଛୁ ଆରପାର<br>
ପୁର୍‌ଥୀର୍ ଲୁକେ ମୁଡ଼ିଆ ମାର୍‌ଲେ<br>
ଦେଖ୍‌ଲେ ତୋର ଖାର୍

–ଶଶିଭୂଷଣ ମିଶ୍ର ବୁଢ଼ାମାଷ୍ଟ୍ରେ

ଖଟିଖିଆ ମଜୁରିଆ ବିଲର ଚାଷୀମାନଂକୁ ନିଜ ଦାୟିତ୍ୱ ଓ ଦାବୀ ବିଷୟରେ ସଚେତନ ଉଦ୍ୟମ ସର୍ବଦା ଜାଗରୂକ ରଖି ପରିଣତ ବୟସରେ ଏହି ସର୍ବତ୍ୟାଗୀ ସଂଗ୍ରାମୀ କର୍ମୀ ପରଲୋକ ଗମନ କଲେ।



# ସମାଜସେବୀ ବିଧାୟକ
# ବିଶି ବିଭାର

ବରଗଡ଼ ସହରର ଉପକଂଠରେ ଭଟ୍‌ଲି ରୋଡ୍ ଉପରେ ଗୋଟିଏ କ୍ଷୁଦ୍ର ଜଳାଶୟ ଅଛି। ବର୍ତ୍ତମାନ ସହରରେ ଘରେ ଘରେ ପାଣି ପାଇପ୍, ପ୍ରତି ୱାର୍ଡରେ ଏକାଧିକ ନଳକୂପ ଖୋଳାଯାଇଛି। ଜିରା ନଦୀ କୂଳରେ ଅବସ୍ଥିତ ବରଗଡ଼ ସହରରେ ଜଳକଷ୍ଟ ନାହିଁ, ମାତ୍ର ଏକଦା ଏହି କ୍ଷୁଦ୍ର ଜଳାଶୟ ନିକଟବର୍ତ୍ତୀ ବହୁତ ଅଧିବାସୀଂକୁ ଜଳ ବ୍ୟବହାରରେ ସାହାଯ୍ୟ କରୁଥିଲା। ଲୋକେ ଏବେ ମଧ୍ୟ ଏହାକୁ ବିଶିବଂଧ କହଂତି। ବିଶି ବିଭାର ବା ବିଶି ଗଂଡା ଏହି ବଂଧ ନିଜର ଖର୍ଚ୍ଚରେ ଖୋଳାଇ ଥିଲେ, ପ୍ରତିଷ୍ଠା କରିଥିଲେ ଓ ସାଧାରଣ ଲୋକଂକର ବ୍ୟବହାର ନିମିତ୍ତ ଉତ୍ସର୍ଗ କରିଥିଲେ। ସେମିତି ବରଗଡ଼ର ହରିଜନ ପଡ଼ା, ତାକୁ ବିଶିପଡ଼ା ବୋଲି ପୁରୁଖା ଲୋକେ କହଂତି। ସେଠାରେ ସେ ହରିଜନମାନଂକ ପାଇଁ ଗୋଟିଏ ପକ୍କା ମଂଦିର ତିଆରି କରିଥିଲେ। ହରିଜନମାନଂକ ପାଇଁ ମଂଦିରରେ ପ୍ରବେଶ ନିଷେଧ ଥିଲା। ଛୁଆଁ ଅଛୁଆଁ ଭେଦଭାବ ପ୍ରବଳ ଥାଏ। ଜିଲ୍ଲାରେ ଅସ୍ପୃଶ୍ୟତା ନିବାରଣ ନିମିତ୍ତ ଅନେକ ବରେଣ୍ୟ ନେତା ଉଦ୍ୟମ କରୁଥାଂତି, ମାତ୍ର ଲୋକମାନଂକର ମନରୁ ଭେଦଭାବ ଯାଉ ନ ଥାଏ। ସତ୍ୟାନଂଦ ଦାସ ଥିଲେ ବରଗଡ଼ର ଜଣେ ସ୍ୱାଧୀନତା ସଂଗ୍ରାମୀ। ପରେ ଅଲେଖ ମହିମା ସଂପ୍ରଦାୟର ସାଧୁ ହେଲେ। ନିଜେ ମଂଦିର ନିର୍ମାଣ ନିମିତ୍ତ ଜମି ଯୋଗାଇ ଦେଲେ। ବିଶି ମଂଦିରର ନିୟମିତ ସେବା ପୂଜା ଓ ପରିଚାଳନା ଉଦ୍ଦେଶ୍ୟରେ ଡାଂଗ ଗାଁରେ ଥିବା ତାଂକର ଛଅ ଏକର ଜମି ମଂଦିର ନାମରେ ରେଜେଷ୍ଟ୍ରି କରି ଛାଡ଼ିଦେଲେ।

ବିଶି ବିଭାର ଗଂଡା ସଂପ୍ରଦାୟର। ଲୁଗା ବୁଣିବା ସେମାନଂକର କୌଳିକ ବୃତ୍ତି ଥିଲା। ଘର ସେମାନଂକର ଥିଲା ବରଗଡ଼ ଥାନାର ଛତାପଥର ଗାଁରେ। ପିତା ନୀଳମଣି ଓ ମାତା ସତୀ ବିଭାରଂକ ଏହି ସଂତାନଂକର ଜନ୍ମ ୧୯୦୭ରେ। ପାଠ ତାଂକର ଗାଁ ଚାଟଶାଳୀରେ ସରିଲା। ଗାଁରେ କାମଧଂଦା ଅଭାବ। ସେ ବରଗଡ଼ ଆସିଲେ। ହରିଜନ ପଡ଼ାରେ ଘର କରି ରହିଲେ। ମଜୁରିଆ କୁଲି, ନିର୍ମାଣ ମଜୁରିଆରୁ ମିସ୍ତ୍ରି କାମ ଶିଖି ସେ ରାଜମିସ୍ତ୍ରି ହେଲେ। କଠିନ ପରିଶ୍ରମ ସାଂଗକୁ ତାଂକର କାର୍ଯଦକ୍ଷତା ଥିଲା। ସରକାରୀ ନିର୍ମାଣ କାର୍ଯରେ ସେ କାମ କରି ଅନେକଂକର ପ୍ରଶଂସାଭାଜନ ହେଲେ। ପେଟି ଠିକାଦାର ଭାବରେ କାମ ମିଳିଲା। ଭଲ ଦି ପଇସା ଲାଭ ପାଇଲେ। ଉତ୍ସାହିତ ହୋଇ ସେ ନିଜକୁ ଜଣେ ଠିକାଦାର ଭାବରେ ପଂଜୀକରଣ କରାଇଲେ। ଲୋକହିତ ନିମିତ୍ତ କଂଗ୍ରେସର ସଭ୍ୟ ହେଲେ। ୧୯୩୭ରେ ଓଡ଼ିଶା ବିଧାନସଭାକୁ ପ୍ରଥମ ନିର୍ବାଚନ ହେଲା। ଫକୀର ବେହେରା ବରଗଡ଼ର ସ୍ୱାଧୀନତା ସଂଗ୍ରାମୀ ନିଷ୍ଠାପର କଂଗ୍ରେସ କର୍ମୀ। ବରଗଡ଼ ଦ୍ୱୈତ ନିର୍ବାଚନ ମଂଡଳୀ। ଜଣେ ସାଧାରଣ ବର୍ଗର ଓ ଜଣେ ହରିଜନର ନିର୍ବାଚନ ହେବାର କଥା। ଫକୀର ବେହେରାଂକର ବିଶି ବିଭାରଂକ ନିଷ୍ଠାପରତାରେ ବିଶ୍ୱାସ ହେତୁ ସେ ତାଂକୁ ନିଜ ସହପ୍ରାର୍ଥୀ ବାଛି କଂଗ୍ରେସ ଟିକେଟରେ ନିର୍ବାଚନ ଲଢ଼ିଲେ। ଉଭୟ ନିର୍ବାଚନରେ ଜିତିଲେ।

ହରିଜନମାନଂକର ପ୍ରତିନିଧି ଥାଇ ବିଶି ବିଭାର ବୁଣାକାରମାନେ କିପରି ନିୟମିତ ସୂତା ପାଇ ନିଜ ଜୀବିକା ଅର୍ଜନ କରିବେ ତାହାର ବ୍ୟବସ୍ଥା କଲେ। ପ୍ରତି ବୁଣାଳି ପରିବାର ପାଇଁ ସୂତାର ପଡ଼ିକାର୍ଡ ଯୁଦ୍ଧ ସମୟରେ ସେ ପ୍ରଚଳନ କରାଇଲେ। ଅଧିକା ସୂତା ଲୋଡ଼ ଥିଲେ ପରମିଟ୍ ପାଇବା ବ୍ୟବସ୍ଥା ସେ ସହଜସାଧ୍ୟ କରାଇଲେ। ତାଂକୁ ସରକାରୀ ଓ ବେସରକାରୀ ସବୁ ସ୍ତରରୁ ସହଯୋଗ ମିଳିଲା। ବରଗଡ଼ର ଗୋଟିଏ ଇଉନିୟନ୍ ବୋର୍ଡ ଜିଲ୍ଲା ବୋର୍ଡ ଅଧୀନରେ କାମ କରୁଥାଏ। ଏହାର ସେ ମନୋନୀତ ସଭ୍ୟ ଥିଲେ। ପରେ ଓଡ଼ିଶା ମୁନିସିପାଲ୍‌ଟି ଆଇନ୍ ବଳରେ ସ୍ୱାୟତ୍ତ ଶାସନ ସଂସ୍ଥା ଗଢ଼ାଗଲା। ସେଥିରେ ମଧ୍ୟ ସେ ନିର୍ବାଚିତ ସଭ୍ୟ ହେଲେ। ଲୋକ ପ୍ରତିନିଧି ଥାଇ ସବୁ ଅନୁଷ୍ଠାନରେ ବିଶେଷ କରି ହରିଜନମାନଂକର ଶିକ୍ଷା ସ୍ୱାସ୍ଥ୍ୟ ଗମନାଗମନ ଅର୍ଥନୈତିକ ଉନ୍ନତି ସାମାଜିକ ପ୍ରତିଷ୍ଠା ଲାଭ ନିମିତ୍ତ ସେ ନିଜର ଉଦ୍ୟମ ଜାରି ରଖିଲେ। ହରିଜନ ପଡ଼ାରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ ହେଲା। ସାଧାରଣ ବିଦ୍ୟାଳୟମାନଂକରେ ହରିଜନ ଛାତ୍ରମାନେ ଅଲଗା ବସୁଥିଲେ। ଛାତ୍ରାବାସରେ

ସେମାନଙ୍କ ପାଇଁ ସ୍ଥାନ ନ ଥିଲା। ଓଡ଼ିଶା ଦଳିତ ଜାତି ସଂଘରେ ଯୋଗଦାନ କରି ବିଶି ବିଭାର ଜିଲ୍ଲା ଶାଖାର ସଭାପତି ହେଲେ। ବରଗଡ଼ରେ ହରିଜନ ଛାତ୍ରମାନଙ୍କ ନିମିତ୍ତ ଏକ ସ୍ୱତଂତ୍ର ଛାତ୍ରାବାସ ନିର୍ମିତ ହେଲା। ବିଧାନସଭାରେ ଆଇନ ପାସ୍ ହେଲା। ସଂବିଧାନରେ ବ୍ୟବସ୍ଥା ରହିଲା। ଛୁଆଁ ଅଛୁଆଁ ଭେଦଭାବ ଉଠିଗଲା, ମାତ୍ର ଜନମତକୁ ସଜାଗ କରିବା ଦାୟିତ୍ୱ ସେ ନେଲେ। ହରିଜନମାନେ ନିଶା ସେବନ ଫଳରେ ବିଶେଷ କ୍ଷତିଗ୍ରସ୍ତ ହେଉଥିଲେ। ନିଶା ନିବାରଣର ପ୍ରଚାର ସେ ପ୍ରଥମେ କଂଗ୍ରେସ କର୍ମୀ ଭାବରେ ଓ ପରେ ବିଧାୟକ ଭାବରେ ଜୋରସୋର୍‌ରେ ଚଳାଇଲେ। ଜନଗହଳିଠାରୁ ମଦଭାଟିକୁ ଦୂରକୁ ଉଠାଇ ନେବାକୁ ସେ କର୍ମକର୍ତାମାନଙ୍କୁ ପରାମର୍ଶ ଦେଇ ସଫଳ ହେଲେ। ଚାଷୀମାନଙ୍କୁ କମାରମାନେ କୃଷି ତିଆରି ଉପକରଣ ଯୋଗାଉଥିଲେ। ସେଥିପାଇଁ ଲୁହାର ଆବଶ୍ୟକତା ଥିଲା। କୁଟୀର ଶିଳ୍ପ ଭାବରେ ଗୋଟିଏ ଛୋଟ ଲୁହାଖାନା ବସାଇ ଚାଷୀମାନଙ୍କୁ ଉପକରଣ ତିଆରି ନିମିତ୍ତ ଆବଶ୍ୟକ ଲୁହା ଏହି କାରଖାନା ଯୋଗାଇଲା।

ବିଶି ବିଭାରଙ୍କର ଲୋକପ୍ରିୟତା ବେଶ୍ ବୃଦ୍ଧି ପାଇଲା। ୧୯୪୬ରେ ସେ ପୁନର୍ବାର ସେହି ଆସନରୁ ପଂଡିତ ଲକ୍ଷ୍ମୀନାରାୟଣଙ୍କ ସହଯୋଗୀ ଭାବେ ନିର୍ବାଚିତ ହେଲେ। ୧୯୫୨ରେ ନୂତନ ସଂବିଧାନ ଅନୁସାରେ ପ୍ରଥମ ସାଧାରଣ ନିର୍ବାଚନ ହେଲା। ସେଥିରେ ମଧ୍ୟ ସେ ଭଟ୍‌ଲି ବିଜେପୁର ଯୁଗ୍ମ ନିର୍ବାଚନ ମଂଡଳୀରୁ ଭିକାରୀ ସାହୁଙ୍କ ସହିତ ନିର୍ବାଚିତ ହୋଇଥିଲେ। ହରିଜନମାନଙ୍କର ସମସ୍ୟା ସର୍ବସାଧାରଣଙ୍କର ଓ ସରକାରଙ୍କର ଦୃଷ୍ଟିକୁ ଆଣିବା ସକାସେ ସେ ରାଜ୍ୟ ଦଳିତ ଜାତି ସଂଘ ଆନୁକୂଲ୍ୟରେ ବରଗଡ଼ ସରଂଡାପାଲିରେ ଏକ ସମ୍ମିଳନୀ ଡାକି ଏ ଦିଗରେ ସଫଳ ହୋଇଥଲେ।

କୁଲି ମଜୁରିଆରୁ ରାଜମିସ୍ତ୍ରି ହୋଇ ରାଜନୀତିରେ ତିନିବାର ନିର୍ବାଚିତ ବିଧାୟକ। ତଥାପି ନିଜ ସରଳ ନିରାଡ଼ଂବର ଜୀବନ ତାଂକୁ ସବୁ ସ୍ତରରେ ପ୍ରିୟ କରିଥିଲା।

୧୯୭୭ରେ ସେ ପକ୍ଷାଘାତ ରୋଗରେ ଆକ୍ରାଂତ ହୋଇ ୧୯୭୯ ଜୁଲାଇ ମାସରେ ପ୍ରାଣତ୍ୟାଗ କଲେ। ଦୀର୍ଘକାଳ ବିଧାୟକ ଓ ସରଳ ନିଃସ୍ୱାର୍ଥ ଜନସେବୀ ଭାବରେ ବିଶି ବିଭାର ସ୍ମରଣୀୟ।



# ସଂଗ୍ରାମୀ ଗ୍ରାମସେବକ
# ମଂଗଳୁ ପ୍ରଧାନ

ସଂଥ ବିନୋବା ଭାବେଂକ ପରିକଳ୍ପିତ ଭୂଦାନ ଆଂଦୋଳନ ସହିତ କଂଗ୍ରେସର କାର୍ଯସୂଚୀରେ କୋଠଚାଷ ସର୍ବସାଧାରଣରେ ଆଲୋଚିତ କାର୍ଯକ୍ରମ ଲୋକପ୍ରିୟତା ହାସଲ କରିଛି। ହୀରାକୁଦ ବଂଧ ନିର୍ମାଣ ଫଳରେ ଆଟଜମି ମଧ୍ୟ ମୂଲ୍ୟବାନ୍ ହୋଇପଡ଼ିଛି। କୃଷକର ଉନ୍ନତି ହେବ। ବୁଢ଼ାମାଷ୍ଟ୍ରେ ଗୀତ ଲେଖିଲେ –

''ଆମ କପାଳ ଏଣିକି ଫିଟିଲାରେ
ହୀରାକୁଦ ବଂଧ ବଂଧା ଘଟିଲାରେ
ବଡ଼ ଜବ୍‌ବର ବାଂଧବେ ଆଡ଼ି
ସାତକୋଶ ପାଏନ୍ ରହେବା ଟାଡ଼ି
କୁଡ଼୍‌ବେ କେନାଲ୍ ଧାଡ଼ିକେ ଧାଡ଼ି
ପାଏନ୍ ଯିବା ଆଁଟ୍ ବେର୍‌ନା ମାଡ଼ି।
ଚାଷୀ ଭାଇ ଦୁଃଖଦଶା ହଟିଲାରେ।''

ମାତ୍ର ଏହା କିପରି ସଂଭବ ହେବ, କ୍ଷେତ୍ର ଉପରେ ଏହା କିପରି ସଫଳ ଭାବେ ରୂପାୟିତ ହେବ? ଆଂଧ୍ର ପ୍ରଦେଶର ଗୋଦାବରୀ ଜିଲ୍ଲାରୁ ପ୍ରଗତିଶୀଳ ଚାଷୀମାନଂକୁ ସରକାର ଅଣାଉଅଛଂତି। ସେମାନେ ଜମିର ଉତ୍ପାଦିକା ଶକ୍ତି ବଢ଼ାଇବାର ବାଟ ବତାଇବେ। ଜମିରୁ ସୁନା ଫଳିବ। ସାଧାରଣ କିସମ ଜମିକୁ ସେମାନେ ଅସାଧାରଣ ମୂଲ୍ୟ ଦେଇ କିଣିବାକୁ ହାଜର। ବିଜେପୁର ଜମିଦାରଂକର ପ୍ରାୟ ସାତଶହ ଏକର ଜମି ଥାଏ। ଜଳସେଚନର ସୁବିଧା ଏ ଜମିକୁ ମିଳିବାର ଆଶା ଫଳବତୀ ହେବାକୁ ଯାଉଥାଏ। ଜମିଦାର ଆଂଧ୍ର ଚାଷୀମାନଂକୁ ଏହି ଜମି ବିକିବାକୁ ଉଦ୍ୟମ କରୁଥାଂତି। ଏହି ସମୟରେ ଜଣେ ସାଧାରଣ କଂଗ୍ରେସ କର୍ମୀ ଚାଷୀ ମଂଗଳୁ ପ୍ରଧାନ ନିଜ ଗ୍ରାମ ରେମଂଡାର ସାଧାରଣ କୃଷିଜୀବୀଂକର କିପରି ଆର୍ଥିକ ଉନ୍ନତି ହେବ ଏଇ କଥା ଚିଂତା କରି ଏହି ଉଦ୍ୟମକୁ ପ୍ରତିହତ କଲେ।

ସେଇ ରେମଂଡା ଗ୍ରାମରେ ମଂଗଳୁ ପ୍ରଧାନଂକର ଘର। ଶିକ୍ଷା ନିମ୍ନ ପ୍ରାଥମିକ ସ୍ତରରେ ସମାପ୍ତ। ପିତା ଚଳିଆ ପ୍ରଧାନ, ମାତା ପାର୍ବତୀ। ସାଧାରଣ କୃଷକ ପରିବାର। ବରଗଡ଼ ଅଂଚଳରେ ମାଇନର୍ ସ୍କୁଲ ମଧ୍ୟ ସୀମିତ। ଗୋଟିଏ ମାତ୍ର ହାଇସ୍କୁଲ ବରଗଡ଼ ସହରରେ। ତାଂକର ପାଠପଢ଼ା ଆଗେଇଲା ନାହିଁ। ପରବର୍ତୀ କାଳରେ ସେ କଂଗ୍ରେସରେ ଜଣେ ସାଧାରଣ କର୍ମୀ ଭାବରେ ଯୋଗଦେଲେ। ଜିଲ୍ଲାର ତତ୍‌କାଳୀନ ପ୍ରଭାବଶାଳୀ ନିରଳସ ସମାଜସେବୀ ନେତାମାନଂକ ଦ୍ୱାରା ପ୍ରଭାବିତ ହେଲେ। ନିଜର ଗ୍ରାମବାସୀମାନଂକର ସର୍ବାଂଗୀନ ସୁଖ ସ୍ୱାଚ୍ଛଂଦ୍ୟ ନିମିତ୍ତ ଶିକ୍ଷା, ସ୍ୱାସ୍ଥ୍ୟ ଓ ଅର୍ଥକାରୀ ଉଦ୍ୟମର ଆବଶ୍ୟକତା ସେ ମର୍ମେମର୍ମେ ଉପଲବ୍‌ଧି କରି ଏହି ଉଦ୍ଦେଶ୍ୟରେ ନିଜ ଜୀବନକୁ ଉତ୍ସର୍ଗ କଲେ। ରେମଂଡାରେ ବିଦ୍ୟାଳୟକୁ ସେ ଉନ୍ନୀତ କରି ଏହାକୁ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଇଲେ। ସରକାର ଓ ଜିଲା ବୋର୍ଡ ସହିତ ସହଯୋଗ କରି ସେ ସେଠାରେ ଏକ ସ୍ୱାସ୍ଥ୍ୟ ସେବା କେଂଦ୍ର ପ୍ରତିଷ୍ଠା କରିବାରେ ସଫଳ ହେଲେ। ପାନୀୟ ଜଳର ଅଭାବ ଲୋକେ ସେଠାରେ ଅନୁଭବ କରୁଥିଲେ। ଖରାଦିନେ ଏହା ଉତ୍କଟ ଆକାର ଧାରଣ କରୁଥିଲା। ଗ୍ରାମର ସୀମାଂତରେ ଏକ ବିରାଟ ଜଳଭଂଡାର ଥାଏ, ମାତ୍ର ଦୀର୍ଘଦିନ ଧରି ଏହାର ପଂକୋଦ୍ଧାର ହୋଇ ନ ଥିବା ଫଳରେ ଏହାର ଆୟତନ ପ୍ରଥମେ ୯୦ ଏକରରୁ ସଂକୁଚିତ ହୋଇଯାଉଥିବା ବେଳେ ଜଳ ଗାଧୋଇବା, ପିଇବା, ପଶୁପକ୍ଷୀମାନଂକୁ ଜଳ ଯୋଗାଇବାରେ ବ୍ୟବହୃତ ହୋଇ ଦୂଷିତ ହୋଇ ଯାଉଥାଏ। କେନାଲ ଖୋଳା ହୋଇ ନ ଥାଏ। ଗ୍ରାମରେ ନଳକୂପ କଅଣ, ଅଜଣା ଥାଏ। ମଂଗଳୁ ପ୍ରଧାନ ନୂତନ ଗ୍ରାମଗୋଷ୍ଠୀ କାର୍ଯକ୍ରମରେ ସୁବିଧା ନେଲେ। ସରକାରୀ ବେସରକାରୀ ସାହାଯ୍ୟ ଓ ନିଜର ଅକ୍ଳାଂତ ପରିଶ୍ରମ ଫଳରେ ସେ ଏହି ବିରାଟ ଜଳାଶୟର ପଂକୋଦ୍ଧାର କାର୍ଯ ଶେଷ କଲେ ଓ ସ୍ନାନ ଓ ଜଳ ପରିବହନର ସୁବିଧା ନିମିତ୍ତ ପକ୍‌କା ଘାଟ ସହିତ ପାହାଚ ନିର୍ମାଣ କରାଇଲେ। ଗ୍ରାମର ଧର୍ମ ଭାବନା ଆଧ୍ୟାତ୍ମିକ ଚେତନା ଓ ସାଂସ୍କୃତିକ ଭାବ ବିନିମୟର କେଂଦ୍ର ଥିଲା ପୁରୁଣା ଠାକୁରାଣୀ ପୀଠ – ମାଆ ସମଲେଇଂକର ମଂଦିର। ବହୁ ପୁରାତନ, ମାତ୍ର ଚାଳଘରେ ଠାକୁରଂକର ସବୁ ପୂଜାପାର୍ବଣ ଓ ନୀତି ଅନୁଷ୍ଠିତ ହେଉଥାଏ। ମଂଗଳୁ ପଧାନ ନିଜେ ଆଗେଇ ଆସି ଏହାର ଜୀର୍ଣ ସଂସ୍କାର କାର୍ଯ ଆରଂଭ କଲେ। ଗ୍ରାମବାସୀମାନଂକର ଧର୍ମ ବିଶ୍ୱାସ ଦୃଢ଼ତର ହେଲା। ଗ୍ରାମର ସୌଂଦର୍ଯ ବୃଦ୍ଧି ସହିତ ତାଂକର ନିଜର ଧର୍ମଭାବନା ଅନ୍ୟମାନଂକୁ ପ୍ରଭାବିତ କରାଇ ତାଂକର ଗୌରବ ବଢ଼ାଇଲା।

ଏତିକି ବେଳକୁ ଭୂଦାନ ଆଂଦୋଳନ। ଜମିଦାର କିଛି ଜମି ଭୂଦାନକୁ ଦେବାକୁ ପ୍ରତିଶ୍ରୁତି ଦେଲେ। ଗାଁରେ ଗୋଟିଏ ସମବାୟ କୃଷି ସମିତି ସ୍ଥାପିତ ହୋଇ ରେଜିଷ୍ଟ୍ରି କରାଗଲା। ସରକାରୀ ସହଯୋଗ ମିଳିଲା। ଜମିଦାର ଆଂଧ୍ର ଚାଷୀମାନଂକୁ ଜମି ବିକ୍ରି କରିଥିଲେ ଜମିରେ ଯେଉଁମାନେ ଭାଗଚାଷୀ ଓ ଦିନ ମଜୁରିଆ ଥିଲେ ସେମାନେ ନିଜ ଜୀବିକା ହାରାଇଥାଆଂତେ। ସେମାନେ ମଧ୍ୟ ଏହି କୋଠଚାଷ ସମିତିର ସଭ୍ୟ ଭାବରେ ଗୃହୀତ ହେଲେ। ଜମି ଏହି ସମବାୟ ସମିତି ନାମରେ ଖରିଦ କରାଗଲା। ଜମିର କ୍ରୟ ମୂଲ୍ୟ କିସ୍ତି କରି ଦେବାର ମଧ୍ୟ ଦଲିଲରେ ବ୍ୟବସ୍ଥା କରାଗଲା। ସମସ୍ତ ପ୍ରକାର ସରକାରୀ ସହଯୋଗ ପାଇ ଏହି କୃଷିଜୀବୀ ସମବାୟ ସମିତି ଜିଲ୍ଲାର ଏକ ଆଦର୍ଶ ଅନୁଷ୍ଠାନ ଭାବରେ ପରିଗଣିତ ହେଲା। ମଂଗଳୁ ପ୍ରଧାନଂକର ଏହା ଏକ ଅସାଧାରଣ ମହନୀୟ କୃତି। ରେମଂଡାର କୋଷାବସ୍ତ୍ର ଉନ୍ନତ ଧରଣର ମଠା ଲୁଗା। ଏହାକୁ ଲୋକପ୍ରିୟ କରିବାକୁ ସେ ଉଦ୍ୟମ କରୁଥିଲେ।

ସ୍ୱାଧୀନତା ପ୍ରାପ୍ତି ପରେ ସେ ନିଜର ପୂର୍ବତନ ସହକର୍ମୀ ଦୟାନଂଦ ଶତପଥୀ ଓ ପୂର୍ବତନ ବିଧାୟକ ତ୍ୟାଗୀ ଫକୀର ବେହେରାଂକ ପ୍ରଭାବରେ କମ୍ୟୁନିଷ୍ଟ ଦଳ ପ୍ରତି ଆକୃଷ୍ଟ ହୋଇ ଜିଲ୍ଲା କୃଷକ ସଭାର ସାଂଗଠନିକ କାର୍ଯରେ ନିଜକୁ ନିୟୋଜିତ କରିଥିଲେ। ସ୍ୱାଧୀନତା ସଂଗ୍ରାମୀ ଭାବରେ ସେ ସମ୍ମାନିତ ହୋଇଥିଲେ। ୧୯୭୦ ନଭେଂବର ମାସରେ ସେ ପ୍ରାଣତ୍ୟାଗ କଲେ। ମାତ୍ର ଜଣେ ନିଃସ୍ୱାର୍ଥ ସାଧାରଣ କର୍ମୀ ନିରଳସ ଉଦ୍ୟମରେ ଏକ ପଲ୍ଲୀ ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ ଓ ଆଧ୍ୟାତ୍ମିକ ଜୀବନରେ କିପରି ଆଖିଦୃଶିଆ ପରିବର୍ତ୍ତନ ଆଣିପାରେ ଏହା ସେ ସମସ୍ତଂକୁ ଶିକ୍ଷା ଦେଇଗଲେ।



''ଯେ ଯେତେ ଆପେ ଆପଣାକୁ ଲିଭାଇ
ଦେବ ମିଟାଇ ଦେବ ଆପଣାର ସ୍ୱାର୍ଥତ୍ୟାଗ କରିବ
ସଂସାର ତାକୁ ସେତିକି ଅଧିକ ଆଦର କରିବ। ଯେ
ଯେତିକି କରିବ ସଂସାର ସେତିକି ତାକୁ ଚାହିଁବ।''

– ଡ. ଜନାର୍ଦନ ପୂଜାରୀ।



# ନାଟ୍ୟ ନୃତ୍ୟଗୁରୁ
# ଭଗବାନ ସାହୁ

ବିଦେଶୀ ଶାସନ ସରି ସରି ଆସୁଥାଏ। ଇଂରେଜ ଶାସନରେ ସବୁରି ପୁଲିଶକୁ ଡର। କବିବର ରାଧାନାଥ ତାହା ଦେଖି ଲେଖିଗଲେ –

"........ ମୁଁ ପୁଲିଶ୍
ବିନା ମେଘେ ସୃଜି ପାରଇ କୁଳିଶ।
କି ଦୋଷୀ କି ଅବା ଦୋଷ ଢୀବନର
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର
କିବା ଦୁଃଖୀରଂକୀ କି କୋଟିପତିଏ
ନାଲି ପଗଡ଼ିକୁ ନ ଡରଇ କିଏ।
ମୋତେ ଦେଖି କିଏ ନ ଭଜେ କଂପକୁ
କିଏ ନ ଡରଇ ଉଦ୍‌ଫଣ ଡଂପକୁ।"

୧୯୪୬ ଫେବ୍ରୁଆରି ମାସ। ଆଗଲପୁର (ପାଟଣା)ର ଇନସା ଗାଁରେ ନାଟ ଚାଲୁଛି। ଗୋଟିଏ ବାର ତଉଦ ବରଷର ପିଲା ରାଧା ଭୂମିକାରେ ଅଭିନୟ କରି

ପୁରୁଣା ଗୀତ ବୋଲୁଛି। କଅଣ ଯାତରା ହେଉଛି ଦେଖିବାକୁ ୩/୪ ଜଣ ଲାଲପଗଡ଼ିଆ ପୁଲିସ୍ ସିପାହୀ ପହଂଚିଗଲେ। ପିଲାଟି ନିଜ ଗୀତ ବଦଳେଇ ଦେଲା। ଗାଁର ଚଳଂତି ଭାଷାରେ ବୋଲିବାକୁ ଲାଗିଲା –

"ଗେଲଠି ରସରେ, ଭେଲ୍‌କି କଲା,
ସୁନା ରୁପା ଘରୁ ଗଲା
ଫିରିଂଗି ବେପାରୀ କାୟଁ ନାଏଁ କଲା
ଆମ ଇଜତ୍ ମହତ୍ ସାରିଦେଲା
ଫିରିଂଗି ବେପାରୀ ଆସି,
ଶାସନ ନାଆଁଥି ରାଇଜ ଶୁଷି।
ଟଁଟିକଟା ପଶି ଘରକୁ ଘର
ଉଲଟା ଆମକୁ ବଇଲା ଚୁର।
ଗେଲଠି ରସରେ..."

ଲାଲମୁଂଡିଆ ସିପାହୀ ଧାଇଁଗଲେ ପିଲା ପାଖକୁ। ଟାଣି ଆଣି ନିର୍ଧୁମ ମାଡ଼ ଦେଲେ। ପିଲାଟି ବେହୋସ୍। ଯାତ୍ରା ସେତିକିରେ ଶେଷ। ସେଇ ଦିନର ସେଇ ପିଲାଟି ପରବର୍ତ୍ତୀ କାଳରେ ପରିଚୟ ପାଇଲା କୁଂଭାରୀ ବ୍ରଜେଶ୍ୱରୀ ନାଟ୍ୟ କଳା ପରିଷଦର ପ୍ରତିଷ୍ଠାତା କବି ନାଟ୍ୟକାର ସଂଗୀତଜ୍ଞ ନାଟ୍ୟଗୁରୁ ଓ ନୃତ୍ୟଗୁରୁ ଭଗବାନ ସାହୁ ଭାବରେ।

ବରଗଡ଼ ଜିଲ୍ଲାର ବରପାଲି ବ୍ଲକ୍‌ର କୁଂଭାରୀ ଗୋଟିଏ ଜନବହୁଳ ନାମକରା ଗ୍ରାମ। ଭଗବାନ ଏହି ଗ୍ରାମରେ ୧୯୩୧ ମସିହାରେ ଜନ୍ମଲାଭ କରିଥିଲେ। ସେଦିନ ଥିଲା ଦେବସ୍ନାନ ପୂର୍ଣ୍ଣମୀ। ବାପା ଥିଲେ ଜଣେ କବି, କୃଷ୍ଣଗୁରୁ ଗାୟକ। ମା ମଧ୍ୟ ସଂଗୀତରେ ରୁଚି ରଖିଥାଆଂତି। ପିଲାଦିନୁ ବାଳକର ନୃତ୍ୟ ଓ ସଂଗୀତରେ ଆଗ୍ରହ। ତାଂକ ପଣଅଜା ଥିଲେ ସୁନାଧର ଗୌଂତିଆ। ସୁରେଂଦ୍ର ସାଏ ପରିବାର ସହିତ ସଂପର୍କ ଥିଲା। ଉଲଗୁଲାନ ସମୟରେ ସେ ସୁରେଂଦ୍ର ସାଏଂକ ନେତୃତ୍ୱରେ ବିଦ୍ରୋହରେ ଯୋଗଦେଲେ। ଇଂରେଜଂକ ଗୁଳି ମାଡ଼ରେ ପ୍ରାଣ ହରାଇଥିଲେ। ତାଂକରି ରକ୍ତ ପ୍ରବାହିତ ହେଉଥିବା ଯୋଗୁଁ ପ୍ରତ୍ୟକ୍ଷ ଆଘାତ ନ ପାଇ ମଧ୍ୟ ସେ ଇଂରେଜ ବିରୋଧୀ ହୋଇ ଉଠିଲେ। ପାଠପଢ଼ା ସାଂଗରେ ସେ ନାଚ ଗୀତ ମଧ୍ୟ ଆଠ ବରଷରୁ ଶିଖିବା ଆରଂଭ କଲେ। ରାସ ଦଳରେ ମିଶି ଓଡ଼ିଆ ଛାଂଦ, ଚଂପୂ, ଓଡ଼ିଶୀ ସଂଗୀତ ବୋଲି

ଲୋକମାନଂକର ମନୋରଂଜନ କଲେ। ଗାଁ ସ୍କୁଲରୁ ପାସ୍ କରି ଖୁଂଟାପାଲି ମାଇନର ସ୍କୁଲରେ ପଢୁଥାଆଂତି। କୃଷ୍ଣଭକ୍ତି ରସାମୃତରେ ଲେଖକ ପ୍ରଖ୍ୟାତ ସାହିତ୍ୟିକ ପଂଡିତ ରାଘବ ମିଶ୍ର ଦିନେ ବିଦ୍ୟାଳୟରେ ପ୍ରାର୍ଥନା ସମୟରେ ତାଂକ ଗୀତ ଶୁଣିବାର ସୁଯୋଗ ପାଇ ତାଂକଠାରୁ ଗୀତ ଶୁଣିଲେ। ଅଂତର୍ନିହିତ ପ୍ରତିଭାର ପରିଚୟ ତାଂକୁ ମିଳିଗଲା। ତାଂକୁ ଉତ୍ସାହିତ କଲେ। ସେଇଠି ପାଠ ସାରି ବରଗଡ଼ ଜର୍ଜ ହାଇସ୍କୁଲରେ ଭଗବାନ ନାମ ଲେଖାଇଲେ। ହାରମୋନିୟମ୍ ବଜାଇବା ସେ ଆୟତ୍ତ କରି ସାରିଲେଣି। ଛାତ୍ରାବାସରେ ରହୁଥାଆଂତି। ସେଠାରେ ହାରମୋନିୟମ୍ ବଜାଇବା ମନା। ତତ୍ତ୍ୱାବଧାୟକ ବାରଣ କଲେ। ସେ ବାଧ୍ୟ ହୋଇ ହଷ୍ଟେଲ୍ ଛାଡ଼ିଲେ। ଅନ୍ୟତ୍ର ରହିଲେ। ଏକାଦଶ ଶ୍ରେଣୀ ଯାଏ ସେଇଠି ପାଠ ଚାଲେ। ମାଟ୍ରିକ୍ ପରୀକ୍ଷା ଦେବା ବେଳକୁ ସବୁ ବିଷୟରେ ଉଚ୍ଚ ନଂବର ରଖୁଥିଲେ ମଧ୍ୟ ଜାଣିଶୁଣି ଇଂରେଜି ହେଳା କଲେ। ସେହି ଭାଷା ବିଷୟଟି ପରୀକ୍ଷା ନ ଦେଇ ମାଟ୍ରିକ୍ ଫେଲ୍ ହେଲେ। ଗାଁକୁ ଫେରି ଆସିଲେ। ଏହା ମଧ୍ୟରେ ଖରାଛୁଟିରେ ଆସି ସେ ପରଂପରାକ୍ରମେ ପରିବେଶିତ କୃଷ୍ଣ ଲୀଳାର ସ୍ୱର, ଶବ୍ଦ ସଂଯୋଜନା, ନୃତ୍ୟ ଆଦି ଅଧ୍ୟୟନ କଲେ। ଭଲ ହାରମୋନିଅମ୍ ବାଦକ ଭାବରେ ନାମ କମେଇଲେ। ତାହା ସାଂଗକୁ ଶାସ୍ତ୍ରୀୟ ଶବ୍ଦନୃତ୍ୟ, ଅଷ୍ଟସଖୀ ନୃତ୍ୟ, ସଂବଲପୁରୀ ନୃତ୍ୟ ଆଦି ଶିଖି ସେଥିରେ ମଧ୍ୟ ପାରଦର୍ଶିତା ଦେଖାଇଲେ। ଅଠର ବର୍ଷ ବୟସ ହେବା ବେଳକୁ ସେ ନୃତ୍ୟଗୁରୁ ହେବାର ଗୌରବ ଅର୍ଜନ କଲେ।

କିଛିଦିନ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହେଲେ। ବରମକେଲା ସ୍କୁଲରେ ଶିକ୍ଷକତା କରୁଥାଆଂତି। ବିଦ୍ୟାଳୟର ପରିଚାଳକ ତାଂକର କାର୍ଯ ଲକ୍ଷ୍ୟ କରି ଶୁଣାଇଲେ, ''ଏ ପଟେ ପାଠ ସେ ପଟେ ନାଟ। ଦୁଇଟା ଭିତରୁ ଗୋଟାକୁ ଧରି ଜୀବିକା ଅର୍ଜନ କର।'' ସେତିକିରେ ମାଷ୍ଟର ଚାକିରି ଶେଷ। ଘରେ ଜମିବାଡ଼ି ଥାଏ। ଚାଷ ପ୍ରତି ନଜର ନାହିଁ। କକା ଅପୁତ୍ରକ। ଭଗବାନଂକୁ ପୋଷ୍ୟ ପୁତ୍ର କରିଥଆଂତି। ନାଟରେ ବେଶି ଧ୍ୟାନ ଦେବାକୁ ସେ ପସଂଦ କରୁ ନ ଥାଆଂତି। ଦିନେ ପୌଷ୍ୟ ପୁତ୍ରକୁ ଡାକି କହିଲେ, ''ତୁ ଏ ନାଟକ ବଂଦ କର। ମୋର ୧୮ ଏକର ଚାଷ ଜମି। ଘରଦ୍ୱାର ଅଛି। ତାକୁ ଦେଖାରଖା କର। ସବୁ ତୋର।'' କଥାଟା ତାଂକୁ ବାଧିଲା। ନାଟ୍ୟ ସଂଗୀତ ପ୍ରୀତି ତାଂକର ପ୍ରଥମ। ଜମିବାଡ଼ି ବିଷୟଭୋଗ ତା ପଛକୁ। ସେ ଉତ୍ତରରେ କହିଲେ, ''ମୁଁ ବଂଚିଥିବା ଯାଏ ତମ ଗାଁରେ ଆଉ ପାଦ ଦେବିନାହିଁ।'' ସେଇଆ ମଧ୍ୟ କଲେ। ନାଟ ଦଳରେ ମିଶୁଥାଆଂତି। ଦଳ ଗଢୁଥାଆଂତି। ରାସଲୀଳା ସୁଆଂଗ ଗୀତାଭିନୟ ଦେଖାଉଥାଆଂତି। ନିଜର ଅନେକ ଶିଷ୍ୟ ବାହାରିଲେଣି। ଶେଷକୁ ୧୯୫୦ରେ ନିଜ

ଗାଁରେ ନିଜର ଗୋଟିଏ ଯାତ୍ରାଦଳ ଗଢ଼ିଲେ, ନାମ ଦେଲେ ବ୍ରଜେଶ୍ୱରୀ ନାଟ୍ୟ ମଂଡଳୀ। ପରବର୍ତୀ କାଳରେ ଏହା ବ୍ରଜେଶ୍ୱରୀ ନୃତ୍ୟକଳା ପରିଷଦ ଭାବରେ ଜିଲ୍ଲାରେ ଏକ ସୁପରିଚିତ ଅନୁଷ୍ଠାନ ହୋଇଉଠିଲା। ଅନେକ ଛାତ୍ର ସେଥିରେ ଆସି ମିଶିଲେ। ଭଗବାନ ସମସ୍ତଂକୁ ନୃତ୍ୟ ସଂଗୀତ ଅଭିନୟ ଶିକ୍ଷା ଦେଲେ। ସେମାନଂକର ଜୀବିକା ଅର୍ଜନର ସୁବ୍ୟବସ୍ଥା ମଧ୍ୟ କଲେ। ଅନେକ ବାଧାବିଘ୍ନ ସତ୍ତ୍ୱେ ସେ ଦଳଟିକୁ ବଂଚାଇ ରଖିଲେ। ଭିନ୍ନ ଭିନ୍ନ ଗ୍ରାମରୁ ଦୂର ଦୂରାଂତରୁ ଯାତ୍ରା ଦଳକୁ ଅଭିନୟ ପାଇଁ ନିମଂତ୍ରଣ ଆସେ। ଯାନବାହନର ସେତେବେଳେ ପ୍ରଚଳନ ସେପରି ନ ଥାଏ। ସବୁ ଜାଗାକୁ ମଧ୍ୟ ଶଗଡ଼ରେ ଯାଇ ହେବ ନାହିଁ। ସାଂଗରେ ଚୁଡ଼ା, ମୁଢ଼ି, ଗୁଡ଼ ଜଳଖିଆ ଧରି ନିଜ କଳାକାର ଦଳକୁ ଘେନି ସେ ବାହାରଂତି। ବାଟରେ ଥକ୍‌କା ହେଲେ ରାତି ଗଛ ମୂଳେ କଟାଇ ଦିଅଂତି। ସେଇ ଚୁଡ଼ା, ମୁଢ଼ି ଖାଇ ଭୋକ ମେଂଟାଂତି। ଯାତ୍ରା ସରଂଜାମ, ବେଶ ପୋଷାକ, କଳାକାର ଦଳକୁ ଧରି ପୁଣି ସକାଳୁ ଚାଲଂତି। ଉତ୍‌ଥାନପତନ ଘାତପ୍ରତିଘାତ ବହୁତ ସଂଭାଳି ଯାତ୍ରାଦଳ ଲୋକପ୍ରିୟତା ଅର୍ଜନ କରୁଥାଏ। ସେ ଯୁଗରେ ଲାଇଟ୍ ବା ମାଇକ୍ ନ ଥାଏ। ତାଂକ ଦଳ ରାତିରେ ମଶାଲ ଜଳାଇ ସେଇ ଆଲୁଅରେ ଯାତ୍ରା ପରିବେଷଣ କରି ଲୋକମାନଂକର ମନୋରଂଜନ କରଂତି। ନିଜ ଦଳର କଳାକାରଂକୁ ସେ ନିଜ ପିଲାଛୁଆଂକ ଅପେକ୍ଷା ବେଶି ଶ୍ରଦ୍ଧା କରୁଥାଂତି। ଦେହ ମୁଂଡ ପଢ଼ାଶୁଣା ସବୁରି ଯତ୍ନ ନିଅଂତି। କେତେକ ପାଠ ପଢ଼ି ଉଚ୍ଚଶିକ୍ଷିତ ହେଲେ। ଯାତ୍ରାରେ ମଜ୍ଜିଯାଇ ନିଜ ପିତାଂକର ମୃତ୍ୟୁ ଓ ପରବର୍ତୀ କ୍ରିୟା ସମୟରେ ମଧ୍ୟ ସେ ଉପସ୍ଥିତ ହୋଇନାହାଂତି, ମାତ୍ର ଯାତ୍ରା ନିଶା ତାଂକୁ ଛାଡ଼ିନାହିଁ। ଥରେ ଯାତ୍ରା ହେଉଥାଏ ଗୋଟିଏ ଗାଁରେ। ଦଳର ଦୁଇ ଚାରିଜଣ କଳାକାର କୌଣସି କାରଣରୁ ଅସହଯୋଗ କଲେ। ସମସ୍ତେ ଭାବିଲେ ଯାତ୍ରା ହେବ ନାହିଁ। ଭଗବାନ ଗାଁର ଅପାଠୁଆ କେତେ ଜଣ ଟୋକାକୁ ଡାକି ଆଣିଲେ। ତାଂକୁ ମଂଚରେ ବେଶ କରାଇ ଛିଡ଼ା କରାଇଲେ। ସେତେବେଳେକୁ ମାଇକ୍ ଚାଲୁ ହେଲାଣି। କେତୋଟି ଶବ୍ଦ ଶିଖି ସେମାନେ ପାଟି ପାକୁ ପାକୁ କରୁଥାଆଂତି। ନୃତ୍ୟ ନାଟ୍ୟଗୁରୁ ସ୍ୱର ବଦଳାଇ ସେମାନଂକର ଡାଏଲଗ୍ କହି ଚାଲିଲେ। ନିଜର ଦକ୍ଷତା ଓ ତାତ୍‌କାଳିକ ବୁଦ୍ଧିର ପରିଚୟ ନେଇ ନାଟକଟିକୁ ସୁଂଦର ଭାବେ ପରିବେଷଣ କଲେ। ଲୋକେ ନାଟକକୁ ଭାରି ପସଂଦ କଲେ। କଳାକାରମାନେ କ୍ଷମା ମାଗିଲେ। ଆଉ ଥରେ ସେମିତି ବିଶ୍ୱକର୍ମା ପୂଜାରେ ବରପାଲିରେ ନାଟକ ଆରଂଭ ହେବାକୁ ଯାଉଛି, କେହି ବିରୋଧ କରି ଗୋଟାଏ ଶକ୍ତିଶାଳୀ ବୋମା ଫୁଟାଇଲା। ଲାଇଟ୍, ମାଇକ୍, ଯାତ୍ରା ଉପକରଣ ସବୁ ନଷ୍ଟ ହୋଇଗଲା। ଜଖମ ହୋଇ ଜଣେ କଳାକାର ଅକର୍ମଣ୍ୟ

ହୋଇଗଲେ। ସେଦିନ ନାଟକ ବନ୍ଦ। ସମସ୍ତେ ଭାବିଲେ ଦଳ ଭାଂଗିଗଲା, ମାତ୍ର ମାସେ ନ ଯାଉଣୁ ଭଗବାନ ଦଳକୁ ପୁନର୍ଜୀବନ ଦେଇ ଠିଆ କରି ନାଟକ ଆରଂଭ କଲେ। ନିଜର ସଂଗଠନ ଶକ୍ତି ଓ ପ୍ରତିଭାର ପରିଚୟ ମିଳିଲା, ସେହି ବର୍ଷ ୧୯୮୯ରେ।

ଅନେକଗୁଡ଼ିଏ ନାଟକ ରଚନା କଲେ। 'ବୀର ସୁରେଂଦ୍ର ସାଏ' ସଂବଲପୁରୀ ଭାଷାରେ ରଚିତ ଏକ ଅସାଧାରଣ ନାଟକ। ଏଥିରେ ସୁରେଂଦ୍ରଂକର ବୀରତ୍ୱ, ଦେଶପ୍ରୀତି ଓ ବିଦେଶୀ ଶାସନ ପ୍ରତି ବିଦ୍ୱେଷ ଲୋକପ୍ରିୟ କରାଯାଇଅଛି। ପୌରାଣିକ, ଐତିହାସିକ କିଂବଦଂତୀ ଅବଲଂବିତ ଅନେକ ନାଟକ ଲେଖି ଅଭିନୟ କରାଇଲେ। ଲୋକମାନଂକର ମନୋରଂଜନ କରାଇ ସେମାନଂକୁ ସମାଜ ଓ ଦେଶ ପ୍ରତି ଦାୟିତ୍ୱ ବିଷୟରେ ସଚେତନ କରାଇଲେ। ଏହା ଭିତରେ ହରିଶ୍ଚଂଦ୍ର, ସୀତାଚୋରି, ତରଣିସେନ ବଧ, ଯୋଗଜନ୍ମା ରାବଣ, ରାମରାଜ୍ୟ, ପ୍ରଣୟ ବଲ୍ଲରୀ, ମାନଭଂଜନ, ମଥୁରା ଯାତ୍ରା ଆଦି ବିଶେଷ ଲୋକପ୍ରିୟ। ଜନନାୟକ ଡ. ହରେକୃଷ୍ଣ ମହତାବଂକ ସ୍ତଂଭ 'ଗାଁ ମଜଲିସ୍'ର ତଥ୍ୟ ନେଇ ତା ଉପରେ ଲୋକମାନଂକର ଉପଭୋଗ୍ୟ ଗ୍ରାମ୍ୟ ଭାଷାରେ ସେ 'ସେବା' ନାମ ଦେଇ ଗୋଟିଏ ନାଟକ ମଧ୍ୟ ଲେଖିଥିଲେ।

ଓଡ଼ିଶାର ସୁପ୍ରସିଦ୍ଧ ନୃତ୍ୟବିଦ୍ ଗୁରୁ କେଳୁଚରଣ, ନୃତ୍ୟଶିଳ୍ପୀ ସଂଯୁକ୍ତା ପାଣିଗ୍ରାହୀ ଓ କୁଂକୁମ ମହାଂତି ଆଦି ତାଂକ ନୃତ୍ୟ ଶୈଳୀର ପ୍ରଶଂସା କରିଛଂତି। ସର୍ବ ଭାରତୀୟ ସ୍ତରରେ ନୃତ୍ୟବିଦ୍ ଅନୁରାଧା ଗୁହ, ବିନୋଦ ଚୋପ୍ରା, ଓଡ଼ିଶା ସଂଗୀତ ଏକାଡେମୀର ଧୀରେନ୍ ଦାସ, ଧୀରେନ ପଟ୍ଟନାୟକ, ଦେବ ପ୍ରସାଦ ଦାସ ଆଦି ଯଶସ୍ୱୀ କଳାକାରମାନେ ମଧ୍ୟ ତାଂକ ନୃତ୍ୟ ଜ୍ଞାନର ଭୂୟସୀ ପ୍ରଶଂସା କରିଛଂତି। ସଂବଲପୁର ବାହାରେ ନିଜ ପ୍ରତିଭା ପ୍ରଦର୍ଶନର ସୁଯୋଗ ମିଳି ନ ଥିଲେ ମଧ୍ୟ ଓଡ଼ିଶା ସଂଗୀତ ଏକାଡେମୀ, ପ୍ରଜାତଂତ୍ର ପ୍ରଚାର ସମିତି, ଓଡ଼ିଶା ସାଂସ୍କୃତିକ ସମାଜ, ଗଂଗାଧର ସ୍ମୃତି ଭବନ, ସଂବଲପୁରୀ ଲେଖକ ସଂଘ, ସୌରଭ ସାହିତ୍ୟ ସଂସଦ, ବରପାଲି ଓ ବୋଡ଼ାସଂବର-ପଦ୍ମପୁର ମହାବିଦ୍ୟାଳୟ, ସଂବଲପୁର ସମଲେଇ ଟ୍ରଷ୍ଟବୋର୍ଡ ଦ୍ୱାରା ସେ ସମ୍ମାନିତ ହୋଇଥିଲେ। ତାଂକର ପ୍ରଜ୍ଞା ଓ ପ୍ରତିଭା ୨୦୦୦ରେ ତାଂକ ମୃତ୍ୟୁ ପରେ ମଧ୍ୟ ସ୍ମରଣୀୟ।





# ଗଣନାୟକ

# ଗଣନାଥ

ଈଶ୍ୱରଂକର ଏହି ବିଚିତ୍ର ସୃଷ୍ଟିରେ ଦେଖିବାକୁ ମିଳେ ପଦ୍ମଲୋଚନ ନାମକ ବ୍ୟକ୍ତି କଣା । ଧନବଂତ ଭିକ୍ଷାଜୀବୀ ବା ସୁଶୀଳା ପରିବାରର ରଣଚଂଡୀ । ମାତ୍ର ଅଳ୍ପ କେତେଲୋକ ନିଜ ଜୀବନରେ ନାମର ସାର୍ଥକତା ପ୍ରମାଣ କରଂତି ଓ ନିଜପିତାମାତାଂକୁ ଧନ୍ୟ କରଂତି । ବରଗଡ ଜିଲ୍ଲା ବରପାଲି ଥାନାର ସତଲମା ଗ୍ରାମ ନିକଟ ସିକଡ଼ି ନାମରେ ଏକ ଅଖ୍ୟାତ ପଲ୍ଲୀରେ ଜନ୍ମଗ୍ରହଣ କରିଥିବା ଗଣନାଥ ପ୍ରଧାନ ମଧ୍ୟ ଏହିପରି ଜଣେ ବ୍ୟତିକ୍ରମ । ଦୁଇଥର ରାଜ୍ୟ ବିଧାନ ସଭା ଓ ପରେ ଲୋକସଭାକୁ ସରକାରୀ ଦଳର କେବେ ସଭ୍ୟନଥାଇ ନିର୍ବାଚିତ ହୋଇ ସେ ନିଜ ଉପରେ ଜନଗଣଂକର ପତିଆରା ପ୍ରମାଣିତ କରି ନିଜକୁ ଗଣନାୟକ ଭାବେ ପରିଚିତ କରାଇ ପାରିଥିଲେ ।

୧୯୨୪ ଡିସେଂବର ସାତ ତାରିଖରେ ସେ ଏକ କୃଷକ ପରିବାରରେ ପିତା ସଂକୀର୍ତନ ଓ ମାତା ଚାଂଦିନୀ ଦେବୀଂକର କନିଷ୍ଠ ସଂତାନ ଭାବରେ ଜନ୍ମଗ୍ରହଣ କରିଥିଲେ । ଗାଁଟି ଛୋଟ । ଅଳ୍ପ କେତୋଟି ଚାଷୀ ପରିବାର ସେଇଠି ରହୁଥିଲେ । ସ୍ୱଭାବକବି ଗଂଗାଧର

୧୯୧୪ରେ ପ୍ରକାଶିତ ତାଂକ ଉତ୍କଳଲକ୍ଷ୍ମୀ କାବ୍ୟରେ ଅଭିଷେକ ନିମିତ୍ତ ଯାତ୍ରୀକ ହୋଇଯାଇଥିବା, ଜିରା, ଦଂତା, ଝାଉଁ, କୁଲିଆରି, ଓ ରାଂଙ୍କ, ନଦୀଗୁଡ଼ିକର ବର୍ଣନା କରିଥିଲେ। ଗଣନାଥଂକ ଗ୍ରାମ ଏହି କ୍ଷୁଦ୍ର ରାଂଙ୍କ ନଦୀ କୂଳରେ। ପାଖରେ ଥିଲା, ତୁଲଂଡି ଗ୍ରାମ। ସେଠାରୁ ଓକିଲ ଗଳ୍ପକାର ଦୟାନିଧି ମିଶ୍ର, ଅଧ୍ୟାପକ ବୈଜ୍ଞାନିକ କୁଳପତି ଡକ୍ଟର ପରଶୁରାମ ମିଶ୍ର, ସୁଲେଖକ ବିଜ୍ଞାନୀ ଅମୂଲ୍ୟକୃଷ୍ଣ ମିଶ୍ର ଆଦି ଶିକ୍ଷାଲାଭ କରି ରାଜ୍ୟରେ ପ୍ରତିଷ୍ଠିତ ହୋଇ ପାରିଥିଲେ। ମାତ୍ର ଶିକ୍ଷା ସ୍ୱାସ୍ଥ୍ୟ ଗମନାଗମନ ଜୀବିକାର୍ଜନ ଦୃଷ୍ଟିରୁ ସିକଡ଼ ଅତି ପଛୁଆ ଥିଲା। ପାଠଶାଳାଟିଏ ମଧ୍ୟ ଗାଁରେ ନ ଥିବାରୁ ଗଣନାଥ ସତଲମା ଗାଁକୁ ପ୍ରତିଦିନ ୩କି.ମି ବାଟ ଚାଲିଚାଲି ପିଲାଦିନେ ପଢ଼ିବାକୁ ଯାଉଥିଲେ। ସେଇଠି ତାଂକର ପ୍ରାଥମିକ ଶିକ୍ଷା ସରିଲା। ପଇସା ପତ୍ରର ଅଭାବ। ଚାଷରେ ତାଂକର ସାହାଯ୍ୟ କରିବା ଦରକାର। ଘରଲୋକ ସେ ପୋଥିରେ ଡୋରି ବାଂଧିବା ନିଷ୍ପତ୍ତି ନେଲେ। ମାତ୍ର ଗଣନାଥ ଅବୁଝା ହୋଇ ରହିଲେ। ଘରେ କଳି କରି ସେ ବରପାଲି ଯାଇ ମାଇନର ସ୍କୁଲ୍‌ରେ ନାମ ଲେଖାଇଲେ। ସେତେବେଳକୁ ତାଂକୁ ମାତ୍ର ବାର ବରଷ। ବରପାଲିରେ ସୁସାହିତ୍ୟିକ ପଂଡିତ ରାଘବ ମିଶ୍ର ଓ ପରେ ଗାଂଧିବାଦୀ ଭୂଦାନନେତା ଭାବେ ପ୍ରତିଷ୍ଠିତ ମଦନ ମୋହନ ସାହୁ ତାଂକର ଶିକ୍ଷକ ଥିଲେ। ସେମାନଂକର ଆଦର୍ଶ ଚରିତ୍ର ଗଣନାଥଂକୁ ପ୍ରଭାବିତ କଲା। ସେତେବେଳେ ସେ ଗାଁ ଦୂର ପଡ଼ିବାରୁ ଛାତ୍ରାବାସରେ ରହୁଥିଲେ।

ଓଡ଼ିଶା ପ୍ରଦେଶ ୧୯୩୬ ଏପ୍ରିଲ୍ ପହିଲା ଦିନ ଗଢ଼ାଗଲା। ବିଦ୍ୟାଳୟରେ ପ୍ରଦେଶ ଗଠନ ଉତ୍ସବ ପାଳନ କରାହେଲା। ଓଡ଼ିଆଂକର ନିଜର ଗୋଟିଏ ପ୍ରଦେଶ ହେଲା। ସେଇଠି ଏଣିକି ସେମାନେ ନିଜ ପ୍ରତିନିଧି ଜରିଆରେ ରାଜ୍ୟର ହାନିଲାଭ ଆଲୋଚନା କରିବେ। ନିଜେ ନିଜ ଭାଗ୍ୟ ନିଷ୍ପତ୍ତି କରିବେ। ବରପାଲି ସଭାରେ କବି ଭଗବାନ ମେହେର ସଭାପତି ହେଲେ। ବିଦ୍ୟାଳୟର ସ୍କାଉଟ୍‌ମାନେ ଅନ୍ୟ ପିଲାମାନଂକ ସହିତ ୟୁନିଅନ୍ ବୋର୍ଡ ଅଂଚଳ ପରିକ୍ରମା କଲେ। ସର୍ବୋତ୍ତମ ସ୍କାଉଟ୍ ଭାବରେ ଗଣନାଥ ପୁରସ୍କାର ପାଇଲେ। ସେହି ସଭାରେ କେହି କଳ୍ପନା କରି ନ ଥିଲେ ଯେ ଆସଂତା ୨୫/୨୬ ବରଷ ଭିତରେ ସ୍କୁଲର ସେଇ ଛାତ୍ର ବିଧାନ ସଭାର ଲଗାତର ଦୁଇଥର ସଭ୍ୟ ହେବେ। ବରପାଲି ମାଇନର ସ୍କୁଲରୁ ମାଇନର୍ ପାସ୍ କରି ଗଣନାଥ ସେତେବେଳେ ଉପଖଂଡର ଏକମାତ୍ର ଜର୍ଜ ହାଇସ୍କୁଲ୍‌ରେ ନାମ ଲେଖାଇଲେ। ଦଶମ ଶ୍ରେଣୀରେ ପଢୁଥାଆଂତି। ଭାରତ ଛାଡ଼ ଆଂଦୋଳନ ହେଲା। ପ୍ରଧାନ ଶିକ୍ଷକ ହାରାଧନ ନାୟକ ଜଣେ ସ୍ୱାଧୀନଚେତା ଜାତୀୟତାବାଦୀ ବ୍ୟକ୍ତି ହୋଇଥିବାରୁ ଗଣନାଥଂକୁ ଏଥିରେ ଭାଗନେବାକୁ ନିଷେଧ କରି ନ ଥିଲେ। ସ୍କାଉଟ୍ ଭାବରେ ସେ ରଥଯାତ୍ରା ସମୟରେ ପୁରୀ ଯାଇଥିଲେ। ସମୂହ କ୍ୟାଂପ୍‌ରେ ରହି ଅନ୍ୟମାନଂକ ସହିତ ଭାବ ଆଦାନ ପ୍ରଦାନ କରି ସେ ଛାତ୍ର ମହଲରେ ସୁଖ୍ୟାତି ଅର୍ଜନ କରିଥିଲେ।

ଭାରତଛାଡ଼ ଆଂଦୋଳନ ସମୟରେ ବିଦ୍ୟାଳୟରେ (ପରେ ଜିଲ୍ଲା ବୋର୍ଡରେ ଚେୟାରମ୍ୟାନ ଓ ଓକିଲ) ରାଜେଂଦ୍ର ପଂଡା ଶିକ୍ଷକ ଥାଆଂତି। ଭାରତଛାଡ଼ ଆଂଦୋଳନର ସଂଦେଶମାନ ଗାଁ ଗହଳିରେ ପ୍ରଚାର କରିବା ଗଣନାଥଂକର କାମଥିଲା। ପାଣିମୋରା ଗାଁ ସୋହେଲା ଥାନାରେ। ସେଠାରେ ସ୍ୱାଧୀନତା ସଂଗ୍ରାମୀମାନଂକର ଡେରାଥିଲା। ଆଖପାଖ ବିଜେପୁର ମେଲଛାମୁଂଡା, ପଦ୍ମପୁର, ପାଇକମାଲ ଆଦି ଥାନାକୁ ବିପ୍ଳବର ବାର୍ତା ପ୍ରଚାର ଏହି ଛାତ୍ରମାନଂକର ମାଧ୍ୟମରେ ସଂଭବ ହୋଇପାରିଲା। ଉପରସ୍ଥ ଅଧିକାରୀଂକର ଦୂରଦୃଷ୍ଟି ଫଳରେ ବରଗଡ଼ ସହରରେ ବିଶେଷ ହିଂସାକାଂଡ ନ ହୋଇଥିଲେ ମଧ୍ୟ ବିଦ୍ୟାଳୟର ଛାତ୍ରାବାସଟି ପୋଡ଼ି ଦିଆଯାଇଥିଲା। ଗଣନାଥଂକର କିଛିଦିନ ପଢ଼ା ବଂଦ ହେଲା। ବିଦ୍ୟାଳୟରୁ ନାଁ କଟିଗଲା। ମାତ୍ର ପରବର୍ଷ ସେ ଫେରିଆସି ନାମ ଲେଖାଇ ପରୀକ୍ଷା ଦେଲେ। ମାଟ୍ରିକ୍ ପାସ୍ କଲେ। ସଂବଲପୁର କଲେଜରେ ନାମ ଲେଖାଇଲେ। ନୂଆ ଖୋଲିଥିବା କଲେଜରେ ବାଣିଜ୍ୟ ଶିକ୍ଷା ଦିଆଯାଉଥାଏ। ଗଣନାଥ ତାହା ବାଛିଲେ। ପଢ଼ା ଶେଷ ନକରି କଲିକତାରେ ଉଚ୍ଚତର ଶିକ୍ଷାପାଇଁ ଗଲେ, ମାତ୍ର ହିଂଦୁ ମୁସଲମାନ ଦଂଗା ହେବା ଫଳରେ ପାଠପଢ଼ା ସେଠାରେ ହୋଇ ପାରିଲାନାହିଁ। ଫେରି ଆସିଲେ ନିଜ ଗାଁକୁ। ଘରଲୋକ କିଛି ଚାକିରି ବା ବ୍ୟବସାୟପତ୍ର କରି ଜୀବିକା ଅର୍ଜନ ନିମଂତେ ପ୍ରବର୍ତାଇଲେ ମାତ୍ର ସେ ନିଜର ପ୍ରିୟ ଗ୍ରାମର ଉନ୍ନତି ସକାଶେ ସେଠାରେ ରହି ଲୋକମାନଂକର ସୁଖଦୁଃଖରେ ସାଥୀହୋଇ ସେମାନଂକର ସେବା କରିବା ପରମ କର୍ତବ୍ୟ ମନେକଲେ। ଗାଁର କେମିତି ସବୁ ଦିଗରୁ ଉନ୍ନତି ହେବ ସେଥିପାଇଁ ଲାଗି ପଡ଼ିଲେ। ରାୟସାହେବ କୃତାର୍ଥ ଆଚାର୍ଯ୍ୟ ଆଦି ପୁରୁଣା ଜନସେବୀମାନେ କୃଷକ ଟ୍ରେଡିଂ କଂପାନି ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ। ଏମାନେ ଲୋକମାନଂକଠାରୁ ଧାନ କିଣି ସରକାରଂକୁ ବିକ୍ରି କରୁଥିଲେ। ଲୋକମାନେ ଯେପରି ନିଜ ଶସ୍ୟର ଉଚିତ ମୂଲ୍ୟ ଠିକ୍ ସମୟରେ ପାଇବେ ଏଥିପାଇଁ ସେ ସେଥିରେ ସାମିଲ ହେଲେ। ସତଲମାରେ ପୁରୁଣା ପ୍ରାଥମିକ ବିଦ୍ୟାଳୟ ଥିଲା। ତାଂକ ଉଦ୍ୟମରେ ଏହା ମାଇନର୍ ସ୍କୁଲ୍ ହେଲା। ସେ ନିଜେ ଏହାର ଅବୈତନିକ ପ୍ରଧାନ ଶିକ୍ଷକ ଭାବରେ କାମ କଲେ। ସ୍ଥାନୀୟ ଯୁବକମାନଂକୁ ସମାଜସେବା ପ୍ରତି ଆକୃଷ୍ଟ କରାଇବାକୁ ସେ କ୍ଲବ୍ ଓ ପାଠାଗାର ପ୍ରତିଷ୍ଠା କଲେ। ବରପାଲିରେ ଆମେରିକାନ୍ ମିସନ୍ ଆସି ଲୋକମାନଂକୁ ଉନ୍ନତ ଧରଣର କୃଷି, ପରିମଳ ବ୍ୟବସ୍ଥା, ସଫେଇ, ଜଳଯୋଗାଣ ଆଦି କାର୍ଯ ଶିକ୍ଷା ଦେଉଥାଆଂତି। ସେମାନଂକର ସହଯୋଗରେ ଗଣନାଥ ଗ୍ରାମ ସଫେଇ, ଆଦର୍ଶ ହରିଜନ ବସ୍ତି ସ୍ଥାପନ, ସ୍ଥାୟୀ ବିଦ୍ୟାଳୟ ଘର ଆଦି ପ୍ରତିଷ୍ଠାରେ ସଫଳ ହେଲେ। ନୂଆ ଧରଣର ବିଭିନ୍ନ କୀଟନାଶକ ଔଷଧ ପ୍ରୟୋଗ ସହିତ ବୈଜ୍ଞାନିକ ପ୍ରଣାଳୀରେ ଚାଷ କରି ଲୋକମାନେ କୃଷିରୁ ବେଶ ଲାଭବାନ୍ ହେଲେ। ସେମାନଂକର ଗଣନାଥଂକ ଉପରେ ପତିଆରା ବଢ଼ିବାକୁ ଲାଗିଲା। ସେମାନେ ସବୁପ୍ରକାର ଉଦ୍ୟମରେ କୌଣସି ନିଷ୍ପତ୍ତି ନେବାପାଇଁ

ତାଂକର ସାହାଯ୍ୟ ସହଯୋଗ ଲୋଡ଼ିଲେ। ଜିଲାବୋର୍ଡ ଓ ବରପାଲି ଇଉନିଅନ୍ ବୋର୍ଡ ଛୋଟକାଟର ବ୍ୟବସାୟ ଓ କ୍ଷତିକାରକ କାରବାର ପାଇଁ ଗାଁମାନଂକରେ ଟିକସ ଆସୁଲ କରୁଥିଲେ। ଆଂଦୋଳନ କରି ସେ ଏହା ଉଠାଇଦେବାକୁ ସକ୍ଷମ ହେଲେ। ଅନେକ ବଡ଼ବଡ଼ ଜମିଦାର ଗୌଂତିଆଂକର ବହୁତ ଜମିଥିଲେ ମଧ୍ୟ ଚାଷୀମାନଂକ ହାତରେ କିଛି ନଥାଏ। ଆଂଦୋଳନ କରି ସେ ଏହି ଭୂମିହୀନମାନଂକ ଉଦ୍ଦେଶ୍ୟରେ ଦାନ ସୂତ୍ରେ ମିଳିବା ଜମି ଓ ସରକାରଂକର କେନାଲ, ରେଲୱେ ନିର୍ମାଣ ଉଦ୍ଧାରେ ଥିବା ଉଦବୃତ୍ତ ଜମି ବାଂଟିବାରେ ସମର୍ଥ ହେଲେ। ପଦ୍ମପୁର ବୋଡ଼ାସଂବର ଜମିଦାରଂକର ଜମି ଜବର ଦଖଲ ଆଂଦୋଳନରେ ସେ ମୁଖ୍ୟ ଭୂମିକା ଗ୍ରହଣ କଲେ। ତାଂକୁ ଗିରଫ କରି ରଖାଗଲା। ମାତ୍ର ସବୁ ପକ୍ଷର ସମ୍ମତିରେ ଏହାର ସମାଧାନ କରାଯାଇ ଭୂମିହୀନମାନଂକୁ ତାଂକ ଆଂଦୋଳନ ଫଳରେ ଜମି ମିଳିଲା। ବିରଲା କମ୍ପାନିର ବ୍ରଜରାଜ ନଗରରେ ଓଡ଼ିଶାର ଏକମାତ୍ର କାଗଜ କଳଥାଏ। ଜିଲ୍ଲାର ଜଂଗଲରୁ ବାଉଁଶକାଟି ସେମାନେ ଏଥିରେ ବ୍ୟବହାର କରୁଥିଲେ, ମାତ୍ର କଟାଳିମାନେ ଉପଯୁକ୍ତ ମଜୁରି ପାଉନଥିବା ଦେଖି ସେ ସେମାନଂକୁ ସଂଗଠିତ କଲେ ଓ ପରେ ସେମାନଂକର ସମସ୍ୟା ସଂତୋଷଜନକ ଭାବରେ ସମାଧାନ କରାଇଲେ। ଇଂରେଜୀ ଭାଷା ବଦଳରେ ପ୍ରାଦେଶିକ ଭାଷା କୋଟ୍, କଚେରି, ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକରେ ପ୍ରଚଳନ ନିମିତ୍ତ ସମାଜବାଦୀମାନଂକ ପକ୍ଷରୁ ହେଉଥିବା ଆଂଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ ଓ ଏହା କେତେକାଂଶରେ ଇଂରାଜୀ ଭାଷାର ପ୍ରଚଳନକୁ ସୀମିତ କରିବାକୁ ସକ୍ଷମ ହୋଇଥିଲା। ଲୋକମାନେ ତାଂକୁ ନିଜର ସକ୍ରିୟ ନେତା ଭାବରେ ଗ୍ରହଣ କରି ବିଧାନ ସଭାର ପ୍ରତିନଧି ହେବାକୁ ଅନୁରୋଧ କଲେ। ସେତେବେଳକୁ ସେ ନବକୃଷ୍ଣ ଚଉଧୁରୀ, ମାଳତି ଦେବୀ, ସୁରେଂଦ୍ରନାଥ ଦ୍ୱିବେଦୀ, ବିଶ୍ୱନାଥ ପଂଡିତ, ବାଂକ ବିହାରୀ ଦାସ ଆଦି ପ୍ରତିଷ୍ଠିତ ନେତାମାନଂକ ସହିତ ସୁସଂପର୍କ ରକ୍ଷା କରି ସେମାନଂକ ଦ୍ୱାରା ପ୍ରଭାବିତ ହୋଇଥାଂତି। ୧୯୬୧ରେ ମଧ୍ୟବର୍ତ୍ତୀ କାଳୀନ ନର୍ବାଚନରେ ସେ ବରଗଡ଼ରୁ ପ୍ରତିଦ୍ୱଂଦ୍ୱିତା କରି ନିଜର ନିକଟତମ ପ୍ରତିଦ୍ୱଂଦ୍ୱି ଭରତଚଂଦ୍ର ହୋତାଂକୁ ହରାଇ ବିଧାୟକ ହେଲେ, ମାତ୍ର ପରବର୍ତ୍ତୀ ୧୯୬୭ ନିର୍ବାଚନରେ ସେ ସେହି ପ୍ରତିଦ୍ୱଂଦ୍ୱୀଂକ ଦ୍ୱାରା ପରାଜିତ ହୋଇଥିଲେ। ୧୯୭୧ ନିର୍ବାଚନରେ ମଧ୍ୟ ସେ ବରଗଡ଼ରୁ ମାତ୍ର ପାଂଚଖଂଡ ଭୋଟ ବ୍ୟବଧାନରେ ହାରିଯାଇଥିଲେ। ୧୯୭୪ ନିର୍ବଚନରେ ସେ ବିଜେପୁର ନିର୍ବାଚନ ମଂଡଳୀରୁ କଂଗ୍ରେସ ପାର୍ଥୀଂକୁ ପରାଜିତ କରି ନିର୍ବାଚିତ ହୋଇଥିଲେ। ଭୂମିହୀନ କୃଷକ, ନାମମାତ୍ର ଚାଷୀ ଓ କୃଷି ଶ୍ରମିକମାନଂକର ସମସ୍ୟା ସେ ମୁଖ୍ୟତଃ ବିଧାନ ସଭାରେ ଉପସ୍ଥାପିତ କରୁଥିଲେ। ଚାଷୀମାନଂକର ଋଣ ସମସ୍ୟା, ଜଳକର ବୃଦ୍ଧି ଇତ୍ୟାଦି ସେ ବିରୋଧ କରି ବିଧାନ ସଭାରେ ନିଜର ବଳିଷ୍ଠ ଯୁକ୍ତି ବାଢୁଥିଲେ। ଜଳକର ବୃଦ୍ଧି ଆଂଦୋଳନ ସତଲମା, ଜମ୍ଳାପଡ଼ା, କନଖିଂଡା ଆଦି ଗ୍ରାମରେ ତୀବ୍ର ଆକାର ଧାରଣକରି ସରକାରଂକୁ ଜଳକର ହାର କମେଇବାକୁ

ବାଧ୍ୟକଲା । ସମବାୟ ସଂସ୍ଥା ଜରିଆରେ ଚାଷୀମାନଂକୁ ସ୍ୱଚ୍ଛଳ କରିବା ଉଦ୍ଦେଶ୍ୟରେ ସେ ଏହି ସଂସ୍ଥା ଗଠନକୁ ଉତ୍ସାହିତ କରୁଥିଲେ । ଜିଲ୍ଲା ସମବାୟ ସମିତିର ମଧ୍ୟ ସେ ସଭାପତି ନିର୍ବାଚିତ ହୋଇଥିଲେ । ୧୯୭୪ରେ ଭାରତବର୍ଷର ବିଭିନ୍ନ ରାଜ୍ୟର ପ୍ରଗତିଶୀଳ ଚାଷୀମାନଂକର ଏକ ପ୍ରତିନିଧି ଦଳରେ ଭାରତ ସରକାରଂକ ଦ୍ୱାରା ସେ ମନୋନୀତ ହୋଇ ଜାପାନ, ମାଲଯେସିଆ, ଥାଇଲାଂଡ ଆଦି ଦେଶ ଭ୍ରମଣ କରି ଗ୍ରାମ୍ୟ କୃଷି, ଜଂଗଲ କୃଷିଭିତ୍ତିକ କ୍ଷୁଦ୍ର ଗ୍ରାମ୍ୟଶିଳ୍ପ ଉପରେ ଅନୁଧ୍ୟାନ କରିଥିଲେ । ନିଜର ନିର୍ବାଚନ ମଂଡଳୀରେ ଏହାର ସମ୍ଭାବ୍ୟ ପ୍ରୟୋଗ ଦିଗରେ ସେ ଯତ୍ନବାନ ଥିଲେ । ୧୯୭୫ରେ ଜରୁରୀ କାଳୀନ ପରିସ୍ଥିତି ସମୟରେ ବିରୋଧୀ ଦଳର ନେତା ଭାବେ ତାଂକୁ ଅଟକ କରି ଜେଲରେ ରଖାଯାଇଥିଲା । ଜେଲରୁ ଖଲାସ ହୋଇ ସେ ସଂବଲପୁର ନିର୍ବାଚନ ମଂଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ, ମୁଖ୍ୟତଃ ସେ ସମାଜବାଦୀ ଦଳର କର୍ମୀ ହୋଇ ସମାଜବାଦୀ ଚିଂତାଧାରା ଓ ଆଂଦୋଳନକୁ ନିଜ ଅଂଚଳରେ ଲୋକପ୍ରିୟ କରାଇ ପାରିଥିଲେ । ଛାତ୍ରାବସ୍ଥାରୁ ତାଂକର କଳା ପ୍ରତି ରୁଚି ଥିଲା । ସେ ଜଣେ ସଫଳ ଅଭିନେତା ନିର୍ଦ୍ଦେଶକ ଓ ସଂଗଠକ ଥିଲେ । ନାଟକ ଜରିଆରେ ସେ ବିପ୍ଲବାତ୍ମକ ଚିଂତାଧାରା ପ୍ରଚାର କରୁଥିଲେ । ବରଗଡ଼ ଓ ବରପାଲିରେ ମହିଳା କଲେଜ ବ୍ୟତୀତ ଅତାବିରାଠାରେ କଲେଜ ସ୍ଥାପନରେ ତାଂକର ଉଲ୍ଲେଖଯୋଗ୍ୟ ଭୂମିକା ଥିଲା ।

ଅନେକ ନିଷ୍ପାପର ସମାଜବାଦୀ କର୍ମୀ ମଧ୍ୟ ସେ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ଖ୍ୟାତିମାନ ସମାଜବାଦୀ ଏହି କୃଷକ ନେତାଂକର ୨୦୦୪ ଅକ୍ଟୋବର୍ ୧୪ ତାରିଖରେ ବରପାଲିରେ ପରଲୋକ ହେଲା । ରାଜ୍ୟ ଜଣେ ନିଷ୍ପାପର ଲୋକସେବକଂକୁ ହରାଇଲା । (ମୁଖ୍ୟତଃ ବରପୁତ୍ର ବରଗଡ଼ ୨୦୦୨ ସଂଖ୍ୟାରେ ପ୍ରକାଶିତ ସୁଶ୍ରୀ ଦେଜି ପ୍ରଧାନଂକର ପ୍ରବଂଧ ଉପରେ ଆଧାରିତ) ।



ଆରେ ମନୁଆଁରେ ଛାଡ୍ ଛାଡ୍ ତୋର୍ ଏଂତା ଢ଼ଂଗଢ଼ାଂଗ
ଆରେ ଲୁଦଡ୍ ଲୁଦର ଧାନ ରଖିଛୁ ପେଦ୍ ଟଁକା ଭି କୁଥଲ୍ କୁଥାଲ୍
ଥିବ୍ ପାନିନେ ତ ଦିବ୍ କାଟୁଛୁରେ ସର୍ବାଂଗ୍ ମେଲା ଚୁତଲ୍
ପୁଷେ ପୈସେ ଦେବେ ନାଇଁରେ ପଲେଁ ତଲେଁ ଲାଂଗ୍
ଆରେ ଜନମ୍ ହେଲେ ମରନ୍ ଅଛେ, କେଭେଁ ନାଇଁଯାଏ ବାଯଁ
ଧରମ୍ କରମ୍ ଯେତ୍‌କି ପାବୁଁ କର୍‌ରେ ସାଯଁ ସାଯଁ
ଦେଶର ଲାଗି ରକତ ଢାଳି ଯମର ପାଚି ଭାଂଗ୍ ।

(ରସକବିତା) **ଶଶିଭୂଷଣ ମିଶ୍ର**

ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାସକ ସଂପାଦିତ ଓ ପ୍ରକାଶିତ ''ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ'' ଗ୍ରଂଥରୁ ଏହି ବିସ୍ମୃତ ରଚୟିତାମାନଂକର ନାମ ଓ ରଚନାବଳୀ ଗୃହୀତ।

# ଭବାନୀ ଶଂକର ପ୍ରଧାନ

୧୯୧୫ରେ ଜନ୍ମ ଭବାନୀ ଶଂକର ପ୍ରଧାନ ବୃତ୍ତିରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ। ତାଂକର ଘର ବରଗଡ଼ ଜିଲ୍ଲାର ବରପାଲିରେ। ଜଣେ ନାଟ୍ୟକାର ଭାବରେ ଭବାନୀ ଶଂକରଂକର ରଚନା ଲୋକପ୍ରିୟ ଥିଲା। ଗାଁ ଗହଳିରେ ଏହା ଯାତ୍ରା ମାଧ୍ୟମରେ ଲୋକମାନଂକର ମନୋରଂଜକ ଥିଲା। ତାଂକ ନାଟକମାନଂକ ମଧ୍ୟରେ କର୍ଣାର୍ଜୁନ, ସୀତା, ପାର୍ଥସାରଥି ଭରସା, ଚଂଦ୍ରଗୁପ୍ତ ଆଦି ପ୍ରଧାନ। ସେ ନିଜେ ଜଣେ ଅଭିନେତା ଥାଇ ନାଟକ ମଞ୍ଚସ୍ଥ କରୁଥିଲେ।

# ବୀରବର ଦାସ

୧୯୧୫ରେ ରେମଂଡାରେ ବୀରବର ଦାସ ଜନ୍ମ ଗ୍ରହଣ କରିଥିଲେ। ଜଣେ କବି ଓ ଆଲୋଚକ ଭାବରେ ସେ ସୁଖ୍ୟାତି ଅର୍ଜନ କରିଥିଲେ। ସ୍ୱାମୀ ଜ୍ଞାନାନଂଦ ସରସ୍ୱତୀ ଓ ଐତିହାସିକ ଶିବପ୍ରସାଦ ଦାସଂକର ଜୀବନୀ ସେ ରଚନା କରିଥିଲେ। ପ୍ରେମର ପ୍ରତିଦାନ (ଉପନ୍ୟାସ) ଯୁଗପଥ ବ୍ରାହ୍ମଣ (ଆଲୋଚନା) କୁମୁଦ, (କାବ୍ୟ) ଉଲ୍ଲାସ ଆଦି କେତୋଟି ପଦ୍ୟସଂକଳନ ତାଂକର କୀର୍ତି। ମୋଟରେ ସେ ୧୩ ଖଂଡ ପୁସ୍ତକ ରଚନା କରିଥିଲେ।

# ପ୍ରଫୁଲ୍ଲ ଚଂନ୍ଦ୍ର ପଟ୍ଟନାୟକ

୧୯୧୭ ରେ ପ୍ରଫୁଲ୍ଲ ଚଂନ୍ଦ୍ର ପଟ୍ଟନାୟକ ବରପାଲିରେ ଜନ୍ମ ଗ୍ରହଣ କରିଥିଲେ। ତାଂକ ପିତା ଭାଗିରଥି ପଟ୍ଟନାୟକ ଓ ମାତା ଜଂବୁବତୀ ଦେବୀ ଉଭୟ ସ୍ୱାଧୀନତା ସଂଗ୍ରାମୀ ଓ ସମାଜ ସେବୀ ଭାବରେ ଅବିଭକ୍ତ ସଂବଲପୁର ଜିଲ୍ଲାରେ ସୁଖ୍ୟାତି ଅର୍ଜନ କରିଥିଲେ। ଜଣେ ପ୍ରାବଂଧିକ ଭାବରେ ପ୍ରଫୁଲ ଚଂଦ୍ର 'ସହକାର' 'ଶଂଖ' ନବଯୁଗ ଆଦି ପତ୍ରିକାରେ ନିଜର ପ୍ରବଂଧ ପ୍ରକାଶନ ଫଳରେ ଲୋକପ୍ରିୟ ଥିଲେ। ସେ ହିଂଦି ପତ୍ର ପତ୍ରିକାରେ ମଧ୍ୟ ଲେଖୁଥିଲେ। ବିହାରରେ ବସବାସ କରି ସେ ବିହାର ସରକାରଂକ ଦ୍ୱାରା ହିଂଦି ସାହିତ୍ୟକୁ ତାଂକ ଅବଦାନ ନିମିତ୍ତ ସମ୍ମାନିତ ହୋଇଥିଲେ। ୨୦୦୨ରେ ତାଂକର ମୃତ୍ୟୁ ହୁଏ। ୧୯୪୨ ଭାରତଛାଡ଼ ସ୍ୱାଧୀନତା ସଂଗ୍ରାମରେ ପ୍ରଫୁଲ ଚଂଦ୍ରଂକର ଅବଦାନ ମଧ୍ୟ ସ୍ମରଣୀୟ।

# ଦେବାର୍ଚନ ଭୋଇ

ପ୍ରାବଂଧିକ ଦେବାର୍ଚନ ଭୋଇ ବରଗଡ଼ ନିକଟ ତାଲବ ଗ୍ରାମରେ ୧୯୧୬ରେ ଜନ୍ମଗ୍ରହଣ କରିଥିଲେ। ରେଭେନ୍ସା କଲେଜରୁ ଆଇ.ଏ. ପାସ୍ କରିଥିଲେ। ଘରୋଇ ଭାବରେ ବି.ଏ. ଓ ଏମ୍.ଏ ପାସ କଲାପରେ ଶିକ୍ଷକ ଓ ଅଧ୍ୟାପକ ଥାଇ ସେ ସଂବଲପୁରରେ ଅଧ୍ୟାପକ ଓ ରେଢ଼ାଖୋଲ କଲେଜର ଅଧ୍ୟକ୍ଷ ଥିଲେ। ସଂସ୍କୃତ ସାହିତ୍ୟର ସୁପ୍ରସିଦ୍ଧ ପଂଚକାବ୍ୟ ତାଂକର ଏକ ଉଚ୍ଚକୋଟିର ପ୍ରବଂଧ ସମାରୋହ।

# ଅନିରୁଦ୍ଧ ଦାସ

କବିଭୂଷଣ ସ୍ୱପ୍ନେଶ୍ୱର ଦାସଂକର ପୁତ୍ର ଅନିରୁଦ୍ଧ ଦାସ ଭାରତୀୟ ପ୍ରାଶାସନିକ ସେବାରେ ଅଧିଷ୍ଠିତ ଥାଇ ଅବସର ନେଲେ। ସେ ୧୯୧୩ରେ ଜନ୍ମ ହୋଇଥିଲେ। ୧୯୩୮ରେ ସବ୍‌ଡେପୁଟି କଲେକ୍ଟର ଭାବରେ ସରକାରୀ ଚାକିରିରେ ପଶିଥିଲେ। ବୀର ସୁରେଂଦ୍ରସାଏଂକ ଜୀବନୀ, ଶବର ଓ ମେରିଆ, ଶ୍ରୀଜଗନ୍ନାଥ ଓ ନେପାଳ, ଓଡ଼ିଶାରେ ପଂଚାୟତି ରାଜ ତାଂକର ଲିଖିତ ଓ ପ୍ରକାଶିକ ପୁସ୍ତକ। ୧୯୬୩ରେ ଅବସର ଗ୍ରହଣ ପରେ ସେ ସଂବଲପୁର ବିଶ୍ୱବିଦ୍ୟାଳୟର କିଛିଦିନ ଅସ୍ଥାୟୀ କୁଳପତି ମଧ୍ୟ ଥିଲେ।

# ପଂଡିତ ରାଘବ ମିଶ୍ର

ପଂଡିତ ରାଘବ ମିଶ୍ର (୧୮୯୬-୧୯୭୦)ଂକ ଜନ୍ମ ବରଗଡ଼ଠାରୁ ପାଂଚକିଲୋମିଟର ଦୂର ଅଡ଼ଗାଁରେ। ସେ ବରପାଲି ମାଇନର ସ୍କୁଲରେ ଶିକ୍ଷକତା ଆରଂଭ କରି ସେହିଠାରେ ଆଜୀବନ ଶିକ୍ଷା ବିଭାଗରେ କାର୍ଯ କରୁଥିଲେ। ତାଂକ ରଚନାମାନ କବି ଗଂଗାଧର ମେହେର (ଜୀବନୀ) ହର୍ଷେବିଷାଦ, ନୀତି ପୁଷ୍ପହାର, ବାଳଭକ୍ତ, କୃଷ୍ଣ ଭକ୍ତି ରସାମୃତ। ତାଂକର ଜୀବନୀ ବରପାଲିର ଭାଗୀରଥି ପୂଜାରୀ (ଜନ୍ମ ୧୯୦୫) ରଚନା କରିଥିଲେ। ପୁସ୍ତକଟି ଦୁର୍ଲଭ୍ୟ। ପଂଡିତ ରାଘବଂକର ପ୍ରବଂଧ ସଂବଲପୁର ହିତୈଷିଣୀରେ ମଧ୍ୟ ପ୍ରକାଶିତ ହେଉଥିଲା।

# ଭାଗିରଥି ପୂଜାରୀ

ବରପାଲିରେ ୧୯୦୫ରେ ଭାଗିରଥି ପୂଜାରୀ ଜନ୍ମଲାଭ କରିଥିଲେ ସେ ଅନେକ ପଦ୍ୟରଚନା କରି ଲୋକପ୍ରିୟ କବି ଥିଲେ। କୃତାର୍ଥ ଆଚାର୍ଯ ପଂଡିତ ରାଘବ ମିଶ୍ର ପ୍ରଭୃତିସକ ଜୀବନୀ ବ୍ୟତୀତ ସେ ଗଂଗାଧର ମେହେର ପୁସ୍ତକ ରଚନା କରିଥିଲେ। ସପ୍ତର୍ଷିରେ ତାଂକର ଅନେକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା।

ସେ ଗାନ୍ଧିଗୀତା, ସଂବଲପୁରୀ ରସ କବିତା, ଅଦ୍ଭୁତ ହତ୍ୟାକାରୀ, ଗାଉଁଲି ଗପ ପୁସ୍ତକମାନ ରଚନା କରିଥିବା ଜଣାପଡେ।

# ଶଶିଭୂଷଣ ମିଶ୍ର

ତାଂକର ଜନ୍ମ ୧୯୨୫ରେ। ବରଗଡ଼ ନିକଟ ଭଟଲି ଥାନା ଅଂତର୍ଗତ କମଗାଁରେ ଶଶିଭୂଷଣ ମିଶ୍ରସଂକର ଜନ୍ମ। ଦମୟଂତୀ, ଶ୍ମଶାନ, କଂକାଳ ମୁକ୍ତି, ପଥର ଭିଖାରୀ ଆଦି ପୁସ୍ତକର ସେ ଲେଖକ ଥିଲେ।

# ଗଣନାଥ ଗଡତିଆ

ବରପାଲି ନିକଟ ଧିରପୁର ଗ୍ରାମରେ ଗଣନାଥ ଗଡତିଆଂକର ଜୁନ୍ ୧୯୦୯ରେ ଜନ୍ମ। ଜର୍ଜ ହାଇସ୍କୁଲରୁ ମାଟ୍ରିକ୍ ଓ ରେଭେନ୍ସା କଲେଜ କଟକରୁ ଆଇ.ଏ ପାସ୍ କରି ଶିକ୍ଷକ ବୃତ୍ତିରେ ଯୋଗ ଦେଲେ। ଘରୋଇ ଭାବରେ ବି.ଏ. ଓ ବି.ଇଡି ପାସ୍ କରି ବରଗଡ଼ ଓ ବରପାଲିରେ ଜଣେ ଛାତ୍ରବତ୍ସଳ ଶିକ୍ଷକ ଭାବରେ ପରିଚିତ ଥିଲେ। ନିଜ ରଚିତ କବିତା ସଂକଳନ 'ମରମବାଣୀ' ଓ ଉନବିଂଶ ଅଣସ୍ତରି ପ୍ରକାଶ ପାଇଥିଲା। ପରବର୍ତ୍ତୀକାଳରେ କେଶବ କୋଇଲି ଅନୁକରଣରେ ଗାଂଧି କୋଇଲି ଓ ଆହ୍ୱାନ ୧୯୭୩ ରେ ପ୍ରକାଶ ପାଇଥିଲା। ସଂବଲପୁର ଭାଷା ସାହିତ୍ୟ ପ୍ରଥମ ଓ ଦ୍ୱିତୀୟ ଭାଗ ତାଂକ ଦ୍ୱାରା ଲିଖିତ ଓ ପ୍ରକାଶିତ। ସ୍ଥାନୀୟ ଲୋକମାନଂକର ଉନ୍ନତି ଉଦ୍ଦେଶ୍ୟରେ ସେ ବହୁଜନହିତକାରୀ ଅନୁଷ୍ଠାନମାନଂକରେ କାର୍ଯ୍ୟ କରିଥିଲେ। ୧୯୯୭ରେ ସେ ମୃତ୍ୟୁବରଣ କଲେ। ତାଂକର ଅନେକ ରଚନା ଅପ୍ରକାଶିତ ରହିଛି।

# ଦାଶରଥି ପ୍ରସାଦ ଦାସ

ଅବିଭକ୍ତ ସଂବଲପୁର ଜିଲ୍ଲାର ବରଗଡ଼ ସବ୍‌ଡିଭିଜନର ରୋହିଣିଆ ଗ୍ରାମରେ ୧୮୮୩ରେ ଦାଶରଥି ପ୍ରସାଦ ଦାସ ଜନ୍ମଗ୍ରହଣ କରିଥିଲେ। କବି ସ୍ୱପ୍ନେଶ୍ୱରଂକର ସେ ଭାଇ ଥିଲେ ଓ ଆଜୀବନ ଶିକ୍ଷକ ଥିଲେ। ସେ ଶ୍ରୀମଦ୍ ଭଗବଦ ଗୀତାର ପଦ୍ୟାନୁବାଦ ନବାକ୍ଷରୀ ବୃତ୍ତରେ କରିଥିଲେ। ଏହା ସରଳ ଓ ଏହାର ଭାବ ପ୍ରାଣସ୍ପର୍ଶୀ ଥିଲା। ୧୯୫୪ରେ ତାଂକର ମୃତ୍ୟୁ ହୁଏ।

❑ ❑ ❑

## ବଲାଂଗିର

| | |
|---|---|
| ଆୟତନ | ୬୫୫୨ ବର୍ଗ କି.ମି. |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୧୩,୩୫,୭୬୦ |

୧୯୪୮ରେ ମିଶ୍ରଣ ସମୟରେ ପାଟଣା କରଦ ରାଜ୍ୟର ଆୟତନ ୨୩୯୯ ବର୍ଗ ମାଇଲ ଓ ଲୋକ ସଂଖ୍ୟା ୪୯୪୪୫୬ ଥିଲା। ବ୍ରିଟିଶ ସରକାରଂକୁ ଦେୟ ପେସ୍‌କିସ୍ ଟ.୧୩,୦୦୦ଙ୍କା ଥିଲା।

''ଗିରି କରୀଟିନୀ, ତଟିନୀ ମାଳିନୀ
ବହୁତୀର୍ଥମୟୀ, ରତ୍ନପ୍ରସବିନୀ।
ଉତ୍କଳ କଂଠେ ତୁ ପାରିଜାତ ମାଳା
ବିଶ୍ୱ ପ୍ରକୃତିର ଚାରୁ ଚିତ୍ରଶାଳା।
ଏ ଉତ୍କଳଭୂମି ବାସଂତୀ ଚଂଦ୍ରମା
ତୁ ତାହାର ଜ୍ୟୋସ୍ନାଗୁଣେ ନିରୁପମା।

—କବିଶେଖର ଚିଂତାମଣି
(ପାଟଣା କାବ୍ୟ)


ପୃଥ୍ୱୀରାଜ ସିଂହଦେଓ


ରାଜେନ୍ଦ୍ରନାରାୟଣ ସିଂହଦେଓ

# ମାହାର୍ଜା ମୁଖ୍ୟମନ୍ତ୍ରୀ

# ରାଜେନ୍ଦ୍ର ନାରାୟଣ

ଦେଶୀୟ ରାଜ୍ୟଗୁଡ଼ିକର ଓଡ଼ିଶାରେ ମିଶ୍ରଣ ସମୟରେ ୧୯୪୮ରେ କାଳଜୟୀ କବି ଗୋଦାବରୀଶ 'ନିଆଁଖୁଂଟା'ରେ 'ମୁକୁଟର ପରାଜୟ' କବିତାରେ ଲେଖିଥିଲେ।

"ପାଷାଣ ଯୁଗର ଗଡ଼ଜାତଗଡ଼ ବିଳାସ ନବର ତଳ। କଂଧ କିରାତ କୁଟୀର ବଂଧ ହେଲା ଆଜି ସମତଳ। ପତିତ ତାପିତ ଦୀନ ପଦାନତ ଆହତ ଯାତ୍ରୀ ଶୁଣ। ବର୍ବରତାର ଚରମ ସମାଧି ହେଲା ଏଠି ସମାପନ।

ଗିରିକଂଦରେ, ଦେବ ମଂଦିରେ ଘନ ଅଂଧାରେ, କୁହ,
ହେଲା ଏତେକାଳେ କୌପୀନ ପାଖେ ମୁକୁଟର ପରାଜୟ।
ଶତ ବର୍ଷର ଥିଲା ଏଠି ଯେତେ ନବର ଚଂଦ୍ରଶାଳା
ଥିଲା ଶତଶତ ବିହାର ବାଟିକା, କାମିନୀ ହଂସପୁର
ପାଟପ୍ରାଂଗଣ, ପାଟମହାଦେଇ,ପାଟଜେମା,· ପାଟହାତୀ
ଏ ନାମ ସମାଧି ହେଲା ଏଠି ଆଜି ଲୁଚିଗଲା ପାଟଛତି

ଘନ ଅଂଧାରେ, ଗିରିକଂଦରେ, ଦେବ ମଂଦିରେ କୁହ
ହେଲା ଏତେକାଳେ କୌପୀନ ପାଖେ ମୁକୁଟର ପରାଜୟ।
ଲୁଚିଲା 'ମଣୋହି' 'ପହୁଡ଼' ଏଠାରେ ଇତିହାସେ ହେବ ଲେଖା।
ପଛ ଘୁଂଚାରେ 'ଛାମୁ' ଗଲେ ଛାଡ଼ି 'ବିଜେହେବେ' ନାହିଁ ଦେଖା
ଗଡ଼ଜାତ ହେଲା ମୋଗଲବଂଦୀ ଜାଗି ପ୍ରଜା ପରିଷଦେ
ମସ୍ତକ କର ଅବନତ ଭାଇ ମହାଉତ୍କଳ ପଦେ।
କୌପୀନ ଆଉ ମୁକୁଟ ମଝିରେ ବିରାଟ ଯେ ବ୍ୟବଧାନ।
କହେ କୌପୀନ ଗଲା ଏ ମୁକୁଟ ଛାଡିଦେଇ ତାର ଥାନ।
ସେ ଥାନ ଦଖଲ କରିବା ପାଇଁକି ସମର ଲାଗିବ କାଲି।
ସାମ୍ୟବାଦର ଶଂଖ ବାଜଇ ସମତା ଆଣିବ ବୋଲି।

ଏହି କବିତାପଢ଼ି କେହି କେବେ ଭାବି ନ ଥିଲା ଯେ ଏହି ପଛ ଘୁଂଚାରେ ଯିବା ଛାମୁମାନଂକ ମଧ୍ୟରୁ ଜଣେ 'ମଣିମା' ପଚିଶ ବରଷ ମଧ୍ୟରେ ବୃହତ୍ତର ଓଡ଼ିଶାର ମୁଖ୍ୟମଂତ୍ରୀ ହେବେ ଓ ପଶ୍ଚିମ ଓଡ଼ିଶାରୁ ସେ ଶତାବ୍ଦୀର ଶେଷ ପର୍ଯଂତ ଏକମାତ୍ର ପ୍ରଭାବଶାଳୀ ମୁଖ୍ୟମଂତ୍ରୀ ଭାବେ ଇତିହାସରେ ରହିବେ।

ଓଡ଼ିଶା ଲୋକେ ତାଂକୁ ପାଟଣା ମହାରାଜା ଭାବରେ ଜାଣୁଥିଲେ, ଦୀର୍ଘ ରାଜନୈତିକ ଜୀବନରେ ସେ ନାନା କ୍ଷେତ୍ରରେ ଦକ୍ଷତାର ସହିତ କାର୍ଯକରି ପ୍ରଶଂସିତ ହୋଇଥିଲେ ମଧ୍ୟ ତାଂକ ନିଜ ନାମ ଅତି ଅଳ୍ପ ପ୍ରଶଂସକ ଜାଣିଥିଲେ। ସରେଇକଳାର ରାଜା ଥିଲେ ଆଦିତ୍ୟ ପ୍ରତାପ ସିଂହ ଦେଓ। ଜଣେ ଦକ୍ଷ ପ୍ରଶାସକ, ସାହିତ୍ୟପ୍ରେମୀ ଓ ଦେଶ ଅନୁରାଗୀ ଭାବରେ ସେ ପରିଚିତ ଥିଲେ। ବଲାଂଗିରର ମହାରାଜା ରାମଚଂଦ୍ର ଦେଓଂକର ସେ ଜାମାତା ଥିଲେ। ୧୯୧୨ ମାର୍ଚ୍ଚ ୩୧ ତାରିଖରେ ତାଂକର ୨ୟ ପୁତ୍ର ରାଜେଂଦ୍ର ନାରାୟଣ ଜନ୍ମ ଗ୍ରହଣ କରିଥିଲେ। ସରେଇକଳା ରାଜବଂଶର ଇତିହାସ ଅତି ପ୍ରାଚୀନ। ୧୨୦୫ରେ ମହାରାଜା ଧ୍ରୁବ ନାରାୟଣ ସିଂହ ଏହି ବଂଶ ପ୍ରତିଷ୍ଠା କରିଥିଲେ। ୫୩ ଜଣ ନରପତି ଏହି ବଂଶରେ ରାଜପଣ କରିଥିଲେ। ମହାରାଜା ପୃଥ୍ୱୀରାଜ ନିଃସଂତାନ ଥିଲେ। କିଂବଦଂତୀ ଅଛି ପାଟଣା ରାଜବଂଶ ଅଭିଶାପ ପାଇଥିଲେ ସେ ବଂଶରେ ଉତ୍ତରାଧିକାରୀ ରହିବେ ନାହିଁ। ପୋଷ୍ୟପୁତ୍ର ରାଜ୍ୟ ଶାସନ କରିବ। ପୃଥ୍ୱୀରାଜ ମଧ୍ୟ ଜ୍ୟେଷ୍ଠ ରାଜପୁତ୍ର ନ ଥିଲେ। ଭାଇଆଳି ସୂତ୍ରେ ସେ ପୋଷ୍ୟପୁତ୍ରହୋଇ ରାଜଗାଦି ପାଇଥିଲେ। ପାଠଶାଠ ଅଳ୍ପ ପଢିଥିଲେ। ଦୈବାତ ରାଜଗାଦି ମିଳିଗଲା। କୁଶାସନ ଆଶଂକାରେ ଇଂରେଜ ସରକାର ନିଜ ମନୋନୀତ

ଦେଓ୍ୱାନ ଭାବରେ ସଂବଲପୁରର ଡେପୁଟି କଲେକ୍ଟର ବାଳମୁକୁଂଦ ବହିଦାରଂକୁ ପଠାଇଲେ। ଅସଲ କ୍ଷମତା ତାଂକ ହାତରେ ଥିଲା। ରାଜା ନିଜେ ତାଂକର ଦୁଃଖ ନିମ୍ନ ବିଦ୍ୟାଳୟର ସହପାଠୀ ଭାରତଚଂଦ୍ର ନାୟକଂକୁ ଜଣାଇବା ଉଲ୍ଲେଖ ଅଛି। ରାଜା ଗୋଜା' ଏହି ଉକ୍ତି ତାଂକ ପ୍ରତି ପ୍ରଯୁଜ୍ୟ ଥିଲା। ପାଟଣାରେ ସୁଶାସନ ପ୍ରତିଷ୍ଠା ହୋଇ ପାରିଥିଲା। ପୃଥ୍ୱୀରାଜ ସମୟ ଅନିୟମତ ଭାବରେ ଖାଇବା,ଶୋଇବା, ବିଳାସ ବ୍ୟସନରେ କଟାଂତି। ତାଂକର ସୁଶାସନ ଫଳରେ ସଂବଲପୁରରେ ଏକ ରାଜପ୍ରସାଦ, ଜର୍ଜ ଲିଟରାରି କ୍ଲବ, ସୋନପୁର ସୀମାରେ ହୁଇଲର ପୋଲ, ଗଭର୍ନର ଗେଟ ସାହେବଂକ ନାମରେ ବିରାଟ ଗେଟ ସରୋବର ଆଦି ଅନେକ ଲୋକହିତକର କାର୍ଯ ସେ କରିବାକୁ ସକ୍ଷମ ହୋଇଥିଲେ। କାରଣ ସ୍ୱରୂପ କୁହାଯାଇପାରେ ଯେ ପାଟଣାର ସୌଭାଗ୍ୟକୁ ଏହି ସମୟରେ ଜଣେ ଉତ୍ସାହୀ ଦୂରଦୃଷ୍ଟି ସଂପନ୍ନ ଦେଓ୍ୱାନ ମିଳିଯାଇଥିଲେ। ସେ ସଂବଲପୁରର ଜଣେ ଡେପୁଟି କଲେକ୍ଟର ବାଳମୁକୁଂଦ ବହିଦାର, ସଂବଲପୁରର ସ୍ୱନାମଧନ୍ୟ ଆଇନଜୀବୀ ସ୍ୱର୍ଗତଃ ମାନଭଂଜନ ବହିଦାରଂକ ସେ ପିତା ଥିଲେ। ବଲାଂଗିରର ଦୁଇଟି ମୁଖ୍ୟ ଅନୁଷ୍ଠାନ ଜର୍ଜ ଲିଟରାରୀକ୍ଲବ ଓ ପୃଥ୍ୱୀରାଜ ହାଇସ୍କୁଲ- ରାଜ୍ୟର ଶିକ୍ଷା ଓ ସଂସ୍କୃତିର ବିକାଶ ନିମିତ୍ତ ଏହି ସମୟରେ ଯଥାକ୍ରମେ ୧୯୧୧ ଓ ୧୯୧୩-୧୬ ରେ ପ୍ରତିଷ୍ଠିତ ହୋଇ କାର୍ଯ କରୁଥିଲେ। ପଂଚମ ଜର୍ଜଂକ ଦିଲ୍ଲୀ ଦରବାର ଉପଲକ୍ଷେ ଏହା ପ୍ରତିଷ୍ଠା କରାଯାଇଥିଲା। ପୁସ୍ତକାଳୟ ପାଠାଗାର ସଂବାଦପତ୍ର ଓ କୂଟିତ ଆଲୋଚନା ମଧ୍ୟରେ ଏଠାରେ ସାହିତ୍ୟ ଚର୍ଚ୍ଚା ହେଉଥିଲେ ମଧ୍ୟ ଏହାର ସାମାଜିକ ଗୁରୁତ୍ୱ ଥିଲା। ରାଜ୍ୟର ସବୁ ସ୍ତରର ଶିକ୍ଷିତ ଅଧିବାସୀ ଅମଲା, ହାକିମ, ଓକିଲ, ଡାକ୍ତରଂକର ଏହା ଏକ ମିଳନସ୍ଥଳୀ ଥିଲା। ପରସ୍ପର ପରିଚୟ ଓ ସୌହାର୍ଦ୍ୟ ଫଳରେ ଜନପରିବେଶ ସଂଗଠିତ ଓ ଏକୀକୃତ ହୋଇଯାଇଥିଲା। ପୂର୍ବରୁ ବଲାଂଗିରରେ ନାଟକ ଅଭିନୟ ହେଉଥିଲା। ମହାରାଜା ଦଳଗଂଜନ ଦେବଂକ ସମୟରେ ପ୍ରଥମଥରପାଇଁ ବଲାଂଗିରରେ ଆବଦ୍ଧ ରଂଗମଂଚରେ ସୀତା ନାଟକ ଅଭିନୟ କରାଯାଇଥିଲା ଓ ସ୍ୱର୍ଗତ ଭାରତଚଂଦ୍ର ନାୟକ ଏଥିରେ ସୀତା ଭୂମିକାରେ ଅଭିନୟ କରିଥିଲେ। ବାଳମୁକୁଂଦ ଏହାକୁ ଉନ୍ନତ କରାଇଥିଲେ। ଡ୍ରାମାଟିକ କ୍ଲବର ସ୍ଥାୟୀ ରଂଗମଂଚ ସହିତ ସବୁପ୍ରକାର ମଂଚୋପକରଣ ବେଶପୋଷାକ ବାଦ୍ୟଯଂତ୍ର ଆଲୋକ ସଜ୍ଜା ଓ ନିର୍ମାଣ ସରଂଜାମର ବ୍ୟବସ୍ଥା କରିଥିଲେ। ୧୯୧୨-୧୩ରେ ଏଠାରେ ଯଯାତି କେଶରୀ ନାଟକ ଅଭିନୀତ ହେଲା। ତା ପୂର୍ବରୁ ଧ୍ରୁବ ନାଟକର ମଧ୍ୟ ଅଭିନୟ କରାଯାଇଥିଲା। ପରବର୍ତ୍ତୀ କାଳରେ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଂକର ସବୁନାଟକ

ସହିତ ଅନେକ ବଂଗଳାରୁ ଅନୁବାଦିତ ନାଟକର ଅଭିନୟ ମଧ୍ୟ ହୋଇଥିଲା। ବଲାଂଗିରରେ ଓ ରାଜ୍ୟ ବାହାରେ ପରବର୍ତ୍ତୀ କାଳରେ ସ୍ୱନାମ ଅର୍ଜନ କରିଥିବା ଅନେକ ରାଜକର୍ମଚାରୀ ଏଥିରେ ଅଂଶ ଗ୍ରହଣ କରି ପ୍ରଶଂସା ଅର୍ଜନ କରିଥିଲେ। ମୋହନ ସୁଂଦର ଗୋସ୍ୱାମୀ, ବାଳକୃଷ୍ଣ ମହାଂତି, ବାଉରିବଂଧୁ ମହାଂତି ଓ କାଳୀଚରଣ ପଟ୍ଟନାୟକଂକ ନାଟ୍ୟଦଳ ଏଠାରେ ନାଟ୍ୟ ପ୍ରଦର୍ଶନ କରିଥିଲେ। କୃଷ୍ଣପ୍ରସାଦ ବସୁ ଓ ଅନ୍ୟ କେତେକ ସଂଗୀତ ଶିକ୍ଷକକଂକୁ ମଧ୍ୟ ଏଠାରେ ସାମୟିକ ନିଯୁକ୍ତି ଦିଆଯାଇଥିଲା। ସେହିପରି ହାଇସ୍କୁଲର ପ୍ରଥମ ମାଟ୍ରିକ ପାସଛାତ୍ରଂକୁ ସମ୍ମାନ ଦେଖାଇବାକୁ ରାଜା ତାଂକୁ ହାତୀରେ ବସାଇ ସହରରେ ବୁଲାଇଥିଲେ।

କୁମାର ରାଜେଂଦ୍ର ନାରାୟଣ ଫେବ୍ରୁଆରି ତିନିତାରିଖ ୧୯୩୩ରେ ପାଟଣା ରାଜଗାଦିରେ ବସିଲେ। ବିହାର ଓଡ଼ିଶାର ଗଭର୍ଣ୍ଣର ସାର୍ ଜନ୍ ସିଫ୍‌ଟନ୍ ଏହି ଉତ୍ସବରେ ପୌରୋହିତ୍ୟ କରିଥିଲେ। ସାଧାରଣତଃ ରାଜପୁତ୍ରମାନେ ରାଜକୁମାର କଲେଜ ରାୟପୁର ବା ଆଜମିର ବା ସେମିତି କୌଣସି ସଂଭ୍ରାଂତ ବଂଶୀୟଂକ ଏକଚାଟିଆ ଅନୁଷ୍ଠାନରେ ପଢଂତି। ସେମାନଂକୁ ସାଧାରଣ ମଣିଷର ସୁଖଦୁଃଖ ଅନୁଭୂତିଠାରୁ ଦୂରରେ ରଖିବାରେ ଏହା ଏକ ସାମ୍ରାଜ୍ୟବାଦୀର କୌଶଳ ଥିଲା ମାତ୍ର ରାଜେଂଦ୍ର ନାରାୟଣ ହଜାରିବାଗର ସେଂଟ କଲଂବସ କଲେଜ ଓ ତାପରେ ମେୟୋ କଲେଜ ଆଜମିରରେ ପଢି ଆଇ.ଏସ୍‌ସି. ପାସ୍ କଲେ। ଡିଗ୍ରି ନେବା ଆଗରୁ ତାଂକୁ ଗାଦି ମିଳିଲା। ସୁଶାସନର ନିମିତ୍ତ ତାଂକୁ ମଧ୍ୟ ବ୍ରିଟିଶ ଇଂଡିଆରେ ତାଲିମ ଦିଆଯାଇଥିଲା। ସେ ଜନ୍ମରୁ ଶାଂତ ଓ ଧୀରସ୍ଥିର ସ୍ୱଭାବର ଥାଇ ପ୍ରାଚୀନ ହିନ୍ଦୁ ନରପତିମାନଂକ ଆଦର୍ଶରେ ନିଜକୁ ଅନୁପ୍ରାଣିତ କରୁଥିଲେ। ପୁରାଣବର୍ଣ୍ଣିତ ରାଜା ହରିଶ୍ଚଂଦ୍ର ବା ଶ୍ରୀରାମଂକ ପରି ନରପତି ହୋଇ ପ୍ରଜାରଂଜନ କରିବାକୁ ସେ କାମନା କରୁଥିଲେ। ତାଂକର ବିବାହ ପାଡିଆଲା ରାଜାଂକର ଜେମା କୈଳାଶ କୁମାରୀଂକ ସହିତ ଅନୁଷ୍ଠିତ ହେଲା। ସେ ରାଜଗାଦି ପାଇବା ସମୟରେ ପାଟଣାରେ ରାଜବଂଶର ଅନ୍ୟ କେତେକ କୁମାର ନିଜର ଉତ୍ତରାଧିକାର ଦାବି ଉପସ୍ଥାପିତ କଲେ। ସେମାନେ ଶାସନରେ ବିଶୃଂଖଳା ସୃଷ୍ଟି ନିମିତ୍ତ ଉଦ୍ୟମ କରୁଥିଲେ। ରାଜେଂଦ୍ର ନାରାୟଣଂକର ଧୀର ସ୍ୱଭାବ ଓ ପାଡିଆଲା ରାଜା ପଠାଇଥିବା ଅନୁଗତ ପ୍ରଶାସକମାନଂକ ଦକ୍ଷତା ଏହି ଉଦ୍ୟମକୁ ବ୍ୟର୍ଥ କରିଥିଲା। ନୂତନ ମହାରାଜା ରାଜ୍ୟରେ ଗସ୍ତକରି ଲୋକମାନଂକର ଆପତ୍ତି ଅଭିଯୋଗ ପ୍ରତ୍ୟକ୍ଷଭାବରେ ଅନୁଧ୍ୟାନ କରିବାକୁ ଉଦ୍ୟମ କଲେ। ସୁଶାସନର ରୂପରେଖ ଦେଖିବାକୁ ସେ ବିବାହ ପରେ ମହାରାଣୀଂକ ସହିତ ଇଉରୋପର ବିଭିନ୍ନ ଦେଶ ଭ୍ରମଣ କରି

ଫେରିଲେ। ରାଜ୍ୟ ମଧ୍ୟରେ ଗସ୍ତ ସମୟରେ ସେ ନିଜ ଅନୁଗତ ଡ୍ରାଇଭରକୁ ନେଇ ଏକାକୀ ଗାଁ ଗହଳିକୁ ଯାଉଥିଲେ। ଦୂରରେ ଗାଡ଼ି ରଖି ସାଧାରଣ ମଣିଷର ପୋଷାକ ଧୋତି ଫଂଝାବୀ ପିଂଧି ସେ ଲୋକମାନଂକ ସହିତ ମିଶି ପାରୁଥିଲେ। ଥରେ ସେ ରାଜପ୍ରସାଦରେ ବେଠି ଖଟିବାକୁ ଆସୁଥିବା ମୂଲିଆଂକଠାରୁ ସେମାନଂକର ଦୈନ୍ୟ ଜାଣିପାରି ରାଜ୍ୟରେ ବେଠିପ୍ରଥା ଉଠାଇ ଦେବାକୁ ଆଦେଶ ଦେଲେ। ଥରେ ରାଜଧାନୀଠାରୁ ଦୀର୍ଘପଥ ଦୂରରେ ଜଣେ ବିମର୍ଷ ଚାଷୀଂକୁ ସେ ଦେଖିଲେ। ତା ସହିତ ସୁଖଦୁଃଖ ହୋଇ ସେ ଜାଣି ପାରିଲେ ଯେ ତାର ଗୌଂତିଆଇ ସ୍ୱତ୍ୱ ରାଜଦରବାର ତରଫରୁ ଖାରଜ କରାଯାଇଅଛି। ତାକୁ ଓକିଲ ନେଇ ଅପିଲ କରିବାକୁ ପରାମର୍ଶ ଦେଲେ। ସେ ତାହାକରି ସାରିଛି ବୋଲି କହିଲା। ଗୌଂତିଆ ମଧ୍ୟ ଶାସନକୁ ଦୋଷ ଦେଲା। ସେ ଶୁଣାଇଲା ବଥ ହେଲେ ଦେହକୁ ପୀଡ଼ାକରେ। ଆବୁ କଅଣ ବ୍ୟଥା ଜାଣିବ। ଆମ ରାଜାର ପୁଅ ଥିଲେ ଅବା ଆମ ଦୁଃଖ ଜାଣୁଥାଂତା ଯେତ ବାହାରର ମଣିଷ। ଆମ ଭାଗ୍ୟ ନିୟଂତ୍ରଣ କରୁଛି। ଆମ ହାନିଲାଭ କଅଣ ବୁଝିପାରିବ ? କୌଶଳ କ୍ରମେ ମହାରାଜା ତାର କାଗଜପତ୍ର ମାନ ମଗେଇ ଦେଖିଲେ। ମକଦମା ଶେଷ ଫଇସଲାର ନଂବର ଓ ତାରିଖ ମନେ ରଖି ତା କାଗଜ ତାକୁ ଫେରାଇ ଦେଲେ। ରାଜ୍ୟରେ ମକଦମାଟି ସର୍ବୋଚ୍ଚ ରାଜସ୍ୱ ଅଦାଲତରେ ଫଏସଲା ହୋଇ ସାରିଥିଲା। ନିଜର ବିଶେଷ ସାର୍ବଭୌମ କ୍ଷମତା ପ୍ରୟୋଗ କରି ସେ ନଥିପତ୍ର ମଗେଇଲେ। ଦୁଇ ପକ୍ଷକୁ ନୋଟିସ କଲେ। ସେମାନଂକର ବୟାନ ଖୋଲା ଦରବାରରେ ଶୁଣିଲେ। ନିଷ୍ପତ୍ତି ଗୌଂତିଆ ସପକ୍ଷରେ ଜଣାଇଲେ। ଏହା ଆଇନ ସମ୍ମତ ଓ ସାମାଜିକ ନ୍ୟାୟ ଦୃଷ୍ଟିରୁ ଉଦାର ଥିଲା। ଏହା ତାଂକର ଲୋକପ୍ରିୟତା ଦୃଢ଼ତର କଲା। ନିମ୍ନ କର୍ମଚାରୀମାନେ ମଧ୍ୟ ଆଇନ ବିରୁଦ୍ଧ କାର୍ଯ କରିବାକୁ ଭୟ କଲେ।

ରାଜନବରରେ ଅନେକ କିସମର ମଣିଷ ପୋଷା ଯାଉଥାଂତି। ରାଜାଂକର ବହୁତ ପୋଇଲି ପରବାରି, ଅବୈଧ ସଂତାନ ନଅରରେ ରହି ନାନା ସମସ୍ୟା ସୃଷ୍ଟି କରଂତି। ମହାରାଜା ଏ ପ୍ରକାର ଅବାଂଛିତ ଅତିଥିମାନଂକୁ ସେମାନଂକର ଜୀବିକାର୍ଜନର ବ୍ୟବସ୍ଥାକରି ନଅରରୁ ବିତାଡିତ କଲେ। ଲୋକମାନଂକ ସହିତ ସିଧାସଳଖ ମିଳାମିଶା କଲେ। ସେମାନଂକର ଅଭିଯୋଗର ପ୍ରତ୍ୟକ୍ଷ ଶୁଣାଣି କରି ସେ ନିଜର ଭାବମୂର୍ତ୍ତି ଉଜ୍ଜ୍ୱଳ କଲେ। ପ୍ରଜାମାନଂକର ସାମାଜିକ, ଅର୍ଥନୈତିକ ଉନ୍ନତି ନିମିତ୍ତ ଏହା ପରେ ସେ ଦୃଷ୍ଟି ଦେଲେ। ସମବାୟ ଭିତ୍ତିରେ ଗ୍ରାମର ଉନ୍ନତି ଲକ୍ଷ୍ୟ ରଖି ରାଜ୍ୟରେ ସମବାୟ ସମିତି, ସମବାୟ ବ୍ୟାଂକ୍ ପ୍ରତିଷ୍ଠା କରାଇଲେ। ଆବଶ୍ୟକ ସମୟରେ କୃଷିଜୀବୀମାନେ ଯେପରି

ଚାଷ ପାଇ ଋଣ ପାଇବେ ତାହା ସହଜସାଧ୍ୟ ହେଲା। କୃଷିର ଉନ୍ନତି ନିମିତ୍ତ କର୍ମୀମାନଂକର ତାଲିମ ବ୍ୟବସ୍ଥା ସହିତ ଆଦର୍ଶ କୃଷିଫାର୍ମ ପ୍ରତିଷ୍ଠା କରାଗଲା। ରାଜ୍ୟର ପୁରାତନ ଐତିହାସିକ କୀର୍ତ୍ତି ସମୂହର ସଂରକ୍ଷଣ ଓ ଗବେଷଣା ନିମିତ୍ତ ପ୍ରତ୍ନତତ୍ତ୍ୱ ବିଭାଗ ସହିତ ସେ କଳିଂଗ ଗବେଷଣା ସମିତି ପ୍ରତିଷ୍ଠାକଲେ। କଳା ଓ ସାହିତ୍ୟର ପ୍ରସାର ନିମିତ୍ତ କୋଶଳ କଳାମଂଡପ ନିର୍ମିତ ହେଲା। ଏହାର ମୁଖପତ୍ର ଥିଲା 'ଚତୁରଂଗ' ମାସିକ ପତ୍ରିକା। ମହାରାଜଂକ ହାତପାଣ୍ଠିରୁ ପଂଦର ହଜାର ଟଂକା ଓ ବାର୍ଷିକ ପାଂଚ ହଜାର ଟଂକାର ଅନୁଦାନ ପାଇଁ ଏହା ତା ୧୪.୫.୧୯୪୬ରେ ଆତ୍ମପ୍ରକାଶ କଲା। ଏହାର ପ୍ରଚ୍ଛଦପଟ ଶିଳ୍ପୀଥିଲେ ଗୋପାଳଚଂଦ୍ର କାନୁନଗୋ। ସଂପାଦକ ମଂଡଳୀ କାଳିଂଦୀଚରଣ ପାଣିଗ୍ରାହୀ, ରାଜରତ୍ନ ବଳଭଦ୍ର ବହିଦାର, ପ୍ରଭାତ କୁମାର ମୁଖାର୍ଜି, କାଳୀଚରଣ ପଟ୍ଟନାୟକ ପ୍ରଭୃତିଂକୁ ନେଇ ବିଭିନ୍ନ ସମୟରେ କାର୍ଯ କରୁଥିଲେ। ଲେଖକମାନଂକୁ ପାରିଶ୍ରମିକ ଦେବା ପ୍ରଥା ସେମାନେ ଆରଂଭ କଲେ। ସଂପାଦକ ବ୍ରଜେଂଦ୍ର ନାରାୟଣ ସିଂହଦେଓ ସଂପାଦକୀୟ ଯୁଗଧାରାରେ କଳା ସାହିତ୍ୟ ସଂସ୍କୃତି ରାଜନୀତି ସମସାମୟିକ ଘଟଣା ପ୍ରବାହ, ପୁସ୍ତକ ଆଲୋଚନା ସ୍ୱାଧୀନତା ଆନ୍ଦୋଳନ, ଭାଷାଆନ୍ଦୋଳନ ବ୍ୟତୀତ ବିଜ୍ଞାନ ଓ ଖେଳ ଜଗତ ମଧ୍ୟ ଆଲୋଚିତ ହେଉଥିଲା। ଚତୁରଂଗର ପ୍ରଥମ ପୃଷ୍ଠାରେ ସଂସ୍କୃତ ଶ୍ଳୋକ ଏହାର ଅଂଗୀକର ବୋଧର ସୂଚନା ଦେଉଥିଲା। ଏହାର ଅର୍ଥ ଥିଲା 'ନାଟ୍ୟ ସଂଗୀତ ତତ୍ତ୍ୱକୁ ଆତ୍ମସ୍ଥ କରିଥିବା ସାହିତ୍ୟ ବିଶାରଦଗଣ କଳା ବିଦ୍ୟାରେ କୁଶଳୀ ହୋଇ ପୃଥିବୀ ପୃଷ୍ଠରେ ମହୀୟାନ ହୁଅଂତି।' ପ୍ରଥମ ସଂଖ୍ୟାରେ ପ୍ରକାଶିତ ଶୁଭେଚ୍ଛା ପତ୍ରରେ ମହାରାଜା ଲେଖିଥିଲେ ସାହିତ୍ୟ ପତ୍ରିକା 'ଚତୁରଂଗ' କୋଶଳ କଳାମଂଡପର ମୁଖପତ୍ର ରୂପେ ପ୍ରକାଶିତ ହେଉଛି। ତାହା ନିଜର ବାଣୀପ୍ରତି ଏକନିଷ୍ଠ ହୋଇ ରହୁ, ଏହାର ପ୍ରତ୍ୟେକ ପୃଷ୍ଠାରେ ପ୍ରଣତି ସାହସ ଓ ଆଶାର ବାଣୀ ଲିପିବଦ୍ଧ ହୋଇ ରହୁ, ଯହିଁରେ କି ସତ୍ୟ ଶିବ ଓ ସୁଂଦରର ଆଦର୍ଶକୁ ଅଗ୍ରସର କରି ନେବା ପାଇଁ ଏହାର ଯେଉଁ ଲକ୍ଷ୍ୟ ରହିଛି ତାହା ସଫଳ ହେବ । ପ୍ରାୟ ଦୁଇବର୍ଷପରେ ପରିବର୍ତ୍ତିତ ରାଜନୈତିକ ବ୍ୟବସ୍ଥାରେ 'ଚତୁରଂଗ'ର ପ୍ରକାଶନ ବଂଦ ହୋଇ ଯାଇଥିଲା ।

କଳାହାଂଡି ମହାରାଜଂକ ସହଯୋଗରେ ଐତିହାସିକ ଗବେଷଣା ନିମିତ୍ତ ବଲାଂଗିରଠାରେ ବିଖ୍ୟାତ ପ୍ରତ୍ନତତ୍ତ୍ୱବିଦ୍ ଓ ଶିଳାଲିପି ବିଶେଷଜ୍ଞ ସତ୍ୟନାରାୟଣ ରାଜଗୁରୁଂକୁ ଗବେଷକ ଭାବେ ନିଯୁକ୍ତି ଦିଆଯାଇ ୧୯୪୬ରେ କଳିଂଗ ଐତିହାସିକ ସମିତି କଳିଂଗ ହିଷ୍ଟୋରିକାଲ ରିସୋର୍ସେସ୍ ସୋସାଇଟି ସେ ଗଠନ କରିଥିଲେ। ଏହାର ମୁଖପତ୍ରର ପ୍ରଥମ ସଂଖ୍ୟା ଅନେକ ଗବେଷଣାପୂର୍ଣ୍ଣ ଓ ସାରଗର୍ଭକ ପ୍ରବଂଧ ସହିତ

୧୯୪୬ ସେପ୍ଟେଂବରରେ ପ୍ରକାଶିତ ହୋଇଥିଲା । ପୂର୍ଣ୍ଣଚଂଦ୍ର ଓଡ଼ିଆ ଭାଷାକୋଷର ୧୯୩୭ରେ ପ୍ରକାଶିତ ୧୩୧୮ ପୃଷ୍ଠା ବିଶିଷ୍ଟ ୬ଷ୍ଠ ଖଂଡ ଗ୍ରଂଥ ପ୍ରଣେତା ଗୋପାଳଚଂଦ୍ର ପ୍ରହରାଜ ମହାରାଜା ରାଜେଂଦ୍ର ନାରାୟଣଂକୁ ଉତ୍ସର୍ଗ କରି ତାଂକ ସାହିତ୍ୟ ଓ ସଂସ୍କୃତି ପ୍ରୀତିକୁ ସ୍ୱୀକୃତି ପ୍ରଦାନ କରିଅଛଂତି ।

ମହାରାଜା ନିଜେ କଳାପ୍ରେମୀ ଥାଇ ଏସବୁରେ ଅଂଶଗ୍ରହଣ କରୁଥିଲେ । ସରଳ ଚିକିତ୍ସା ଦୂରବର୍ତ୍ତୀ ଗ୍ରାମରେ ଯୋଗାଇଦେବାକୁ ସେ ଆୟୁର୍ବେଦର ପୃଷ୍ଠପୋଷକତା କଲେ । ଚିକିତ୍ସାଳୟ ଖୋଲିଲେ । ଔଷଧମାନ ପ୍ରସ୍ତୁତି ନିମିତ୍ତ ନିଜର ଫର୍ମାସି (ବୈଦ୍ୟଶାଳା) ରଖିଲେ । ଔଷଧୀୟ ଗୁଣଯୁକ୍ତ ବୃକ୍ଷଲତା ଗୁଳ୍ମମାନଂକର ଚାଷ ଓ ସଂରକ୍ଷଣ ବ୍ୟବସ୍ଥା ଦରବାର ତରଫରୁ କରାଗଲା । ସଂସ୍କୃତ ଶିକ୍ଷା ନିମିତ୍ତ ଜଜ୍ଜ ସଂସ୍କୃତ ବିଦ୍ୟାଳୟ ଓ ମାଟ୍ରିକ୍ ପାସ୍ ପରେ ଉଚ୍ଚଶିକ୍ଷା ପାଇ କଲେଜ ଖୋଲାଗଲା । ବାଣିଜ୍ୟ ଶିକ୍ଷାର ବ୍ୟବସ୍ଥା ଓଡ଼ିଶାରେ ପ୍ରଥମେ ବଲାଂଗିର କଲେଜରେ କରାଗଲା । ଏହାକୁ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ଅନୁବଂଧିତ କରାଗଲା । ସମାଜରେ ଛୁଆଁ ଅଛୁଆଁ ଭେଦଭାବ ଦୂର କରିବାକୁ ସେ ଆଇନ କଲେ । ହରିଜନମାନଂକୁ ମଂଦିର ପ୍ରବେଶ ଅଧିକାର ଦେଲେ । ବ୍ରିଟିଶ ଓଡ଼ିଶାରେ ମଧ୍ୟ ଏପ୍ରକାର ବ୍ୟବସ୍ଥା ସେ ପର୍ଯ୍ୟଂତ ହୋଇ ପାରି ନ ଥାଏ । ତଂତ୍ର ବିଦ୍ୟାରେ ତାଂକର ଅନୁରକ୍ତି ଥିଲା । ସେ ମଂତ୍ର ପ୍ରୟୋଗ କରି ସାପକାମୁଡ଼ା ବିଷ ଆରୋଗ୍ୟ କରୁଥିଲେ । ସାପକାମୁଡ଼ା ସଂବାଦ ପାଇବା ସାଂଗେ ସାଂଗେ ସେ ମଂତ୍ର ପ୍ରୟୋଗ ନିମିତ୍ତ ସୁଦୂର ହରିଜନ ଆଦିବାସୀ ଗ୍ରାମମାନଂକୁ ଯାଇ ସେଠାରେ ଚିକିତ୍ସା ଫଳରେ ଆରୋଗ୍ୟ କରି ଅଶେଷ ଲୋକପ୍ରିୟତା ଅର୍ଜନ କଲେ ।

ସମଗ୍ର ଭାରତ ବର୍ଷରେ ଏହି ସମୟରେ ବ୍ରିଟିଶ ଶାସନରୁ ମୁକ୍ତି ନିମିତ୍ତ ଆଂଦୋଳନ ଚାଲୁଥାଏ । ପ୍ରଦେଶମାନଂକରେ ଲୋକପ୍ରତିନିଧି ଶାସନ ପ୍ରତିଷ୍ଠା କରାଯାଇଥିଲେ ମଧ୍ୟ ଏହା ଜାତୀୟ ଭାବନାକୁ ସନ୍ତୁଷ୍ଟ କରିପାରି ନ ଥିଲା । ଇଂରେଜ ଶାସନରୁ ସଂପୂର୍ଣ୍ଣ ମୁକ୍ତି ଦାବି ଆଂଦୋଳନର ଲକ୍ଷ୍ୟ ଥାଏ । ଏହି ସମୟରେ ଦେଶୀୟ ରାଜ୍ୟର ପ୍ରଜାମାନେ ମଧ୍ୟ ନିଜର ଗୋଟିଏ ଅନୁଷ୍ଠାନ ଗଢ଼ିଲେ । ଏହା ଭାରତୀୟ ଜାତୀୟ କଂଗ୍ରେସ ସହିତ ଅନୁବଂଧନ ପାଇଲା । ଲୋକପ୍ରିୟ ଦାୟିତ୍ୱପୂର୍ଣ୍ଣ ଶାସନ ପ୍ରତି ଦେଶୀୟ ରାଜ୍ୟରେ ପ୍ରବର୍ତ୍ତନ ସେମାନେ ଦାବି କରୁଥିଲେ । ରାଜେଂଦ୍ର ନାରାୟଣ ସମୟର ଗତି ଠିକ ଭାବରେ ଅନୁଧ୍ୟାନ କରିପାରିଲେ । ନିଜ ରାଜ୍ୟର ଆଇନମାନ ସଂହିତାବଦ୍ଧ କରାଇଲେ । ଲିଖିତ ଆଇନ ବ୍ୟତୀତ ଅନ୍ୟ କୌଣସି ଆଦେଶ ରାଜ କର୍ମଚାରୀମାନଂକର ଗ୍ରହଣୀୟ କରାଗଲା ନାହିଁ । ପ୍ରଜାର ଅଧିକାର ରକ୍ଷା ଆଇନର

ଯଥାଯଥ ପ୍ରୟୋଗ ଓ ଆଇନ ଦୃଷ୍ଟିରେ ସମସ୍ତଂକୁ ସମାନ ଅଧିକାର ଓ ସୁଯୋଗ ନିମିତ୍ତ ସେ ନିଜ ରାଜ୍ୟରେ ଗୋଟିଏ ହାଇକୋଟ୍ ପ୍ରତିଷ୍ଠା କଲେ। ପ୍ରଜାମାନଂକୁ ସଂଗଠିତ ହେବାର ଅଧିକାର ଦେଲେ। କଂଗ୍ରେସ ସମର୍ଥନରେ ସବୁ ରାଜ୍ୟରେ ପ୍ରଜାମଂଡଳ ଗଢ଼ାଯାଇଥାଏ। ତାଂକ ରାଜ୍ୟରେ ମଧ୍ୟ ଏହା ତାଂକ ପ୍ରୋତ୍ସାହନରେ ଗଢାଗଲା ଓ ସୋସାଇଟି ଆଇନ ଅନୁସାରେ ଏହା ପଂଜୀକରଣ କରାଗଲା। ମାତ୍ର ଏହା ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ସହିତ ଅନୁବଂଧନ ଜୋଡ଼ି ନ ଥିଲା। ସେମାନେ ପ୍ରଜାସଂଘ ଗଢ଼ିବାର ସୁଯୋଗ ପାଇ, ପରେ ବିକଳ୍ପ ପ୍ରଜାମଂଗଳ ସମିତି ଓ କୃଷକ ଦଳ ଗଢିଲେ। ଲୋକପ୍ରତିନିଧି ଶାସନ ସେମାନେ ଦାବିକଲେ। ରାଜା ସେମାନଂକୁ ନେଇ ମଂତ୍ରୀମଂଡଳ ଗଠନ କଲେ। ଦୁଇ ପ୍ରଜାସଂଘ ୨ ଜଣ ମଂତ୍ରୀ ବାଛିଲେ। ରାଜା ପ୍ରଧାନମଂତ୍ରୀ ବାଛିଲେ। ମଂତ୍ରୀମଂଡଳ ଓ ହାଇକୋଟ୍ ରାଜାଂକର ଇଚ୍ଛା ବିରୋଧରେ ଆଇନଗତ ପଦକ୍ଷେପ ନେବାକୁ ସକ୍ଷମ ନ ଥିବାରୁ ଅଳ୍ପ ଦିନେ ମଂତ୍ରୀ ମଂଡଳ ଭାଂଗିଗଲା ମାତ୍ର ରାଜା ଯେ ପ୍ରଜାମାନଂକର ମଂଗଳ ଚାହୁଁଛଂତି ଓ ସେମାନଂକୁ କ୍ଷମତା ହସ୍ତାଂତରର ପକ୍ଷପାତୀ ଏହା ବୁଝିବାକୁ ପ୍ରଜାମାନଂକୁ କଠିନ ହେଲାନାହିଁ। ଗ୍ରାମ ମାନଂକରେ ଗ୍ରାମସଭା ଓ ଗ୍ରାମ ପଂଚାୟତମାନ ଗଢାଯାଇ ସେଠାରେ ପ୍ରଜାମାନଂକୁ ନିଜ ଗ୍ରାମ ଓ ପଂଚାୟତର ପରିଚାଳନା ଦାୟିତ୍ୱ ନେବାକୁ ସୁଯୋଗ ଦିଆଗଲା। ବ୍ରିଟିଶ ଶାସନ ଅନୁକରଣରେ ସେ ରାଜ୍ୟରେ ବିଶିଷ୍ଟ ନାଗରିକ ଓ ରାଜକର୍ମଚାରୀମାନଂକୁ ରାଜ୍ୟରତ୍ନ, କର୍ମବୀର ଆଦି ଉପାଧି ଦେବାର ବ୍ୟବସ୍ଥା କଲେ। ଇଂରେଜମାନେ ଅଗଷ୍ଟ ୧୯୪୭ରେ ଭାରତଛାଡି ଚାଲିଗଲେ। ସମଗ୍ର ଦେଶରେ ଦେଶୀୟ ରାଜ୍ୟମାନଂକରେ ଲୋକ ପ୍ରତିନିଧି ଶାସନ ଦାବି ଘନେଇ ଉଠିଲା। ଅନ୍ୟ ରାଜ୍ୟର ନରପତିମାନେ ପ୍ରଜା ଆଂଦୋଳନ ଦେଖି ନିଜର ଭବିଷ୍ୟତ ବିପଦରେ ଆତଂକିତ ହୋଇପଡ଼ିବା ସମୟରେ ଦେଶୀୟ ରାଜ୍ୟମାନେ ସ୍ୱାଧିନ ଭାରତରେ ମିଶୁ ଏହି ଲକ୍ଷ୍ୟରେ ଆଂଦୋଳନ ତୀବ୍ରତର ହେଲା। ସର୍ଦାର ପଟେଲ କେଂଦ୍ର ଗୃହମଂତ୍ରୀ ଭାବରେ ଓଡ଼ିଶା ଆସିଥିବା ସମୟରେ ନିଜ ରାଜ୍ୟକୁ ଓଡ଼ିଶାରେ ମିଶାଇବା ପ୍ରସ୍ତାବରେ ରାଜେଂଦ୍ର ନାରାୟଣ ପ୍ରଥମେ ସ୍ୱାକ୍ଷର କଲେ। ଓଡ଼ିଶାରେ ମିଶ୍ରଣ ଆନ୍ଦୋଳନ ଆରଂଭ ହୋଇ ସମଗ୍ର ଭାରତବର୍ଷକୁ ଦେଶୀୟ ରାଜ୍ୟମାନ ସହିତ ଏକ କେଂଦ୍ରୀୟ ଶାସନାଧିନ କରିବା ସଂଭବ କରାଗଲା। ଗୋଟିଏ କ୍ଷୁଦ୍ର ରାଜ୍ୟର ନରପତି ପଦ ହରାଇଲେ ମାତ୍ର ସେହିଦିନୁ ଭାରତବର୍ଷର ବୃହତ୍ତର କ୍ଷେତ୍ରରେ ସେ କାର୍ଯ କରିବାର ସୁଯୋଗ ପାଇଥିଲେ। ମହାରାଜା ଥିବା ସମୟରେ ସେ ରାଜନ୍ୟ ମଂଡଳିର ସଭ୍ୟଭାବେ ନିର୍ବାଚିତ ହୋଇଥିଲେ। ପୂର୍ବାଂଚଳ ଗଡଜାତର ରାଜାମାନେ ନିଜର ଗୋଟିଏ କାଉନସିଲ ଗଢ଼ି ତାଂକୁ ଏହାର ଉପସଭାପତି କଲେ।

ଭବିଷ୍ୟତ କର୍ମପଂଥା ନିମିତ୍ତ ସେମାନେ ତାଂକଠାରୁ ଦିଗଦର୍ଶନ ଲୋଡୁଥିଲେ। ପୂର୍ବାଂଚଳ କୃଷି ବିକାଶ ପରିଷଦ, ଯୁଦ୍ଧୋତ୍ତର ପୂନର୍ଗଠନ ସମିତିର ସଭ୍ୟ ଭାବରେ ସେ ଅନ୍ୟ ରାଜାମାନଂକୁ ରାଜ୍ୟରେ ସମୟୋଚିତ ପ୍ରଗତିବାଦୀ ଶାସନ ସଂସ୍କାର ପାଇଁ ସୁଚିଂତିତ ପରାମର୍ଶ ଦେଉଥିଲେ।

ରାଜ୍ୟ ମିଶ୍ରଣପରେ ୧୯୫୦ର ନୂତନ ସଂବିଧାନ ଅନୁସାରେ ସାବାଳକ ଭୋଟରେ ଯେଉଁ ସାଧାରଣ ନିର୍ବାଚନ ୧୯୫୧–୫୨ରେ ହେଲା ସେଥିରେ ସେ ଭାଗନେଲେ। ନିଜର ଲୋକପ୍ରିୟତା ଦୃଷ୍ଟିରୁ ଓଡ଼ିଶାରେ ସେ ଅନୁଗତ କର୍ମୀମାନଂକୁ ଧରି ଗୋଟିଏ ରାଜନୈତିକ ଦଳ ଗଢିଲେ। ୧୯୪୮ ଅକ୍ଟୋବରରେ ଗଠିତ ଏହି ଦଳ ଗଣତଂତ୍ର ପରିଷଦ ନାମରେ ପରିଚିତ ହେଲା। ସେ ଏହାର ସଭାପତି ହେଲେ। ସୁସାହିତ୍ୟିକ ସୁରେଂଦ୍ର ମହାଂତିଂକ ସଂପାଦନରେ ପ୍ରଥମେ ବଲାଂଗିର୍ ଓ ପରେ କଟକରୁ ପ୍ରକାଶିତ ସପ୍ତାହିକ 'ଗଣତଂତ୍ର' ଏହାର ମୁଖପତ୍ର ହେଲା । ମହାରାଜା ଏହାର ମୁଖ୍ୟ ପୃଷ୍ଠପୋଷକ ଥିଲେ । ୧୯୫୨ ନିର୍ବାଚନରେ ବଲାଂଗିରର ସବୁ ନିର୍ବାଚନ ମଂଡଳି ବ୍ୟତୀତ ଓଡ଼ିଶାର ବହୁ ସ୍ଥାନରେ ଏହି ଦଳ ପ୍ରତିଦ୍ୱଂଦୀତା କଲେ। ମହାରାଜା ବଲାଂଗିର–କଳାହାଂଡି ଯୁଗ୍ମ ନିର୍ବାଚନ ମଂଡଳୀରୁ ଲୋକସଭା ପ୍ରାର୍ଥୀ ହେଲେ। ତାଂକର ପ୍ରତିଷ୍ଠା କ୍ଷୁଣ୍ଣ କରିବାକୁ ପ୍ରଧାନମଂତ୍ରୀ ପଂଡିତ ନେହେରୁ ନିଜେ ନିର୍ବାଚନ ପ୍ରଚାରରେ ବଲାଂଗିର ଆସିଲେ। ମାତ୍ର ତାଂକ ପ୍ରଚାର କୌଣସି ପ୍ରଭାବ ପକାଇପାରିଲା ନାହିଁ। ମହାରାଜା ୧୮୮,୧୧୬ ଭୋଟ ପାଇଥିବାବେଳେ କଂଗ୍ରେସ ପ୍ରାର୍ଥୀ ମାତ୍ର ୭୬,୬୭୫ ଭୋଟ ପାଇଲେ। ଦୁଇଜଣ ଗଣତଂତ୍ର ପ୍ରାର୍ଥୀ ନିର୍ବାଚିତ ହେଲେ। ପରବର୍ତୀ ନିର୍ବାଚନରେ ମହାରାଜା ଓଡ଼ିଶାକୁ ନିଜ କର୍ମ କ୍ଷେତ୍ର ରୂପେ ସୀମିତ ରଖି ରାଜ୍ୟ ରାଜନୀତିରେ ମୁଖ୍ୟ ଭୂମିକା ଗ୍ରହଣ କଲେ। ନୂଆ ଗଢାଯାଇଥିବା ଗଣତଂତ୍ର ପରିଷଦ କଂଗ୍ରେସର ଅଗାଧ ପ୍ରତିପତ୍ତି ଓ ଲୋକପ୍ରିୟତା ସତ୍ତ୍ୱେ ୧୪୦ ଆସନରୁ ୧୯୫୨, ୧୯୫୭ ଓ ୧୯୬୧ ନିର୍ବାଚନରେ ଯଥାକ୍ରମେ ୩୧, ୫୫ ଓ ୩୭ ଗୋଟି ସ୍ଥାନରେ ଜୟଲାଭ କରିଥିଲେ। ୧୯୫୭ରେ ସେ ଓଡ଼ିଶା ବ୍ୟବସ୍ଥାପକ ସଭାରେ ବିରୋଧୀ ଦଳର ନେତା ହେଲେ। ୧୯୫୯ରେ କଂଗ୍ରେସ ତାଂକ ଦଳ ସହିତ ମିଶି ମିଳିତ ମଂତ୍ରୀମଂଡଳ ଗଢ଼ିଲେ। ରାଜେଂଦ୍ର ନାରାୟଣ ମହତାବ ମଳିତ ମଂତ୍ରୀମଂଡଳରେ ଅର୍ଥ, ଶିଳ୍ପ ଓ ଆଇନ ମଂତ୍ରୀ ହୋଇ ପ୍ରଥମ ଥର ରାଜ୍ୟ ଶାସନରେ ଭାଗ ନେଲେ। ୧୯୬୭ରେ ପୁଣି ତାଂକ ଦଳ ସେତେବେଳକୁ ସ୍ୱତଂତ୍ର ଦଳ ସହିତ ମିଶି ଯାଇଥିବା ବେଳେ ଜନ କଂଗ୍ରେସ ସହିତ ମିଳିତ ମଂତ୍ରୀମଂଡଳ ଗଢିଲେ। ରାଜେଂଦ୍ର ନାରାୟଣ ଏହାର ମୁଖ୍ୟମଂତ୍ରୀ ହେଲେ। ୧୯୭୧ରେ

ଏହି ମଂତ୍ରୀମଂଡଳ ଭାଂଗିଗଲା। ସାନି ନିର୍ବାଚନ ପରେ ସେ ପୁଣି ବିଜୁ ପଟ୍ଟନାୟକଂକ ଉତ୍କଳ କଂଗ୍ରେସ ସହିତ ମିଶି ମଂତ୍ରୀମଂଡଳ ଗଢ଼ିଲେ। ବିଶ୍ୱନାଥ ଦାସ ଏହାର ମୁଖ୍ୟମଂତ୍ରୀ ରହିଲେ। ୧୯୭୨ ଜୁନରେ ଏହି ମଂତ୍ରୀମଂଡଳ ଭାଂଗିଗଲା। ସେ ପୁଣି ବିରୋଧୀ ଦଳର ନେତା ହେଲେ। ନଂଦିନୀ ଶତପଥି ମଂତ୍ରୀ ମଂଡଳ ୧୯୭୩ ମାର୍ଚ୍ଚରେ ଭାଂଗି ଯିବା ପରେ ୧୯୭୪ରେ ପୁଣି ନିର୍ବାଚନ ହେଲା। ଭାରତୀୟ ଲୋକଦଳ ସହିତ ସ୍ୱତଂତ୍ର ଦଳ ସାମିଲ ହେଲା। ୧୯୭୪ ନିର୍ବାଚନରେ ସେ ଶେଷଥର ପାଇଁ ଅଂଶଗ୍ରହଣ କରିଥିଲେ। ମାତ୍ର ବିରୋଧୀ ଦଳରେ ଥାଇ ୧୯୭୫ ଫେବ୍ରୁଆରିରେ ସେ ପ୍ରାଣତ୍ୟାଗ କଲେ। ତାଂକ ଦଳ ବିଭିନ୍ନ ସମୟରେ ବିଭିନ୍ନ ନାମରେ ନିର୍ବାଚନରେ ଜୟଯୁକ୍ତ ହେଉଥିଲେ। ସର୍ବଭାରତୀୟ ବୃହତଦଳ ସହିତ ମିଶି ଯାଉଥିଲେ ମଧ୍ୟ ତାଂକର ବ୍ୟକ୍ତିଗତ ଲୋକପ୍ରିୟତା ଅକ୍ଷୁଣ୍ଣ ଥିଲା। ନିଜର ପ୍ରଶାସନିକ ଦକ୍ଷତା ସେ ପ୍ରମାଣିତ କରିପାରିଥିଲେ। ରାଜପୁତ୍ର ଭାବରେ ଶାସନ ପରିଚାଳନା ତାଂକ ଅସ୍ଥିମଜ୍ଜାଗତ ଥିଲା। ଏହା ତାଂକ ଶାସନ ସମୟରେ ସମସ୍ତେ ଉପଲବ୍ଧି କରିପାରିଥିଲେ। ଉତ୍କଳ ସମ୍ମିଳନୀ ସହିତ ସଂପୃକ୍ତ ଥାଇ ୧୯୫୬ରେ ସୀମା ନିର୍ଦ୍ଧାରଣ କମିସନର ନିଷ୍ପତ୍ତିର ପ୍ରତିବାଦରେ ସେ ଆଂଦୋଳନ ଆରଂଭ କରି ଜେଲ ଭୋଗିଥିଲେ। ଉତ୍କଳ ସମ୍ମିଳନୀର ୧୯୫୩ ମଂଜୁଷା ଓ ୧୯୫୬ କଟକ ଅଧିବେଶନରେ ସେ ସଭାପତି ହୋଇଥିଲେ।

ସ୍ୱରାଷ୍ଟ୍ର ମଂତ୍ରୀ ଭାବରେ ଓଡ଼ିଶାକୁ ସେ ଏକ ଦକ୍ଷ ଓ ସୁଶାସନ ଦେବାରେ ସକ୍ଷମ ହୋଇଥିଲେ। ନିଜ ନିର୍ବାଚନ ମଂଡଳିରେ ନିଜର ଅଶେଷ ଲୋକପ୍ରିୟତା ସତ୍ତ୍ୱେ ସେ ସରକାରୀ କର୍ମଚାରୀମାନଂକର ଦୈନଂଦିନ କାର୍ଯରେ କଦାପି ହସ୍ତକ୍ଷେପ କରୁ ନ ଥିଲେ ଓ ଯେଉଁ ବରିଷ୍ଠ ପ୍ରଶାସକମାନେ ଅନ୍ୟ ମଂତ୍ରୀମାନଂକୁ ବାମ ବୃଦ୍ଧାଙ୍ଗୁଠି ଦେଖାଇ ଅଖଂଡ କ୍ଷମତା ଭୋଗ କରିଥିଲେ ସେମାନଂକୁ ସେ ଆୟତ୍ତ ରଖିବାରେ ସମର୍ଥ ହୋଇଥିଲେ। ତାଂକର କାର୍ଯ ପ୍ରଣାଳୀ ଅନ୍ୟମାନଂକଠାରୁ କିପରି ଭିନ୍ନ ଥିଲା ତାହାର ସାମାନ୍ୟ ଉଦାହରଣ ଦେଇ ତାଂକ ଜୀବନ ଚରିତ ସମାପ୍ତ କରିବା। ଉପକୂଳ ଅଂଚଳରେ ଥରେ ଜଣେ ମଦବ୍ୟବସାୟରେ ସଂପୃକ୍ତ ଅପରାଧି ଚଉଦ୍ୱାର ଥାନାରେ ଗିରଫ ହୋଇ ହାତକଡାରେ ଥିବା ଅବସ୍ଥାରେ କୌଶଳ କ୍ରମେ ପଳାଇ ଆସି ଭୁବନେଶ୍ୱରରେ ଜଣେ ପ୍ରଭାବଶାଳୀ ସ୍ୱରାଷ୍ଟ୍ର ମଂତ୍ରୀଂକର ଶରଣାପନ୍ନ ହେଲେ। ମଂତ୍ରୀଂକର ଅନେକ ଅପକର୍ମରେ ସେ ହାତବାରସୀ ଥିଲେ। ତେଣୁ ମଂତ୍ରୀ ଥାନା ଅଫିସରଂକୁ ଡକାଇ ତାଂକ ଲୋକଂକୁ ଗିରଫ କରିବାର ଦୁଃସାହସ ପାଇଁ କୈଫିୟତ ମାଗିବା ସହ ତାଂକରି ହାତରେ ପଳାତକ ଅପରାଧିର ହାତକଡ଼ା ଫିଟାଇଲେ।

ରାଜ୍ୟରେଆଇନ ଶାସନର କବର ଦେଲେ। ଏକଦା ରାଜେଂଦ୍ର ନାରାୟଣ ବଲାଂଗିର ଗସ୍ତରେ ଥିଲେ। ସେ ଅର୍ଥ ଶିକ୍ଷ ଓ ଆଇନ ମଂତ୍ରୀ। ଅଭିଯୋଗ ମିଳିଲା ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଜଂଗଲରେ ବେଆଇନ ଭାବରେ ଶିକାର କରୁଛଂତି। ଦାବି ହେଲା ଏହି ଗର୍ହିତ ଆଚରଣ ପାଇଁ ତାଂକୁ ଦଂଡ ଦିଆଯାଉ। ମହାରାଜା ସରକିଟ୍ ହାଉସରେ ସବୁ କର୍ମଚାରୀଂକ ସହିତ ସାକ୍ଷାତ କରି ବିଭିନ୍ନ ସମସ୍ୟା ଆଲୋଚନା କରଂତି। ତାପରେ ସେ ନିଜ ନଅର ଶୈଳଶ୍ରୀ ବିହାର ପାଲେସକୁ ଯାଇ ସେଠାରେ ବିଶ୍ରାମ ନିଅଂତି। ସେ ଦିନ ଶୈଳଶ୍ରୀ ପାଲେସ୍‌ରୁ ତାଂକ ଗାଡ଼ି ଆସି ଉକ୍ତ କର୍ମଚାରୀଂକୁ ଘରୁ ଡାକି ନେଲା। ସେ ପୂର୍ବରୁ ସର୍‌କିଟ୍ ହାଉସରେ ସାକ୍ଷାତ କରି ସାରିଥାଆଂତି। ତାଂକୁ କୁହାଗଲା ମୋର ବିଶ୍ୱାସ ମୋ ପାଖରେ ପହଂଚିଥିବା ଅଭିଯୋଗ ସତ୍ୟ ନ ହେଉ। ଆପଣ ପରମିଟ ନ ନେଇ ଜଂଗଲରେ ଶିକାର କରୁଛଂତି। ଅଫିସରମାନେ ଦାୟିତ୍ୱ ସଂପନ୍ନ ବୋଲି ସେମାନଂକୁ ଅଧା ପଇସାରେ ସରକାରୀ ପର୍‌ମିଟ୍ ମିଳେ। ଆପଣ ନିଷିଦ୍ଧ ସମୟରେ ପାଣିତୁଠରେ ଲୁଣାମାଟି ଚଟାଣରେ ସରକାରୀ ଗାଡ଼ିରେ ଓ ଉଜ୍ଜ୍ୱଳ ଆଲୋକ ସାହାଯ୍ୟରେ ଶିକାର କରି ନିଜର ଶିକାରୀ ଯୋଗ୍ୟତା ହରାଉଅଛଂତି। ଏହା ଅମାନୁଷିକ ବ୍ୟବହାର। ଆପଣଂକର କ'ଣ କହିବାର ଅଛି? କର୍ମଚାରୀଂକ ନୀରବତା ଦେଖି ନିଜ ଗାଡ଼ିରେ ତାଂକୁ ବସାଇ ସେ ତାଂକ ଘରେ ଆଣି ଛାଡି ଦେଲେ। ସ୍ୱୟଂ କର୍ମଚାରୀ ଏହା ପ୍ରକାଶ କରିବା ପର୍ଯଂତ ବହୁବର୍ଷ ଯାଏ ଏହା କେହି ଜାଣି ନ ଥିଲେ। ବ୍ୟକ୍ତିଜଣକ ଏପରି ଅପମାନିତ ବୋଧକଲେ ଯେ ଜୀବନରେ ଆଉ କେବେ ପଶୁ ଶିକାରକୁ ବାହାରି ନ ଥିଲେ। ନିଜର କର୍ମଧାରା ଓ ବିଚାର ଏହିପରି ସବୁ କ୍ଷେତ୍ରରେ ତାଂକର ସ୍ୱତଂତ୍ର ଥିଲା ଓ ଏହା ତାକୁ ସବୁ ଶ୍ରେଣୀର ଲୋକଂକର ପ୍ରିୟ କରାଇ ପାରିଥିଲା। ତାଂକ ବିୟୋଗରେ ତାଂକର ଜଣେ ସହକର୍ମୀ କହିଲେ ମଣିଷମାନଂକ ମଧ୍ୟରେ ଜଣେ ରାଜପୁତ୍ର ଓ ରାଜପୁତ୍ରମାନଂକ ମଧ୍ୟରେ ଜଣେ ମଣିଷକୁ ଓଡ଼ିଶା ହରାଇଲା।

ବିଗତ ଶତାବ୍ଦୀର ଶ୍ରେଷ୍ଠ ଶାସକ ଭାବରେ ରାଜେଂଦ୍ର ନାରାୟଣ ସିଂହ ଦେଓ ନିଜ କୃତିତ୍ୱ ଛାଡ଼ି ଯାଇ ଅଛଂତି। କୁହାଯାଏ ସେ ନିଜେ ରାଜୁଡା ପରିବାରରେ ଜନ୍ମ ନେଇ ଏକ ବଡ଼ ଗଡ଼ଜାତର ମହାରାଜା ଥିବା ଫଳରେ ତାଂକ ବ୍ୟକ୍ତିତ୍ୱ ଓ ଦକ୍ଷତାର ପ୍ରକୃତ ମୂଲ୍ୟାୟନ ହୋଇ ପାରିଲା ନାହିଁ। ତାଂକର ବିଧାନ ସଭାରେ ଶାସନର ତୀବ୍ର ସମାଲୋଚନାରେ ପ୍ରତିପକ୍ଷ ପ୍ରତି ବିଦ୍ୱେଷ କ୍ରୋଧ ବା ଈର୍ଷା କଦାପି ପ୍ରକାଶ ପାଉ ନ ଥିଲା। ସ୍ୱଭାବ ସୁଲଭ ଆଭିଜାତ୍ୟ, ନମ୍ରତା ଓ କୋମଳତା ତାଂକୁ ସବୁ ସ୍ତରରେ ଆଦରଣୀୟ କରିଥିଲା। ଦୀର୍ଘକାଳ ଓଡ଼ିଶା ପ୍ରଶାସନ ସହିତ ସଂପୃକ୍ତ ଥାଇ ମଧ୍ୟ ସେ

ପ୍ରତିପକ୍ଷଠାରୁ ସମ୍ମାନ ପାଉଥିଲେ ଓ କଦାପି କୁତ୍ସା ବା ଅସମ୍ମାନଜନକ ରୁଚିହୀନ ମଂତବ୍ୟର ସମ୍ମୁଖୀନ ହୋଇ ନ ଥିଲେ। ଅନେକ ଗଣତାଂତ୍ରିକ ଜନନେତାଂକ ସଂପର୍କରେ ଆସିଥିବା ଜଣେ ପୂର୍ବତନ ସାଂସଦ କହଂତି ''ସେମାନଂକଠାରେ ମୁଁ ଦେଖିଛି ଅହଂକାର, ମଦାଂଧତା, ଉଗ୍ରତା ଓ ସଂକୀର୍ଣ୍ଣ କପଟତା ଯାହାସବୁ ସାମଂତବାଦୀ ଆଚରଣ ସହିତ ଅଂଗାଅଂଗି ଭାବରେ ଜଡ଼ିତ, ମାତ୍ର ମହାରାଜା ରାଜେଂଦ୍ର ନାରାୟଣ ସିଂହଦେଓ ସେଇ ସାମଂତବାଦୀ ପୃଷ୍ଠଭୂମିରୁ ଆସିଥିଲେ ହେଁ ତାଂକର ଆଚରଣ ଥିଲା ଏ ସବୁର ବିପରୀତ। ଓଡ଼ିଶାରେ ରାଜୁଡ଼ା ସାମଂତବାଦର ଅମାନୁଷିକ କଳୁଷ ଆଚରଣ ଲୋକଲୋଚନରେ ପ୍ରତିହତ କରିବାକୁ ଥିଲା ତାଂକର ସରଳ ନିର୍ମଳ ବ୍ୟକ୍ତିତ୍ୱ। ୧୯୭୫ ଫେବ୍ରୁଆରି ୨୪ ତାରିଖରେ ତାଂକର ମହାପ୍ରୟାଣ ହୁଏ।







# ଆପଣା ମହତ ଆପେ ରଖି

# କପିଳେଶ୍ୱର ପ୍ରସାଦ ନଂଦ

ଓଡ଼ିଶାର ପୂର୍ବତନ ଦେଶୀୟ ରାଜ୍ୟମାନେ ଜାନୁଆରି ୧୯୪୮ରେ ଓଡ଼ିଶା ପ୍ରଦେଶ ସହିତ ମିଶିଲେ। ନୂତନ ସଂବିଧାନ ଗ୍ରହଣ ହୋଇଯିବା ପରେ ୧୯୫୧ରେ ସାଧାରଣ ନିର୍ବାଚନ ହେଲା ମାତ୍ର ତା ପୂର୍ବରୁ ଦେଶୀୟ ରାଜ୍ୟ ସବୁ ଓଡ଼ିଶାରେ ମିଶିବା ଫଳରେ ଲୋକପ୍ରତିନିଧିତ୍ୱ ପାଇଁ ସେତେବେଳର ବଡ଼ଲାଟ ବିଭିନ୍ନ ଗଡ଼ଜାତରୁ ପ୍ରତିନିଧି ମାନଂକୁ ଓଡ଼ିଶା ବିଧାନ ସଭାକୁ ସଭ୍ୟଭାବରେ ମନୋନୀତ କଲେ। ସେମାନେ ମଧ୍ୟ ରାଜ୍ୟ ଶାସନରେ ଭାଗୁଆଳି ହେବାକୁ ନିଜ ପକ୍ଷରୁ କେତେଜଣଂକୁ ମଂତ୍ରୀ ବାଛିଲେ। ସେମାନଂକୁ ଏଗ୍‌ଜିକିଉଟିଭ କାଉନସିଲର ବା ଗଡ଼ଜାତର ମଂତ୍ରୀବୋଲି କୁହାଗଲା। ଓଡ଼ିଶାରେ ଏମିତି ତିନି ଜଣମଂତ୍ରୀ ହୋଇଥିଲେ। ସେମାନେ ନୂତନ ସଂବିଧାନ ଅନୁସାରେ ବ୍ୟବସ୍ଥାପକ ସଭା ନିର୍ବାଚନ ଓ ନୂତନ ମଂତ୍ରୀମଂଡଳ ଗଠନ ହେବାଯାଏ ଦାୟିତ୍ୱ ତୁଲାଇଲେ। ନୀଳଗିରିର କୈଳାଶଚଂଦ୍ର ମହାଂତି ଏକ ଦୁର୍ଘଟଣାରେ ପ୍ରାଣ ହରାଇଲେ। ତାଳଚେରର ପବିତ୍ରମୋହନ ପ୍ରଧାନ ପରେ ମଂତ୍ରୀ, ଉପ-ମୁଖ୍ୟମଂତ୍ରୀ ଓ ସାଂସଦ ହୋଇ ଦୀର୍ଘଦିନ ରାଜନୈତିକ ଜନନାୟକ ଭାବରେ ଓଡ଼ିଶାରେ ପରିଚିତ

ଥିଲେ। ମାତ୍ର କେବଳ ଜଣେ ଯେ କୃଷିମଂତ୍ରୀ ଭାବରେ ବିଧାନ ସଭାରେ ଓଡ଼ିଶା କୃଷି ଆଇନକୁ ପାସ କରିବାରେ ମୁଖ୍ୟ ଭୂମିକା ନେଇଥିଲେ ସେ ନୂତନ ସଂବିଧାନ କାର୍ଯକାରୀ ହେବାପରେ ପ୍ରଥମ ସାଧାରଣ ନିର୍ବାଚନ ଫଳଦେଖି ନିଜକୁ ରାଜନୀତିରୁ ସନ୍ନ୍ୟାସୀ କରିନେଲେ, ସେ ହେଉଛଂତି ବଲାଂଗିରର କପିଳେଶ୍ୱର ପ୍ରସାଦ ନଂଦ। ବଲାଂଗିରର କେ.ପି. ନଂଦ ନାମରେ ସେ ଓଡ଼ିଶାରେ ପରିଚିତ ଥିଲେ।

କପିଳେଶ୍ୱର ପ୍ରସାଦ ନଂଦଂକର ଜନ୍ମ ବଲାଂଗିର ପାଖରେ ତାଂକ ଚାଷ ଗାଁ ସର୍କମାରେ ୧୯୦୨ରେ ଜୁଲାଇରେ। ତାଂକର ପିତା ସଂବଲପୁରର ବିଖ୍ୟାତ ପଂଡିତ ଚିଂତାମଣି ନଂଦ ବିଦ୍ୟାଭୂଷଣ। ବଲାଂଗିର ସଂସ୍କୃତ କଲେଜ ତାଂକ ନାମରେ ନାମିତ। ସେ ବଲାଂଗିର ରାଜାଂକର ଦେଓ୍ୱାନ ଥିଲେ। ଆଉ ତାଂକର ସାହିତ୍ୟକୃତି ମଧ୍ୟ ଆଳଂକାରିକ ଓ ଭାବଗର୍ଭକ। ମାତ୍ର ଏଗୁଡ଼ିକ ବିଲୁପ୍ତ ପ୍ରାୟ । କେତେଗୋଟି ମାତ୍ର ଜୀର୍ଣୋଦ୍ଧାର କରାଯାଇଅଛି । କପିଳେଶ୍ୱରଙ୍କ ଜଣେ ଭାଇ ଓଡ଼ିଶାରେ ଡେପୁଟି କଲେକ୍ଟର ଭାବରେ ଓ ତାଂକ ପୁଅ ଜଣେ ବିଲାତ ଫେରଂତା ଜଂଗଲ ଅଧିକାରୀ ଭାବରେ ସୁପରିଚିତ ଥିଲେ। କପିଳେଶ୍ୱର ପ୍ରଥମେ ଉଭୟ ସଂବଲପୁର ଓ ବଲାଂଗିର ଜିଲ୍ଲାକୁ ନିଜ କର୍ମକ୍ଷେତ୍ର ଭାବରେ ବାଛି ନେଇଥିଲେ। ଏକ ସମୟରେ ଏହି ଦୁଇ ଜିଲ୍ଲାର ସେ ଅପ୍ରତିଦ୍ୱଂଦ୍ୱୀ କଂଗ୍ରେସ ନେତା ଭାବରେ ବହୁ ରାଜନୈତିକ ପ୍ରତିଦ୍ୱଂଦ୍ୱୀଂକର ଈର୍ଷାପାତ୍ର ହୋଇଥିଲେ। ପୃଥ୍ୱୀରାଜ ହାଇସ୍କୁଲ ବଲାଂଗିର ଓ ରେଭେନ୍ସା କଲେଜ କଟକରେ ତାଂକର ଶିକ୍ଷା ସମାପ୍ତ ହେଲା। ସେ ବିଜ୍ଞାନରେ ସ୍ନାତକ ଉପାଧି ହାସଲ କଲେ। କଲେଜ ଜୀବନରେ ସେ ସରକାରୀ ଚାକିରିଆ ଘର ପିଲା ଥିଲେ ମଧ୍ୟ ଦେଶର ରାଜନୀତି ଓ ସମାଜ ସେବା ପ୍ରତି ବିଶେଷ ଭାବରେ ଆକୃଷ୍ଟ ହେଲେ। ସ୍ୱାଧୀନ ବ୍ୟବସାୟ କଲେ ସେ ଜନସେବା କରି ପାରିବେ ଏହି ଲକ୍ଷ୍ୟରେ ସେ ବିହାର ଓଡ଼ିଶାର ରାଜଧାନୀ ପାଟଣାର ଆଇନ କଲେଜରେ ପଢି ଆଇନ ପାସ୍ କଲେ। ୧୯୨୭ରେ ସେ ସଂବଲପୁରରେ ଓକିଲାତି ଆରଂଭ କଲେ। ତା ପରବର୍ଷ ମହାତ୍ମାଗାଂଧି ସଂବଲପୁର ଆସିଲେ। ସେତେବେଳେ ଚଂଦ୍ରଶେଖର ବେହେରା ଜିଲ୍ଲାର ଅଦ୍ୱିତୀୟ କଂଗ୍ରେସ ନେତା । ଗାଂଧିଂକ ପଦଯାତ୍ରା ସମୟରେ ସେ କପିଳେଶ୍ୱରଂକୁ ମହାତ୍ମାଂକ ଭାଷଣର ଓଡ଼ିଆ ଅନୁବାଦ ଦାୟିତ୍ୱ ଦେଲେ। ସେ ତାହା ଏତେ ସୁଂଦର ଭାବରେ କରି ପାରିଲେ ଯେ ଲୋକେ ତାଂକୁ କଂଗ୍ରେସର ଜଣେ ବଡ଼ ନେତା ବୋଲି ଗ୍ରହଣ କଲେ। ବରଗଡ଼ ସେତେବେଳେ ସଂବଲପୁରର ଆଉ ଏକ ଉପଖଂଡ। ସେଠାରେ ଓକିଲ ଅତି ଅଳ୍ପ ଥିଲେ। ତାହା ମଧ୍ୟ ବଲାଂଗିରକୁ ନିକଟ ଥିଲା। ତେଣୁ ନିଜ ସହକର୍ମୀମାନଂକ ଅନୁରୋଧରେ କପିଳେଶ୍ୱର ବରଗଡ଼ ଆସି ଓକିଲାତି ଆରଂଭ କଲେ। ବରଗଡରେ

କଂଗ୍ରେସ ଅନୁଷ୍ଠାନ ସକ୍ରିୟ ନ ଥିଲା। ଯେଉଁ ଓକିଲ ଓ ବ୍ୟବସାୟୀମାନେ କଂଗ୍ରେସ ଦଳଭୁକ୍ତ ଥିଲେ ସେମାନେ ବେଶି ସମୟ ଏ ଦିଗରେ ବ୍ୟୟ କରି ପାରୁ ନ ଥିଲେ। ବରଗଡ଼ରେ କଂଗ୍ରେସ କାର୍ଯ ସଂଯୋଜିତ କରିବାକୁ ଗୋଟିଏ ଆଶ୍ରମ ପ୍ରତିଷ୍ଠା ହେଲା। ସେ ଏହି କଂଗ୍ରେସ କମିଟିର ସଭାପତି ହେଲେ। ଜିଲ୍ଲାର ଆଉ ଜଣେ ପୁରୁଖା କର୍ମୀ ଦୟାନଂଦ ଶତପଥୀ ଏହାର ସଂପାଦକ ହେଲେ।

ବଲାଂଗିର ରାଜ୍ୟରେ ଆଇନ ସ୍ନାତକ ଯୋଗ୍ୟତା ଥିବା ଓକିଲ ନ ଥିଲେ। ସେତେବେଳେ ଦେଶୀୟ ରାଜ୍ୟମାନଂକର ପ୍ରଜାମାନଂକୁ ସଂଗଠିତ କରି ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ଗଢ଼ା ହୋଇଥିଲା। ରାଜ୍ୟମାନଂକର ମନମୁଖୀ ଶାସନ, ଶୋଷଣ ଓ ଅତ୍ୟାଚାରରୁ ପ୍ରଜାମାନଂକୁ ରକ୍ଷା କରିବା, ସେମାନଂକୁ ରାଜ୍ୟ ଶାସନରେ ଭାଗ ଦେବା ସହିତ ରାଜ୍ୟରେ ସୁଶାସନ ପ୍ରତିଷ୍ଠା ଏହାର ଲକ୍ଷ୍ୟ ଥିଲା। ଓଡ଼ିଶାରେ ବିଭିନ୍ନ ଗଡ଼ଜାତରେ ଏହାର ଶାଖାମାନ ପ୍ରତିଷ୍ଠା ହେଉଥାଏ। ସେମାନେ ପ୍ରଜାମାନଂକୁ ସଂଗଠିତ କରି ପ୍ରଜାମଂଡଳ ପ୍ରତିଷ୍ଠା କରୁଥାଂତି। ଦାୟିତ୍ୱମୂଳକ ଶାସନ ପ୍ରତିଷ୍ଠା ଏମାନଂକର ମୁଖ୍ୟ ଦାବି ଥାଏ। ବଲାଂଗିର ରାଜ୍ୟର ନୂଆ ରାଜା ସୁଶାସନ ଆଣିଥିଲେ ଓ ଲୋକପ୍ରିୟ ଥିଲେ।

ତଥାପି ପ୍ରଜାମାନଂକର ସ୍ୱଶାସନ ଦାବି ରହିଲା। ପ୍ରଜାମଂଡଳ ଗଠନ ଦାୟିତ୍ୱ କପିଳ ବାବୁ ନେଲେ ମାତ୍ର ରାଜ୍ୟରେ ଏହା ପୂର୍ବରୁ ପ୍ରଜାମଂଡଳ ନାମରେ ଆଉ ଗୋଟିଏ ରାଜନୈତିକ ଅନୁଷ୍ଠାନ ଗଢାହୋଇ ସାରିଥାଏ ଓ ସେମାନେ ସୋସାଇଟି ରେଜିଷ୍ଟ୍ରେସନ ଆଇନ ଅନୁସାରେ ଦରବାରର ସ୍ୱୀକୃତି ପାଇସାରିଥାଂତି। ତେଣୁ କପିଳେଶ୍ୱରଂକ ସଂଗଠନ ପ୍ରଜାମଂଗଳ ନାମରେ ପରିଚିତ ହୋଇ ସର୍ବ ଭାରତୀୟ କମିଟି ସହିତ ଅନୁବଂଧନ ପାଇଲା। ତାଂକ ଦଳର ନାମ କୃଷକ ଦଳ ରଖାଗଲା। ରାଜ୍ୟର ସବୁ ଲୋକ କୃଷି ଉପରେ ନିର୍ଭର କରୁଥାଆଂତି। ତେଣୁ ସେମାନଂକ ସ୍ୱାର୍ଥ ରକ୍ଷା ଉଦ୍ଦେଶ୍ୟରେ ଏହି ଦଳ କାର୍ଯ କରିବ ବୋଲି କୁହାଗଲା। ଜମିରେ ପ୍ରଜାର ସଂପୂର୍ଣ୍ଣ ସ୍ଥିତିବାନ ସ୍ୱତ୍ୱ ଓ ଭୋଗରା ଜମିପ୍ରଥାର ଉଚ୍ଛେଦ ଏମାନଂକର ଦାବି ହେଲା। ପାଟଣା ରାଜା ରାଜ୍ୟରେ ପ୍ରଜାଶାସନ ପ୍ରତିଷ୍ଠା କରିବାକୁ ଦୁଇଦଳକୁ ନିମଂତ୍ରଣ କଲେ। ସୀମିତ କ୍ଷମତା ମଧ୍ୟରେ ଏକ ମଂତ୍ରୀମଂଡଳ ଗଢାଗଲା। ପ୍ରଧାନମଂତ୍ରୀ ରାଜାଂକର ମନୋନୀତ। କୃଷକ ଦଳ ପକ୍ଷରୁ କପିଳେଶ୍ୱର ଓ ପ୍ରଜାମଂଡଳ ତରଫରୁ ନଂଦକିଶୋର ମିଶ୍ର ଏହି ମଂତ୍ରୀମଂଡଳରେ ସ୍ଥାନ ପାଇଲେ। ମଂତ୍ରୀମାନଂକ ମଧ୍ୟରେ ସହଯୋଗର ଅଭାବହେତୁ ଅଳ୍ପଦିନ ପରେ କପିଳେଶ୍ୱର ଏଥିରୁ ଇସ୍ତଫା ଦେଲେ। ଏହି ସମୟରେ ନିଜର କର୍ତବ୍ୟ ନିଷ୍ଠା ଓ ସଂଗଠନ ଶକ୍ତିର ପରିଚୟ ଦେଇ ସେ ନିଖିଳ ଭାରତ କମିଟିର

ମଧ୍ୟ କର୍ମକର୍ତା ହୋଇ ପାରିଲେ। ଦେଶ ସ୍ୱାଧୀନ ହେଲା। ପାଟଣା ରାଜ୍ୟ ବୃହତ୍ତର ଓଡ଼ିଶାରେ ମିଶିଲା। ତାଂକ କୃଷକ ଦଳ ମଧ୍ୟ କଂଗ୍ରେସ ଦଳ ସହିତ ମିଶିଗଲା ଓ ଜିଲ୍ଲା କଂଗ୍ରେସ କମିଟିର ସେ ମୁଖ୍ୟ ହେଲେ। ଯେତେବେଳେ ରାଜ୍ୟ ବିଧାନ ସଭାକୁ ଦେଶୀୟ ରାଜ୍ୟର ପ୍ରତିନିଧିମାନେ ମନୋନୀତ ହେଲେ ସେତେବେଳେ ବଲାଂଗିରରୁ କପିଳେଶ୍ୱର, ଟିଟିଲାଗଡ଼ରୁ ଦିବାକର ବହିଦାର, ପାଟଣାଗଡ଼ରୁ ନିମାଇଁ ଚରଣ ପାଣିଗ୍ରାହୀ, ବଲାଂଗିରରୁ କପୁର ଚଂଦ୍ର ନାୟକ ସଭ୍ୟ ହେଲେ। ମଂତ୍ରୀମଂଡଳରେ ସ୍ଥାନ ପାଇ ସେ ବଲାଂଗିରରେ ଭୂସଂସ୍କାର, ଭୋଗରା ପ୍ରଥାର ଉଚ୍ଛେଦ, ପ୍ରଜାର ଭୂମିରେ ଅବାରିତ ଅଧିକାର ଦିଗରେ ଉଦ୍ୟମ କଲେ। ସମଗ୍ର ଓଡ଼ିଶାରେ କୃଷିର ଉନ୍ନତି ନିମିତ୍ତ ସେ କୃଷି ଆଇନ ଆଣି ନିଜର ଦୂରଦୃଷ୍ଟିର ପରିଚୟ ଦେଲେ। ୧୯୫୧ ଶେଷଆଡ଼କୁ ସମଗ୍ର ଭାରତବର୍ଷରେ ନୂଆ ସଂବିଧାନ ଅନୁସାରେ ସାବାଳକ ଭୋଟ ଅଧିକାର ମିଳିଲା ଓ ସାଧାରଣ ନିର୍ବାଚନ ହେଲା। କପିଳେଶ୍ୱର ବଲାଂଗିରରୁଓଡ଼ିଶା ବ୍ୟବସ୍ଥାପକ ସଭାକୁ ପ୍ରାର୍ଥୀ ହେଲେ। ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ପାର୍ଲାମେଂଟକୁ ପ୍ରାର୍ଥୀ ହେଲେ। ତାଂକର ପ୍ରଜାପାଳକ ନରପତି ଭାବରେ ସୁଖ୍ୟାତି ଥିଲା। ଦେଶ ମିଶ୍ରଣ ପରେ ତାଂକ ରାଜ୍ୟର ସାଧାରଣ ନାଗରିକ ଅନେକ ଅସୁବିଧାର ସମ୍ମୁଖୀନ ହୋଇ ପ୍ରଶାସନ ବିରୋଧୀ ହୋଇ ଉଠି ଥାଆଂତି। ମଂତ୍ରୀ କପିଳବାବୁଂକ ସପକ୍ଷରେ ପ୍ରଚାର କରିବାକୁ ଭାରତର ପ୍ରଧାନ ମଂତ୍ରୀ ପଂଡିତ ଜବାହରଲାଲ ନେହେରୁ ସ୍ୱୟଂ ବଲାଂଗିର ଗସ୍ତରେ ଆସି ନିର୍ବାଚନ ସଭାରେ ତାଂକ ପାଇଁ ଭୋଟ ଭିକ୍ଷା କଲେ। ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସଭାପତି ବିଶ୍ୱନାଥ ଦାସ ଓ ବିଜୟଲକ୍ଷ୍ମୀ ପଂଡିତଂକ ପରି ଆଉ କେତେ ତୁଂଗ ନେତା ମଧ୍ୟ ତାଂକ ପାଇଁ ପ୍ରଚାର କଲେ। ମାତ୍ର କୌଣସି ଅଜ୍ଞାତ କାରଣରୁ ଭୋଟରମାନେ କପିଳ ନଂଦଂକ ପ୍ରତି ବିମୁଖ ହୋଇ ଯାଇଥିଲେ। ଦଳରେ ତାଂକ ବିରୋଧରେ ମଧ୍ୟ ଅଂତର୍ଘାତୀ କାର୍ଯ ହେଲାବୋଲି ତାଂକ ସମର୍ଥକମାନେ ଅନୁଭବ କଲେ। ଫଳାଫଳ ପ୍ରକାଶିତ ହେବାରେ ତାଂକ ସହିତ ଦ୍ୱୈତ ଆସନରେ ସହଯୋଗୀ ଥିବା ହରିଜନ  ପ୍ରାର୍ଥୀ ନିଜର ଅମାନତ ରଖିଥିଲେ ମଧ୍ୟ ଖୋଦ ମଂତ୍ରୀ ନିଜର ଅମାନତ ହରାଇ ଏକ ଲଜ୍ଜାକର ପରିସ୍ଥିତିର ସମ୍ମୁଖୀନ ହେଲେ। ବିଜୟୀଗଣତଂତ୍ର ପ୍ରାର୍ଥୀ ୩୨,୦୫୮ ଭୋଟ ପାଇଥିବା ବେଳେ ମଂତ୍ରୀଥିବା କପିଳେଶ୍ୱର ପ୍ରସାଦ ମାତ୍ର ୫,୭୪୪ ଖଂଡ ଭୋଟ ପାଇଥିଲେ। ଜଣେ ସମ୍ମାନାସ୍ପଦ, ଜାଗ୍ରତ ଲୋକ ସେବକ ଭାବେ ଭୋଟରଂକ ନିଷ୍ପତ୍ତି ମାନିନେଇଥିଲେ ମଧ୍ୟ ଏହା ପରେ ଆଉ କୌଣସି ରାଜନୈତିକ କାର୍ଯକ୍ରମରେ ସେ ଭାଗନେଇ ନ ଥିଲେ। ନିଜର ରାଜନୈତିକ ପୁନର୍ବାସ ଦିଗରେ କୌଣସି ଉଦ୍ୟମ ନ କରି ନିଜ ଚାଷ ଗ୍ରାମରେ ନିଜକୁ ସଂପୂର୍ଣ କୃଷିଜୀବୀ ଭାବେ ବଂଚାଇ ରଖିଲେ।

ରାଜନୀତି ବ୍ୟତୀତ ସାଂବାଦିକତା ଓ ଓକିଲାତି ତାଂକ ଜୀବନର ଅନ୍ୟ ଅଂଗ ଥିଲା। ସେ ବଲାଂଗିରରେ ଓକିଲାତି ଆରଂଭ କଲାପରେ ଅନେକ ଆଇନ ସ୍ନାତକ ଏଠାରେ ବ୍ୟବସାୟ ଆରଂଭ କଲେ। ସେ ବଲାଂଗିର ବାର ଆସୋସିଏସନର ପ୍ରତିଷ୍ଠାତା ସଭାପତି ଥିଲେ। ଜଣେ ନିଷ୍ଠାପର ଦକ୍ଷ ଆଇନଜ୍ଞ ଭାବରେ ସେ ସୁଖ୍ୟାତି ଅର୍ଜନ କରଥିଲେ। ୧୯୨୮ରେ ବରଗଡ଼ରୁ ସୁଲେଖକ ଜନସେବୀ ଦୟାନିଧି ମିଶ୍ରଂକ ସଂପାଦନାରେ ବାହାରୁଥିବା 'ନବଯୁଗ' ମାସିକ ପତ୍ରିକାର ସେ ସହ-ସଂପାଦକ ଥିଲେ। ଆରଂଭରୁ କବି ଗଂଗାଧର ଏହି ପତ୍ରିକାର ଶୁଭକାମନା କରି ପ୍ରଥମ ଆଶୀର୍ବାଦ ଦେଇଥିଲେ। ସଂବଲପୁରର ସ୍ୱନାମଧନ୍ୟ ଫ୍ରେଜର ପ୍ରେସରେ ଏହା ମୁଦ୍ରିତ ହୋଇ ପ୍ରକାଶ ପାଉଥିଲା। ସଂସ୍କୃତ ଶିକ୍ଷାର ପ୍ରସାର ନିମିତ୍ତ ବଲାଂଗିରରେ ଏକ ସଂସ୍କୃତ ଉଚ୍ଚ ବିଦ୍ୟାଳୟ ଥିଲା। ରାଜ ଦରବାରର ପୃଷ୍ଠପୋଷକତାରେ ଶିକ୍ଷାର ପ୍ରସାର ହେଉଥିଲା। ମଂତ୍ରୀଥିବାବେଳେ ୧୯୪୯ରେ କପିଳପ୍ରସାଦ ଏହି ଜର୍ଜ ସଂସ୍କୃତ ବିଦ୍ୟାଳୟକୁ ବିଦ୍ୟାଭୂଷଣ ସଂସ୍କୃତ ମହାବିଦ୍ୟାଳୟ ଆଖ୍ୟା ଦେଲେ ଓ ଉଚ୍ଚ ଉପାଧିଶିକ୍ଷାର ବ୍ୟବସ୍ଥା ଏଠାରେ କରାଇଥିଲେ। ୧୯୬୭ରେ ସଂବଲପୁରରେ ବିଶ୍ୱବିଦ୍ୟାଳୟ ସ୍ଥାପନ ଉଦ୍ୟମରେ ସେ ସହଯୋଗ କରି ନିଜର ଅଭିଜ୍ଞତା ଓ ମୌଳିକ ଚିଂତାଧାରା ଏ ଦିଗରେ ପ୍ରୟୋଗ କରିଥିଲେ। ପ୍ରତିଷ୍ଠାପରେ ସେ ପ୍ରଥମ ସିନେଟ ଓ ସିଂଡିକେଟର ସଭ୍ୟ ହୋଇଥିଲେ। ମାତ୍ର ପରବର୍ତୀ ନିର୍ବାଚନରେ ଆଉ ଭାଗ ନେଇ ନ ଥିଲେ।

ନିଜର ଦକ୍ଷତା ଅଭିଜ୍ଞତା ଓ ମୌଳିକ ଚିଂତାଧାରା ସତ୍ତ୍ୱେ ସେ ନିଜ ବିଫଳତାକୁ ଉଦାର ମନରେ ଗ୍ରହଣ କରି ନିଜ ନିଷ୍ପତ୍ତିରେ ଅଟଳ ଥାଇ ନିଜ ଚାଷ ଗ୍ରାମରେ ୮୫ ବର୍ଷ ବୟସରେ ୧୯୮୬ରେ ଇହଧାମ ତ୍ୟାଗ କଲେ।



କର୍ମେ ଯାହାର ଯେଉଁ ଦଶା ଥାଇ
କାହା ବଳେ ଆନ କରି ନୁହଇ
କୁଶକେତୁ ଆସନ ଶ୍ରୀନିବାସ
କୃଷ୍ଣକରେ ଥାଇ ନାଥ ଦିନେଶ
କେଡ଼େ କେଡ଼େ ପ୍ରଭୁ ଏମାନେ
କରିପାରଂତି ଅଭୟ ବଚନେ
କେହି ରଖି ନ ପାରିଲେ ସେ କାଳେ
କଲା ଭୋଗ ଯାହାଥିଲା କପାଳେ।

(ରସକଲ୍ଲୋଳ)
-ଦୀନକୃଷ୍ଣ ଦାସ



# ସାତ ବରଷ ବାଚସ୍ପତି
# ନଂଦକିଶୋର ମିଶ୍ର

ଓଡ଼ିଶାରେ ଅତୀତରେ ଜଣେ ବିଧାୟକ ସରକାରଂକର ଜଂଗଲ ନୀତିକୁ ବିଧାନସଭାରେ ଦୃଢ଼ ସମାଲୋଚନା କରି କୌଣସି ସୁଫଳ ନ ପାଇ ଏହାର ପ୍ରତିବାଦରେ ନିଜ ପଦରୁ ଇସ୍ତଫା ଦେଲେ। ସାନି ନିର୍ବାଚନ ହେଲା। ସେ ନିଜ ଦାବି ଧରି ଏଥିରେ ପ୍ରାର୍ଥୀ ହେଲେ। ପୁଣି ନିର୍ବାଚନ ଲଢ଼ିଲେ। ତାଂକର ଦାବିଥିଲା ସରକାରୀ ଜଂଗଲ ନୀତି ତ୍ରୁଟିପୁର୍ଣ୍ଣ ଓ ପରିବର୍ତନ ସାପେକ୍ଷ। କ୍ଷମତାପନ୍ନ ସରକାର ତାଂକୁ ବିରୋଧ କରିବାକୁ ପ୍ରାର୍ଥୀ ଖୋଜି ପାଇଲେ ନାହିଁ ଓ ସେ ପୁନର୍ବାର ସେହି ଆସନରୁ ନିର୍ବାଚିତ ହେଲେ। ଏହା ୧୯୫୬ର ଘଟଣା। ସେହି ବ୍ୟବସ୍ଥାପକ ଜଣକ ହେଲେ ବଲାଂଗିରର ନନ୍ଦ କିଶୋର ମିଶ୍ର ବା ନନ୍ଦୀବାବୁ। ୧୯୬୭ରୁ ୧୯୭୪ ପର୍ଯଂତ ସେ ଓଡ଼ିଶା ବ୍ୟବସ୍ଥାପକ ସଭାର ବାଚସ୍ପତି ଥାଇ ରେକର୍ଡ ସୃଷ୍ଟି କରିଥିଲେ। ନନ୍ଦ କିଶୋର ବଲାଂଗିର ରାଜ୍ୟର ସାଲେଭଟା ଗ୍ରାମରେ ୧୯୦୬ରେ ଜନ୍ମଗ୍ରହଣ କରିଥିଲେ। ପିତା ବେଣୁଧର ମିଶ୍ର ତାଂକୁ ଗ୍ରାମ ବିଦ୍ୟାଳୟ ଶିକ୍ଷାପରେ ବଲାଂଗିର ଆଣି ପୃଥ୍ୱୀରାଜ

ହାଇସ୍କୁଲରେ ନାମ ଲେଖାଇଲେ। ଅଧ୍ୟୟନର ସୁବିଧା ନିମିତ୍ତ ତାଂକୁ ହଷ୍ଟେଲରେ ରଖାଇଲେ। ସେଠାରେ ନଂଦ କିଶୋର ନିଜ ମେଧାର ପରିଚୟ ଦେଲେ। ଫଳରେ ରାଜାଂକର ସରକାରୀ ବୃତ୍ତି ସେ ପାଇଲେ। ମାଟ୍ରିକ୍ ପାସ୍ ପରେ କଟକ ରେଭେନ୍ସା କଲେଜରେ ନାମ ଲେଖାଇଲେ। ବିଏ ପାସ୍ ପରେ ସେଇଠୁ ଆଇନ ମଧ୍ୟ ପାସ କଲେ। ନିଜ ଜନ୍ମସ୍ଥାନକୁ ଫେରିଆସି ସେ ପାଟଣା ଦରବାରର କର୍ମଚାରୀଭାବରେ କାର୍ଯ୍ୟ କଲେ। ବଂଦୋବସ୍ତ ଅଧିକାରୀ, ତହସିଲଦାର, ଟିଟିଲାଗଡ଼ ଓ ପାଟଣାଗଡ଼ ଉପଖଂଡ ଅଧିକାରୀ ଭାବରେ କାର୍ଯ୍ୟକରି ରାଜ୍ୟରେ ହାଇକୋର୍ଟ୍ ପ୍ରତିଷ୍ଠା ହେବା ପରେ ସେ ସବଜଜ ଓ ଏହାର ରେଜିଷ୍ଟ୍ରାର ହେଲେ।

ସମଗ୍ର ଭାରତବର୍ଷରେ ଦେଶୀୟ ରାଜ୍ୟମାନଂକରେ ପ୍ରଜାମାନେ ସ୍ୱାୟତ୍ତ ଶାସନ ଦାବି କରି ପ୍ରଜାମଂଡଳ ଗଠନ କରୁଥାଂତି। ସେମାନେ ଶାସନ ପରିଚାଳନର ଅଂଶ ନେବାକୁ, ପ୍ରଜାମାନଂକୁ ଜମିରେ ଅବାରିତ ଅଧିକାର ଦେବାକୁ, ଜଂଗଲଜାତ ଦ୍ରବ୍ୟ ସଂଗ୍ରହ ଓ ବ୍ୟବହାରରେ କଟକଣା ଉଠାଇ ଦେବାକୁ ଦାବି କଲେ। ପାଟଣା ମହାରାଜା ରାଜ୍ୟରେ ପ୍ରଜାମଂଡଳ ଓ ସମାଂତରାଳ ପ୍ରଜାମଂଗଳର କୃଷକ ଦଳର ପ୍ରତିନିଧି ମାନଂକୁ ନେଇ ଗୋଟିଏ ମଂତ୍ରୀମଂଡଳ ଗଢିଲେ। ନଂଦକିଶୋର ଚାକିରିଛାଡି ଓକିଲାତି କରିବାକୁ ପ୍ରଜାମଂଡଳରେ ଯୋଗଦେଇଥାଂତି। ଦରବାରର ଜଣେ ପୁରାତନ କର୍ମଚାରୀ ଭାବରେ ତାଂକ ଉପରେ ରାଜାଂକର ବେଶି ପତିଆରା ଥିଲା। ତେଣୁ କୃଷକ ଦଳର କପିଳେଶ୍ୱର ପ୍ରସାଦ ନଂଦଂକ ସହିତ ସେ ମଧ୍ୟ ମଂତ୍ରିମଂଡଳରେ ଯୋଗଦେଲେ। ମଂତ୍ରୀମଂଡଳ ବେଶିଦିନ ତିଷ୍ଠିଲା ନାହିଁ। କୃଷକ ଦଳ ଏଥିରୁ ଓହରିଗଲା। ନଂଦ କିଶୋର ପାଟଣାରାଜ୍ୟ ବୃହତ୍ତର ଓଡ଼ିଶାର ମିଶ୍ରଣ ପରେ ଓକିଲାତି କଲେ। ନୂତନ ସଂବିଧାନ ଲାଗୁହେଲା ଉତ୍ତାରେ ସାବାଳକ ଭୋଟପ୍ରଥାରେ ନିର୍ବାଚନ ହେଲା। କୃଷକ ଦଳ କଂଗ୍ରେସ ସହିତ ମିଶିଗଲା। ନଂଦ କିଶୋର ନିଜର ପୃଷ୍ଠପୋଷକ ପାଟଣା ମହାରାଜାଂକର ଗଣତଂତ୍ର ପରିଷଦରେ ଯୋଗଦେଲେ। ସେ ଏହାର ରାଜ୍ୟ ସଭାପତି ଭାବେ ନିର୍ବାଚିତ ହେଲେ। ବଲାଂଗିରରୁ ସେ ୧୯୫୨ରେ ବିଧାନ ସଭାକୁ ପ୍ରଥମେ ନିର୍ବାଚନ ଲଢ଼ିଲେ। କପିଳେଶ୍ୱର ପ୍ରସାଦ ନଂଦ ସେତେବେଳେ ଓଡ଼ିଶାର କୃଷି ମଂତ୍ରୀ ଥିଲେ। ତାଂକୁ ନିର୍ବାଚନରେ ଜୟଯୁକ୍ତ କରାଇବାକୁ ଭାରତର ପ୍ରଧାନମଂତ୍ରୀ ପଂଡିତ ନେହେରୁ ନିଜେ ବଲାଂଗିରକୁ ନିର୍ବାଚନ ପ୍ରଚାରରେ ଆସିଲେ ମାତ୍ର ଏସବୁ ସତ୍ତ୍ୱେ ନଂଦ କିଶୋର ବ୍ୟବସ୍ଥାପକ ସଭାକୁ ନିର୍ବାଚନରେ ବହୁଭୋଟରେ ଜିତିଲେ ଓ ସେହି ଦିନଠାରୁ ଦୀର୍ଘକାଳ (୧୯୫୨ ରୁ ୧୯୭୬) ଏହାର ସଭ୍ୟହୋଇ ରହିଥିଲେ।

ନିଜର ଲୋକପ୍ରିୟତା ତାଂକର ବିଭିନ୍ନ ନିର୍ବାଚନ ମଂଡଳୀରୁ ନିର୍ବାଚିତ ହେବାଦ୍ୱାରା ପ୍ରମାଣିତ ହୋଇଥିଲା। ରାଜ୍ୟରେ ମହାରାଜା ରାଜେଂଦ୍ର ନାରାୟଣଂକର ଅଖଂଡ ପ୍ରଭାବ ଥିଲେ ମଧ୍ୟ ନିଜର ନିଷ୍କଳଂକ ଚରିତ୍ର, ସରଳ ସ୍ୱଭାବ ଓ ଦଳପ୍ରତି ଆନୁଗତ୍ୟ ନଂଦକିଶୋରଂକୁ ସବୁଶ୍ରେଣୀର ନାଗରିକମାନଂଙ୍କର ପ୍ରିୟ କରି ପାରିଥିଲା। ନିଜକୁ ଦଳ ସହିତ ସଂପୂର୍ଣ୍ଣ ଏକୀଭୂତ କରି ସେ ନିଜେ କୌଣସି ନିର୍ଦ୍ଦିଷ୍ଟ କାର୍ଯକ୍ରମକୁ ଭିତ୍ତି ନ କରି ଦଳର ଦୃଢୀକରଣ ନିମିତ୍ତ ଉଦ୍ୟମରେ ନିଜ ପ୍ରତିଷ୍ଠା ରଖି ପାରିଥିଲେ। ତଥାପି ସେ ସମବାୟ ଆଂଦୋଳନର ଜଣେ ପ୍ରବକ୍ତା ଥିଲେ ଓ ଏହାଦ୍ୱାରା ସାଧାରଣ ଲୋକଂକର ଆର୍ଥିକ ଓ ବୈଷୟିକ ଉନ୍ନତି ହେବବୋଲି ତାଂଙ୍କର ଦୃଢ ଆଶାଥିଲା। ବଲାଂଗିର କେଂଦ୍ର ସମବାୟ ବ୍ୟାଂକର ସେ ଦୀର୍ଘଦିନ ସଭାପତି ଥିଲେ। ଓଡ଼ିଶା ରାଜ୍ୟ ସମବାୟ ଆଂଚଳିକ ବାଣିଜ୍ୟ ସମିତି ର ସେ ସକ୍ରିୟ ସଭ୍ୟ ଓ କର୍ମକର୍ତ୍ତା ଥିଲେ। ରାଜନୀତିରୁ ଅବସର ନେଇ ସେ ଦୀର୍ଘଦିନ ନିଜକୁ ସାଧାରଣ ମନୁଷ୍ୟର ସେବାରେ ନିୟୋଜିତ କରି ୧୯୯୨ ମାର୍ଚରେ ପ୍ରାଣତ୍ୟାଗ କଲେ। ପାଟଣା ରାଜ୍ୟ ଇତିହାସର ଗୋଟିଏ ଯୁଗ ତାଂକ ବିୟୋଗରେ ଶେଷ ହେଲା।



ଯେଉଁ ପଂଡିତ ସଭାରେ ପକ୍ଷପାତ
ପ୍ରଭୁ ଆଶ୍ରୟ ଅନୁସରି,
କରେ ତହିଁକି ପ୍ରତେ ଯେଉଁ ନୃପତି ଚିତ୍ତେ
ସେହିଟି ଅବିବେକ ପୁରୀ ହେ।
କାଳଦଂଡେ ଅବଶ୍ୟ, ହୁଅଂତି, ସଂଘାତ,
କଟୁ ତିକ୍ତ ମଧୁର, ଦ୍ରବ୍ୟଠାରୁ ବିଚାର
ଆଦ୍ୟ ପ୍ରାଂତେ ହିତ ଅହିତ।

—ଦୀନକୃଷ୍ଣ



# ବଲାଂଗିରରୁ ସଂବିଧାନ ପ୍ରଣୟନ ସଭା
# ଯୁଧିଷ୍ଠିର ମିଶ୍ର

୧୯୪୭ ରେ ବ୍ରିଟିଶ ଶାସନ ଲୋପହେବା ପୂର୍ବରୁ ଭାରତୀୟମାନେ ନିଜର ଭବିଷ୍ୟତ ଶାସନର ରୂପରେଖ ଦେବାକୁ ଏକ ସଂବିଧାନ ସଭା ଗଠନ କଲେ। ଏହି ସଂବିଧାନ ପ୍ରଣୟନ ସଭାକୁ ଭାରତର ଚାରିଆଡୁ ବଛାବଛା ବୁଦ୍ଧିଜୀବୀମାନେ ମନୋନୀତ ହେଲେ। ଦଳ ନିର୍ବିଶେଷରେ ଯୋଗ୍ୟ ଲୋକମାନଂକୁ ଏଥିରେ ରଖାଗଲା। ଓଡ଼ିଶା ପ୍ରଦେଶରୁ ଲାଟସଭା ସଭ୍ୟମାନେ ପ୍ରତିନିଧି ବାଛିଲେ ମାତ୍ର ଦେଶୀୟ ରାଜ୍ୟମାନେ ସେତେବେଳେ ଓଡ଼ିଶାରେ ମିଶି ନ ଥିବାରୁ ସେମାନେ ନିଜନିଜର ଗୋଷ୍ଠୀ କରି ପ୍ରତିନିଧି ବାଛିଲେ। ଏମିତି ଜଣେ ପ୍ରତିନିଧି ଥିଲେ ବଲାଂଗିରରୁ ସ୍ୱନାମଧନ୍ୟ ଓକିଲ ଯୁଧିଷ୍ଠିର ମିଶ୍ର।

ଛାତ୍ରନେତା, ଗଡ଼ଜାତ ଆଂଦୋଳନର ସକ୍ରିୟ କର୍ମୀ, କଂଗ୍ରେସ ଦଳର ନେତା, ମାର୍କ୍ସପଂଥୀ ଚିଂତକ, ଶିକ୍ଷାପ୍ରେମୀ ଓ ସମାଜସେବୀ ଓକିଲ ଭାବରେ ଯୁଧିଷ୍ଠିର ସ୍ମରଣୀୟ ହୋଇ ରହିବେ। ବଲାଂଗିର ସହର ନିକଟରେ ଛତାମଖନା ଗାଁ। ଏଠାରେ ଏକ ପଂଡିତ

ବ୍ରାହ୍ମଣ ପରିବାରରେ ତାଂକର ଜନ୍ମ ୧୯୧୪ରେ। ବଲାଂଗିର ପୃଥ୍ୱୀରାଜ ହାଇସ୍କୁଲରୁ ସେ ମାଟ୍ରିକ ପାସ୍ କଲେ। ଉଚ୍ଚଶିକ୍ଷା ପାଇଁ ରେଭେନ୍ସା କଲେଜରେ ସେ ନାମ ଲେଖାଇଲେ। ଆଗରୁ ଜଣେ ମେଧାବୀ ଛାତ୍ରଭାବରେ ସେ ପରିଚିତ ଥିଲେ ମାତ୍ର କଲେଜ ବକ୍ତୃତା ପ୍ରତିଯୋଗିତାରେ ଅଂଶଗ୍ରହଣ କରି ସେ ରେଭେନ୍ସା କଲେଜର ଶ୍ରେଷ୍ଠ ତାର୍କିକାରୀ ଭାବେ ୧୯୩୭ରେ ବୋଡ଼ା ସଂବର ସେନାପତି ଡିବେଟ୍ ପୁରସ୍କାର ପାଇ ସମ୍ମାନିତ ହୋଇଥିଲେ। ଏହି ପୁରସ୍କାରର ସେ ପ୍ରଥମ ବିଜେତା ଥିଲେ। ଏହି ସମୟରେ ସେ ଛାତ୍ର ରାଜନୀତିରେ ଭାଗ ନେଲେ। ଡିଗ୍ରି ପାଇ ସାରିବା ପରେ ସେ ବଲାଂଗିର ପୃଥ୍ୱୀରାଜ ହାଇସ୍କୁଲରେ କିଛି ଦିନ ଶିକ୍ଷକତା କରି ଆଇନ ପଢ଼ିବାକୁ ପାଟଣାରେ ନାମ ଲେଖାଇଲେ। ନିଜର ବାଗ୍ମିତା ଓ ଛାତ୍ର ସଂଗଠକ ଭାବରେ ସୁନାମ ତାଂକ ପାଇଁ ନିଖିଳ ଭାରତ ଛାତ୍ର ଫେଡେରେସନ୍‌ର ସାଧାରଣ ସଂପାଦକ ପଦ ଆଣି ଦେଲା। ଛାତ୍ର ସଂଘ ସେତେବେଳେ ବାମପଂଥୀମାନଂକର ଚିଂତାଧାରାରେ ପ୍ରଭାବିତ ଥିଲା। ତେଣୁ ଯୁଧିଷ୍ଠିର ଏହି ସମୟରୁ ନିଜକୁ ଜଣେ ମାର୍କ୍ସପଂଥୀ ଭାବରେ ଗ୍ରହଣ କରିନେଲେ।

ଆଇନ ସ୍ନାତକ ଭାବରେ ସେ ବଲାଂଗିରରେ ଓକିଲାତି ଆରଂଭ କଲେ। ରାଜନୀତିପ୍ରତି ସେତେବେଳକୁ ତାଂକର ଅଦମ୍ୟ ଆଗ୍ରହ ଥାଏ। ତେଣୁ ଯେତେବେଳେ ପାଟଣା ଦରବାର ବିରୋଧରେ ପ୍ରଜା ଆଂଦୋଳନ ଆରଂଭ ହେଲା ସେତେବେଳେ ସେ କଂଗ୍ରେସ ସମର୍ଥିତ ପ୍ରଜାମଂଗଳ ଓ କୃଷକ ଦଳର ସମର୍ଥକ ଭାବେ କାର୍ଯକଲେ। ଦଳର ସେ ପ୍ରଧାନ ସଂଗଠକ ହୋଇ ପଡ଼ିଲେ। ଦରବାର ଶେଷକୁ ଏକ ସୀମିତ କ୍ଷମତାପ୍ରାପ୍ତ ମଂତ୍ରୀମଂଡଳ ଗଠନ କଲେ ଓ କୃଷକ ଦଳ ଏଥିରେ ସାମିଲ ହେଲା। ସେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ଭାବରେ ନିର୍ବାଚିତ ହେଲେ। ସଂବିଧାନ ପ୍ରଣୟନ ନିମିତ୍ତ ସଭ୍ୟ ନିର୍ବାଚନ ସମୟରେ ସେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ପ୍ରାର୍ଥୀ ଭାବରେ ଗଡଜାତ ଆଂଦୋଳନର ଆଉ ଜଣେ ଟାଣୁଆ ନେତା ସାରଂଗଧର ଦାସଂକ ସହିତ ସେଠାକୁ ପଠାଗଲେ। ପରିବର୍ତ୍ତିତ ରାଜନୈତିକ ପରିସ୍ଥିତି ଯୁଧିଷ୍ଠିରଂକୁ ନି ଜ ପ୍ରତିଭା ବିକାଶ ନିମିତ୍ତ ବିଶେଷ ସୁଯୋଗ ଦେଇ ନ ଥିଲା।

ସଂବିଧାନ ସଭାର ସଭ୍ୟଥିବା ସମୟରେ ଭାରତର ରାଷ୍ଟ୍ରଭାଷା କ'ଣ ହେବ ଏ ବିଷୟରେ ଆଲୋଚନା ଚାଲିଲା। ଅଣହିଂଦି ବିଶେଷକରି ଦାକ୍ଷିଣାତ୍ୟ ରାଜ୍ୟର ପ୍ରତିନିଧିମାନେ ହିଂଦିର ବିରୋଧ କଲେ। ଯୁଧିଷ୍ଠିର ହିନ୍ଦି ବ୍ୟତୀତ ଅନ୍ୟ ଭାଷା ଦେଶର ସାଧାରଣ ନାଗରିକମାନଂକ ପକ୍ଷରେ ଗ୍ରହଣୀୟ ନୁହେଁ ଏହା ଉପଲବ୍ଧି କରିଥିଲେ। ସଂବିଧାନ ସଭାର ତିନିଜଣ ପ୍ରଭାବଶାଳୀ ସଭ୍ୟ କହ୍ନେୟାଲାଲ ମୁନ୍‌ସୀ, ଗୋପାଳସ୍ୱାମୀ ଆୟଂଗାର ଓ ଆଇନମଂତ୍ରୀ ଆଂବେଦକର ଗୋଟିଏ ସୂତ୍ର ବାହାରକଲେ। ଏହାକୁ

ଏମ୍.ଏ.ଏ. ଫରମୁଲା କୁହାଗଲା। ସେଥିରେ ହିଂଦିକୁ ରାଷ୍ଟ୍ରଭାଷାଭାବେ ଗୃହୀତ କରାଇ ନେଲେ ମଧ୍ୟ ପ୍ରଥମ ୧୫ ବର୍ଷ ବା ଦରକାର ହେଲେ ତତୋଧିକ ସମୟ ଇଂରେଜିକୁ ମର୍ଯାଦାବଂତଭାବେ ପ୍ରଂଚଳନ କରିବାକୁ ପ୍ରସ୍ତାବ ଦିଆଯାଇଥିଲା। ଓଡ଼ିଶାରୁ ବିଶ୍ୱନାଥ ଦାସ, ଲକ୍ଷ୍ମୀନାରାୟଣ ସାହୁଂକ ସହିତ ଯୁଧିଷ୍ଠିର ଏହି ଫରମୁଲା ସପକ୍ଷରେ ନିଜର ମତ ସଂବିଧାନ ସଭାରେ ସୂଚିତ କରାଇବା ବ୍ୟତୀତ ଏହା ଗୃହୀତ ହେବା ଦିଗରେ କାର୍ଯ କରିଥିଲେ। ରାଜ୍ୟର ପ୍ରଥମ ସାଧାରଣ ନିର୍ବାଚନରେ ସେ କଂଗ୍ରେସ ତରଫରୁ ବଲାଂଗିର କଳାହାଂଡି ଯୁଗନିର୍ବାଚନ ମଂଡଳୀରୁ ଲୋକସଭାକୁ ପ୍ରାର୍ଥୀ ହେଲେ। ପାଟଣା ମହାରାଜାଂକଠାରୁ ସେ ଲକ୍ଷାଧିକ ଭୋଟରେ ହାରିଯାଇ ପ୍ରତ୍ୟକ୍ଷ ରାଜନୀତିରୁ ଅପସରି ଯାଇଥିଲେ।

କଂଗ୍ରେସର ସଭ୍ୟଥାଇ ମଧ୍ୟ ନିଜର ବାମପଂଥୀ ଚେତନା ଓ ଚିଂତାଯୋଗୁ ସେ ଦଳରେ ବିଶେଷ ପ୍ରଭାବଶାଳୀ ହୋଇ ପାରିଲେ ନାହିଁ ଶେଷରେ ୧୯୫୩ରେ ଯେତେବେଳେ ସମଗ୍ର ଭାରତବର୍ଷରେ କଂଗ୍ରେସର ଅଗାଧ ପ୍ରତିପତ୍ତି ସହିତ କ୍ଷମତା ବିରାଜୁଥିଲା ସେତେବେଳେ ସେ ଏଥିରୁ ଇସ୍ତଫା ଦେଇ କମ୍ୟୁନିଷ୍ଟ ଦଳରେ ଯୋଗଦେଲେ ଓ ଜୀବନର ଶେଷ ପର୍ଯଂତ ଏହି ଦଳର ଜଣେ ନିଷ୍କାମ ନିରଳସ କର୍ମୀ ଭାବରେ ଦେଶରେ ପରିଚିତ ଥିଲେ।

ଓକିଲ ଭାବରେ ମଧ୍ୟ ସେ ନିଜ ବ୍ୟବସାୟ ବଲାଂଗିରକୁ ସୀମିତ ରଖିଲେ। ସେଠାରେ ତାଂକ ନିଜ ପ୍ରତିଭାର ବିକିରଣ ନିମିତ୍ତ ସୁଯୋଗ ପ୍ରାୟ ନ ଥିଲା। ଜିଲ୍ଲାର ସମସ୍ତ ସାଧାରଣ କାର୍ଯକ୍ରମରେ ସେ ସକ୍ରିୟ ଅଂଶଗ୍ରହଣ କରୁଥିଲେ। ନିଜେ ଶିକ୍ଷାପ୍ରେମୀ ଥାଇ ଶିକ୍ଷାର ପ୍ରସାର ନିମିତ୍ତ ବହୁ ଶିକ୍ଷାଅନୁଷ୍ଠାନ ପ୍ରତିଷ୍ଠାରେ ସେ ଭାଗନେଇଥିଲେ। ୧୯୬୮ରେ ସଂବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିନଠାରୁ ସେ ଏହାର ସିନେଟ ସିଂଡିକେଟ ଆଦି ସିହତ ସଂପୃକ୍ତ ଥିଲେ। ୧୯୭୭ରେ ଅଳ୍ପ ସମୟ ପାଇଁ ସେ ଅସ୍ଥାୟୀ କୁଳପତି ଭାବରେ ମଧ୍ୟ କାର୍ଯକରିଥିଲେ। ଜଣେ ବାମପଂଥୀଭାବରେ ସେ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ସଭ୍ୟଥିଲେ। ବିଶ୍ୱ ଶାଂତି ଆଂଦୋଳନରେ ମସ୍କୋଠାରେ ଅନୁଷ୍ଠିତ ୧୯୬୧ର ବାର୍ଷିକ ସମ୍ମିଳନୀରେ ସେ ଭାରତୀୟ ଦଳର ନେତା ଭାବରେ ଯୋଗ ଦେଇଥିଲେ। ଦଳରେ ତାଂକର ମର୍ଯାଦା ଓ ତାଂକର ମୌଳିକ ଚିଂତାପ୍ରତି ସମ୍ମାନ ଏହିଥିରୁ ଜଣାଯାଏ। ୧୯୮୧ ଅକ୍ଟୋବରେ ତାଂକ ବିୟୋଗ ରାଜ୍ୟ ବାମପଂଥୀ ଆଂଦୋଳନର ଏକ ଅପୂରଣୀୟ କ୍ଷତି ଘଟାଇଥିଲା।



"ଭାଷା ସୁପକ୍ୱ ରଂଭା ପ୍ରାୟ
କୋମଳ ମୃଦୁ ର ସମୟ
ଅକ୍ଳେଶ କରି ତାକୁ ଭୋଗ
ସବୁ ଜୀବନେ ଉପଭୋଗ।"

–ଭୂପତି ପଂଡିତ

## ତୁଳସୀ କବି

# ସାହିତ୍ୟ ପ୍ରେମୀ ସୋମନାଥ

ଦେଶ ସ୍ୱାଧୀନ ହେବା ପୂର୍ବର ଅବସ୍ଥା। ପାଟଣା ଦେଶୀୟ ରାଜ୍ୟର ରାଜଧାନୀ ବଲାଂଗିର ପାଟଣା। ସେଠାରୁ ଅଳ୍ପଦୂରରେ ଜରାସିଂହ ଗ୍ରାମ। ସେଠାରେ ଗୋଟିଏ ଜମିଦାରି ଥାଏ। ଶିକ୍ଷାର ସୁବିଧା ପ୍ରାୟ ନ ଥାଏ। ସେଇଠି ୧୯୦୧ରେ ସୋମନାଥ ହୋତାଂକର ଜନ୍ମ। ପିଲାଦିନୁ ସେ ସଂସ୍କୃତିର ଉପାସକ ଥିଲେ। ସାହିତ୍ୟ ଚର୍ଚ୍ଚା ତାଂକର ପ୍ରିୟ ଥିଲା। ନିଜ ଅଭାବଗ୍ରସ୍ତ ସଂସାରର ଦୁଃଖ ସେ କବିତା ଆଲୋଚନା କରି ଓ ନିଜର ମନୋଭାବ କବିତାରେ ପ୍ରକାଶ କରି ଭୁଲିଯାଉଥିଲେ। ପାଟଣାଗଡ଼ର ତାଂକ ସମବୟସ୍କ ଆଉ କେତେ ଜଣ ତାଂକ ସାଂଗରେ ମିଶିଲେ। ସେମାନେ ଭ୍ରାତୃସମାଜ ବୋଲି ଗୋଟିଏ ସାମାଜିକ ଅନୁଷ୍ଠାନ ଗଢ଼ିଲେ। ସବୁରି ସୁଖ ଦୁଃଖରେ ଭାଗୀ ହେବା ଓ ସାମାଜିକ ଦୁଃଖ ନିରାକରଣର ଉଦ୍ୟମ କରିବା ଏହାର ଲକ୍ଷ୍ୟଥିଲା। ସେ ଯୁଗ ପରିସ୍ଥିତିରେ ରାଜା ବା ରାଜକର୍ମଚାରୀମାନଂକଠାରୁ ଏ ଦିଗରେ କୌଣସି ସାହାଯ୍ୟ ବା ସହଯୋଗର ଆଶା ନ ଥିଲା। ତଥାପି ସେମାନେ ଗୋଟିଏ ହାତଲେଖା ମୁଖପତ୍ର

'ତୁଳସୀ' ବାହାର କଲେ। ଏହାର ସୁବାସ ଚାରିଆଡେ ମହକି ଉଠୁ ଏଇଆ ଉଦ୍ଦେଶ୍ୟ ରଖିଥିଲେ। ସେ ରଚନା ଓ ସଂପାଦନରେ ବେଶି ସମୟ ଓ ସହଯୋଗ ଦେଉଥିଲେ। ସହଯୋଗୀ ପାଟଣାଗଡ଼ର ପଣ୍ଡିତ ମୃତ୍ୟୁଂଜୟ ତ୍ରିପାଠୀ ଓ ମୃତ୍ୟୁଂଜୟ ସାନ୍ତ୍ର। ସେ ଦୁହେଁ ଅକାଳରେ ଚାଲିଗଲେ। ତୁଳସୀର ଅକାଳ ବିୟୋଗ ହେଲା। ସୋମନାଥ ନିଜେ ଏହାକୁ ବଂଚାଇ ରଖିବାକୁ ଉଦ୍ୟମ କରି ଅନ୍ୟ ସାହିତ୍ୟପ୍ରେମୀମାନଂକର ସଂସ୍ପର୍ଶରେ ଆସିଲେ। ରାଜଧାନୀ ବଲାଂଗିର ସହରରେ ଶିକ୍ଷିତ ଯୁବକ କେତେଜଣ ମିଶି ଅବସର ସାହିତ୍ୟ ବିନୋଦନ ନାମରେ ଏକ ଅନୁଷ୍ଠାନ ଗଢିଥାଆଂତି। ସୋମନାଥଂକୁ ସେମାନେ ଡାକି ନେଲେ। ତାଂକୁ ସଭାପତି ଦାୟିତ୍ୱ ଦେଲେ। ସୋମନାଥଂକର ସାନଭାଇଥିଲେ ଗୋପୀନାଥ ହୋତା। ବଲାଂଗିରର ସାରସ୍ୱତ ସେବା କ୍ଷେତ୍ରରେ ସେ ସୁପରିଚିତ ଥିଲେ। ସ୍ୱରଚିତ ୧୪ ଗୋଟି କବିତା 'ମର୍ମବାଣୀ' ନାମରେ ତାଂକର ଏକ କବିତା ସଂକଳନରେ ପ୍ରକାଶ ପାଇଥିଲା। ଗୋପୀନାଥ କିଛି ଇଂରାଜୀ ଓ ବଂଗଳା କବିତାର ମଧ୍ୟ ଅନୁବାଦ କରିଥିଲେ। ସ୍ୱଭାବତଃ ଆତ୍ମମଗ୍ନ, ପ୍ରଚାର ବିମୁଖ ଓ ନେପଥ୍ୟଚାରୀ ମଣିଷ ଥାଇ ସେ 'ମୁକୁର' 'ଉତ୍କଳ ସାହିତ୍ୟ'କୁ ନିଜର କେତୋଟି କବିତା ପଠାଇ ପ୍ରକାଶ କରାଇଥିଲେ। କବି ଦରବାର ଅଧୀନରେ ଚାକିରି କରୁଥିଲେ, ମାତ୍ର ନିଜ ସୌଖିନ ବୃତ୍ତି ନିମିତ୍ତ ଏଥିରୁ ଇସ୍ତଫା ଦେଲେ। ଅତି ସରଳ ନିରାଡଂବର ଜୀବନଯାପନ କରି ଜୀବନର ଅବଶିଷ୍ଟ ସମୟ କବିତା ରଚନାରେ ଲଗାଇଲେ। ଶ୍ରୀନିବାସ ଉଦ୍‌ଗାତା ଲେଖିଛଂତି କବି ହୋତୃଶର୍ମା ଟଲଷ୍ଟୟଂକର କାହାଣୀମାନଂକର ଓଡ଼ିଆ ଅନୁବାଦ କରୁଥିଲେ। ତାଂକର ଅସାଧ୍ୟ ଶ୍ରମ ପ୍ରସୂତ ଅନୁବାଦିତ ୨/୩ ଗୋଟି ଗଳ୍ପ ଉତ୍କଳ ସାହିତ୍ୟ ଓ ସହକାରରେ ପ୍ରକାଶ ପାଇଥିଲା। ସାଂବାଦିକ ଗୌରବ ଶିବପ୍ରସାଦ ପାଂଡିଆ ଲେଖିଛଂତି, ୧୯୨୧ରେ ବଲାଂଗିରର କେତେ ଜଣ ବୁଦ୍ଧିଜୀବୀ ମିଶି ବଲାଂଗିର ଟିକରାପଡ଼ାସ୍ଥିତ ମନବୋଧ ସାହୁଂକ ଘରେ ଭ୍ରାତୃସମାଜ ନାମକ ଏକ ଅନୁଷ୍ଠାନ ଗଠନ କରି ତୁଳସୀ ନାମକ ହାତଲେଖା ପତ୍ରିକା ଗୋଟିଏ ପ୍ରକାଶ କରୁଥିଲେ। ଏହି ଅନୁଷ୍ଠାନର ସକ୍ରିୟ ସଦସ୍ୟ ଥିଲେ ମନବୋଧସାହୁ ବାଳମୁକୁନ୍ଦ ହୋତା, ଦିବ୍ୟସିଂହ ନାଏକ ଯୋଗେଶ୍ୱର ମେହେର ପ୍ରମୁଖ। ୧୯୪୧ରେ ଏହି ଭାତୃସମାଜ ଓ ତୁଳସୀକୁ ପୁର୍ନଜୀବିତ କରାଯାଇଥିଲା। କବିତା ପ୍ରବଂଧ ସମେତ ମେଗାଜିନର ଶେଷ ପୃଷ୍ଠାରେ କିଛି କିଛି ବିଜ୍ଞାପନ ଓ ସଂବାଦ ପ୍ରକାଶ ପାଉଥିଲା। ଏହି 'ତୁଳସୀ'ର କୌଣସି ସଂଖ୍ୟା ଦେଖିବାକୁ ମିଳୁନାହିଁ। ସୋମନାଥ ଜୀବନଯାକ ତଂତବୁଣା ଖଦଡ଼ ଲୁଗା ପିଂଧୁଥିଲେ। ଖାଲି ପାଦରେ ଚାରିଆଡ଼େ ବୁଲୁଥିଲେ। ଜନ ସାହିତ୍ୟ ସୃଷ୍ଟି ଦିଗରେ ତାଂକ ଉଦ୍ୟମ ସ୍ମରଣୀୟ।





# ଦୁଃଖ ବଂଧୁ
# ଦିବାକର ବହିଦାର

ବଲାଂଗୀର ଜିଲ୍ଲାରେ ଯେଉଁ ଅଳ୍ପ କେତେଜଣ ନିରଳସ ଓ ନିଷ୍ପାପର ରାଜନୈତିକ କର୍ମୀ ଥିଲେ ସେମାନଙ୍କ ମଧ୍ୟରେ ସଇଁତଲାର ଦିବାକର ବହିଦାର ଜଣେ। ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ତୃତୀୟ ଶ୍ରେଣୀ ପର୍ଯ୍ୟଂତ ପାଠ ପଢିବା ପରେ ତାଂକର ପୋଥିରେ ଡୋରି ବଂଧାହେଲା। ମହାତ୍ମା ଗାଂଧିଂକ ସ୍ୱାଧୀନତା ଆଂଦୋଳନରେ ସେ ପ୍ରଭାବିତ ହୋଇଥିଲେ। ବଲାଂଗୀରର ତତ୍‌କାଳୀନ ମହାରାଜା ପ୍ରଜାପୀଡ଼କ ନ ଥିଲେ ମଧ୍ୟ ଜାତୀୟ କଂଗ୍ରେସର ଡାକରାରେ ସବୁ ଦେଶୀୟ ରାଜ୍ୟରେ ଆଂଦୋଳନ ନିମିତ୍ତ ପ୍ରଜାମଂଡଳ ଗଠନ କରାଯାଇଥିଲା। ରାଜ୍ୟର ପ୍ରଜାମାନଂକୁ ଶୋଷଣ ଓ ଅତ୍ୟାଚାର ରୁ ମୁକ୍ତ କରିବା ଏହାର ଉଦ୍ଦେଶ୍ୟ ଥିଲା। ପାଟଣା ରାଜ୍ୟରେ ରାଜାଂକର ଅନୁଗତ ମାନେ ପ୍ରଥମେ ପ୍ରଜାମଂଡଳ ଗଡ଼ି ଏହାକୁ ସୋସାଇଟି ଆଇନ୍ ଅନୁସାରେ ରେଜେଷ୍ଟ୍ରିଭୁକ୍ତ କରାଇ ଦେଇଥିଲେ। ତେଣୁ ଅନ୍ୟସବୁ ରାଜ୍ୟରେ ପ୍ରଜାମଂଡଳ ଥିଲେ ମଧ୍ୟ ପାଟଣା ରାଜ୍ୟରେ ପ୍ରଜାମଂଗଳ ରାଜନୈତିକ ଅନୁଷ୍ଠାନ ଗଢ଼ାହେଲା। ଏମାନେ କୃଷକଦଳ ନାମରେ ଏକଦଳ ଗଠନ କରି ରାଜ୍ୟ ଶାସକଂକଠାରୁ ସ୍ୱାୟତ୍ତ ଶାସନ ଓ ନାନାପ୍ରକାର ସୁବିଧା ସୁଯୋଗ ଦାବି କଲେ। ଏହି ଉଦ୍ଦେଶ୍ୟରେ ବିଭିନ୍ନ

ଗ୍ରାମରୁ ଲୋକମାନଂକୁ ଆଣି ବଲାଂଗିରରେ ଏକାଠି କରାଇ ମହାରାଜାଂକର ଶୈଳଶ୍ରୀ ବିହାର ପାଲେସ୍‌କୁ ଘେରାଉ କରାଯାଇଥିଲା। ଦିବାକର ସଇଁତଲା ଅଂଚଳରୁ ପ୍ରଜାମାନଂକୁ ଆଣି ଏହି କାର୍ଯରେ ଭାଗନେଇଥିଲେ। ଏହାପରେ ମହାରାଜା ରାଜ୍ୟରେ ମଂତ୍ରୀମଂଡଳ ଗଢ଼ିଥିଲେ। ଏଥିରେ ପ୍ରଜାପ୍ରତିନିଧି ସ୍ଥାନ ପାଇଥିଲେ। ଦିବାକର ନିଜଗ୍ରାମରେ ରହି ହରିଜନ ସେବା, ଅସ୍ପୃଶ୍ୟତା ନିବାରଣ, ଖଦିପ୍ରସାର ଆଦି କାର୍ଯରେ ବିଶେଷ ଭାଗ ନେଉଥିଲେ। ହରିଜନ ଓ ଆଦିବାସୀମାନଂକ ଉପରେ ତାଂକର ବିଶେଷ ପ୍ରଭାବ ଥିଲା। ଗଡ଼ଜାତ ରାଜ୍ୟମାନ ୧୯୪୮ରେ ଓଡ଼ିଶା ପ୍ରଦେଶରେ ମିଶିବା ପର୍ଯଂତ ଦିବାକର ସମାଜ ସେବାରେ ଲାଗିଥିଲେ। ଏହା ତାଂକୁ ଯଥେଷ୍ଟ ଲୋକପ୍ରିୟତା ଆଣିଥିଲା। ମିଶ୍ରଣ ପରେ ତାଂକୁ ବ୍ୟବସ୍ଥାପକ ସଭାର ଜଣେ ସଭ୍ୟ ଭାବରେ ମନୋନୀତ କରାଯାଇଥିଲା। ଲୋକପ୍ରିୟତା ସତ୍ତ୍ୱେ ୧୯୫୨ ସାଧାରଣ ନିର୍ବାଚନରେ ସେ ଟିଟିଲାଗଡ଼ ନିର୍ବାଚନ ମଂଡଳୀରୁ କଂଗ୍ରେସ ଟିକେଟରେ ବ୍ୟବସ୍ଥାପକ ସଭାନିର୍ବାଚନରେ ଗଣତଂତ୍ର ପରିଷଦ ପ୍ରାର୍ଥୀଂକ ହାତରେ ୧୬ ହଜାରରୁ ଅଧିକ ଭୋଟରେ ପରାଜିତ ହୋଇଥିଲେ। ୧୯୬୧ ମଧ୍ୟବର୍ତୀ ନିର୍ବାଚନରେ ମଧ୍ୟ ସେ ସଇଂତଲା ନିର୍ବାଚନ ମଂଡଳୀରୁ ପ୍ରତିଦ୍ୱଂଦ୍ୱିତାରେ ବହୁଭୋଟରେ ହାରିଯାଇ ୧୯୭୧ରେ ସ୍ୱାଧୀନ ପ୍ରାର୍ଥୀ ଭାବରେ ମଧ୍ୟ ହାରିଯାଇଥିଲେ। ଏହା ତାଂକ ଭାଗ୍ୟର ବିଡଂବନା ଥିଲା। ନିଜ ଅଂଚଳରେ ସେ ମୌଳିକ ଶିକ୍ଷାର ପ୍ରସାର ପାଇଁ ଅନେକଗୁଡ଼ିଏ ବିଦ୍ୟାଳୟ ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଥିଲେ। ଗ୍ରାମପଂଚାୟତ ପ୍ରତିଷ୍ଠା ହେଲାପରେ ସେ ସରପଂଚ ଓ ପରେ ସଇଁତଲା ବ୍ଲକର ଚେୟାରମ୍ୟାନ ହୋଇ ଲୋକମାନଂକର ନିସ୍ୱାର୍ଥ ସେବାରେ ନିଜକୁ ନିୟୋଜିତ କରୁଥିଲେ। ମୃତ୍ୟୁ ପର୍ଯଂତ ସେ ବିଶେଷ କର୍ମଠ ଥିଲେ ଓ ଚାଲିଚାଲି ପଂଚାୟତ ସମିତିର ସବୁ ଗ୍ରାମରେ ଲୋକମାନଂକର ସୁଖଦୁଃଖ ବୁଝୁଥିଲେ। ଘରପୋଡ଼ି, ମରୁଡ଼ି ଓ ବଢ଼ି ଆଦି ପ୍ରାକୃତିକ ବିପର୍ଯୟ ହେଲେ ସେ ଶୀଘ୍ର ସ୍ଥାନ ଉପରେ ପହଂଚି ସରକାରୀ ବେସରକାରୀ ସାହାଯ୍ୟ ଆଣିବାରେ ସହଯୋଗ କରୁଥିଲେ। ୮୪ ବର୍ଷ ବୟସରେ ୧୯୮୫ ଅକ୍ଷୟ ତୃତୀୟା ଦିନ ସେ ଇହଧାମ ତ୍ୟାଗ କଲେ।



କାଉ ରାବି ଦେଲେ ଆଉ କାଉମାନେ
ପାଖକୁ ଆସଂତି ଧାଇଁ
ଏକମେଳ ହୋଇ ସମସ୍ତେ ରହିଲେ
ବିପଦେ ଡର ନ ଥାଇ।

—କାଂତକବି ଲକ୍ଷ୍ମୀକାଂତ



# ସଫଳ ଅନୁବାଦକ
# ପରୀକ୍ଷିତ ଖଂଡୁଆଳ

ଓଡ଼ିଶାର ଛବିଶ ଗଡ଼ଜାତ ମଧ୍ୟରୁ ପାଟଣା ରାଜ୍ୟ ଥିଲା ଗୋଟିଏ। ସାଧାରଣତଃ ଗଡ଼ଜାତ ମାନଂକରେ ଶିକ୍ଷାର ସୁଯୋଗ ଅତି ସୀମିତ ଥିଲା, ଉଚ୍ଚଶିକ୍ଷା ସୁଦୂର ପରାହତ। ସାହିତ୍ୟ ସାଧନା ଓ ସାଂସ୍କୃତିକ ବାତାବରଣର ଅଭାବ, ମାତ୍ର ପ୍ରକୃତ ପ୍ରତିଭାଧର ଏ ପ୍ରକାର ବହୁବାଧା ବିଘ୍ନକୁ ଏଡ଼ାଇ ନିଜ କାର୍ଯ କରିଚାଲେ। ସେମାନେ କାନନ ମଲ୍ଲୀପରି ନିଜ ସୁବାସ ସଂପୂର୍ଣ୍ଣ ବିକିରଣ ନ କରି ପାରି ଝରିପଡ଼ିଲେ। ବୃହତ୍ତର ରାଜ୍ୟ କ୍ଷେତ୍ରରେ ସେମାନଂକ ପରିଚିତି ଅସ୍ପଷ୍ଟ ରହିଗଲା। ଅନୁବାଦକ କବି ପରୀକ୍ଷିତ ଖଂଡୁଆଳ ଏମିତି ଜଣେ ପ୍ରତିଭାଦୀପ୍ତ ସୁପୁରୁଷ।

ପରୀକ୍ଷିତ ୧୮୯୭ ଜୁଲାଇରେ ବଲାଂଗିର ସହରରେ ଜନ୍ମ ହୋଇଥିଲେ। ତାଂକ ପିତା ବାଂଛାନିଧି ପାଟଣା ରାଜଦରବାରରେ ତହସିଲଦାର (ରାଜସ୍ୱ ବିଭାଗ କର୍ମଚାରୀ) ଥିଲେ। କାର୍ଯ ଉପଲକ୍ଷେ ମଧ୍ୟପ୍ରଦେଶ (ବର୍ତମାନ ଛତିଶଗଡ଼ର) ରାଜ ନଂଦଗାଁକୁ ଯାଇଥିବା ସମୟରେ ସେଠାରେ ସେ ପ୍ରାଣତ୍ୟାଗ କଲେ। ପରୀକ୍ଷିତ ସେତେବେଳେ

ମାତୃ ଗର୍ଭରେ। ଜୀବନ ଆରମ୍ଭ ହୁଏ ତାଂକର ସଂଘର୍ଷରୁ। ବିଦ୍ୟା ଆରମ୍ଭ ହୁଏ ବଲାଂଗିରରେ। ୧୯୧୭ରେ ମାଟ୍ରିକ୍ ପାସକରି ରାଜ୍ୟବୃତ୍ତି ପାଇ ପରୀକ୍ଷିତ ରେଭେନ୍ସା କଲେଜରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇଲେ। ପାସ୍ କରି ବଲାଂଗିର ଆସି ଦରବାର ଅଧୀନରେ କିଛିଦିନ କାମ କଲେ। ନିଜର ସୃଜନୀ ପ୍ରତିଭାର ବିକାଶ ପାଇଁ ସୁଯୋଗ ନ ଦେଖି ସେ ଚାଇଁବସା ଗଲେ। ସେଠାରେ ଶିକ୍ଷକତା କଲେ, ମାତ୍ର ବଲାଂଗିରର ନୂତନ ମହାରାଜାଂକ ଉଦ୍ୟମରେ ଯେତେବେଳେ ୧୯୩୮ରେ ରାଜ୍ୟରେ 'ପାଟଣା ଦୀପିକା' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇଲା ସେ ଏହାର ସଂପାଦକ ବନମାଳୀ ମିଶ୍ର ତାଂକ ପୂର୍ବତନ ପ୍ରଧାନ ଶିକ୍ଷକଂକ ସହାୟକ ହେବାକୁ ରାଜ୍ୟକୁ ଆସିଲେ। ପାଟଣାରୁ 'ଚତୁରଂଗ' ନାମରେ ଏକ ସାହିତ୍ୟ ପତ୍ରିକା ବଲାଂଗିରରେ ପ୍ରକାଶ ପାଇବା ବେଳେ ସେ ଏହା ସହିତ ସଂପୃକ୍ତ ହେଲେ। ମୁଦ୍ରଣକାର୍ଯ ସହିତ ଏହାଦ୍ୱାରା ତାଂକର ସଂପର୍କ ଘନିଷ୍ଠ ହେଲା। ଭାଷାକୋଷ ପ୍ରଣେତା ଗୋପାଳଚଂଦ୍ର ପ୍ରହରାଜ ନିଜ କାଳଜୟୀ ଭାଷାକୋଷ ମୁଦ୍ରଣ ପାଇଁ ସବୁ ଓଡ଼ିଆ ରାଜାମାନଂକର ଅର୍ଥ ସାହାଯ୍ୟ ପ୍ରାର୍ଥୀ ହେଉଥିଲେ। ବଲାଂଗିରର ମହାରାଜା ଏକଖଂଡ ଭାଷାକୋଷର ପୃଷ୍ଠପୋଷକ ହେଲେ। ଏହା ଫଳରେ ପରୀକ୍ଷିତ ପ୍ରହରାଜଂକର ନିକଟତର ହୋଇ ପାରିଲେ। ଯେତେଦିନ ପର୍ଯଂତ ପରୀକ୍ଷିତ ଭାଷାକୋଷ କାର୍ଯରେ କଟକରେ ରହି ଗୋପାଳଚଂଦ୍ରଂକୁ ସାହାଯ୍ୟ କରୁଥିଲେ ସେତେଦିନ ଦରବାର ପକ୍ଷରୁ ତାଂକୁ ବେତନ ଦିଆଯାଉଥିଲା।

ଭାଷାକୋଷ ବ୍ୟତୀତ ୪ ଖଂଡରେ ସଂପୂର୍ଣ୍ଣ ଚିଂତାମଣି ଗ୍ରଂଥାବଳୀ ଓ ଟିଟିଲାଗଡ଼ ଉପଜିଲ୍ଲାପାଳ ଦୁର୍ଗାଚରଣ ରାୟଂକ ସଂପାଦିତ ବିରାଟ ରାଧାନାଥ ଜୀବନୀ ମୁଦ୍ରଣର ତତ୍ତ୍ୱାବଧାୟକ ଭାବରେ ସେ ବହୁ ମାନ୍ୟଗଣ୍ୟ ସାହିତ୍ୟିକଂକର ସାନ୍ନିଧ୍ୟ ଲାଭ କରି ସାରସ୍ୱତ ସେବାରେ ନିଜର ଅବସର ନିୟୋଜିତ କଲେ। ୧୯୩୩ରେ ସେତେବେଳର ଗଂଜାମ ଜିଲ୍ଲା ଇଛାପୁରଠାରେ (ବର୍ତମାନ ଆଂଧ୍ରପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାରେ) ଅନୁଷ୍ଠିତ ଏକ କବି ସମ୍ମିଳନୀରେ ଅଂଶ ଗ୍ରହଣକରି ନିଜ କବିତା 'ପ୍ରଦୋଷ ପଦ୍ମିନୀ' ପାଠ କଲେ। କବିତାଟି ବହୁ ସୁଧୀ ସାହିତ୍ୟିକଂକର ଆଦର୍ ପାଇବା ଫଳରେ ସେ ସ୍ୱର୍ଣ୍ଣପଦକ ପାଇବାକୁ ବିବେଚିତ ହେଲେ। ୧୯୪୨ରେ ମଧ୍ୟ ସେ କୋଶଳ ସାହିତ୍ୟ ସମ୍ମିଳନୀ ଆନୁକୂଲ୍ୟରେ ଅନୁଷ୍ଠିତ ସଂବଲପୁରୀ ଭାଷା କବିତା ପ୍ରତିଯୋଗୀତାରେ ଅଂଶଗ୍ରହଣ କରି ଶ୍ରେଷ୍ଠ ବିବେଚିତ ହୋଇ ଅନ୍ୟ ଏକ ସ୍ୱର୍ଣ ପଦକ ଲାଭ କରିଥିଲେ। ବିହାର ଓଡ଼ିଶା ଏକ ପ୍ରଦେଶାଧୀନ ଥିବା ସମୟରେ ସେ ସମବାୟ

ବିଭାଗରେ ନିଯୁକ୍ତି ପାଇ ଓଡ଼ିଶା ପ୍ରଦେଶ ଅଲଗା ହେବାପରେ ମଧ୍ୟ ବିହାରରେ ରହିଗଲେ ଓ ସେଠାରୁ ଅବସର ଗ୍ରହଣ କଲେ। ସରକାରୀ ଚାକିରି ପେସା ଥିଲେ ମଧ୍ୟ ତାଂକର ନିଶାଥିଲା ସାରସ୍ୱତ ସାହିତ୍ୟ ଚର୍ଚ୍ଚା। ପାଟଣା ଦରବାର ତରଫରୁ ପ୍ରକାଶିତ ପାଟଣା ଦୀପିକା, ହୀରାଖଂଡ ସମାଚାର ଓ ମାସିକ ସୃଷ୍ଟି ଗବେଷଣାଧର୍ମୀ ସାହିତ୍ୟ ପତ୍ରିକା ଚତୁରଂଗର ସଂପାଦନା ଓ ପ୍ରକାଶନ ସହିତ ସେ ସଂପୃକ୍ତ ଥିଲେ। ତାଂକର ରଚନା ଏଥିରେ ପ୍ରକାଶିତ ହୋଇ ଥିବାର ଅନୁମାନ କରାଯାଏ। ମୃତ୍ୟୁ ପରେ ତାଂକର ମୋଟ ୯ ଖଂଡ ଗ୍ରଂଥ ପ୍ରାପ୍ତ ହେଉଅଛି। ତାହା ମଧ୍ୟରୁ କେବଳ କିଶୋରୀ (କବିତାଗୁଚ୍ଛ) ତାଂକ ଜୀବଦ୍ଦଶାରେ, ୧୯୯୬ରେ ବିଶ୍ୱବୀଣା ଓ ୧୯୯୮ରେ ଓମର ରୁବାୟତ ପ୍ରକାଶ ପାଇଅଛି। ୧୯୩୯ରେ ଓଡ଼ିଶାର ଅଗ୍ରଗଣ୍ୟ ସାହିତ୍ୟ ସମାଲୋଚକ, ପ୍ରାବଂଧିକ ଭାଷାକୋଷକାର ଗୋପାଳଚଂଦ୍ର ପ୍ରହରାଜ ଓମର ରୁବାୟତର ଭୂମିକା ଲେଖିଥିଲେ ମଧ୍ୟ ପୃଷ୍ଟପୋଷକତା ଓ ଉପଯୁକ୍ତ ପରିବେଶ ଅଭାବରୁ କବି ଏହା ପ୍ରକାଶ କରିବାକୁ ଅକ୍ଷମ ହୋଇଥିଲେ। ତାଂକର ଏହି ଅନୁବାଦର ପ୍ରଶଂସା ପାଠକମାନଂକୁ ଏହାର ଅଧ୍ୟୟନରେ ପ୍ରବର୍ତାଇବ, ସ୍ୱୟଂ ପ୍ରହରାଜ କହିଯାଇଅଛଂତି। ବିଶ୍ୱବୀଣା ଇଂରେଜ ସାହିତ୍ୟରେ ବହୁ ପଠିତ ଓ ଚର୍ଚ୍ଚିତ ଅନେକ ଲୋକପ୍ରିୟ କବିତାର ମର୍ମାନୁବାଦ ନମୁନା ପାଂଡୁଲିପି ଆକାରରେ ରହିଯାଇଛି। ଏହା ମୌଳିକ ରଚନାପରି ସୁଖପାଠ୍ୟ।

ଅନୁବାଦ ଏକ କଳା। ସେହିପରି ଓମର ରୁବାୟତ। (ରୁବାୟତର ଅର୍ଥ ଚଉପଦୀ) ମୋଟରେ ୭୫ଗୋଟି ଚଉପଦୀ ଏଥିରେ ଅଛି। ଗ୍ରଂଥ ପ୍ରବେଶରେ ଗୋପାଳଚଂଦ୍ର ପ୍ରହରାଜ ଗ୍ରଂଥର ଇତିହାସ,ବିଷୟବସ୍ତୁ ଲୋକପ୍ରିୟତା ସହିତ କବିଂକର ଜୀବନ ଦର୍ଶନ ବର୍ଣ୍ଣନା କରିଛଂତି। ଅନୁବାଦକ ପରୀକ୍ଷିତଂକର ଅନୁବାଦିତ କେତେକ ପଦ ସେ ଉଦ୍ଧୃତ କରିବାକୁ ଭୁଲିନାହାଂତି। ଓମର ଖେୟାମ  ଜଣେ ଏକାଦଶ ଶତାବ୍ଦୀର ପାରସୀୟ କବି ଥିଲେ। ଚାର୍ବାକ ଓ ଗ୍ରୀକ ଦାର୍ଶନିକ ଏପିକ୍ୟୁରସଂକ ପରି ଓମରଂକ ମତରେ ବାସ୍ତବ ଅନୁଭୂତି ଜଗତହିଁ ବାଡିବାଇଗଣ। ଆଉସବୁ କେବଳ ପୋଥି ବାଇଗଣ, କେବଳ ଚଷୁକୁଟା, କେବଳ କୁହୁଡି ପହଁରା। ଆଉ ସବୁ କେବଳ କଳ୍ପନା  କେବଳ ଯୁକ୍ତି, କେବଳ ତର୍କ। ଅତଏବ ଏତେ ଘଂଟା ଚକଟାରେ ନ ଲାଗି କାଦୁଅରେ ନ ପଶି 'ସଂସାରେ ଥିବ ଯେତେଦିନ ଆନଂଦ କରୁଥିବ ମନ'। ଏ ନୀତିରେ ଅଂଧାର ଘରେ ବାଡିବୁଲା ନାହିଁ। ଅଛି ମୋ ନବଯୁବତୀ ମଧୁର କଣ୍ଠୀ ସଖି, ମୋ ସୁରା ଭୃଂଗାର, ମୋର କ୍ରୀଡ଼ାରାମ, ମୋ କବିତା ଓ ମୋ ମଉଜ x x x ଏଥିରେ ପରଲୋକ ନାହିଁ। ପୁନର୍ଜନ୍ମ ନାହିଁ, ସ୍ୱର୍ଗ ନାହିଁ ନରକ ନାହିଁ। ଅଛି ମୋ ନିଜର ବଗିଚାର ଦ୍ରାକ୍ଷା, କୁଂଜଗୃହ। ସେ କୁଂଜରେ ମୋ ସାକୀ ଓ ମୁଁ। ସାକୀ ଢାଳୁଛଂତି ଚଷକରେ ସୀଧୁ, ତାକୁ

ପିଉଛି ମୁଁ ଓ ଶୁଣୁଛି ପ୍ରେମ ସଂଗୀତର ସ୍ୱର। ଗୋଲାପୀ ପାଣିର ଗୋଲାପୀ ନିଶାରେ ସଂସାରର ଶୋକ ଦୁଃଖ ମତବାଦ ସବୁ ବୁଡିଯାଉଛି। କେବଳ ଦିଶୁଛି ମୋତେ ମୋ ଗୋଲାପୀ ସଖୀର ଲାଲ ଗୁଲାଲ ଢବାଧର ଓ ମନରୁ ବାହାରୁଛି କବିତାର ଉସ।

ପରୀକ୍ଷିତ ଅନୁବାଦିତ ରୁବାୟତର ଅନୁବାଦ କରିଛନ୍ତି। ପ୍ରହରାଜଙ୍କ ଭାଷାରେ 'ପାରସ୍ୟିକ ଭାଷାରେ ରଚିତ ମୂଳ କବିତା ବୁଝିବା, ଉପଭୋଗ କରିବା ଯେଉଁମାନଙ୍କ ଭାଗ୍ୟରେ ଘଟିବ ନାହିଁ ସେମାନେ ଏ ଅନୁବାଦର ଅନୁବାଦରେ ରାସାନୁଭବ କରିବେ ବୋଲି, ମୁଁ ମୋ ଅନୁଭୂତିର ବୁଝି ପାରୁଅଛି। ପ୍ରତ୍ୟେକ ପାଠକ ଏହା ସହିତ ଏକମତ ହେବେ।' ପରିତାପର ବିଷୟ ୧୯୩୯ରେ ମୁଖବଂଧ ଲେଖା ଅନୁବାଦ, ଲେଖକ ଓ ଅନୁବାଦକ ଉଭୟଂକ ଅବମାନରେ ୬୦ ବରଷ ପରେ ମୁଦ୍ରିତ ଓ ପ୍ରକାଶିତ ହେଲା। ଏହା ହିଁ ବିଡ଼ଂବନା।

ଏହା ବ୍ୟତୀତ ସହଯୋଗୀ ବଳଭଦ୍ର ବହିଦାରଂକ ସହିତ ସେ ପାଟଣା ରାଜ୍ୟର ଇତିହାସ ଓ ସହଯୋଗୀ ଭଗବାନ ଗୁରୁଂକ ସହିତ ପାଟଣା ରାଜ୍ୟର ଭୂଗୋଳ ରଚନା କରି ପ୍ରକାଶ କରିଥିଲେ।

୧୯୬୦ ନଭେଂବର ୧୧ ତାରିଖରେ ଏହି ସଫଳ ଅନୁବାଦକ ପରୀକ୍ଷିତଂକର ମୃତ୍ୟୁଘଟେ। ସୌଭାଗ୍ୟର ବିଷୟ ପରୀକ୍ଷିତଂକର ସୁଯୋଗ୍ୟ ସଂତାନ ଜୟକୃଷ୍ଣ ତାଂକର ଅମୂଲ୍ୟ ଓମର ରୁବାୟତ ଓ ବିଶ୍ୱବାଣୀ ଗ୍ରଂଥ ଦୁଇଗୋଟି ଯଥାକ୍ରମେ ସେପ୍ଟେଂବର ୧୯୯୮ ଓ ଶ୍ରାବଣ ପୂର୍ଣ୍ଣିମା ୧୯୯୬ରେ ପ୍ରକାଶ କରି ପୁତ୍ରର ଯଥୋଚିତ କର୍ତବ୍ୟ କରିଅଛଂତି।



ଆଫୁଆ ଗନ୍‌ଝିଆ ନିଶାର ସୋର
ଟେରଟେରୀର ଗୁଁଡ଼୍‌ରାବାର
ଆର ଗୁଟେ ଜନାନାଇଁ ପଡ଼େ
କରନୀ ଧାନର ପୁଗ୍‌ରାବାର
ସ୍ତିରି ହୁରୁଦ ଗତର କଥା
ଲିଖନ୍‌କାରର୍ ମନ
ଜନା ନାଇଁପଡ଼େ କରପନର ପାଏନ୍
କୁରୁପନର୍ କେତେ ଧନ୍।

(ସଂରଗମଲ୍ଲୀ)
–ଶ୍ରୀପତି ପାଣିଗ୍ରାହୀ



## ଗବେଷକ

# ପୂର୍ଣ୍ଣଚଂଦ୍ର ରଥ

କଥାଶିଳ୍ପୀ ସୁରେଂଦ୍ର ମହାଂତିଂକର ଆତ୍ମ ଚରିତ 'ପଥ ଓ ପୃଥିବୀ' ଏକ ବହୁ ତଥ୍ୟପୂର୍ଣ୍ଣ ସୁଖପାଠ୍ୟ ପୁସ୍ତକ । ଏଥିରେ ସେ ନିଜର ସ୍ୱାଭାବିକ ଦୋଷ ଦୁର୍ବଳତା ପ୍ରକାଶ କରିବାକୁ ଟିକେ ହେଲେ ପଛାଇ ନାହାଂତି। ଗଣତଂତ୍ର ପରିଷଦର ପ୍ରାରଂଭରେ ସେ ଏହାର ସାଂଗଠନିକ ଦାୟିତ୍ୱ ଗ୍ରହଣ କରି ପ୍ରଥମ ସାଧାରଣ ନିର୍ବାଚନରେ ଏହି ନୂତନ ଦଳର ଏକତିରିଶ ଜଣଂକୁ ଜୟଯୁକ୍ତ କରାଇଥିଲେ। ନୂତନ ସଂବିଧାନ ଅନୁସାରେ ଗଠିତ ରାଜ୍ୟସଭାକୁ ସଭ୍ୟ ପଠାଇବାର ସୁଯୋଗ ଆସିଲା। ବିଧାୟକମାନେ ଏମାନଂକୁ ବାଛଂତି। ଆନୁପାତିକ ଭୋଟରେ ନିର୍ବାଚନ କରାଯାଏ। ଗଣତଂତ୍ର ପରିଷଦ ଦୁଇଜଣ ସଭ୍ୟଂକୁ ପଠାଇବାର କଥା। ମାତ୍ର ଚାରିଜଣ ପ୍ରାର୍ଥୀ ଥିଲେ। ମୟୁରଭଂଜ ମହାରାଜାଂକ ସାନଭାଇ ପ୍ରଫୁଲ୍ଲ ଚଂଦ୍ର ଭଂଜଦେଓ ଜଣେ ବିଶିଷ୍ଟ ବିଦ୍ୱାନ ଓ ନୃତତ୍ତ୍ୱବିଦ୍ ଥିଲେ। କ୍ୟେଂବିଜ ବିଶ୍ୱବିଦ୍ୟାଳୟ ରୁ ସେ ଟ୍ରାଇପସ୍ ପାଇଥିଲେ। ସଂସ୍କୃତ ଓ ତଂତ୍ରରେ ମଧ୍ୟ ତାଂକର ପାଂଡିତ୍ୟ ଥିଲା। ତାଂକୁ ଟିକେଟ ଦେବା ନିଶ୍ଚିତ ହୋଇଗଲା। ବାକି ତିନିଜଣଂକ

ମଧ୍ୟରୁ ଡାକ୍ତର ନଟବର ପାଂଡେ କୋଶଳ ଉତ୍କଳ ପ୍ରଜା ପରିଷଦର ପ୍ରଥମ ସଭାପତି ଥିଲେ। ତାଂକ ନାଁ ମଧ୍ୟ କଟିଗଲା ପରେ ତାଂକୁ ପ୍ରଥମ ଲୋକସଭାର ସଭ୍ୟ କରାଗଲା। ଦୁଇଜଣ ବାକି ରହିଲେ ସୁରେଂଦ୍ର ମହାଂତି ଓ ପୂର୍ଣ୍ଣଚଂଦ୍ର ରଥ। ଦଳ କୌଣସି ନିଷ୍ପତ୍ତି ଦେଇ ନ ପାରି ଏହା ସଭାପତି ପାଟଣା ମହାରାଜାଂକୁ ଛାଡିଦେଲେ। ସୁରେଂଦ୍ର ବାବୁ ମହାରାଜାଂକୁ ଦେଖାକଲେ ମାତ୍ର ସେ ତାଂକୁ ହାତ ମୁଠାରେ ଦୁଇଖଂଡି ମୋଡ଼ାମୋଡି କାଗଜ ଦେଖାଇଲେ। ଦୁଇଜଣଂକର ନାମ ଦୁଇଖଂଡ କାଗଜରେ ଲେଖାଥିଲା। ଜଣାଗଲା ସେ କୌଣସି ନାମ ଠିକ୍ କରିନାହାଂତି। ମନୋନୟନ ପତ୍ର ଦାଖଲ କରିବାକୁ ଆଉ ଗୋଟିଏ ଦିନ ମାତ୍ର ବାକି ଥିଲା। ପୂର୍ଣ୍ଣଚଂଦ୍ର ସେ ମନୋନୀତ ହେବା ବିଷୟରେ ସ୍ଥିର ନିଶ୍ଚିତ ହୋଇଥାଆଂତି, ମାତ୍ର ସେ ବଡ଼ ସୁସ୍ଥିଲୋକ ଥିବାରୁ ଶେଷ ମୂହୁର୍ତ ପର୍ଯଂତ ପ୍ରାର୍ଥୀପତ୍ର ଦାଖଲ କରିନଥାଂତି। ତାଂକ ମନରେ ଥାଏ ଅନ୍ୟ କେହି ତାଂକ ପ୍ରାଥିପତ୍ର ତିଆରି କରି ତାଂକୁ ଆଣିଦେବ ଓ ସେ ତାକୁ ରିର୍ଟନିଂ ଅଫିସର (ବିଧାନସଭା ସଚିବ)ଂକ ପାଖରେ ଦାଖଲ କରିବେ। ତାଂକର ଏ ପ୍ରକାର ନିରାଳଂବ ମନୋଭାବ ଦେଖି ସୁରେଂଦ୍ର ନିଜ ପ୍ରାର୍ଥୀପତ୍ର ଅଫିସରୁ ସଂଗ୍ରହ କଲେ ଓ ତାକୁ ସାବଧାନତାର ସହିତ ପୂରଣ କଲେ। ଅଫିସ୍‌ରୁ ବୁଝିଲେ ମନୋନୟନ ପତ୍ର ସହିତ ପାଂଚଶହ ଟଂକା ଦାଖଲ କରିବାକୁ ପଡ଼ିବ। ତାଂକ ପାଖରେ ସେତେବେଳେ ପଚାଶଟି ଟଂକା ମଧ୍ୟ ନ ଥାଏ। ଓ ତାଂକୁ ପାଂଚଶ ଟଂକା ଧାର ଦେବାଭଳି କୌଣସି ବଂଧୁ ଭୁବନେଶ୍ୱରରେ ନଥାଂତି। ପରଦିନ ତାଂକର ପୂର୍ଣ୍ଣଚଂଦ୍ରଂକ ସହିତ ସାକ୍ଷାତ ହେଲା। ସେ ପଚାରିଲେ ପ୍ରାର୍ଥୀପତ୍ର ଦାଖଲ ସମୟରେ ଡିପୋଜିଟ୍ ନେବେ କି ନାହିଁ। ସୁରେଂଦ୍ର ତାଂକୁ କହିଲେ ଡିପୋଜିଟ୍ ଦେବା ଦରକାର ନ ପଡ଼ିପାରେ। ସରଳ ବିଶ୍ୱାସୀ ପୂର୍ଣ୍ଣଚଂଦ୍ର ନିଜେ ବୁଝିବାକୁ କୌଣସି ଉଦ୍ୟମ କଲେ ନାହିଁ। ତା ପରେ ସୁରେଂଦ୍ର ମହାରାଜାଂକ ପାଖକୁ ଗଲେ। ସେତେବେଳକୁ ସକାଳ ଦଶଟା ହେବ। ମହାରାଜା ଖଟରେ ଶୋଇ ଖବର କାଗଜ ପଢୁଥାଂତି ଓ ସିଗାରେଟ୍ ଟାଣୁଥାଂତି। ଏଣୁ ତେଣୁ କିଛି କଥା ଗପସପ ସାରି ମହାରାଜା ସ୍ନାନ ପାଇଁ ବାଥରୁମ୍‌କୁ ଗଲେ। ସୁରେଂଦ୍ର ତାଂକ ସହିତ ବିଶେଷ ଭାବରେ ପରିଚିତ ଥାଇ ଜାଣିଥାଂତି ଯେ ଗାଧୋଇବାକୁ ଯିବା ସମୟରେ ମହାରାଜା ତାଂକ ହାତରୁ ନୀଳବସା ପ୍ଲାଟିନମ ମୁଦି ତକିଆ ତଳେ ରଖଂତି। ତାଂକ ମନିବ୍ୟାଗ୍ ମଧ୍ୟ ସେହି ତକିଆ ତଳେ ଥାଏ। ମହାରାଜା ଯିବା ପରେ ପର୍ସ ଖୋଲି ସେଥିରେ ସାତଖଂଡ ଶହେଟଂକିଆ ନୋଟ ଥିବାର ସୁରେଂଦ୍ର ଦେଖିଲେ। ସେ ପାଂଚଖଂଡ ଶହେ ଟଂକିଆ ନୋଟ କାଢିନେଲେ ଓ ଖଂଡିଏ ଟୁକୁରା କାଗଜରେ ଲେଖିଦେଲେ ପ୍ରାର୍ଥୀପତ୍ର ଦାଖଲ ପାଇଁ ଟଂକା ନାହିଁ। ତେଣୁ ନିରୁପାୟ ହୋଇ ଟଂକା ନେଉଛି। ଅନ୍ୟଥା ଭାବିବେ ନାହିଁ।

ନିର୍ବାଚନ ପରେ ଫେରିପାଇବେ। ତା ପରେ ଆସି ସେ ପ୍ରାର୍ଥୀପତ୍ର ଡିପୋଜିଟ୍ ଦାଖଲ କଲେ। ଅଫିସ୍‌ରୁ ପ୍ରାୟ ଦିନ ଦୁଇଟା ବେଳକୁ ବାହାରି ଯିବାବେଳେ ବାଟରେ ତାଂକର ପୂର୍ଣ୍ଣଚଂନ୍ଦ୍ରଂକ ସହିତ ସାକ୍ଷାତ ହେଲା। ଶେଷ ମୁହୂର୍ତରେ ମଧ୍ୟ ବଡ଼ ଧୀରେସୁସ୍ଥେ ଅଫିସ୍‌କୁ ଯାଉଥାଆଂତି। ତାଂକ ପ୍ରଶ୍ନର ଉତ୍ତରରେ ସେ ଜାଣିପାରିଲେ ପାଂଚଶହ ଟଂକା ଡିପୋଜିଟ୍ ଦିଆଯିବ। ତାଂକୁ ଆକାଶରୁ ପଡ଼ିଲାପରି ଲାଗିଲା। ସେ ଏମ୍.ଏଲ.ଏ କଲୋନିକୁ ଫେରିଲେ। ଅଳ୍ପ ସମୟ ମଧ୍ୟରେ ଟଂକା ଯୋଗାଡ଼ ସଂଭବ ହେଲାନାହିଁ ଓ ନିଜର ସରଳ ବିଶ୍ୱାସ ହେତୁ ଏକ ସୁନିଶ୍ଚିତ ପଦବୀ ପୂର୍ଣ୍ଣଚଂନ୍ଦ୍ର ହରାଇଲେ। ଅବଶ୍ୟ ସୁରେଂନ୍ଦ୍ର ବୌଦ୍ଧିକ ସ୍ତରରେ ଶୁଦ୍ଧ ରାଜନୀତି ଛାଡି ପଦପଦବି ରାଜନୀତିର ନର୍ଦମାକୁ ଓହ୍ଲାଇଲେ ଏ ପଂକ କର୍ଦମକୁ ମଧ୍ୟ ଗୋଳାଚନ୍ଦନ ପରି ଦେହରେ ବୋଳିବାକୁ ପଡିବ ବୋଲି ନିଜ ଅନୁତାପ ପ୍ରକାଶ କରିଛଂତି। ଏହି ପୂର୍ଣ୍ଣଚନ୍ଦ୍ର ରଥ ବଲାଂଗୀର ଦରବାରର ଐତିହାସିକ ଓ ପ୍ରତ୍ନତତ୍ତ୍ୱବିଦ୍ ଥାଇ ସେ ସମୟରେ ଓଡ଼ିଶା ଗଣତଂତ୍ର ପରିଷଦର ସଂପାଦକ ଥିଲେ।

ପାଟଣା ଷ୍ଟେଟ ର ବଲାଂଗିର ସହରରେ ୧୯୦୯ରେ ପୂର୍ଣ୍ଣଚଂନ୍ଦ୍ର ଜନ୍ମଗ୍ରହଣ କରିଥିଲେ। ତାଂକର ପିତା ବୃଷଭଧ୍ୱଜ ରଥ ପାଟଣା ମହାରାଜାଂକର କୁଳପୁରୋହିତ ଥିଲେ। ୧୯୩୧ରେ ରେଭେନ୍‌ସା କଲେଜରୁ ସେ ବିଏ ପାସ୍ କଲେ। ପାଟଣାରେ ଏମ୍.ଏ. ଓ ଆଇନ୍ ପଢ଼ିଲେ ମାତ୍ର ପରିବାରର ଆର୍ଥିକ ଅସ୍ୱଚ୍ଛଳତା ଯୋଗୁ ପଢାଛାଡ଼ି ଚାକିରି କରିବାକୁ ବାଧ୍ୟ ହୋଇଥିଲେ। ପାଟଣା ରାଜ୍ୟ ସରକାର ଅଧିନରେ ସେ ବିଦ୍ୟାଳୟ ପରିଦର୍ଶକ ଓ ମାର୍କେଟିଂ ଅଫିସର ଭାବରେ କାର୍ଯ କଲେ। ଏହି ସମୟରେ ସେ ଆଇନ ଓ ଡ଼ି.. ଇଡି ପାସ କଲେ। ରାଜ୍ୟରେ ଶିକ୍ଷାର ଉନ୍ନତି କିପରି ହେବ ଏ ବିଷୟ ସେ ଅନୁଧ୍ୟାନ କରି ଗୋଟିଏ ସର୍ଭେ ରିପୋଟ ଦରବାରରେ ଦାଖଲ କରିଥିଲେ। ମାତ୍ର ତରୁଣ ବୟସରୁ ତାଂକର ଇତିହାସ ଓ ପ୍ରତ୍ନତତ୍ତ୍ୱ ପ୍ରତି ପ୍ରଗାଢ଼ ଆଗ୍ରହ ପ୍ରକାଶ ପାଉଥିଲା। ରାଜ୍ୟରେ କୌଣସି ସଂଗ୍ରହାଳୟ ନଥିଲା। ସେ ଯାହା ସଂଗ୍ରହ କରୁଥିଲେ ସେହି ପ୍ରାଚୀନ ମୂର୍ତି, ଅସ୍ତ୍ର ଶସ୍ତ୍ର ପୁରାତନ ମାଟିପାତ୍ର ଆଦି ସେ ନିକଟବର୍ତୀ ବିଦ୍ୟାଳୟମାନଂକରେ ଯତ୍ନ ସହିତ ସାଇତି ରଖୁଥିଲେ ଓ ସେ ବିଷୟରେ ଯଥାସାଧ୍ୟ ଗବେଷଣା କରୁଥିଲେ। ନାନା କଷ୍ଟ ଓ ଅସୁବିଧା ମଧ୍ୟରେ ଗବେଷଣା ନିମିତ୍ତ ଉପାଦାନ ସଂଗ୍ରହରେ ତାଂକୁ ସାହାଯ୍ୟ କରୁଥିବା ଜଣେ ଫଟୋଗ୍ରାଫର ୱାଲିଉଦ୍ଦିନ ଖାଁ କହଂତି ଥରେ ସେମାନେ କୋଇଲା ଚାଳିତ ଠିକାଦାର ର ବସରେ ବଲାଂଗିରରୁ ଟିଟିଲାଗଡ଼ ଗଲେ। ସେଠାରୁ ବଳଦଗାଡ଼ିରେ ସିଂଧେକେଲାରୁ କାମେରା ଧରି ରାଣୀପୁର

ଝରିଏଲ୍ ଚାଲିଚାଲି ପ୍ରାୟ ୧୫ କିଲୋମିଟର ଯାଇ ସେଠାରେ ନିଜେ କାର୍ଯ ଆରଂଭ କରିଥିଲେ। ଚାକିରି ସମୟରେ ସମାଜ ସେବାରେ ସେ ଆଗ୍ରହ ଦେଖାଇ ଦରବାରଠାରୁ ପ୍ରଶଂସା ପତ୍ର ପାଇଥିଲେ। ରାଜ୍ୟରେ ଛୁଆଁ ଅଛୁଆଁ ଭାବ ଉଠାଇ ଦିଆଗଲା ଓ ନୂତନ ମହାରାଜା ହରିଜନମାନଂକର କଲ୍ୟାଣ ଦିଗରେ ଉଦ୍ୟମ କରୁଥିବାରୁ ପୂର୍ଣ୍ଣଚଂଦ୍ର ଏଥିରେ ନିଜକୁ ସାମିଲ କରିଥିଲେ। ତିନିବର୍ଷ ଚାକିରି ପରେ ସେ ହାଇସ୍କୁଲର ଶିକ୍ଷକ ହେଲେ। ପ୍ରତ୍ନତତ୍ତ୍ୱପ୍ରତି ତାଂକର ପ୍ରଗାଢ଼ ଅନୁରାଗ ଓ ସେଦିଗରେ ଗବେଷଣା ମହାରାଜାଂକର ଦୃଷ୍ଟିକୁ ଆସିବାରୁ ସେ ରାଜ୍ୟରେ ଗୋଟିଏ ନୂତନ ପଦବି ସୃଷ୍ଟି କଲେ ଓ ୧୯୩୯ରେ ପୂର୍ଣ୍ଣଚଂଦ୍ର ରାଜ୍ୟର ପ୍ରତ୍ନତତ୍ତ୍ୱ ଅଧିକାରୀ ଭାବରେ ଦାୟିତ୍ୱ ଗ୍ରହଣ କଲେ।

କବି ଶେଖର ଚିଂତାମଣିଂକର ପାଟଣା କାବ୍ୟ ୧୯୪୧ରେ ପ୍ରକାଶ ପାଇଥିଲା। ଗ୍ରଂଥ ଆରଂଭରେ ସେ ମହାରାଜାଂକ ଆଦେଶ ଅନୁସାରେ ଐତିହାସିକ ଓ ସାହିତ୍ୟିକ ପୂର୍ଣ୍ଣଚଂଦ୍ର ରଥ ବିଶେଷଜ୍ଞ ରୂପେ ତାଂକ ସଂଗେ ଯାଇ ରାଜ୍ୟର ପ୍ରାକୃତିକ ଦୃଶ୍ୟ ଐତିହାସିକ ଓ ପୌରାଣିକ ସ୍ଥାନମାନ ତାଂକୁ ଦେଖାଇଥିବା ଯୋଗୁଁ କୃତଜ୍ଞତା ଜ୍ଞାପନ କରିଅଛଂତି। ପାଟଣା ଭଳି ଏକ କ୍ଷୁଦ୍ର ରାଜ୍ୟର ସୀମିତ ସଂବଳ ଓ ପରିବେଶ ତାଂକ ଗବେଷଣା କାର୍ଯକୁ କଠିନତର କରିଥିଲା। ଗମନା ଗମନର ବିଶେଷ ସୁବିଧା ନଥିଲା। ଫଟୋଗ୍ରାଫର ମଧ୍ୟ ଅଭାବ ଥିଲା। ସ୍ଥାନର ସଠିକ୍ ନକ୍ସା ତିଆରି କରିବା ପାଇଁ ଅମିନ ମଧ୍ୟ ମିଳୁନଥିଲେ। ରାଜ୍ୟ ବାହାରେ ପ୍ରବୀଣ ଐତିହାସିକମାନଂକ ସହିତ ଆଲୋଚନା ବା ପତ୍ରଗତ ସଂପର୍କ ରକ୍ଷା କରିବାର ସୁଯୋଗ ନ ଥିଲା। ଆବଶ୍ୟକ ରେଫରେନ୍ସ ପୁସ୍ତକର ମଧ୍ୟ ଘୋର ଅଭାବ ଥିଲା। ତଥାପି ଗୁଣଗ୍ରାହୀ ମହାରାଜାଂକଠାରୁ ଉତ୍ସାହ ପାଇ ପ୍ରଗାଢ଼ ନିଷ୍ଠା ଓ ଦୃଢ଼ ମନୋବଳ ସହିତ ସେ ପ୍ରତ୍ନତତ୍ତ୍ୱ ବିଭାଗ ଗଢ଼ିଲେ। ସହରରେ ଗୋଟିଏ ସଂଗ୍ରହାଳୟ ସ୍ଥାପିତ ହେଲା। ସଂଗୃହୀତ ବସ୍ତୁ ଓ ମୂର୍ତି ସେଠାରେ ସଂରକ୍ଷଣ କରାଗଲା। ଅନେକ ପୁରାତନ ମଂଦିରର ଜୀର୍ଣ୍ଣୋଦ୍ଧାର କରାଯାଇଥିଲା ଉଂଦେର ନଦୀ କୂଳରେ ଏକ ପୁରାତନ ନଗରର ଧ୍ୱଂସାବଶେଷ, ଖରଲିଗଡ ଗ୍ରାମର ଗଜଲକ୍ଷ୍ମୀ ମୂର୍ତି ଓ ଷଷ୍ଠ ଶତାବ୍ଦୀର ଶିଳାଲେଖ ଗଂଧମାର୍ଦନ ପାଦଦେଶରେ ଓ କାଳୀଭିଣା ଗ୍ରାମରେ ରାମଦେଓଂକର ସ୍ୱର୍ଣ୍ଣମୁଦ୍ରା ଓ ତାମ୍ରଫଳକ, ଅଟଗାଁ ଗ୍ରାମର ଅର୍ଧନାରୀଶ୍ୱର ମୂର୍ତି ଓ ତାମ୍ରପଟା, କେଂଦୁମୁଂଡି ଗ୍ରାମର ଗଣେଶ, ମଲ୍ଲଯୋଦ୍ଧା, ବିଭିନ୍ନ ଆକୃତିର କୁରାଢ଼ି ତାଂକ ଦ୍ୱାରା ଏହି ସମୟରେ ଆବିଷ୍କୃତ ହୋଇଥିଲା। ଏସବୁ ବିଷୟରେ ସେ ଗବେଷଣା କରି ଅନେକ ପ୍ରବଂଧ ବିଭିନ୍ନ ପତ୍ରିକାରେ ପ୍ରକାଶ କରିଥିଲେ। ଫଳରେ ଭାରତର ବିଭିନ୍ନ ବିଶିଷ୍ଟ ଐତିହାସିକମାନଂକ

ସହିତ ସଂପର୍କ ରଖିବା ସଂଭବ ହେଲା। ୧୯୪୨ରେ ସେ Indian Records Commission, Numismatic Society of India, Bihar and Orissa Research society & Royal Asatic Society ର ସଦସ୍ୟ ହୋଇଥିଲେ। କଲିକତା, ପାଟଣା, ହାଇଦ୍ରାବାଦ ତ୍ରିଭେଂଦ୍ରମଠାରେ ସର୍ବଭାରତୀୟ ସ୍ତରରେ ଏହି ସଂସ୍ଥା ମାନଂକର ଅଧିବେଶନରେ ଯୋଗଦେଇ ପ୍ରବଂଧ ପାଠର ସୁଯୋଗ ସେ ପାଇଥିଲେ। ୧୯୪୪ରେ ଭାରତ ସରକାରଂକର ପ୍ରତ୍ନତତ୍ତ୍ୱ ବିଭାଗର ପ୍ରତ୍ନତାତ୍ତ୍ୱିକ ଖୋଦନ ପ୍ରକ୍ରିୟା ବିଷୟରେ ତକ୍ଷ୍ୟଶିଳାଠାରେ ଏକ ତାଲିମ କେଂଦ୍ର ଖୋଲିଥିଲା ଓ ପୂର୍ଣ୍ଣଚଂଦ୍ର ଏଥିରେ ତାଲିମ ପାଇଥିଲେ। ଫେରିବା ସମୟରେ ସେ ଲାହୋର ସାଂସ୍କୃତିକ ଅନୁଷ୍ଠାନ, ଆଗ୍ରା କଲେଜ ଓ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ନିଜ ଗବେଷଣା ବିଷୟରେ ବକ୍ତୃତା ଦେଇଥିଲେ। ଏହି ସମୟରେ ବଲାଂଗୀରରେ କଳିଂଗ ଐତିହାସିକ ଗବେଷଣା ସମିତି ପ୍ରତିଷ୍ଠା କରାଯାଇ ଏହାର ମୁଖପତ୍ର ରୂପେ ତ୍ରୈମାସିକ ପତ୍ରିକା ପ୍ରକାଶିତ ହୋଇଥିଲା। ଓଡ଼ିଶାର ଲିପିତତ୍ତ୍ୱବିଦ୍ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଓ ପୋଥିପାଠ ବିଶେଷଜ୍ଞ କେଦାରନାଥ ମହାପାତ୍ର ଏହି ସମିତି ଓ ପତ୍ରିକା ସହିତ ସଂପୃକ୍ତ ଥିଲେ। ଓଡ଼ିଶାରେ ଆବିଷ୍କୃତ ସମସ୍ତ ତାମ୍ର ଫଳକ ସଂକଳନ କରି ବୈଜ୍ଞାନିକ ରୀତିରେ ବିଭିନ୍ନ ଶାସକ ବଂଶ ଅନୁକ୍ରମେ ସଜାଇ ଓଡ଼ିଶାର ଏକ ଅଭିନବ ଇତିହାସ ସଂକଳନ। Corpus of Kaling inscription. ଏହି ସମୟରେ ଆରଂଭ କରାଯଇଥିଲା। ତାମ୍ର ଫଳକ ସବୁର ସଂପାଦନା ପୂର୍ଣ୍ଣଚଂଦ୍ରଂକର ଏକ ମୌଳିକ ଅବଦାନ ଥିଲା। ପାଟଣା ରାଜ୍ୟ ପାଠ୍ୟପୁସ୍ତକ କମିଟି, ବିଧବା ବିବାହ ସଂସ୍କାର କମିଟି, ହରିଜନ ମଂଦିର ପ୍ରବେଶ କମିଟି ଓ ପାଟଣା ରାଜ୍ୟର ଆଇନ ସଭାର ସେ ସଭ୍ୟ ଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟ ଗଠିତ ହେଲାପରେ ସେ ସିନେଟ୍ ଓ ଏକାଡେମିକ୍ କାଉନସିଲ୍‌ର ସଭ୍ୟ ହୋଇଥିଲେ। ୧୯୪୮ ଶିଶୁପାଳଗଡ଼ ଖୋଦନ କାର୍ଯରେ ମଧ୍ୟ ତାଂକୁ ସଂପୃକ୍ତ କରାଯାଇଥିଲା। ୧୯୪୮ରେ ଗଡ଼ଜାତ ମିଶ୍ରଣ ପରେ କଳିଂଗ ଐତିହାସିକ ଗବେଷଣା ସମିତି ନିଷ୍କ୍ରିୟ ହୋଇଗଲା। ପୂର୍ଣ୍ଣଚଂଦ୍ର ଚାକିରିରୁ ଇସ୍ତଫା ଦେଲେ। ଓକିଲାତି ପାସ୍ କରିଥିବାରୁ ୧୯୫୦ରେ ସେ ଓକିଲାତି ଆରଂଭ କରିଥିଲେ। ପାଟଣା ମହାରାଜାଂକର ଅନୁରୋଧରେ ସେ ଗଣତଂତ୍ର ପରିଷଦର ସାଧାରଣ ସଂପାଦକ ଦାୟିତ୍ୱ ଗ୍ରହଣ କଲେ। ଅକ୍ଳାଂତ ପରିଶ୍ରମ କରି ସେ ଦଳକୁ ସଂଗଠିତ କରିପାରିଲେ। ମାତ୍ର ରାଜନୀତିରେ ସେ ନିଜକୁ ମିଶାଇ ନପାରିବାରୁ କ୍ଷମତା ରାଜନୀତିରେ କୌଣସି ଉନ୍ନତି କରିପାରିନଥିଲେ। ଦୁରାରୋଗ୍ୟ କ୍ୟାନସର ରୋଗରେ ଆକ୍ରାଂତ ହୋଇ ମାତ୍ର ୪୩ ବର୍ଷ ବୟସରେ ୧୯୫୨ ଦେବସ୍ନାନ ପୂର୍ଣ୍ଣିମା ଦିନ ସେ ଅକାଳରେ ଝରିପଡ଼ିଲେ। ପୂର୍ଣ୍ଣଚଂଦ୍ରଂକ ଦ୍ୱାରା ଲିଖିତ ଓଡ଼ିଆ ଓ ଇଂରାଜୀ

ଭାଷାରେ ୬୭ଟି ରଚନା ମଧ୍ୟରୁ ମାତ୍ର ୨୯ଗୋଟି ସାହିତ୍ୟିକ ଏବଂ ଐତିହାସିକ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି। ୧୯୮୯ରେ ପୃଥିରାଜ ହାଇସ୍କୁଲ୍‌ର ପ୍ଲାଟିନମ ଜୁବୁଲି ଅବସରରେ ଓ ୧୯୯୦ରେ କୋଶଳ କଳାମଂଡଳ ଆନୁକୂଲ୍ୟରେ ତାଂକୁ ମରଣୋତ୍ତର ସମ୍ମାନ ପ୍ରଦର୍ଶନ କରାଯାଇଥିଲା। ସଂବଲପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ତାଂକର ଏକ ତୈଳଚିତ୍ର ସଂସ୍ଥାପିତ ହୋଇଅଛି। ପିଲାଂକ କୋଶଳ ଇତିହାସ କଥା ତାଂକର ଲିଖିତ ପୁସ୍ତକ ଓ ଏହା ଦରବାର ଅମଳରେ ପ୍ରାଥମିକ ବିଦ୍ୟାଳୟରେ ପାଠ୍ୟପୁସ୍ତକ ଥିଲା। ତାଂକର ଇଂରାଜୀ ଓ ଓଡ଼ିଆ ଭାଷାରେ ଲିଖିତ ପ୍ରବଂଧମାନ ସୀମିତ କ୍ଷେତ୍ରରେ ପାଂଡିତ୍ୟପୂର୍ଣ ଗବେଷଣାର ଉତ୍କୃଷ୍ଟ ପ୍ରମାଣ।



ଜଗତରେ ଯିଏ ସୁପ୍ତ, ଭାଗ୍ୟ ତାହାର ଲୁପ୍ତ
ଚରଣ ଯାହାର ଅଗ୍ରସର, ଅଗ୍ରସର ଭାଗ୍ୟ ତାର।

—ଗଡ଼ନାୟକ



# କୋଶଳ ଇତିହାସ ଲେଖକ
# ରାମଚଂଦ୍ର ମଲ୍ଲିକ

ପାଟଣା ରାଜ୍ୟର ଇତିହାସ ରଚନାରେ ସମସାମୟିକ ଦୁଇଜଣ କୃତବିଦ୍ୟ ଲେଖକ ଦୃଷ୍ଟିକୁ ଆସଂତି। ପାଟଣା ରାଜ୍ୟରେ ଛାତ୍ରମାନଂକର ଇତିହାସ ପାଠ୍ୟରେ 'କୋଶଳ ଇତିହାସ' ସିଲାବସ ଅଂତର୍ଗତ ଥିଲା। ଏହି ଇତିହାସ ପୁସ୍ତକର ଲେଖକ ଥିଲେ ରାମଚଂଦ୍ର ମଲ୍ଲିକ। ୧୮୬୭ରେ ସୋନପୁର ରାଜ୍ୟର ବାଉଁଶୁଣୀ ଗ୍ରାମରେ ରାମଚଂଦ୍ର ଜନ୍ମ ଗ୍ରହଣ କରିଥିଲେ। ସୋନପୁର ଓ ରାୟପୁରରେ ସେ ବିଦ୍ୟାଶିକ୍ଷା କଲେ। ରାୟପୁର ରାଜକୁମାର କଲେଜରୁ ଏଫ.ଏ. (ଇଂଟରମିଡିଏଟ) ପାସ୍ କଲାପରେ ସୋନପୁରର ଯୁବରାଜ ବୀରମିତ୍ର ସିଂହ ଦେଓଂକର କିଛିଦିନ ଗୃହ ଶିକ୍ଷକ ଭାବେ ସେ କାର୍ଯ କଲେ। ତାହା ଛାଡ଼ିଦେଇ ସଂବଲପୁର ଗଲେ। ସେଠାରେ ଜିଲ୍ଲା ସ୍କୁଲରେ କିଛିଦିନ ଶିକ୍ଷକତା କରି ବ୍ଲାଂଗିର ମାଇନର ସ୍କୁଲରେ ୧୮୯୩ରେ ସେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଲେ। ସେତେବେଳେ ପାଟଣାର ରାଜା ଦଳଗଂଜନ ସିଂହ ଦେଓ। ହିଂଦୁ ଧର୍ମର ଉପଦେଶମାନ ଲୋକପ୍ରିୟ କରାଇବାକୁ ରାଜା ଏକ

'ସନାତନ ଧର୍ମ ସଭା' ସ୍ଥାପନ କଲେ। ରାମଚଂଦ୍ରଂକୁ ଏହାର ସଂଗଠନ ଦାୟିତ୍ୱ ଦିଆଗଲା। ସେ ହିଂଦୁଧର୍ମର ପ୍ରଚାର ଓ ପ୍ରସାର ନିମିତ୍ତ ସଭାର ମୁଖପାତ୍ର ରୂପେ ଗୋଟିଏ ପତ୍ରିକା 'ସନାତନ ଧର୍ମ' ନାମରେ ପ୍ରକାଶ କଲେ। ୧୯୦୬ରେ ଏହି କାମ ଆରଂଭ ହେଲା। ରାମଚଂଦ୍ର ଏହାର ସଂପାଦକ ଥାଇ ଏହାର ମୁଦ୍ରଣ ଦାୟିତ୍ୱରେ ମଧ୍ୟ ରହିଲେ। ରାଜାଂକର ନିଜ ଛାପାଖାନା ଦଳଗଂଜନ ପ୍ରେସ୍‌ରେ ଏହା ଛପାଗଲା। ରାଜାଂକ ମୃତ୍ୟୁ ପରେ ୧୯୧୦ ରେ ପୃଥ୍ୱୀରାଜ ସିଂହଦେଓ ଗାଦି ପାଇଲେ। ରାଜ୍ୟର ସୁଶାସନ ନିମିତ୍ତ ପଲିଟିକାଲ୍ ଏଜେଂଟ ଜଣେ ଡେପୁଟି କଲେକ୍‌ଟର୍ ସଂବଲପୁରର ବାଳ ମୁକୁଂଦ ବହିଦାରଂକୁ ରାଜ୍ୟର ଦେଓ୍ୱାନ କରି ପଠାଇଲେ। ସେ ରାଜ୍ୟର ଇତିହାସ ଲେଖିବାକୁ ତାଂକୁ ଉତ୍ସାହ ଦେଲେ। ଆଗରୁ ବଂଗଳାର ଲେଫଟନୋଂଟ ଗଭର୍ନର ଓଡ଼ିଶା ପ୍ରେମୀ ସାର ଆନ୍‌ଡ୍ରୁ ଫ୍ରେଜର ମଧ୍ୟ କୋଶଳରାଜ୍ୟର ଇତିହାସ ଲେଖିବାକୁ ପରାମର୍ଶ ଦେଇଥାଆଂତି। ଦେଓ୍ୱାନ ରାମଚଂଦ୍ରଂକୁ ଶିକ୍ଷା ବିଭାଗର ଡେପୁଟି ଇନ୍‌ସପେକ୍ଟର ପଦରେ ନିଯୁକ୍ତି ଦେଇ ଏହି କାର୍ଯରେ ଲଗାଇଲେ। ପାଟଣା ବ୍ୟତୀତ ନିକଟବର୍ତୀ ଦେଶୀୟ ରାଜ୍ୟ ଓ ଅଂଚଳମାନ ସେ ଗସ୍ତ କଲେ। ଅନେକ ଅନୁସଂଧାନ ଓ ପ୍ରତ୍ୟକ୍ଷାନୁଭୂତି ପରେ ସେ କୋଶଳର ଇତିହାସ ରଚନା କଲେ। ୧୯୧୧ରୁ ୧୯୩୦ ପର୍ଯଂତ ସେ ଏହି କାର୍ଯରେ ଦରବାର ପକ୍ଷରୁ ନିୟୋଜିତ ଥିଲେ। ପୃଥ୍ୱୀରାଜଂକ ଦେହାଂତ ଉତ୍ତାରେ ରାଜେଂଦ୍ର ନାରାୟଣ ସିଂହ ଦେଓ ପାଟଣାର ମହାରାଜା ହେଲେ। ସଂକ୍ଷିପ୍ତ କୋଶଳର ଇତିହାସ ପୁସ୍ତକ ତାଂକ ପ୍ରେରଣାରେ ୧୯୩୧ରେ ମୁଦ୍ରିତ ଓ ପ୍ରକାଶିତ ହେଲା। ମାତ୍ର ରଚିତ ବୃହତ୍ତର ଇତିହାସ ଖଂଡ ଅପ୍ରକାଶିତ ରହିଅଛି। ଏହି ବିରାଟ ଗ୍ରଂଥରେ ସେ ୧୫୬ ଜଣ ରାଜାଂକର ରାଜ୍ୟଶାସନ, ରଣ କୌଶଳ, ରାଜନୀତି, କୂଟନୀତି ଓ ତତ୍‌କାଳୀନ ଘଟଣାବଳୀ ପୁଂଖାନୁପୁଂଖ ଭାବରେ ଐତିହାସିକ ତଥା ସାମାଜିକ ତଥ୍ୟ ସହିତ ଲିପିବଦ୍ଧ କରି ରଖିଅଛଂତି। ମୋଟରେ ଇଂରାଜି ସହିତ ଓଡ଼ିଆ ପାଂଡୁଲିପି ମିଶି ଏହାର କଳେବର ଦୁଇହଜାର ପୃଷ୍ଠା ହେବ ବୋଲି ଅନୁମାନ କରାଯାଉଅଛି। ୧୯୭୧ରେ ଏହା ଜିଲ୍ଲା ରେକର୍ଡ ରୁମରୁ ରାଜ୍ୟ ଅଭିଲେଖାଗାରକୁ ସ୍ଥାନାଂତରିତ ହୋଇ ସେଠାରେ ସୁରକ୍ଷିତ ଅଛି।

ଇତିହାସ ଗବେଷଣା ବ୍ୟତୀତ ଧର୍ମପରାୟଣ ରାମଚଂଦ୍ର ହିନ୍ଦୁଧର୍ମର ପ୍ରଚାର ଦିଗରେ ବଲାଂଗିର ରାଜ୍ୟରେ ଉଲ୍ଲେଖଯୋଗ୍ୟ କାର୍ଯ କରିଥିଲେ। ଆଦିବାସୀ ଓ ହରିଜନମାନଂକୁ ସେ ହିନ୍ଦୁଧର୍ମର ମୂଳନୀତିମାନ ଶିକ୍ଷା ଛଳରେ ବୁଝାଉଥିଲେ। ରାଜକର୍ମଚାରୀମାନଂକୁ ପ୍ରଭାବିତ କରି ଦରବାର ଖର୍ଚ୍ଚରେ ସେ ଟିଟିଲାଗଡ ଦେବଂଧ

ଶିବମନ୍ଦିର, ହରିଶଙ୍କର ଶିବମଂଦିର, ବଲାଂଗିର ସହରର ସମଲେଇ ମଂଦିରର ଜୀର୍ଣ୍ଣ ସଂସ୍କାର ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନତାରେ କରିପାରି ଥିଲେ। ସନାତନ ଧର୍ମ ମଂଦିର ସେ ୧୯୨୬ରେ ସହରବାସୀଂକର ସ୍ୱେଚ୍ଛାକୃତ ଦାନ ଉତ୍ସାହ ଓ ପ୍ରେରଣା ଫଳରେ ନିର୍ମାଣ କରିବାକୁ ସକ୍ଷମ ହୋଇଥିଲେ। ସହରରେ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିବାରେ ଏହି ଧର୍ମ ମଂଦିରର ଭୂମିକା ମୁଖ୍ୟ ଥିଲା। ୧୯୩୬ରେ ରାମଚଂଦ୍ର ବଲାଂଗିର ସହରରେ ପ୍ରାଣତ୍ୟାଗ କରିଥିଲେ।



**ରବିଚଂଦ୍ର ସାଇ**
ପାଟଣା ରାଜ୍ୟର ପ୍ରଥମ ମାଟ୍ରିକ୍ (୧୯୦୪)



# ଶିକ୍ଷାବିତ୍
# ବାଳମୁକୁନ୍ଦ ହୋତା

କୋଶଳର ଦ୍ୱିତୀୟ ଇତିହାସ ଲେଖକ ପ୍ରଧାନ ଶିକ୍ଷକ ବାଳମୁକୁନ୍ଦ ହୋତା। 'ପାଟଣା' କାବ୍ୟ ରଚନା ସମୟରେ ସେ ପୃଥ୍ୱୀରାଜ ହାଇସ୍କୁଲ ବଲାଂଗିରର ପ୍ରବୀଣ ହେଡମାଷ୍ଟର ଥିଲେ। କାବ୍ୟର ୭ମ ସର୍ଗରେ ବିଦ୍ୟାଳୟ ଓ ସାଂସ୍କୃତିକ ଅନୁଷ୍ଠାନର ବର୍ଣ୍ଣନା ନିମ୍ନ ପ୍ରକାରେ କରାଯାଇଅଛି।

'ସଂସ୍ଥାପିତ ପୃଥ୍ୱୀରାଜ ଉଚ୍ଚ ବିଦ୍ୟାଳୟ
ସୁପ୍ରଶସ୍ତ ରମଣୀୟ ଭୂଖଂଡ ମଧ୍ୟରେ
ସାର୍ଦ୍ଧ ତିନିଶତ ଛାତ୍ର ରତ ଅଧ୍ୟୟନେ
ଉଚ୍ଚଶିକ୍ଷା ପ୍ରାପ୍ତ ଦକ୍ଷଗୁରୁ ଚୌଦଜଣ
ବିଦ୍ୟା ଅଧ୍ୟାପନା କାର୍ଯ୍ୟେ ଅଛଂତି ନିଯୁକ୍ତ

x x x

ନାହିଁ ବେଶ ଭୂଷଣରେ ଉଚ୍ଚ ଆଡ଼ଂବର,
କିଂବା ଉଚ୍ଛୃଂଖଳ ଭାବ ଅବା ଅବାଧ୍ୟତା,
ଅଧମ ଶୃଂଖଳି ଯାହା ଭଦ୍ର ଜନ ଘୃଣ୍ୟ,
ଯଥାଗୁରୁ ତଥା ଶିଷ୍ୟ ବିଂବିତ ଯେସନ,
ଗୁରୁଙ୍କ ମହତ୍ତ୍ୱ ଶିଷ୍ୟ ହୃଦୟ ମୁକୁରେ,

x x x x

ଶିକ୍ଷାଦାନେ ଧୂରଂଧର ଶିକ୍ଷକ ନିକର,
ବାଛି ଯେହ୍ନେ କର୍ତ୍ତୃପକ୍ଷ ଆଣିଛଂତି କାହୁଁ,

x x x x

ଜର୍ଜ ଲିଟରାରୀ କ୍ଲବ ସୁବିଶାଳ ହର୍ମ୍ୟ
ବିସ୍ତାରି ବିପୁଳ ବପୁ ଉଭାଶିର ଟେକି
ଉନ୍ନତ ଦେଶର ଚିର ଆଦୃତ ପଠିତ
ସକଳ ପ୍ରକାର ପତ୍ର ପତ୍ରିକା ପୁସ୍ତକ
ଗଚ୍ଛିତ ତହିଁରେ ଯେହ୍ନେ କହୁଛି ସଂକେତେ
ହେ ଜ୍ଞାନ ପିପାସୁ, ବୃଦ୍ଧ ପ୍ରୌଢ଼ ଯୁବକାଦି
ରଖିଛି ମୁଁ ତୁଂଭପାଇଁ ସଯତ୍ନେ ସାଇତି
ଜ୍ଞାନର ଅମୃତ ପଣା, ପିଅ ତା ଆକଂଠ।
ଲଭିବ ପ୍ରତୃପ୍ତି, ହେବ ଆତ୍ମା ସୁଶୀତଳ।
ଓଡ଼ିଆ ଇଂରାଜି ହିଂଦି ବଂଗଳା ଭାଷାର,
ସମସ୍ତ ଉତ୍କୃଷ୍ଟ ଗ୍ରଂଥ ଅଛି ଏ କ୍ଲବରେ।

x x x x

ଶିକ୍ଷାବିତ୍ ବାଳମୁକୁଂଦ ହୋତାଂକର ଜନ୍ମ ୧୮୯୩ରେ ବଲାଂଗିର ସହରର ଦକ୍ଷିଣ ଦିଗକୁ ଦେଓଗାଁ ଗ୍ରାମରେ। ଏହା ଗୋଟିଏ ବଡ଼ଗ୍ରାମ। ଏଠାରେ ଅନେକ ଦିନୁ ପୁଲିସ୍ ଥାନା ମହାକୁମା ଅଛି। ପ୍ରାଥମିକ ଶିକ୍ଷା ଦେଓଗାଁରେ ସାରି ସେ ବଲାଂଗିର ହାଇସ୍କୁଲରେ ମାଟ୍ରିକ ପର୍ଯ୍ୟଂତ ପଢ଼ିଲେ। ସେଠାରୁ ସେ କୃତିତ୍ୱର ସହିତ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଉଚ୍ଚଶିକ୍ଷା ନିମିତ୍ତ କଟକ ରେଭେନ୍ସା କଲେଜରେ ନାମ ଲେଖାଇଲେ। ତାଂକର କୃତିତ୍ୱ ହେତୁ ଦରବାର ମଧ୍ୟ ତାଂକର ଉଚ୍ଚଶିକ୍ଷା ନିମିତ୍ତ ବୃତ୍ତି ଖଂଜିଦେଲେ। ଡକ୍ଟର ହରେକୃଷ୍ଣ ମହତାବଂକର ସେ ସହାଧ୍ୟାୟୀ ଥାଇ ଉଭୟ ଐତିହାସିକ ପ୍ରସଂଗରେ ଭାବ ଆଲୋଚନା କରୁଥିଲେ। ୧୯୧୯ରେ ସେ ଆଇ.ଏ ପାସ୍ କଲେ। ୧୯୨୧ରେ ଇତିହାସରେ ଅନର୍ସ ସହିତ

ସେ ବିଏ ପାସ କଲେ। ଶିକ୍ଷାଦାନରେ ବିଶେଷ ଯୋଗ୍ୟତା ହାସଲ ନିମିତ୍ତ ଦରବାର ତାଂକୁ ବି.ଇଡି. ପଢ଼ିବାକୁ ବୃତ୍ତି ଦେଲେ। ପାଟଣା ବିଶ୍ୱବିଦ୍ୟାଳୟରୁ ଏହି ଯୋଗ୍ୟତା ହାସଲ କରି ବାଳମୁକୁଂଦ ୧୯୧୬ରେ ସ୍ଥାପିତ ରାଜ୍ୟର ଏକ ମାତ୍ର ହାଇସ୍କୁଲରେ ଗ୍ରାଜୁଏଟ୍ ଶିକ୍ଷକ ଭାବରେ ଯୋଗଦେଲେ। ପ୍ରଥମେ ସାଧାରଣ ଶିକ୍ଷକ ଭାବରେ ସେ ବହୁ କୃତୀଛାତ୍ର ଗଠନରେ ସକ୍ଷମ ହୋଇଥିଲେ। ଜଣେ ପୁରାତନ ଖୋର୍ଧା ନିବାସୀ ପ୍ରଧାନ ଶିକ୍ଷକ ବନମାଳୀ ମିଶ୍ରଂକ ବିଦାୟ ପରେ ସେ ୧୯୩୬ରେ ପୃଥ୍ୱୀରାଜ ହାଇସ୍କୁଲର ପ୍ରଧାନଶିକ୍ଷକ ଦାୟିତ୍ୱ ଗ୍ରହଣ କଲେ ଓ ରାଜ୍ୟ ମିଶ୍ରଣ ପର୍ଯଂତ ଏହି କାର୍ଯ ବିଶେଷ ଦକ୍ଷତାର ସହିତ ସଂପାଦନ କରିଥିଲେ। ଗୁଣାତ୍ମକ ଶିକ୍ଷା ପ୍ରଦାନ କ୍ଷେତ୍ରରେ ନିଜକୁ ସଂପୂର୍ଣ୍ଣ ନିୟୋଜିତ କରିବା ଅବସରରେ ଦରବାରକୁ ପ୍ରଭାବିତ କରି ନିଜର ସହକାରୀ ଇତିହାସ ଶିକ୍ଷକ ପୂର୍ଣ୍ଣଚଂଦ୍ର ରଥଂକୁ ରାଜ୍ୟର ଇତିହାସ ଗବେଷଣା ପ୍ରତ୍ନତତ୍ତ୍ୱ ଓ ସ୍ଥାପତ୍ୟ କଳାର ସଂରକ୍ଷଣ ନିମିତ୍ତ ନିଯୁକ୍ତ କରାଇଲେ। କେବଳ ଐତିହାସିକ ପ୍ରବଂଧ ଲେଖିବା ବ୍ୟତୀତ କୋଶଳ ରାଜ୍ୟର ଇତିହାସ ରଚନାରେ ସେ ଅବସର ସମୟ ବ୍ୟୟିତ କଲେ। ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ ଫଳରେ ରାଜ୍ୟତମାମ ବିକ୍ଷିପ୍ତ ପ୍ରାଚୀନ କୀର୍ତିମାନଂକ ଉପରେ ଗବେଷଣାର ସେ ସୁଯୋଗ ନ ପାଇଲେ ମଧ୍ୟ ଇଂରାଜିରେ ପ୍ରାୟ ଦୁଇଶହ ପୃଷ୍ଠାର କୋଶଳ ଇତିହାସ ରଚନା କଲେ। ଏହା ବହୁ ତଥ୍ୟପୂର୍ଣ୍ଣ ଏକ ମୌଳିକ ଗ୍ରଂଥ। ଦେଶରେ ରାଜନୈତିକ ପରିବର୍ତନ ଫଳରେ ପାଟଣା ରାଜ୍ୟର ଓଡ଼ିଶାରେ ମିଶ୍ରଣ ହେଲା ଓ ଏହି ଗ୍ରଂଥ ପ୍ରକାଶିତ ହୋଇ ପାରିଲା ନାହିଁ। ତାଂକର ସୁଯୋଗ୍ୟ ଦାୟାଦ ଅବସରପ୍ରାପ୍ତ ଜିଲ୍ଲାଜଜ୍ ଶ୍ରୀ ଦୟାନିଧି ହୋତା ବର୍ତମାନ ଏ ଦିଗରେ ଉଦ୍ୟମରତ। ଗ୍ରଂଥ ପ୍ରକାଶିତ ହେଲେ ଏହା ବର୍ତମାନ ଗବେଷକ ଓ ଭବିଷ୍ୟତର ଇତିହାସ ଲେଖକମାନଂକୁ ହୁଏତ ପଶ୍ଚିମ ଓଡ଼ିଶାର ଇତିହାସ, ସଂସ୍କୃତି ଓ ପ୍ରତ୍ନତତ୍ତ୍ୱ ବିଷୟରେ ଅନେକ ନୂତନ ଅନାଲୋଚିତ ତଥ୍ୟ ଯୋଗାଇବ।

ଓଡ଼ିଶାରେ ୧୯୪୩ ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା। ପାଟଣା ରାଜ୍ୟର ଅଗ୍ରଗଣ୍ୟ ଶିକ୍ଷାବିତ୍ ଭାବରେ ସେ ସିନେଟ ସଭ୍ୟ ମନୋନୀତ ହୋଇ ବିଶ୍ୱବିଦ୍ୟାଳୟ ଆଇନର ବିଭିନ୍ନ ନିୟମାବଳୀ ଓ ଏକାଡେମିକ କାଉନସିଲ ଆଦି ସଂସ୍ଥା ସଂଗଠନରେ କର୍ତୃପକ୍ଷଂକୁ ସାହାଯ୍ୟ କରିଥିଲେ। ରାଜ୍ୟ ମିଶ୍ରଣ ପରେସେ ପ୍ରଥମେ ସୋନପୁର ଓ ପରେ ଭବାନିପାଟଣା ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ କାର୍ଯକରି ଶେଷରେ ୧୯୫୪ରେ ଅବସର ନେଲେ। ଶିକ୍ଷା ଦିଗରେ ବଲାଂଗିର ଓ ସଂବଲପୁର ଜିଲ୍ଲାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସଂଖ୍ୟା ସେ ସମୟରେ ଅତି ସୀମିତ ଥିଲା। ଅବସରପରେ ଏଥି ନିମିତ୍ତ ଘରୋଇ ଉଦ୍ୟମକୁ ସେ ଉତ୍ସାହିତ କରୁଥିଲେ। ସଂବଲପୁର

ସହରରେ ପଟନାୟକପଡା ମାଇନର ସ୍କୁଲକୁ ସହରର ୨ୟ ଟାଉନ ହାଇସ୍କୁଲ କରାଗଲା। ବାଳମୁକୁଂଦ ଏହାର ପ୍ରଧାନ ଶିକ୍ଷକ ଥିଲେ। ବଲାଂଗିର ସବ୍‌ଡିଭିଜନର ତୁଷରାରେ ହାଇସ୍କୁଲ ଖୋଲାଯିବା ପରେ ନିଜର ପୁରାତନ ଛାତ୍ରଂକ ଅନୁରୋଧରେ ସେ ପୂର୍ଣ୍ଣ ମର୍ଯାଦାପ୍ରାପ୍ତ ହେବା ପର୍ଯଂତ ଏହାର ପ୍ରଧାନ ଶିକ୍ଷକ ଥିଲେ। ପରେ ଯେତେବେଳେ ବଲାଂଗିର ସହରରେ ୨ୟ ବାଳକ ହାଇସ୍କୁଲ ଟାଉନ ହାଇସ୍କୁଲ ନାମରେ ଖୋଲାଗଲା ସବୁରି ସନିର୍ବଂଧ ଅନୁରୋଧରେ ସେ ଏହାର ପ୍ରଧାନ ଶିକ୍ଷକ ହେଲେ। ଅବଶେଷରେ ସେ ୧୯୬୨ରେ ବହୁ ବିଦ୍ୟାଳୟର ପ୍ରତିଷ୍ଠାରେ ଉଦ୍ୟମ ଓ ସବୁ ଦାୟିତ୍ୱରୁ ସଂପୂର୍ଣ ଅବ୍ୟାହିତ ନେଲେ। ବଲାଂଗିର ସହରରେ ଟିକରାପଡ଼ାରେ ନିଜର ଶେଷ ଜୀବନ ଅତିବାହିତ କରି ସେଠାରେ ସେ ସେପ୍‌ଟେଂବର୍ ଛଅ ତାରିଖ ୧୯୭୯ରେ ଶେଷ ନିଶ୍ୱାସ ତ୍ୟାଗ କଲେ।

ତାଂକ ପକ୍ଷରେ ଏହା ଅତି ଗୌରବର ବିଷୟ ଥିଲା ଯେ ବଲାଂଗିର ଜିଲ୍ଲାର ଯେ କୌଣସି ଖ୍ୟାତିପ୍ରାପ୍ତ ବ୍ୟକ୍ତି ସେ ପ୍ରଶାସକ, ସାଂସଦ, ବିଧାୟକ, ମଂତ୍ରୀ, ଡାକ୍ତର, ଓକିଲ, ଶିଳ୍ପପତି ବିଶିଷ୍ଟ ବ୍ୟବସାୟୀ ଯାହା ହୁଅଂତୁ ପଛକେ ତାଂକର ଛାତ୍ର ବୋଲି ନିଜକୁ ଗର୍ବିତ ମନେ କରୁଥିଲେ। ଏମାନଂକ ମଧ୍ୟରେ ଅଛଂତି ଅଇଁଠୁ ସାହୁ, ବାଳକୃଷ୍ଣ ବେହେରା, କିଶୋରୀ ମୋହନ ମିଶ୍ର, ଦୟାନିଧି ହୋତା, ସ୍ୱପ୍ନାନଂଦ ପାଣିଗ୍ରାହୀ, କୃଷ୍ଣଚଂଦ୍ର ପଂଡା, ନରସିଂହ ପ୍ରସାଦ ନଂଦ, ଅଚ୍ୟୁତାନଂଦ ମହାନଂଦ, ରମେଶ ଚଂଦ୍ର ସିଂହ ଭୋଇ, ଅର୍ଜୁନ ଦାସ, ଉମେଶ ଚଂଦ୍ର ସିଂହ ଭୋଇ, ରାଧାମୋହନ ମିଶ୍ର, ନରସିଂହ ଚରଣ ମିଶ୍ର, ଲୋକନାଥ ରାୟ, ମୁରଲିଧର ଗୁରୁ ବ୍ରଜମୋହନ ଠାକୁର, ଡ: ଗୋବିଂଦ ଚଂଦ୍ର ଉଦ୍‌ଗାତା, ରାମପ୍ରସାଦ ମିଶ୍ର, ଡାକ୍ତର ସୂର୍ଯ କୁମାର ବହିଦାର, ଡକ୍ଟର ବିଷ୍ଣୁପ୍ରସାଦ ମହାଂତି, ମଂତ୍ରୀ ନରସିଂହ ମିଶ୍ର, ବିଶିଷ୍ଟ ପ୍ରଶାସକ ବିଘ୍ନରାଜ ପଟେଲ, ଡକ୍ଟର ଦେବୀ ପ୍ରସାଦ ଚୋପଦାର ଓ ଉଦୟ ଚାଂଦ ଅଗରୱାଲା, ଉପେଂଦ୍ର ପ୍ରସାଦ ଗୁରୁ କୁଳପତି ଯୁଧିଷ୍ଠିର ମିଶ୍ର। ଆଡଭୋକେଟ୍ ଲଳିତ ମୋହନ ନଂଦ, ସଂକର୍ଷଣ ପାଣିଗ୍ରାହୀ, ରଜନୀକାଂତ ଭୋଇ, ହରିବଂଧୁ ସ୍ୱାଇଁ, ଭକ୍ତବଂଧୁ ସ୍ୱାଇଁ, ପ୍ରଫୁଲ୍ଲ କୁମାର ବହିଦାର, ନିମାଇ ଚରଣ ଆଚାର୍ଯ, ଲେଖକ ନିତ୍ୟାନଂଦ ଆଚାର୍ଯ, ସାଂବାଦିକ ଗୌରବ ଶିବପ୍ରସାଦ ପାଂଡିଆ, ଶିଳ୍ପପତି ବାଳକିସନ କେଜରିୱାଲ, ନରସିଂହ ଚଉଧୁରୀ ଏମିତି ଅନେକ ଗତାସୁ ଓ ଜୀବିତ ପ୍ରତିଷ୍ଠିତ ବ୍ୟକ୍ତି। ଜଣେ ଶିକ୍ଷାବିତ୍ ପକ୍ଷରେ ଏହାଠାରୁ ଆଉ ଅଧିକ ଗୌରବାନ୍ୱିତ କାର୍ଯ କଅଣ ହୋଇପାରେ ?



"ମାତୃଭାଷା ପୋଥି ଛୁଇଁବାକୁ କରେ
ଅନ୍ୟ କେଉଁ ଜାତି ଲଜ୍ଜାବୋଧ କରେ।"
–ଗଂଗାଧର

# ସାହିତ୍ୟିକ
# ନିତ୍ୟାନଂଦ ବହିଦାର

ନିତ୍ୟାନଂଦ ବହିଦାରଂକ ଜନ୍ମ ୧୯୦୪ରେ ସଂବଲପୁର ସହରରେ। ସେ ପାଠପଢ଼ା ସେଇଠି ସାରିଥିଲେ। ଜଣେ ସଚେତନ ନାଗରିକ ଭାବରେ ସେ ସମାଜସେବା ପ୍ରତି ଆକୃଷ୍ଟ ହୋଇଥିଲେ। ଅସ୍ପୃଶ୍ୟତା ନିବାରଣ କାର୍ଯରେ ସେ ନୃସିଂହଗୁରୁଂକ ସହିତ ଯୋଗଦାନ କଲେ। ଭାରତ ହରିଜନ ସେବା ସଂଘର ସଭାପତି ଅମୃତଲାଲ୍ ଠକ୍କର। ଠକ୍କର ବାପା ୧୯୩୩ରେ ସଂବଲପୁର ଆସିବା ସମୟରେ ନିତ୍ୟାନଂଦ ତାଂକ ସହିତ ପ୍ରଚାର କାର୍ଯରେ ଭାଗନେଲେ। ମହାରାଜା ରାଜେଂଦ୍ର ନାରାୟଣ ଗାଦି ପାଇଲାପରେ 'ପାଟଣା ଦୀପିକା' ନାମରେ ଏକ ସଂବାଦପତ୍ର ରାଜ୍ୟର ମୁଖପାତ୍ର ଭାବରେ ପ୍ରକାଶ କଲେ। ଓଡ଼ିଶା ରାଜ୍ୟର ସମସ୍ତ ଜ୍ଞାତବ୍ୟ ତଥ୍ୟ ଏକତ୍ର କରି ଭାଗିରଥି ମହାପାତ୍ର ରତ୍ନକୋଷ ବା ବିବିଧ ସାର ସଂଗ୍ରହ ନାମରେ ଏକ ଗ୍ରଂଥ ୧୯୩୫ରେ ପ୍ରକାଶ କରିଥିଲେ। ଏଥିରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଭାବରେ ମୋଟ ୫୪ ଜଣଂକର ନାମ ଥିଲା। ସେମାନଂକ ମଧ୍ୟରେ ବାମଂଡାର ଜଳଂଧର ଦେବ, ବଡ଼କୁମାର ବଳଭଦ୍ର ଦେବ, ବରଗଡର ଦୟାନିଧି ମିଶ୍ର ଓ ଶିବପ୍ରସାଦ ଦାସ ବଲାଂଗିରର ପରିକ୍ଷିତ ଖଂଡୁଆଳ ଓ ନିତ୍ୟାନଂଦ ବହିଦାରଂକର ନାମ ଅଂତର୍ଗତ ଥିଲା। ପୃଥ୍ୱୀରାଜ ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ବନମାଳୀ ମିଶ୍ର 'ପାଟଣା ଦୀପିକା'ର ୪ର୍ଥ ବର୍ଷରେ ସଂପାଦକ ଥିଲେ ଓ ନିତ୍ୟାନଂଦ ବହିଦାର ବୋଧହୁଏ ପୂର୍ବରୁ ଏହାର ସଂପାଦକ ଥିଲେ। ମହାରାଜାଂକ

ଅନୁରୋଧ କ୍ରମେ ସେ ଏହାର ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲେ। ପାଟଣା ଦୀପିକାରେ ରାଜ୍ୟର ଖବର ଅଂତର ବ୍ୟତୀତ କୃଷକମାନଂକର ଅବଗତି ନିମିତ୍ତ ତଥ୍ୟ ଯୋଗାଇ ଦିଆଯାଉଥିଲା। ବଲାଂଗିରରେ କୃଷି ବିଷୟରେ ଶିକ୍ଷାଦେବାକୁ ଗୋଟିଏ କୃଷି ସହାୟକ ଶିକ୍ଷା କେଂଦ୍ର ଖୋଲାଯାଇଥିଲା। ଗୋଟିଏ ଆଦର୍ଶ କୃଷି ଫାର୍ମ ମଧ୍ୟ ଏହା ସହିତ ସଂଯୁକ୍ତ ଥିଲା। କୃଷି ବିଷୟରେ ତାଲିମ ପାଇବା ପରେ ଗ୍ରାମ୍ୟସ୍ତରୀୟ କୃଷି କର୍ମୀମାନେ କୃଷକମାନଂକୁ ସାହାଯ୍ୟ କରିବାକୁ ନିଯୁକ୍ତ ହେଉଥିଲେ। ପ୍ରଜାମାନଂକର ହିତ ନିମିତ୍ତ ଦରବାରକୁ ପରାମର୍ଶ ମଧ୍ୟ ଏଥିରେ ସ୍ଥାନ ପାଉଥିଲା। ନିତ୍ୟାନଂଦ ସେଥିରେ ନିୟମିତ ଭାବରେ ଦେବସଭା ନାମରେ ଏକ ସ୍ତଂଭ ମଧ୍ୟ ଲେଖୁଥିଲେ।

ନିତ୍ୟାନଂଦ ବଲାଂଗିରରେ ସ୍ଥାୟୀ ଭାବରେ ନିଜକୁ ସାହିତ୍ୟ ସେବାରେ ନିୟୋଜିତ କଲେ। ବ୍ରହ୍ମପୁରରୁ ପ୍ରକାଶିତ 'ଶିଶିର' ଓ 'ନବୀନ' ଦେବଗଡ଼ର 'ଶଂଖ' ବଲାଂଗିରର 'ଚତୁରଂଗ' ପତ୍ରିକାରେ ତାଂକର ଅନେକ ପ୍ରବଂଧ ପ୍ରକାଶିତ ହେବା ପରେ ପରେ ଉଚ୍ଚକୋଟିର ପ୍ରାବଂଧିକ ଭାବେ ସେ ରାଜ୍ୟରେ ସ୍ୱୀକୃତି ଲାଭ କରିଥିଲେ। ରାଣୀ ଦୁର୍ଗାବତୀ, (୧୯୩୫) ନୀତି ମଂଜରୀ,ବାହୁଡ଼ା ଯାତ୍ରା, ନାରୀ ବିଦ୍ରୋହ, ଭାତୃଭକ୍ତି, ଅଂତିମେ ରତିବିଳାପ ତାଂକର ପ୍ରକାଶିତ ରଚନା ଥିଲା। ମାତ୍ର ଅର୍ଥ ଓ ପୃଷ୍ଠ ପୋଷକତାର ଅଭାବରୁ ତାଂକର ଅନେକ ପାଂଡୁଲିପି ଶେଷ ପର୍ଯଂତ ଅପ୍ରକାଶିତ ରହିଗଲା। 'ପ୍ରକୃତି ଗର୍ଭେ ଗଂଗାଧର' ତାଂକର ସର୍ବଶେଷ ରଚନା।



ମହତ ପ୍ରସାଦେ କ୍ଷୁଦ୍ର ହୁଏ ବଡ଼
ପ୍ରକୃତି ସିଦ୍ଧି ବିଧାନ,
ବିଭାବସୁ କରେ ଅଭ୍ରଖଂଡ ଦେଖ
ଦିଶେ କେଡ଼େ ତେଜୀୟାନ।

–ସ୍ୱଭାବ କବି ଗଂଗାଧର ମେହେର

''କୀର୍ତ୍ତିମାନ ମରି ଭବେ ଲଭଇ ଜୀବନ,
କଳଂକିତ ପ୍ରାଣେ ଭାଇ କିବା ପ୍ରୟୋଜନ।''
—ନନ୍ଦକିଶୋର

# ବିଦ୍ୟାଭୂଷଣ
# ବାସୁଦେବ ପରିଚ୍ଛା

ବାସୁଦେବ ପରିଚ୍ଛା ବଲାଂଗିରରେ ଜନ୍ମ ଗ୍ରହଣ କରିଥିଲେ। ତାଂକ ପିତା ରାଜାରାମ ପରିଚ୍ଛା। ତାଂକ ଘର ଥିଲା ପାଟଣାଗଡ଼ରେ। ବାସୁଦେବ ପୃଥ୍ୱୀରାଜ ସିଂହ ଦେଓଂକର ସହପାଠୀ ଓ ବାଲ୍ୟସାଥୀ ଥିଲେ। ବାସୁଦେବଂକର ବାଲ୍ୟଶିକ୍ଷା ବଲାଂଗିରରେ ସମାପ୍ତ ହୋଇଥିଲା। ପାଠପଢ଼ା ଆରଂଭରେ ଅତି ଅଳ୍ପ ବୟସରେ ସେ ଅନେକ ସଂସ୍କୃତ ଶ୍ଳୋକ ମୁଖସ୍ଥ କରି ଶୁଦ୍ଧ ଭାବରେ ଆବୃତ୍ତି ଦ୍ୱାରା ଶ୍ରୋତାମାନଂକୁ ବିସ୍ମିତ କରୁଥିଲେ। ପରେ ନିଜେ ମଧ୍ୟ କବିତା ଲେଖିବା ଓ ଆବୃତ୍ତି କରିବାରେ ଲାଗିଲେ। ସକାଳୁ ବ୍ରାହ୍ମ ମୂହୁର୍ତ୍ତରେ ଉଠି ବୟସ୍କ ଲୋକମାନେ ଭଗବାନଂକର ଜଣାଣ ପ୍ରାର୍ଥନା ଗୀତ ବୋଲଂତି। ବାସୁଦେବଂକ ଜେଜେମା ତାଂକର କବି ପ୍ରତିଭା ଦେଖି ଥରେ ନାତିକୁ ଗୋଟିଏ ଜଣାଣ ଲେଖିବାକୁ କହିଲେ ଯାହା ସେ ସକାଳୁ ଉଠି ବୋଲିବେ। ଫଳରେ ବାସୁଦେବ ତାଂକ ପାଇଁ ଗୀତଟିଏ ଲେଖିଲେ –

ଅନଘବଦନ ଟେକ ତୋର ହରି
ଉଠ ବାପ ଦଇତାରିରେ ।
ଅରୁଣ କିରଣ ପରାଚୀ ଗଗନ
ରଂଜିଦେଲା ପରସାରିରେ
ବାପ ମୋ ଗୁଣମଣି,
ଉଠ ପାହିଲା ସୁଖ ରଜନୀରେ ।

ଏମିତ ଅନେକ ଛୋଟ ଛୋଟ କବିତା ଭଜନ ଜଣାଣ ଆଦି ସେ ରଚନା କଲେ। ଏହା ସ୍ୱର ଓ ଭାବ ଦୃଷ୍ଟିରୁ ରାଜ୍ୟ ତମାମ ଆଦର ପାଇଲା। ଅନେକ କ୍ଷୁଦ୍ର କବିତା ସେ ରଚନା କଲେ। କେତେଗୁଡ଼ିଏ ତା ମଧ୍ୟରୁ କୁଂଜ କୁସୁମମାଳା ଓ ରାଜପୂଜା ନାମରେ ପ୍ରକାଶିତ ହୋଇଥିଲା। ଏହା ଫଳରେ ପାଟଣା ଦରବାର ତରଫରୁ ତାଂକୁ କବି ସମ୍ମାନ ଦିଆଗଲା ଓ ପରେ ତାଂକୁ ବିଦ୍ୟାଭୂଷଣ (ରୋବଅଫ ଅନର) ଉପାଧିରେ ମଧ୍ୟ ସମ୍ମାନିତ କରାଯାଇଥିଲା। ଅତି ଅଳ୍ପ ବୟସରେ ସେ ପ୍ରାଣତ୍ୟାଗ କରିଥିଲେ। ତାଂକର ରଚନାମାନ ଜିଲ୍ଲାରେ ତାଂକ ଦାୟାଦମାନଂକ ପାଖରେ ବା ମହାଫିଜଖାନା (ରେକଡ ରୁମରେ) ରଖାଯାଇନାହିଁ। ଏହାର ସତ୍ତା ମଧ୍ୟ ମିଳୁନାହିଁ।







# କୋଶଳରତ୍ନ
# ବ୍ରଜବିହାରୀ ବହିଦାର

ଲେଖକ ଓ ପ୍ରାବଂଧିକ ବ୍ରଜବିହାରୀ ବଲାଂଗିର ସହରରେ ୧୯୨୦ରେ ଅକ୍ଟୋବର ୧୦ ତାରିଖରେ ଜନ୍ମଗ୍ରହଣ କରିଥିଲେ। ନିଜର ବିଦ୍ୟାଶିକ୍ଷା ସମାପ୍ତି ପରେ ସେ କିଛିଦିନ ଦରବାର ଅଧୀନରେ ଚାକିରି କଲେ। ତାକୁ ଛାଡ଼ି ଶିକ୍ଷକ ହେଲେ, ମାତ୍ର ତାଂକର ସୃଜନଶୀଳ ପ୍ରତିଭା ଏଥିରେ ତୃପ୍ତ ନ ହେବାରୁ ସେ ତାହା ଛାଡ଼ି ସାହିତ୍ୟ ଚର୍ଚ୍ଚାରେ ନିଜକୁ ନିୟୋଜିତ କଲେ।

ଓଡ଼ିଆ ବ୍ୟତୀତ ବଂଗଳା ହିଂଦି ଓ ଇଂରାଜି ସାହିତ୍ୟରେ ମଧ୍ୟ ତାଂକର ପ୍ରବେଶ ଥିଲା। ସଂସ୍କୃତ ଭାଷା ସେ ଗଭୀର ଭାବରେ ଅଧ୍ୟୟନ କରିଥିବା ତାଂକ ରଚନାମାନଂକରୁ ଜଣାଯାଏ। ସେ ହିଂଦିରେ କୋବିଦ ପାସ୍ କରିଥିଲେ। ସଂସ୍କୃତ ସାହିତ୍ୟରେ ପାରଦର୍ଶିତା ହେତୁ ତାଂକ ରଚନାର ଭାଷା ଶୁଦ୍ଧ ଓ ଋଦ୍ଧିମଂତ ଥିଲା। ସ୍ୱଳ୍ପ ପରିଚିତ ହେଲେ ମଧ୍ୟ ବ୍ରଜବିହାରୀ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ପ୍ରଭାବଶାଳୀ ସ୍ରଷ୍ଟା ଓ ପ୍ରତିଭାବାନ ଚିଂତକ। ମୁଷ୍ଟିମେୟ ଗୁଣଗ୍ରାହୀ ବ୍ୟକ୍ତିଂକର ପ୍ରୀତିପୂର୍ଣ୍ଣ ଅବଦାନକୁ ପାଥେୟକରି ଏହି ନୀରବ ସାହିତ୍ୟ ସାଧକଂକର ସାଧନା ଥିଲା ବିସ୍ମୟକର ଭାବରେ

ଗତିଶୀଳ । ସାହିତ୍ୟ ଥିଲା ତାଂକ ଜୀବନର ନିୟାମକ ପ୍ରବୃତ୍ତି । ସେହି କାରଣରୁ ତାଂକ ଜୀବନଯାତ୍ରା ପଥରେ ଅନ୍ୟ ସମସ୍ତ ପ୍ରସଂଗ ଏହି ଅପ୍ରତିରୋଧ୍ୟ ସାହିତ୍ୟ ପ୍ରାଣ ଦ୍ୱାରା ହିଁ ନିୟଂତ୍ରିତ । କ୍ରମାଗତ ସ୍ୱାସ୍ଥ୍ୟହାନି, ଉତ୍କଟ ଦାରିଦ୍ର୍ୟ, ଈର୍ଷାକାତର ଷଡଯଂତ୍ର, ସ୍ନେହ ଓ ସୋହାଗ ବିହୀନ ବ୍ୟକ୍ତିଗତ ଜୀବନସ୍ଥିତି ମଧ୍ୟରେ ସେ ସାହିତ୍ୟ ପାଇଁ ମଗ୍ନ ବିଭୋର ଥିଲେ । "ମୁଁ ଧନ ପାଇଁ ଲେଖେ ନା, ମାନ ପାଇଁ ଲେଖେ ନା । ଜ୍ଞାନ ପାଇଁ ଲେଖେଁ, ଆନଂଦ ପାଇଁ ଲେଖେଁ । ମନୁଷ୍ୟ ଆନଂଦ ନ ପାଇଲେ କୌଣସି କାର୍ଯ କରେନା ।" ଏହାହିଁ ଥିଲା ତାଂକର ସୃଷ୍ଟି ଆଦର୍ଶ । ବ୍ରଜ ବିହାରୀଂକ ମତରେ ସେହି ଆତ୍ମଜ୍ଞାନ ଓ ଆତ୍ମାନଂଦର ଅଭାବରେ ହିଁ ବର୍ତମାନ ମଣିଷର ପଂଚ ମହାଜୀବନ ବିକୃତ ବିଭ୍ରାଂତ ଓ ପୀଡିତ । ପୀଡ଼ିତ ଓ ବିଭ୍ରାଂତ ମନୁଷ୍ୟକୁ ସ୍ୱମହିମାରେ ପ୍ରତିଷ୍ଠିତ କରିବା ପାଇଁ ତଥା ତାହାକୁ ଆତ୍ମମୁକ୍ତିର ପଥ ନିର୍ଦେଶ କରାଇବା ଉଦ୍ଦେଶ୍ୟରେ ପ୍ରାଚୀନ ମୁନିଋଷିଗଣ ଯେଉଁ ଦେବୋତ୍କ୍ରଳ ପ୍ରଚେଷ୍ଟା କରିଗଲେ ତାହାର ସମସ୍ତ ବିବରଣୀ ସେ ଅଧ୍ୟୟନ ମାଧ୍ୟମରେ ସଂଗ୍ରହ କରିଗଲେ । ଏହି ଋଷି ପ୍ରତିମ ତତ୍ତ୍ୱଦର୍ଶୀ ସାଧକ ସାରସ୍ୱତ ପୁରୁଷଂକର ଚିଂତାଶୀଳ ପ୍ରବଂଧ ହେଉ କିଂବା ସୃଜନଶୀଳ ରଚନା ହେଉ, କଥନିକା ହେଉ ବା ବୃହଦାକାର ଉପନ୍ୟାସ ହେଉ ପ୍ରତ୍ୟେକ ସ୍ତର ଓ କ୍ଷେତ୍ରରେ ଏହି କ୍ରାଂତିଦର୍ଶୀ ଋଷିଂକର ଅଂତର୍ଦୃଷ୍ଟି ଉପଲବ୍ଧି କରିହେବ । ପ୍ରକାଶିତ ଆଠଗୋଟି ରଚନା ବ୍ୟତୀତ ୬୨ ଖଂଡର ପାଂଡୁଲିପି ବର୍ତମାନ ଉପଲବ୍ଧ । ('ରଚନା' ଅକ୍ଟୋବର ୧୯୯୯ ସଂଖ୍ୟାରୁ ଗୃହୀତ)

ତାଂକର ୮ ଖଂଡ ପ୍ରକାଶିତ ରଚନା ମାନଂକ ମଧ୍ୟରେ ପ୍ରେମ ଓ ପରାଜୟ (୧୯୬୨) ସତ୍ୟ କଳ୍ପନା, ଏକ ବୃଂତ ଦୁଇପକ୍ଷୀ, କୈକୟୀ, କବି ବାଲ୍ମିକୀ, ଋଷି ବାଲ୍ମିକୀ ଅଂର୍ତଗତ । ଶେଷୋକ୍ତ ରଚନାରେ ସେ କବି ବାଲ୍ମିକି ଓ ଦସ୍ୟୁ ବାଲ୍ମିକୀ ଏକ ନୁହଂତି ବୋଲି ଦର୍ଶାଇ ଅଛଂତି । ଓଡ଼ିଆ ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ୧୯୬୫ରେ ଦଶଗୋଟି ପ୍ରବଂଧ ଯୁକ୍ତ ତାଂକ ପୁସ୍ତକ 'ଚିଂତା' ପ୍ରକାଶିତ ହୋଇ ତାଂକୁ ଲୋକଲୋଚନକୁ ଆଣିବାରେ ସକ୍ଷମ ହୋଇଥିଲା । ସେ ଆଜୀବନ ବ୍ରହ୍ମଚାରୀ ଥାଇ ଶୃଂଖଳିତ ଆଚରଣ ଦ୍ୱାରା ଅନ୍ୟମାନଂକୁ ପ୍ରଭାବିତ କରୁଥିଲେ । ସ୍ୱାମୀ ଦୟାନଂଦ ସରସ୍ୱତୀଂକର ପ୍ରତିଷ୍ଠିତ ଆର୍ଯ ସମାଜର ବଲାଂଗିର ଶାଖାର ବହୁଦିନ ଧରି ସେ ଦାୟିତ୍ୱରେ ଥିଲେ ।

୧୯୮୭ ସେପ୍ଟେଂବର୍ ୯ ରେ ସେ ମୃତ୍ୟୁବରଣ କଲେ । ମୃତ୍ୟୁ ପରେ ତାଂକର ଅପ୍ରକାଶିତ ରଚନାମାନ ସରକାରୀ ରେକର୍ଡ ରୁମ୍‌ରେ ସଂରକ୍ଷିତ ଥିଲା ଓ ବର୍ତମାନ ଏହା ପ୍ରକାଶୋନ୍ମୁଖୀ ।



"ଏକମେଳ ହେଲେ ବିଶ୍ୱଭୁବନରେ
ଅସାଧ ହୁଏ ସହଜ,
ସୂକ୍ଷ୍ମ ଶଣସୂତ୍ର ମେଳ ହେଲେ ଦେଖ
ବନ୍ଧହୁଏ ମତ୍ତଗଜ।"

-ଗଂଗାଧର

# ପ୍ରଜାମଂଡଳ କର୍ମୀ
# କପୁରଚାଂଦ

ବଲାଂଗିର ଜିଲ୍ଲା ଲୋଇସିଂହ ଥାନାର କେଉଟିପାଲି ଗ୍ରାମରେ ୧୯୦୧ରେ କପୁରଚାଂଦ ଜନ୍ମଗ୍ରହଣ କରିଥିଲେ। ଟିଟିଲାଗଡ଼ ମଧ୍ୟଇଂରାଜି ବିଦ୍ୟାଳୟରେ ସେ ପାଠପଢ଼ିଲେ। ପ୍ରଥମ ଶ୍ରେଣୀରେ ପାସ କଲେ। ରାଜ୍ୟର ଏକମାତ୍ର ହାଇସ୍କୁଲ ବଲାଂଗିରରେ। ସେଠାରେ ପଢିବାର ସୁଯୋଗ ତାଂକୁ ମିଳିଲାନାହିଁ। ପାଠପଢ଼ା ସେତିକିରେ ସରିଲା। ଟିଟିଲାଗଡ଼ ତହସିଲ ଅଫିସରେ ସେ କିଛିଦିନ କାମ କଲେ। ଅନ୍ୟ ଦେଶୀୟ ରାଜ୍ୟପରି ପାଟଣାରାଜ୍ୟରେ ପ୍ରଜାମାନଂକର ଶୋଷଣ ଉତ୍କଟ ନ ଥାଏ। ତଥାପି ବ୍ରିଟିଶ ଓଡ଼ିଶାରେ ମହାତ୍ମାଗାଂଧିଂକର ଅସହଯୋଗ ଆଂଦୋଳନର ପ୍ରଭାବ ଚାରିଆଡ଼େ ପଡ଼ିଲା। ପାଟଣା ରାଜ୍ୟର ପ୍ରଜାମାନେ ମଧ୍ୟ ସ୍ୱାୟତ୍ତ ଶାସନ ଦାବିକଲେ। କପୁରଚାଂଦ ଏହି ଆଂଦୋଳନ ପ୍ରତି ସହାନୁଭୂତିଶୀଳ ଥିଲେ। ସେମାନଂକୁ ସରକାରୀ ଖବର ଅଂତର ଗୁପ୍ତରେ ଯୋଗାଇ ଦେଇଥିଲେ। ଯେଉଁଠି ସେ ଅନ୍ୟାୟ ଆଚରଣ ଓ ପ୍ରଜାମାନଂକର ଶୋଷଣ ଲକ୍ଷ୍ୟ କଲେ ତାକୁ ସେ ପ୍ରଜାମଂଡଳକୁ ଇଂଧନ ଭାବରେ

ଯୋଗାଉଥିଲେ। ଶେଷରେ ସେ ଦରବାର ଚାକିରି ଛାଡ଼ିଲେ ଓ ଜଣେ କର୍ମୀ ଭାବରେ ଏହି ଆଂଦୋଳନରେ ଯୋଗଦେଲେ। କୃଷକ ପ୍ରଜାମାନଂକୁ ରାଜଶାସନ ବିରୋଧରେ ଉତ୍ତେଜିତ କରି ବେଆଇନ କାର୍ଯ କରିବାକୁ ପ୍ରସ୍ତୁତ କରୁଥିବା ଅଭିଯୋଗରେ ତାଂକ ନାଁରେ ମକଦ୍ଦମା ହେଲା। ବିଚାରରେ ସେ କିଛିଦିନ ଜେଲ ଗଲେ। ଜେଲରୁ ଖଲାସ ହୋଇ ସେ ଗଂଡା ଜାତିର ବୁଣାଳି ହରିଜନମାନଂକୁ ସଂଗଠିତ କରି ସେମାନଂକର ଖଦିବୁଣା କାମରେ ସୂତା ଓ ତଂତ ସରଂଜାମ ଶସ୍ତାରେ ଓ ସୁବିଧାରେ ଯୋଗାଇ ଦେବାକୁ ଆଂଦୋଳନ କଲେ। ଆଗରୁ ପାଟଣା ଦରବାର ହରିଜନମାନଂକୁ ମଂଦିର ପ୍ରବେଶ ଅଧିକାର ଦେଇ ସାରିଥିଲେ। ରାଜ୍ୟ ବାହାରେ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ, ଓଡ଼ିଶାର ଗଡ଼ଜାତ ଆଂଦୋଳନ ନେତା ସାରଂଗଧର ଦାସ ଓ ଓଡ଼ିଶାର ପ୍ରଧାନମଂତ୍ରୀ ହରେକୃଷ୍ଣ ମହତାବଂକ ସହିତ ସେ ସ୍ୱାଧୀନତା ଆଂଦୋଳନ ସମୟରେ ଘନିଷ୍ଠ ସଂପର୍କ ରକ୍ଷା କରିଥାଆଂତି। ପାଟଣା ରାଜ୍ୟରେ ତାଂକ ପ୍ରଜା ମଂଡଳର ପ୍ରତିନିଧି ଭାବରେ କପିଳେଶ୍ୱର ପ୍ରସାଦ ନଂଦ ମଂତ୍ରୀ ହୋଇ ପରେ ମତାଂତର ଯୋଗୁ ଇସ୍ତଫା ଦେଇଥିଲେ। ଦେଶ ସ୍ୱାଧୀନ ହେଲା ପରେ ୧୯୪୮ ଜାନୁଆରିରେ ସବୁ ଗଡ଼ଜାତ ସହିତ ପାଟଣା ରାଜ୍ୟ ଓଡ଼ିଶାରେ ମିଶିଗଲା। ତାଂକର ଲୋକସଂପର୍କ ଓ ଜନସେବା ନିମିତ୍ତ ସେ ୧୯୪୮ରୁ ୧୯୫୧ ଯାଏଁ ଓଡ଼ିଶା ବିଧାନ ସଭାର ଜଣେ ସଭ୍ୟ ଭାବରେ ମନୋନୀତ ହୋଇଥିଲେ।

୧୯୫୧-୫୨ ନିର୍ବାଚନରେ ସେ ଅଂଶ ଗ୍ରହଣ କରି ନ ଥିଲେ। କଂଗ୍ରେସ ଦଳ ପାଟଣା ରାଜ୍ୟରୁ ମୂଳପୋଛ ହୋଇଯିବାରୁ କପୁରଚାଂଦ ରାଜନୀତିରୁ ଅବସର ନେଲେ। ନିଜ ଗ୍ରାମରେ ରହି ସେ ଲୋକମାନଂକୁ ମହାତ୍ମାଗାଂଧିଂକର ରଚନାତ୍ମକ କାର୍ଯକ୍ରମରେ ସଂପୃକ୍ତ କରାଇବାରେ କୃତୀ ଥିଲେ। ସାଧାରଣ ଜନତା ମଧ୍ୟରେ ଦେଶାତ୍ମବୋଧ ଜାଗ୍ରତ କରାଇବା ଉଦ୍ଦେଶ୍ୟରେ ମାତୃପୂଜା ନାମରେ ଏକ କବିତାଗୁଚ୍ଛ ସେ ରଚନା କରି ପ୍ରକାଶ କରିଥିଲେ।

ପରିଣତ ବୟସରେ ତାଂକର ମୃତ୍ୟୁ ହେଲା। ଜିଲ୍ଲାର ଜଣେ ନିଷ୍ଠାପର ପ୍ରଜାମଂଡଳ କର୍ମୀଭାବରେ ସେ ସ୍ମରଣୀୟ।



"ସ୍ୱଜାତି ଉନ୍ନତି ଚିଂତି ଦିବାରାତି
ସାଧନେ ହୁଅ ତତ୍‌ପର
ସ୍ୱଦେଶ ଗୌରବ କରି ଅନୁଭବ
ଜନମ ସାର୍ଥକ କର।"

–ଗୋବିଂଦ ରଥ

# ନାଟ୍ୟକାର ଶିକ୍ଷକ
# ରଘୁନାଥ ପ୍ରସାଦ

ରଘୁନାଥ ପ୍ରସାଦ ବଲାଂଗିର ଜିଲ୍ଲାର ଜଣେ ପରିଚିତ ପୁରାତନ ଶିକ୍ଷକ। ମାତ୍ର ତାଂକର ସାହିତ୍ୟ ସେବା ସବୁଦିନେ ଲୋକଲୋଚନ ଅଗୋଚରରେ ରହିଗଲା। ୧୯୦୪ ଅଗଷ୍ଟରେ ତାଂକର ଜନ୍ମ। ଲୋଇସିଂହାର ପରମାନଂଦ ତାଂକ ବାପା ଓ ମାଳାବତୀ ତାଂକ ମାଆ। ଗାଁ ବିଦ୍ୟାଳୟରେ ସେ ପାଠ ପଢ଼ିଲେ। ରାଜ୍ୟରେ ଏକମାତ୍ର ହାଇସ୍କୁଲ ଥାଏ ବଲାଂଗିରରେ। ରାଜ୍ୟରୁ ମାଟ୍ରିକ୍ ପରୀକ୍ଷାରେ ସର୍ବୋଚ୍ଚ ନଂବର ରଖିବା ଛାତ୍ରଂକୁ ଦରବାର ତରଫରୁ ଏକ ପୁରସ୍କାର ଦିଆଯାଉଥାଏ। ୧୯୨୪ରେ ସେଇ ପୁରସ୍କାର ପାଇଲେ ରଘୁନାଥ ପ୍ରସାଦ। ତାଂକୁ ରାଜ୍ୟ ବୃତ୍ତି ଦିଆଗଲା। ରେଭେନ୍‌ସା କଲେଜରେ ସେ ଆଇ.ଏସ୍.ସି. ପାସ୍ କରି ବି.ଏସ୍.ସି. ପଢ଼ିଲା ବେଳେ ତାଂକର ବାପା ମରିଗଲେ। ବଡ଼ପୁଅ। କୁଟୁଂବ ପୋଷିବା ଦାୟିତ୍ୱ ତାଂକ ଉପରେ ପଡ଼ିଲା। ପଢ଼ାରେ ଡୋରି ବଂଧା ଗଲା। ରଘୁନାଥ ଲୋଇସିଂହା ମିଡିଲ ଭର୍ନାକୁଲାର ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ରହିଲେ। ବଲାଂଗିର ହାଇସ୍କୁଲରେ ବହୁତ ପିଲା ହେଲେ। ଦରବାର ତରଫରୁ ଗୋଟିଏ ଅଧିକା ମଧ୍ୟ ଇଂରାଜୀ ବିଦ୍ୟାଳୟ ଖୋଲାଗଲା। ୧୯୪୦ରେ ରଘୁନାଥ ପ୍ରସାଦ ଲୋଇସିଂହାରୁ ଆସି ସେହି ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହେଲେ। ଚାକିରି ଶେଷ ପର୍ଯଂତ ସେ ସେହି ବିଦ୍ୟାଳୟରେ ଥିଲେ। ଅନେକ କୃତୀ ଛାତ୍ର ସେ ଗଢ଼ିଛଂତି।

ଲୋଇସିଂହା ମଧ୍ୟ ଭର୍ନାକୁଲାର ବିଦ୍ୟାଳୟରେ ପଢ଼ି ବିଘ୍ନରାଜ ପଟେଲ ପାସ୍ କଲେ। ତାଂକର ପ୍ରତିଭାର ପରିଚୟ ବାଲ୍ୟକାଳରୁ ଅନ୍ୟ ଶିକ୍ଷକ ଓ ରଘୁନାଥ ପ୍ରସାଦ ପାଇଥିଲେ। ମଧ୍ୟ ଭର୍ନାକୁଲାର ବିଦ୍ୟାଳୟରେ ଇଂରାଜୀ ଶିକ୍ଷାର ବ୍ୟବସ୍ଥା ନଥାଏ। ବିଘ୍ନରାଜଙ୍କୁ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ଇଂରେଜୀ ଶିକ୍ଷାର ବଂଦୋବସ୍ତ କରିବାକୁ ସେ ହାଇସ୍କୁଲର ପ୍ରଧାନଶିକ୍ଷକ ବାଳମୁକୁଂଦ ହୋତାଂକୁ ଲେଖିଲେ। ଆଉ ଜଣେ କୃତୀ ଛାତ୍ର ସହପାଠୀ ନରସିଂହ ପ୍ରସାଦ ଦାସଂକ ସହିତ ବିଦ୍ୟାଳୟ ହଷ୍ଟେଲରେ ଗୋଟିଏ କୋଠରିରେ ବିଘ୍ନରାଜ ରହିବାର ବ୍ୟବସ୍ଥା କରାଗଲା। ଅଳ୍ପ ଦିନେ ବିଘ୍ନରାଜ ଇଂରେଜୀରେ ସମସ୍ତଂକୁ ଟପିଗଲେ। ପରେ ତାଂକର ଅନେକ ଇଂରେଜ କବିତା ଚାରିଆଡ଼େ ପ୍ରଶଂସିତ ହୋଇଥିଲା। ୧୯୨୭ରୁ ୧୯୭୧ ପର୍ଯ୍ୟଂତ ଚଉରାଳିଶ ବର୍ଷ ରଘୁନାଥ ପ୍ରସାଦ ଶିକ୍ଷକତା କରିଥିଲେ। ବହୁ ପରିଦର୍ଶକ ଓ ହାଇସ୍କୁଲ ପ୍ରଧାନ ଶିକ୍ଷକ ବଲାଂଗିର ଆସିଥିଲେ। ସମସ୍ତେ ଏକସ୍ୱରରେ ରଘୁନାଥଂକର ଶିକ୍ଷା ଦାନର ପ୍ରଶଂସା କରି ଦରବାରକୁ ଜଣାଇଲେ। ବିଦ୍ୟା ଶିକ୍ଷା ସହିତ ବିଦ୍ୟାଳୟରେ ସେ ରେଡକ୍ରସ ଓ ସ୍କାଉଟ ଟ୍ରେନିଂ ଦାୟିତ୍ୱ ମଧ୍ୟ ତୁଲାଇଲେ। ନାନା ପ୍ରକାର ଖେଳ ପିଲାମାନଂକୁ ଶିଖାଇଲେ। ଜିମନାଷ୍ଟିକ୍, ଡ୍ରିଲ୍ ଲେଜିମ ଭାଲା ଲାଠି ଆଦି ସହିତ ଫୁଟ୍‌ବେଲ୍ ଟିମ୍ ମଧ୍ୟ ଗଠନ କରାଇଲେ। ହାଇସ୍କୁଲର ଫୁଟବଲ ଟିମ୍ ଖୁବ୍ ନାମ କରୁଥିଲା। ସଂବଲପୁର, ଭବାନୀପାଟଣା ସୋନପୁର ଆଦି ଜାଗାରେ ସେମାନେ ନିଜର କ୍ରୀଡ଼ା ଦକ୍ଷତା ଦେଖାଇଥିଲେ। ଏହା ସହିତ ରଘୁନାଥ ସଂଗୀତ ଚର୍ଚ୍ଚା କରୁଥିଲେ। ନିଜେ ଓଡ଼ିଶାର ପ୍ରତିଷ୍ଠିତ କଳାକାରଂକ ପାଖରୁ ନାଟକ, ଅଭିନୟ ନିର୍ଦ୍ଦେଶନା ଆଦି ଶିକ୍ଷା କଲେ। ସେଇ ଅନୁକରଣରେ ପାଟଣା ରାଜ୍ୟରେ ଦଳ ଗଠନ କରି କଳାକାର ସୃଷ୍ଟି କରାଇଲେ। ତାଂକର ଉଚ୍ଚକୋଟିର ନିର୍ଦ୍ଦେଶନା ଯୋଗୁ ଛୁଟି ସମୟରେ ନିର୍ଦ୍ଦେଶନା ଦେବାକୁ ଅନେକ ଆଡୁ ନିମଂତ୍ରଣ ଆସୁଥିଲା। ସ୍ୱୟଂ ଜଣେ କୁଶଳୀ ଅଭିନେତା ନିପୁଣ ନିର୍ଦ୍ଦେଶକ ଓ ସର୍ବୋପରି ସାହିତ୍ୟ ସଂଗୀତ ନାଟକ କ୍ଷେତ୍ରରେ ଜଣେ ପରମ ଉତ୍ସାହୀ ସାଧକ ଥାଇ ରଘୁନାଥ ନିଜେ ଗୀତ ଲେଖି ଗୀତ ବୋଲି ସ୍ୱରଖଂଜି ଶିଖାଇ କଳାକାର ସୃଷ୍ଟି କରିପାରୁଥିଲେ। ନାଟକ ସଂଗୀତ ସବୁ ବ୍ୟାପାରରେ ସେ ନିର୍ଦ୍ଦେଶ ଦେଇପାରୁଥିଲେ। ଏକଦା ମଂତ୍ରୀ ଥିବା ରାମପ୍ରସାଦ ମିଶ୍ର, ସ୍ୱର୍ଗତ ଡକ୍ଟର ଗୋବିଂଦ ଚଂଦ୍ର ଉଦ୍‌ଗାତା କଳାକର ଥାଇ ତାଂକ ବହୁମୁଖୀ ପ୍ରତିଭା ଓ ଅଭିନୟକୁ ସମ୍ମାନ ପ୍ରଦର୍ଶନ କରୁଥିଲେ।

ରଘୁନାଥଂକର ବହୁମୁଖୀ ପ୍ରତିଭାର ମୁଖ୍ୟ ଦିଗ ଥିଲା ତାଂକର ସାହିତ୍ୟ ସାଧନା। ଦୀର୍ଘ ଶିକ୍ଷକ ଜୀବନ ମଧ୍ୟରେ ସୀମିତ ସୁଯୋଗ ଥାଇ ସେ ଲେଖିଚାଲିଲେ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ମାନ। ଏଗୁଡ଼ିକ ମଂଚସ୍ଥ ହୋଇ ପ୍ରଶଂସିତ ହେଲା। ଉଲ୍ଲେଖଯୋଗ୍ୟ ପୌରାଣିକ ନାଟକ ମାନ ହେଲା। ପ୍ରବୀର ପତନ

୧୯୪୨, ହରିଶ୍ଚଂନ୍ଦ୍ର ୧୯୪୫, ଧ୍ରୁବ ୧୯୬୯, ସୁଦାମା ୧୯୬୯, ଗୋବିଂଦ ଚଂନ୍ଦ୍ର ୧୯୭୦, ଚଂନ୍ଦ୍ରହାସ ୧୯୭୧, ରାମ ହନୁମାନ ସମର ୧୯୭୧ ଇନ୍ଦୁମତୀ ୧୯୭୧, ପ୍ରହଲ୍ଲାଦ ୧୯୭୨, ରାଜା ଅଂବରୀଶ ୧୯୭୨, ଭାତୃଭକ୍ତ ଭରତ ୧୯୭୩, ସୀତା ୧୯୭୩, ରାଜା ସୁରଥ ୧୯୭୩, ଜ୍ୟେଷ୍ଠ ପାଂଡବ କର୍ଣ୍ଣ ୧୯୭୩, ଶ୍ରୀବତ୍ସ ଚିଂତା ୧୯୭୪, ଓ ଆହୁରି ଅନେକ ଅସଂପୂର୍ଣ୍ଣ। ଐତିହାସିକ ନାଟକ ମଧ୍ୟରେ ସଂଯୁକ୍ତା ୧୯୪୨, ଗୁଲସାନା ୧୯୨୭, ଓଡ଼ିଆବୀର ୧୯୪୫, ରାଜପୁତ ବୀରାଂଗନା ୧୯୭୧, ମୀରାବାଈ ୧୯୭୨, ଇତ୍ୟାଦି। ସାମାଜିକ ନାଟକ ମାନ ହେଲା-ସ୍ୱର୍ଣ୍ଣଲତା ୧୯୨୪, ମିଶର କୁମାରୀ ୧୯୩୪, ସାଧନା ୧୯୭୦, ଦସ୍ୟୁ ପ୍ରତାପ ୧୯୭୦ ଓ କାଳ୍ପନିକ ନାଟକ ବନଶ୍ରୀ ୧୯୭୨। ଏତଦ୍ ବ୍ୟତୀତ କେତେକ ଖଂଡ କବିତା, ଗଳ୍ପଗୁଚ୍ଛ ଓ ଅନୁବାଦ ଗ୍ରଂଥ ତାଂକର ରଚନାର ଅଂତର୍ଗତ। କେତେଗୁଡିଏ ସଂସ୍କୃତ ଶ୍ଳୋକର ଆଂଶିକ ଅନୁବାଦ ହେଲା ତାଂକର ଜ୍ଞାନତତ୍ତ୍ୱ। ଗଳ୍ପଗୁଚ୍ଛରେ ରହିଛି କଥା ପ୍ରସଂଗ। ଏହାର ଗଳ୍ପ ପଂଚକ ପ୍ରଥମ ଭାଗ। ପ୍ରବଚନ ମୂଳକ ପଂଚଗଳ୍ପ ଦ୍ୱିତୀୟ ଭାଗ। ପ୍ରଶ୍ନାବଳୀ ପଂଚକଥା ୩ୟଭାଗ। ପଂଚବୀର କାହାଣୀ ୪ର୍ଥ ଭାଗ ଓ ନାମବାଚୀ ପଂଚଗଳ୍ପ ୫ମ ଭାଗ। ସାବିତ୍ରୀ ବ୍ରତ କଥା ସେ ମୂଳ ସଂସ୍କୃତ ରଚନାରୁ ଅନୁବାଦ କରି ଅଛଂତି। ଏହା ବାଦେ ଅନେକ କବିତା ସେ ଲେଖିଥିଲେ ଯାହା ଇତସ୍ତତଃ ହୋଇ ରହିଛି। ମାତ୍ର ଏହି ସମସ୍ତ ସାହିତ୍ୟିକ କୃତି ଏ ପର୍ଯ୍ୟଂତ ଅପ୍ରକାଶିତ ଓ ରଘୁନାଥ ପ୍ରସାଦ ସାହିତ୍ୟିକ ଭାବରେ ଅଜ୍ଞାତ।

ବ୍ୟକ୍ତିଗତ ଜୀବନ ତାଂକର କରୁଣ ଥିଲା। ରଘୁନାଥ ଆଦ୍ୟ ଯୌବନରେ ପିତାଂକୁ, ବିବାହ ପରେ ପତ୍ନୀ ଶକୁଂତଳା ଚାରିଗୋଟି ସଂତାନ ଓ ଶେଷ ଜୀବନରେ ମାତାଂକୁ ହରାଇ ଏକ ପରେ ଏକ ବିୟୋଗ ଭୋଗ କରି ଶେଷ ଜୀବନ ନିଃସହାୟ ଭାବରେ କଟାଇଥିଲେ। ଅତି ବିଳଂବରେ ତାଂକର ପ୍ରତିଭା ଲୋକଲୋଚନକୁ ଆସିଲା। ସେ ଆଦର୍ଶ ଶିକ୍ଷକ ଭାବରେ ୧୯୬୪ରେ ପ୍ରଶଂସାପତ୍ର ପାଇଥିଲେ। ସମାଜସେବା ନିମିତ୍ତ ସରକାରଂକ ଦ୍ୱାରା ପ୍ରଶଂସିତ ହେଲେ। ୧୯୭୧ରେ ଶେଷ ଜୀବନରେ ତାଂକର ସାହିତ୍ୟିକ ଅବଦାନ ନିମିତ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଓଡ଼ିଶା ସରକାରଂକର ସାଂସ୍କୃତିକ ବିଭାଗ ବ୍ୟତୀତ ଅନେକଗୁଡ଼ିଏ ବେସରକାରୀ ସାହିତ୍ୟ ସଂସ୍ଥା ଓ ଅନୁଷ୍ଠାନ ତାଂକୁ ସଂବର୍ଧିତ କରିଥିଲେ। ଅବହେଳିତ ଅନାଲୋଚିତ, ଅପ୍ରଂଶସିତ ଆଜୀବନ ସାହିତ୍ୟ ସେବୀ ଏହି ଆଦର୍ଶ ଶିକ୍ଷକଂକର ୧୯୮୩ ଡିସେଂବର ୨୯ରେ ବଲାଂଗିରରେ ସ୍ୱର୍ଗବାସ ହେଲା।





# ଟିଟିଲାଗଡ଼ର ଭକ୍ତକବି
# ଅଗସ୍ତିମାଷ୍ଟ୍ରେ

୧୯୪୮ରେ ଦେଶୀୟ ରାଜ୍ୟ ପାଟଣାର ଓଡ଼ିଶାରେ ମିଶ୍ରଣ ସମୟରେ ରାଜ୍ୟରେ ବଲାଂଗିରରେ କେବଳ ପୃଥ୍ୱୀରାଜ ହାଇସ୍କୁଲ ଥିଲା । ଟିଟିଲାଗଡ଼ ଜିଲ୍ଲାର ସର୍ବବୃହତ୍ ଉପଖଂଡର ସଦର ମହକୁମା ଓ ଏକ ବିକାଶମୁଖୀ ସହର ଥିବାଯୋଗୁ ଏଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିବାକୁ ଶିକ୍ଷା ବିଭାଗ ନିଷ୍ପତ୍ତି ନେଲେ । ସେତେବେଳେ ସହରରେ ଗୋଟିଏ ମଧ୍ୟଇଂରାଜୀ ବିଦ୍ୟାଳୟ ଥାଏ । ଏହାକୁ ହାଇସ୍କୁଲରେ ପରିଣତ କରିବା ନିଷ୍ପତ୍ତି ନିଆଗଲା । ଅଧିକା ଶିକ୍ଷକ ନିଯୁକ୍ତି ନ ଦେଇ ଅଷ୍ଟମ ଶ୍ରେଣୀ ଖୋଲାଗଲା । ସେତେବେଳେ ମାଇନର ସ୍କୁଲରେ ଜଣେ ଓଡ଼ିଆ ପଂଡିତ ଥିଲେ । ତାଂକ ସହିତ କଥାବାର୍ତ୍ତା କରି ଗଡଜାତମାନଂକ ପାଇଁ ଖୋଲାଯାଇଥିବା ଶିକ୍ଷାବିଭାଗର ବଲାଂଗିର ବିଶେଷ (ସ୍ପେଶାଲ) ମଂଡଳର ସ୍କୁଲ ଇନ୍‌ସପେକ୍ଟର ଗୁଣଗ୍ରାହୀ ହରିହର ମିଶ୍ର ତାଂକୁ ଓଡ଼ିଆ ପଢ଼ାଇବାକୁ ମନୋନୀତ କଲେ । ମାତ୍ର କାଗଜପତ୍ରରୁ ଜଣାପଡ଼ିଲା ତାଂକ ଶିକ୍ଷାଗତ ଯୋଗ୍ୟତା ସପ୍ତମଶ୍ରେଣୀ ପାସ୍ ପରେ

ଗୁରୁଟ୍ରେନିଂ ମାତ୍ର। ତେଣୁ ଅଳ୍ପଦିନ ପରେ ଆଉ ଜଣକୁ ଏଥିପାଇଁ ନିଯୁକ୍ତି ଦିଆଗଲା। ଏହି ଶିକ୍ଷକ ଜଣଂକର ନାମ ଥିଲା ଗୋକୁଳାନଂଦ ଅଗସ୍ତି। ଦୁର୍ବଳ ଶରୀର, ଚକ୍ଷୁ ଦୀପ୍ତିମଂତ। ଛାତ୍ରମାନଂକୁ ବିଦ୍ୟାଳୟ ସମୟ ପରେ ପୁରାଣ ଶାସ୍ତ୍ରରୁ ନୀତିଶିକ୍ଷା ଦେବା, ସଂସ୍କୃତ ଶ୍ଳୋକ ଶିଖାଇବା ତାଂକର ସଉକ ଥାଏ। ସବ୍‌କଲେକ୍ଟରଂକ ଘର ସାମନାରେ ମାଉସୀମା ଗୁଡ଼ି। ତାକୁ ଲାଗି ଅଳ୍ପ କେତୋଟି ବାସଗୃହ ଥାଏ। ସେଥିରୁ ଗୋଟିକରେ ସେ ରହୁଥାଂତି। ଅଗସ୍ତିମାଷ୍ଟ୍ରେ କହିଲେ ସମସ୍ତେ ତାଂକୁ ବୁଝୁଥାଆଂତି।

ପାଟଣାଗଡ଼ ସବ୍‌ଡିଭିଜନର ମଂଡଳ ଗ୍ରାମରେ ୧୯୦୨ ଆଷାଢ଼ ପୂର୍ଣିମାଦିନ ଗୋକୁଳାନଂଦ ଜନ୍ମ ହୋଇଥିଲେ। ତାଂକ ବାପାଂକ ନାମ ଥିଲା କେଶବଚଂଦ୍ର ଓ ମାତାଂକର ନାମ ଯଶୋଦା।/ଗାଁରେ ପାଠସାରି ସେ ବେଲପଡ଼ା ମାଇନର ସ୍କୁଲରେ ପଢ଼ିଲେ। ୧୯୧୮ରେ ସେ ମଧ୍ୟ ଭର୍ନାକୁଲାର ଯୋଗ୍ୟତା ଧରି ପ୍ରାଥମିକ ଶିକ୍ଷକ ନିଯୁକ୍ତି ପାଇଲେ। ପ୍ରାଥମିକ ଶିକ୍ଷକମାନଂକୁ ତାଲିମ ଦେବାକୁ ଦରବାର ସମୟରେ ବଲାଂଗିରରେ ଗୋଟିଏ ଏଲିମେଂଟାରୀ ଟ୍ରେନିଂ ସ୍କୁଲ ଥିଲା। କିଛିଦିନ ଶିକ୍ଷକତା କଲାପରେ ସେଠାରୁ ସେ ଇ.ଟି. ପାସ୍ କଲେ। ବଲାଂଗିର ସହର ପାଖରେ ପିପରଡ଼ା ଗୋଟିଏ ବଡ଼ ଗ୍ରାମ। ଏଠାରେ ଜଣେ ବିଦ୍ୟା ଉତ୍ସାହୀ ବୈଷ୍ଣବ ଗୌଂତିଆ ଥିଲେ। ତାଂକ ସଂସ୍ପର୍ଶରେ ଆସି ଯୁବକ ଗୋକୁଳାନଂଦ ଈଶ୍ୱରଂକ କେତୋଟି ଭକ୍ତିମୂଳକ ସ୍ତବ ଛଡ଼ାତୁଳସୀ ନାମ ଦେଇ ରଚନା କଲେ। ଲୋକମାନଂକୁ ଏହା ଶୁଣିବାକୁ ମଧୁର ଲାଗିଲା। ଖଂଡପଡି ଭକ୍ତ ବିନୋଦ ଅଚ୍ୟୁତାନଂଦ ପଂଡା, ନିଜ ଖରଚରେ ତାକୁ ଛପାଇଲେ। ପାଟଣା ରାଜ୍ୟର ବେଲଗାଁ, ପିପରଡା, ଆଟଗାଁ, ଜରାସିଂହା, ଗୁଡିଘାଟ, ମହିମୁଂଡ, ଆଦି ପ୍ରାଥମିକ ବିଦ୍ୟାଳୟମାନଂକରେ କାମ କରି ସେ ଶେଷକୁ ଟିଟିଲାଗଡ଼ ମାଇନର ସ୍କୁଲକୁ ୧୯୪୫ରେ ବଦଳି ହୋଇ ଆସିଲେ। ଶିକ୍ଷାଦାନ ସହିତ ସେ ନିଜର ରଚିତ ଭକ୍ତିରସାତ୍ମକ କବିତା, ଜଣାଣ, ଚଉତିଶା, ଲୋକମାନଂକୁ ଶୁଣାଇ ସେମାନଂକୁ ଆନଂଦ ଦେଉଥିଲେ ଓ ନିଜେ ଆନଂଦିତ ହେଉଥିଲେ। ୧୯୨୭ରେ ସେ ପିପରଡ଼ା ଗ୍ରାମରେ ଉର୍ମିଳାଂକୁ ବିବାହ କରିଥିଲେ। କିଛିକାଳ ପରେ ସେ ବଲାଂଗିର ସହରର ନରସିଂହସ୍ୱାମୀ ମଂଦିରର ମହଂତ କୁଂଜବିହାରୀ ଦାସଂକଠାରୁ ବୈଷ୍ଣବ ଦୀକ୍ଷା ଗ୍ରହଣ କଲେ। ଟିଟିଲାଗଡ଼ରେ ସେ ୧୯୬୦ରେ ଅବସର ନେଲେ। ଏହାର ଦୀର୍ଘ ୨୭ ବର୍ଷ ପରେ ତାଂକର ଦେହାବସାନ ଘଟେ। ଏହି ସମୟ  ସେ ଭଗବଦ୍ ଚର୍ଚା ଓ ନାମଜପ ସହିତ ସାହିତ୍ୟ ଚର୍ଚାରେ କଟାଇଦେଇଥିଲେ। ତାଂକର ରଚନାମାନ ଈଶ୍ୱର ଭକ୍ତିର ବିଭିନ୍ନ ଦିଗରୁ ଆସୁଥିଲା। 'ଛଡ଼ାତୁଳସୀ' ପରି ଆତ୍ମନିବେଦନରେ ସେ ଭଗବାନଂକର କେତେଗୋଟି ସ୍ତବ ଲେଖିଛଂତି । 'ଦୁର୍ଗତି ନାଶନ'ରେ ସେ ଭଗବାନଂକୁ ଆର୍ତତ୍ରାଣ

ଭାବରେ ବର୍ଣନା କରି ଚଉତିଶା ରଚନା କରିଛଂତି। ଶରଣ ଚଉତିଶାରେ କବି ଶରଣପଂଜର ଭଗବାନଂକ ଚରଣତଳେ ନିଜକୁ ସମର୍ପି ଦେଇଅଛଂତି। ଶ୍ରୀମଦ୍ ଭାଗବତ ଏକାଦଶ ସ୍କଂଧର ନୀତି ଶ୍ଳୋକମାନ ଏକାଠି କରି ସେ 'ଭାଗବତ ଶିକ୍ଷା' ରଚନା କଲେ। ସାତକାଂଡ ରାମାୟଣକୁ ଅତି ସଂକ୍ଷେପରେ ସେ ଟୀକା ରାମାୟଣରେ ବର୍ଣ୍ଣନା କରିଅଛଂତି। ଭକ୍ତିଭାବ ଦ୍ୟୋତକ ୧୮୧ ଗୋଟି ସଂସ୍କୃତ ଶ୍ଳୋକର ଓଡ଼ିଆ ପଦ୍ୟାନୁବାଦ ତାଂକ ରଚିତ 'ଭକ୍ତି ରସାମୃତ'ରେ ଦେଖିବାକୁ ମିଳେ। ପାଂଡବ ଗୀତାର ମୂଳ ସଂସ୍କୃତ ଓ ଓଡ଼ିଆ ଅନୁବାଦ ସେ ନିଜ ରଚିତ ପାଂଡବ ଗୀତାରେ ରଖିଛଂତି।

ଜୟପୁର ମହାରାଜା ବିକ୍ରମଦେବ ବର୍ମାଂକର ସଂସ୍କୃତରେ ଲେଖା ଭଗବାନଂକର ସ୍ତବ ଶ୍ଳୋକମାନ ଅନୁବାଦ କରି ସେ ଏହାକୁ ଶ୍ରୀରାମ ଶ୍ରୀକୃଷ୍ଣ ସ୍ତୋତ୍ରମ ନାମରେ ପ୍ରକାଶ କରିଥିଲେ। ଶ୍ରୀମଦଭାଗବତ ଓ ରାମାୟଣରୁ ସଂଗ୍ରହକରି ସେ ଶ୍ରୀରାମ ଓ କୃଷ୍ଣଂକ ଲୀଳାମୃତ ପୁସ୍ତକ ଲେଖିଲେ। ବିଭିନ୍ନ କେତୋଟି ଲୋକପ୍ରିୟ ସଂସ୍କୃତ ଶ୍ଳୋକର ଓଡ଼ିଆ ଅନୁବାଦ ତାଂକ ରଚିତ 'ଭକ୍ତି ପଂଚାମୃତ'ରେ ଦେଖିବାକୁ ମିଳେ। ସେହିପରି ରାବଣକୃତ ଶିବ ତାଂଡବ ସ୍ତୋତ୍ରର ଅନୁବାଦ ସେ ଶିବ ସ୍ତୋତ୍ରମ ନାମରେ ଲେଖିଥିଲେ। ଶ୍ରୀମଦ ଭାଗବତର ଛାୟାରେ ଲିଖିତ ପୁସ୍ତକ ତାଂକର ସ୍ତୁତି ରତ୍ନାବଳୀ। ଏକ ପୁରାତନ ତାଳପତ୍ରର ପୋଥିରୁ ପାଇଥିବା ରାମାୟଣ ଚଉତିଶାର ଶୁଦ୍ଧି ପାଠ ସଂପାଦନା ସହିତ ସେ ପ୍ରକାଶ କରିଥିଲେ। ଗୋସ୍ୱାମୀ ତୁଳସୀଦାସଂକର ରାମଭକ୍ତି ବିଷୟକ ପଦ୍ୟରଚନାର ଗଦ୍ୟ ଅନୁବାଦ ଗୋକୁଳାନଂଦଂକର 'ବିନୟ ପତ୍ରିକା'ରେ ପରିବେଷିତ। ଏହା ପ୍ରାୟ ତିନିଶ ପୃଷ୍ଠାର ଗ୍ରଂଥ। ଏହାର ସରଳ ସାବଲୀଳ ଅନୁବାଦ ତାଂକ ପାଂଡିତ୍ୟ ଓ ଭକ୍ତିର ସ୍ୱାକ୍ଷର ବହନ କରେ। ଅନେକ ଏହାକୁ ତାଂକ ଜୀବନର ଶ୍ରେଷ୍ଠ କୃତି ବୋଲି ଗ୍ରହଣ କରିଥାଂତି। ତାଂକ ରଚିତ ଓ ସଂପାଦିତ ଅନ୍ୟ ପୁସ୍ତକମାନଂକ ମଧ୍ୟରେ ପ୍ରେମଦର୍ଶନ, ନାରଦ ଭକ୍ତି ସୂତ୍ରର ବିସ୍ତାରିତ ହିଂଦି ବାଖ୍ୟାର ଅନୁବାଦ। ନବଧା ଭକ୍ତି ମଧ୍ୟ ହିଂଦି ରଚନାର ଅନୁବାଦ ଓ ଏଥିରେ ବୈଷ୍ଣବ ଧର୍ମ ତତ୍ତ୍ୱର ନଅ ପ୍ରକାରର ଭକ୍ତିର ବର୍ଣ୍ଣନା କରାଯାଇଅଛି। ଭକ୍ତି ସୁଧାସାଗର ତରଂଗରେ କବି ନିଜ ହୃଦୟର ଭକ୍ତି ସୁଧାରସର ପରିଚୟ ଦେଇଅଛଂତି। କଲ୍ୟାଣ ପତ୍ରିକାର ସଂପାଦକ, ହନୁମାନ ପ୍ରସାଦ ପୋଦାରଂକର ନାନା ଶାସ୍ତ୍ରୋକ୍ତି ସମର୍ଥିତ ଭକ୍ତି ଗର୍ଭିକ ପଦ ଓ ବାକ୍ୟାନୁ ସରଣରେ ଏହା ରଚିତ ହୋଇଅଛି। ସେହି ଲେଖକଂକ ସ୍ତ୍ରୀ ଧର୍ମ ଅନୁକରଣରେ ଗୋକୁଳାନନ୍ଦ ସ୍ତ୍ରୀ ଧର୍ମ ପୁସ୍ତକ ଲେଖି ସେଥିରେ ସ୍ତ୍ରୀମାନଂକର ଶିକ୍ଷଣୀୟ ଓ ଆଚରଣୀୟ ବିଷୟମାନ ଦର୍ଶାଇ ଅଛଂତି। ତାଂକ ରଚିତ ମହାରାଣୀ କୌଶଲ୍ୟା ରାମଜନନୀଂକର ଜୀବନ ଚରିତ। କର୍ମଫଳ ରହସ୍ୟରେ କର୍ମର ଫଳ ସ୍ୱରୂପ ମନୁଷ୍ୟ କିପରି ସୁଖ ବା ଦୁଃଖ ଭୋଗେ ତାହା

ବର୍ଣ୍ଣିତ। କବି ଶେଖର ଚିଂତାମଣି ମହାଂତିଂକର ରଚନାରୁ ଉକ୍ତିମାନ ସଂଗ୍ରହକରି ସେ ଚିଂତାମଣି ସୂକ୍ତିମାଳା ଲେଖିଛଂତି। ରାମଚରିତ ମାନସରୁ ସୂକ୍ତିମାନ ସଂଗ୍ରହ କରି ତାହାର ଅନୁବାଦ ତାଂକର ନୀତି ରତ୍ନମାଳାରେ ରଖାଯାଇଅଛି। ବିଭିନ୍ନ ଦେବଦେବୀ ଓ ନବଗ୍ରହଂକର ସଂସ୍କୃତ ସ୍ତୋତ୍ରର ପଦ୍ୟାନୁବାଦ ହେଉଛି ଭକ୍ତ ସଂବଳ। ସାଧୁ ପ୍ରବେଶମାଳା ପୁସ୍ତକରେ ଲେଖକ ସଂଥ ମହାତ୍ମାମାନଂକର ୨୨୫ ଗୋଟି ସୁମଧୁର ଉପଦେଶ ପଦ୍ୟ ଆକାରରେ ଦର୍ଶାଇ ଅଛଂତି। ନାନା ଶାସ୍ତ୍ର ଅନୁସରଣରେ କେତେଗୋଟି ଶିକ୍ଷାପ୍ରଦ ଆଖ୍ୟାୟିକା ଶତ କଥାମାଳାରେ ସନ୍ନିବେଶିତ। ମୋଟ ୨୮ ଗୋଟି ରଚିତ ପୁସ୍ତକ ତାଂକୁ ବୈଷ୍ଣବ ଧର୍ମ ଓ ସନାତନ ଧର୍ମର ଜଣେ ପ୍ରଧାନ ପ୍ରବକ୍ତା ଭାବରେ ଲୋକମାନସରେ ଉପସ୍ଥାପିତ କରିଛି।

ଗୋକୁଳାନଂଦ ସ୍ଥାନୀୟ ବିତ୍ତବଶାଳୀ ଲୋକଂକର ପୃଷ୍ଠପୋଷକତାରେ ନିଜ ରଚନା ପ୍ରକାଶ କରିବାକୁ ସମର୍ଥ ହୋଇଥିଲେ। ଜୀବନର ଶେଷ ପର୍ଯ୍ୟାୟରେ ୧୯୭୯ରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସଂବର୍ଦ୍ଧିତ ହୋଇଥିଲେ। ତାଂକର ଅପ୍ରକାଶିତ ରଚନାମାନଂକ ମଧ୍ୟରେ 'ମୋ ଜନ୍ମଭୂମି' ପୁସ୍ତକରେ ସେ ନିଜର ଜୀବନର ଅଭିଜ୍ଞତା ଓ ସମସାମୟିକ ସମାଜର ଚିତ୍ର ବର୍ଣ୍ଣନା କରିଯାଇଛଂତି। ୧୯୮୭ ଅଗଷ୍ଟ ୧୦ ତାରିଖରେ ସେ ଶେଷ ନିଶ୍ୱାସ ତ୍ୟାଗକଲେ।



ବସି ବସି ଯିଏ କାଟଇ କାଳ
ବସିଥାଏ ଜାଣି ଭାଗ୍ୟ ତାହାର
ଉଠି ପୁଣି ଛିଡ଼ା ହୁଏ ଯେ ଯୁବା
ଭାଗ୍ୟ ତାହାର ହୁଏରେ ଉଭା।

–ଗଡ଼ନାୟକ



# ଜନସେବକ
# ସାଂସଦ କୃଷ୍ଣଚନ୍ଦ୍ର

୧୯୪୮ ଜାନୁଆରିରେ ପାଟଣା ଦେଶୀୟ ରାଜ୍ୟ ଓଡ଼ିଶା ସହିତ ମିଶିଲା । ପ୍ରଥମେ କଳାହାଂଡିକୁ ମିଶାଇ ଏହାକୁ ବଲାଂଗିର ପାଟଣା ଜିଲ୍ଲା ନାମ ଦିଆଗଲା । ଗଡ଼ଜାତର କର୍ମଚାରୀମାନଂକୁ ମୋଗଲବଂଦୀ ଅଂଚଳକୁ ପଠାଯାଇ ସେଠାରେ ରାଜ୍ୟର ଅନ୍ୟଠାରୁ କର୍ମଚାରୀ ଆଣି ରଖାଗଲେ । ଆଗ ହାକିମମାନେ ବଦଳି ହେଲେ । ତାପରେ ଅମଲା ଓ ଅନ୍ୟମାନଂକର ପାଳି ପଡ଼ିଲା । ସାଧାରଣତଃ ସେମାନେ ନିଜ ରାଜ୍ୟଛାଡି ଅନ୍ୟତ୍ର ଯିବେ ବୋଲି ଚାକରି ଆରଂଭରେ ଆଶା କରିନଥିଲେ । ଯେଉଁମାନେ ଉନ୍ନତିର ଆଶା ଦେଖିଲେ ସେମାନେ ବଦଳି ହୋଇଗଲେ । ଅନେକ ଚାକିରିରୁ ଇସ୍ତଫା ଦେଇଦେଲେ । ପାଟଣା ରାଜ୍ୟରେ ଗୋଟିଏ ପରିବହନ ବିଭାଗ ଥିଲା । ଦରବାର ତରଫରୁ ରାଜ୍ୟ ଭିତରେ ଅନ୍ୟତ୍ର ବସ୍ ଯାଉଥିଲା । ବସ୍‌ଗୁଡ଼ିକର ରକ୍ଷଣାବେକ୍ଷଣ ନିମିତ୍ତ ଉପଯୁକ୍ତ କର୍ମଚାରୀ ଓ କର୍ମଶାଳା ଥିଲା । ପ୍ରାଦେଶିକ ସ୍ତରରେ ଯୋଗାଣ ଓ ପରିବହନ

ମିଶି ଗୋଟିଏ ବିଭାଗ ଥିଲା। ଜଣେ କର୍ମଚାରୀ ପାଟଣା ରାଜ୍ୟରେ ପରିବହନ ବିଭାଗରେ ଅମଲା ଭାବରେ କାମ କରୁଥିଲେ। ତାଂକର ପୂର୍ବରୁ ରାଜସ୍ବ ମୋହରୀର, ନାଏବ ନାଜର, ଅବକାରୀ ଓ ଜଂଗଲ ମୁନ୍‌ସି ଭାବରେ ମଧ୍ୟ ଅଭିଜ୍ଞତା ଥିଲା। ତାଂକୁ ଯେତେବେଳେ ଯୋଗାଣ ବିଭାଗର ନିରୀକ୍ଷକ ଭାବରେ ଜିଲ୍ଲା ବାହାରକୁ ବଦଳି ହେଲା ସେ ଇସ୍ତଫା ଦେଇଥିଲେ। ସେହି ବ୍ୟକ୍ତି ଜଣକ କୃଷ୍ଣଚଂଦ୍ର ପଂଡା। ପରବର୍ତ୍ତୀ କାଳରେ ଜିଲ୍ଲାର ଜଣେ ମୁଖ୍ୟ ଜନସେବକ ଭାବାରେ ସେ ସୁପରିଚିତ। କୃଷ୍ଣଚଂଦ୍ରଂକର ପୂର୍ବପୁରୁଷ ସଂବଲପୁର ସହରର ଝାଡୁଆପଡ଼ାରୁ ଆସି ରାଜାନୁଗ୍ରହ ପାଇ ବଲାଂଗିର ସହରରେ ବାସ କରୁଥିଲେ। ରାଜ ପରିବାର ସହିତ ସେମାନଂକର ପୁରୁଷାନୁକ୍ରମେ ଘନିଷ୍ଠ ଓ ବିଶ୍ୱସ୍ତ ସଂପର୍କ ଥିଲା। ୧୯୧୬ ଅଗଷ୍ଟରେ କୃଷ୍ଣଚଂଦ୍ର ବଲାଂଗିର ସହରର ଗୁଗୁଡ଼ିପଡ଼ାଠାରେ ଜନ୍ମ ହୋଇଥିଲେ। ତାଂକ ପିତା ସତ୍ୟାନଂଦ ଓ ମାତା କନକ ଦେବୀ। ସେତେବେଳେ ବଲାଂଗିରର ରାଜା, ପୃଥ୍ୱୀରାଜ ସିଂହ। କୃଷ୍ଣଚଂଦ୍ରଂକର ରାଜଦର୍ଶନ ସମୟରେ ମହାରାଜଂକର ଏକ ଶୁଭ ସଂବାଦ ପହଂଚିଥିଲା। ତେଣୁ ସେ ଶରଧାରେ ପିଲାଟିକୁ ନେଇ ଉଆସରେ ପାଳିତ ହେବାର ବ୍ୟବସ୍ଥା କଲେ। ରାଜାଂକ ଇଛା ବିରୋଧରେ ବାପମାଆଂକର କ'ଣ କରିବାର ଅଛି? କୃଷ୍ଣଚଂଦ୍ର ଆଠ ବରଷର ଥିବା ବେଳେ ମହାରାଜା ପୃଥ୍ୱୀରାଜ ସିଂହଦେଓ ପ୍ରାଣତ୍ୟାଗ କଲେ। ତେଣୁ ତାଂକୁ ବାପ ମାଆ ନିଜ ପାଖକୁ ଆଣି ଆସିଲେ। ୧୯୨୫ରେ କୃଷ୍ଣଚଂଦ୍ର ହାଇସ୍କୁଲରେ ନାମ ଲେଖାଇ ପଢ଼ା ଆରଂଭ କଲେ। ମାଟ୍ରିକ୍ ପଢ଼ା ସରିବା ବେଳକୁ ପିତୃବିୟୋଗ ହେଲା। ଆଉ ଚାରିଭାଇମାନଂକଠାରୁ ସେ ଜ୍ୟେଷ୍ଠ ଥିଲେ। ତେଣୁ ନିଜ ପଢ଼ା ବଂଦ କରି ସେ ଦରବାର ଅଧୀନରେ ଚାକିରି କଲେ। ସୌମ୍ୟ ଦର୍ଶନ ମଧୁରଭାଷୀ ଓ କର୍ତବ୍ୟନିଷ୍ଠ କୃଷ୍ଣଚଂଦ୍ର ସହଜରେ ସବୁରି ପ୍ରିୟ ହୋଇ ପାରିଥିଲେ।

୧୯୪୯-୫୦ ବେଳକୁ ନିଜର ପରିବହନ ବିଭାଗର ଅଭିଜ୍ଞତାକୁ ପୁଂଜି କରି କୃଷ୍ଣଚଂଦ୍ର ପାଟଣାର ପୂର୍ବତନ ରାଜସ୍ୱମଂତ୍ରୀ ଲକ୍ଷ୍ମଣ ସାହାଣିଂକ ପୁତ୍ରଂକ ସହିତ ମିଶି ପରିବହନ ବ୍ୟବସାୟ କଂଟାବାଂଝିଠାରେ ଆରଂଭ କଲେ। ଜିଲ୍ଲାରେ ପକ୍କା ରାସ୍ତା ଅଳ୍ପ। ଅନେକ ସ୍ଥାନରେ ନଦୀ ନାଳ ଉପରେ ପୋଲ ନଥାଏ। ତେଣୁ ବ୍ୟବସାୟ ଭଲ ଚାଲିଲା ନାହିଁ। ପାଟଣା ମହାରାଜାଂକର ପିତୃବ୍ୟ ବି.ପି. ସିଂହଦେଓ ପାଲେସ ସୁପରିଟେଂଡ ଓ ମହାରାଜାଂକର ବ୍ୟକ୍ତିଗତ ସଚିବ ଥିଲେ। ସେ ଉକ୍ତ ପଦବିରୁ ଅବ୍ୟାହତି ନେବାକୁ ଚାହିଁବାରୁ ମହାରାଜା ବିଶ୍ୱସ୍ତ କର୍ମଚାରୀ ଭାବରେ କୃଷ୍ଣଚଂଦ୍ରଂକୁ ନିଯୁକ୍ତି ଦେଲେ। ସେଇଦିନୁ ତାଂକର ସାଧାରଣ ଜୀବନ ଓ ଲୋକ ସଂପର୍କ ଆରଂଭ ହେଲା। ତାଂକର

ଗୋରା ଡକଡକ ଚେହେରା, ବୁଝେଇ ସୁଝେଇ କଥା କହିବାର ଢ଼ଂଗ ଓ ଲୋକମାନଂକର ସାମୟିକ ଅଭାବ ଅସୁବିଧା ବୁଝି ତାହାର ସମାଧାନର ଉପାୟ କର୍ତ୍ତୃପକ୍ଷଂକୁ ସୂଚାଇ ଦେବା ତାଂକୁ ସରକାରୀ ଓ ବେସରକାରୀ ସବୁ ସ୍ତରରେ ଲୋକପ୍ରୟତା ଆଣିଦେଲା। ପରେ ଓଡ଼ିଶାର ମଂତ୍ରୀ ଓ ବର୍ଷୀୟାନ ରାଜନୀତିଜ୍ଞ ଡାକ୍ତର ରାମପ୍ରସାଦ ମିଶ୍ର ବଲାଂଗିର ମୁନିସିପାଲଟିର ୧୯୫୦ ଓଡ଼ିଶା ମୁନିସିପାଲଟି ଆଇନ ଅନୁସାରେ ପ୍ରଥମ ଚେୟାରମ୍ୟାନ। ସେ ୧୯୫୧ରୁ ୧୯୫୭ ପର୍ଯ୍ୟଂତ ଏହି ପଦରେ ଥାଇ ସହରର ବହୁ ଉନ୍ନତି ମୂଳକ କାର୍ଯ୍ୟର ମୂଳଦୁଆ ସ୍ଥାପନ କଲେ। ୧୯୫୭ରେ ତାଂକୁ ବିଧାନସଭା ପାଇଁ ବଛାଗଲା। ପୌରସଭାରୁ ସେ ଇସ୍ତଫା ଦେଲେ। ଦଳ ଓ କାଉନ ସିଲରମାନେ କୃଷ୍ଣଚଂଦ୍ରଂକୁ ଚେୟାରମ୍ୟାନ ବାଛିଲେ। ୧୯୫୮ରୁ ୧୯୬୮ ପର୍ଯ୍ୟଂତ ଦଶବର୍ଷକାଳ ସେ ଏହି ଦାୟିତ୍ୱ ସଂଭାଳିଲେ। ବଲାଂଗିର ସହରରେ ଗୋଟିଏ ମାତ୍ର ସରକାରୀ ହାଇସ୍କୁଲ ଥାଏ। ଗୋଟିଏ ସରକାରୀ କଲେଜ ମଧ୍ୟ ଥିଲା। ମାତ୍ର ଝିଅପିଲାମାନଂକ ପାଇଁ ସ୍ୱତଂତ୍ର ହାଇସ୍କୁଲ ବା କଲେଜ ନଥାଏ। ସଂସ୍କୃତ କଲେଜଟିଏ ଥାଏ, ଦରବାର ଅମଳରେ ଆୟୁର୍ବେଦ ପାଠର ବ୍ୟବସ୍ଥା ଥିଲା। ମାତ୍ର ଉଚ୍ଚ ସ୍ତରରେ ଏହା ଅଧ୍ୟୟନର ବ୍ୟବସ୍ଥା ନ ଥିଲା। ମୁନିସିପାଲଟି ଚେୟାରମ୍ୟାନ ଥାଇ ଟାଉନ ହାଇସ୍କୁଲ ପରେ ବାଳିକା ହାଇସ୍କୁଲ ମହିଳା କଲେଜ ଆୟୁର୍ବେଦ କଲେଜ ପ୍ରତିଷ୍ଠାରେ କୃଷ୍ଣଚଂଦ୍ରଂକର ଅବଦାନ ସମସ୍ତେ ମନେ ରଖିଛଂତି। ବିଭିନ୍ନ ରାଜନୈତିକ ମତବାଦୀ ସରକାରୀ ବେସରକାରୀ ଲୋକମାନଂକୁ ଏକାଠି କରି କାମ କରାଇନେବା କଳା ତାଂକୁ ଜଣାଥିଲା ଓ ଏଥିପାଇଁ ନାନା କ୍ଷେତ୍ରରେ ତାଂକର ସହଯୋଗ ଲୋଡ଼ାପଡୁଥିଲା। ବଲାଂଗିର ସହରର ଆଖପାଖ ଅଂଚଳରେ ଶିକ୍ଷାର ପ୍ରସାର ନିମିତ୍ତ ତାଂକର ସାହାଯ୍ୟ ଗ୍ରାମବାସୀମାନେ ମଧ୍ୟ ଲୋଡୁଥିଲେ।

ଚେୟାରମ୍ୟାନ ଥିବା ସମୟରେ ରାଜ୍ୟସଭା ନିର୍ବାଚନ ହେଲା। ସେ ଗଣତଂତ୍ର ଓ ପରେ ସ୍ୱତଂତ୍ର ଦଳର ଜଣେ ସକ୍ରିୟ କର୍ମୀ ଥାଇ ନିଜର ଲୋକପ୍ରିୟତା ପ୍ରମାଣିତ କରିଥାଂତି। ତେଣୁ ସ୍ୱତଂତ୍ର ଦଳ ତାଂକୁ ରାଜ୍ୟ ସଭାର ସଭ୍ୟଭାବେ ପ୍ରାର୍ଥୀ କରି ନିର୍ବାଚିତ କରାଇଲେ। ୧୯୬୮ରୁ ୧୯୭୪ ପର୍ଯ୍ୟଂତ ଛଅବର୍ଷ ସେ ରାଜ୍ୟ ସଭାର ସଭ୍ୟଥାଇ ନିଜର ପୂର୍ବ କର୍ମକ୍ଷେତ୍ରକୁ ପାସୋରି ନ ଥିଲେ। ନିଜର ନିରହଂକାର ସ୍ୱଭାବ ଓ କର୍ମତତ୍ପରତା ତାଂକୁ ନିଜ ସହକର୍ମୀମାନଂକର ଆଦରଣୀୟ କରି ପାରିଥିଲା। ୧୯୭୪ରେ ସେ ସଇଁତଳା ନିର୍ବାଚନ ମଂଡଳୀରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହେଲେ। ୧୯୭୭ ପର୍ଯ୍ୟଂତ ସେ ବିଧାୟକ ଥିଲେ। ଦଳ ମତ ନିର୍ବିଶେଷରେ ବଲାଂଗିରର ପ୍ରତିନିଧିମାନେ ତାଂକ ମତକୁ ସମ୍ମାନ ଦେଉଥିଲେ। ଅନ୍ୟକୁ ସାହାଯ୍ୟ

କରିବାକୁ ଆଗେଇ ଆସିବା ତାଂକର ଜନ୍ମଗତ ପ୍ରବୃତ୍ତି ଥିଲା ଓ ଏହି ଗୁଣଯୋଗୁ ବୋଧହୁଏ ସେ ନିଜ କାମ ସହଜରେ କରେଇ ନେଇ ପାରୁଥିଲେ ଓ ନିଜ ନିର୍ବାଚନ ମଂଡଳିରେ ଲୋକପ୍ରିୟତା ଅତୁଟ ରଖି ପାରିଥିଲେ।

ରାଜନୀତି ସମାଜ ସେବା ସହିତ ବଲାଂଗିରର ସାଂବାଦିକତା ଓ ନାଟ୍ୟ କଳା ସହିତ ସେ ପ୍ରଥମରୁ ସଂପୃକ୍ତ ଥିଲେ। ଦରବାର ସମୟରେ କୋଶଳ କଳା ମଂଡପ ସ୍ଥାପିତ ହୋଇଥିଲା। ଏଠାରେ ଲୋକମାନଂକର ମନୋରଂଜନ ନିମିତ୍ତ ନାଟକମାନ ମଂଚସ୍ଥ ହେଉଥିଲା। ଏଥିପାଇଁ ତାଲିମ ଦେବାକୁ ରାଜ୍ୟ ବାହାରୁ ଅଭିଜ୍ଞ ନାଟ୍ୟକାର ଓ ନିର୍ଦ୍ଦେଶକମାନଂକର ସାହାଯ୍ୟ ନିଆଯାଉଥିଲା। କୃଷ୍ଣଚଂଦ୍ର ନାଟକମାନଂକରେ ଭାଗ ନେଉଥିଲେ। ଦରବାର ଶାସନର ବିଲୟ ପରେ ମଧ୍ୟ ଉକ୍ତ କଳାମଂଡଳକୁ ବଂଚେଇ ରଖିବା ତାଂକର ଉଦ୍ୟମ ବିଫଳ ହୋଇଥିଲା। ତଥାପି ତାଂକର ଅଯାଚିତ କଳାପ୍ରେମ ଏଥିରୁ ପ୍ରମାଣିତ ହୁଏ। ପାଟଣା ଦରବାର ପକ୍ଷରୁ ପ୍ରକାଶିତ ପାଟଣା ଦୀପିକାର ମୁଦ୍ରଣ ଓ ପ୍ରକାଶନରେ ତାଂକର ମଧ୍ୟ ଦାୟିତ୍ୱ ଥିଲା।

ଜୀବନର ଶେଷ ପର୍ଯଂତ ସାଧୁତା, ନିଷ୍ପାପରତା, ନିସ୍ୱାର୍ଥ ଜନ ସେବା, ସଂକୀର୍ଣ୍ଣ ଜାତି ଧର୍ମ ବିଦ୍ୱେଷରୁ ଦୂରତା ତାଂକର ଚରିତ୍ରର ବିଶେଷତ୍ୱ ଥିଲା। ପରିଣତ ବୟସରେ ସେ ସକ୍ରିୟ ରାଜନୀତିରେ ଭାଗ ନ ନେଉଥିଲେ ମଧ୍ୟ ବଲାଂଗିର ଜିଲ୍ଲାର ସମସ୍ତ ସାମାଜିକ ସାଂସ୍କୃତିକ କାର୍ଯକ୍ରମରେ ନିଜକୁ ସାମିଲ କରୁଥିଲେ। ୨୦୦୩ ମାର୍ଚ୍ଚ ୨୩ ତାରିଖରେ କୃଷ୍ଣଚଂଦ୍ର ଚିରଦିନ ପାଇଁ ଚକ୍ଷୁ ମୁଦ୍ରିତ କଲେ।



ମନ ବଚନ ଦେହ ଗତେ
ଯେ ପ୍ରାଣୀ ଥାଂତି ଜନହିତେ
ଏ ବେନି ଲୋକ ସେ ଜିଣଂତି
ନକଲା ଜୀବଂତେ ମରତି।

—ଭାଗବତ



# ପଂକରୁ ପଂକଜ-ପ୍ରଶାସକ କବି
# ବିଘ୍ନରାଜ ପଟେଲ

୧୯୪୦। ପାଟଣା ରାଜ୍ୟରେ ଗୋଟିଏ ମାତ୍ର ହାଇସ୍କୁଲ ବଲାଂଗିରରେ ଥାଏ। ସେଇ ବରଷ, ମିଡିଲ ଇଂରାଜୀ ଓ ମିଡିଲ ଭର୍ନାକୁଲାର ପାସ୍ କରି ପୃଥ୍ୱୀରାଜ ହାଇସ୍କୁଲରେ ନାମ ଲେଖାଇବା ଛାତ୍ରମାନେ ପରବର୍ତୀକାଳରେ ବିଭିନ୍ନ କ୍ଷେତ୍ରରେ ଜିଲ୍ଲାରେ ସୁପରିଚିତ ହେଲେ। ସମସ୍ତଂକୁ ଟପିଯାଇ ସମସ୍ତଂକର ଦୃଷ୍ଟି ଆକର୍ଷଣ କଲେ ଜଣେ ଛାତ୍ର। ସେ ଲୋଇସିଂହା ମଧ୍ୟ ଭର୍ନାକୁଲାର ସ୍କୁଲରୁ ୭ମ ଶ୍ରେଣୀ ପାସ୍ କରିଥାଆଂତି। ସେ ପ୍ରକାର ବିଦ୍ୟାଳୟରେ ଇଂରେଜୀ ଶିକ୍ଷାର ବ୍ୟବସ୍ଥା ନ ଥିଲା। ସେଠାରେ ମାଷ୍ଟର ଥିଲେ ଜିଲ୍ଲାର ଜଣାଶୁଣା ଶିକ୍ଷକ ଓ ନାଟ୍ୟକାର ରଘୁନାଥ ପ୍ରସାଦ ବହିଦାର। ପିଲାଟିର ପ୍ରତିଭାର ପରିଚୟ ସେ ପାଇ ସାରିଥିଲେ। ପୃଥ୍ୱୀରାଜ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବଲାଂଗିରର ପ୍ରଖ୍ୟାତ ଐତିହାସିକ ଓ ଶିକ୍ଷାବିଦ୍ ବାଳମୁକୁଂଦ ହୋତା। ରଘୁନାଥ ପିଲାଟିର ଅସାଧାରଣ ପ୍ରତିଭା କଥା ସ୍ମରଣ କରାଇଦେଇ ତାର ଇଂରାଜୀ ପଢ଼ା ସହିତ ବିଦ୍ୟାଳୟ ଓ ଛାତ୍ରାବାସରେ ରହିବାର ବ୍ୟବସ୍ଥା କରିବାକୁ

ହାଇସ୍କୁଲ ପ୍ରଧାନଶିକ୍ଷକଙ୍କୁ ଲେଖିଥିଲେ। ପ୍ରଧାନ ଶିକ୍ଷକଙ୍କ ବିଶେଷ ସୁବିଧା ଫଳରେ ଅଳ୍ପ ଦିନରେ ସେ ଇଂରେଜୀରେ ଅନ୍ୟମାନଂକ ସମକକ୍ଷ ହୋଇ ପରେ ସେମାନଂକୁ ଟପିଗଲେ। ୧୯୪୪ରେ ସେ ମାଟ୍ରିକ୍ ପରୀକ୍ଷା ପ୍ରଥମ ଦଶଜଣଂକ ମଧ୍ୟରେ ୩ୟ ସ୍ଥାନ ଅଧିକାର କରିଥିଲେ। ସେହି ଉପଲକ୍ଷେ ଦରବାର ପକ୍ଷରୁ ହାଇସ୍କୁଲ ପ୍ରଧାନ ଶିକ୍ଷକଂକ ଉଚ୍ଚ ପ୍ରଶଂସା କରାଯାଇଥିଲା। ଏହି ଇଂରେଜୀ ଅନଭିଜ୍ଞ ଛାତ୍ର ପରବର୍ତ୍ତୀ ଜୀବନରେ ନିଜର ରଚନା ଓ କବିତା ସଂକଳନ ଇଂରେଜୀରେ ପ୍ରକାଶିତ କରାଇ ସମ୍ମାନିତ ହୋଇଥିଲେ। ଏଗୁଡ଼ିକ ଥିଲା। Dead will return, 1981 Torso (A play written on Lord Jagannath) 1982 Shades and shadows 1983 (collection of sixty poems) The bridge player 1989 (collection of poems), ସେହି ଛାତ୍ରଜଣଂକ ହେଉଛଂତି ବିଘ୍ନରାଜ ପଟେଲ।

୧୯୨୮ରେ ଲୋଇସିଂହା ନିକଟରେ ଜଡ଼ାମୁଂଡା ନାମକ ପଲ୍ଲୀଗ୍ରାମରେ ତାଂକର ଜନ୍ମ। କୌଳିକ ଉପାଧି ପୁଟେଲ (ମାଳି)। ପିତା ଗଂଡାରାମ ପୁଟେଲ ଜଣେ ସାଧାରଣ ନାମମାତ୍ର ଚାଷୀ, ପନି ପରିବା ଚାଷକରି ସେ ଗୁଜୁରାଣ ମେଂଟାଉଥିଲେ। ପଢ଼ା ଆରଂଭରୁ ତାଂକ ଶିକ୍ଷକମାନେ ତାଂକର ଅସାଧାରଣ ପ୍ରତିଭାର ପରିଚୟ ପାଇଥିଲେ। ସ୍ୱର୍ଗତଃ ବଳରାମ ବାବୁ ଟିଟିଲାଗଡର ଓକିଲ ପ୍ରଥମେ ଲୋଇସିଂହା ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ। ପରେ ଅର୍ଜିନବିସ ମୁଖ୍ତ୍ୟାର ଓ ଆଡଭୋକେଟ ହୋଇଥିଲେ। ୧୯୫୧ରେ ବିଘ୍ନରାଜ ଆଇ.ଏ.ଏସ୍ ହେବା ସମୟରେ ସେ କହୁଥିଲେ ପିଲାଦିନୁଁ ଆମେ ଜାଣୁଥିଲୁ ସେ ଖୁବ୍ ବଡ଼ ସାହେବୀ ପଦବୀ ପାଇବ। ତାଂକ ଚେହେରାରେ ସାମୁଦ୍ରିକ ଲକ୍ଷଣ ଲଂବ କର୍ଣ୍ଣ ବିଶେଷତ୍ୱ ଥିଲା। ନାମ ଲେଖାବେଳେ ସିଦ୍ଧିରସ୍ତୁ କରି ଶିକ୍ଷକ ତାଂକ ନାମ ବିଘ୍ନରାଜ ଲେଖିଦେଲେ। ପୃଥ୍ୱୀରାଜ ହାଇସ୍କୁଲରେ ପଢ଼ିବା ବେଳେ ସେ ଦରବାର ବୃତ୍ତି ପାଇଲେ। ଭାରତଛାଡ଼ ଆଂଦୋଳନ ପରେ ପରେ ଛାତ୍ରାବସ୍ଥାରେ ବିଘ୍ନରାଜ ସହପାଠୀ ନରସିଂହ ପ୍ରସାଦ ନଂଦ, ରଜନୀକାଂତ ଭୋଇ ଓ ଶିବପ୍ରସାଦ ପାଂଡିଆଂକ ସହିତ ମିଶି 'ଟୁ ଦି ପଏଂଟ' ନାମକ ଏକ ହାତଲେଖା ଇଂରାଜୀ ପତ୍ରିକା ପ୍ରକାଶ କରିଥିଲେ। ପତ୍ରିକାର କେତେ ଖଂଡ କାର୍ବନ କପି ଭୋରରୁ ରାଜେଂଦ୍ର ପାର୍କରେ ଭିନ୍ନ ଭିନ୍ନ ଜାଗାରେ ଗୋଟି ପଥର ଲଦି ଘାସ ଉପରେ ରଖିଦିଆଯାଉଥିଲା ଓ ସଂପାଦକ ମଂଡଳୀର ନାମ ଲାଇଟ୍ ପୋଷ୍ଟ ବୋଲି ଲେଖାଯାଉଥିଲା। 'ଟୁ ଦି ପଏଂଟ'ର ଶେଷ ସଂଖ୍ୟାର ସଂପାଦକୀୟ ଥିଲା To the point, To the grave. ଏହି ରଚନା ଚମତ୍କାର ଥିଲା ଓ ସାଧାରଣରେ ବିଶେଷ ଆଲୋଚିତ ହୋଇଥିଲା। ସେ କଟକ ରେଭେନ୍ସା କଲେଜରୁ ୧୯୪୮ରେ ଗ୍ରାଜୁଏଟ୍ ହେଲେ। ଆଲାହାବାଦ

ବିଶ୍ୱବିଦ୍ୟାଳୟରେ ଇତିହାସରେ ଏମ୍.ଏ. ପଢ଼ିଲେ। କୃତିତ୍ୱର ସହିତ ପାସ୍ କଲେ। ଅଳ୍ପ କିଛି ଦିନ ବଲାଂଗିର ରାଜେଂଦ୍ର କଲେଜରେ ଅଧ୍ୟାପକ ଥାଇ ଆଇ.ଏ.ଏସ୍‌ରେ ନିଯୁକ୍ତି ପାଇଲେ। ଏହି ସେବାରେ ନିଜ ରାଜ୍ୟ ବାହାରକୁ ଯିବାକୁ ସେ ସମ୍ମତି ଦେଇଥିଲେ ମଧ୍ୟ ବିଘ୍ନରାଜଂକୁ ଓଡ଼ିଶାରେ ନିୟୋଜିତ କରାହେଲା। ନିଜ ପ୍ରଦେଶର ବିକାଶରେ ସହାୟକ ହେବାର ସୁଯୋଗ ପାଉଥିବାରୁ ସେ ଆନଂଦିତ ହେଲେ। ଚାକିରି କାଳରେ ସେ ବାଲେଶ୍ୱର ଓ ମୟୁରଭଂଜର ଜିଲ୍ଲାପାଳ, ନିର୍ମାଣ, ଶିକ୍ଷ ସ୍ୱରାଷ୍ଟ୍ର ବିଭାଗର ସଚିବ ଭାବରେ ଓଡ଼ିଶାରେ କାର୍ଯକରି ସେ ଭାରତ ସରକାରଂକ ଅଧୀନରେ ଅବସ୍ଥାପିତ ହେଲେ। ସ୍ୱରାଷ୍ଟ୍ର ମଂତ୍ରଣାଳୟ ଓ ପରେ କେଂଦ୍ର ଲୋକସେବା ଆୟୋଗର ସଚିବ ଭାବରେ କାର୍ଯକରି ସେ ଓଡ଼ିଶାକୁ ଫେରିଲେ। ରାଜସ୍ୱ ପରିଷଦର ସଭ୍ୟ ଭାବରେ ସେ ୧୯୮୮ରେ ଅବସର ନେବା ପରେ କେଂଦ୍ର ପ୍ରାଶାସନିକ ଟ୍ରିବ୍ୟୁନାଲର ଉପାଧ୍ୟକ୍ଷ ଭାବରେ କାର୍ଯ କଲେ। ଏସବୁ ତାଂକର ଚାକିରିକାଳର ପରିଚୟ।

ମାତ୍ର ବିଘ୍ନରାଜାଂକର ବିଶେଷତ୍ୱ ନାନା କ୍ଷେତ୍ରରେ ପ୍ରକାଶିତ ହୋଇଥିଲା। ଓଡ଼ିଶାର ବିଖ୍ୟାତ ଖାନଦାନି ମର୍ଦରାଜ ପରିବାରରେ ସେ ଦାମୋଦର ମର୍ଦରାଜଂକର କନ୍ୟା ଉଷା ଦେବୀଂକୁ ବିବାହ କରିଥିଲେ। ଫଳରେ ସାମାଜିକ ପ୍ରତିଷ୍ଠା ତାଂକର ଉଚ୍ଚ ଥିଲା। ତଥାପି ସେ ନିଜର ବାଲ୍ୟଜୀବନ, ସମାଜ ଓ ବାଲ୍ୟସାଥୀମାନଂକୁ ନିଜର କରି ରଖିପାରିଥିଲେ। ଅକୃତ୍ରିମ ଆତ୍ମୀୟତା ତାଂକର ଚାରିତ୍ରିକ ବିଶେଷତ୍ୱ ଥିଲା। ପ୍ରଥମ ଜୀବନରେ ଦାରିଦ୍ର୍ୟର କଷାଘାତ ତାଂକୁ ଶିକ୍ଷା ଦେଇଥିଲା ସମସ୍ତଂକ ପାଇଁ ସମାନ ସୁବିଧା ଓ ସୁଯୋଗର ଆବଶ୍ୟକତା ଅଛି। ନିଜର ଶିକ୍ଷକମାନଂକର ଉତ୍ସାହ, ପ୍ରେରଣା, ସାହାଯ୍ୟ ସହାନୁଭୂତି ବିଷୟରେ ସେ ସର୍ବଦା ସଚେତନ ଥାଇ ନିଜେ ନିଜର ଅଂଚଳର ଛାତ୍ରମାନଂକୁ କିପରି ସାହାଯ୍ୟ କରିବେ ସେ ବିଷୟରେ ଉଦ୍ୟମଶୀଳ ଥିଲେ। ଲୋକେ ତାଂକୁ ନାନା ପ୍ରକାର ଉଚିତ ଅନୁଚିତ ଅନୁରୋଧ ଘେନି ଭେଟୁଥିଲେ, ମାତ୍ର କାହାରି ମନରେ କଷ୍ଟ ନ ଦେଇ ନିଜର ସାମର୍ଥ୍ୟ ସୀମା ମଧ୍ୟରେ ସେ ନିଜ କର୍ତବ୍ୟ ସଂପାଦନରେ ଦୃଢ଼ତା ଅବଲଂବନ କରୁଥିଲେ। ତାଂକ ଚରିତ୍ରର ବିଶେଷତ୍ୱ ଜରୁରୀ ଅବସ୍ଥା ସମୟରେ ସ୍ୱରାଷ୍ଟ୍ର ସଚିବ ଥାଇ ଆଇନ ସିଦ୍ଧ ଭାବରେ କର୍ତବ୍ୟ ସଂପାଦନରେ ପ୍ରମାଣିତ ହୋଇଥିଲା। ଦେଶରେ ଜରୁରୀ ପରିସ୍ଥିତି ଜାରି ହେଲା। ରାଜ୍ୟରେ କ୍ଷମତାସୀନ ଦଳ ମଧ୍ୟ କେଂଦ୍ରରେ ଶାସନ କରୁଥିଲା ଓ ତାଂକ ନିର୍ଦେଶ ନିର୍ବିଚାରରେ ପାଳନ କରୁଥିଲା। ବିରୋଧୀ ଦଳର ନେତାମାନଂକୁ କାରାରୁଦ୍ଧ କରାଗଲା। ସେଠାରେ ସେମାନଂକୁ ନିର୍ଯାତନା ଦିଆଗଲା। ପରିବାର ନିୟଂତ୍ରଣ ଅସ୍ତ୍ର ଉପଚାର ଜବରଦସ୍ତି ଆକାର ଧାରଣ କଲା। ସଂବାଦପତ୍ରର ସ୍ୱାଧୀନତା ଖର୍ବ କରିଦିଆଗଲା, ଶାସକ ଦଳର ରୁଚିକର ସଂବାଦ

କେବଳ ପ୍ରକାଶଯୋଗ୍ୟ ବିବେଚିତ ହେଲା। ପୋଲିସ ଉଚ୍ଛୃଙ୍ଖଳ ଅଣାୟତ୍ତ ହେଲା। ଅନ୍ୟ ଅନେକ ରାଜ୍ୟରେ କ୍ଷମତାସୀନ ଦଳ ଏ ପ୍ରକାର ପଦକ୍ଷେପ ଫଳରେ ସମାଲୋଚିତ ହେଲେ ମଧ୍ୟ ଓଡ଼ିଶାରେ ଏହା ଦେଖାଯାଇ ନ ଥିଲା। ପରବର୍ତ୍ତୀ କାଳରେ ପ୍ରତିଷ୍ଠିତ ସାହା କମିସନ୍‌ର ରିପୋର୍ଟରୁ ଏହା ଜଣାଗଲା। ରାଜ୍ୟ ସ୍ୱରାଷ୍ଟ୍ର ସଚିବଂକ ଆଇନସିଦ୍ଧ କର୍ତବ୍ୟ ସଂପାଦନ ଓ ବିବେକାନୁମୋଦିତ ପଂଥା ଏହାର ମୂଳରେ ଥିଲା। ଭାଗଲପୁର କେଂଦ୍ର ଜେଲରେ କଏଦୀ କେତେଜଣଂକୁ ଅଂଧ କରିଦିଆଯିବାରେ ବ୍ୟଥିତ ହୋଇ ବିଘ୍ନରାଜ କବିତା ଲେଖିଥିଲେ –

"ନିରେଖି ଯାତନା
ଦିଅନା ଜନନୀ
ଚମଡ଼ା ଛାଉଣି ତଳେ
ମୁଇଁ ତ ଆଂଖିଲାଏ ମେଦ
ନେତ୍ରହୀନ କରିଦିଅ ମୋତେ।
ଅସରଂତି ଅଂଧାରେ
ଦେଖୁଥିବି ପ୍ରତ୍ୟୁଷର
ନୂଆ ଅଂଗୀକାର
ଅଥବା ଦେଖୁଥିବି ସଦା
ସେଇ ସେଇ ଅସୀମତା ରୂପାୟି
ମୋର ଅପାରଗତା।"

ଜରୁରି ପରିସ୍ଥିତି ବେଳର ସ୍ୱରାଷ୍ଟ୍ର ସଚିବଂକ ମାନବିକ ଚେତନା ଏଥିରେ ସୁସ୍ପଷ୍ଟ। ଅବସର ଗ୍ରହଣ ପରେ ବିଘ୍ନରାଜ ବହୁ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ଥିଲେ ମଧ୍ୟ ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ Institute of Language Literature and Culture ସଂକ୍ଷେପରେ ଇଲ୍ଲାକ ବିଶେଷ ଉଲ୍ଲେଖନୀୟ। ସ୍ୱରାଷ୍ଟ୍ର ମଂତ୍ରଣାଳୟର ଯୁଗ୍ମ ସଚିବ ଭାବରେ ଭାରତୀୟ ଭାଷା ସମୂହ ଓ ସେମାନଂକର ସମସ୍ୟା ବିଷୟରେ ସେ ଅନୁଧ୍ୟାନ କରିଥିଲେ। ଇଲ୍ଲାକ (ILLAC) ଲୋକ ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ ଗଢ଼ାଯାଇ ଭାଷା ଯେ ଗୋଟିଏ ଜାତିର ପରିଚୟ ତଥା ସ୍ୱାଭିମାନର ପ୍ରତୀକ ଏ ଦିଗରେ କାର୍ଯ୍ୟ କରାଗଲା। ଭାଷା ଗବେଷଣା ଓ ସଂପ୍ରସାରଣ କେଂଦ୍ରରେ କାର୍ଯ୍ୟର ଅଭିଜ୍ଞତା ଥିବା ବିଶେଷଜ୍ଞମାନେ ଏଥିରେ ଯୋଗଦେଲେ। ବିଘ୍ନରାଜ ପ୍ରଥମରୁ ଆଲୋଚନା ଚକ୍ରରେ ପଠିତ ପ୍ରବଂଧମାନଂକ ଉପରେ ପୁଂଖାନୁପୁଂଖ ଆଲୋଚନା ସହିତ ସଂପୃକ୍ତ ଥିଲେ ଓ

## ବଲାଂଗିର ବଳୟରେ

୧୯୯୯ ମଇ ପାଂଚ ତାରିଖରୁ ଏହାର ସଭାପତି ଦାୟିତ୍ୱ ବହନ କଲେ। ଓଡ଼ିଶାର ଆଦିବାସୀ ଭାଷାଗୁଡ଼ିକର ତୁଳନାତ୍ମକ ଅଭିଧାନ, ସଂବଲପୁରୀ ଭାଷା ଓ ଲୋକ ସାହିତ୍ୟ ଆଦି କ୍ଷେତ୍ରରେ ଏହି ଅନୁଷ୍ଠାନ କାର୍ଯ କରୁଛି। ସଂବଲପୁରୀ ଭାଷାପ୍ରତି ବିଘ୍ନରାଜଙ୍କର ଅନୁରାଗ ଥିଲା। ସେ ଏହି ଭାଷାରେ ଅନ୍ୟମାନଂକ ସହିତ କଥାବାର୍ତା କରୁଥିଲେ ଓ ଏହି ଭାଷାରେ କହିବାକୁ ପ୍ରୋତ୍ସାହିତ କରୁଥିଲେ। ନିଜ ଜନ୍ମସ୍ଥାନ ପାଇଁ କାର୍ଯ କରିବାକୁ ସେ ସବୁବେଳେ ଉଦ୍ୟମରତ ଥିଲେ। ନିଜ ପରିବାରର ସଭ୍ୟ ଓ ସଂତାନମାନଂକୁ ଗାଁକୁ ନେଇ ରଖାଇବାରେ ସେ ଆନଂଦିତ ହେଉଥିଲେ। ତାଂକ ବାପା ଗାଁ ଛାଡ଼ି ଆସିବାକୁ ଚାହୁଁ ନଥିଲେ। ତେଣୁ ସେ ପୁଅ ପାଖକୁ ଆସିଲେ ସୁପୁତ୍ର ନିଜେ ବସଷ୍ଟାଂଡକୁ ଯାଇ ତାଂକୁ ଆଣି ଆସୁଥିଲେ। ସଂପୂର୍ଣ ଅଭିମାନଶୂନ୍ୟ ଥାଇ ବିଘ୍ନରାଜ ଥିଲେ ଜଣେ ସ୍ୱାଭିମାନୀ ପୁରୁଷ। ଗାଁର ଉନ୍ନତି ପାଇ ସେ ଏକ ଟ୍ରଷ୍ଟ ଗଠନ କଲେ। ନିଜର ବଡ଼ବୋହୂ ଅମୃତା (ଅବସରପ୍ରାପ୍ତ ରାଜ୍ୟ ନିର୍ବାଚନ କମିସନର ଦେବେଂଦ୍ର କୁମାର ମିଶ୍ରଂକ କନ୍ୟା) ବଲାଂଗିର ଜିଲ୍ଲାର ବୋଲି ସେ ଗର୍ବିତ ଥିଲେ।

ପଶ୍ଚିମ ଓଡ଼ିଶାରୁ ପ୍ରଥମ ୧୯୫୨ ସର୍ବଭାରତୀୟ ସେବାରେ ଯୋଗଦାନ କରିଥିବା ଏହି କୃତୀ ସର୍ବଜନପ୍ରିୟ ଛାତ୍ର ଓ ପ୍ରଶାସକ, ଦୀର୍ଘ ଅସୁସ୍ଥତା ପରେ ସବୁ ଚିକିତ୍ସା ନିଷ୍ଫଳ କରି ଶେଷରେ ୨୦୦୨ ସେପ୍ଟେଂବର ୧୮ ତାରିଖରେ ଅଗଣିତ ବନ୍ଧୁ ଓ ଅନୁରାଗୀଂକୁ ଶୋକସାଗରରେ ଭସାଇ ଅମୃତ ପଥର ଯାତ୍ରୀ ହେଲେ।



ପଛ ଘୁଂଚା ଆମର ଜାତକେ ନାଇଁ
ଗଲେ ଯାଉ ଜୀବନ
ଆମେ ଧୂକା ଗରେଲ (ଝଡ଼ ବତାସ)
ଆମେ ଶୀତଲ୍ ପବନ୍
ଦେଶ ଡାକୁଛେ ଗାଆଁ ଡୁକୁଛେ
ଡାକୁଛେ ମାଟିର ମାଆ
ଗାଆଁ ମାଆର ଲାଗି ଜୀବନ ଗଲେଁ
ରହେବା ସିନା ତୋର ନାଆଁ।

(ସରଗମଲ୍ଲୀ) - ଶ୍ରୀପତୀ ପାଣିଗ୍ରାହୀ



# ବିଦ୍ୟାପ୍ରବୀଣ
# ଗୋବିଂଦ ଚଂଦ୍ର ଉଦ୍‌ଗାତା

ବଲାଂଗିରର ହୋତା ଓ ଉଦ୍‌ଗାତା ପରିବାରର ପାଟଣାରାଜ୍ୟର ଶିକ୍ଷା ଓ ସଂସ୍କୃତି ପ୍ରତି ଅବଦାନ ସର୍ବଜନସ୍ୱୀକୃତ। ପୁରୀ ଜିଲ୍ଲାରୁ କୌଣସି ଏକ ବ୍ରାହ୍ମଣ ଶାସନରୁ ଗୋଟିଏ ନୈଷ୍ଠିକ ପରିବାର ପାଟଣା ରାଜ୍ୟକୁ ଆସିଲେ। ରାଜ ପୃଷ୍ଠପୋଷକତା ତାଂକୁ ମିଳିଲା। ସେମାନେ ରାଜ୍ୟର ଶିକ୍ଷା, ସଂସ୍କୃତି ବିଶେଷ କରି ପାରଂପରିକ ସଂସ୍କୃତ ଶିକ୍ଷା ପ୍ରସାରରେ ଦରବାରର ସହାୟକ ହେଲେ। ଏକଦା ରାଜ୍ୟର ଜଣେ ମୁଖ୍ୟ କର୍ମଚାରୀ ଥିଲେ ଚିଂତାମଣି ନଂଦ ବିଦ୍ୟାଭୂଷଣ। ଧର୍ମଗ୍ରଂଥ ଓ ସଂସ୍କୃତ ଶାସ୍ତ୍ରରେ ବ୍ୟୁତ୍ପତ୍ତି ନିମିତ୍ତ ସେ ସାଧାରଣରେ ନଂଦ ପଂଡିତ ନାମରେ ପ୍ରସିଦ୍ଧ ଲାଭ କରିଥିଲେ। ସେ ଏହି ପୁରୀ ଆଗତ ପଂଡିତମାନଂକୁ ମଧ୍ୟ ଉତ୍ସାହିତ କଲେ। ଏହି ପରିବାରରେ ଜନ୍ମ ନେଇଥିଲେ ବିଦ୍ୱାନ ଗୋବିଂଦ ଚଂଦ୍ର। ତାଂକର ଜନ୍ମ ୧୯୨୦ରେ। ତାଂକର ପିତା ଥିଲେ ଲକ୍ଷ୍ମୁକେଶ୍ୱର ଉଦ୍‌ଗାତା କାବ୍ୟତୀର୍ଥ। ବଡ଼ବାପା ଗଦାଧର ମଧ୍ୟ ଜଣେ ବିଖ୍ୟାତ ସଂସ୍କୃତଜ୍ଞ ଥିଲେ। ମହାରାଜା ଦଳଗଂଜନ ବଲାଂଗିର ସହରରେ ଗୋଟିଏ ଟୋଲ

ଖୋଲିଲେ। ଲକ୍ଷ୍ମୀକେଶ୍ୱର ପଂଡିତଂକୁ ଏହାର ଅଧ୍ୟକ୍ଷ କରାଇଲେ। ପରବର୍ତ୍ତୀ କାଳରେ ରାଜ୍ୟ ମିଶ୍ରଣ ଉତ୍ତାରେ ଏହି ଟୋଲଟି କଲେଜ ହୋଇ ବର୍ତମାନ ବିଦ୍ୟାଭୂଷଣ ନଂଦଂକର ନାମରେ ନାମିତ। ଗୋବିଂଦଚଂଦ୍ର ସଂସ୍କୃତ ପଂଡିତ ପରିବାରରୁ ଆସି ଘରୋଇଭାବେ ସଂସ୍କୃତ ଶିକ୍ଷା କଲେ। ମାତ୍ର ସ୍ଥାନୀୟ ହାଇସ୍କୁଲରେ ମାଟ୍ରିକ ପଢ଼ିଲେ। ପାସ୍ କରି କଟକରେ ଶିକ୍ଷକ ଟ୍ରେନିଂ ନେଲେ। ଶିକ୍ଷକତା ଆରଂଭ କଲେ ବଲାଂଗିର ସହରର ମାଇନର ସ୍କୁଲରୁ। ତାଂକର ପାଂଡିତ୍ୟରେ ମୁଗ୍ଧ ହୋଇ ରାଜ୍ୟର ଏକମାତ୍ର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ବାଳମୁକୁଂଦ ହୋତା ତାଂକୁ ହାଇସ୍କୁଲକୁ ଆଣିବାକୁ ସୁପାରିଶ କଲେ। ଦରବାର ଏହା ଗ୍ରହଣ କଲେ। ଗୋବିଂଦଚଂଦ୍ର ହାଇସ୍କୁଲକୁ ଆସିଲେ। ସେଠାରେ ତାଂକୁ ଜ୍ଞାନପିପାସା ନିବାରଣର ବିଶେଷ ସୁବିଧା ମିଳିଲା। ସ୍କୁଲର ଅନ୍ୟ ଶିକ୍ଷକମାନେ ମଧ୍ୟ ଯୋଗ୍ୟ ଥିଲେ। ସଂସ୍କୃତରେ ଶିକ୍ଷା ଦେବାକୁ ସେ ୧୯୪୨ରେ ପ୍ରଥମ ଓ ୧୯୪୪ରେ ମଧ୍ୟମା ପରୀକ୍ଷା ଦେଇ ପାସ୍ କଲେ। ଘରୋଇ ଭାବରେ ଆଇ.ଏ. ପରୀକ୍ଷା ଦେଇ ୧୯୪୫ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପାସ୍ କଲେ, ସଂସ୍କୃତରେ ମଧ୍ୟ ଉଚ୍ଚ ଶିକ୍ଷା ନେଇ ଶାସ୍ତ୍ରୀ ପାସ୍ କଲେ। ୧୯୪୯ରେ ସେ ବି.ଏ. ପରୀକ୍ଷା ଦେଲେ ଓ ତା ସହିତ ସଂସ୍କୃତରେ ଉପାଧି ସାହିତ୍ୟାଚାର୍ଯ ପ୍ରଥମ ପରୀକ୍ଷା ଦେଲେ। ଦୁଇଟିରେ କୃତକାର୍ଯ ହେଲେ। ସବୁ ବିଷୟରେ ଶତକଡ଼ା ପଚାଶରୁ ଅଧିକା ନଂବର ରଖି ବି.ଏ.ରେ ସେ ଡିଷ୍ଟିଂସନ୍ ମଧ୍ୟ ପାଇଲେ। ତା ଆରବର୍ଷ ଗ୍ରାଜୁଏଟ୍ ଶିକ୍ଷକ ଟ୍ରେନିଂ ନେଇ ବି.ଇ.ଡି ପାସ୍ କଲେ। ୧୯୫୧ରେ ସାହିତ୍ୟାଚାର୍ଯ ଉଭୟ ଭାଗ ପାସ୍ କଲା ପରେ ସେ ଉପାଧି ପାଇଲେ। ମାତ୍ର ତାଂକର ପରିଶ୍ରମ ଓ ଅଧ୍ୟବସାୟ ସେତିକିରେ ସରିଲା ନାହିଁ। ୧୯୫୨ରେ ସେ ନାଗପୁର ବିଶ୍ୱବିଦ୍ୟାଳୟରୁ ଘରୋଇ ଛାତ୍ର ଭାବରେ ସଂସ୍କୃତରେ ଏମ୍.ଏ. ପରୀକ୍ଷା ଦେଲେ ଓ ପାସ୍ କଲେ। ୧୯୫୬ରେ ପୃଥ୍ୱୀରାଜ ହାଇସ୍କୁଲର ଶିକ୍ଷକ ଥାଇ ସେ ଓଡ଼ିଆରେ ଏମ୍.ଏ. ପାସ୍ କଲେ। ପ୍ରଥମ ଶ୍ରେଣୀରେ ପ୍ରଥମ ହେବା ଯୋଗ୍ୟତା ଅର୍ଜନ କଲେ। ତାଂକର ଅଧ୍ୟବସାୟ ଓ ଜ୍ଞାନାର୍ଜନ ପିପାସା ତାଂକୁ ଜିଲ୍ଲାର ବୌଦ୍ଧିକ ଜଗତରେ ଏକ ପ୍ରତିଭାଦୀପ୍ତ ପଂଡିତ ଭାବରେ ପରିଚିତ କରାଇ ପାରିଲା। ବଲାଂଗିରରେ ସେ ଅଠର ବରଷ ଶିକ୍ଷକତା କଲେ। ଅନେକ କୃତୀ ଛାତ୍ର ଗଢ଼ିଲେ। ସାହିତ୍ୟ, ସଂଗୀତ, ନାଟକ ସହିତ ସେ ସମାଜ ସେବାରେ ମଧ୍ୟ ନିଜର ସମୟ ନିୟୋଜିତ କରି ପ୍ରଶଂସିତ ହେଲେ। ୧୯୪୨ରେ 'ଡାକ୍ତର' ବୋଲି ଗୋଟିଏ ନାଟକ ଲେଖିଥିଲେ। ୧୯୫୬ରେ 'ମାନସୀ' ନାମରେ ଅନ୍ୟ ଏକ ନାଟକ ରଚନା କଲେ। ପ୍ରଥମଟି କୋଶଳ କଳା ମଂଡପରେ ଅଭିନୀତ ହୋଇ ଦରବାରରୁ ପ୍ରଶଂସା ପାଇଥିଲା। ୨ୟଟି ମଧ୍ୟ ତତ୍‌କାଳୀନ ମଂତ୍ରୀ ଡକ୍ଟର

ରାମପ୍ରସାଦଂକ ଉଦ୍ୟମରେ ମଂଚସ୍ଥ କରାଯାଇଥିଲା। ବଲାଂଗିରରେ ନୃତ୍ୟ ସଂଗୀତ ବିଦ୍ୟାଳୟ ପ୍ରତିଷ୍ଠା ଓ ପରିଚାଳନାରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ। ବିଦ୍ୟାଳୟର ସ୍କାଉଟିଂ ଓ କ୍ରୀଡ଼ା ସଂଯୋଜନାରେ ମଧ୍ୟ ତାଂକର ମୁଖ୍ୟ ଭୂମିକା ଥିଲା। ପ୍ରଜାତଂତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ସେ ବଲାଂଗିରର ଶିଶୁମାନଂକୁ ଧରି ମୀନା ମଂଡଳୀ ଗଠନ କରି ଶିଶୁ ଓ କିଶୋରମାନଂକୁ ଲେଖା ଓ ଲେଖାର ପ୍ରତିଭା ବିକାଶ ଉଦ୍ଦେଶ୍ୟରେ ଉତ୍ସାହିତ କରିବାକୁ କ୍ଷେତ୍ର ପ୍ରସ୍ତୁତ କରିଥିଲେ।

ଘରୋଇ ଭାବରେ ଏମ୍.ଏ. ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପ୍ରଥମ ଉତ୍ତୀର୍ଣ୍ଣ ହୋଇ ସେ ବନମଲ୍ଲୀ ପରି ସେଇଠାରେ ହୁଏତ ଝାଉଁଳି ପଡ଼ିଥାଂତେ। ତାଂକର ସ୍ଥାନୀୟ ସମକାଳୀନ ଅନେକ ପ୍ରତିଭାର ଏମିତି ଦଶା ଘଟିଥିଲା। ମାତ୍ର ସୌଭାଗ୍ୟକୁ ସେ ଅଧ୍ୟାପକ ନିଯୁକ୍ତି ଲାଭ କରି କଟକର ରେଭେନ୍‌ସା କଲେଜରେ ଯୋଗ ଦେଲେ। ସେଠାରେ ସେତେବେଳେ ତାଂକଠାରୁ ବରିଷ୍ଠ କୁଂଜବିହାରୀ ତ୍ରିପାଠୀ ଗୌରୀକୁମାର ବ୍ରହ୍ମା, କାହ୍ନୁଚରଣ ମିଶ୍ର ନଟବର ସାମଂତରାୟ, ନାରାୟଣ ତ୍ରିପାଠୀ, ଜାନକୀ ବଲ୍ଲଭ ମହାଂତି ଆଦି ଅନେକ ପ୍ରତିଷ୍ଠିତ ଜ୍ଞାନୀ ଓ ସାହିତ୍ୟ ସ୍ରଷ୍ଟାଂକ ସଂପର୍କରେ ଆସିବାର ତାଂକୁ ସୁଯୋଗ ମିଳିଲା। ଅଧ୍ୟୟନ ଓ ଆଲୋଚନା ନିମିତ୍ତ ତାଂକୁ ବିସ୍ତୃତ କ୍ଷେତ୍ର ମିଳିଲା। ବିଂଶ ଶତାବ୍ଦୀର କାବ୍ୟ କବିତା ବିଷୟରେ ସେ ବିଶେଷ ଆଲୋଚନା ଆରଂଭ କଲେ। ଅଳଂକାର ଓ ତାର ପ୍ରୟୋଗ ସଂପର୍କରେ ଗବେଷଣା କରି ଅନେକ ପ୍ରବଂଧ ପ୍ରକାଶ କଲେ। ଡକ୍ଟର କୁଂଜବିହାରୀ ତ୍ରିପାଠୀ ବିଭାଗର ମୁଖ୍ୟ ଥିଲେ। ସେ ଲଂଡନର School of Oriental and African studies ରୁ ଉପାଧି ପାଇ ଗବେଷକ ଭାବରେ ସ୍ୱୀକୃତି ପାଇଥାଆଂତି। ତାଂକ ସଂପାଦିତ ଓଡ଼ିଆ ସାହିତ୍ୟ ସମୀକ୍ଷଣ ପୁସ୍ତକରେ ଅଧ୍ୟାପକ ଉଦ୍‌ଗାତାଂକର ସଂସ୍କୃତ କାବ୍ୟାଦର୍ଶ ଓ ଓଡ଼ିଆ ରୀତି କାବ୍ୟ ପ୍ରବଂଧଟି ପ୍ରକାଶିତ ହେଲା। ଏହା ଏକ ଉଚ୍ଚକୋଟିର ପ୍ରବଂଧ ଭାବରେ ସ୍ୱୀକୃତି ପାଇଲା। ପ୍ରବଂଧରୁ ତାଂକର ଗଭୀର ଅନୁଶୀଳନ ଓ ମନନଶୀଳତାର ପରିଚୟ ବିଜ୍ଞ ମଂଡଳୀରେ ଆଦୃତ ହେଲା। ତାଂକର ଗବେଷଣାର କ୍ଷେତ୍ର ଥିଲା ଅଳଂକାର ତତ୍ତ୍ୱ ଓ ଓଡ଼ିଆ କାବ୍ୟରେ ତାହାର ପ୍ରୟୋଗ। ଏହି ଅଳଂକାର ସଂପର୍କରେ ତାଂକ ପ୍ରଣୀତ ପୁସ୍ତକ ଅଳଂକାର ପ୍ରସଂଗ ତାଂକୁ ୧୯୮୦ ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତିର ଗୌରବ ପ୍ରଦାନ କରିଅଛି । ତାଂକର ରଚନାବଳୀ 'ଡଗର', 'ଝଂକାର', 'ଯୁଗପ୍ରଭା', 'ପ୍ରଜ୍ଞା', 'କୋଣାର୍କ', 'ସପ୍ତର୍ଷି' ଆଦି ଗବେଷଣାତ୍ମକ ପତ୍ରିକାମାନଂକରେ ପ୍ରକାଶିତ ହୋଇ ତାଂକୁ ଲୋକପ୍ରିୟ କରାଇ ପାରିଥିଲା। ବଲାଂଗିର ପୃଥ୍ୱୀରାଜ ହାଇସ୍କୁଲର 'ପାରିଜାତ' ପତ୍ରିକାରୁ ଆରଂଭ

କରି ବଲାଙ୍ଗିରରେ 'ଚତୁରଂଗ', ରେଭେନ୍ସା କଲେଜର 'ରେଭେନ୍‌ସେଭିଆନ', କୋଶଳ ସାହିତ୍ୟ ସମାଜର 'ଶାଶ୍ୱତୀ', ବିଶ୍ୱବିଦ୍ୟାଳୟର ସାହିତ୍ୟ ଗବେଷଣାତ୍ମକ ପତ୍ରିକା 'ସପ୍ତର୍ଷି'ର ସଂପାଦନା ସହିତ ସେ ସଂପୃକ୍ତ ଥିଲେ। ତାଂକର ରଚନା ମଧ୍ୟରେ ଭ୍ରମଣ ବୃତ୍ତାଂତ ବଂବେ ଡାଏରୀ (୧୯୫୭), ସାହିତ୍ୟ ସମୀକ୍ଷଣ (୧୯୬୩), ଅଳଂକାର ପ୍ରସଂଗ (୧୯୭୮), ସାହିତ୍ୟ ପ୍ରସଂଗ (୧୯୮୨) ତପସ୍ୱିନୀର ସତୀଂକ ଚରିତ ଓ ସମୀକ୍ଷା (୧୯୮୩) ବିଶେଷ ଉଲ୍ଲେଖନୀୟ। 'ଗଂଗାଧର ପ୍ରସଂଗ' ଓ କବି ଗଂଗାଧରଂକର ଜୀବନୀ ଓ ସାହିତ୍ୟ ସେ ରଚନା କରିଥିଲେ। ୧୯୯୫ରେ କେଂଦ୍ରୀୟ ସାହିତ୍ୟ ଏକାଡେମୀ ତାଂକୁ ତାଂକ ଗ୍ରଂଥ 'କାବ୍ୟ ଶିଳ୍ପୀ ଗଂଗାଧର' ନିମିତ୍ତ ପୁରସ୍କୃତ କରିଥିଲେ। ଜଣେ ବିଶିଷ୍ଟ ସାହିତ୍ୟ ସମାଲୋଚକ ଓ ଗବେଷକ ଭାବରେ ଅଧ୍ୟାପକ ଉଦ୍‌ଗାତା ଧରିତ୍ରୀ ସମ୍ମାନ (୧୯୮୪), ଅତିବଡ଼ି ଜଗନ୍ନାଥ ଦାସ ସମ୍ମାନ (୧୯୯୫), ସ୍ୱୀକାର ସମ୍ମାନ (୧୯୯୬), ରୁଦ୍ର ଅହ୍ୱାନ ସମ୍ମାନ (୧୯୯୬), ସାରଳା ସମ୍ମାନ (୧୯୯୬) ସହିତ ସଂବଲପୁର ବିଶ୍ୱବିଦ୍ୟାଳୟର ରଜତ ଜୟଂତୀ ଉପଲକ୍ଷେ ୧୯୯୨ରେ ଓ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିବସ ଉପଲକ୍ଷେ ୧୯୯୬ ରେ ସମ୍ମାନିତ ହୋଇଥିଲେ। ସଂବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ରିଡର ପଦରୁ ସେ ଅବସର ନେଇ ଅତାବିରା କଲେଜର ଅଧ୍ୟକ୍ଷ ଭାବେ ୧୯୮୧ରୁ ୧୯୮୩ ପର୍ଯଂତ କାର୍ଯ କରିଥିଲେ। ୧୯୮୪ରୁ ୧୯୮୬ ପର୍ଯଂତ ସେ ସଂବଲପୁରରୁ ପ୍ରକାଶିତ ହୀରାଖଂଡ ସଂବାଦପତ୍ରର ସଂପାଦକ ଥିଲେ। ନିର୍ଦ୍ଦିଷ୍ଟ ରାଜନୈତିକ ମତବାଦର ପୃଷ୍ଠପୋଷକ ନ ଥାଇ ମଧ୍ୟ ଏହି ପଦବିରେ ତାଂକ ନିଯୁକ୍ତି ବିସ୍ମୟକର ଥିଲା। କଠିନ ପରିଶ୍ରମ, ନିରଳସ ସାଧନା ଓ ନିଷ୍ଠାପର ଉଦ୍ୟମ ଫଳରେ ନିଜ ଚେଷ୍ଟାରେ ସେ ବଲାଂଗିର ପାଟଣା ରାଜ୍ୟର ରାଜୁତା ଅମଳର ଏକ ମାଇନର ସ୍କୁଲରୁ ଶିକ୍ଷକ ଭାବେ କର୍ମଜୀବନ ଆରଂଭ କରି ଓଡ଼ିଶାର ଜଣେ ପ୍ରତିଷ୍ଠିତ ବିଦ୍ୱାନ୍ ଭାବେ ପରିଚିତ ହୋଇ କେଂଦ୍ର ଓ ରାଜ୍ୟ ସାହିତ୍ୟ ଏକାଡେମୀର ସମ୍ମାନ ଲାଭ କରିବାକୁ ସମର୍ଥ ହୋଇଥିଲେ। ଅଧ୍ୟୟନ ଅଧ୍ୟାପନା ଓ ଗ୍ରଂଥ ରଚନାରେ ସେ ନିଜକୁ ଉତ୍ସର୍ଗ କରିଥିଲେ। ଅନେକ ଗବେଷଣାତ୍ମକ ଗ୍ରଂଥ ରଚନା କରି ମଧ୍ୟ ସେ ପି.ଏଚ୍.ଡି ପାଇଁ ଉଦ୍ୟମ କରି ନ ଥିଲେ ଅଥଚ ବହୁ ଗବେଷକ ତାଂକଠାରୁ ପ୍ରେରଣା ଓ ଦିଗ୍‌ଦର୍ଶନ ଗ୍ରହଣ କରୁଥିଲେ। ୧୯୯୯ ଡିସେଂବର ୩୦ ତାରିଖରେ ସଂବଲପୁରଠାରେ ତାଂକର ଦେହାବସାନ ଘଟେ।

ଏହା ପୂର୍ବରୁ ସଂବଲପୁର ବିଶ୍ୱବିଦ୍ୟାଳୟ ୧୯୮୮ରେ ତାଂକୁ ସମ୍ମାନଜନକ ଡି.ଲିଟ୍ ଉପାଧିରେ ୧୮ଶ ସମାବର୍ତନ ଉତ୍ସବ ଅବସରରେ ସମ୍ମାନିତ କରିଥିଲେ।

ଡି.ଲିଟ୍ ପ୍ରଦାନ ଅବସରରେ ତାଂକର ପ୍ରତିଭା ଆଲୋଚନା କରି କୁହାଯାଇଥିଲା, "ସଂସ୍କୃତ କାବ୍ୟତତ୍ତ୍ୱ ତଥା ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ପରଂପରାରେ ଶ୍ରୀ ଉଦ୍‌ଗାତାଂକ ପାରଦର୍ଶିତା ବିଶେଷତଃ ଗଂଗାଧର ସାହିତ୍ୟ ଅଧ୍ୟୟନ ପାଇଁ ତାଂକର ସମାଲୋଚନାତ୍ମକ ଦୃଷ୍ଟିଭାଂଗୀ ତାଂକର ଅଂତର୍ଦ୍ଦୃଷ୍ଟିମୂଳକ ଅନୁଶୀଳନର ପ୍ରମାଣ ଦିଏ। ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରତି ତାଂକର ବିଶେଷ ଆଗ୍ରହ ତାଂକୁ ସମୃଦ୍ଧ ତଥା ବୃହତ୍ତର ସାହିତ୍ୟକ ପରିମଂଡଳ ଆଡକୁ  କ୍ରମଶଃ ନେଇଯାଇଛି। ସେ ରମାକାଂତ ରଥଂକ 'ଶ୍ରୀରାଧା' କାବ୍ୟକୁ ସଂସ୍କୃତରେ ଅନୁବାଦ କରିଛଂତି। ମାଘ କବିଂକ ବିଷୟରେ ମୂଳ ହିଂଦିରୁ ଓଡ଼ିଆ ଅନୁବାଦ କରଥିବା ଶ୍ରୀ ଉଦଗାତାଂକର ପୁସ୍ତକଟି କେଂଦ୍ର ସାହିତ୍ୟ ଏକାଡେମୀ ପ୍ରକାଶ କରିଛି। ଶ୍ରୀ ଉଦ୍‌ଗାତାଂକର ଏହି ସମସ୍ତ ମୌଳିକ ଗ୍ରଂଥ ପ୍ରକାଶନ ବ୍ୟତୀତ ସେ ଯୁଗପ୍ରଭା ଡଗର, ଝଂକାର, କୋଣାର୍କ ଓ ସପ୍ତର୍ଷି ଆଦି ଅଭିଜାତ ସାହିତ୍ୟ ପତ୍ରରେ ବହୁ ସମାଲୋଚନାତ୍ମକ ନିବଂଧ ପ୍ରକାଶ କରିଛଂତି। ସେ ସାହତ୍ୟ ଓ ସଂସ୍କୃତି ବିଷୟକ ପଚାଶରୁ ଅଧିକ ଆଲୋଚନା ଆକାଶବାଣୀରେ ପ୍ରଚାର କରିଛଂତି। ଶ୍ରୀ ଉଦଗାତା ଜଣେ ସମର୍ଥ ବକ୍ତା, ସାଂବାଦିକ, ନାଟ୍ୟଶିଳ୍ପୀ ତଥା ଅଭିନେତା, ଯାହାର ସଫଳ ସମନ୍ୱୟ ହୁଏତ ସାମଗ୍ରିକ ଭାବ ତାଂକ ବ୍ୟକ୍ତିତ୍ୱରେ ପରିଲକ୍ଷିତ ହୁଏ।"



"ମନରୁ ଜନମ ମାନ ପୀରତି
ମନକୁ ଆଚ୍ଛନ୍ନ କରେ ତା ରୀତି
ସ୍ନେହାସ୍ନେହରେ ବଳାବଳି ହୋଏ
ରବି କୁଝ୍‌ଝଟିକା ଆଚ୍ଛନ୍ନ ପ୍ରାୟେ
ଶିକୁଁ ଲୋହ ଜାତ
ଶିଳାକୁ ଗୁଣି ଭେଦଇ ଯେମଂତ।"

– ଅ. ସାମଂତ ସିଂହାର

# ପଂଡିତ

# ଶ୍ରୀଧର ଉଦ୍‌ଗାତା

ବହୁମୁଖୀ ପ୍ରତିଭାର ଅଧିକାରୀ ଥାଇ ପଂଡିତ ଶ୍ରୀଧର ଉଦଗାତା ପାଟଣା ରାଜ୍ୟରେ ଜଣେ ସମ୍ମାନିତ ବ୍ୟକ୍ତି ଥିଲେ। ତାଂକ ଜନ୍ମ ପୁରୀ ଜିଲ୍ଲାର ଏକ ବ୍ରାହ୍ମଣ ଶାସନରେ। ବିଂଶ ଶତାବ୍ଦୀର ଆରଂଭରେ ବାଲ୍ୟକାଳରେ ସେ ରାଜ ଅନୁଗ୍ରହ ନିମିତ୍ତ ବଲାଂଗିର ଆସି ଏହି ସ୍ଥାନଟିକୁ ପରବର୍ତ୍ତୀ କାଳରେ ନିଜ କର୍ମଭୂମି ଭାବରେ ବାଛିନେଲେ। ୧୯୨୮ରେ ସେ ବଲାଂଗିର ଆସି ଏଠାରେ ସ୍ଥାୟୀ ଭାବରେ ବସବାସ କଲେ। ସାହିତ୍ୟ ଚର୍ଚ୍ଚା ନିମିତ୍ତ ସେ କଳିଂଗ କଳାକୁଟୀର ନାମରେ ଏକ ସାହିତ୍ୟ ସଂସ୍ଥା ସୃଷ୍ଟି କରି ସେହିଠାରେ ନିଜର ସାହିତ୍ୟ ସାଧନା ଆରଂଭ କଲେ। ରାଜା ଦଳଗଂଜନ ସିଂହଂକର ମୃତ୍ୟୁ ଉତ୍ତାରେ ପାଟଣା ରାଜ୍ୟ ରାଜନୈତିକ ବିଭାଗର ପ୍ରତ୍ୟକ୍ଷ ଶାସନରେ ଥିଲା। ଦେୱାନ ବାଲମୁକୁଂଦ ବହିଦାର ଜଣେ କଳା ଓ ସଂସ୍କୃତପ୍ରେମୀ ବ୍ୟକ୍ତି ଥିଲେ। ଶ୍ରୀଧର ତାଂକ ସୁନଜରକୁ ଆସିଲେ। ମହାରାଜା ରାଜେଂଦ୍ର ନାରାୟଣ ୧୯୩୩ରେ ସିଂହାସନ ଆରୋହଣ କଲା ପରେ ୧୯୪୫ରେ କୋଶଳ କଳାମଂଡଳ ପ୍ରତିଷ୍ଠିତ ହେଲା। ପଂଡିତ ଶ୍ରୀଧର ଏହା ସହିତ ସଂଶ୍ଳିଷ୍ଟ ହୋଇ କଳା ଓ ସଂସ୍କୃତିର ବିକାଶରେ ନିଜକୁ

ନିୟୋଜିତ କଲେ। ତାଂକର ବାସଗୃହ ପରେ 'କବି କୁଟୀର' ନାମରେ ନାମିତ ଓ ତାଂକର ସୁଯୋଗ୍ୟ ସ୍ୱନାମଧନ୍ୟ ପୁତ୍ର ଡକ୍ଟର ଶ୍ରୀନିବାସ ଉଦ୍‌ଗାତାଂକର ବାସସ୍ଥଳୀ। ମାତ୍ର ପଂଡିତଂକ ଜୀବନକାଳରେ ଅନେକ ବୁଦ୍ଧିଜୀବୀ ଏଠାକୁ ଆସି ତାଂକ ସହିତ କାବ୍ୟ ସାହିତ୍ୟ ଚର୍ଚ୍ଚାରେ ସମୟ ଅତିବାହିତ କରୁଥିଲା। ସେ ସମୟରେ କଳିଂଗ କଳାକୁଟୀର ଏକ ସାରସ୍ୱତ ତୀର୍ଥ ଭୂମି ରୂପେ ପରିଗଣିତ ହେଉଥିଲା।

ସଂପାଦନା କ୍ଷେତ୍ରରେ ସୁଯୋଗ ଲାଭକରି ସେ ୧୯୪୬ରେ 'ପ୍ରଜାମିତ୍ର' ଓ ଗଡଜାତ ମିଶ୍ରଣ ପରେ ୧୯୫୧ରେ ସାପ୍ତାହିକ 'ଗଣତଂତ୍ର'ର ସଂପାଦକ ଭାବରେ କାର୍ଯ କରିଥିଲେ। ରାଜନୀତିରେ ବିଶେଷ ଆଗ୍ରହୀ ନ ଥାଇ ସେ ନିଜକୁ ସାହିତ୍ୟ ସେବାରେ ନିୟୋଜିତ କଲେ। କିଛିଦିନ 'କଳିଂଗ' ନାମକ ଏକ ହାତଲେଖା ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ।

ତାଂକ ଦ୍ୱାରା ରଚିତ କାବ୍ୟକବିତାର ପାଂଡୁଲିପିମାନ ବର୍ତମାନ ଉପଲବ୍‌ଧ। ସେ ପ୍ରାଚୀନ ସାହିତ୍ୟର ଅନୁସରଣରେ କାବ୍ୟକବିତା ରଚନା କରୁଥିଲେ। ତାଂକ ରଚିତ କାବ୍ୟ କବିତାମାନ ପୁରାତନ ଚୋଖି, ରସକୁଲ୍ୟା, କଳସା ପ୍ରଭୃତି ବୃତ୍ତରେ ଓ ଶକଟ, ମଲ୍ଲିହାର, ମାନ, ପଦ୍ମ, ସୁଦର୍ଶନ ଚକ୍ର, ପୁଷ୍ପକ ରଥ, ମତ୍ସ୍ୟ, ପ୍ରଭୃତି ବିଭିନ୍ନ ବଂଧରେ ରଚିତ। ଋତୁ ବର୍ଣନା, ଜଗନ୍ନାଥ ଜଣାଣ, ଦୁର୍ଗାସ୍ତୁତି, ଆଦ୍ୟାସ୍ତୁତି, ବିରହସ୍ତୁତି ବ୍ୟତୀତ ସେ ଉକ୍ରଳଛଟା ପ୍ରହସନ, ଦେବଯାନୀ ଗୀତିନାଟ୍ୟ ହଟକେଶ୍ୱର କାବ୍ୟ ଛିନ୍ନମାଳା କବିତା ସଂକଳନ ଆଦି ରଚନା କରି ସାହିତ୍ୟ ରସିକମାନଂକ ପାଇଁ ଛାଡିଯାଇଛଂତି। ଏହି ପ୍ରତିଭାଧର ସାହିତ୍ୟ ସାଧକ ବିଶାଳ ଉତ୍କଳରେ ଅପରିଚିତ ଥାଇ ୧୯୫୨ ଅଗଷ୍ଟ ୨୮ ତାରିଖରେ ବଲାଂଗିରରେ ନିଜ 'କବି କୁଟୀର'ରେ ପ୍ରାଣତ୍ୟାଗ କଲେ। ନିଜର ନିରଳସ ସାହିତ୍ୟ ପ୍ରତିଭା ତାଂକୁ ସ୍ମରଣୀୟ ରଖିବ।

ତାଂକ ସୁଯୋଗ୍ୟ ପୁତ୍ର ପଂଡିତ ଶ୍ରୀନିବାସ ଉଦଗାତା ସଂବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ୨୦୦୨ରେ ସମ୍ମାନସୂଚକ ଡି.ଲିଟ ଉପାଧିରେ ସମ୍ମାନିତ। ୧୯୩୫ରେ ଜନ୍ମିତ ଶ୍ରୀନିବାସ ନିଜକୁ ଚାରୁକଳା, ସାହିତ୍ୟ ତଥା ଅନୁବାଦରେ ନିୟୋଜିତ ରଖି ଭାରତୀୟ ସାହିତ୍ୟ ଓ ସଂସ୍କୃତିକୁ ବିଶେଷ ଅବଦାନ ନିମିତ୍ତ ଏହି ସମ୍ମାନ ଲାଭ କରିଛଂତି। ବର୍ତମାନ ସେ କବି କୁଟୀରରେ ସାହିତ୍ୟ ସାଧନାରତ।





# ପ୍ରଥମ ହରିଜନ ସାଂସଦ
# ହୃଷିକେଶ ମହାନଂଦ

ବଲାଂଗିରର ପ୍ରଥମ ହରିଜନ ସାଂସଦ ୧୯୬୨ରେ ବଲାଂଗିର ସଂରକ୍ଷିତ ଲୋକସଭା ନିର୍ବାଚନ ମଂଡଳିରୁ ପ୍ରତିନିଧିତ୍ୱ କରିଥିଲେ ସ୍ୱତଂତ୍ର ଦଳର ହୃଷିକେଶ ମହାନଂଦ। ଲୋକସଭାକୁ ପୂର୍ବପ୍ରଚଳିତ ଯୁଗ୍ମ ନିର୍ବାଚନ ମଂଡଳୀ ଭାଂଗି ଦିଆଯାଇ ବଲାଂଗିରକୁ ୧୯୬୨ରେ ଏକ ସଂରକ୍ଷିତ ନିର୍ବାଚନ ମଂଡଳୀ କରାଯାଇଥିଲା। ଏହା ସଂରକ୍ଷିତ ଜାତିଂକ ନିମିତ୍ତ ଉଦ୍ଦିଷ୍ଟ ଥିଲା।

ହୃଷିକେଶଂକ ଘର ପାଟଣାଗଡ଼ର ମଂଡଳ ଗ୍ରାମରେ। ପିତା କପିଳେଶ୍ୱର ମହାନଂଦ ଜଣେ ପୁରାତନ ରାଜନୈତିକ କର୍ମୀ ଥିଲେ। ହୃଷିକେଶ ୧୯୩୬ରେ ଜନ୍ମଗ୍ରହଣ କରିଥିଲେ। ପାଟଣାଗଡ଼ ରମେଶ ହାଇସ୍କୁଲରେ ବିଦ୍ୟା ସମାପ୍ତ କରି ସେ କୃଷିକାର୍ଯରେ ନିଜକୁ ନିୟୋଜିତ କରିଥିଲେ। ଏହି ସମୟରେ ସେ ଓଡ଼ିଶା ଦଳିତ ଜାତିସଂଘର ଆଂଚଳିକ ସଭ୍ୟଥାଇ ହରିଜନମାନଂକ ଉପରେ ହେଉଥିବା ଅତ୍ୟାଚାର ଓ

ବାଛବିଚାର କର୍ତ୍ତୃପକ୍ଷଂକର ଦୃଷ୍ଟିଗୋଚର କରି ପାରିଥିଲେ ଓ ନିଜର ଲୋକପ୍ରିୟତା ଅକ୍ଷୁର୍ଣ୍ଣ ରଖିଥିଲେ। ଓଡ଼ିଶା ଗଣତଂତ୍ର ପରିଷଦର ସକ୍ରିୟ ସଭ୍ୟ ଥାଇ ସେ ୩ୟ ଲୋକସଭାକୁ ପ୍ରାର୍ଥୀ ହେବାବେଳକୁ ଏହି ଦଳ ସ୍ୱତଂତ୍ର ଦଳ ସହିତ ମିଶି ଯାଇଥିଲା। ସେ ସ୍ୱତଂତ୍ର ଦଳର ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ ନିଜର ଲୋକପ୍ରିୟତା ପ୍ରମାଣିତ କରିଥିଲେ। ନିଜ ପ୍ରତିଦ୍ୱଂଦ୍ୱୀ କଂଗ୍ରେସ ପ୍ରାର୍ଥୀ ସୁଂଦରମଣି ନାଗ ୩୨୯୧୦ ଭୋଟ ପାଇଥିବା ସ୍ଥଳେ ସେ ୫୦,୯୨୯ ଭୋଟ ପାଇଥିଲେ। ଲୋକସଭାରେ ସେ କେଂଦ୍ର ସରକାରଂକର ଦୃଷ୍ଟି ଆକର୍ଷଣ କରିବା ସମସ୍ୟାମାନ ସର୍ବସାଧାରଣରେ ପ୍ରକାଶ କରୁଥିଲେ।



ପରମ ଈଶ୍ୱର ଭରି ରହିଛଂତି,<br>
ଚରାଚରେ ଏ ସଂସାରେ<br>
ମୋଠି ଅଛଂତି ସବୁଠି ଅଛଂତି<br>
ନାହାଂତି କି ତୁମଠାରେ ?<br>
ଭାବି ପାରୁନାହିଁ ଅଛବ ତୁମେ ଯେ,<br>
ହୋଇଅଛ କେଉଁମିତି<br>
ଈଶ୍ୱର ରାଇଜେ ସ୍ୱାର୍ଥପର ଏଇ,<br>
ମଣିଷର ଭେଦ ନୀତି।

–ଗଡ଼ନାୟକ



# ସମାଜ ସେବକ ରାଜନୀତିଜ୍ଞ
# ସ୍ୱର୍ଗତ ରାଧାମୋହନ ମିଶ୍ର

ବଲାଂଗିର ମାଟି ମାଆର ଜଣେ ବରପୁତ୍ର ହେଉଛଂତି ସ୍ୱନାମଧନ୍ୟ ତଥା ଲୋକପ୍ରିୟ ରାଜନୀତିଜ୍ଞ ରାଧାମୋହନ ମିଶ୍ର। ୧୯୨୪ ନଭେଂବର ୨୪ ତାରିଖ ବଲାଂଗିରର ରାଧାରାଣୀପଡ଼ାରେ ସେ ପଂଡିତ ନାରାୟଣ ମିଶ୍ର ଓ ମାଳାବତୀଂକ ୪ର୍ଥ ସଂତାନ ରୂପେ ଜନ୍ମଗ୍ରହଣ କରିଥିଲେ। ତାଂକର ପ୍ରାକ୍‌ଶିକ୍ଷା ସମାପ୍ତ ହୋଇଥିଲା ବଲାଂଗିରର ପୃଥ୍ୱୀରାଜ ହାଇସ୍କୁଲ ଓ ରାଜେଂଦ୍ର କଲେଜରେ। ଏହାପରେ ସେ କଟକର ମଧୁସୂଦନ ଆଇନ ମହାବିଦ୍ୟାଳୟରୁ ଆଇନରେ ସ୍ନାତକ ଉପାଧି ପ୍ରାପ୍ତ ହୋଇଥିଲେ। ତତ୍‌କାଳୀନ ଓଡ଼ିଶାର ପ୍ରଖ୍ୟାତ ଆଇନଜ୍ଞ ମଧୁସୂଦନ ମହାଂତିଂକ ନିକଟରେ ରହି ସେ ଆଇନ ବ୍ୟବସାୟ ଆରଂଭ କରିଥିଲେ। ଛାତ୍ର ଜୀବନରୁ ହିଁ ତାଂକର ମୁଖ୍ୟ ପୃଷ୍ଠପୋଷକ ତଥା ପ୍ରେରଣାର ଉତ୍ସ ଥିଲେ ତତ୍କାଳୀନ ବଲାଂଗିର ପାଟଣାର ମହାରାଜା ରାଜେଂଦ୍ର ନାରାୟଣ ସିଂହଦେଓ। ସମୟକ୍ରମେ ଆଇନ ବ୍ୟବସାୟ ତ୍ୟାଗ କରି ପୂର୍ବତନ ମୁଖ୍ୟମଂତ୍ରୀ ତଥା ବିରୋଧୀ ଦଳ ନେତା ରାଜେଂଦ୍ର ନାରାୟଣ ସିଂହଦେଓଂକ ଘରୋଇ ସଚିବ ରୂପେ କାର୍ଯ୍ୟ କରି ଡ. ଶ୍ୟାମା ପ୍ରସାଦ ମୁଖାର୍ଜୀଂକ ନେତୃତ୍ୱରେ ଗଠିତ ଇଂଡିଆନ୍ ନେସନାଲ୍ ଡେମୋକ୍ରେଟିକ୍ ଫ୍ରଂଟ୍‌ର ସଚିବ କାର୍ଯ୍ୟ ତୁଲାଇଥିଲେ। ସନ୍ ୧୯୫୬ରେ ଷଢ଼େଇକଳା-ଖରସୁଆଁ ବିଚ୍ଛିନ୍ନାଂଚଳ ମିଶ୍ରଣ ପାଇଁ ସୀମା ଆଂଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ସନ୍ ୧୯୫୭ରେ କଂଗ୍ରେସ ଗଣତଂତ୍ର

ପରିଷଦ ମିଳିତ ମଂତ୍ରୀମଂଡଳର ଉପ ମୁଖ୍ୟମଂତ୍ରୀ ରାଜେଂଦ୍ର ନାରାୟଣ ସିଂହଦେଓଂକର ପ୍ରାଇଭେଟ୍ ସେକ୍ରେଟେରି ରୂପେ କାର୍ଯ କରିଥିଲେ। ଏହି ସମୟରେ ସେ ତତ୍କାଳୀନ ମୁଖ୍ୟମଂତ୍ରୀ ଡ. ହରେକୃଷ୍ଣ ମହତାବଂକର ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ।

ସ୍ୱର୍ଗତ ମିଶ୍ରଂକର ବ୍ୟକ୍ତିଗତ ରାଜନୈତିକ ଜୀବନ ଆରଂଭ ହୋଇଥିଲା ୧୯୬୭ରେ। ୧୯୬୭ ନିର୍ବାଚନରେ ତୁଷରା ବିଧାନସଭା ନିର୍ବାଚନ ମଂଡଳୀରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ଏହି ନିର୍ବାଚନ ମଂଡଳୀରୁ କ୍ରମାଗତ ଦୁଇଥର ନିର୍ବାଚିତ ହେବା ପରେ ତୃତୀୟ ଥର ବିନିକା ବିଧାନସଭା ନିର୍ବାଚନ ମଂଡଳୀରୁ ସେ ନିର୍ବାଚିତ ହୋଇଥିଲେ। ସେତେବେଳେ ସ୍ୱର୍ଗତ ମିଶ୍ର ଏଷ୍ଟିମେଟ୍ କମିଟିର ଅଧ୍ୟକ୍ଷ ତଥା ସଂବଲପୁର ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ, ବିଧାନସଭା ଭାଷା ବିଭାଗର ସଭ୍ୟ ମଧ୍ୟ ଥିଲେ। ଜଣେ ସମାଜସେବୀ ହିସାବରେ ଜନସାଧାରଣଂକର ସୁଖଦୁଃଖର ସାଥୀ ହୋଇ ଠିଆ ହେଉଥିଲେ। ବଲାଂଗିର ଜିଲ୍ଲାର ସମସ୍ତ ସାମାଜିକ ତଥା ସାଂସ୍କୃତିକ କାର୍ଯକ୍ରମରେ ସକ୍ରିୟ ଅଂଶଗ୍ରହଣ କରୁଥିଲେ। ୧୯୬୮ରେ ତେଲ ନଦୀରେ ହୋଇଥିବା ବନ୍ୟା ଯୋଗୁ ବନ୍ୟା ଦୁର୍ଗତ ବିପନ୍ନ ଜନତାଂକୁ ନିଜେ ଯୋଗାଇ ଦେଇଥିବା ଧୋତି, ଶାଢ଼ି, ଚାଉଳ, ଅର୍ଥ ତଥା ବିଭିନ୍ନ ରିଲିଫ୍ ସାମଗ୍ରୀର କଥା ଆଜି ବି ଲୋକଂକ ମନରୁ ପାସୋର ଯାଇନାହିଁ। ସ୍କୁଲ, କଲେଜର ଛାତ୍ରଛାତ୍ରୀଂକୁ ପ୍ରୋତ୍ସାହନ ଦେବା ପାଇଁ ସେହି ୧୯୬୮ରୁ ଜାତୀୟ ଉତ୍ସବମାନଂକରେ ପାଳିତ ହେଉଥିବା ବିଭିନ୍ନ ପ୍ରତିଯୋଗିତାମାନଂକର କୃତୀ ପ୍ରତିଯୋଗୀମାନଂକୁ ପୁରସ୍କାର ପ୍ରଦାନ କରି ଆସୁଥିଲେ। ରାଧାମୋହନ ଜଣେ ସାହିତ୍ୟାନୁରାଗୀ ତଥା ସଂସ୍କୃତି ପ୍ରେମୀ ବ୍ୟକ୍ତି ଥିଲେ। ତାଂକରି ସଂପାଦନାରେ ମାସିକ ସାହିତ୍ୟ ପତ୍ରିକା ''ପଂଚରଂଗ'' ପ୍ରକାଶିତ ହେଉଥିଲା। ୧୯୬୯ରେ ବଲାଂଗିରରେ ଅନୁଷ୍ଠିତ ହୋଇଥିବା ପଂଚମ ଓଡ଼ିଆ ଯୁବ ଲେଖକ ସମ୍ମେଳନରେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ କାର୍ଯ ମଧ୍ୟ ସେ ସୁଚାରୁ ରୂପେ ତୁଲାଇଥିଲେ। ଏହି ସମ୍ମେଳନରେ ଓଡ଼ିଶା ତଥା ରାଜ୍ୟ ବାହାରର ଅନେକ ବିଶିଷ୍ଟ ସାହିତ୍ୟିକ ତଥା ରାଜନୀତିଜ୍ଞ ଯୋଗଦାନ କରିଥିଲେ। ଆହୁରି ମଧ୍ୟ ଡ. ହରେକୃଷ୍ଣ ମହାତାବଂକ ଦ୍ୱାରା ପ୍ରତିଷ୍ଠିତ ମାନସିକ ନ୍ୟୂନତା ସଂସ୍ଥାନର ସେ ପରାମର୍ଶଦାତା ଥିଲେ। ନିଜର ଶେଷ ଜୀବନରେ ସକ୍ରିୟ ରାଜନୀତିରୁ ଦୂରେଇ ରହି ଆଧ୍ୟାତ୍ମିକ ପୂଜନ ଦର୍ଶନ କର୍ମରେ ନିଜକୁ ବ୍ୟସ୍ତ ରଖିଥିଲେ।

ଏହି ବହୁମୁଖୀ ପ୍ରତିଭାର ଅବସାନ ଘଟିଲା ୨୦୦୦ ଜୁନ୍ ୨ ତାରିଖରେ। ତାଂକର ବିୟୋଗରେ ସମଗ୍ର ଜିଲା ଜଣେ ସ୍ନେହାନୁରାଗୀ, ମିଷ୍ଟଭାଷୀ, ନିଷ୍ଠାବାନ୍ ଜନନେତାଂକୁ ହରାଇଲା।



ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାଂକ ସଂପାଦିତ ଓ ପ୍ରକାଶିତ "ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ" ଗ୍ରଂଥରୁ ଏହି ବିସ୍ମୃତ ରଚୟିତାମାନଂକର ନାମ ଓ ରଚନାବଳି ଗୃହୀତ।

# ରାଜ୍ୟରତ୍ନ
# ବଳଭଦ୍ର ବହିଦାର

ବଳଭଦ୍ର ବହିଦାର ପାଟଣା ରାଜଦରବାର ଅଧୀନରେ କାର୍ଯ୍ୟ କରୁଥିଲେ। ରାଜସ୍ୱ ଓ ଶିକ୍ଷା ବିଭାଗରେ ସେ ନିଜର ଦକ୍ଷତା ପ୍ରତିପାଦନ କରି ଦରବାରଂକଠାରୁ ମହାରାଜା ରାଜେଂଦ୍ର ନାରାୟଣ ସିଂହଦେଓଂକ ଅମଳରେ ରାଜ୍ୟର ଶ୍ରେଷ୍ଠ ଉପାଧି ରାଜ୍ୟରତ୍ନ ପ୍ରାପ୍ତ ହୋଇଥିଲେ। ଜଣେ ଲୋକପ୍ରିୟ ରାଜଭକ୍ତ କର୍ମଚାରୀ ଥାଇ ସେ ବଲାଂଗିରର ଅଧିବାସୀ ଥିଲେ। 'ଯତିପାତ' ନାମକ କବିତା ସଂଗ୍ରହ ତାଂକର ରଚନା। ଏହା ଏକଦା ବିଶ୍ୱବିଦ୍ୟାଳୟରେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା। ତାଂକ ପୁତ୍ର ହିମାଂଶୁ ଶେଖର ବହିଦାର ପାଟଣା ଦରବାରରେ କାର୍ଯ୍ୟରତ ଥାଇ ମିଶ୍ରଣ ପରେ ଓଡ଼ିଶା ସରକାରଂକ ଜିଲା ଅବକାରୀ ସୁପରିଟେଂଡ଼ ପଦରେ ପ୍ରତିଷ୍ଠିତ ହୋଇ କାର୍ଯ୍ୟ କରିଥିଲେ।

❑ ❑ ❑

# ଗୁଡ଼ିଆ ବାବା
# ସ୍ୱାମୀ ଜ୍ଞାନାନଂଦ ସରସ୍ୱତୀ

ଋଷିପ୍ରାଣ ଡାକ୍ତର ଜନାର୍ଦନ ପୂଜାରୀ 'କୈଳାଶ ପଥେ' ନାମକ ରଚନାରେ ୧୯୩୫-୩୬ ମସିହାରେ ପଦବ୍ରଜରେ ହରଦ୍ୱାରଠାରୁ ଗଂଗୋତ୍ରୀ, ଯମୁନେତ୍ରୀ, କୈଳାଶ, ମାନସରୋବର ତିବ୍ବତର ଅନ୍ୟ ସ୍ଥାନ ଭ୍ରମଣର ସୁଖପାଠ୍ୟ ସରସ ବର୍ଣନା କରିଅଛଂତି। ଏହି ସମୟରେ ତାଂକର ବୟସ ଥିଲା ୪୩ ବର୍ଷ। ତାଂକର ୬୪ ବର୍ଷର ଜଣେ ସହଯାତ୍ରୀ ଥିଲେ। ସାଧନାରେ ଅଗ୍ରଜ ଥିବା ଯୋଗୁ ଡାକ୍ତର ପୂଜାରୀ ତାଂକୁ ମାନ୍ୟତା ପ୍ରଦାନ କରୁଥିଲେ। ସେ ବରଗଡ଼ରେ ଥିବା ଉକ୍ତ ସନ୍ୟାସୀଂକୁ ଥରେ ଦେଖା କରିବାକୁ ପତ୍ରାଳାପ କଲେ, ମାତ୍ର ଉତ୍ତର ପାଇଲେ "ଗଛରେ ଫଳ ଆସିଛି ସତ, ମାତ୍ର ପରିପକ୍ୱ ହେବା ଡେରି ଅଛି। ସେଥିପାଇଁ ଧୈର୍ଯ ଦରକାର। ଯଥା ସମୟରେ ତହିଁର ଉପଯୋଗ ହେବ।" ଜଣେ ସାଧୁଂକର ଭାଷା ଆଉ ଜଣେ ବୁଝିବାରେ ଅସୁବିଧା ନ ଥିଲା। କିଛି ଦିନ ପରେ ଖବର ମିଳିଲା ବରଗଡ଼ର ସେହି ସାଧୁଜଣକ ଝାରସୁଗୁଡ଼ା ଦେଇ କଲିକତା ଯାଉଅଛଂତି। ସଂଥ ଡାକ୍ତର ତାଂକୁ ସେଠାରେ ଦେଖା କରିବାକୁ ଝାରସୁଗୁଡ଼ା ଗଲେ। ତାଂକ ରେଳ ଷ୍ଟେସନ୍‌ରେ ରହଣି ଜାଗାଠାରୁ

କିଛି ଦୂରରେ ବସିଲେ। ଜଣେ କୁଷ୍ଠରୋଗୀକୁ ସାଧୁ ଡକାଇ ପଠାଇଲେ, ମାତ୍ର କୁଷ୍ଠୀ ତାଂକୁ କୁତ୍ସିତ ଭାଷାରେ ଗାଳି ଦେବାର ଶୁଣିଲେ। ସାଧୁଜଣଂକୁ ଏପରି ଗାଳିଦେବା ସବୁ ଉପସ୍ଥିତ ବ୍ୟକ୍ତିଂକୁ ଆଶ୍ଚର୍ଯ ଲାଗିଲା। ମାତ୍ର ବରଗଡ଼ ସାଧୁ ତାଂକ ପାଖକୁ ଯାଇ ତାଂକୁ କୁଂଡାଇ ଧରିଲେ। ଦି'ଜଣ ବହୁ ସମୟ ଧରି କଥାବାର୍ତା ହେଲେ। ଡାକ୍ତର ପୂଜାରୀ ଏ ଦୃଶ୍ୟ ଉପଭୋଗ କରୁଥିଲେ। ପରେ ଜଣାଗଲା କୁଷ୍ଠରୋଗୀ ଜଣକ ଜଣେ ସିଦ୍ଧ ପୁରୁଷ। ଛଦ୍ମବେଶ ଧାରଣ କରି ସେ ଚାରିଆଡ଼େ ବୁଲୁଥାଂତି। ବରଗଡ଼ ସାଧୁ ନିଜ ଶିଷ୍ୟମାନଂକୁ ଶୁଣାଇଲେ, ''ଜୀବନ ଯାତ୍ରା ପଥ ବଡ଼ ଦୁର୍ଗମ ଓ କଂଟକପୂର୍ଣ। ପ୍ରତି ମୁହୂର୍ତରେ ସାବଧାନତା ଆବଶ୍ୟକ। ଟିକିଏ ଅସାବଧାନ ହେଲେ କଂଟା ଆସି ପାଦରେ ଫୁଟିଯିବ।'' ସେଇ ପ୍ରଥମ ସାକ୍ଷାତ ଦିନଠାରୁ ଦୁଇଜଣଂକ ମଧ୍ୟରେ ସଂପର୍କ ନିବିଡ଼ତର ହେଲା। ହିମାଳୟ ଭ୍ରମଣ ସମୟରେ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ବୁଝିବାରେ ସକ୍ଷମ ହେଲେ। ଯାତ୍ରା ସମୟରେ ଡାକ୍ତର ପୂଜାରୀ ଜାଣି ପାରୁଥିଲେ। ବରଗଡ଼ ସାଧୁ ଜଣକ ହିମାଳୟ ଅଂଚଳ ସହିତ ସୁପରିଚିତ ଥିଲେ। ବରଗଡ଼ର ଏହି ସାଧୁ ଜଣକ ହେଉଛଂତି ସ୍ୱାମୀ ଜ୍ଞାନାନଂଦ ସରସ୍ୱତୀ। ପୂର୍ବାଶ୍ରମରେ ସେ ଗୁଡ଼ିଆ ଘରେ ଜନ୍ମ ହୋଇଥିବାରୁ ଲୋକେ ତାଂକୁ ପ୍ରଥମେ ଗୁଡ଼ିଆ ବାବା ବୋଲି ଡାକୁଥିଲେ। ଜ୍ଞାନାନଂଦ ତାଂକର ଥିଲା ଗୁରୁଦତ୍ତ ନାମ।

ବରଗଡ଼ ସହରରେ ୧୮୭୫ରେ ଗୁଡ଼ିଆ ଦିନମଣି ସାହୁ ଓ ଜାଇଫୁଲଂକ ତୃତୀୟ ସଂତାନ। ଗିରିଗୋବର୍ଧନ ପୂଜା ଦିନ ଜନ୍ମଗ୍ରହଣ କରିଥିଲେ। ସେଥିଯୋଗୁ ତାଂକ ନାମ ଗୋବର୍ଧନ ରଖାଯାଇଥିଲା। ସେ ମାତୃ ଗର୍ଭରେ ଥିବା ସମୟରେ ଫଗୁଣ ପୂର୍ଣମୀ ଦିନ ବରଗଡ଼ର ଦୋଳଯାତ୍ରାରେ ତାଂକ ଦୋକାନରେ ଗୁଡ଼ିଆଣି ମିଷ୍ଟାନ୍ନ ବିକ୍ରି କରୁଥିବା ବେଳେ ସମୟରେ ଜଣେ ସାଧୁ ତାଂକଠାରୁ କିଛି ମିଠାଇ ଖାଇଲେ। ତାଂକୁ ନିଜର ଗର୍ଭସ୍ଥ ପୁତ୍ର ଜଣେ ଅସାଧାରଣ ବିକ୍ରି ହେବ ବୋଲି ଭବିଷ୍ୟତ ବାଣୀ କରି ଚାଲିଗଲେ।

ସେତେବେଳେ ସଂବଲପୁର ଜିଲ୍ଲା ମଧ୍ୟପ୍ରଦେଶ ଅଂତର୍ଗତ। ଗୋବର୍ଧନ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ଶେଷ କଲେ। ସେ ଜଣେ ନିରୋଗ ଓ ମେଧାବୀ ବାଳକ ଥିଲେ। ବିଦ୍ୟାଶିକ୍ଷାରେ ଉତ୍କର୍ଷତା ଦେଖାଇ ସେ ଡବଲ ପ୍ରମୋସନ୍ ପାଇଲେ। ମାଇନର ପାସ୍ କଲେ। ସରକାରୀ ବୃତ୍ତି ପାଇ ଶିକ୍ଷକ ଟ୍ରେନିଂ ନେଲେ। ସର୍ତ ଥିଲା ପାସ୍ କରି ସେ କିଛିଦିନ ସରକାରୀ ସ୍କୁଲରେ ଶିକ୍ଷକ ହେବେ। ଶିକ୍ଷା ଶେଷରେ ସେ

ସୋହେଲା ପାଖ ଗୋଟିଏ ଗାଁରେ ଶିକ୍ଷକ ହେଲେ। ଶିକ୍ଷକ ଭାବରେ ପ୍ରଶଂସା ପାଇଲେ ମାତ୍ର ଅଳ୍ପଦିନ ପରେ ସେ ଚାକିରି ଛାଡ଼ି ଘରକୁ ପଳାଇ ଆସିଲେ। ଘରେ କେତେ ମାସ ବସି ଜାଣି ପାରିଲେ ଘର ଚଳାଇବାକୁ ତାଂକୁ ରୋଜଗାର କରିବାକୁ ପଡ଼ିବ। ଏହା ମଧ୍ୟରେ ତାଂକର ୧୧/୧୨ ବୟସରେ ତୁରୁମ ଗ୍ରାମରେ ବାଲ୍ୟ ବିଭାଘର ହୋଇଥାଏ, ମାତ୍ର ପତ୍ନୀ ଗୃହଯୋଗ୍ୟ ହେବା ପୂର୍ବରୁ ପ୍ରାଣତ୍ୟାଗ କଲେ। ଗୋବର୍ଧନ ଆଉ ବିବାହ କଲେନାହିଁ।

ବରଗଡ଼ରେ ମୋହନ ମେହେର ବୋଲି ଜଣେ ମୋଚି ଜୋତା ବ୍ୟବସାୟ କରୁଥାଆଂତି। ତାଂକର କାରବାର ଜିଲ୍ଲା ବହାରେ ମଧ୍ୟ ଚାଲୁଥାଏ। ଗୋବର୍ଧନ ତାଂକର ବରପାଲି ଦୋକାନରେ ମୋହରୀର ହେଲେ। ମାସକୁ ପଂଦର ଟଂକା ରୋଜଗାର ଅତି ଉତ୍ତମ ଥିଲା। ରକ୍ଷଣଶୀଳ ଜାତିଭାଇମାନେ ତାଂକୁ ଏକଘରିକିଆ କରିବାକୁ ଡରାଇଲେ। ଅଛୁଆଁ ଲୋକ ଘରେ ଚାକିରି, ଜଣେ ବୈଶ୍ୟ ପକ୍ଷରେ ଅନୁଚିତ। ଶେଷରେ ସେମାନେ ବ୍ୟବସ୍ଥା ଦେଲେ। ପ୍ରତିଥର ମୋଚି ଦୋକାନରୁ ଫେରି ଗୋବର୍ଧନ ସ୍ନାନ କରି ଘରେ ପଶିବେ। ସେହି ବ୍ୟବସ୍ଥା ପରିବାର ମାନିନେଲା। କିଛିଦିନ ପରେ ଗୋବର୍ଧନ ଜଣେ କୁସଂଗୀର ପରାମର୍ଶରେ ଦୋକାନର ପାଂଠିରୁ ସତରଶହ ଟଂକା ଚୋରି କରି ନିଜେ ବଡ଼ ବ୍ୟବସାୟ କରିବାକୁ କଲିକତା ପଳାଇଲେ। ସେଠାରେ କିଛିଦିନ ଗୋଟିଏ ହୋଟେଲରେ ରହିବା ପରେ ଅର୍ଥ ଶେଷ ହେଉଥିବା ଜାଣି ସଂଗୀଜଣକ ପଳେଇ ଆସିଲେ। ସେ ଏକୁଟିଆ ପଡ଼ି ରହିଲେ। ବରଗଡ଼ ଆସି ସଂଗୀ ଚିଠି ପଠାଇଲେ ଯେ, ଚୋରି କରି ଅର୍ଥ ନେଇ ପଳାଇ ଯାଇଥିବାରୁ ତାଂକୁ ପୋଲିଶ ଖୋଜୁଛି। ଧରାପଡ଼ିଲେ ସେ ଜେଲ ଭୋଗିବେ। ତେଣୁ ବରଗଡ଼ ନ ଆସିବାକୁ ଚିଠିରେ ପରାମର୍ଶ ଦିଆଯାଇଥିଲା।

କଲିକତା ଫୁଟପାଥ୍‌ରେ କିଂକର୍ତବ୍ୟବିମୂଢ଼ ହୋଇ ବୁଲୁଥିବା ସମୟରେ ଜଣେ ବଂଗାଳି ପରୋହିତଂକ ସହିତ ତାଂକର ସାକ୍ଷାତ ହେଲା। ନିଜକୁ ସେ ବ୍ରାହ୍ମଣ ବାଳକ ବୋଲି ପରିଚୟ ଦେଇ ସାଂକ ସାଂଗରେ ତାଂକ ଘରେ ରହି ଯଜମାନଂକ ଘରେ ପୁରୋହିତ କରିବାରେ ତାଂକୁ ସାହାଯ୍ୟ କରିବାରେ ଲାଗିଲେ। ସେମାନଂକର ପିଲାଛୁଆ ନ ଥିଲେ। ଯଜମାନି କାମ ଭଲ ଭାବରେ ଶିଖିଗଲେ। ଦେଢ଼ବରଷ ଭକ୍ତ ପୁରୋହିତ ନୀଳକଣ୍ଠ ଭଟ୍ଟାଚାର୍ଯଂକ ପାଖରେ ସେ ରହିଲେ। ୩ ଦିନ ଧରି ଥରେ ଗୋଟିଏ ଶିବ ମଂଦିରରେ ପୂଜା ଅଭିଷେକ ହେଉଥାଏ। ଗୋବର୍ଧନ ରାଂଧିବା ଦାୟିତ୍ୱରେ ଥିଲେ।

ରାଂଧିସାରି ସେ ଶୋଇପଡ଼ିଲେ। କୁକୁର ଦୁଇଟି ଆସି ରଂଧା ଖାଦ୍ୟ ଖାଇଦେଲେ। ନୀଳକଂଠ ଅଭୁକ୍ତ ରହି ତାଂକୁ କଟୁ ଭର୍ତ୍ସନା କଲେ। ଗୋବର୍ଧନ ତାଂକ ସାଂଗ ଛାଡ଼ି ଚାଲିଲେ। ଗୋଟିଏ ମଂଦିରରେ ଶୋଇ ସେ ସ୍ୱପ୍ନ ଦେଖିଲେ କାଶୀ ଯିବାକୁ। ଜଣେ ସନ୍ନ୍ୟାସୀଂକର ଏହି ନିର୍ଦ୍ଦେଶ ମାନି ପୋଲିସ ଡରରେ ବରଗଡ଼ ଯିବା ଆଶା ଛାଡ଼ିଥିବାରୁ କାଶୀ ଚାଲିଗଲେ। ସେଠରେ ଜଣେ ପଂଡିତଂକ ସହିତ ତାଂକର ଗଂଗା କୂଳରେ ପରିଚୟ ହୁଏ। ତାଂକ ନାମ ଦାମୋଦର ଶାସ୍ତ୍ରୀ। ଘର ଅତାବିରା ଥାନାର ତାଂପିରସରା ଗ୍ରାମରେ। ସେ କାଶୀରେ ଗୋଟିଏ ସଂସ୍କୃତ ବିଦ୍ୟାଳୟର ଅଧ୍ୟକ୍ଷ ଥିଲେ। ଗୋବର୍ଧନ ନିଜକୁ ଆଗରୁ ବ୍ରାହ୍ମଣ ବାଳକ ବୋଲି ପରିଚୟ ଦେଇଥିଲେ। ସଂସ୍କୃତ ପଢ଼ିଲେ। ମଠରେ ରହି ମାଗଣା ଖାଇବାର ବ୍ୟବସ୍ଥା ଥାଏ। ପାଠ ପଢ଼ି ଗୋବର୍ଧନ ୩ ବରଷରେ କାବ୍ୟତୀର୍ଥ ଉପାଧି ଲାଭ କଲେ। ବ୍ୟାକରଣାଚାର୍ଯ ମଧ୍ୟ ପଢ଼ିଲେ। ଦାମୋଦର ଶାସ୍ତ୍ରୀ ତାକୁ ଗୋଟିଏ ସଂସ୍କୃତ ଟୋଲରେ ଶିକ୍ଷକ କରାଇଲେ। ସେ ୨ ବର୍ଷ ଚାକିରି କରି କିଛି ଅର୍ଥ ସଂଚୟ କରି କାଶୀ ମହାବିଦ୍ୟାପୀଠାରେ ଦର୍ଶନଶାସ୍ତ୍ର ଅଧ୍ୟୟନ କରିବାକୁ ବାହାରିଲେ। ଷଡ଼ଦର୍ଶନ ପାଠ ଛ ବରଷରେ ସଂପୂର୍ଣକରି ସେହି ବିଦ୍ୟାପୀଠାରେ ଅଧ୍ୟାପକ ହେଲେ। ସେ ସଂସାର ପ୍ରତି ବିତସ୍ପୃହ ହୋଇ ସନ୍ନ୍ୟାସୀ ହେବାକୁ ପଂଡିତ ଶାସ୍ତ୍ରୀଂକର ପରାମର୍ଶ ଲୋଡ଼ିଲେ, ମାତ୍ର ତାଂକୁ ଏଥିପାଇଁ ସେ ସମ୍ମତି ଦେଇ ନ ଥିଲେ। ଷଡ଼ଦର୍ଶନ ପାସ୍ କରି ସେ କିପରି ସନ୍ନ୍ୟାସୀ ହେବେ ନାହିଁ, ଏହା ତାଂକୁ ଆଲୋଡ଼ିତ କଲା। ଶାସ୍ତ୍ରୀ ତାଂକୁ କିଛିଦିନ ଉପଯୁକ୍ତ ସୁଯୋଗକୁ ଅପେକ୍ଷା କରିବାକୁ କହିଲେ। କିଛିଦିନ ପରେ ଚତୁର୍ମାସ୍ୟା ବ୍ରତ ଉପଲକ୍ଷେ ଅନେକ ସନ୍ନ୍ୟାସୀ ହରଦ୍ୱାରରୁ କାଶୀ ଆସିଲେ। ଶାସ୍ତ୍ରୀ ଦାମୋଦର ଜଣେ ଯୋଗ ବିଦ୍ୟାରେ ବିଶେଷତା ପ୍ରାପ୍ତ ସନ୍ନ୍ୟାସୀଂକ ହାତରେ ତାଂକୁ ଅର୍ପଣ କଲେ। ସେ ନିଜର ସଂଚିତ ଦୁଇ ହଜାର ଟଂକା ଗୁରୁଦକ୍ଷିଣା ସ୍ୱରୂପ ଶାସ୍ତ୍ରୀଂକୁ ଦେଇ ହରଦ୍ୱାର ବାହାରିଲେ, ମାତ୍ର ଗୁରୁ ଗୋଟିଏ କପର୍ଦ୍ଦକ ସୁଦ୍ଧା ଗୁରୁଦକ୍ଷିଣା ନେବାକୁ ଅନିଚ୍ଛୁକ ଥିବାରୁ ସେ ଉକ୍ତ ଅର୍ଥ କାଶୀରେ ପ୍ରଥମେ ପହଂଚି ରହୁଥିବା ଏକ ଧର୍ମଶାଳାକୁ ତାହା ଦାନ କଲେ। ସନ୍ନ୍ୟାସୀ ଗୋବର୍ଧନଂକୁ ହରଦ୍ୱାର ନେଇ ସେଠାରେ ତାଂକୁ ରେଠାଢ଼ିଂକ ଆଶ୍ରମରେ ରହିବାର ସୁବିଧା କଲେ। ମଠର ମାଲିକ ଥିଲେ ଏଲାହାବାଦର ବାଘାମୂରୀ ମଠ ଓ ରୋଠାଢ଼ି ଏହାର ପରିଚାଳକ। ମଠରେ ସନ୍ନ୍ୟାସୀମାନଂକର ବାସ ଓ ଗ୍ରାସାଚ୍ଛାଦନର ବ୍ୟବସ୍ଥା ରହିଥାଏ। ଗୋବର୍ଧନ ଆଶ୍ରମରେ ଏହି କାର୍ଯରେ ସାଧୁସଂଥଂକର ସେବା କରି ପ୍ରକୃତ ଆନଂଦ ପାଇଲେ, ମାତ୍ର ତଥାପି ସନ୍ନ୍ୟାସୀ

ହେବାର ଆଶା ପ୍ରବଳତର ଥାଏ। ସ୍ୱାମୀ ବାସୁଦେବାନଂଦ ନାମକ ଜଣେ ସନ୍ନ୍ୟାସୀଂକର ସେ ଦୃଷ୍ଟି ଆକର୍ଷଣ କଲେ ଓ ତାଂକର ଶିଷ୍ୟତ୍ୱ ଗ୍ରହଣ କଲେ। ଗୁରୁଂକ ପାଖରେ ତାଂକୁ କଠିନ ପରିଶ୍ରମ କରିବାକୁ ପଡ଼ିଲା। ତା ସହିତ ସେ ଉଚ୍ଚାଂଗ ଯୋଗ ଶିକ୍ଷା କଲେ। ଦିବ୍ୟ ଆଧ୍ୟାତ୍ମିକ ଚେତନା ଲାଭରେ ବ୍ରତୀ ହେଲେ। ଅଷ୍ଟସିଦ୍ଧି ଅଣିମା, ଲଘିମା, ମହିମା, ଗାରିମା, ପ୍ରାପ୍ତି ପ୍ରକାମ୍ୟ, ବଶିତ୍ୱଂ, ଇଶିତ୍ୱଂ ମଧ୍ୟରୁ ପାଂଚଟି ସିଦ୍ଧି ସେ ଅଳ୍ପ ସମୟରେ ଗୁରୁକୃପାରୁ ଲାଭ କରି ପ୍ରକାମ୍ୟ ଦୀର୍ଘଦିନ ପର୍ଯ୍ୟଂତ ଆୟତ୍ତ କରିବାରେ ଅକୃତକାର୍ଯ ହେଲେ। ଗୁରୁ ତାଂକୁ ନିଜର ଅତୀତର କୌଣସି ଅପକର୍ମ ଯୋଗୁ ଏହା ହେଉଥିବା ସ୍ମରଣ କରାଇଦେବାରୁ ସେ ମୋଚି ଦୋକାନରୁ ଚୋରି ବିଷୟ ସ୍ୱୀକାର କଲେ। କାଶୀ ଧର୍ମଶାଳାକୁ ଦୁଇହଜାର ଟଂକା ଦାନ ଦ୍ୱାରା ଅପକର୍ମର ପ୍ରାୟଶ୍ଚିତ୍ତ ହୋଇ ନାହିଁ। ତାଂକର ଦଂଡଭୋଗ ବାଂଛନୀୟ। ଗୋବର୍ଧନ ଏହା ଜାଣି ବରଗଡ଼ ଲେଉଟିଲେ। କଚେରୀରେ ନିଜ କୃତକର୍ମ ସ୍ୱୀକାର କରି ଦଂଡଭୋଗ ପ୍ରାର୍ଥନା କଲେ ମାତ୍ର ଏହା ଆଇନସିଦ୍ଧ ନ ଥିଲା।

ଅଦାଲତରୁ ଜେଲ ଯିବା ଆଦେଶ ନ ପାଇ ଗୋବର୍ଧନ ଆତ୍ମାହୁତି ଦେବାକୁ ଉଦ୍ୟମ କରୁଥିବାରୁ ଜଣେ ସନାତନୀ ହିଂଦୁ ସନ୍ନ୍ୟାସୀଂକୁ ଏଥିରୁ ନିବୃତ୍ତ କରିବାକୁ ଡି.ସି. ଉଡବର୍ଣ ନିଜ ବିଶେଷ କ୍ଷମତା ପ୍ରୟୋଗ କରି ୩ ସପ୍ତାହ କାରାଦଂଡ ଆଦେଶ ଦେଲେ। ଜେଲ ଖାଦ୍ୟ ନ ଖାଇ ନିଜ ଖାଦ୍ୟ ନିଜେ ପାକ କରି ବା ଫଳମୂଳ ଆଣି ଭକ୍ଷଣର ସେ ଆଦେଶ ଦେଲେ। ଜେଲର କର୍ତ୍ତୃପକ୍ଷ ତାଂକୁ ଜେଲ କକ୍ଷ ମଧ୍ୟରେ ଚାବିପକାଇ ରଖାଯାଇଥିବା ଅବସ୍ଥାରେ ବାହାର ତାଂକୁ ଦେଖି ବିସ୍ମିତ ହୋଇ ଯାଉଥିଲେ। ସକାଳେ ନିତ୍ୟକର୍ମ ନିମିତ୍ତ ସେ ତାଲାପକା କୋଠରୀରୁ ବାହାରି ନିଜ କଠଉ ଶବ୍ଦ କରି ସ୍ନାନ ଉତ୍ତାରେ ଫେରି ପୁଣି କକ୍ଷ ମଧ୍ୟରେ ପ୍ରବେଶ, କର୍ମଚାରୀଂକୁ ଅସାଧାରଣ ଜଣାଗଲା। କାରାବାସ ଶେଷ କରି ସେ ଗୁରୁଂକ ପାଖକୁ ଫେରିଗଲେ। ଏହା ପରେ ଅଷ୍ଟାଂଗ ସିଦ୍ଧି ସହଜ ହେଲା। ଶେଷରେ ଆଉ ଦଶଗୋଟି ସିଦ୍ଧିଲାଭ କରି ସେ ଅଷ୍ଟାଦଶ ସିଦ୍ଧଯୋଗୀ ହେବାକୁ ଅନେକ କୃଚ୍ଛ୍ର ସାଧନା କଲେ। ବୈଦିକ ମଂତ୍ରାଦିର ପୁରଶ୍ଚରଣ କରି ସମବେତ ସନ୍ନ୍ୟାସୀମାନଂକର ୩ ଦିନର ଉତ୍ସବରେ ୧୦ ଜଣ ସନ୍ନ୍ୟାସୀଂକର ଉଚ୍ଚାଂଗ ଯୋଗ ପ୍ରକ୍ରିୟା ଉପରେ ପ୍ରତ୍ୟେକର ତିନିଗୋଟିଏ ଉତ୍ତର ଦେଇ ସେ ସନ୍ନ୍ୟାସୀ ପଦର ଯୋଗ୍ୟ ବୋଲି ନିଜକୁ ପ୍ରମାଣିତ କଲେ। ସେମାନେ ଗୁରୁ ବାସୁଦେବାନଂଦଂକର ପ୍ରଦତ୍ତ ନାମ ସ୍ୱାମୀ ଜ୍ଞାନାନଂଦକୁ ଅନୁମୋଦନ କଲେ। ଗୋବର୍ଧନ ସେଇ ଦିନ ଭକ୍ତ ନାମରେ ପରିଚିତ।

ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ସେ ନିଜ ପିତାମାତାଂକର ଦର୍ଶନ ପାଇ ବରଗଡ଼ ଆସିଲେ। ସେଠାରେ କିଛିଦିନ ରହିବା ଅବସରରେ ବଂଧୁମାନଂକ ସନିବଂଧ ଅନୁରୋଧରେ ସେ କେତେଗୋଟି ଅସାଧାରଣ ସାଧନା ଦେଖାଇଥିଲେ। ପୁଣି ହରଦ୍ୱାରା ଫେରିଗଲେ। ହିମାଳୟରେ ସାଧନାରତ ବହୁ ସାଧୁ ସନ୍ନ୍ୟାସୀମାନଂକ ସଂଗ ଲାଭକରି ସେ ଗୁରୁଂକ ପାଖକୁ ଫେରି ଆସିଲେ। ସ୍ୱାମୀ ବାସୁଦେବାନଂଦ ତାଂକୁ ଆଶ୍ରମ ପରିଚାଳନା ସଂଭାଳିବାକୁ ନିର୍ଦ୍ଦେଶ ଦେଲେ। କିଛିଦିନ ପରେ ପୂର୍ଣ କୁଂଭମେଳା ଏଲାହାବାଦରେ ପଡ଼ିଲା ଗୁରୁଜୀଂକ ସହିତ ସେ ବାଘାମ୍ବରୀ ମଠରେ ରହି ବିଭିନ୍ନ ସଂପ୍ରଦାୟର ସାଧୁ ସନ୍ନ୍ୟାସୀ ଦଳକୁ ଭଂଡାର (ଭୋଜନ) ଦେବା କାର୍ଯ ସୁଚାରୁରୂପେ ସଂପନ୍ନ କରି ସେମାନଂକର ଆଶୀର୍ବାଦ ପାଇଲେ। ଜଣେ ବରିଷ୍ଠ ସାଧୁ ଜ୍ଞାନାନଂଦଂକ ମସ୍ତକରେ ଶିରସ୍ତ୍ରାଣ ବାଂଧିବା ପରେ ସାତ ସଂପ୍ରଦାୟର ମୁଖ୍ୟ ଜଣଜଣ ହୋଇ ତାଂକ ମସ୍ତରେ ଚିମୁଟା ଛୁଆଇଁ ତାଂକୁ ଆଶୀର୍ବାଦ କଲେ। ପ୍ରୟାଗର ବିରାଟ ବାଘାମ୍ବରୀ ମଠାଧିଶ ଭାବରେ ଜ୍ଞାନାନଂଦ ଏହାପରେ ପରିଚିତ ହେଲେ। ମଠର ଭୂସଂପତ୍ତି ପ୍ରାୟ ଦୁଇଶହ ଗ୍ରମାରେ ଥାଏ। ୬୦/୭୦ ଜଣ ଗୁମାସ୍ତା ପରିଚାଳନାରେ ସହାୟକ ଥିଲେ। ମଠର ସଂସ୍କୃତ ବିଦ୍ୟାଳୟରେ ୫୦/୬୦ ଜଣ ବିଦ୍ୟାର୍ଥୀ ରହି ଗ୍ରାସାଚ୍ଛାଦ ପାଉଥିଲେ। ମହଂତଂକ ଆସନ ସ୍ୱର୍ଣପତ୍ରରେ ଆଚ୍ଛାଦିତ, ମାତ୍ର ଜ୍ଞାନାନଂଦ ନିଜ ଗୁରୁଂକ ପାଦୁକା ସେଠାରେ ରଖି ବ୍ୟାଘ୍ରଚର୍ମ ଗାଲିଚା ଉପରେ ପକାଇ ମଠ ପରିଚାଳନା ଦାୟିତ୍ୱ ବୁଝିଲେ। ମାଘ ମାସରେ ପ୍ରାୟ ହଜାର ସାଧୁଂକର ଭଂଡାର ଓ ଶୀତ ଦିନରେ ଅନାଥମାନଂକୁ ମୂଲ୍ୟବାନ ଶୀତବସ୍ତ୍ର ଦାନ କରି ସେ ପରିଚାଳନାର ଆନଂଦ ଲାଭ କରୁଥିଲେ। ପ୍ରୟାଗରେ ସ୍ୱାମୀଜୀ ପଂଡିତ ମଦନମୋହନ ମାଲବ୍ୟ ପଂଡିତ ମୋତିଲାଲା ନେହେରୁଂକ ପରି ସର୍ବଭାରତୀୟ ବିଖ୍ୟାତ ବ୍ୟକ୍ତିମାନଂକର ଦୃଷ୍ଟିକୁ ଆସିଲେ। ସାତ ବରଷ ଏମିତି କଟାଇ ନୂଆ ଶିଷ୍ୟକୁ ମଠ ଦାୟିତ୍ୱ ଦେଇ ଜ୍ଞାନାନଂଦ କପୁରଥାଲାର ଏକ ପ୍ରସିଦ୍ଧ ମଠରେ ପହଂଚିଲେ। ମଠାଧିଶ ସ୍ୱାମୀ ଦିବ୍ୟାନଂଦ ଜ୍ଞାନାନଂଦଂକୁ ନିଜର ଉତ୍ତରାଧକାର ମନୋନୀତ କରି ଦେହରକ୍ଷା କଲେ, ମାତ୍ର ସଂପତ୍ତିର ମୋହରେ ବାଂଧି ହେବା ତାଂକ ଜାତକରେ ନ ଥିଲା। ସ୍ଥାନୀୟ ଅଧିବାସୀମାନଂକର ସହଯୋଗରେ ମଠ ପରିଚାଳନା କରି ସେ ସେଠାରେ ପ୍ରତ୍ୟହ ସାଧୁମାନଂକର ଭୋଜନ ବ୍ୟବସ୍ଥା ଓ ଗୋଟିଏ ସଂସ୍କୃତ ବିଦ୍ୟାଳୟ ସହିତ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା କରି ସାତ ବର୍ଷ ପରେ ଉକ୍ତ ସ୍ଥାନ ଛାଡ଼ିଲେ। କପୁରଥଲାରୁ ଖାଇବାର ଗିରିସଂକଟ ଦେଇ ହିମାଳୟ ପର୍ବତ, ଆଫଗାନିସ୍ଥାନ, କାବୁଲ,

ଇରାନ, ତୁର୍କୀଦେଶ ଭ୍ରମଣ କରି ସେଠାରେ ସେ ଲୋକମାନଂକୁ ସନାତନ ହିଂଦୁ ଧର୍ମର ବାଖ୍ୟା ଶୁଣାଇଲେ। ତେହେରାନର ଗୋଟିଏ ମସ୍‌ଜିଦରେ ପହଂଚି ସେ କୋରାନ ଆବୃତ୍ତି କଲା ଫଳରେ ସ୍ଥାନୀୟ ବିଧର୍ମୀ ଲୋକଂକର ଅସହିଷ୍ଣୁତା ଦୂର ହେଲା। ତିବ୍ବତ ମାନସରୋବର ଆଦି ଭ୍ରମଣ କରି ସେ ହରଦ୍ୱାରା ଫେରିଲେ। ସେଠାରେ ସାଧନାର ଅଂଗ ସ୍ୱରୂପ ଗଂଗାଦେବୀଂକ ଦର୍ଶନ ନିମିତ୍ତ ବ୍ରହ୍ମାନଂଦ ଗିରି ମହାରାଜଂକ କଥିତ ମତେ ଦେଢ଼ବରଷ ସାଧନା କଲେ। ଶେଷରେ ଗଂଗାମାତା ଅଷ୍ଟାଳଂକାର ଭୂଷିତା ଏକ ତରୁଣୀ ଭାବରେ ତାଂକୁ ଦର୍ଶନ ଦେଲେ। ଉତ୍ତର ପ୍ରଦେଶରେ ସେ ବହୁ ଗ୍ରାମ ଭ୍ରମଣ କଲେ, ମାତ୍ର ଲୋକମାନଂକର ଭକ୍ତି ଓ ପୂଜାରୁ ଦୂରରେ ରହିବାକୁ ସେ ପୁଣି ବରଗଡ଼ ଲେଉଟିଲେ।

ବିରାଟ ମଠମାନଂକର ବିଭବ ଓ ପ୍ରତିଷ୍ଠା ତ୍ୟାଗକରି ଏକ ନିର୍ଜନ ସାଧନା ସ୍ଥଳ ଅନ୍ୱେଷଣରେ ସେ ବରଗଡ଼ ନିକଟ କମଗାଁରେ ଆଶ୍ରମ କରି ରହିଲେ। ବିଦ୍ୟାନୁଭୂତିରେ ଅଂତସ୍ଥଳ ପରିପ୍ଲୁତ ହେବା ସାଧକ ବିଷୟଭୋଗ ପ୍ରତି ବିତସ୍ପୃହ ହେବା ସ୍ୱାଭାବିକ। ବାସୁଦେବାନଂଦ ବେଦାଂତ ପାଠଶାଳା ନାମକ ଗୋଟିଏ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା କରି ସେଠାରେ ସେ ସଂସ୍କୃତ ଶିକ୍ଷାଦାନ ଆରଂଭ କଲେ। ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଏହିଠାରେ ତାଂକର ଶିଷ୍ୟ ଥାଇ ସଂସ୍କୃତ ଓ ସଂସ୍କୃତି ପ୍ରତି ଆକୃଷ୍ଟ ହେଲେ। ୧୯୨୦ରୁ ୧୯୩୦ ପର୍ଯ୍ୟଂତ ଏଠାରେ ରହି ସେ ସାମୟିକ ସୁଂଦରଗଡ଼, ରାୟଗଡ଼, ହିମଗିରି, ତାଳପଟିଆ, ବିଜେପୁର ଆଦି ସ୍ଥାନକୁ ଯାଇ ସେଠାରେ ଆଧ୍ୟାତ୍ମିକତା ପ୍ରଚାର କରୁଥିଲେ। କମଗାଁରେ ବରଷକୁ ଚାରିମାସ ସେ ଖାଲି ଅଁଳାଚୂର୍ଣ ଓ କ୍ଷୀର ଖାଇ ରହୁଥିଲେ। ଭକ୍ତମାନଂକ ଅନୁରୋଧରେ ତାଂକୁ ଇଚ୍ଛା ବିରୁଦ୍ଧରେ କିଛି ଆଲୌକିକତା ଓ ଦେଖାଇବାକୁ ପଡୁଥିଲା। ତାଂକର ଜଣେ ଭାଇ ସନ୍ୟାସ ଗ୍ରହଣ କରି ଆତ୍ମାରାମ ନେଇ ରାୟଗଡ଼ାରେ ରହୁଥିଲେ। ତାଂକର ଜଣେ ଶିଷ୍ୟ ଅମୃତଲାଲ ବିକାନୀର ନିବାସୀ ସେ କପୁରଥଲାରେ ଥିବା ସମୟରେ ଜ୍ଞାନାନଂଦଂକର ଶିଷ୍ୟତ୍ୱ ଗ୍ରହଣ କରିଥିଲେ। ତାଂକୁ କଲିକତା ନେବାକୁ ରାଜି କରାଇଲେ। ସେଠାରୁ ଫେରି ସଂବଲପୁରରେ ଜନନାୟକ ଚଂଦ୍ରଶେଖର ବେହେରାଂକ ଘରେ ଓଁକାଲ ମଲ୍ଲଂକ ବଗିଚାରେ କିଛିଦିନ ଅବସ୍ଥାନ କଲେ। ସଂବଲପୁର ସହରର ବିଶିଷ୍ଟ ବ୍ୟକ୍ତିମାନେ ମିଶି ଗୋଟିଏ ଗୋଷ୍ଠୀ ଗଠନ କରି ସେଠାରେ ଧର୍ମଚର୍ଚ୍ଚାର ବ୍ୟବସ୍ଥା କଲେ ଓ ଜ୍ଞାନାନଂଦ ଏଥିରେ ମୁଖ୍ୟ ଆକର୍ଷକ ଥିଲେ। ସଂବଲପୁରରେ ଥିବା ପର୍ଯ୍ୟଂତ ଓକିଲ ଚଂଦ୍ରଶେଖର ବେହେରା, ମହେଂଦ୍ର ନାଥ ବର୍ମା ତାଂକର ମଧ୍ୟାହ୍ନ ଓ ସଂଧ୍ୟା ଭୋଜନର ବ୍ୟବସ୍ଥା

କରୁଥାଆଂତି। ଏହିପରି ସତ୍‌ସଂଗ ଆଶ୍ରମ ପ୍ରତିଷ୍ଠା ହେଲା ଓ ସ୍ୱାମୀଜି ୧୫ ବର୍ଷ ସେଠାରେ ରହିଲେ। ଡାକ୍ତର ପୂଜାରୀଂକ ସହିତ ତାଂକର ହିମାଳୟ, ତିବ୍ବତ, କୈଳାଶ, ମାନସରୋବର ଭ୍ରମଣ ପୂର୍ବରୁ କୁହାଯାଇଛି ୧୯୪୨ ମସିହାରୁ ସେ ପ୍ରାୟ ସଂବଲପୁର ସହରର ବାସିଂଦା ଥିଲେ। ୧୯୩୬ରେ ତାଂକର କୈଳାଶ ଯାତ୍ରା ଚାରି ମାସ ତିନି ଦିନ ସମୟ ଲାଗିଲା। ଏହାର ସବିଶେଷ ବର୍ଣନା ଡାକ୍ତର ପୂଜାରୀଂକ କୈଳାଶ ପଥେ ଗ୍ରଂଥରେ ମିଳେ।

ସଂବଲପୁରରେ ଥିବା ବେଳେ କଲିକତାରୁ ଶିଷ୍ୟ ଅମୃତଲାଲ ମାସକୁ ପଂଦରଶହ ଟଂକା ତିନି ମାସ କାଳ ମନିଅର୍ଡର କରି ତାଂକୁ ପାଖକୁ ପଠାଉଥିଲେ, ମାତ୍ର ସେ ତାହା ପ୍ରତ୍ୟାଖ୍ୟାନ କରୁଥିଲେ। ରାୟଗଡ଼ରେ ଆତ୍ମାରାମଂକ ଆଶ୍ରମରେ ସେ ଭୋଜନକୁ ଯାଉଥିବା ବେଳେ ହଠାତ ଅମୃତଲାଲ ଦୁର୍ଘଟଣାରେ ଚାଲିଗଲା କହି ଖାଦ୍ୟ ତ୍ୟାଗ କଲେ। କିଛି ସମୟ ପରେ ଏହି ମର୍ମରେ ଏକ ଟେଲିଗ୍ରାମ ପହଂଚିଲା। ନାନା ଉଦ୍ୟମ ସତ୍ତ୍ୱେ ସେ ସଂବଲପୁର ଫେରିଲେ ନାହିଁ। ବେଦାଂତବାଦୀ ଦାର୍ଶନିକ ସନ୍ନ୍ୟାସୀ ଭାବରେ ରାୟଗଡ଼ାରେ ଥାଇ ଦିନେ ରାତିରେ ସେ କୀର୍ତନ ଭଜନ ଉତ୍ତାରେ ପରଦିନ ନିଜ ମହାପ୍ରୟାଣ ଘୋଷଣା କଲେ। ପ୍ରଥମେ ସମୟ ଦିନ ୯ଟା କହି ପରେ ତୁଂଭମାନଂକର ସୂର୍ଯତାପରେ ଶ୍ମଶାନକୁ ଯିବା କଷ୍ଟ ହେବ, ତେଣୁ ତାହା ଦିନ ୩ଟା ବୋଲି ଘୋଷଣା କଲେ। ପରଦିନ ଅଖଂଡ କୀର୍ତନ ଚାଲିଥାଏ। ମଧ୍ୟାହ୍ନରେ ଶିଷ୍ୟମାନେ ଭୋଜନ ସାରିଲେ। ଦିନ ୨ଟାରେ ଯୋଗାସନରେ ବସି ସେ ଦେହତ୍ୟାଗ କଲେ। ସେଦିନ ୧୯୫୨ ବୈଶାଖ ଶୁକ୍ଳ ଦଶମୀ ତିଥି। ଅସାଧାରଣ ଜ୍ଞାନ ଓ ବିଭୂତିସଂପନ୍ନ ଜଣେ ଯୋଗଜନ୍ମା ବେଦାଂତୀ ସନ୍ନ୍ୟାସୀଂକର କର୍ମମୟ ଜୀବନର ଅବସାନ ଘଟିଲା।



# DEOGARH DISTRICT



# ଦେବଗଡ଼

| ଆୟତନ | ୨୭୮୧ ବର୍ଗ କି.ମି. |
|---|---|
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୨,୭୪,୦୯୫ |

୧୯୪୮ ମସିହାରେ ମିଶ୍ରଣ ସମୟରେ ଅବିଭକ୍ତ ବାମଂଡା କରଦ ରାଜ୍ୟର ଆୟତନ ୧୯୮୮ ବର୍ଗ ମାଇଲ ଓ ଲୋକ ସଂଖ୍ୟା ୧୩୪୭୨୧ ଥିଲା । ବ୍ରିଟିଶ ସରକାରଂକୁ ଦେୟ ପେସ୍‌କିସ୍ ୭,୫୦୦ ଟଂକା ଥିଲା ।

''ପାହିଲାଣି ଘୋର ତାମସୀ ରଜନୀ
ଫୁଟିବ ଉତ୍କଳ-ଭାଷା କମଳିନୀ
ଏ ଘୋର ଯାମିନୀ-ଅବସାନ ଶଂସୀ
କାବ୍ୟତାରା ରୂପେ ବୀର ଗଂଗାବଂଶୀ
ଉଦିଲେ ପ୍ରଥମେ ବାମଂଡା-ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ ।''

– କବିବର ରାଧାନାଥ ଚିଲିକା (୧୮୯୧)ରୁ

''ହେ ରାଜେଂଦ୍ର, ମଂଦ୍ରନାଦି-ପ୍ରପାତର ପତି,
ବାମଂଡା, ମଂଡଳେଶ୍ୱର, ଉତ୍କଳ ମଂଡନ
ତୁଂଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ
ଦେବ ଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ
ବୁଧହଂସ କେଳିସରଃ ଅବିଦ୍ୟା ଉଷରେ ହେ ନୃପ ସବିତା ।''

– ମହାଯାତ୍ରା (୧୮୯୬) କାବ୍ୟରୁ



# ସାର୍

# ବାସୁଦେବ

ଦ୍ୱିଖଂଡିତ ବାମଂଡା କରଦ ରାଜ୍ୟର ସତେଇଶ ବର୍ଗ କିଲୋମିଟର ଆୟତନ ଓ ଦୁଇଲକ୍ଷ ଚଉସ୍ତରି ହଜାର ଲୋକସଂଖ୍ୟା ନେଇ ଗଠିତ ଓଡ଼ିଶାର ଏକ କ୍ଷୁଦ୍ର ଜିଲ୍ଲାକୁ ଦେଖିଲେ କିଏ ବିଶ୍ୱାସ କରିବ ଯେ ଏହା ଏକଦା ବୁଧ ହଂସ କେଳିସର ଥାଇ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ଭାଗରୁ ବିଦ୍ୱାନମାନଂକୁ ଆକର୍ଷିତ କରୁଥିଲା ଓ ବିଦ୍ୟୁତ୍, ଜଳଯୋଗାଣ, ଟେଲିଫୋନ ସେବା ଯୋଗାଇ ଦେବାରେ ଓଡ଼ିଶାର ଅନନ୍ୟ ଥିଲା ।

### ପ୍ରଧାନପାଟ

ଆହାସେ ପ୍ରଧାନପାଟ ନେତ୍ର ପ୍ରୀତିକର
ଭାବୁକର ଭାବମୟ ହୃଦୟ ରଂଜନ
ଗିରିଶିର ବିଭୂଷିତ ଶୁଭ୍ରସ୍ୱଚ୍ଛଝର
ଆତପତାପିତ ତନୁ ତାପ ବିଭଂଜନ

x x x x x

ମଧୁର ନିଦାନକର ଗ୍ଲାନି ଗ୍ଳାନି ହର
ଦେଖିଦେଲେ ମନପ୍ରାଣ ହୁଏ ସୁଶୀତଳ
ଶୁଭ୍ରବାରି କୁଂଡଫେନ ବୁଦବୁଦ ନିବହେ
ସୁବିମଳ ସ୍ରୋତ ହୋଇ ବନଗର୍ଭେ ବହେ ।

*ଗଂଗାଧର-ଅର୍ଘ୍ୟଥାଳି (୧୯୧୮)ରୁ*

ପ୍ରଧାନ ପାଟ ଜଳପ୍ରପାତ ବାମଂଡାର ସବୁଠାରୁ ଆକର୍ଷକ ଦର୍ଶନୀୟ ସ୍ଥାନ ।ମଝିରେ ମଝିରେ ବାମଂଡା ରଜା ବିଶ୍ରାମ ନେବାକୁ ସେଠାକୁ ଯାଉଥିଲେ । ୧୮୬୯ ଜୁନ୍ । ଖରାଦିନେ ରାଜା ଯାଇ ତାଂକ କୋଠରିରେ ବସିଛଂତି, କିଏ ଆସି ଖବର ଦେଲା ଯେ ପାଖରେ ଥିବା ବରଗଛରେ ଗୋଟାଏ ଗୋଖର ସାପ ରହିଛି । ରାଜାଂକର ନିଜ ବୀରତ୍ୱର ଅଭିମାନ ଥିଲା । ସେ କହିଲେ ଠିକ୍ ଅଛି ମୁଁ ସେ ସାପକୁ ଧରିବି । ଲୋକେ ବିରୋଧ କଲେ । ସେ କାହା କଥା ଶୁଣିଲେ ନାହିଁ । ସାପକୁ ଧରିବା ପାଇଁ ବାହାରିଲେ । ଥୋଡ଼ାଏ ଲୋକ ଠେଂଗା ବାଡି ଧରି ଗଛକୁ ଘେରି ଠିଆ ହେଲେ । ଏତିକି ବେଳେ ଗଛର ଉପର ଡାଳରେ ସାପ ଦେଖାଗଲା । ରଜା ପାଇକଛା ଭଡ଼ି ଗଛରେ ଚଢ଼ିଲେ । ପାଚିଡୁଂଡ ଭିତରେ ସାପଟା ଗୋଟେ କୋରଡରେ ପଶିଗଲା । ରାଜା ତା ଲାଂଜକୁ ଧରିନେଲେ ଓ ଟାଣିବାକୁ ଲାଗିଲେ । ସାପ ଯେତେ ଭିତରକୁ ପଶିବାକୁ ଚେଷ୍ଟାକଲେ ବି ରାଜା ତାକୁ ଟାଣି ବାହାର କଲେ । ସେଇଠି ଥାଇ ଗୋଟେ ହାତରେ ତାର ଲାଂଜ ଆଉ ଗୋଟେ ହାତରେ ତାର ମୁଂଡଧରି ତଳେ ଜମା ହୋଇଥିବା ଲୋକଂକୁ ଦେଖାଇଲେ । ରାଜାଂକ ବୀରତ୍ୱରେ ଲୋକେ ଭାରି ଖୁସି ହୋଇଗଲେ । ରାଜା ସାପକୁ ଦୁଇ ହାତରେ ଧରି ଲୋକଂକର ବାହାବାଃ ଭିତରେ ସେମାନେ ପକାଇଥିବା ଶିଡ଼ିରେ ତଳକୁ ଓହ୍ଲାଇଲେ । ଲୋକେ କହିଲେ ବିଷଧର ସାପଟିକୁ ପିଟି ପିଟି ମାରିଦେବା । ଏତେ କଷ୍ଟରେ ଧରିଥିବା ସାପକୁ ମାରିବା ପାଇଁ ରାଜା ରାଜିହେଲେ ନାହିଁ । ରାଜାଂକର କଥା ଅନୁସାରେ ସାପକୁ ରଖିବା ପାଇଁ କିଛି ସମୟ ବାଦ୍ ଗୋଟେ ମାଠିଆ ଅଣାଗଲା । ସାପଟି ରାଗରେ ଫଁ ଫଁ ହେଉଥାଏ । ରାଜା ତାକୁ ଜୋରେ ଧରିଥାଂତି । କିଏ ଜଣେ ପରାମର୍ଶ ଦେଲା ମାଠିଆ ଆସିବା ପର୍ଯଂତ କେହି ଜଣେ ଛାମୁଂକ ହାତରୁ ସାପଟା ନେଇ ଧରିଥାଉ । କିଂତୁ ଛାମୁ ରାଜିହେଲେ ନାହିଁ । ଛାମୁ ସାପକୁ ମାଠିଆ ଭିତରେ ପୂରାଇବା ପାଇଁ ଚେଷ୍ଟା କଲେ । ଫଁ ଫଁ ହେଉଥିବା ସାପ ଖସି ପଳାଇଯିବାକୁ ଚେଷ୍ଟା କଲେ ସୁଦ୍ଧା ରାଜା ତାକୁ ବହୁ କଷ୍ଟରେ ପୂରାଇଲେ । କିଂତୁ ତା ଆଗରୁ ସାପ ତାଂକ ହାତକୁ ଚୋଟେ ମାରିଲା । ବିଷ ଜ୍ୱାଳାରେ ରାଜା ଅଚେତ ହୋଇପଡ଼ିଲେ । କୂଅ ମୂଳରେ ତାଂକର ପାଣି ଢ଼ାଳି ଗୁଣିଆ ଡାକି ଯେତେ ଚିକିତ୍ସା କଲେ ବି ଚେତା ନ ଆସିବାରୁ ତାଂକୁ ପାଲିଂକିରେ

ଶୁଆଇ ରାଜଧାନୀ ଦେଓଗଡ଼କୁ ନିଆଗଲା। ସଂବଲପୁରରୁ ଗୋରା ଡାକ୍ତର ଆସିବାକୁ ବ୍ୟବସ୍ଥା କରାଗଲା। ଅବସ୍ଥାର ଉନ୍ନତି ହେଲା ନାହିଁ। ଟିକେ ଚେତା ଆସିଲାରୁ ସବୁ ପ୍ରିୟ ପରିଜନଂକୁ ପାଖରେ ଦେଖି ରାଜା ବ୍ରଜସୁଂଦର ଘୋଷଣା କଲେ ତାଂକ ପରେ ବାସୁଦେବ ରାଜା ହେବେ। ବାସୁଦେବ ପାଖରେ ବସିଥିଲେ। ରଜା ତାଂକୁ କହିଲେ ମନେରଖ ତମ ଦେହରେ ସତୀର ରକ୍ତ ପ୍ରବାହିତ ହେଉଛି, ଏହା ତାଂକର ଶେଷ କଥା ଥିଲା। ଛଅ ପୁରୁଷ ତଳେ ବାମଂଡା ରାଜା ପ୍ରତାପରୁଦ୍ରଂକର ରାଣୀ ଦେବଗଡ଼ ପାଖ ନଦୀକୂଳରେ ଚଂଦନକାଠ ଚିତାରେ ଯେଉଁଠି ସତୀ ହେଉଥିଲେ ତାହା ଏବେ ବି ସତୀଘାଟ ନାଁରେ ପରିଚିତ। ରାଜାଂକର ଶେଷ କଥା ଅନୁସାରେ ୧୯ ବର୍ଷ ବୟସରେ ବାସୁଦେବ ବାମଂଡା ରାଜଗାଦିରେ ବସିଲେ। ତାଂକୁ ମାତ୍ର ପାଂଚବର୍ଷ ବୟସ ହୋଇଥିଲା ବେଳେ ୧୮୫୫ରେ ରାଜା ବ୍ରଜସୁଂଦର ନିଜ ତୃତୀୟ ଭାଇ ହରିହର ଦେବଂକର ଏହି ପୁଅକୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ। ପୋଷ୍ୟପୁତ୍ର ସଂକ୍ରାଂତ ସବୁ କାଗଜପତ୍ର ସଂବଲପୁରରେ ଗୋରା ପଲିଟ୍‌କାଲ ଏଜେଂଟଂକ ପାଖକୁ ପଠାଇ ଦେଇ ନିଜ ଉତ୍ତରାଧିକାରୀ ବାଛିବା କଥା ସେ ପକ୍କା କରିଥିଲେ।

ବାସୁଦେବ ପାଂଚ ବର୍ଷ ବୟସରେ ଟିକାୟତ ଉପାଧି ପାଇ ପାଠପଢ଼ା ଆରଂଭ କଲେ। ତାଂକୁ ବାକ୍ୟରଣ ପଢ଼ାଇଲେ ପଂଡିତ ଆନଂଦ ବ୍ରହ୍ମା। କାବ୍ୟ, ନାଟକ, ଅଳଂକାର ପଢ଼ାଇଲେ ପଂଡିତ ପୁରୁଷୋତ୍ତମ ତର୍କାଳଂକାର। ନ୍ୟାୟ, ବେଦାଂତ ପଢ଼ାଇଲେ ପଂଡିତ ଭୁବନେଶ୍ୱର ବଡ଼ପଂଡା। ଏମାନେ ସମସ୍ତେ ନାମଜାଦା ପଂଡିତ ଥିଲେ। ବାସୁଦେବ ଟିକିଏ ବଡ଼ ହେବାରୁ ବ୍ରଜ ସୁଂଦର ତାଂକୁ ପାଖରେ ବସାଇ ରାଜକାର୍ଯ କଲେ ଓ ତାଂକୁ ଶିକ୍ଷା ଦେବାକୁ ଲାଗିଲେ। ତାଂକ ମନରେ ଦଂଭ ଆସିଲା ଯେ ତାଂକ ଅଂତେ ଜଣେ ଯୋଗ୍ୟ ରାଜକୁମାର ସିଂହାସନରେ ବସିବେ। ତାଂକର ଆଶା ଫଳବତୀ ହେଲା। ରାଜକୁମାର ବାସୁଦେବ ପାଠ ପଢ଼ିବା ସମୟରେ ସୁସ୍ଥ ସବଳ ଶରୀରର ପ୍ରଫୁଲ୍ଲ ମନା, ଚଂଚଳ ପ୍ରକୃତି ତଥା ସ୍ଫୂର୍ତ୍ତି ସଂପନ୍ନ ଯୁବକ ଥିଲେ। ୧୯୬୮ରେ ସେ ସିଂହାସନ ଆରୋହଣ କଲେ। ମାତ୍ର ଅଠରବର୍ଷ ବୟସ ହେତୁ ପଲିଟିକାଲ ଏଜେଂଟ କର୍ନେଲ ବ୍ରୁଇ ତାଂକ ଜନ୍ମିତ ପିତା ହରିହରଂକୁ ରାଜକାର୍ଯରେ ତାଂକୁ ସାହାଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଲେ। ମାତ୍ର ନିଜର କର୍ମ ପଟୁତା ସହିତ ଅସାଧାରଣ ଜ୍ଞାନ ପ୍ରକାଶ କରି ବାସୁଦେବ ଏହାର ଅନାବଶ୍ୟକତା ପ୍ରମାଣ କଲେ। ୧୮୭୧ରେ ସେ କଳାହାଂଡି ମହାରାଜାଂକର ମଧ୍ୟମା କନ୍ୟାକୁ ବିବାହ କଲେ। ଏକମାତ୍ର ପୁତ୍ର ସଂତାନ ଜନ୍ମ ପରେ ରାଣୀ ମୃତ୍ୟୁବରଣ କଲେ। ସେ ଗାଦିରେ ବସିଲାବେଳକୁ ପ୍ରାୟ ଦୁଇ ହଜାର ବର୍ଗ ମାଇଲ ଆୟତନ ବାମଂଡା ରାଜ୍ୟର ଲୋକସଂଖ୍ୟା ଏକ ଲକ୍ଷରୁ ମଧ୍ୟ କମ୍ ଥିଲା। ରାଜ୍ୟର ବାର୍ଷିକ ଆୟ ମାତ୍ର ଛଅ ହଜାର ଟଂକା ଥିଲା। ବାସୁଦେବ ଚଉତିରିଶ

ବର୍ଷ ରାଜପଣ କଲେ ଓ ରାଜ୍ୟର ଆୟକୁ ବୃଦ୍ଧି କରି ଶେଷ ବର୍ଷରେ ଏକଲକ୍ଷ ତେସ୍ତରୀ ହଜାର ଟଂକା କରିପାରିଥିଲେ। ତାଂକ ରାଜତ୍ୱ କାଳରେ ରାଜ୍ୟର ବହୁବିଧ ଉନ୍ନତି ସର୍ବ ସାଧାରଣଂକୁ ଓ ଇଂରେଜ ଶାସକଂକୁ ମଧ୍ୟ ଆଶ୍ଚର୍ଯାନ୍ୱିତ କରିଥିଲା। ପ୍ରଥମରୁ ସାଧାରଣ ପ୍ରଜାଂକର ଆର୍ଥିକ ଅବସ୍ଥା ଭଲ ନଥିଲା। ବାସୁଦେବ ଜମିର ସ୍ୱତ୍ୱ ଠିକ୍ ଭାବରେ ତିଆରି କରାଇଲେ। ଜମିର କିସମ ଅନୁସାରେ ଖଜଣା ଧାର୍ଯ କଲେ। କୃଷିର ଉନ୍ନତି ନିମିତ୍ତ ଧାନ, ଗହମ ସହିତ ରବି ଫସଲ ଓ ଅନ୍ୟ ଅର୍ଥକରୀ ଚାଷର ସୁବିଧା କରାଇଲେ। ଶାସନ ସୁବିଧା ସକାଶେ ରାଜ୍ୟର ଆୟବ୍ୟୟର ହିସାବ ଠିକ୍ ଭାବରେ ରଖିବାକୁ ସେ କର୍ମଚାରୀମାନଂକୁ ଆଦେଶ ଦେଲେ। ସେମାନଂକର ବେତନ ବୃଦ୍ଧି କରାଇ କର୍ତବ୍ୟରେ ଶୃଂଖଳା ଓ ସଦାଚାର ଆଣିବାକୁ ଉଦ୍ୟମ କଲେ।

ରାଜ୍ୟରେ ବହୁତ କୃଷିଜାତ ଦ୍ରବ୍ୟ ମିଳୁଥିଲା। ଜଂଗଲରେ ମୂଲ୍ୟବାନ କାଠ ସହିତ ପଶୁ ସଂପଦ ଭରି ରହିଥିଲା। ବନ୍ୟଜନ୍ତୁଂକର ଦାଂତ, ଶିଙ୍ଘ, ଚର୍ମ ଓ କେଶ ଆଦି ବାହାରେ ବେଶି ମୂଲ୍ୟରେ ବିକ୍ରି ହେବାର ସୁଯୋଗ ଥିଲା। ଗୃହପାଳିତ ପଶୁମାନଂକ ଉତ୍ପାଦିତ ଦ୍ରବ୍ୟ ମଧ୍ୟ ବଜାରକୁ ଯାଇ ଉଚିତ ମୂଲ୍ୟ ଆଣିବାର ସୁବିଧା ନଥିଲା। ସେ ସମୟରେ କଟକ ଓଡ଼ିଶା ରାଜ୍ୟର ରାଜଧାନୀ। ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଦୃଷ୍ଟିରୁ ସମଗ୍ର ଓଡ଼ିଆ ଭାଷୀ ଅଂଚଳରେ ଏହାର ଗୁରୁତ୍ୱ ଥିଲା। ମାତ୍ର କଟକ ସହିତ ବାମଂଡା ରାଜ୍ୟର ସିଧାସଳଖ ସଂପର୍କ ନଥିଲା। ବାସୁଦେବ ବ୍ରାହ୍ମଣୀ ନଦୀରେ  ନୌକାରେ ଜଳପଥ ଆବିଷ୍କାର କରି ମହାନଦୀ ସହିତ କଟକର ସଂପର୍କ ଆଣିଲେ। ଉତ୍ପନ୍ନ ଦ୍ରବ୍ୟ ଶାଳକାଠ, ଜଂଗଲପଶୁ ପକ୍ଷୀଂକର ପର, ଶିଂଘ, ଦାଂତ, ଚର୍ମ ଆଦି ସହିତ ରବିଶସ୍ୟ ନୌକାରେ ପଠାଗଲା। ନଦୀକୂଳରେ ରାଜ୍ୟ ଭିତରେ ସେ ଗୋଗୁଆ ନୈକୁଳ, ରେଂଗାଲି ଭଳି ଜାଗାରେ ଗୋଦାମ ଘର ତିଆରି କଲେ। ସବୁ ଜିନିଷ କଟକରେ ପହଂଚି ବିକ୍ରିବଟା ସୁବିଧାରେ କରାଇବାକୁ ସେଠାରେ ଗୋଟିଏ ବାଣିଜ୍ୟ କୋଠି ତିଆରି କଲେ। କଟକରୁ ଫେରିବା ବେଳେ ଡଂଗାଗୁଡ଼ିକରେ ଲୁଣ, ମିଲ୍ ଓ ଦେଶୀ ଲୁଗାପଟା, ମସଲା ଓ ଅନ୍ୟ ଆବଶ୍ୟକୀୟ ଜିନିଷ ଅଣାଗଲା। ସେଥିପାଇଁ ତାଳଚେରଠାରେ ମଧ୍ୟ ରାଜାଂକର ଏକ ବାଣିଜ୍ୟ କୋଠି ରହିଲା। ରେଲ୍‌ଲାଇନ ପାଇଁ ରେଳବାଇ କଂପାନୀ କାଠପଟା ଦରକାର କରୁଥିଲେ। ଏହା ଯୋଗାଇବାକୁ ରାଜ୍ୟରୁ କାଠ କଟାଯାଇ ପଟା କରିବାକୁ ଆଧୁନିକ ଧରଣର ଗୋଟିଏ କରତ କଳ ବସାଗଲା। ଏଥିପାଇଁ ବିଦେଶରୁ ସାହେବ ମେକାନିକ୍ ମଗାଗଲେ। ଅଳ୍ପ ସମୟରେ କାଠ କଟାଯାଇ ପଟା ତିଆରି ହୋଇ ରେଲ୍ କଂପାନୀକୁ ଯୋଗାଇ ଦିଆଗଲା। ଫଳରେ ରାଜ୍ୟର ଆୟ ଆଶାତୀତ ଭାବରେ ବୃଦ୍ଧିପାଇଲା। ପ୍ରଚଳିତ କୃଷି ସହିତ ନୂତନ

ପ୍ରକାରର ଫଳଚାଷ ଆରମ୍ଭ କରାଗଲା । ଆମ୍ବ, ଲେମ୍ବୁ, କମଳା ସହିତ, ଇଉକାଲିପଟାସ୍, ସିଂକୋନା, ଦେବଦାରୁ ମଧ୍ୟ ଲଗାଗଲା । ରାଜା ନିଜେ ଉଦ୍‌ଭିଦତତ୍ତ୍ୱ ଅନୁଧାନ କରି ରାଜ ଉଦ୍ୟାନରେ ନାନା ପ୍ରକାରର ଫୁଲ ଚାଷର ବ୍ୟବସ୍ଥା କଲେ । ପ୍ରଧାନପାଟ ଜଳପ୍ରପାତ ତଳେ ପ୍ରାୟ ଚାଳିଶ ଏକର ଜାଗାରେ ଏହି ଉଦ୍ୟାନ କରାଗଲା । ସାଧାରଣ ଲୋକଙ୍କର ମନବିନୋଦନ ନିମିତ୍ତ ସେଠାରେ ନାନା ପ୍ରକାର ପ୍ରତିମୂର୍ତ୍ତି ସ୍ଥାପନ କରି ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରାଯାଇଥିଲା । ରାଜ୍ୟରେ ଜମି ସବୁ ବର୍ଷାଧାର ଥିଲା । ଜଳ ସେଚନ ସୁବିଧା ପାଇଁ ରାଜା କ୍ଷୁଦ୍ର ଜଳସେଚନ ଯୋଜନା ମାନ ତିଆରି ହେବାର ବ୍ୟବସ୍ଥା କଲେ । ନିଜ ରାଜଧାନୀ ଦେବଗଡ଼ ସହରର ଉନ୍ନତି ପାଇଁ ପ୍ରଥମେ ସେ ଏକ ପରିକଳ୍ପନା କଲେ । ନିଜର ବାସଗୃହ ସହିତ ରାଜ କର୍ମଚାରୀ ମାନଙ୍କର ବାସଗୃହ ତିଆରି କରାଇଲେ । ବଡ଼ ବଡ଼ କୋଠାବାଡି ତିଆରି ସରିଲା । ମାତ୍ର ସବୁଠାରୁ ବଡ଼ କାର୍ଯ୍ୟ ଥିଲା ସହରରେ ଗୋଟିଏ ଉତ୍ତମ ପୁସ୍ତକାଗାର ପ୍ରତିଷ୍ଠା । ଏହି ପୁସ୍ତକାଗାର ଅନେକ କାବ୍ୟ, ନାଟକ, ଦର୍ଶନ, ଜ୍ୟୋତିଷଶାସ୍ତ୍ର, ଧର୍ମଗ୍ରଂଥର ଭଂଡାର ଥିଲା ଓ ନଗରବାସୀଂକର ଏହାର ସଦ୍ ଉପଯୋଗ ନିମିତ୍ତ ରାଜା ଉଦ୍ୟମ କରୁଥିଲେ ।

ସେତେବେଳେ ଓଡ଼ିଶାରେ ଅନେକଗୁଡ଼ିଏ ଦେଶୀୟ ରାଜ୍ୟ ଥିଲେ ମଧ୍ୟ ନୂତନ ମୌଳିକ ଚିଂତାଧାରାରେ ବାସୁଦେବ ସମସ୍ତଂକୁ ଟପି ଯାଇଥିଲେ । ବାମଂଡାରେ ସେ ପ୍ରଥମେ ଡାକ ବିଭାଗ ପ୍ରତିଷ୍ଠା କଲେ । ରାଜଧାନୀ ଦେବଗଡ଼ ଓ ଅନ୍ୟତ୍ର ଏହାର ଶାଖା ଖୋଲିଲା । ଡାକରେ ଯିବା ଚିଠିରେ ରାଜ୍ୟ ଭିତରେ ଦୁଇ ପଇସା ଓ ରାଜ୍ୟ ବାହାରେ ଏକ ଅଣା ଡାକଟିକଟ ବ୍ୟବହାର ହେଉଥିଲା । ଏଥିରୁ ରାଜ୍ୟକୁ ଆୟ ମଧ୍ୟ ମିଳୁଥିଲା । କିଛିଦିନ ପରେ ୧୮୯୫ରେ ଏହାକୁ ଭାରତ ସରକାରଂକ କର୍ତ୍ତୃତ୍ୱରେ ଛାଡ଼ି ଦିଆଗଲା । ଟେଲିଫୋନ୍ ସଂଯୋଗ ସେହିପରି ଏକ ଅଭୂତପୂର୍ବ ଘଟଣା ଥିଲା । ବାମଂଡା ରାଜ୍ୟରେ ସେ ସମୟରେ ଦସ୍ୟୁ ଉପଦ୍ରବ ପ୍ରବଳ ଥିଲା । ସୁଶାସନ ଓ ପ୍ରଜାମାନଂକର ନିରାପତ୍ତା ନିମିତ୍ତ ଶୀଘ୍ର ସଂବାଦ ପଠାଇବା ଓ ପ୍ରତିକାର କରିବା ନିମିତ୍ତ ଏହା ଅତି ଆବଶ୍ୟକ ଥିଲା । ଟେଲିଫୋନ୍ ଉଦ୍‌ଭାବନ ହେବାର ମାତ୍ର ୨୦ ବର୍ଷ ପରେ ଘନ ଜଂଗଲ ଥିବା ଏହି ଅଂଚଳରେ ଏହାର ପ୍ରବର୍ତ୍ତନ ହେଲା । ଭାରତ ସରକାର ବିଳମ୍ବ କରିବାରୁ ବାସୁଦେବ ବାମଂଡା ରେଲ୍ ଷ୍ଟେସନରୁ କୁଚିଂଡା ଦେଇ ରାଜଧାନୀ ଦେବଗଡ଼ ଓ ସେଠାରୁ ବାରକୋଟ ଯାଏ ଅଠସ୍ତରୀ ମାଇଲ ଟେଲିଫୋନ କାମ ଆରମ୍ଭ କଲେ ଓ ୧୯୦୧ରେ ଏହା ଶେଷ ହୋଇଗଲା । ସେହିପରି ଗମନାଗମନର ସୁବିଧା ପାଇଁ ରାଜା ନିଜେ ନକ୍‌ସା କାଟି ରାଜ୍ୟରେ ରାଜପଥ ନିର୍ମାଣର ବ୍ୟବସ୍ଥା କଲେ । ଏହା ଫଳରେ ନିକଟବର୍ତ୍ତୀ ସଂବଲପୁର, ତାଳଚେର, ରେଢ଼ାଖୋଲ,

ପାଲଲହଡ଼ା, ବଣେଇ ଆଦି ସ୍ଥାନ ସହିତ ଯୋଗାଯୋଗ ସହଜ ହେଲା । ଏହି ରାସ୍ତା ପାହାଡ ବଣ କାଟି ଘାଟ ରାସ୍ତା ଦେଇ ତିଆରି କରାଯାଇଥିଲା । ରାଜା ବାସୁଦେବ ନିଜେ ଏଥିରେ ଇଂଜିନିୟର ପରି ନିଜର କୃତିତ୍ୱ ଦେଖାଇଥିଲେ । ଏହା ରାଜ୍ୟର ଓ ରାଜ୍ୟ ବାହାରର ଅନେକ ମଜୁରିଆଂକୁ କାମ ଯୋଗାଇ ଦେଇଥିଲା । ବାମଂଡା ରାଜ୍ୟ ମଧ୍ୟରେ ବେଂଗଲ ନାଗପୁର ରେଲ୍ ରାସ୍ତା ଯାଉଥିଲା । ବାମଂଡା ଗୋବିଂଦପୁର ରେଲଷ୍ଟେସନ କୁଚିଂଡା ତହସିଲରେ ଥାଇ ଏହି ଲାଇନ୍‌ର ଗୋଟିଏ ରେଲ୍‌ଷ୍ଟେସନ ଥିଲା ଓ ଏଠାରୁ ଏକ ଦିଗରେ କଲିକତା ଓ ଅନ୍ୟ ଦିଗରେ ବଂବେ ଯିବାର ସୁବିଧା ରହିଥିଲା । ରାଜ୍ୟରେ ଶଗଡ଼ଗାଡ଼ି, ପାଲିଂକି, ହାତୀ, ଘୋଡ଼ାରେ ଲୋକେ ଯିବା ଆସିବା କରୁଥିଲେ । ବାସୁଦେବ ନିଜେ ରାସ୍ତା ନିର୍ମାଣ କାର୍ଯରେ ଯଂତ୍ରୀପରି ନକ୍‌ସା କରି ପାଦରେ ଯାଇ ରାସ୍ତା ତିଆରି କାର୍ଯ ତଦାରଖ କରୁଥିଲେ । ରାସ୍ତାସବୁ ତିଆରି ହେଲା ପରେ ୧୯୦୧ରେ ସେ ମଟର ଗାଡ଼ି ପ୍ରଥମ କରି ଚଳାଇଲେ । ପରେ ଲୋକଂକୁ ମଧ୍ୟ ମଟର ପରିବହନ ସୁବିଧା ମିଳିଲା ।

ରାଜ୍ୟରେ ଜନ ସାଧାରଣଂକୁ ପିଇବା ପାଣି ଯୋଗାଇଦେବା ପାଇଁ ଦେବଗଡ଼ର ଉତ୍ତର ଦିଗରେ ଥିବା ପ୍ରଧାନପାଟ ଜଳପ୍ରପାତକୁ ବଂଦ କରାଯାଇ ସହରକୁ ପକ୍କା ନାଳରେ ପାଣି ଅଣାଗଲା । ଆଗରୁ ସହରରେ ମାତ୍ର କେତୋଟି କୂଅ ଓ ପୁଷ୍କରିଣୀ ଥିଲା । ମାତ୍ର ଏହାର ଜଳ ସହରବାସୀଂକ ପାଇଁ ଯଥେଷ୍ଟ ନଥିଲା । ପଲ୍ଲୀ ଅଂଚଳରେ ସେହିପରି ସେ ଜଳାଭାବ ଦୂର କରିବାକୁ ପାର୍ବତୀୟ ନଦୀର ସ୍ରୋତକୁ ବଂଦ କରି ଜଳାଶୟ ନିର୍ମାଣ କରିଥିଲେ । ସଂଗୃହୀତ ଜଳ କୃଷି ଓ ପାନୀୟ ଉଭୟ କାର୍ଯରେ ବ୍ୟବହାର ହେଉଥିଲା । ଜଳାଭାବ ଦୂର କରିବାକୁ ସେ ମତୁଆଲି ନଈରେ ଉଚ୍ଚ ଭୂଇଁ ଦେଖି ଆନିକଟ ତିଆରି କଲେ ଓ ସେଠାରୁ ପାଣି ଆଣି ନିମ୍ନ କ୍ଷେତ୍ରରେ ବ୍ୟବହାରର ସୁବିଧା କରାଇଲେ । ରାଜ୍ୟରେ ପ୍ରଜାମାନଂକର ଚିକିତ୍ସା ନିମିତ୍ତ ଏକ ଦାତବ୍ୟ ଚିକିତ୍ସାଳୟ ସେ ପ୍ରତିଷ୍ଠା କଲେ । ପ୍ରଥମେ ଦେବଗଡ଼ ଓ ପରେ କୁଚିଂଡାରେ ଏହି ସୁବିଧା ମିଳିଲା । ଗୋଜାତିର ଉନ୍ନତି ପାଇଁ ବିଦେଶରୁ ଉପଯୁକ୍ତ ଗାଇ ଆଣି ପକାଗୃହରେ ରଖି ଗୋଶାଳା କଲେ ଓ ଉନ୍ନତ ଧରଣର ବଳଦ ଚାଷୀମାନେ ପାଇବାର ସୁବିଧା ସୃଷ୍ଟି କଲେ । ପୂର୍ବରୁ ଖେଦାକରି ଜଂଗଲରୁ ହାତୀ ଧରାଯାଉଥିଲେ । ମାତ୍ର ବାସୁଦେବଂକ ଉଦ୍ୟମରେ ସେମାନଂକୁ ତାଲିମ ଦିଆଯାଉଥିଲା ଓ ବାହାରକୁ ପଠାଯାଉଥିଲା । ହାତୀ ଦାଂତ ସଂଗ୍ରହ କରାଯାଇ ସେଥିରେ ନିର୍ମିତ ବିଭିନ୍ନ ଦ୍ରବ୍ୟ ସୁଲଭ ଦରରେ ବିକ୍ରି କରାଯାଉଥିଲା । ହାତୀଂକ ଉଦ୍ଦେଶ୍ୟରେ ବାସୁଦେବ ଗଜଶାଳା ତିଆରି କରାଇଲେ । ବିଭିନ୍ନ ଅଂଚଳ ଗସ୍ତ କରିବା ପାଇଁ ଘୋଡ଼ାର ଆବଶ୍ୟକତା ଥିଲା । ସେଥିପାଇଁ ଅଶ୍ୱଚାଳନା ଶିକ୍ଷା ଦିଆଯାଉଥିଲା ଓ ରାଜଧାନୀରେ ବହୁ ବର୍ଣ ଓ ବହୁ ଜାତିର ଘୋଡ଼ା

ପାଳିତ ହେଉଥିଲେ। ପ୍ରଜାମାନଂକର ମଂଗଳ ବାସୁଦେବଂକର ଧ୍ୟେୟ ଥିଲା। ଏହା ତାଂକ କାର୍ଯାବଳୀରୁ ଜଣାପଡ଼େ। ବିଂଶ ଶତାବ୍ଦୀର ଶେଷ ଆଡ଼କୁ ସ୍ୱାଧୀନ ଭାରତରେ ନାଗରିକମାନଂକୁ ସାମାଜିକ ସୁରକ୍ଷା ଦେବା କଥା ଉଠିଲା। ମାତ୍ର ସମାଜର ସବୁ ବର୍ଗର ଲୋକେ ଯେପରି ସୁଖ ସୁବିଧା ଉପଭୋଗ କରିବେ ଓ ନିଜ ଦାୟିତ୍ୱ ଓ ଅଧିକାର ବୁଝି ପାରିବେ ଏଥିପାଇଁ ସେ ପ୍ରଥମେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରାଇଲେ। ନାରୀ ଶିକ୍ଷାକୁ ଗୁରୁତ୍ୱ ଦିଆଗଲା। ବାଳକ ବାଳିକା ଏକତ୍ର ବିଦ୍ୟାଶିକ୍ଷା ଲାଭକଲେ। ସତୀଦାହ ପ୍ରଥାଠାରୁ ଅତି ଉତ୍କଟ ଥିଲା ବାଲ୍ୟ ବିଧବା, ବୃଦ୍ଧ ବିବାହ ଓ ବହୁ ବିବାହ। ରାଜାଂକ ପ୍ରେରଣାରେ ସଂବାଦପତ୍ର ହିତୈଷିଣୀ ଏ କୁପ୍ରଥା ବିରୋଧରେ ବିଷୋଦଗାର କଲେ। ବଂବେ ଜାତୀୟ ସମିତିର ବିଧବା ବିବାହ ପ୍ରବର୍ତ୍ତନ ଓ ବାଲ୍ୟବିବାହ ନିରାକରଣ ପ୍ରସ୍ତାବକୁ ହିତୈଷିଣୀ ସ୍ୱାଗତ କରିଥିଲା। ୧୮୯୦ରେ ଏହି ପତ୍ରିକା 'ବୃଦ୍ଧସ୍ୟ ତରୁଣୀ ଭାର୍ଯା' ଶୀର୍ଷକରେ ବୃଦ୍ଧ ବିବାହକୁ କଟାକ୍ଷ କରିଥିଲେ। ରାଜା ବାସୁଦେବ ୧୮୯୦ରେ ବାମଂଡା ବାସୁଦେବପୁର ଶାସନର ଜଣେ ବ୍ରାହ୍ମଣ ନିଜର ସାତ ଆଠ ବରଷ କନ୍ୟାକୁ ଏକ ଅଣୀ-ନବେ ବର୍ଷର ବୃଦ୍ଧକୁ ଅଢ଼େଇ ଟଂକାରେ ବିକ୍ରି କରୁଥିବାର ସଂବାଦ ପାଇ ଏହା ବଂଦ କଲେ ଓ ୧୮୯୦ରେ ବୃଦ୍ଧ ବିବାହ ନିଷିଦ୍ଧ କଲେ। ୧୯୦୩ରେ ସେ କନ୍ୟାର ବାର ବର୍ଷ ଓ ବରର ୧୪/୧୫ ବର୍ଷରୁ କମରେ ବିବାହ ନିଷେଧ କଲେ। ''ବାଲ୍ୟ ବିବାହ ଦେଶରେ ଚଳୁଥିବାରୁ ତଦ୍ୱାରା ଅନେକ ପ୍ରକାର ଅନିଷ୍ଟ ଜାତ ହେଉଅଛି। ଏହି ବାଲ୍ୟ ବିବାହ, ବିଧବା ଆମଦାନୀର ଗୋଟିଏ ପ୍ରଶସ୍ତ ପଥ ସ୍ୱରୁପ ହୋଇ ବାଳିକାମାନଂକୁ ବୈଧବ୍ୟ ଯଂତ୍ରଣାରେ ନିକ୍ଷେଷିତ କରୁଅଛି'' ଏହା ଅନୁଭବ କରି ବାଲ୍ୟ ବିବାହ ନିଷେଧ କରାଗଲା। ବାରବର୍ଷରୁ କମ୍ ବୟସରେ ବାଳିକାମାନଂକୁ ବିବାହ ନ ଦେବାକୁ ରାଜ୍ୟରେ ଜନମତ ସୃଷ୍ଟି କରାଗଲା। ପୁରୋହିତ ବ୍ରାହ୍ମଣମାନଂକୁ କ୍ରିୟା କର୍ମରେ ତାଲିମ ଦିଆଗଲା ଓ ରାଜାଦେଶ ଦ୍ୱାରା ସମାଜରୁ ଧାର୍ମିକ ଅଜ୍ଞତା ଦୂର କରାଗଲା। କେବଳ ଛାଗବଳି ମଂଦିରରେ ଦିଆଗଲା। ବିବାହ ସମୟରେ ଟଂକା, ସୁନା ଆଦି ଯୌତୁକ ସହିତ କନ୍ୟାଦାନ ଏକ ନିଂଦନୀୟ ପ୍ରଥା ଥିଲା। ଏହା ଦୂର କରିବା ପାଇଁ ରାଜା ବ୍ୟବସ୍ଥା କଲେ। ଅଳ୍ପ ବୟସରେ ବାପା ମାଆଂକୁ ହରାଇଥିବା ବାଳକ ବାଳିକା ଓ ପତି ପୁତ୍ର ନଥିବା ବିଧବାମାନଂକୁ ଆଶ୍ରୟ ଓ ସାହାଯ୍ୟ ଦେବା ରାଜ୍ୟରେ ଆରଂଭ କରାଗଲା। ରାଜ୍ୟରେ ରାଜକୀୟ ପ୍ରଥା ଥିଲା, ବିବାହ ପରେ ରାଜକନ୍ୟା ନିଜ ପରିବାରକୁ ଆଉ କେବେ ଫେରିବ ନାହିଁ। ବାସୁଦେବଂକର ସୁରଗୁଜାରେ ବିବାହିତା କନ୍ୟା ବିଧବା ହେଲା। ଇଂରେଜ ସରକାରଂକର ସାହାଯ୍ୟ ନେଇ ରାଜା ନିଜ କନ୍ୟାକୁ ପାଖକୁ ଆଣିଲେ। ସମାଜ ସଂସ୍କାର ନିମିତ୍ତ ଏହି କୁପ୍ରଥା ବିରୋଧରେ ସେ ସ୍ୱର ଉଠାଇଲେ ଓ ଏହାକୁ ଦୂର କରିବାରେ ସେ ସମର୍ଥ ହେଲେ। ଏ ସବୁ କାର୍ଯ ବାସୁଦେବଂକୁ ନିଜ ରାଜ୍ୟ

ବାହାରେ ଯଶ ଓ ଲୋକପ୍ରିୟତା ଆଣିଥିଲା । ୧୮୯୨ରେ ପ୍ରକାଶିତ 'ଚିଲିକା' କାବ୍ୟରେ କବିବର ରାଧାନାଥ ତାଂକୁ ଲକ୍ଷକରି ଲେଖିଥିଲେ –

"ଉଦିଲେ ପ୍ରଥମେ ବାମଂଡା ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ
ରଖିଲେ ସୁନାମ ଯେହୁ କାଳେ କାଳେ
ଗୁଣଯଂତ୍ର ଖୋଳି ଯଶୋ ଗିରିଭାଲେ
ତମଃ ପଳାଉଛି ହୋଇ ତରତର
ପ୍ରାଚୀନଭଃ ନବ ବିଭାରେ ଭାସ୍କର" ।

ତାଂକର ସାହିତ୍ୟିକ, ଶୈକ୍ଷିକ ଓ ସାଂସ୍କୃତିକ ପ୍ରେରଣା ସମଗ୍ର ଓଡ଼ିଶାରେ ଅଦ୍ୱିତୀୟ ହୋଇ ରହିଥିଲା । ରାଜ୍ୟରେ ଗୋଟିଏ ମିଡିଲ୍ ସ୍କୁଲ୍ ଥିଲା । ରାଜକୁମାର ଓ ଉଚ୍ଚ ଅଭିଳାଷୀ ସାଧାରଣ ପ୍ରଜାଂକର ସଂତାନଂକ ଶିକ୍ଷା ପାଇଁ ୧୮୮୨ରେ ସେ ଦେବଗଡ଼ରେ ହାଇସ୍କୁଲ୍ ଖୋଲିଲେ । ଏହା କଲିକତା ବିଶ୍ୱବିଦ୍ୟାଳୟର ସ୍ୱୀକୃତି ପାଇଲା । ଏହାର ପ୍ରଧାନ ଶିକ୍ଷକ ପଦରେ ସେ ଭକ୍ତକବି ମଧୁସୂଦନଂକର ଜାମାତା ବିଜୟ ଚଂଦ୍ର ମଜୁମଦାରଂକୁ ଆଣି ପ୍ରଧାନ ଶିକ୍ଷକ କଲେ । ବିଜୟଚଂଦ୍ର ପରବର୍ତୀ କାଳରେ ଓଡ଼ିଶାରେ ଶିକ୍ଷା ଓ ସାହିତ୍ୟ ସେବା କ୍ଷେତ୍ରରେ ସୁପରିଚିତ ହୋଇଥିଲେ । ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ସେ ପଂଡ଼ିତ ନୀଳମଣି ବିଦ୍ୟାରତ୍ନଂକୁ ବାଂକିରୁ ଓ ପଂଡିତ ଭୁବନେଶ୍ୱର ବଡ଼ପଂଡାଂକୁ ବଡଂବାରୁ ଅଣାଇଲେ । ସେମାନେ ବିଦ୍ୟାଶିକ୍ଷା ଦେବା ସହିତ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି କଲେ । ରାଜା ପଂଡିତମାନଂକ ସହିତ ସଂପର୍କ ରକ୍ଷା କରିପାରୁଥିଲେ । ନିଜର ସର୍ବଧର୍ମ ସମନ୍ୱୟ ଭାବହେତୁ ସେ ପଂଡିତମାନଂକ ସହିତ ଯୁକ୍ତିତର୍କ କରି ସେମାନଂକୁ ଉଦାରବାଦୀ କରିପାରୁଥିଲେ । ବାସୁଦେବ ମିଥିଳା, କାଶୀ ପ୍ରଭୃତି ସ୍ଥାନରେ ପଂଡ଼ିତ ସଭାରେ ସମୟ ସୁବିଧା ଓ ସୁଯୋଗ ଦେଖି ଯୋଗଦାନ କରି ନିଜ ପାଂଡିତ୍ୟର ପରିଚୟ ଦେଉଥିଲେ । କବିକଳ୍ପଲତା ଏକ ଦୁର୍ଲଭ ସଂସ୍କୃତ ଗ୍ରଂଥ । ସେହିପରି ଗଦାଧର ସ୍ମୃତି ପଦ୍ଧତି ଓଡ଼ିଶାରେ ପ୍ରଚଳିତ ଏକ ଉପାଦେୟ ଗ୍ରଂଥ । ରାଜା ମୁଂଡକ ଉପନିଷଦ, ସାହିତ୍ୟ ରତ୍ନାକର, ଦଶ କର୍ମ ପଦ୍ଧତି ସହିତ ଏହି ଦୁଇଗ୍ରଂଥ ପ୍ରକାଶନରେ ଅର୍ଥ ସାହାଯ୍ୟ କରିଥିଲେ । ଭାରତରେ ତୀର୍ଥାଟନ କରୁଥିବା ସମୟରେ ସେ ବିଭିନ୍ନ ଖ୍ୟାତନାମା ପଂଡିତମାନଂକ ସହିତ ଶାସ୍ତ୍ର ଚର୍ଚା କରୁଥିଲେ । ସେ ନିଜେ 'ଅଳଂକାର ବୋଧୋଦୟ' ନାମକ ଗ୍ରଂଥ ଲେଖିଥିଲେ । ଏହା ବ୍ୟତୀତ ଚିତ୍ରୋତ୍ପଳା ବୀରବାମା ଓ କିଷ୍କିଂଧା ବିବରଣୀ ନାମରେ ଅନ୍ୟ କାବ୍ୟ ସେ ରଚନା କରି ନିଜ କାବ୍ୟିକ ପ୍ରତିଭାର ପରିଚୟ ଦେଇଛଂତି । ଓଡ଼ିଶା ପ୍ରକୃତିର ଅମ୍ଳାନ ପ୍ରବାହ ଚିତ୍ରୋତ୍ପଳା କାବ୍ୟରେ

ସୁରକ୍ଷିତ। ମହାନଦୀର ଅପୂର୍ବ ଦୃଶ୍ୟ କାବ୍ୟର ଛତ୍ରେ ଛତ୍ରେ ଝଂକୃତ। ଲକ୍ଷ୍ମୀବାଈ ହିନ୍ଦୁ ନାରୀ ହୋଇ ଯେଉଁ ବୀରତ୍ୱ ପ୍ରଦର୍ଶନ କରିଥିଲେ ତାହା ବୀରବାମାରେ ବର୍ଣନା କରି ଭାରତୀୟମାନଂକୁ ପ୍ରବୋଧିତ କରିବା କବିଂକର ଉଦ୍ଦେଶ୍ୟ ଥିଲା। କିଷ୍କିଂଧା କାବ୍ୟ ଦକ୍ଷିଣାତ୍ୟ ଭ୍ରମଣର ଏକ ସ୍ମାରକୀ। ଏଥିରେ ବର୍ଣନା ଶୈଳୀ ନିର୍ମଳ, ଭାବଦ୍ଦୀପକ, ଶବ୍ଦସଜ୍ଜା ନିରାଡଂବର ଓ ସାବଲୀଳ। ତାଂକ ଅଳଂକାର ଗ୍ରଂଥ ପାଠ୍ୟପୁସ୍ତକ ହୋଇଥିଲା। ୧୮୯୯ରେ ବାସୁଦେବ ନିଜେ ମଧ୍ୟ ପାଠ୍ୟ ପୁସ୍ତକ ନିର୍ବାଚନ କମିଟିର ସଭ୍ୟ ହୋଇଥିଲେ। ନିଜେ ଜଣେ ଉଚ୍ଚକୋଟୀର ଦାର୍ଶନିକ କବି, ସାହିତ୍ୟ ରସିକ ଥାଇ ସେ ପ୍ରାଚୀନ ଓ ଆଧୁନିକ ରୁଚିର ସମନ୍ୱୟ ସାଧନ କରିପାରିଥିଲେ। ପତ୍ନୀ ବିୟୋଗ ପରେ ସେ ତୀର୍ଥାଟନରେ ବାହାରିଲେ। ଏହି ଯାତ୍ରା ତାଂକ ପାଇଁ ବିଶେଷ ଶିକ୍ଷଣୀୟ ଥିଲା। ନୂଆକଥା କିଛି ଦେଖିଲେ ନିଜ ରାଜଧାନୀରେ ତାର ଅନୁକୃତି ସୃଷ୍ଟି ତାଂକର ଲକ୍ଷ୍ୟ ଥାଏ। କାଶୀର ମାନମଂଦିର ଦେଖି ତାଂକର ନିଜ ବୈଜ୍ଞାନିକ ଚିଂତାଧାରା ପ୍ରୟୋଗ କରି ସେ କାଶୀରୁ ବହୁ ଜ୍ୟୋତିର୍ବିଦ୍ ପଂଡିତ ଅଣାଇଲେ ଓ ଦେବଗଡ଼ରେଏକ ମାନମଂଦିରପ୍ରତିଷ୍ଠା କରାଇଲେ। ଏହାର ଉପଯୁକ୍ତ ବ୍ୟବହାର ପାଇଁ ସେ ରେଭେନ୍ସା କଲେଜରୁ ବିଜ୍ଞାନାଚାର୍ଯ ଯୋଗେଶ ଚଂଦ୍ର ରାୟ ବିଦ୍ୟାନିଧିଂକୁ ନିମନ୍ତ୍ରଣ କରି ଆଣିଥିଲେ। ସେ ଦେବଗଡ଼ରେ ରହି ବିଭିନ୍ନ ଯଂତ୍ରପାତି ତଥା ଦୂରବୀକ୍ଷଣ, ଅଣୁବୀକ୍ଷଣ, ବିଦ୍ୟୁତ୍ ଉତ୍ପାଦନ ଯଂତ୍ର, ପ୍ରଭୃତିର ବ୍ୟବହାର ପ୍ରଣାଳୀ ଓ ଫଳାଫଳ ସଂପର୍କରେ ଛାତ୍ରମାନଂକୁ ବୈଜ୍ଞାନିକ ଧାରଣା ପ୍ରଦାନ କଲେ। ଟିକାୟତ ସଚ୍ଚିଦାନଂଦ ଓ କୁମାର ଜଳନ୍ଧର ଦେବ ପ୍ରଭୃତି ଛାତ୍ରମାନେ ଏହା ଫଳରେ ବୈଜ୍ଞାନିକ ଶିକ୍ଷା ଲାଭ କଲେ। ପ୍ରକୃତି ପର୍ଯବେକ୍ଷଣ ଜ୍ୟୋତିଷଶାସ୍ତ୍ରବାଦ, ଗ୍ରହ, ନକ୍ଷତ୍ରର ଗତିବିଧି ଓ କ୍ରିୟା କଳାପ ସଂପର୍କରେ ସେମାନେ ଜ୍ଞାନ ଲାଭ କଲେ। ଏହା ଭବିଷ୍ୟତରେ ସେମାନଂକ ରଚନାରେ ପ୍ରତିଫଳିତ ହୋଇଥିଲା। ବିଦ୍ୟାଶିକ୍ଷା ସହିତ ଦରିଦ୍ର ମେଧାବୀ ଛାତ୍ରଂକୁ ବୃତ୍ତିଦାନ ଓ କୃତୀ ଛାତ୍ରଛାତ୍ରୀମାନଂକୁ ବାର୍ଷିକ ଉତ୍ସବରେ ପୁରସ୍କାର ଓ ଅର୍ଥ ବିତରଣ ସେ ନିଜ ରାଜ୍ୟରେ ଆରଂଭ କଲେ। ପୁଣି କଟକ ଅବସ୍ଥାନ ସମୟରେ ସେ ବିଭିନ୍ନ ଶିକ୍ଷାଅନୁଷ୍ଠାନ ପରିଦର୍ଶନ କରି କୃତୀ ଓ ଦରିଦ୍ର ଛାତ୍ରମାନଂକୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ।

ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଉପଯୁକ୍ତ ଶିକ୍ଷିତ ବିଦ୍ୱାନ୍‌ମାନଂକୁ ନିଯୁକ୍ତି ଦେଇ ଓ ସେମାନଂକୁ ଶିକ୍ଷା ସଂସ୍କୃତି ପ୍ରସାର ଦିଗରେ ଲଗାଇ ସେ ଶିକ୍ଷିତ ସମାଜର ପ୍ରଶଂସାପାତ୍ର ହୋଇଥିଲେ। ୧୯୦୦ରେ କଟକରେ ଏକ ସାଂସ୍କୃତିକ ସମାରୋହର ସେ ଆୟୋଜନ କରିଥିଲେ। ନିଜ ରାଜ ସଭାରେ ବିଶିଷ୍ଟ ପଂଡିତମାନଂକୁ ରଖି ସେମାନଂକର ଗ୍ରଂଥର ପୃଷ୍ଠପୋଷକ ହୋଇ ସେ ସାହିତ୍ୟ ଅନୁରାଗୀ ଭାବରେ ସର୍ବତ୍ର ଖ୍ୟାତି ପାଇଥିଲେ। ଅନ୍ୟ

ରାଜ୍ୟ ପଂଡିତ ମଂଡଳୀ ମଧ୍ୟ ତାଂକର ଅଗାଧ ପାଂଡିତ୍ୟ, ଅଳଂକାର, କାବ୍ୟ, ଦର୍ଶନ ଆଦି ଶାସ୍ତ୍ରରେ ଜ୍ଞାନ, ତଥା ଅସାଧାରଣ ବ୍ୟୁତ୍ପତ୍ତି ଦେଖି ତାଂକର ଉଚ୍ଚ ପ୍ରଶଂସା କରୁଥିଲେ। ପୁରୀରେ ସେ ପଂଡିତ ମାନଂକୁ ଏକାଠି କରି ସନାତନଧର୍ମ ରକ୍ଷିଣୀସଭା ପ୍ରତିଷ୍ଠା କଲେ। ଏହି ଅନୁଷ୍ଠାନର ଆନୁକୂଲ୍ୟରେ ସଂସ୍କୃତ ସାହିତ୍ୟ କାବ୍ୟ, ନାଟକ, ଧର୍ମଶାସ୍ତ୍ର, ଆଦି ପାଠ ପରେ ନିର୍ଦ୍ଦିଷ୍ଟ ବିଷୟରେ ପରୀକ୍ଷା ଓ ଉତ୍ତୀର୍ଣ୍ଣ ଛାତ୍ରମାନଂକୁ ମୁଦ୍ରିତ ପ୍ରଶଂସା ପତ୍ର ଓ ସ୍ୱର୍ଣ୍ଣକୁଂଡଳ ଦେବାର ବ୍ୟବସ୍ଥା ସେ କରିଥିଲେ। ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଂକ ସଦୃଶ ବାସୁଦେବଂକର ନବରତ୍ନ ଥିଲେ ଓ ସେମାନେ ଓଡ଼ିଶା ସଂସ୍କୃତିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ।  ରାଜସଭାରୁ ବ୍ୟାସକବି ଫକୀର ମୋହନଂକୁ ସରସ୍ୱତୀ ଉପାଧି ପ୍ରଦାନ କରାଯାଇଥିଲା ଓ ସେ ଲେଖିଥିଲେ –

''ହେ ରାଜନ, ମାତୃଭାଷା ଉନ୍ନତି କରଣେ
ଉତ୍ସାହିତ କରୁଅଛ ଗ୍ରଂଥ-କର୍ତାଗଣେ।
କବିତ୍ୱ ସାହିତ୍ୟ ଚର୍ଚା ଶିକ୍ଷାଦି ସହିତ
ଉତ୍କଳର ଉଜ୍ଜୟିନୀ ବାମଂଡା ବିଦିତ।
ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ ଅକ୍ଷରେ
ଇତିହାସ ଲେଖା ରହିଥିବ ଜଗତରେ।''

ସାହିତ୍ୟର ବିକାଶ କ୍ଷେତ୍ରରେ ମୁଦ୍ରାଯଂତ୍ରର ପ୍ରତିଷ୍ଠା, ପତ୍ରପତ୍ରିକାର ପ୍ରକାଶ ଓ ସତ୍ ସାହିତ୍ୟର ପ୍ରସାର ନିମଂତେ ଓଡ଼ିଶାବାସୀ ଚିରଦିନ ରାଜା ବାସୁଦେବଂକ ପାଖରେ ଋଣୀ ରହିବେ। ତାଂକର ରାଜ ସିଂହାସନ ଆରୋହଣ ସମୟରେ ଲେଖନ ଓ ତାଳପତ୍ରର କେବଳ ବ୍ୟବହାର ଥିଲା। ହିସାବ ପତ୍ର ରଖିବା, ରାଜ ଆଦେଶ ପ୍ରକାଶ କରିବା କାର୍ଯରେ ଏହା ଆଦୌ ସୁବିଧାଜନକ ନଥିଲା। କଟକରେ ବାଣିଜ୍ୟ କରିବା ଅବସରରେ ସେ ସୁଜଳ ପ୍ରେସ ନାମରେ ସେଠାରେ ଏକ ମୁଦ୍ରାଯଂତ୍ର ସ୍ଥାପନ କଲେ। ସେଥିରେ ବହିପତ୍ର ଛପାହେଲା। କାର୍ଯ ଭଲ ଭାବରେ ନ ଚାଲିବାରୁ ରାଜା ଏହାର ଅଧେ ପରିଚାଳକ କବିବର ରାଧାନାଥ ରାୟଂକର ଭାଇ ସୀତାନାଥ ରାୟଂକୁ ଦେଇଦେଲେ। ଅନ୍ୟ ଅଧକ ଆଣି ଦେବଗଡ଼ରେ ୧୮୮୬ରେ ଜଗନ୍ନାଥ ବଲ୍ଲଭ ପ୍ରେସ୍ ବସାଇଲେ। ସେତେବେଳେ ସମଗ୍ର ଓଡ଼ିଶାରେ ମାତ୍ର ସାତଟି ମୁଦ୍ରାଯଂତ୍ର କାମ କରୁଥିଲା। ସେଗୁଡ଼ିକ ହେଲା ୧– କଟକ ମିସନ ପ୍ରେସ୍ (୧୮୩୭), ୨– କଟକ ପ୍ରିଂଟିଂ ପ୍ରେସ୍ (୧୮୬୬), ୩– ଉତ୍କଳ ପ୍ରିଂଟଂ କଂପାନୀ (୧୮୭୩), ୪– ଦେ ପ୍ରେସ୍ ବାଲେଶ୍ୱର (୧୮୭୩), ୫– ଉତ୍କଳ ହିତୈଷିଣୀ ପ୍ରେସ୍ (୧୮୭୩), ୬– ଭିକ୍ଟୋରିଆ ପ୍ରେସ୍, ୭– ସୁଜଳ ପ୍ରେସ୍। ପ୍ରଥମେ ଚତୁର୍ଭୁଜ ପଟ୍ଟନାୟକ

ସଂପାଦକ ଥାଇ ସମାଜ ସଂସ୍କାର ଉଦ୍ଦେଶ୍ୟରେ 'ସଂସ୍କାରକ' ନାମକ ଏକ ମାସିକ ପତ୍ରିକା ବାହାରିଲା । ମାତ୍ର ଏଥିରେ କେତେକ ଅପ୍ରିୟ ଲେଖା ବାହାରିବା ଫଳରେ ବିବାଦର ସୃଷ୍ଟି ହେଲା । ଛାପାଖାନାଟି ଦେବଗଡ଼ ଆସି ଏହା ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରେ ମିଶି ଓଡ଼ିଆ ସାହିତ୍ୟର ବିକାଶରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲା । ରାଜା ବାସୁଦେବଂକର ଜଗନ୍ନାଥ ବଲ୍ଲଭ ପ୍ରେସରୁ ୧୮୮୧ ମଇରେ 'ସଂବଲପୁର ହିତୈଷିଣୀ' ନାମରେ ଏକ ସାପ୍ତାହିକ ପତ୍ରିକା ଦେବଗଡ଼ରୁ ପ୍ରକାଶ ପାଇଲା । ଏହା ପୂର୍ବରୁ ସମଗ୍ର ପ୍ରାକୃତିକ ଓଡ଼ିଶାରେ ମାତ୍ର ୪୮ ଗୋଟି ପତ୍ରପତ୍ରିକା ବିଭିନ୍ନ ସ୍ଥାନରୁ ଓଡ଼ିଆରେ ବାହରିଥିଲା । ରାଜକୁମାର ହାଇସ୍କୁଲରେ ଶିକ୍ଷକ ଥିବା ପଂଡିତ ନୀଳମଣି ବିଦ୍ୟାରତ୍ନ ଜଣେ ଗୁଣଜ୍ଞ ବିଦ୍ୱାନ ବ୍ୟକ୍ତି ଥିଲେ । ରାଜା ଏହାର ମୁଖ୍ୟ ସଂପାଦନ ଦାୟିତ୍ୱ ତାଂକୁ ଦେଲେ । ସେ ତେରବର୍ଷ କାଳ ଏହି ଦାୟିତ୍ୱ ସଂଭାଳିଲେ । ପତ୍ରିକା ସକାଶେ ରାଜା ବର୍ଷକୁ ପାଂଚଶହ ଟଂକା ସାହାଯ୍ୟ ଦେଉଥିଲେ । ପଂଦରବର୍ଷ ଭିତରେ ଏହାର ଗ୍ରାହକ ସଂଖ୍ୟା ତିନିଶହ ପାଖାପାଖି ହେଲା । ଡାକଖର୍ଚ୍ଚ ବାଦ ମାତ୍ର କୋଡ଼ିଏ ଟଂକାରେ ବର୍ଷ ତମାମ ପତ୍ରିକା ଯୋଗାଇ ଦିଆଯାଉଥିଲା । ଲେଖକ ଓ ଛାତ୍ରମାନଂକୁ ଏହା ମାଗଣାରେ ମିଳୁଥିଲା । ସାମାଜିକ, ରାଜନୈତିକ, ବୈଜ୍ଞାନିକ, ସାହିତ୍ୟିକ ତଥା ସାଂସ୍କୃତିକ ଦୃଷ୍ଟିଭଂଗି ସୃଷ୍ଟିକରିବା ଓ ପାଠକମାନଂକର ମନ ଆନଂଦିତ କରିବା ପତ୍ରିକାର ଉଦ୍ଦେଶ୍ୟ ଥିଲା । ଗଂଗାଧର, ଫକୀର ମୋହନ, ରାଧାନାଥ, ଚିଂତାମଣି ପ୍ରଭୃତି ପ୍ରତିଷ୍ଠିତ ଲେଖକମାନଂକ ବ୍ୟତୀତ ଅନେକ ନୂତନ ଲେଖକଂକର ଲେଖା ଏଥିରେ ମଧ୍ୟ ପ୍ରକାଶ ପାଇଲା । ଓଡ଼ିଶାରେ ସେତେବେଳେ ଭଂଜ ଓ ଆଧୁନିକ ସାହିତ୍ୟ ଉପରେ ବିବାଦ ସୃଷ୍ଟି ହେଲା । କଟକରୁ 'ଇଂଦ୍ରଧନୁ' ପତ୍ରିକା ବାହାରି ଗୋଟିଏ ପକ୍ଷ ସମର୍ଥନ କଲାରୁ ବାମଂଡାରୁ ୧୮୯୩ରେ 'ବିଜୁଳି', ଅନ୍ୟପକ୍ଷ ସମର୍ଥନ କରି ବାହାରିଲା । ବାମଂଡା ହାଇସ୍କୁଲରେ ଗୋଟିଏ ଛାତ୍ର ସମିତି ଗଢ଼ାଯାଇଥିଲା । ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ସେଠାରେ ଆଲୋଚନା କରାଗଲା ଏବଂ ଏସବୁ ଏକ ମାସିକ ପତ୍ରିକା ଭାବରେ 'ଆଲୋଚନା' ନାମରେ ୧୯୦୦ରୁ ପ୍ରକାଶ ପାଇଲା । ସେହିବର୍ଷ ମଧ୍ୟ 'ଉତ୍କଳ ମଧୁପ' ନାମରେ ଆଉ ଏକ ମାସିକ ପତ୍ରିକା ପ୍ରକାଶ ପାଇଲା । ଏହି ପତ୍ରିକାରେ ନୀତିବାକ୍ୟ, ସଦୁପଦେଶ, ଦ୍ରବ୍ୟଗୁଣ, କୃଷିପ୍ରଣାଳୀ, ସ୍ୱାସ୍ଥ୍ୟତତ୍ତ୍ୱ ଶାସ୍ତ୍ରବାକ୍ୟ, ନୀତିଶ୍ଳୋକ, ସଂଗୀତ, ଆଦି ନାନା ବିଷୟ ସ୍ଥାନ ପାଇଲା । ଏହା ମଧ୍ୟ ସଂବଲପୁର ହିତୈଷଣୀ ପରି ବିଶେଷ ଲୋକପ୍ରିୟ ହେଲା । ଏହାପରେ ଫକୀର ମୋହନ ଲେଖିଲେ :-

''ହେ ସୁଜଳ ମହାରାଜ କରେ ନମସ୍କାର
ହିତୈଷିଣୀ ତୁଂଭନାମ କରୁଛି ପ୍ରସାର''

ଆଉଜଣେ କବି ସେହିପରି ଲେଖିଲେ :-

''କି ବର୍ଣ୍ଣିବି ତୋ ମହିମା ଉତ୍କଳ ମଧୁପ
ଅଟୁ ତୁ ସାହିତ୍ୟାକାଶେ ବିମଳ ଉଡୁପ''
ଧରଣୀ ଜନନୀ ମୁଖ ଉଜ୍ଜ୍ୱଳ କରଣେ।
ତୋହସମ ଅଛି କିଏ ଉତ୍କଳ ଭୁବନେ।''

ରାଜା ବାସୁଦେବଂକର ଖ୍ୟାତି ଜଣେ ସୁଦକ୍ଷ ପ୍ରଶାସକ, ଦୂରଦର୍ଶୀ ଚିଂତାଶୀଳ ନରପତି, ଉଚ୍ଚକୋଟିର ସାହିତ୍ୟିକ, ପ୍ରଜାବତ୍ସଳ, ବିକାଶଧର୍ମୀ ରାଜା, ବିଜ୍ଞାନପ୍ରେମୀ, ଶିକ୍ଷା ସଂସ୍କାରକ ଓ ହିଂଦୁ ଧର୍ମ ନାରୀଜାତି ସ୍ୱାଭିମାନ ରକ୍ଷକ, କଳାସଂଗୀତର ପୃଷ୍ଠପୋଷକ ଭାବରେ ଓଡ଼ିଶା ବାହାରେ ମଧ୍ୟ ପ୍ରସିଦ୍ଧି ଲାଭ କଲା। ଇଂରେଜ ସରକାର ୧୮୬୭ରେ ବାମଂଡା ରାଜାକୁ ଫିଉଡେଟେରି ଚିଫ ଭାବରେ ସ୍ୱୀକୃତି ପୂର୍ବକ ସମ୍ମାନ ଦେଇଥିଲେ। ପରବର୍ତ୍ତୀ କାଳରେ ତାଂକର ଖ୍ୟାତି ଲାଭ ଯୋଗୁ ଏହା ସ୍ୱୀକାର କରି ତାଂକୁ ୧୮୮୯ରେ କେ.ସି.ଆଇ.ଇ. ଉପାଧିରେ ଭୂଷିତ କଲେ। ଏହା ପୂର୍ବରୁ କୌଣସି ଓଡ଼ିଆ ରାଜା ଏପରି ମର୍ଯାଦା ଲାଭକରି ନଥିଲା। ଏକାଧାରରେ ବିଦ୍ୱାନ ଓ ଧନବାନ ଥାଇ ସେ ସଫଳ ଜୀବନ ଯାପନ କରିଥିଲେ ଓ ଚଉତିରିଶ ବର୍ଷ ରାଜତ୍ୱ ପରେ ୧୯୦୩ରେ ଅକ୍ଷୟ କୀର୍ତ୍ତି ରଖି ସେ ଦେହତ୍ୟାଗ କଲେ। ତାଂକ ରାଜଧାନୀ ବୁଧହଂସ କେଳିସର ଦେବଦୁର୍ଗ ଭାବରେ ପ୍ରସିଦ୍ଧି ଲାଭ କରିଥିଲା। ସାର ବାସୁଦେବଂକର ନଅ ପୁଅଂକ ମଧ୍ୟରୁ ଜ୍ୟେଷ୍ଠ ସଚ୍ଚିଦାନଂଦ ରାଜା ହେଲେ। ଆଉ ଜଣେ ବଡ଼ କୁମାର ବଳଭଦ୍ର ଦେବ କବି। ସବା ସାନ ସୀତାନାଥ ଦେବ ଗାଂଧର୍ବ ବିଦ୍ୟା ପ୍ରବୀଣ। ଅନ୍ୟ ଛଅଜଣ ପ୍ରତ୍ୟେକ ଗୋଟିଏ ଗୋଟିଏ ବିଦ୍ୟାରେ ବିଦଗ୍ଧତା ଲାଭକରି ଉଦ୍ୟାନ ବିଦ୍ୟା, ଉଦ୍ଭିଦ ବିଦ୍ୟା, କୃଷି ବିଦ୍ୟା, ପଶୁବିଦ୍ୟା, ପକ୍ଷୀ ବିଦ୍ୟା ଓ ଯଂତ୍ର କାରିଗରୀ ବିଦ୍ୟା ବିଶାରଦ ଥିଲେ। ଓଡ଼ିଶାର ସବୁ ଶ୍ରେଣୀର ଲୋକେ ତାଂକର ବିୟୋଗରେ ମର୍ମାହତ ହୋଇ ଶୋକ ପ୍ରକାଶ କରିଥିଲେ। କବିବର ରାଧାନାଥ ଗାଇଉଠିଥିଲେ :

'ଉଦିଲେ ପ୍ରଥମେ ବାମଂଡା ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ'

ତାଂକ ପୃଷ୍ଠପୋଷକତାର ପ୍ରଶସ୍ତି ଗାନ କରି କବି ଗଂଗାଧର ଲେଖିଥିଲେ :

''ଧନ୍ୟ ଧନ୍ୟ ବାସୁଦେବ ମହିପାଳମଣି
ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି

କରିଅଛ ମୋର ଯେତେ ଯେତେ ଉପକାର
ମୋ ହୃଦେ ରହିଛି ସବୁ ସ୍ୱର୍ଣ୍ଣମୟ ଗାର।''

କବି ଶେଖର ଚିନ୍ତାମଣି ୧୯୧୪ରେ ପ୍ରକାଶିତ ତାଂକ 'ଉତ୍କଳ କମଳା' କାବ୍ୟରେ ରାଜା ବାସୁଦେବଂକର ଗୁଣବର୍ଣ୍ଣନା କରି ଲେଖିଛନ୍ତି –

କାହିଁଗଲା ହାୟ ହାୟ ବୀର ଗଂଗବଂଶ ପତି
ଉତ୍କଳ ବାଣୀ କମଳା ମିଳନ ମଂଦିର
ବାମଂଡା, ମଂଡଳେଶ୍ୱର ସୁଦ୍ଧଳ ଭୂପାଳ
ଥିଲା ସେହୁ ଯୋଗଜନ୍ମା ରାଜା, ଏକ ହାତେ,
କରୁଥିଲା ସାଂସାରିକ କାର୍ଯ୍ୟ, ଆନ ହାତ
ରଖିଥିଲା ମାତୃସମା ମାତୃଭୂମୀ ହିତେ
ନିଯୁକ୍ତ ସତତ ଥିଲା, ପୁଣି ସୁସାଧକ
ଜଣେ, ଜାଣୁଥିଲା, ଯେଣୁ ସାଧନାର ଧାରା
ତେଣୁ ହେଉଥିଲା ସିଦ୍ଧି ତାର ଅନୁଗତା
ବଳେ ବଳେ ସଦା, ରାଜପଦ ଯୋଗେ ରାଏ
ନଥିଲା ଗୌରବାନ୍ୱିତ, ବରଂ ରାଜପଦ
ଆଶ୍ରି ତାକୁ ହୋଇଥିଲା, ଗୌରବ ସଂକୁଳ
ସତତ ବିବଧ ଦେବ–ଦୁର୍ଲ୍ଲଭ ସୁଗୁଣେ
ଅଳଙ୍କୃତ ଦେଖି ତାକୁ, ଉତ୍କଳର ଜନେ
ବୋଲୁଥାଂତି ଶାପଭ୍ରଷ୍ଟ ଦେବତା ବୋଲିଣ।
ଆହା ସେହି ସୁପୁରୁଷ ତେଜି ମର୍ତ୍ତ୍ୟ ଧାମ
ଗଲା ଯେବେ ଅନାମୟ ନିତ୍ୟଧାମେ ଚଳି
ସେହି ଦିନ ଛିଡ଼ିଗଲା, ଉତ୍କଳ ଭୂମିର
ଦକ୍ଷହସ୍ତ, ହେଲା ସେହୁ ହାୟ ଅନାଥିନୀ।





# ସାହିତ୍ୟିକ
# ଜଳଂଧର ଦେବ

ବାମଂଡା ରାଜବଂଶର ଏକ ଭାଇଆଳି ପରିବାରରେ ୧୮୭୨ରେ ଦେବଗଡ଼ ନିକଟବର୍ତୀ ବଣିଆ କିଲଂଡା ଗ୍ରାମରେ ସାହିତ୍ୟିକ ଜଳଂଧର ଦେବ ଜନ୍ମଗ୍ରହଣ କରିଥିଲେ। ଜନ୍ମର ଅଳ୍ପ କେତେ ମାସ ପରେ ସେ ମାତୃହୀନ ହେଲେ। ପିତା ବୀରଭଦ୍ର ଦେବ ରାଜମାତା ବିଜୟ କୁମାରୀଂକର ସଂତାନ ନଥିବାରୁ ତାଂକୁ ଶିଶୁ ପୁତ୍ରର ଲାଳନ ପାଳନ ଭାର ଦେଲେ। ଅଳ୍ପଦିନ ପରେ ରାଜା ବାସୁଦେବଂକର ଜ୍ୟେଷ୍ଠ ପୁତ୍ର ସଚ୍ଚିଦାନଂଦ ଜନ୍ମ ହେଲେ। ସେ ମଧ୍ୟ ମାତୃହରା ହେଲେ, ଓ ରାଜମାତା ଦୁଇଜଣଂକର ପାଳନ ଦାୟିତ୍ୱ ନେଲେ। ଦୁହିଂକ ବୟସରେ ମୋଟେ ଅଳ୍ପ କେତେ ମାସ ତଫାତ ଥିଲା। ତେଣୁ ଦୁଇଜଣଂକର ମଧ୍ୟରେ ଜଁା ପୁତୁରା ଭାବରେ ନିବିଡ଼ ସଂପର୍କ ଗଢ଼ିଉଠିଲା। ପରବର୍ତୀ କାଳରେ ଉଭୟ ବାମଂଡା ରାଜପରିବାରର ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜ୍ୟର ଗୌରବ ବର୍ଧନ କରିଥିଲେ। ସଚ୍ଚିଦାନଂଦ ରାଜଗାଦି ପାଇଲା ପରେ ମଧ୍ୟ ଜଳଂଧରଂକୁ ଉଚ୍ଚ ରାଜ୍ୟକାର୍ଯର ଦାୟିତ୍ୱ ଅର୍ପଣ କରିଥିଲେ। ରାଜା ବାସୁଦେବ ୧୮୮୨ରେ ଦେବଗଡ଼ର ରାଜକୁମାର ହାଇସ୍କୁଲ ପ୍ରତିଷ୍ଠା କଲେ।

ସେତେବେଳେ ଓଡ଼ିଶାର ଛବିଶ ଗଡ଼ଜାତ ମଧ୍ୟରୁ ମୟୂରଭଞ୍ଜ, ସୋନପୁର ପରି ତିନି ଚାରୋଟି ସ୍ଥାନରେ ମାତ୍ର ହାଇସ୍କୁଲ ଥିଲା। ବିଦ୍ୟାଳୟରେ ଉଭୟ ଏକତ୍ର ଛାତ୍ର ଜୀବନ ଆରଂଭକରି ପ୍ରବେଶିକା ପରୀକ୍ଷାରେ ୧୮୯୫ରେ ବିଦ୍ୟାଶେଷ କଲେ। ହାଇସ୍କୁଲରେ ରାଜା ବାସୁଦେବ ଉଚ୍ଚକୋଟିର ଶିକ୍ଷକମାନଂକୁ ନିଯୁକ୍ତ କରିଥିଲେ। ପ୍ରଥମେ କଲିକତାରୁ ବିଜୟ ଚଂଦ୍ର ମଜୁମଦାର ଓ ତାଂକ ପରେ ଗଣେଶ୍ୱର ପଟ୍ଟନାୟକ ପ୍ରଧାନ ଶିକ୍ଷକ ହୋଇଥିଲେ। ଛାତ୍ରମାନଂକ ମଧ୍ୟରେ ସାହିତ୍ୟ ପ୍ରତି ଆଗ୍ରହ ସୃଷ୍ଟି କରିବାକୁ ବିଦ୍ୟାଳୟରେ ବାମଂଡା ଛାତ୍ରସଭା ପ୍ରତିଷ୍ଠା କରାଯାଇଥିଲା। ପ୍ରତି ସପ୍ତାହରେ ଏଠାରେ ପ୍ରବନ୍ଧ ପାଠ କରାଯାଉଥିଲା ଓ ଶ୍ରେଷ୍ଠ ଲେଖକଂକୁ ପୁରସ୍କାର ଦିଆଯାଉଥିଲା। ଏ କାର୍ଯସବୁ ଶୃଙ୍ଖଳା ସହିତ ବିଦ୍ୟାଳୟରେ କରାଯାଉଥିଲା। ସୋମବାର ଦିନ ଶିକ୍ଷକମାନେ ଗୋଟିଏ ବିଷୟ ନିର୍ବାଚନ କରୁଥିଲେ। ଏହା ଉପରେ ଛାତ୍ରମାନେ ପ୍ରବଂଧ ଲେଖୁଥିଲେ। ରବିବାର ଦିନ ଏହା ପାଠ କରାଯାଇ ଗୁଣ ଓ ଦୋଷ ତ୍ରୁଟି ଆଲୋଚନା କରାଯାଉଥିଲା। ଯୁବରାଜ ସଚ୍ଚିଦାନଂଦ ଏହାର ସଭାପତି ଓ ଜଳଂଧର ଦେବ୍ ଏହାର ପ୍ରଥମ ସଂପାଦକ ଥିଲେ। ଜଳନ୍ଧର ଦେବଂକର ସେହିଦିନୁ ପ୍ରବଂଧ ରଚନା ପ୍ରତି ଆଗ୍ରହ ସୃଷ୍ଟି ହେଲା। ପାଠପଢ଼ା ସାରି ୧୮୯୫ରେ ସେ ବିବାହ କଲେ ଓ ଦରବାରରେ କର୍ମ ନିଯୁକ୍ତି ପାଇଲେ। ବିଭିନ୍ନ ପଦବିରେ କାର୍ଯକରି ଜଳଂଧର ଦେବ ଅଳ୍ପ ସମୟ ପାଇଁ ବାମଂଡାର ଦେଓ୍ୱାନ ମଧ୍ୟ ହୋଇଥିଲେ। ତିରିଶ ବର୍ଷ ଚାକିରି ଶେଷରେ ସେ ୧୯୨୫ରେ ଅବସର ଗ୍ରହଣ କଲେ। ଏହି ସମୟ ମଧ୍ୟରେ ରାଜ୍ୟର ସମସ୍ତ ଉନ୍ନତିମୂଳକ କାର୍ଯରେ ସେ ନିଜ ଦକ୍ଷତା ଦେଖାଇଥିଲେ ଓ ସେଥିପାଇଁ ରାଜା ବାସୁଦେବ ଓ ପରେ ସଚ୍ଚିଦାନଂଦ ଦେବଂକର ତାଂକ ଉପରେ ଗଭୀର ଆସ୍ଥା ଥିଲା।

ଛାତ୍ର ଜୀବନରୁ ସେ ସାହିତ୍ୟ ପତ୍ରିକା ସହିତ ସଂପୃକ୍ତ ଥାଇ ଜୀବନର ଦୀର୍ଘ ସମୟ ସେ ସାହିତ୍ୟ ସାଧନାରେ ଅତିବାହିତ କରିଥିଲେ। 'ଆଲୋଚନା' ମାସିକ ପତ୍ରିକାର ସେ ସଂପାଦକ ଥିଲେ। 'ସଂବଲପୁର ହିତୈଷିଣୀ'ରେ ମଧ୍ୟ ତାଂକର କେତୋଟି ଉପାଦେୟ ପ୍ରବଂଧ, ମହରମର ଇତିବୃତ୍ତ, 'ଭାରତୀୟ ରମଣୀମାନଂକର ଦୁରବସ୍ଥା' ଓ 'ଗ୍ରହଣ ବିଚାରପ୍ରକାଶ' ପାଇ ପାଠକମାନଂକର ଆଦର ଲାଭ କରିଥିଲା। ମହରମର ଇତିବୃତ୍ତ ମୁସଲମାନ ଧର୍ମର ପରଂପରା ଉପରେ ଆଧାରିତ। ଜଳଂଧର ଦେବଂକର ଦୀର୍ଘ ଷାଠିଏ ବର୍ଷର ସାହିତ୍ୟ ସାଧନାର ଫଳ ସମଗ୍ର ରଚନାବଳୀ ପରବର୍ତ୍ତୀ କାଳରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ୧୯୮୬ରେ ଜଳଂଧର ଦେବ ରଚନାବଳୀ ନାମରେ ପ୍ରକାଶ ପାଇଅଛି। ଜଳଂଧର ଓଡ଼ିଆ ସାହିତ୍ୟର ଏକ ବହୁମୁଖୀ ପ୍ରତିଭା। ଅବିଶ୍ରାଂତ ଭାବରେ ଲେଖନୀ

ଚାଳନା କରି ସେ ଓଡ଼ିଆ ସାହିତ୍ୟର ସମୃଦ୍ଧି ସାଧନ କରିବାକୁ ଉଦ୍ୟତ ଥିଲେ। ପ୍ରଶାସନରେ ନିଯୁକ୍ତ ଥାଇ ମଧ୍ୟ ସାହିତ୍ୟ ସାଧନାକୁ ସେ ପରମ ବ୍ରତ କରିଥିଲେ । ସଂବଲପୁରରେ ଭାଷା ଆଂଦୋଳନ ସମୟରେ ରାଜପୁତ୍ର ଥାଇ ମଧ୍ୟ ସର୍ବସାଧାରଣଂକର ଭାଷାଗତ ଅସୁବିଧା ଉପଲବ୍‌ଧି କରି ଗଂଗାଧରଂକ ପରି ୧୮୯୫ ରେ ହିତୈଷିଣୀରେ ଉତ୍କଳଭାରତର କ୍ଷୋଭ ଶୀର୍ଷକ କବିତା ଲେଖିଥିଲେ ।

''ଉତ୍ତରେ ଦକ୍ଷିଣେ ଗଂଗା ଗୋଦାବରୀ ବେନି ସହୋଦରା ମୋର,
ଲାଗି ରହିଥିଲା ଅଂଗେ ଅଂଗେ ମିଶି କାଳକୁ ହେଲେ ଅଂତର ।
ତାଂକର ବିଚ୍ଛେଦ ପାଦଶିରଚ୍ଛେଦ ଗଂଡିଖଂଡ ଅଛି ରହି,
ଡେଣା କାଟୁଅଛି ହିଂଦି ସପତଣୀ ରଖି ପାରିବ କି କେହି ?
କିଛିଦିନ ପୂର୍ବେ ବଂଗ ବିହାରିଣୀ ଗ୍ରାସୁଥିଲା । କଳେବର
ଆଁ ଆଁ କରିଥିଲା ଉଦ୍ଧାରି ରଖିଲେ ଥିଲେ ମୋ ଯୋଗ୍ୟ କୁମର। ''

ଏକା ଧାରରେ ସେ ଥିଲେ ବିଶିଷ୍ଟ ପ୍ରାବନ୍ଧିକ, ଉଚ୍ଚକୋଟିର ସମାଲୋଚକ, ଲବ୍ଧପ୍ରତିଷ୍ଠ ଗାଳ୍ପିକ, ଓ ନାଟ୍ୟକାର। ଉତ୍କଳ ସାହିତ୍ୟ, ସହକାର, ରସଚକ୍ର, ଭଂଜ ପ୍ରଦୀପ, ଉପହାର, ଶଂଖ ଆଦି ସାହିତ୍ୟ ପତ୍ରିକାମାନଂକରେ ତାଂକର ବହୁ ପ୍ରବଂଧ, ଗଳ୍ପ, କବିତା ଏକାଂକିକା ଓ ଧାରାବାହିକ ଭାବେ ନାଟକ ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ ଓ ପାଠକମାନଂକୁ ଆମୋଦିତ କରୁଥିଲା। ତାଂକ ପ୍ରବଂଧ ସାହିତ୍ୟ ମଧ୍ୟରେ ବୈଦିକ ଓ ପୌରାଣିକ ଯତ୍ କିଂଚିତ୍-୧୯୧୩, ଭଗବଦ୍ ଗୀତା-୧୯୧୫, ଆଂଭମାନଂକର ଯାନ ଓ ଅସ୍ତ୍ରଶସ୍ତ୍ର-୧୯୧୬, ରାମାୟଣ-୧୯୧୬, ସ୍ୱଗତଃ-୧୯୧୭, ସାହିତ୍ୟ ଓ ଜାତି-୧୯୨୯, ଜ୍ୟୋତିର୍ବିଦ୍ୟାର ଜୟ-୧୯୩୧, ବୁଦ୍ଧଦେବଂକର ଜନ୍ମସ୍ଥାନ-୧୯୩୨, ବେଦ ଓ ହିନ୍ଦୁ ଧର୍ମ-୧୯୩୨, ରାଜା ରାମମୋହନ-୧୯୩୪, ବର୍ଣ୍ଣ ଓ ଜାତି ବିଚାର-୧୯୩୪, ନର ଓ ନାରୀ-୧୯୩୬, ଗଳ୍ପ ସାହିତ୍ୟ ମଧ୍ୟରେ ଗୋଟିଏ କଥା-୧୯୧୫, ମିଥ୍ୟା ଅଭିଯୋଗ-୧୯୨୧, ଅତିଥି ସତ୍କାର-୧୯୨୮, ଭିନ୍ନ ଭିନ୍ନ ମତି-୧୨୮, ଗୌରୀ ଓ କାହ୍ନୁ-୧୯୨୮, ଆଈ ନାତୁଣୀ-୧୯୨୯, ମସ୍ତରାମର ମୁକ୍ତି-୧୯୩୧, ବିବାହ ଭୋଜି-୧୯୩୨, ପ୍ରକୃତିର ପ୍ରତିଶୋଧ-୧୯୩୩, ସଂତାନ ସ୍ନେହ-୧୯୩୨, ଅଶ୍ରୁଧାର-୧୯୩୫ ନାଟକ ଓ ଏକାଂକିକା ମଧ୍ୟରେ ଐତିହାସିକ ନାଟକ ଉଦୟ ସିଂହ, ଏକାଂକିକା ବିଚ୍ଛେଦ-୧୯୩୨ ଓ ରାଣା ସିଂହଂକର ମହାପ୍ରୟାଣ-୧୯୩୩, କବିତା ମଧ୍ୟରେ ମେଘଭାବନା (ନୀତିଗର୍ଭକ କବିତା) ସ୍ୱର୍ଗତ ବିଶ୍ୱନାଥଂକ ପ୍ରତି, ଅସ୍ପୃଶ୍ୟ-୧୯୩୪। ସିଂହଳ ଭ୍ରମଣ, ଡାଲଟେର ଭ୍ରମଣ, ପୁରୀ ଭ୍ରମଣ, ବିହାର ଭ୍ରମଣ, ଅନୁଭୂତିରୁ ଭ୍ରମଣ କାହାଣୀ, ଡାଏରୀର

କିଯଦଂଶ ବିଶେଷ ଭାବରେ ଲୋକପ୍ରିୟତା ଅର୍ଜନ କରିଥିଲା । ଜଣେ ସମାଲୋଚକ ତାଂକ ରଚନା ଗୁଡ଼ିକୁ (୧) ଭ୍ରମଣ ସାହିତ୍ୟ, (୨) ସଭ୍ୟତା ଓ ସଂସ୍କୃତି (୩) ଭାଷା ଓ ସାହିତ୍ୟ (୪) ଜାତି ଓ ସମାଜ (୫) ଜ୍ୟୋତିର୍ବିଦ୍ୟା ତତ୍ତ୍ୱ (୬) ପୁରାଣ ସାହିତ୍ୟ (୭) ବୌଦ୍ଧିକ ସାହିତ୍ୟ (୮) ବିବିଧ ଏହି ପରି ଆଠଗୋଟି ଭାବରେ ଲାକ୍ଷଣିକ ଦୃଷ୍ଟିରୁ ବିଭକ୍ତ କରିଅଛନ୍ତି । କଟକରେ ଉତ୍କଳ ସାହିତ୍ୟ ସମାଜର ୨୮ତମ ବାର୍ଷିକ ଅଧିବେଶନରେ ସଭାପତି ଭାବରେ ପଠିତ ତାଂକର ଅଭିଭାଷଣ ସାହିତ୍ୟିକମାନଂକର ପ୍ରଶଂସା ଲାଭ କରିଥିଲା । ବାରିପଦାର ସାହିତ୍ୟ ସଭାରେ ଶିଶୁ ସାହିତ୍ୟ ସମାଜ ଆନୁକୂଲ୍ୟରେ ପ୍ରଥମ ବାର୍ଷିକ ଅଧିବେଶନରେ ସେ ସଭାପତି ହୋଇ ଦେଇଥିବା ଅଭିଭାଷଣ ଏକ ମନୋଜ୍ଞ ସାହିତ୍ୟିକ କୃତି ବୋଲି ଧରାଯାଇଥାଏ । ବିଂଶ ଶତାବ୍ଦୀର ଲେଖକମାନଂକୁ ସେ କହିଥିଲେ 'ଏ ଦେଶର ଯୁବକମାନେ ମାତୃଭାଷାର ମୁଖୋଜ୍ଜ୍ୱଳ କରିବାକୁ ଅଂଟାଭିଡ଼ି ଲାଗିଥିବାର ଦେଖିଲେ ମନରେ ଅପାର ଆନଂଦ ଜାତ ହୁଏ' । ତାଂକ ସମସ୍ତ ରଚନାର ବିଷୟବସ୍ତୁ ଆଲୋଚନା ପଂଡିତମାନଂକୁ ଚିଂତନ ଯୋଗାଇବ ।

ନିରଳସ ଭାବରେ ଲେଖନୀଚାଳନା କରି ସେ ଉନ୍ନତ ପ୍ରବଂଧ, କ୍ଷୁଦ୍ର ଗଳ୍ପ, ନାଟକ, ଏକାଂକିକା କବିତା ଓ ଭ୍ରମଣ କାହାଣୀ ରଚନା କରି ଅକ୍ଷୟ କୀର୍ତି ଛାଡ଼ିଯାଇ ଅଛଂତି । ସାହିତ୍ୟ ସେବା ସହିତ ଦେଶବାସୀଂକର ମଂଗଳ କାମନା ତାଂକର ଧ୍ୟେୟ ଥିଲା । ରାଜବଂଶରେ ଜନ୍ମ ହୋଇ ମଧ୍ୟ ସେ ନିଜକୁ କୃଷକ ମନେକରୁଥିଲେ ଓ ସେଥିପାଇଁ ଲେଖିଥିଲେ ''ମୁଁ ଚଷା । ଏଣୁ ଚଷାଦେଖିଲେ ସେ ବଡ଼ଲୋକ ହେଉ ବା ସାମାନ୍ୟ ମୂଲିଆ ହେଉ ତା ସାଂଗରେ ଦୁଇପଦ କଥା ହେବାର ଅଭ୍ୟାସ ଅଛି । ଏତଦ୍ୱାରା ଅନେକ ଶିକ୍ଷା ମିଳେ'' । ୧୯୪୭ରେ ଶଂଖ ପତ୍ରିକାରେ ପ୍ରକାଶିତ କୃଷି ପ୍ରବଂଧରେ ଲିଖିତ ଏହି ବାକ୍ୟରୁ ଚାଷ ଓ ଚାଷୀପ୍ରତି ତାଂକର ଉଦାର ମନୋଭାବର ପରିଚୟ ମିଳିଥାଏ । ସବୁଶ୍ରେଣୀର ଲୋକଂକ ସହିତ ସେ ସହଜରେ ମିଶିପାରୁଥିଲେ । ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନପରେ ଓଡ଼ିଶାର ସ୍ୱାର୍ଥରକ୍ଷାପାଇଁ ପଶ୍ଚିମାଂଚଳକୁ ଯାଉଥିବା ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନଂକ ସହିତ ସେ ସୁସଂପର୍କ ରଖିଥିଲେ । ସ୍ୱାଧୀନତା ପରେ ଗଡ଼ଜାତଗୁଡ଼ିକର ଓଡ଼ିଶା ମିଶ୍ରଣ ହେଲା । ଓଡ଼ିଶା ବିଧାନସଭାରେ ମନୋନୀତ ପ୍ରତିନିଧି ଭାବରେ ୧୯୪୯ରେ ସେ ଯୋଗଦାନ କଲେ । ୧୯୫୧ ସାଧାରଣ ନିର୍ବାଚନ ପରେ ସେ ଜଣେ ନିର୍ବାଚିତ ପ୍ରତିନିଧି ଭାବରେ ମଧ୍ୟ ସେଠାରେ ଆସନ ଗ୍ରହଣ କରିଥିଲେ । ସମାଜ ସଂସ୍କାରରେ ସେ ଉଦାର ଥିଲେ । ରାଜ୍ୟରେ ବାଲ୍ୟବିବାହ ନିରୋଧ ନିମିତ୍ତ ସ୍ୱର ଉତ୍ତୋଳନ କରି ଶାସ୍ତ୍ରରୁ ପ୍ରମାଣ ସଂଗ୍ରହ କରି ଯୁବତୀ ଓ ବିଧବା ବିବାହ ପ୍ରଚଳନ ନିମିତ୍ତ ଏକ ପୁସ୍ତକ 'ବିବାହ ବିଚାର' ନାମଦେଇ

ରଚନା କରିଥିଲେ। ଏହାର ରାଜ୍ୟତମାମ ପ୍ରଚାର ମଧ୍ୟ କରାଇ ଥିଲେ। ନାରୀଜାତିର ଉନ୍ନତି ପାଇଁ ପରଦାପ୍ରଥା ଓ ବାଲ୍ୟବିବାହ ଉଚ୍ଛେଦର ଆବଶ୍ୟକତା ତାଂକ ଚିଂତାଧାରାରେ ପ୍ରତିଫଳିତ। ରାଜ୍ୟରେ ଶାସନ କାର୍ଯରେ ନିଯୁକ୍ତ ଥିବାବେଳେ ମଧ୍ୟ ଶିକ୍ଷାନୁଷ୍ଠାନମାନଂକର ଉନ୍ନତି ରାଜଧାନୀ ଦେବଗଡ଼ରେ ବିଦ୍ୟୁତ ଆଲୋକ ଓ ପାନୀୟ ଜଳଯୋଗାଣ ବ୍ୟବସ୍ଥା, ରାଜଧାନୀ ର ସୌଂଦର୍ଯ ବୃଦ୍ଧି ନିମଂତେ ପ୍ରମୋଦ ଉଦ୍ୟାନରେ ସ୍ଥାପତ୍ୟ, ଓ ଭାସ୍କର୍ଯର ପ୍ରତିକୃତି ସ୍ଥାପନ ତାଂକ ଉଦ୍ୟମର ଫଳଥିଲା। ପ୍ରଜାମାନଂକର ଆର୍ଥିକ ସଂକଟ ସମାଧାନ ସହିତ ଆଦିବାସୀ ପ୍ରଜାମାନଂକର ଭୂମି ସ୍ୱତ୍ୱାସ୍ୱତ୍ୱ ନିର୍ଣୟରେ ସେ ଲୋକହିତାଭିମୂଖୀ ଭୂମିକା ଗ୍ରହଣ କରିଥିଲେ ଓ ଏହା ଜଣେ ସାମଂତବାଦୀ ଶାସକଂକ ଠାରୁ ସେ ଯୁଗରେ ଅପ୍ରତ୍ୟାଶିତ ଥିଲା। ରାଜକୀୟ ପରିବେଶରେ ଥାଇ ମଧ୍ୟ ସେ ଭୋଗବିଳାସରେ ଆସକ୍ତ ନଥିଲେ। କର୍ମଠ ଓ ନିରଳସ ଜୀବନ ଯାପନ କରି ୧୯୫୨ ଗୋଷ୍ଠାଷ୍ଟମୀ ଦିନ ସେ ପ୍ରାଣତ୍ୟାଗ କଲେ। ତାଂକର ପାରିବାରିକ ଜୀବନରେ ନିଜ ଆଦର୍ଶର ପ୍ରତିଫଳନ ଥିଲା ଓ ତାଂକର ପାଂଚପୁତ୍ର ନିଜନିଜ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇପାରିଥିଲେ।



ରାଜପୁତ୍ର ରାଜଧର୍ମେ ନ ହେଲେ ନିପୁଣ
ବଂଧ୍ୟାତରୁ ପରି ବ୍ୟର୍ଥ ହେବ ସବୁଗୁଣ।
ବୀରପୁତ୍ର ନ ଲଭିଲେ ବୀରତ୍ୱ ଭୂଷଣ
ବୀରବଂଶ ପ୍ରତି ହେବ ଦୁଃସହ ଦୁଷଣ।

–ସ୍ୱଭାବକବି ଗଂଗାଧର





# ବଡ଼କୁମାର
# ବଳଭଦ୍ର

କୁମାର ଜଳନ୍ଧର ଦେବଂକ ପରି ବାମଂଡାର ଆଉଜଣେ ବିଶିଷ୍ଟ ସାହିତ୍ୟିକ ଥିଲେ ବଡ଼କୁମାର ବଳଭଦ୍ର ଦେବ। ରାଜା ବାସୁଦେବଂକର ସେ ୧୮୭୮ରେ ଜନ୍ମିତ ଦ୍ୱିତୀୟ ପୁତ୍ର ଥିଲେ। ପଂଦର ବର୍ଷ ବୟସରୁ ତାଂକର ସାହିତ୍ୟିକ ପ୍ରତିଭାର ବିକାଶ ଘଟିଥିଲା। ଦେବଗଡ଼ ରାଜକୁମାର ବିଦ୍ୟାଳୟରୁ ପାଠ ପଢ଼ି ସେ ପ୍ରଥମେ କିଛିଦିନ ଶିକ୍ଷକତା କରିଥିଲେ। ବାମଂଡାରୁ ପ୍ରକାଶିତ ସଂବଲପୁର ହିତୈଷିଣୀ ପ୍ରେସରେ କାର୍ଯ କରି ସେ ଅଭିଜ୍ଞତା ସଂଗ୍ରହ କଲେ। ଦେବଗଡ଼ ହାଇସ୍କୁଲରେ ସେତେବେଳେ ପଂଡିତ ନୀଳମଣି ବିଦ୍ୟାରତ୍ନ ପଂଡିତ ଭୁବନେଶ୍ୱର ବଡ଼ପଂଡା ଆଦି ଅନେକ ବିଦ୍ୱାନ କାର୍ଯ କରୁଥିଲେ। ସେମାନଂକ ବ୍ୟତୀତ ରାଧାନାଥ, ମଧୁସୁଦନ, ଗଂଗାଧର ପ୍ରଭୃତି କବି ଓ ସାହିତ୍ୟିକ ରାଜାଂକର ପୃଷ୍ଠପୋଷକତା ପାଉଥିଲେ। କେତେକ ରାଜଦରବାରକୁ ଆସି ଶାସ୍ତ୍ରଚର୍ଚା ଓ ସାହିତ୍ୟ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ। ଏହିସବୁ ବ୍ୟତୀତ ସାହିତ୍ୟିକ ପିତା ବାସୁଦେବଂକ ଅନୁପ୍ରେରଣା ଜ୍ୟେଷ୍ଠ ଭ୍ରାତା ବିଜ୍ଞାନ ବିନୋଦ ସଚ୍ଚିଦାନଂଦଂକର ସାନ୍ନିଧ୍ୟ ପ୍ରଭାବ ଫଳରେ ବଡ଼କୁମାର ବଳଭଦ୍ର

ଜଣେ ନିଷ୍ପାପର ବାଣୀ ସାଧକ ଭାବରେ ନିଜର ପ୍ରତିଭା ସଦୁପଯୋଗର ସୁଯୋଗ ପାଇଥିଲେ। ରାଜା ବାସୁଦବ ମଧ୍ୟ ପଂଡିତମାନଂକୁ କୁମାର ବଳଭଦ୍ରଂକର ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ଯେପରି ଗଭୀର ବ୍ୟୁତ୍ପତ୍ତି ଜନ୍ମେ ସେଥି ନିମିତ୍ତ ସୂଚନା ଦେଇଥିଲେ। ଫଳରେ ସଂସ୍କୃତ ସାହିତ୍ୟ ପରଂପରା ସହିତ ସେ ବିଶେଷ ପରିଚିତି ଲାଭ କଲେ। ଋତୁ ସଂହାର, ରଘୁବଂଶ, କାଦଂବରୀ ପରି ବିଖ୍ୟାତ ସଂସ୍କୃତ ସାହିତ୍ୟର ସେ ଅନୁବାଦ କରିବା ସହିତ ଅନେକ ମୌଳିକ ରଚନା ମଧ୍ୟ ସୃଷ୍ଟି କରିଥିଲେ। ତାଂକ ଜୀବନୀରୁ ଜଣାଯାଏ ବିଦ୍ୟାଶିକ୍ଷା ବ୍ୟତୀତ ଅନ୍ୟ କ୍ଷେତ୍ରରେ ମଧ୍ୟ ତାଂକର ଯୋଗ୍ୟତା ଥିଲା। ବାମଂଡାକୁ ସେତେବେଳେ ଏହାର ଘଂଚ ଜଂଗଲ ପରିବେଶ ହେତୁ ଅଖୋଜ ବାମଂଡା ବୋଲି କୁହାଯାଉଥିଲା। ଜଂଗଲରେ ଅନେକ ହିଂସ୍ର ଜଂତୁ ଥିଲେ। ବଳଭଦ୍ର ଘନ ଜଂଗଲରେ ବାଘ ଶିକାର କରି ପ୍ରଜାମାନଂକୁ ସେମାନଂକର ଭୟରୁ ରକ୍ଷା କରୁଥିଲେ। ନିଜେ ରାଜକୁମାର ଥାଇ ମଧ୍ୟ ସେ କୃଷି କ୍ଷେତ୍ରରେ କାର୍ଯକରି ଉନ୍ନତ ଧରଣର ଶସ୍ୟ ଉତ୍ପାଦନ କରିପାରୁ ଥିଲେ। ସମଗ୍ର ଜୀବନ ବିଶେଷ ଭାବରେ ସେ ସାହିତ୍ୟ ସେବାରେ ଉତ୍ସର୍ଗ କରିଥିଲେ ଓ ନିଜର ଷାଠିଏ ବର୍ଷ ପରମାୟୁ ମଧ୍ୟରେ ସଂସ୍କୃତ ସାହିତ୍ୟର ଅନୁବାଦ ବ୍ୟତୀତ କେତେଗୋଟି ମୌଳିକ ରଚନା ମଧ୍ୟ ସୃଷ୍ଟିକରିଥିଲେ। ବଳଭଦ୍ରଂକର ଅନେକ ରଚନା ହିତୈଷିଣୀରେ ପ୍ରକାଶ ପାଉଥିଲା। ତାଂକର ସୁଷ୍ଟ ଆଲୋଚନାରେ ହିତୈଷିଣୀର ପୃଷ୍ଠା ମୁଖର ହେଉଥିଲା ଓ ଏହାର ସାଂସ୍କୃତିକ ବାତାବରଣର ସେ ଅଭିନ୍ନ ଅଂଗଥିଲେ। ତାଂକର ପ୍ରାରଂଭିକ କାବ୍ୟଚର୍ଚ୍ଚା ହିତୈଷିଣୀରେ ସଂପାଦକଂକ ଦ୍ୱାରା ସୁନିୟନ୍ତ୍ରିତ ହେଉଥିଲା। ସାହିତ୍ୟିକ ପିତା ବାସୁଦେବଂକ ଅନୁପ୍ରେରଣା ଜ୍ୟେଷ୍ଠ ଭ୍ରାତା ବିଜ୍ଞାନ ବିନୋଦ ସଚ୍ଚିଦାନଂଦଂକ ସଖ୍ୟ ବଳଭଦ୍ରଂକୁ ଜଣେ ଅନନ୍ୟ କବି କରି ଗଢ଼ିଥିଲା। ଉଇଲିୟମ ସେକ୍ସପିଅରଂକ 'କମେଡି ଅଫ୍ ଏରର୍‌'ର ଛାୟା ଅନୁକରଣରେ ସେ 'ଭ୍ରାଂତି କଲ୍ଲୋଳ' ରଚନା କରିଥିଲେ। କବିବର ରାଧାନାଥଂକର ପାର୍ବତୀ କାବ୍ୟରେ ଗଂଗବଂଶର ରାଜ ଚରିତ୍ରରେ କାଳିମା ଲାଗିଥିଲା। ପିତା ପୁତ୍ରୀର ପାପପ୍ରଣୟକୁ କଥାବସ୍ତୁ ରୂପେ ଗ୍ରହଣ କରି ରାଧାନାଥ ବହୁ ସମାଲୋଚନାର ଶରବ୍ୟ ହୋଇଥିଲେ ମଧ୍ୟ ଏହି କାଳିମା ଦୂର କରିବାକୁ ବଡ଼କୁମାର ବଳଭଦ୍ର ନିଜ ସାହିତ୍ୟ କୃତୀରେ ଉଦ୍ୟମ କରିଥିଲେ। 'ପାର୍ବତୀ ଉତ୍ତରାର୍ଦ୍ଧ' ନାମରେ ରଚିତ ଏହି କାବ୍ୟରେ ଦୈବୀ ମାୟାର ଏକ ବାତାବରଣ କରାଯାଇ କାଳିମାର ଖଂଡନ କରାଯାଇଅଛି। କବି ବଳଭଦ୍ର କାବ୍ୟର ଉପସଂହାରକୁ ମିଳନାତ୍ମକ କରି ନିଜ ବିଚକ୍ଷଣ କବି ପ୍ରତିଭାର ପରିଚୟ ପ୍ରଦାନ କରିଛଂତି। ସେହିପରି ବଂଦୀର ଲାଂଚନା କବିଂକର ଏକ ମୌଳିକ ରଚନା। ଏଥିରେ ହାତୀ ଧରିବାର ଉପାୟ ବର୍ଣ୍ଣନା କରାଯାଇଥିଲେ ସୁଦ୍ଧା ତା ସହିତ କବି ବ୍ୟକ୍ତି ସ୍ୱାଧୀନତା, ନାରୀ ସ୍ୱାଧୀନତା ଓ ଜାତୀୟତାବାଦ ସଂପର୍କରେ ନିଜ ମୌଳିକ ଚିଂତାଧାରା ପ୍ରକାଶ

କରିଅଛନ୍ତି । ତାଂକ ଅନ୍ୟ ରଚନା ମଧ୍ୟରେ ବାଲ୍ୟସ୍ମୃତି, ସୁନାମୁଂଡା, ଜ୍ୟୋସ୍ନା, କୁମାର ପୂର୍ଣିମା, ଉପହାର, ମୂର୍ଛନା, ବିବିଧ କବିତାବଳୀ, ବାସେଳୀ ଲୀଳା, ଏକୋଇଶା, ପ୍ରାପ୍ତିସ୍ୱୀକାର, ସୁଖ ସ୍ୱପ୍ନ, ବଟସା ଆଦି ଅଦ୍ୟତମ । କବି ବଳଭଦ୍ରଂକର କାବ୍ୟସୃଷ୍ଟିରେ ଜୀବନ ଅନୁଭୂତି ଓ ପ୍ରକୃତି ଅନୁଧ୍ୟାନର ସଫଳ ଚିତ୍ର ଦେଖିବାକୁ ମିଳେ । ଗୌରବାବହ ଇତିହାସ, ସମସାମୟିକ ସମାଜ ବ୍ୟବସ୍ଥା, ପ୍ରକୃତି, ସଂସ୍କୃତି ଓ ଧର୍ମ ବିଶ୍ୱାସର ବର୍ଣନା ତାଂକ କାବ୍ୟକୁ ମନୋମୁଗ୍ଧକର କରିଅଛି । ୧୯୩୭ରେ ବଳଭଦ୍ର ଇହଧାମ ତ୍ୟାଗକଲେ । ରାଜଦରବାରରେ ପରିପୁଷ୍ଟ ଏକ ସାହିତ୍ୟ ପରଂପରାର ଉପଯୁକ୍ତ ଦାୟାଦଂକୁ ସମ୍ମାନିତ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀ ତାଂକ ଗ୍ରଂଥାବଳୀର ଦ୍ୱିତୀୟ ସଂସ୍କରଣ ୧୯୬୧ରେ ପ୍ରକାଶ କରିଅଛନ୍ତି । ଦୁଇ ଖଂଡରେ ପ୍ରକାଶିତ ଏହି ଗ୍ରଂଥାବଳୀର ପ୍ରଥମ ଖଂଡରେ କବିଂକର ତିନୋଟି ଅନୁବାଦ ଓ ଦ୍ୱିତୀୟ ଖଂଡରେ କବିଂକର ବିବିଧ ଗଦ୍ୟପଦ୍ୟ ରଚନାମାନ ସଂକଳିତ ହୋଇ କବିଂକୁ ଲୋକପ୍ରିୟ କରିବାରେ ସକ୍ଷମ ହୋଇଅଛି ।



ରାଜପ୍ରିୟ ଲୋକେ, ଭାଗ୍ୟବାନ ବୋଲି
ବୋଲଂତି ସଂସାର ଜନ
ଅଇଁଠା ଗୋଇଠା ଲଭଂତି ସେ ଯେତେ
ଜାଣେ ଏକା ତାଂକ ମନ ।

–ରାଜକୁମାର ବଳଭଦ୍ର ଦେବ


ଭାନୁଗଂଗ

# ରାଜା ଓ କବି
# ସଚ୍ଚିଦାନଂଦ ଓ ଭାନୁଗଂଗ

ରାଜାସାର ବାସୁଦେବ ସୁଢ଼ଳଦେବଂକର ଉତ୍ତାରେ ଜ୍ୟେଷ୍ଠପୁତ୍ର ସଚ୍ଚିଦାନଂଦ ରାଜ୍ୟଭାର ଗ୍ରହଣ କରିଥିଲେ। ୧୮୭୨ରେ ସେ ଜନ୍ମଗ୍ରହଣ କରିଥିଲେ। ତାଂକ କକା ସାହିତ୍ୟିକ ଜଳଂଧର ଦେବ ତାଂକର ସମବୟସୀ ଓ ସହପାଠୀ ଥିଲେ। ବାମଂଡା ରାଜବଂଶର ଉଦାର ମନୋଭାବ ଓ ନିରହଂକାର ସ୍ୱଭାବ ଯୋଗୁ ଦେବଗଡ଼ରେ ତାଂକର ହାଇସ୍କୁଲ ପାଠ ଆରଂଭ ହୋଇଥିଲା। ସେଠାରେ ବାମଂଡା ଛାତ୍ର ସମିତି ୧୮୯୦ରେ ଗଠିତ ହୋଇଥିଲା। ସେ ଟିକାୟତ (ଯୁବରାଜ) ଏହାର ସଭାପତି ଥିଲେ। ସେତେବେଳକୁ ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗର ଅବସାନ ଘଟି ଆଧୁନିକ ଯୁଗ ଆରଂଭ ହୋଇଥିଲେ ମଧ୍ୟ ଗଦ୍ୟ ଓ ପ୍ରବଂଧ ସାହିତ୍ୟର ବିଶେଷ ଅଗ୍ରଗତି ହୋଇନଥିଲା। ସାଧାରଣ ଲୋକ ପ୍ରବଂଧ ରଚନାରେ ଆଗ୍ରହୀ ନ ଥିଲେ। ପଦ୍ୟ ସାହିତ୍ୟ ଲୋକପ୍ରିୟ ଥିଲା। ପଦ୍ୟ ମାଧ୍ୟମରେ ଭାବ ପ୍ରକାଶ କରିବା ସହଜ ସାଧ୍ୟ ଥିବାରୁ ପ୍ରବଂଧ ରଚନା କ୍ୱଚିତ୍ ହେଉଥିଲା। ମାତ୍ର ଛାତ୍ର ସମିତି ଉଦ୍ୟମରେ ହାଇସ୍କୁଲରେ ଛାତ୍ରମାନଂକ ମଧ୍ୟରେ ପ୍ରବଂଧ ପ୍ରତିଯୋଗିତା ଓ

ପୁରସ୍କାର ପ୍ରଦାନ କରାଯାଇ ଏଦିଗରେ ଅନୁରାଗ ବୃଦ୍ଧି କରାଯାଇଥିଲା । ପଢ଼ିବା ସମୟରେ ସହାଧ୍ୟାୟୀ କାକା ଜଳଂଧର ଦେବଂକ ପ୍ରଭାବ ଯୁବକ ସଚ୍ଚିଦାନଂଦଂକ ଉପରେ ପଡ଼ିଥିଲା । ସେମାନଂକର ଶିକ୍ଷା ସାଧାରଣ ରାଜପରିବାର ଯୁବକମାନଂକ ତୁଳନାରେ ଉନ୍ନତ ଧରଣର ଥିଲା । ରାଜକୁମାର ଓ ସାଧାରଣ ଛାତ୍ରମାନଂକର ବିଜ୍ଞାନ ଅନୁଶୀଳନ ପ୍ରବୃତ୍ତି ଚରିତାର୍ଥ କରିବାକୁ ରାଜା ବାସୁଦେବ ପ୍ରାୟ ପଂଦର ହଜାର ଟଂକା ଖର୍ଚ୍ଚକରି ଏକ ମାନମଂଦିର ଓ ବିଜ୍ଞାନାଗାର ପ୍ରତିଷ୍ଠା କରିଥିଲେ । ଟିକାୟତ ସଚ୍ଚିଦାନଂଦ ଓ କୁମାର ଜଳଂଧର ବୈଜ୍ଞାନିକ ଶିକ୍ଷାଲାଭ କରି ପ୍ରକୃତି, ଗ୍ରହ ନକ୍ଷତ୍ର ଜ୍ୟୋତିଷଶାସ୍ତ୍ର ବିଷୟରେ ପୁଂଖାନୁପୁଖ ଜ୍ଞାନଲାଭ କଲେ । ରାଜକବି ଭାବରେ ସଚ୍ଚିଦାନଂଦ ନିଜ ରଚନାପାଇଁ ପ୍ରଶଂସିତ ହୋଇଥିଲେ ଓ ବିଜ୍ଞାନ ବିନୋଦ ଉପାଧି ମଧ୍ୟ ଲାଭ କରିଥିଲେ । ହାଇସ୍କୁଲରୁ ଏନ୍‌ଟ୍ରାନ୍‌ସ ପାସ୍ କରି ସେ ବିଦ୍ୱାନ ସଂସ୍କୃତ ପଂଡିତମାନଂକଠାରୁ ସଂସ୍କୃତ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ କରିଥିଲେ । ପିତାଂକ ସହିତ ଭାରତ ଭ୍ରମଣ ବହୁସ୍ଥାନ ଦର୍ଶନ ଓ ଜନ ସଂପର୍କ ତାଂକୁ ସମ୍ୟକ ସାମାଜିକ ଜ୍ଞାନ ଓ ସମାଜପ୍ରତି ସଚେତନତା ଆଣିଥିଲା ।

ସଚ୍ଚିଦାନଂଦଂକର ରଚନାଗୁଡ଼ିକ ସଂବଲପୁର ହିତୈଷିଣୀ ପୃଷ୍ଠାରେ ପ୍ରକାଶିତ ଓ ବହୁଳ ଭାବେ ଆଲୋଚିତ । ସେ ପ୍ରାରଂଭିକ ପର୍ଯାୟରେ କାବ୍ୟ ରଚନା କରିଥିଲେ । ବୈଦିକ ପ୍ରକୃତି (୧୯୧୦) ପ୍ରକୃତି (୧୯୧୦) ଚିତ୍ର, (୧୯୧୦) ଯୌନ ନିର୍ବାଚନ, (୧୯୧୨) ବୀରଗାଥା (୧୯୧୫) ଏକ ପର୍ଯାୟର ରଚନା । ମାୟାଶର୍ବରୀ, ଅନଂଗ, ଭୀଷ୍ମ, ଚଂଦ୍ରଦୂତ ଏହା ପୂର୍ବରୁ ୧୮୯୪ ରେ ରଚିତ ହୋଇଥିଲା । ପ୍ରେମ ସ୍ତବକ ଓ ସୁଂଦରୀ ଚଉତିଶା କାବ୍ୟ ପ୍ରାଚୀନ ଶୈଳୀର ପରିଚାୟକ । ୧୮୯୫ରେ ହିତୈଷିଣୀରେ ସଚ୍ଚିଦାନଂଦଂକ ସଂପାଦିତ ସମଷ୍ଟିଗତ ରଚନା ପାରିଜାତମାଳା କବିତା ପୁସ୍ତକର ସମାଲୋଚନା ପ୍ରକାଶ ପାଇଥିଲା । ସମଧର୍ମୀ କବି ଜଳନ୍ଧର ଦେବ ଓ ଦାମୋଦର ମିଶ୍ରଂକ ସହିତ କବିଂକର ଷଡ଼ଋତୁ ବର୍ଣନା ଏହି ପୁସ୍ତକର ଅଂତର୍ଗତ । ସଚ୍ଚିଦାନଂଦ ଏଥିରେ ଶରତ ଓ ହେମଂତ ଋତୁର ବର୍ଣନା ଲେଖିଥିଲେ । ରାଧାନାଥଂକ ଦ୍ୱାରା ପ୍ରଭାବିତ ହୋଇ ବାସ୍ତବ ଓ ମୌଳିକ ଭିତ୍ତିରେ ପ୍ରକୃତି ବର୍ଣନା, ପ୍ରାଚୀନ ପ୍ରୟୋଗକୁ ମୌଳିକ ଭିତ୍ତିରେ ପ୍ରକୃତି ବର୍ଣନା, ପ୍ରାଚୀନ ଶାସ୍ତ୍ର ଓ ଆଧୁନିକ ବିଜ୍ଞାନ ଜ୍ଞାନର ସମନ୍ୱୟ ତାଂକ କବିତାର ମୂଳ ଭିତ୍ତି ଭାବେ ଗ୍ରହଣ କରାଯାଇପାରେ । ରାଜା ବାସୁଦେବଂକର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ, ହିତୈଷିଣୀ ପତ୍ରିକାର ସାରସ୍ୱତ ପ୍ରଭାବ ସଚ୍ଚିଦାନଂଦଂକର କବି ପ୍ରତିଭାକୁ ବିକଶିତ କରିଥିଲା । ସେ ପ୍ରାରଂଭିକ ପର୍ଯାୟରେ କାବ୍ୟ ରଚନା କରିଥିଲେ । ବହୁସ୍ଥାନ ପିତାଂକ ସହତ ଭ୍ରମଣ, ବହୁଶାସ୍ତ୍ର ପଠନ, ବହୁ ମନୀଷିଂକ ସହିତ ଶାସ୍ତ୍ରାଲୋଚନା ତାଂକ ବ୍ୟକ୍ତିତ୍ୱକୁ ପରିମାର୍ଜିତ କରିଥିଲା । ୧୮୯୦ ରେ ହିତୈଷିଣୀରେ ତାଂକର ପିତାଂକ ସହତ ସଂବଲପୁର ପଦ୍ମପୁର, ରାୟପୁର, ନାଗପୁର, ନାସିକ ବଂବେ ପ୍ରଭୃତି ଭ୍ରମଣର ସବିଶେଷ ବିବରଣୀ 'ଭ୍ରମଣ ବୃତ୍ତାଂତ' ନାମରେ ପ୍ରକାଶିତ ହୋଇଥିଲା ।

## ବୃଧହଂସ କେଳିସର ସରସିଜ

ଏହି ବର୍ଣନାରୁ ସଚ୍ଚିଦାନଂଦଂକର ସ୍ୱାଧୀନ ଚିଂତା ନିର୍ଭୀକତା ଓ ଦେଶ ହିତୈଷିର ପରିଚୟ ମିଳେ। ସାରବାସୁଦେବ ଅଳଂକାର ବୋଧୋଦୟ ଗ୍ରଂଥ ପ୍ରଥମ ଓଡ଼ିଆ ଅଳଂକାର ପୁସ୍ତକ ଭାବରେ ରଚନା କରିଥିଲେ। ସଚ୍ଚିଦାନଂଦ ଅଳଂକାର ସାର ଏହାପରେ ଓଡ଼ିଆ ସାହିତ୍ୟକୁ ଭେଟି ଦେଉଥିଲେ। ରାସ ରହସ୍ୟରେ ସେ ଶାସ୍ତ୍ରୀୟ ବିଶ୍ଳେଷଣ କରି ଶ୍ରୀକୃଷ୍ଣଂକୁ ଇଂଦ୍ରିୟ ଜୟୀ ଭାବରେ ଚିତ୍ରିତ କରିଅଛଂତି। ୧୯୦୧ରେ ପ୍ରକାଶିତ ତାଂକର 'ମୋହିନୀ' କାବ୍ୟକୁ କବି ଚିଂତାମଣି ମହାଂତି କାବ୍ୟ ରସାମୋଦୀ କୁମାର ସଚ୍ଚିଦାନଂଦଂକୁ ଉତ୍ସର୍ଗ କରି ତାଂକ କାବ୍ୟ ପ୍ରତିଭା ଓ କାବ୍ୟରେ ଆଗ୍ରହ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ।

ସକଳ ନବ ବୈଜ୍ଞାନିକ ଓ ଗାବେଷଣିକ ଆବିଷ୍କାରମାନଂକୁ କାବ୍ୟକଳା ମାଧ୍ୟମରେ ପ୍ରକାଶ କରି ଉତ୍କଳ ସାହିତ୍ୟରେ ସେ ଏକ ନୂତନ ଦିଗ ଖୋଲିଯାଇଛଂତି। ତାଂକ କବିତାମାନଂକରେ ସେ ଉତ୍ତରମେରୁ ଆରୋରା ବୋରିଆଲିସର ବର୍ଣନା ସହିତ ଉତ୍କଳ ଓ ଦେବଗଡ଼ର ପ୍ରାକୃତିକ ଦୃଶ୍ୟ ବର୍ଣନା କରିବାକୁ ଭୁଲି ନାହାଂତି। ୧୯୦୪ରେ ସାର ବାସୁଦେବଂକର ପରେ ସେ ରାଜଗାଦିରେ ବସିଥିଲେ। ନିଜ ଅଭିଷେକ ସମୟରେ ୧୯୦୩ରେ ପିତାଂକ ପରି ରାଜ୍ୟର ଉନ୍ନତି ମୂଳକ କାର୍ଯମାନଂକୁ ଯଥାଯଥ ଅଗ୍ରଗତି କରାଇବାକୁ ସେ ଜଳଂଧର ଦେବଂକର ମସ୍ତକରେ ଶାଢ଼ିବାଂଧି ତାଂକୁ ରାଜକୀୟ ମର୍ଯାଦା ଦେଇଥିଲେ। ତାଂକର ଧର୍ମପତ୍ନୀ କବିକୋବିଦରଂକୁଣୀ ବିଦୁଷୀ ଡଂବରୁଧର ପ୍ରିୟ ଦେବୀ ସାହିତ୍ୟର ପୃଷ୍ଟପୋଷକତା କରୁଥିଲେ। ରାଜାସଚ୍ଚିଦାନଂଦ ମାତ୍ର ଚଉରାଳିଶ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ।

୧୯୧୬ରେ ସଚ୍ଚିଦାନଂଦଂକର ଜ୍ୟେଷ୍ଠପୁତ୍ର ଦିବ୍ୟଶଂକର ବାମଂଡା ସିଂହାସନରେ ବସିଲେ। ମାତ୍ର ଚାରିବର୍ଷ ପରେ ତାଂକର ଅକାଳ ମୃତ୍ୟୁ ହେଲା। ସେତେବେଳକୁ ତାଂକ ପୁତ୍ର ଭାନୁଗଂଗ ଦେବ ମାତ୍ର ଛଅ ବର୍ଷର ବାଳକ ଥିଲେ। ରାଜ୍ୟର ପରିଚାଳନା ଇଂରେଜ ସରକାର ଗ୍ରହଣ କଲେ। ନାବାଳକ ରାଜାଂକୁ ରାୟପୁର ରାଜକୁମାର କଲେଜରେ ପାଠ ପଢ଼ିବାକୁ ପଠାଗଲା। ସେଠାରୁ ବିଦ୍ୟାଶିକ୍ଷା କରି ସେ ରାଜ୍ୟକୁ ଫେରିଲାପରେ ତାଂକୁ ଶାସନର ପରିଚାଳନାରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ ନିମିତ୍ତ ସଂବଲପୁର ପଠାଗଲା। ସେତେବେଳେ ପାର୍ଶ୍ୱବର୍ତୀ ଦେଶୀୟ ରାଜାଂକର କୁମାରମାନଂକୁ ସୁଶାସନ ଶିକ୍ଷା ନିଂମତେ ସଂବଲପୁର ଡେପୁଟି କମିଶନର ଅଫିସ୍‌ରେ ବିଭିନ୍ନ ବିଭାଗରେ ତାଲିମ ଦିଆଯାଉଥିଲା। ପ୍ରାୟ ଦେଢ଼ବର୍ଷ ସେଠାରେ ତାଲିମ ପାଇ ପ୍ରଶାସନର ପ୍ରତ୍ୟକ୍ଷ ଅନୁଧ୍ୟାନ କରିବା ସୁଯୋଗ ରାଜା ଭାନୁଗଂଗଂକର ଥିଲା। ୧୯୩୫ରେ ସେ ବାମଂଡାର ରାଜସିଂହାସନ ଆରୋହଣ କଲେ। ବୃଧହଂସକେଳିସର ଭାବରେ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିବା ଦେବଗଡ଼ ସାହିତ୍ୟ

ଚର୍ଚ୍ଚାର ଏକ ବିଶିଷ୍ଟ କେନ୍ଦ୍ର ଥିଲା । ରାଜାମାନଙ୍କ ବ୍ୟତୀତ ସେମାନଙ୍କର ଭାଇଆ ଲାଲୁମାନେ ମଧ୍ୟ ସାହିତ୍ୟ ଚର୍ଚ୍ଚା କରୁଥିଲେ । ସେମାନେ ପ୍ରବଂଧ ଓ କବିତା ରଚନା କରୁଥିଲେ । ରାଜାଂକ ପଦାଂକ ଅନୁସରଣ କରି ରାଜକର୍ମଚାରୀମାନେ ମଧ୍ୟ ସାହିତ୍ୟ ସେବାରେ ଆଗ୍ରହୀ ଥିଲେ । ରାଜା ଭାନୁଗଂଗ ସିଂହାସନରେ ବସିବା ସମୟରେ ରାଜ୍ୟର ଶିକ୍ଷକମାନେ ଏକ ତ୍ରୈମାସିକ ପତ୍ରିକା ସଂପାଦ ନ କରି ତାଂକୁ ଉପହାର ଦେଇଥିଲେ । ଅଭିଷେକ ଉପଲକ୍ଷେ ଏହି ପତ୍ରିକାଟି ଉପହାର ଦିଆଯାଇଥିବାରୁ ଏହାର ନାମ 'ଉପହାର' ରଖାଯାଇଥିଲା । ପ୍ରଥମ ସଂଖ୍ୟାଟିର ନାମ ଥିଲା ଅଭିଷେକ ସଂଖ୍ୟା । ବର୍ଷକୁ ଏହାର ଚାରୋଟି ସଂଖ୍ୟା ବାମଂଡାର ଜଗନ୍ନାଥ ବଲ୍ଲଭ ପ୍ରେସରୁ ବାହାରୁ ଥିଲା ଓ ଏହି ସଂଖ୍ୟାଗୁଡ଼ିକର ନାମ ବିଜୟା, ବକୁଳ, ଅଶୋକ ଓ ଗୁଂଡିଚା ଦିଆଯାଉଥିଲା । ରାଜ୍ୟର ଶିକ୍ଷକମାନେ ମିଶି ଏହାର ସଂପାଦନା କରୁଥିଲେ ଓ ବାମଂଡାରେ ସାହିତ୍ୟିକ ଚେତନାର ଏହା ଏକ ପରିଚୟ ଥିଲା । ଜଗନ୍ନାଥ ବଲ୍ଲଭ ପ୍ରେସଟି ପରେ ହିତୈଷିଣୀ ପ୍ରେସ୍ ନାମରେ ଏହାକୁ ପ୍ରକାଶ କରୁଥିଲେ । ବାମଂଡାରେ ରାଜା ବାସୁଦେବଂକ ସମୟରୁ ନାଟ୍ୟ କଳାର ଆଦର ଥିଲା । ରାଜା ଏକ ନାଟ୍ୟ ଦଳ ଗଠନ କରିଥିଲେ ଓ ଏହା ପ୍ରଜାମାନଂକର ସେ ଯୁଗରେ ଆମୋଦ ପ୍ରମୋଦ ନିମିତ୍ତ ଉଦ୍ଦିଷ୍ଟ ଥିଲା । ବର୍ତ୍ତମାନର ଥିଏଟର ପରି ନହୋଇ ତାହା ମଂଚସାଜସଜା ଦୃଶ୍ୟାବଳୀ ବିହୀନ ଯାତ୍ରାଦଳପରି କାର୍ଯ କରୁଥିଲା ତଥାପି ଏଥିରେ ଦେଖାଯାଉଥିବା ଅଭିନୟ ଓ ସଂଗୀତ ରାଜ୍ୟବାହାରରେ ପ୍ରଶଂସା ପାଇଥିଲା । ନାଟ୍ୟଦଳଟି କଟକରେ ସେମାନଂକର ଅଭିନୟ ଦେଖାଇ ପ୍ରଶଂସା ଅର୍ଜନ କରିଥିଲେ । ସେତେବେଳର ଯୁବରାଜ ରାଜା ସଚ୍ଚିଦାନଂଦଂକର ମାୟାଶର୍ବରୀ ନାଟକ ସେଠାରେ ଅଭିନୀତ ହୋଇଥିଲା ।

ଭାନୁଗଂଗ ରାଜ୍ୟଭାର ଗ୍ରହଣ ପରେ ଦେଶର ରାଜନୈତିକ ଓ ସାମାଜିକ ବାତାବରଣରେ ଦ୍ରୁତ ପରିବର୍ତ୍ତନ ଲକ୍ଷ୍ୟ କରି ରାଜ୍ୟରେ ଗ୍ରାମ୍ୟ ମୁଖିଆ (ପ୍ରଧାନ)ମାନଂକୁ ଧରି ସ୍ୱାୟତ୍ତ ଶାସନ ପ୍ରଥା ଚଳେଇଲେ । ରାସ୍ତାର ଉନ୍ନତି, ମଟର ଯାନରେ ଯାତ୍ରୀପରିବହନ ବ୍ୟବସ୍ଥା ଦ୍ୱାରା ଲୋକେ ଉପକୃତ ହେଲେ । ନିଜର ଚିଂତାଧାରା ବିକାଶ ଓ ଉନ୍ନତ ଶାସନ ପ୍ରଣାଳୀ ଅଧ୍ୟୟନ ଉଦ୍ଦେଶ୍ୟରେ ସେ ଇଂଲଂଡ, ଫ୍ରାନ୍ସ, ଜର୍ମାନି, ଇଟାଲି, ସୁଇଜରଲେଂଡ ଆଦି ଇଉରୋପୀୟ ଦେଶମାନ ଭ୍ରମଣ କରିଥିଲେ ।

ଭାନୁଗଂଗ ବାମଂଡାର ଶେଷ ରାଜାଥିଲେ ଓ ତାଂକ ସମୟରେ ଭାରତ ସ୍ୱାଧୀନ ହେଲାପରେ ୧୯୪୮ ଜାନୁଆରିରେ ତାଂକ ରାଜ୍ୟ ବୃହତ୍ତର ଓଡ଼ିଶା ପ୍ରଦେଶ ସହିତ ମିଶି ଯାଇଥିଲା । ତେର ବର୍ଷ ରାଜତ୍ୱ ମଧ୍ୟରେ ଭାନୁଗଂଗ ସାହିତ୍ୟ ଓ ନାଟ୍ୟକଳାର ପ୍ରୋତ୍ସାହନ କରିଥିଲେ । ରାଜ୍ୟରେ ଦିବ୍ୟେଶଂକର ନାଟ୍ୟମଂଚ ତିଆରି ହୋଇ ସେଠାରେ ବାମଂଡାର ନାଟ୍ୟକଳା ପ୍ରୀତିର ପରିଚୟ ପ୍ରଦାନ କରିବାକୁ ଅନେକ ନାଟକ ଅଭିନୀତ ହୋଇଥିଲା ।

ରାଜା ସାହିତ୍ୟ ସଭାରେ ନିୟମିତ ଯୋଗଦାନ କରୁଥିଲେ ଓ ବାମଂଡାର ଅତୀତ କୀର୍ତି ଓ ସ୍ମୃତିରାଜିର ପୁନରୁଦ୍ଧାର ନିମିତ୍ତ ଯଥାସାଧ୍ୟ ଉଦ୍ୟମ କରୁଥିଲେ। ପୂର୍ବାଂଚଳ ଦେଶୀୟ ରାଜ୍ୟ ସମୂହର ଜଣେ ଶିକ୍ଷା ପରାମର୍ଶଦାତା ସଂବଲପୁରରେ ରହୁଥିଲେ। ପ୍ରଖ୍ୟାତ ସାହିତ୍ୟିକ ଡକ୍ଟର ମାୟାଧର ମାନସିଂହ ବିଲାତରୁ ଫେରି ଏହି ପଦରେ ଥିଲେ। ବାମଂଡା ରାଜ ଦରବାରର ଚିହ୍ନ 'ଶଂଖ' ଅଟେ। ରାଜାଂକର ସାହିତ୍ୟ ପ୍ରୀତି ଅବଗତ ହେଲାପରେ ସେ ରାଜାଂକର ପୃଷ୍ଠପୋଷକତାରେ 'ଶଂଖ' ନାମରେ ଗୋଟିଏ ପତ୍ରିକା ପ୍ରକାଶ କରାଇଲେ। ପ୍ରଥମେ କବି ମାନସିଂହ ଏହାର ମୁଖ୍ୟ ସଂପାଦକ ଥିଲେ ଓ ପରେ ଜଳଂଧର ଦେବ ଏହି ଦାୟିତ୍ୱ ଗ୍ରହଣ କରିଥିଲେ। ଯୁଦ୍ଧୋତ୍ତର ଯୁଗରେ ରାଜନୈତିକ ଅସ୍ଥିରତା ସତ୍ତ୍ୱେ ଏହି ପତ୍ରିକାଟି ଅଳ୍ପଦିନ ପରେ ବଂଦ ହୋଇଯାଇଥିଲେ ମଧ୍ୟ ଏଥିରେ ପ୍ରକାଶିତ ପ୍ରବଂଧ, ଗଳ୍ପ, କବିତା, ଓ ଏକାଂକିକା ଆଦି ଉଚ୍ଚାଂଗ ସାହିତ୍ୟ ଭାବରେ ସମଗ୍ର ଓଡ଼ିଶାରେ ଆଦର ପାଇଥିଲା। ରାଜା ଭାନୁଗଂଗ ନିଜ ପିତାମହ ରାଜା ବାସୁଦେବଂକର ଗ୍ରଂଥାବଳୀ ପ୍ରକାଶ କରାଇବାରେ ସମର୍ଥ ହୋଇଥିଲେ। ସେ ସମୟରେ ତାଂକ ରାଜ୍ୟ ଚାଲିଯାଇଥିଲା। ସେ ଜଣେ ସାଧାରଣ ନାଗରିକ ସ୍ତରକୁ ଖସି ଆସିଥିଲେ। ତଥାପି ବାସୁଦେବଂକର ସମସ୍ତ ରଚନା ନିଜ ପୃଷ୍ଠପୋଷକତାରେ ଗୋଟିଏ ଗ୍ରଂଥରେ ସଂକଳନ କରାଇ ସେ ନିଜ ସାହିତ୍ୟ ପ୍ରୀତିର ପରିଚୟ ପ୍ରଦାନ କରିଛଂତି। ରାଜା ଭାନୁଗଂଗ ବିଧାନସଭାକୁ ୧୯୬୧, ୧୯୬୭, ୧୯୭୧, ୧୯୭୪ ଓ ୧୯୭୭ରେ ନିର୍ବାଚିତ ହୋଇ ନିଜ ଲୋକପ୍ରିୟତାର ପ୍ରମାଣ ଦେଇଥିଲେ। ୧୯୭୨ରେ ସେ ରାଜ୍ୟର ଶିଳ୍ପ ଉପମଂତ୍ରୀ ମଧ୍ୟ ଥିଲେ। ବିଧାୟକ ଥିବାବେଳେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକମାନଂକୁ ଦେବଗଡ଼ ଆଣି ସେମାନଂକୁ ବାମଂଡାର ଅତୀତ ଗୌରବ ସହିତ ପରିଚିତ କରାଇବା ତାଂକର ଏକ ପ୍ରଶଂସାର୍ହ ଉଦ୍ୟମ ଥିଲା। ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଓଡ଼ିଶା ସଂଗୀତ ଏକାଡେମୀର ଯୁଗ୍ମ ଆନୁକୂଲ୍ୟରେ ରାଜକୁମାର ହାଇସ୍କୁଲରେ 'ଓଡ଼ିଆ ସାହିତ୍ୟକୁ ବାମଂଡାର ଦାନ' ଶୀର୍ଷକ ଏକ ଆଲୋଚନାର ସେ ବ୍ୟବସ୍ଥା କରାଇଥିଲେ। ରାଜା ଭାନୁଗଂଗ କଳାହାଂଡି ରାଜକୁମାରୀ ଜ୍ୟୋତିମଂଜରୀ ଦେବୀଂକୁ ବିବାହ କରିଥିଲେ ଓ ରାଣୀ ମଧ୍ୟ ଗଣତାନ୍ତ୍ରିକ ପଦ୍ଧତିରେ ବିଶ୍ୱସୀ ଥାଇ ବିଧାନସଭାର ସଦସ୍ୟ ନିର୍ବାଚିତ ହୋଇଥିଲେ। ଗଡ଼ଜାତ ମିଶ୍ରଣ ଉତ୍ତାରେ ମଧ୍ୟ ରାଜା ଭାନୁଗଂଗ ରାଜ୍ୟରେ କ୍ରୀଡ଼ାର ବିକାଶ ଓ ଉଚ୍ଚ ଶିକ୍ଷାର ବିସ୍ତାର ନିମିତ୍ତ ଉଦ୍ୟମ କରି ପ୍ରଜାମାନଂକର ପ୍ରିୟ ହୋଇ ପାରିଥିଲେ। ୧୯୮୨ରେ ତାଂକର ପ୍ରାଣତ୍ୟାଗ ସହିତ ବାମଂଡା ରାଜଦରବାର ର ସାହିତ୍ୟ ସେବା ପୃଷ୍ଠପୋଷକତା ଓ ପ୍ରସାରର ଶେଷ ଅଧ୍ୟାୟ ଲିଖିତ ହେଲା।





## ସାଂସଦ

# ବୈରାଗୀ ଦ୍ୱିବେଦୀ

୧୯୬୦ରେ ଭାରତୀୟ ପାର୍ଲାମେଂଟର ରାଜ୍ୟସଭାରେ ଗଣତନ୍ତ୍ର ପରିଷଦ ଦଳର ପ୍ରତିନିଧି ଥିଲେ ବାମଂଡା ରାଜ୍ୟର ବୈରାଗୀ ଦ୍ୱିବେଦୀ। ତାଂକ ପିତା ଥିଲେ ନରହରି ଦ୍ୱିବେଦୀ। ୧୯୨୦ର ବାମଂଡା ରାଜ୍ୟ ରାଜଧାନୀ ଦେବଗଡ଼ରେ ସେ ଜନ୍ମଗ୍ରହଣ କରିଥିଲେ। ଦେବଗଡ ରାଜକୁମାର ହାଇସ୍କୁଲରେ ପାଠ ପଢିଥିଲେ। ଦେଶୀୟ ରାଜ୍ୟର ଓଡ଼ିଶାରେ ମିଶ୍ରଣ ପରେ ସେ ରାଜନୀତି ପ୍ରତି ଆଗ୍ରହ ପ୍ରକାଶ କରି ପ୍ରଥମେ ଦେବଗଡ ମୁନିସିପାଲଟିର ସଭ୍ୟ ଓ ପରେ ଭାଇସ ଚେୟାରମ୍ୟାନ ହୋଇଥିଲେ। ଏହି ସମୟରେ ସେ ନିଖିଳ ଓଡ଼ିଶା ମ୍ୟୁନିସପାଲ କାଉନସିଲର ଗୋଟିଏ ଇଉନିୟନ ପ୍ରତିଷ୍ଠା ନିମିତ୍ତ ଉଦ୍ୟମ କରି ସଫଳ ହୋଇଥିଲେ। ନିଖିଳ ଭାରତ ସ୍ୱାୟତ୍ତ ଶାସନ ପରିଷଦର କାର୍ଯକାରୀ କମିଟିର ମଧ୍ୟ ସେ ସଭ୍ୟଥିଲେ। ସମବାୟ ଆଂଦୋଳନ ଜରିଆରେ କୃଷକମାନଂକର ସମସ୍ୟା ସହଜରେ ସମାଧାନ ହୋଇ ପାରିବ ବୋଲି ଅନୁଭବ କରି ସେ ଏଥିରେ ଭାଗ ନେଲେ ଓ ସଂବଲପୁର ଜିଲ୍ଲାର ବରଗଡ଼ କେଂଦ୍ର ସମବାୟ ସମିତିର, ଡିରେକ୍ଟର ହୋଇ ପାରିଲେ। ଗଣତଂତ୍ର

ପରିଷଦ ଗଠନ ପରେ ସେ ଏଥିରେ ଯୋଗଦାନ କରି ରାଜନୀତିରେ ସକ୍ରିୟ ଅଂଶ ନେଲେ। ସେ ଏହି ଦଳର କାର୍ଯକାରୀ ସମିତିର ସଭ୍ୟ (୧୯୪୯ ରୁ ୫୯) ଓ ପାର୍ଲାମେଂଟାରୀ ବୋର୍ଡର ମଧ୍ୟ ସଭ୍ୟ (୧୯୫୫-୬୦) ଥିଲେ।

ଦଳପ୍ରତି ତାଂକର ଆନୁଗତ୍ୟ ଯୋଗୁଁ ଗଣତନ୍ତ୍ର ପରିଷଦ ତାଂକୁ ରାଜ୍ୟ ସଭାକୁ ସଭ୍ୟଭାବେ ନିର୍ବାଚିତ କରିଥିଲା। ସଂବଲପୁର ଜିଲ୍ଲାର ସେ ୧୯୬୦ରୁ ୧୯୬୬ ପର୍ଯଂତ କାର୍ଯକରି ମିଶ୍ରଣ ପରେ ରାଜ୍ୟସଭାର ପ୍ରଥମ ସଦସ୍ୟ ଥିଲେ।



ଯୋ ପ୍ରାଣୀ ଇଂଦ୍ରିକ ଭାବେ ବଶ
ତାହାକୁ ବୋଲିଟି ରାଜସ।
x x x
ରାଜାର ସେବକ ଯେସନେ
ବଂଚଇ ଆଜ୍ଞା ଅଲଘଂନେ।



# ପ୍ରାବଂଧିକ
# ବୃଂଦାବନ ନାଥ ଶର୍ମା

ବାମଂଡା ରାଜାଂକ ସହିତ ସ୍ୱାକ୍ଷରିତ ମିଶ୍ରଣ ଚୁକ୍ତି ଅନୁସାରେ ଜାନୁଆରି ପହିଲା ୧୯୪୮ରେ ଓଡ଼ିଶାର ଡେପୁଟି କଲେକ୍ଟର କିଶୋର ଚଂଦ୍ର ଦାସ ଏମ୍.ଏ. ପ୍ରଶାସକ (ଆଡମିନଷ୍ଟ୍ରେଟର) ଭାବେ ରାଜ୍ୟର ଶାସନ ହାତକୁ ନେଲେ। ଦେବଗଡ଼ ସହରରେ ଏପରି ଅନେକ ଅନୁଷ୍ଠାନ ଥିଲା ଯାହା ଓଡ଼ିଶାରେ ଅନ୍ୟତ୍ର ବିରଳ। ସଂବଲପୁର ସହରରେ ସେତେବେଳେ ବିଦ୍ୟୁତ୍ ନ ଥିଲା ମାତ୍ର ଦେବଗଡ଼ ଅତିଥି ଭବନ ଲଳିତବସଂତ ଓ ବସଂତ ନିବାସର ବିଦ୍ୟୁତ୍‌କରଣ ହୋଇଥାଏ। ବିଦ୍ୟୁତ୍ ଶକ୍ତିର କ୍ଷୀଣତା ଅବଶ୍ୟ ବିଚାରଯୋଗ୍ୟ ନ ଥିଲା। ସେମିତି ଗୋଟିଏ ପୁସ୍ତକାଗାର ସହର ମଝିରେ ଥିଲା। ଓଡ଼ିଆ, ବଂଗଳା, ଇଂରେଜିର ଅନେକ ଦୁର୍ଲଭ ଗ୍ରଂଥ ଏଠାରେ ଦେଖିବାକୁ ମିଳୁଥିଲା। ସେତେବେଳେ ଓଡ଼ିଶାରେ ବଡ଼ ପୁସ୍ତକାଗାର ଥିଲା ରେଭେନ୍ସା କଲେଜର କନିକା ଲାଇବ୍ରେରି। ଏହି ପୁସ୍ତକାଗାର କନିକାଠାରୁ କୌଣସି ପ୍ରକାର ନ୍ୟୁନ ନ ଥିଲା। ଏହାର ଦାୟିତ୍ୱରେ ଥିଲେ ବୟସ୍କ କର୍ମଚାରୀ ବୃଂଦାବନ ନାଥ ଶର୍ମା। ସେ କର୍ମଦକ୍ଷ ଥିଲେ ଓ ବିଶେଷ କରି ଜଣେ ସାହିତ୍ୟିକ ପ୍ରାବଂଧିକ ଭାବରେ ସେ ଓଡ଼ିଶାରେ ସେତେବେଳେ ସୁପରିଚିତ ଥିଲେ।

## ବୃଧହଂସ କେଳିସର ସରସିଜ

ସଂକ୍ଷେପରେ କହିବାକୁ ଗଲେ ବୃଂଦାବନ ଥିଲେ ଜଣେ ଉଚ୍ଚକୋଟୀର ଜାତୀୟତାବାଦୀ ପ୍ରାବଂଧିକ। ତାଂକର ଅଧିକାଂଶ ପ୍ରବଂଧ ଜାତୀୟଭାବ ଓ ଜାତୀୟ ଭାଷାର ଶ୍ରୀବୃଦ୍ଧି ସାଧନ ଉଦ୍ଦେଶ୍ୟରେ ଲିଖିତ ଥିଲା। ଏହା ବ୍ୟତୀତ ସେ କବିତା ମଧ୍ୟ ଲେଖିଥିଲେ। ବୃଂଦାବନଂକର ଜନ୍ମ ୧୮୯୬ରେ ସଂବଲପୁର ଜିଲ୍ଲାର ଶାସନ ଥାନା ଅଂତର୍ଗତ ସାଲଡ ଗ୍ରାମରେ। ଅତି ଅଳ୍ପ ବୟସରେ ସେ ବାପାଂକୁ ହରାଇଲେ। ସେମାନେ ରଘୁନାଥିଆ ସଂପ୍ରଦାୟର ଯୋଗୀ ବ୍ରାହ୍ମଣ ଥିଲେ। ତାଂକର ମାଆ ପରିବାରର ଅନ୍ୟମାନଂକ ସହିତ ଉଦରପୋଷଣ ନିମିତ୍ତ ବାମଂଡା ରାଜ୍ୟକୁ ପଳାଇ ଆସି ଦେବଗଡ଼ରେ ଆଶ୍ରୟ ନେଲେ। ଜମିବାଡି ନ ଥିଲେ ମଧ୍ୟ ରାଜାଂକର ଏହି ସଂପ୍ରଦାୟ ପ୍ରତି ପୃଷ୍ଠପୋଷକତା ଥିଲା। ସେଠାରେ ମଧ୍ୟ ଭର୍ନାକୁଲାର ୭ମ ଶ୍ରେଣୀ ପର୍ଯଂତ ପାଠ ପଢାର ସୁବିଧା ଥାଏ। ବୃଂଦାବନ ସେଠାରେ ବିଦ୍ୟାଶିକ୍ଷା ଶେଷ କଲେ। ବାମଂଡାରେ ସାହିତ୍ୟର ଆଦର ଥିଲା କାବ୍ୟାମୋଦୀ ସଚ୍ଚିଦାନଂଦ ତ୍ରିଭୁବନ ଦେବ ରାଜା ଥିଲେ। ତାଂକ ଜ୍ୟେଷ୍ଠପୁତ୍ର ଦିବ୍ୟସିଂହ ବୃଂଦାବନଂକର ସହପାଠୀ ଥିଲେ। ତାଂକ ସହିତ ମିଶି ସେ ସେଠାରେ ମିଳୁଥିବା ସାହିତ୍ୟ ପତ୍ର ପତ୍ରିକା ଓ ସଂବାଦପତ୍ରମାନ ପଢ଼ିଲେ। ସାହିତ୍ୟ ସଭାମାନଂକରେ ଯୋଗଦେଲେ। ଦେବଗଡ଼ରୁ ସଂବଲପୁର ହିତୈଷିଣୀ ସଂବାଦପତ୍ର ବାହାରୁଥାଏ। ସେ ରାଜାଘରେ ସାମନ୍ୟ କାମର ସୁଯୋଗ ପାଇଲେ। ନିଜ ଚାଷ ମଧ୍ୟ ଦେଖି ସେଥିରୁ କିଛି ରୋଜଗାର କଲେ। ୧୯୦୫ରେ ତାଂକର ପ୍ରଥମ କବିତା 'ହିତୈଷଣୀ'ରେ ପ୍ରକାଶ ପାଇଲା। ପତ୍ରିକାର ସଂପାଦକ ଥିଲେ ଦୀନବନ୍ଧୁ ଗଡ଼ନାୟକ। ତାଂକ ଦ୍ୱାରା ପ୍ରଭାବିତ ହୋଇ ବୃଂଦାବନ ଗଦ୍ୟ ଲେଖାରେ ମନ ଦେଲେ। ପ୍ରଥମେ ହିତୈଷିଣୀରେ ଏହା ପ୍ରକାଶ ପାଇଲା। ପରେ ସେ ଓଡ଼ିଶାର ତତ୍‌କାଳୀନ ବିଭିନ୍ନ ପତ୍ରିକା ଯଥା ଉତ୍କଳ ସାହିତ୍ୟ, ମୁକୁର, ସହକାର, ଉତ୍କଳ ସେବକ ଓ ସଂବାଦପତ୍ର ଉତ୍କଳ ଦୀପିକାରେ ନିଜ ଗଦ୍ୟ ଲେଖା ପ୍ରକାଶନର ସୁଯୋଗ ପାଇଲେ। ରାଜା ସଚ୍ଚିଦାନଂଦଂକ ପରେ ଦିବ୍ୟସିଂହ ବାମଂଡାର ରାଜଗାଦିରେ ବସିଲେ ମାତ୍ର ସେ ମଧ୍ୟ ଅଳ୍ପ ଦିନରେ ପ୍ରାଣତ୍ୟାଗ କଲେ। ବୃଂଦାବନ ନିଜ ପୃଷ୍ଠପୋଷକଂକର ବିୟୋଗରେ ମର୍ମାହତ ହେଲେ ମଧ୍ୟ ସାହିତ୍ୟ ସେବାରୁ ବିଚ୍ୟୁତ ହୋଇ ନ ଥିଲେ। ୧୯୧୯ରେ ଦରବାର ତାଂକୁ ରାଜଧାନୀର ସଚ୍ଚିଦାନଂଦ ପୁସ୍ତକାଗାର ଦାୟିତ୍ୱରେ ରଖିଲେ। ଏହି ପୁସ୍ତକାଗାର ସହିତ ଏକ ପାଠାଗାର ମଧ୍ୟ ସଂପୃକ୍ତ ଥିଲା। ଏସବୁର ସେ ରକ୍ଷଣାବେକ୍ଷଣ କଲେ ଓ ରାଜ୍ୟ ମିଶ୍ରଣ ପର୍ଯଂତ ସେ ଏହି ଦାୟିତ୍ୱରେ ଥିଲେ। ସରକାରୀ ନିୟମ ଅନୁସାରେ ୫୫ ବର୍ଷ ବୟସରେ ସେ ଅବସର ନେଲେ। ଶେଷ ଜୀବନରେ ସେ ବାତ ରୋଗରେ ଆକ୍ରାଂତ ହେଲେ ମଧ୍ୟ ସାହିତ୍ୟ ସେବାରୁ ଦୂରେଇ ଯାଇ ନ ଥିଲେ। ୧୯୫୫ରେ ଅଣଷଠି ବର୍ଷ ବୟସରେ ସେ ପ୍ରାଣତ୍ୟାଗ କଲେ।

ତାଂକର ସାହିତ୍ୟିକ କୃତିକୁ ୧) ପ୍ରବଂଧ ଓ ସମାଲୋଚନା ୨) ପଦ୍ୟ ଓ କବିତା ଏହିପରି ଦୁଇ ଶ୍ରେଣୀରେ ବିଭକ୍ତ କରି ସମୀକ୍ଷା କରାଯାଇପାରେ। ୧୯୧୬ରେ ସେ 'ସାହିତ୍ୟ ଭକ୍ତ ସଚ୍ଚିଦାନଂଦ ତ୍ରିଭୁବନଦେବ' ନାମକ ଏକ ଜୀବନ ଚରିତ ରଚନା କରିଥିଲେ। ୧୯୨୬ରେ ସେ ପଂଡିତ କୁଳମଣି ଦାସଂକର ଭ୍ରମଣ କାହାଣୀ ଆଲୋଚନା କରି ପ୍ରବଂଧମାନ ଲେଖିଥିଲେ। ଗଡ଼ଜାତଗୁଡିକର ସଂପଦ, ତାରିଣୀ ଚରଣ ରଥଂକର ଓଡ଼ିଆ ଲିପି ପ୍ରବଂଧର ଆଲୋଚନା, ଅନଂତ ବାସୁଦେବ ମଂଦିରର ଲିପି, ଉଚ୍ଚଭାବ ଦେବଂକ ପ୍ରଶସ୍ତ ଲିପି, ସୋନପୁରର ତାମ୍ର ଶାସନ, ବୌଦ ରଣଭଂଜ ଦେବଂକ ଦାନପତ୍ର ତାମ୍ର ଫଳକ, ବୌଦ୍ଧଗାନ ଓ ଦୋହା, ଓଡ଼ିଆ ସମ୍ମିଳନୀ ୧୯୨୬, ଅକ୍ଷମ ଓଡ଼ିଆ, ଓଡ଼ିଆର ସାହିତ୍ୟ ସାଧନା (୧୯୨୮) ଓଡ଼ିଆର ଅନ୍ନ ସମସ୍ୟା (୧୯୨୯) ଓଡ଼ିଶା ବାହାରେ ଓଡ଼ିଆ (୧୯୩୨) ଓଡ଼ିଆ ଦେଶ ଓ ଓଡ଼ିଆ ଜାତିର ପୁରାତତ୍ତ୍ୱ (୧୯୩୧) ମୋର ଜଣା ଲୋକ (୧୯୩୬) ନୂତନ ପ୍ରଦେଶରେ ଓଡ଼ିଆଂକ କର୍ତବ୍ୟ (୧୯୩୬) ସିଂହଭୂମି ପଥେ ରାଂଚି (୧୯୦୮) ତାଂକର ଗଦ୍ୟ ରଚନା ମଧ୍ୟରେ ପ୍ରଧାନ ସ୍ଥାନ ପାଇଥିଲା।

ତାଂକର ମନନଶୀଳ ହୃଦୟ ବହୁ ଶାସ୍ତ୍ର ପଠନ, ଦାର୍ଶନିକ ଦୃଷ୍ଟିଭଂଗୀ ଓ ବୌଦ୍ଧିକ ରସଚର୍ଯା ଓଡ଼ିଆ କବିତା ଓ ସମାଲୋଚନା ଧାରାକୁ ସ୍ପଂଦିତ କରିଅଛି। ତାଂକ ଚିଂତାଧାରା ଶହେଗୋଟି କ୍ଷୁଦ୍ର ପ୍ରବଂଧରେ ସହକାର ପତ୍ରିକାରେ ପ୍ରକାଶ ପାଇଥିଲା ଓ ଏହାକୁ ଏକତ୍ରିତ କରି ଶତଚିଂତା ନାମରେ ଏକ ପୁସ୍ତକ ୧୯୩୯ରେ ପ୍ରକାଶିତ ହୋଇଥିଲା। ତାଂକର 'ଶତଚିଂତା' ପୁସ୍ତକରେ ଗ୍ରଂଥ ପ୍ରବେଶରେ ତାଂକର ଆଜୀବନ ସାହିତ୍ୟ ସାଧନାକୁ ସମ୍ମାନ ଜଣାଇ ଭାଷାକୋଷ ପ୍ରଣେତା ଗୋପାଳଚଂଦ୍ର ପ୍ରହରାଜ ଲେଖିଥିଲେ "x x ଦେବଗଡ଼ର ବୃଂଦାବନ ବାବୁଂକ ପରି ଅବିଚ୍ଛିନ୍ନ ଧାରାରେ ନିଷ୍ଠାପର ସାହିତ୍ୟସେବା ଆମ ଭିତରେ ଅତି ଅଳ୍ପ ଲୋକଂକର ମୁଁ ଦେଖିଛି। ଏ ଶ୍ରେଣୀର ସାହିତ୍ୟ ସେବକମାନେ ସାହିତ୍ୟ କାନନରେ ଭ୍ରମଣ କରି ଯାହା ମହନୀୟ ଆଦରଣୀୟ ଓ ସ୍ପୃହଣୀୟ ଫଳ ଆହରଣ କରିଂତି, ସେଗୁଡିକ ପଚାଇ ସଢ଼ାଇ ଫିଂଗି ନ ଦେଇ ଦେଶକୁ ସମାଜକୁ ଜାତିକୁ ସେଥିରେ ଭାଗୀଦାର କରଂତି।" ତାଂକର ପଦ୍ୟ ରଚନା ମଧ୍ୟରେ ବହୁ କ୍ଷୁଦ୍ର କବିତା 'ଚିତ୍ର ପରିଚୟ' ଓ 'ଅବସର ଗାଥା' ନାମରେ ପ୍ରକାଶ ପାଇଥିଲା। ୧୮୧ ପଦ ବିଶିଷ୍ଟ ବଂଗଳାଶ୍ରୀ ରାଗରେ ରଚିତ 'ମଦାଳସା ପରିଣୟ' ପୃଷ୍ଠପୋଷକତା ଅଭାବରୁ ପ୍ରକାଶ ପାଇପାରି ନ ଥିଲା। ଦେବଗଡ଼ ଦରବାରକୁ ଆସୁଥିବା ଓଡ଼ିଶାର ବହୁ ସାହିତ୍ୟିକ ଓ ଯଶସ୍ୱୀ ମନିଷୀମାନଂକୁ ଜାଣିବାର ତାଂକୁ ସୁଯୋଗ ମିଳିଥିଲା। ସେମାନେ ଜୀବନ ସଂଗ୍ରାମରତ ଥାଇ ସୀମିତ କ୍ଷେତ୍ରରେ ଓ ସୁଯୋଗର ଅଭାବ ସତ୍ତ୍ୱେ ବୃଂଦାବନଂକର ସାହିତ୍ୟ କୃତିର ପ୍ରଶଂସା କରୁଥିଲେ। ନିଜର ସାହିତ୍ୟ କୃତି ନିମିତ୍ତ ଏକବିଂଶ ଶତାବ୍ଦୀରେ ମଧ୍ୟ ବୃଂଦାବନ ସ୍ମରଣୀୟ।



''ଜନ୍ମଭୂମି ଜନ୍ମଦାତ୍ରୀ
ସମାନ ଉଭୟ
ପୋଷଂତି ସଂତାନେ କରି
ନିଜ ତନୁକ୍ଷୟ ।''

–ଚିଂତାମଣି

# ନାରୀକବି
# ସୁଲୋଚନା

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ସୁଲୋଚନା ନାରୀକବି ଭାବରେ ଆବିର୍ଭୂତା ହେଲେ । ବାମଂଡା ଦରବାରର ପୃଷ୍ଠ ପୋଷକତା ତାଂକୁ ମିଳିଥିଲା । ତାଂକ ପିତା ସାହିତ୍ୟିକ ଦୀନବଂଧୁ ଗଡନାୟକ (୧୮୭୬–୧୯୩୨) ସଂବଲପୁର ହିତୈଷିଣୀର ସଂପାଦକ ଥିଲେ । ଦୀନବଂଧୁ ବାମଂଡା ରାଜ୍ୟର ବର୍ତମାନ ରେଂଗାଲି ବଂଧଦ୍ୱାରା ଜଳମଗ୍ନ ନନେଇ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପିତା ଶ୍ରୀପତି, ସାର ବାସୁଦେବଂକର ପେସ୍କାର ଥିଲେ । ତିନିଗୋଟି ଗାଁର ପଧାନ ପଦ ତାକୁ ମିଳିଥିଲା । ଷୋଳ ବରଷରେ ସେ ଦେବଗଡ଼ରୁ ମିଡଲ ଭର୍ନାକୁଲାର ପାସକଲେ । ସର୍ବୋତକୃଷ୍ଟ ପରୀକ୍ଷାର୍ଥୀ ଭାବରେ ସେ ଦରବାରଦ୍ୱାରା ପୁରସ୍କୃତ ହେଲେ । ହିତୈଷିଣୀରେ ସେହି ସମୟରୁ ଲେଖିବା ସେ ଆରଂଭ କଲେ । 'ସିଂଧୁ ମଂତନ' 'ଜୀବନତରଂଗ' 'ଧର୍ମକର୍ମ' 'ଶୋଭାସୁଂଦରୀ' ପ୍ରଭୃତି କବିତା ପୁସ୍ତକର ସେ ରଚୟିତା । ଗଦ୍ୟରଚନାରେ 'ପରିଶ୍ରମ' 'ନାରୀଶିକ୍ଷା' 'ବଂଧ୍ୟା ଚିକିତ୍ସା' 'ଛିନ୍ନ ମଂଦାରମାଳା' 'କର୍ମପଥ' 'ଧର୍ମ ଯୁଧିଷ୍ଠିର ସଂବାଦ ଆଦି ଅନେକ ପ୍ରବନ୍ଧ ସଂକଳନ ସେ ପ୍ରକାଶ କରିଥିଲେ । ୧୯୦୯ରୁ

୧୯୨୩ ପର୍ଯ୍ୟନ୍ତ ସେ ହିତୈଷିଣୀ ପତ୍ରିକାର ଗୁରୁ ଦାୟିତ୍ୱ ବହନ କରିଥିଲେ। ସାହିତ୍ୟର ବିକାଶ ସାଧନ ନିମିତ୍ତ ସଦା ତତ୍ପର ଥାଇ ସେ ଏଥିପାଇଁ ସାହିତ୍ୟ ସେବକମାନଙ୍କୁ ଆହ୍ୱାନ କରୁଥିଲେ। ଶେଷ ସଂଖ୍ୟାର ହିତୈଷଣୀର ପ୍ରକାଶନ ବନ୍ଦ ହେବା ପରି ଦୁଃଖଦ ଘୋଷଣା ସେହିମଧ୍ୟ ପ୍ରକାଶ କରିଥିଲେ। ହିତୈଷିଣୀରେ ପ୍ରକାଶିତ ଦୀନବନ୍ଧୁଙ୍କର କବିତାମାନଙ୍କରେ ଦେଶପ୍ରୀତିର ଅଖଣ୍ଡ ଉଚ୍ଚାରଣ ସହିତ ଜଗତ କଲ୍ୟାଣର ଆଭିମୁଖ୍ୟ ପ୍ରକାଶ ପାଇଛି। ୧୯୩୨ରେ ସେ ପ୍ରାଣତ୍ୟାଗ କଲେ।

୧୮୯୫ ରେ ଜନ୍ମିତ ସୁଲୋଚନା ନିଜ ପିତାଂକ ତତ୍ତ୍ୱାବଧାନରେ ବାଲ୍ୟକାଳରୁ ସାହିତ୍ୟ ସେବା ପ୍ରତି ଆକୃଷ୍ଟ ହେଲେ। ବାପାଂକ ପାଖକୁ ଅନେକ ପତ୍ର ପତ୍ରିକା ଓ ସମାଲୋଚନା ନିମିତ୍ତ ପୁସ୍ତକ ଆସୁଥିଲା। ଓଡ଼ିଆ, ବଂଗଳା, ଇଂରାଜୀ ଓ ସଂସ୍କୃତ ଭାଷାର ଗ୍ରଂଥମାନଂକ ବ୍ୟତୀତ ଉତ୍କଳ ସାହିତ୍ୟ, ଉତ୍କଳ ଦୀପିକା, ଉତ୍କଳ ମଧୁପ ଆଦି ପତ୍ର ପତ୍ରିକା ନିୟମିତ ପଢ଼ିବାର ସୁଯୋଗ ସେ ଲାଭ କରିଥିଲେ। ମାତ୍ର ଷୋଳବର୍ଷ ବୟସରେ ହିତୈଷିଣୀରେ ତାଂକର ପ୍ରଥମ କବିତା 'ଦୟା' ନାମରେ ପ୍ରକାଶ ପାଇଥିଲା। ଏଥିରେ ସେ ଲେଖିଥିଲେ

''ବିତର ବିମଳ ପ୍ରଭା ଅୟି ସ୍ମିତାନନେ<br>
ପ୍ରକାଶେ ଚପଳା ସତ୍ୟ ଶ୍ୟାମଳ ଜଳଦେ<br>
ମାତ୍ର ଅଳ୍ପ କ୍ଷଣସ୍ଥାୟୀ ତାର ତୀକ୍ଷ୍ଣ ଜ୍ୟୋତି<br>
କିଂତୁ ତବ ସମୁଜ୍ଜ୍ୱଳ ତନୁଜାତ କାଂତି।''

ତାଂକର ପରବର୍ତ୍ତୀ ବର୍ଷମାନଂକରେ ଅନେକ କବିତା ସେହି ପତ୍ରିକାରେ ପ୍ରକାଶିତ ହୁଏ।

ସୁଲୋଚନାଂକର ରଚନାରେ କରୁଣାତ୍ମକ ପ୍ରେକ୍ଷାପଟର ଦୁଃଖ ଓ ହତାଶାର ବାଣୀ ଆଧ୍ୟାତ୍ମିକତା ଆଡ଼କୁ ଦୃଷ୍ଟି ଫେରାଇଛି। ପ୍ରକୃତିର ପ୍ରତିଟି ସୌଂଦର୍ଯ୍ୟ ଅଂତରାଳରେ ବିଷାଦର ଘନଛାୟା ତାଂକ ଦୃଷ୍ଟି ଭଂଗୀକୁ ଦାର୍ଶନିକ ଭାବରେ ଗଢ଼ିଛି। ତାଂକ କୃତି ମଧ୍ୟରେ ଅବକାଶ ମଂଜରୀ (ଗଦ୍ୟ ପଦ୍ୟ ସଂକଳନ ୧୯୧୪) ପଦ୍ମିନୀ (କାବ୍ୟ ୧୯୨୭) ବିକାଶ (ଗଦ୍ୟ ପଦ୍ୟ ସଂକଳନ ୧୯୨୭), ସାବିତ୍ରୀ (କାବ୍ୟ ୧୯୨୮),ବଣମଲ୍ଲୀ (କବିତା ୧୯୩୧), ଦମୟଂତୀ (ଗଦ୍ୟ ୧୯୩୦) ସେକ୍ସପିଅର (ପାଂଚଟି ନାଟକର ସଂକ୍ଷିପ୍ତ ଗଳ୍ପାନୁବାଦ ୧୯୩୩), ସଂସାରଚିତ୍ର (ନାଟକ ଅପ୍ରକାଶିତ) ପ୍ରଧାନ। ସେ ନାଟ୍ୟକାର ଓ ପ୍ରାବଂଧିକ ମଧ୍ୟ ଥିଲେ। ହିତୈଷିଣୀରେ କବି ଶେଖର ଚିଂତାମଣିଂକ ଦ୍ୱାରା ତା ୪.୪.୧୯୧୯ରେ ଅବକାଶ ମଂଜରୀ ପୁସ୍ତକର ସମାଲୋଚନା ପ୍ରକାଶିତ ହୋଇଥିଲା। ସୁଲୋଚନା ୧୯୦୯ରେ

ମଧ୍ୟଭର୍ନାକୁଲାର ପାସ କଲାପରେ ଦରବାର ତାଂକୁ ବାମଂଡାର ପ୍ରଥମ ଯୋଗ୍ୟ ବାଳିକା ଭାବେ ସ୍ୱର୍ଣପଦକ ପ୍ରଦାନ କରିଥିଲେ। ଅଧିକ ବିଦ୍ୟାଶିକ୍ଷାର ସୁଯୋଗ ତାଂକ ଭାଗ୍ୟରେ ନ ଥିଲା। ବିବାହ କରି ଶାଶୁଘରକୁ ଯାଇ ସାମାଜିକ ଜଂଜାଳରେ ଘାରି ହେଲେ । ଅତି ଅଳ୍ପ ବୟସରେ ବିଧବା ହେଲେ, ମାତ୍ର ଏ ସବୁ ତାଂକୁ ସାହିତ୍ୟ ସାଧନାରୁ ଦୂରେଇ ନେଇ ନ ଥିଲ। ବରଂ ତାଂକ କବିତାମାନଂକରେ ପିତୃଗୃହର ସ୍ନେହଶ୍ରଦ୍ଧା ପତିଗୃହର ଜଂଜାଳ ଓ ବୈଧବ୍ୟର ନୈରାଶ୍ୟ ଯଂତ୍ରଣା ପ୍ରକଟି ଉଠିଥିଲା। ୧୯୧୧ ରୁ ୧୯୨୩ ପର୍ଯଂତ ହିତୈଷିଣୀର ପ୍ରାୟ ପ୍ରତି ସଂଖ୍ୟା ତାଂକର କବିତାରେ ରଞ୍ଜିମଂତ ହୋଇଥିଲା। ତାଂକର ରଚନାମାନ ସମସାମୟିକ ବରିଷ୍ଠ ସାହିତ୍ୟିକମାନଂକୁ ଆକୃଷ୍ଟ କରିଥିଲା। ଭାବଧାରାର କଳାତ୍ମକ ସମୀକରଣ ସୁଲୋଚନାଂକର କାବ୍ୟ କୃତିରେ ଦେଖିବାକୁ ମିଳେ। ଅସହାୟ ଜୀବନଚର୍ଯା ମଧ୍ୟରେ ସାହିତ୍ୟ ସେବାରେ ସେ ଦିବ୍ୟଆନଂଦ ପାଉଥିଲେ ଏହା ତାଂକ ରଚନାରୁ ସ୍ପଷ୍ଟ ବାରିହୁଏ। ନାରୀଜାତି, ନାରୀ ଜାତିର ଅଧିକାର, ବିଧବା ଦଶା, ବିଧବାର ଆଶା, ହିନ୍ଦୁନାରୀର ଶିକ୍ଷା, କନ୍ୟାପ୍ରତି ମାତାର ଉପଦେଶ, ଅନାଥିନୀ, ଗୃହସ୍ଥାଶ୍ରମ ପତିଭକ୍ତି, ଆଦି କବିତାରେ ସେ ନିଜର ଅଭିଜ୍ଞତା ଓ ଜୀବନାଦର୍ଶ ଚିତ୍ରଣ କରିଅଛଂତି।

୧୯୪୭ ରେ ଏହି ପ୍ରତିଭାଧାରିଣୀ ମହିଳାଂକର ମୃତ୍ୟୁ ଘଟେ। ପଶ୍ଚିମ ଓଡ଼ିଶାର ପ୍ରଥମ ଓଡ଼ିଆ ନାରୀକବି ଭାବରେ ସେ ସ୍ମରଣୀୟ ରହିବେ। ତାଂକର ରଚନା ସଂକଳନ ସାହିତ୍ୟ ସାଧକଂକୁ ଆକୃଷ୍ଟ କରିଥିଲା। ଅସହାୟ ଜୀବନଚର୍ଯା ମଧ୍ୟରେ ସେ ଯେଉଁ ଦିବ୍ୟାନଂଦ ଭରିଥିଲେ ତାହା ବ୍ୟଥାର ସଂଗୀତ ମଧ୍ୟରେ ଅନୁରଣିତ କରାଏ ଅସୀମର ସ୍ୱର ଓ ଆଶାବାଦର ଝଂକାର।



# କବି

# ହରିହର ମହାପାତ୍ର

ବାମଂଡା ଦରବାରର ପୃଷ୍ଠପୋଷକତାରେ ସାହିତ୍ୟ ଚର୍ଚ୍ଚା କରୁଥିବା ଆଉ ଜଣେ କବି ହରିହର ମହାପାତ୍ର। ଜନ୍ମ ବାମଂଡାରେ ୧୮୮୫ରେ। ଦେବଗଡ଼ରେ ଶିକ୍ଷା ପରେ ସେ କବିରାଜ ବୃତ୍ତି ଆବୋରି ନେଇଥିଲେ । ୧୯୧୮ ରେ ବାମଂଡା ରାଜ୍ୟରେ ଇନ୍‌ଫ୍ଲୁଏନ୍‌ଜା ଉତ୍କଟ ଭାବରେ ବ୍ୟାପିଥିଲା। ଏହି ଦୁଃସମୟରେ ସେ ରୋଗୀମାନଂକର ସେବାରେ ନିଜକୁ ନିୟୋଜିତ କରି ଅନେକଂକୁ ଆରୋଗ୍ୟ କରିପାରିଥିଲେ। ଦରବାର ଏଥି ନିମିତ୍ତ ତାଂକୁ ପୁରସ୍କୃତ କରିଥିଲେ।

ହିତୈଷଣୀରେ ତାଂକର ସାହିତ୍ୟିକ ଜୀବନ ଆରଂଭ ହୁଏ। କୈଶୋରରେ ରାଜା ସାର ବାସୁଦେବଂକ ତିରୋଧାନରେ ବ୍ୟଥିତ ହୋଇ ସେ ଆବେଗମୟ କରୁଣ କବିତାରେ ଲେଖିଥିଲେ।

ଆହେ ସୁଜନଦେବ ଦଂଡଧାରୀ
ଉତ୍କଳ ନୟନୁଁ ବହଇ ବାରି
ଚାଲିଗଲ ଦେବ ସ୍ୱର୍ଗ ପଥରେ
ନ ଚାହିଁଲ ଆଂଭ କଷ୍ଟକୁ ଥରେ।
ପିତାପ୍ରାୟ ଥିଲ ପାଳି
ନିଶ୍ଚିଂତେ ବୈକୁଂଠଧାମେ ବିରାଜିଲ
ଶୋକେ ମରୁଅଛୁ ଭାଳି।

## ବୁଧହଂସ କେଳିସର ସରସିଜ

ଏହା ୧୯୦୩ରେ ହିତୈଷିଣୀରେ ପ୍ରକାଶ ପାଇଥିଲା । ଅଠର ବରଷ ବୟସରେ ଏହା ତାଂକର ପ୍ରଥମ କବିତା । ଏହାପରେ ଅବିରତ ସେ ଲେଖନୀ ଚାଳନା କରି ହିତେଷିଣୀରେ ଲେଖିଲେ । ଏହି ସବୁ 'ବିବିଧ ସଂଗୀତ' 'ହେମ କମଳିନୀ' 'ବିସ୍ମୃତିର ପରିଣାମ' 'କଲ୍ୟାଣ କୁସୁମ' 'ପ୍ରତିଭା ମୁକୁର' 'ନୈବେଦ୍ୟ ଶାଂତିଭିକ୍ଷା' ବିବୁଧା ଭାରତୀ' 'ଖଂଡାଧାର' ଆଦି କବିତା ସଂକଳନରେ ପ୍ରକାଶିତ । ପ୍ରଥମ ସଂକଳନ ୧୯୦୭ ଓ ଶେଷ ସଂକଳନ ୧୯୩୩ରେ ପ୍ରକାଶ ପାଇଥିଲା । ଭରତ ନାମରେ ତାଂକର ଏକ କାବ୍ୟ ଅପ୍ରକାଶିତ ରହିଛି । ୧୯୦୮ରେ ପ୍ରକାଶିତ କୁମାର କଂଠାଭରଣ ଏକ ଶବ୍ଦ ଅଭିଧାନ । ୧୯୧୮ରେ ମରୁରାଜ ବିଜୟ ନାମରେ ସେ ଏକ ନାଟକ ମଧ୍ୟ ଲେଖିଥିଲେ । ହରିହରଂକର କାବ୍ୟ ପ୍ରତିଭା, ସର୍ବତୋଭାବେ ହିତୈଷିଣୀ ଦ୍ୱାରା ବିକଶିତ ହୋଇଥିଲା । ଦେବଗଡ଼ର ଆଲୋଚନା ସଭା, ଛାତ୍ର ସମିତି ପ୍ରଭୃତି ସ୍ଥାନୀୟ ଅନୁଷ୍ଠାନର ବାତାବରଣରେ ଏହା ପରିବର୍ଦ୍ଧିତ ହୋଇଥିଲା । ଭଂଜଯୁଗର କାବ୍ୟାଦର୍ଶରୁ ଓହରି ଯାଇ ରାଧାନାଥଂକର ରଚନାଦ୍ୱାରା ପ୍ରଭାବିତ ହରିହର ନିଜ କାବ୍ୟାଦର୍ଶରେ ଆଗେଇଲେ । 'ହେମ କମଳିନୀ' କାବ୍ୟ ୧୯୦୯ରୁ ଧାରାବାହିକ ଭାବେ ହିତୈଷିଣୀରେ ପ୍ରକାଶିତ ହୋଇ ୧୯୧୧ରେ ଶେଷରେ ପୁସ୍ତକାକାରରେ ଲବ୍ଧହେଲା । କବିବର ରାଧାନାଥ ଏହାକୁ ହରିହରଂକର ରଚନାର କ୍ରମୋତ୍କର୍ଷର ପରିଚାୟକରୂପେ ବର୍ଣନା କରିଥିଲେ । ପ୍ରକୃତି ପ୍ରତି କବିଂକର ଦୃଷ୍ଟିଭଂଗୀ ଓ ଶାଂତି ଯାଚ୍‌ଞା ତାଂକ ସଂକଳନ 'ଶାଂତି ଭିକ୍ଷା'ରେ ପରିସ୍ଫୁଟ । ସେଥିରେ ସେ ମୟୂର ପ୍ରତି କବିତାରେ ଲେଖିଲେ ।

''ମହାପ୍ରେମେ କେକୀ ତୁହି ଯେଉଁ ବ୍ରତଧାରୀ
ସେ ମହାବିତ୍ତବେ କେହ୍ନେ ହେବି ଅଧିକାରୀ
କ୍ଷୁଦ୍ରାବୃତି କାରାବାସେ ରୁଦ୍ଧ ମୋର ମନ
କାହିଁଗଲେ ଲଭିବି ମୁଁ ଶାଂତି ନିକେତନ ।''

ନଳିନୀପ୍ରତି କବିତାରେ ସେମିତି –

ଏ ଭବସାଗରରେ ମୋର ପଂକିଳ ଜୀବନ
କାହିଁଗଲେ ଲଭିବି ମୁଁ ଶାଂତିନିକେତନ ।

ପ୍ରକୃତିର ବିଭିନ୍ନ ଅଂଗକୁ ନିମିତ୍ତ କରି ପ୍ରକୃତିର ଅଂତରାଳରେ ସେ ଶାଂତି ଲୋଡ଼ିଛଂତି । ଶାଂତିଭିକ୍ଷା କବିତା ସଂକଳନର କବିତାମାନ ଏହି ପର୍ଯାୟର । ୧୯୬୧ରେ ସେ ଦେବଗଡ଼ରେ ପ୍ରାଣତ୍ୟାଗ କଲେ ।



# ଜୀବନବାଦୀ କବି
# ଲିଂଗରାଜ ପାଣିଗ୍ରାହୀ

କବି ଲିଂଗରାଜ ଦେବଗଡ଼ରେ ୧୮୯୪ରେ ଜନ୍ମ ଗ୍ରହଣ କରିଥିଲେ। ୧୯୧୦ରେ ରାଜା ସଚ୍ଚିଦାନଂଦ ଦେବଗଡ଼ରେ ପ୍ରାଞ୍ଚ ବିଦ୍ୟାଳୟ ପ୍ରତିଷ୍ଠା କଲେ। ଦେଶୀୟ ବିଦ୍ୟାଳୟ ଭାବରେ ଇଂରେଜୀ ଶିକ୍ଷାର ସମ୍ମୁଖୀନ ହେବାକୁ ଏଠାରେ ବିଜ୍ଞାନ, ଗଣିତ, ସଂସ୍କୃତ, ଭୂଗୋଳ, ଇତିହାସ ସହିତ ପ୍ରାଚୀନ ଓ ଆଧୁନିକ କାବ୍ୟ, ଅଳଂକାର ଆଦି ପାଠ୍ୟରୂପେ ଗୃହୀତ ହୋଇଥିଲା। ବାମଂଡା ଶିକ୍ଷା ବିଭାଗ ରାଜାଂକର ଅଧୀନରେ ଥିଲା। ମାତ୍ର ଶିକ୍ଷାର ଉତ୍କର୍ଷତା ପାଇଁ ରାଜା ନିଜ ଶିକ୍ଷା ବିଭାଗକୁ ସଂବଲପୁର ଜିଲ୍ଲାର ଶିକ୍ଷା ବିଭାଗ ସହିତ ଯୋଗ କରିଥିଲେ। ତେଣୁ ଶିକ୍ଷାଦାନ ପଦ୍ଧତି ପାଠ୍ୟ ପୁସ୍ତକ ନିର୍ବାଚନ ଆଦିରେ ମୋଗଲବଂଦୀ ପ୍ରଚଳିତ ଶିକ୍ଷାର ଛାପ ପଡ଼ିଲା। ପ୍ରଞ୍ଚା ବିଦ୍ୟାଳୟରୁ ଲିଂଗରାଜ ଉତ୍ତୀର୍ଣ୍ଣ ହେଲେ। ହିତୈଷିଣୀର ନିୟମିତ ଲେଖକମାନଂକ ମଧ୍ୟରୁ ସେ ଜଣେ ଥିଲେ। କବି ଭାବରେ ସେ ମର୍ଯାଦା ପାଇଲେ। ୧୯୧୧ ରୁ ଶେଷ ପର୍ଯଂତ ହିତୈଷିଣୀର ଅନେକ ସଂଖ୍ୟାରେ ତାଂକର କବିତାମାନ ପ୍ରକାଶ ପାଇଥିଲା। ପ୍ରଥମ କବିତା 'ଶୀତାଗମେ କୌଣସି ପୁଷ୍ପପ୍ରତି' ହିତୈଷିଣୀରେ ୧୯୧୧ ନଭେଂବରରେ ପ୍ରକାଶ ପାଇଥିଲେ। କବି ଲେଖିଥିଲେ –

ସୁମନ, ଦେଖିଥିଲି ମୁଁ ଉପବନେ
ପ୍ରଫୁଲ୍ଲ ମନ ତୋର ବୃଂତ ଆସନେ ।
ହରଷେ ହସ ହସ ଥିଲା ବଦନ
ଏକେ ତା ସୌମ୍ୟମୂର୍ତି ଶୋଭା ସଦନ ।
ତୋ ଦେହୁଁ ଗଂଧବହ ସୁଗଂଧ ବହି
ସୁଗଂଧମୟ କରୁଥିଲା ଏ ମହୀ ।

x x x x

ହୋଇଲେ ଜରାରୂପ ଶିଶିରାଗମ
ମଳିନ ହେବି ସିନା ତୋହରି ସମ ।
ଆତ୍ମୀୟ ଜନ ମୋର ଯେତେକ ଥିବେ
ଅଳି ପରାଏ ମୋତେ ସର୍ବେ ତେଜିବେ ।
ଜାଣିଲି ଅଚିର ଏ ଜୀବ ଯୌବନ
କେହି ନୁହଂତି କାର ଆତ୍ମୀୟ ଜନ ।

ମାତ୍ର ୧୭ ବରଷରେ ଜରାପ୍ରତି ଦୃଷ୍ଟିଭଂଗି ଏହି କବିତାରେ ବାସ୍ତବାୟିତ। ଲିଂଗରାଜଂକର କବିତାମାନ ପରବର୍ତୀ କାଳରେ 'ପୁଷ୍ପାଂଜଳି'(୧୯୧୫) 'କଳିକାଂଜଳି' 'ନଡ଼ିଆ ପଇତା' 'ବିଛୁଆତି ପତ୍ର' (୧୯୨୨) ଅମୃତେବିଷ' (୧୯୨୦) ପ୍ରଭୃତି କବିତା ସଂକଳନରେ ପ୍ରକାଶ ପାଇଥିଲା। ପ୍ରଥମ ସଂକଳନ ୧୯୧୫ ଓ ଶେଷ ୧୯୨୪ରେ ପ୍ରକାଶିତ। 'ବାଣହରଣ' 'ବସ୍ତ୍ରଦାନ' 'କୃଷ୍ଣଜନ୍ମ' ଆଦି ନାଟକ ମଧ୍ୟ ତାଂକ ପ୍ରକାଶନର ଅଂତର୍ଗତ। କାବ୍ୟ କବିତା ଓ ନାଟକ ବ୍ୟତୀତ ହିତୈଷିଣୀରେ ସେ ଅନେକ ଗଦ୍ୟ ରଚନା ପ୍ରକାଶ କରିଥିଲେ। ଏହା ମଧ୍ୟରେ 'ଶିକ୍ଷା' 'ସଂତୋଷ' 'ଭାଗବତ କୋଠି' 'ଅପବ୍ୟୟର ଫଳ' 'ବର୍ତ୍ତମାନ ଯୁଗ' ଗଡଜାତ ଅଂଚଳରେ ଉଚ୍ଚ ଶିକ୍ଷାର ଅଭାବ କାହିଁକି ?, 'ମାନହାନି' 'ଲୋକାଚାର ସଂବନ୍ଧେ ବିବେକାନଂଦଂକର ଉକ୍ତି' ଆଦି ପ୍ରବଂଧ ସ୍ୱଚିଂତା ଧାରାର ପ୍ରକାଶ ନିମିତ୍ତ ଉଲ୍ଲେଖ ଯୋଗ୍ୟ। କୁରୁଚି ଓ କୁସଂସ୍କାର ବିରୋଧରେ କବି ସ୍ୱର ଉତ୍ତୋଳନ କରିଅଛଂତି। ନକଲ ନବିସ ଛଦ୍ମ ନାମରେ 'ବିଛୁଆତି ପତ୍ର' ଓ 'ନଡ଼ିଆ ପଇତା' କବିତା ସଂକଳନର କବିତାମାନ ହିତୈଷିଣୀରେ ପ୍ରକାଶ ପାଇଥିଲା। ଏଥିରେ କବି ଶ୍ଳେଷ୍ମା ଉକ୍ତି ଓ ବ୍ୟଂଗ ସାହାଯ୍ୟରେ ପ୍ରଚଳିତ ସମାଜର ପ୍ରତ୍ୟେକ ସ୍ତରକୁ ତନ୍ନତନ୍ନ କରି ବିଶ୍ଳେଷଣ କରିଅଛଂତି। ହିତୈଷିଣୀରେ ପୁସ୍ତକ ସମାଲୋଚନା ମାଧ୍ୟମରେ ୧୯୧୮ରେ ଚଂଦ୍ରଚୂଡ଼ାମଣି ହରିଚଂଦନ ଜଗଦେବଂକର 'ରାମ ବିଳାପ' ଚିଂତାମଣି ମହାଂତିଂକର 'ମହୋଦଧି' ୧୯୧୯

ରେ ମାଧବ ଚଂଦ୍ର ମିଶ୍ରଂକର 'ଧନମାଳୀ' ୧୯୨୨ରେ ଭାଗିରଥି ଗୌଂତିଆଂକର 'ସଂଗୀତ କୁଂଜଲତା'ର ସମୀକ୍ଷା ଲିଂଗରାଜ ପ୍ରକାଶ କରିଅଛଂତି। ତାଂକର ନିଜ କବିତା ସଂକଳନ କଳିକାଂଜଳିର ସମାଲୋଚନା ମଧ୍ୟ ମୋହନଚଂଦ୍ର ପାଣିଂକ ଦ୍ୱାରା ୧୯୧୯ରେ ହିତୈଷିଣୀରେ ଛାପିତ। ୧୯୫୭ରେ ଲିଂଗରାଜ ପ୍ରାଣତ୍ୟାଗ କଲେ। କାବ୍ୟଲିଖନର ସହଜାତ ପ୍ରବୃତ୍ତି ନେଇ ଜଣେ ସ୍ୱୀକୃତ କାବ୍ୟରଥି ରୂପେ ଲିଂଗରାଜ ସ୍ମରଣୀୟ।



ଆମ କପାଳ ଏଣିକି ଫିଟିଲାରେ
ହୀରାକୁଦ ବଂଧ ବଂଧା ଘଟିଲାରେ
ବଡ଼ ଜବ୍ବର ବାଂଧକେ ଆଡ଼ି
ସାତକୋଶ ପାନି ରହେବା ଟାଁଡି
କୁଡବେ କେନାଲ ଧାଡ଼ି କେ ଧାଡ଼ି
ପାନି ଯିବା ଆଟ ବେର୍‌ନା ମାଡି
ଚଷାଭାଇ ଦୁଃଖଦଶା ହଟିଲାରେ।

(ରସକବିତା) -ଶଶିଭୂଷଣ

''ପାଏଁଣ ପକେଇ କାଟଲେ ଚିତା
ନାଇଁ ହୁଏ କିଏ ଇଗତଜିତା
ସେ ବାମହୁନ ଯିଏ ଚିହ୍ନେ ମତେ
ଚିହ୍ନବ କେନ୍‌ତା କହୁରେ ତତେ ।
ରୁଘା ଘୁରା ହେଉ ବୁଢ଼ାବୁଢ଼ୀ
ଦିନ ଦିନ ନାଇଁ ହେଲେ ଠୁଁଡି
ତାର ଦିହେଁ ଭି ଆର୍ଯ୍ୟସ ମୁଇଁ
ଇଥା ନାଇଁ ଜାନୁ ତୁଇ
ତାଁକର ଯତ୍ନ କରବ ଯେତେ
ମତେ ଆପନାର କରବ ତେତେ ।''

—ଶଶିଭୂଷଣ

# କବି

# ରତ୍ନାକର ଶର୍ମା

'ହିତୈଷିଣୀ' ପୃଷ୍ଠାର ଜଣେ ବହୁ ପ୍ରକାଶିତ କବି ଥିଲେ ରତ୍ନାକର । ବାମଂଡା ରାଜ୍ୟ ଅଂର୍ତଗତ କୁଚିଂଡାରେ ତାଂକର ଜନ୍ମ । ୧୮୭୯ରେ ଦେବଗଡ଼ଠାରେ ମଧ୍ୟ ଭର୍ନାକୁଲାର ଶିକ୍ଷା ସମାପ୍ତ କରି କିଛିଦିନ ସେ ଶିକ୍ଷକତା କରିଥିଲେ । 'ହିତୈଷିଣୀ' ପୃଷ୍ଠାରେ ତାଂକର ପ୍ରାରଂଭିକ ଜୀବନର କାବ୍ୟ କବିତା ପ୍ରକାଶ ପାଏ । ହେମଲତା, ଅଜବିଳାପ, ନୀତିଦର୍ପଣ, ନୀତିକୁସୁମ, ସଂଯୁକ୍ତା ଏବଂ ଚଂପାବତୀ, ଚପଳିମାଳୀ, ଦୁଇ ସଂଗାତ ପ୍ରଭୃତି ସଂକଳନ ୧୮୯୨ ରୁ ୧୯୧୨ ମଧ୍ୟରେ ପ୍ରକାଶ ପାଇଥିଲା । ତାଂକର 'ହେମଲତା' କାବ୍ୟ ରାଧାନାଥଂକ 'କେଦାର ଗୌରୀ' ଅନୁସରଣରେ ଧାରାବାହିକ ଭାବରେ 'ହିତୈଷିଣୀ'ରେ ପ୍ରକାଶ ପାଉଥିଲା । ରାଧାନାଥଂକର ପାର୍ବତୀ କାବ୍ୟର ଉତ୍ତରାର୍ଧ ସେ ରଚନା କରି ୧୯୧୯ରେ ପ୍ରକାଶ କରିଥିଲେ । ଚିଲିକା କାବ୍ୟ ଛାୟାରେ ସେ 'ଚପଳି

ମାଳୀ' କାବ୍ୟ ମଧ୍ୟ ୧୯୧୨ ରେ ରଚନା କରିଥିଲେ। ତାଂକର ନୀତିବାଣୀ ପ୍ରକାଶ ପାଇ ପରେ ପୁସ୍ତକାକାରରେ ନୀତି ଦର୍ପଣ ନାମରେ ୧୯୦୧ରେ ଦେବଗଡ଼ରେ ମୁଦ୍ରିତ ହେଲା। କବିତାରେ ସେ ସମାଜରେ ନୈତିକ ମୂଲ୍ୟବୋଧ ପ୍ରତିଷ୍ଠାରେ ଉଦ୍ୟମରତ ଥିଲେ। ତାଂକର ତା ୧,୮,୧୯୦୦ ରେ ହିତୈଷିଣୀରେ ଲେଖା –

"ନ କଲେ ନ କର ପଛେ ପର ଉପକାର,
କିଂତୁ କେବେ ନ ବାଂଛିବ ଅନିଷ୍ଟ କାହାର।
କଲେ କର ପଛେ ମୌନ ବ୍ରତ ଆଚରଣ,
ତଥାପି ନ କହ କେବେ ଅଳୀକ ବଚନ।
ଅନାହାରେ ଗଲେ ଯାଉ ପଛେ ଏ ଜୀବନ
ଭ୍ରମେ ସୁଦ୍ଧା ନ କରିବ ପରସ୍ୱ ହରଣ" ଏହାର ପ୍ରମାଣ।

କବିଂକର 'ଅଜ ବିଳାପ' କାବ୍ୟ ରଘୁବଂଶର ଅଷ୍ଟମ ସର୍ଗର ଅନୁବାଦ ଓ ପୁସ୍ତକାକାରରେ ପ୍ରକାଶିତ ହୋଇ ରାଧାନାଥଂକ ଦ୍ୱାରା ପ୍ରଶଂସିତ ହୋଇଥିଲା। 'ଦୁଇ ସଂଗାତ ଗାଥା' କବିତା ପୁସ୍ତକ ୧୯୧୦ରେ ପ୍ରକାଶିତ। ତାଂକ ପୁସ୍ତକ ହେମଲତା ଓ ଅଜ ବିଳାପର ସମାଲୋଚନା ମଧ୍ୟ ହିତୈଷଣୀରେ ପ୍ରକାଶ ପାଇଥିଲା। ସାମାନ୍ୟ କେତୋଟି ପ୍ରବଂଧ ଗଳ୍ପ ଭ୍ରମଣ କାହାଣୀ ପୁସ୍ତକ ସମାଲେଚନା ବ୍ୟତୀତ ରାକର ମୁଖ୍ୟତଃ କାବ୍ୟ ରଚନାରେ ନିଜ ସାହିତ୍ୟ ପ୍ରତିଭା ନିୟୋଜିତ କରିଥିଲେ ଓ ଏଥିପାଇଁ ହିତୈଷିଣୀ ତାଂକୁ ପ୍ରକୃଷ୍ଟ କ୍ଷେତ୍ର ଯୋଗାଇ ଦେଇଥିଲା। ପ୍ରକୃତିପ୍ରାଣ କବି କବିତା ଛନ୍ଦରେ ଜାତୀୟବୋଧ ପ୍ରକାଶ କରୁଥିଲେ। ସାବଲୀଳ ଶବ୍ଦ ସଜା ଅନନ୍ୟ ସଂଗୀତ ଧ୍ୱନି ଓ ମାଦକତାପୂର୍ଣ ପରିପ୍ରକାଶ ତାଂକ ରଚନାର ବୈଶିଷ୍ଟ୍ୟ ଥିଲା। ପୌରାଣିକ କଥାକୁ ସେ ଆଧୁନିକତାରେ ସଜାଉଥିଲେ ଓ ସାମାଜିକ ଜୀବନର ବିକାଶ ସାଧନ ତାଂକ ରଚନାର ଲକ୍ଷ୍ୟ ଥିଲା। ତାଂକ କାବ୍ୟକୃତିରେ ମୁଗ୍‌ଧ ହୋଇ ବଡ଼ଖେମୁଂଡି ଦରବାର ତାଂକୁ କବିଭୂଷଣ ଉପାଧି ପ୍ରଦାନ କରିଥିଲା। କାଶୀପୁର ଅଧୀଶ୍ୱର ୧୯୦୯ରେ ସ୍ୱର୍ଣ କୁଂଡଳ ସହିତ ତାଂକୁ ସାହିତ୍ୟାଳଂକାର ଉପାଧିରେ ଭୂଷିତ କରିଥିଲେ। ରତ୍ନାକର ଶର୍ମା ସାରାଜୀବନ ହିତୈଷିଣୀର ପ୍ରକାଶନ ସହିତ ସଂପୃକ୍ତ ଥିଲେ।



# ବିଶ୍ୱନାଥ ଶତପଥୀ ଓ ଅନାଲୋଚିତ ଅନ୍ୟ ସାଧକମାନେ

ନବୀନ ଓ ପୁରାତନ ଗୋଷ୍ଠୀର ସାହିତ୍ୟ ସାଧକମାନଂକୁ ନେଇ ହିତୈଷିଣୀ ପରିପୁଷ୍ଟ ହୋଇଥିଲା। ସାହିତ୍ୟ ସାଧନାରେ ଦରବାର ପୃଷ୍ଠପୋଷକତା ଲାଭ କରିଥିବା ବ୍ୟକ୍ତିମାନଂକ ମଧ୍ୟରେ ବାମଂଡାର **ବିଶ୍ୱନାଥ ଶତପଥୀ** ଅନ୍ୟତମ। ଜନ୍ମ ୧୮୭୬ ରେ। ହିତୈଷିଣୀରେ ପ୍ରକାଶିତ ତାଂକର କବିତାମାନ ନୀତି ମୟୂଖ, ପଦ୍ୟ ସଂକଳନରେ ମୁଦ୍ରିତ। ଏହା ବ୍ୟତୀତ ୧୮୯୩ ରେ ତାଂକର ପ୍ରବନ୍ଧ 'ବର୍ତ୍ତମାନ ଆଂଦୋଳନ ସଂବନ୍ଧେ ଦୁଇ ଚାରି କଥା' ହିତୈଷିଣୀରେ ପ୍ରକାଶିତ। ୧୯୦୯ ଓ ୧୯୧୦ ରେ ମଧ୍ୟ ତାଂକ ନୀତି ବଚନମାନ ଏହି ପତ୍ରିକାରେ ପ୍ରକାଶ ପାଇଥିଲା। ବିଶ୍ୱନାଥ ୧୯୫୦ ରେ ପ୍ରାଣତ୍ୟାଗ କଲେ। ହିତୈଷିଣୀ ସାହିତ୍ୟ ଗୋଷ୍ଠି ମାଧ୍ୟମରେ ରଚନା ପ୍ରକାଶ କରିଥିବା ଅନ୍ୟମାନଂକ ମଧ୍ୟରେ ବାମଂଡାର

## ଲଳିତ ମୋହନ ଦେବ (୧୮୮୬-୧୯୩୮)

'ଲଳିତ ଋତୁ କଳାପ' ନାମକ କାବ୍ୟର ରଚୟିତା ଥିଲେ।

## ଦିବ୍ୟରାଜ ସିଂହ (୧୮୯୩-୧୯୮୨)

ତେରଗୋଟି କବିତା ସମାହାର 'ବିକାଶ'ର ଲେଖକ। କବିତା ସବୁ ହିତୈଷିଣୀରେ ପୂର୍ବରୁ ପ୍ରକାଶିତ ହୋଇଥିଲା। ତାଂକ କବିତାଗୁଡ଼ିକରେ ଜାତୀୟ ଚେତନା ବ୍ୟତୀତ ଆଧ୍ୟାତ୍ମିକ ଚେତନା ମଧ୍ୟ ପରିସ୍ଫୁଟ। ୧୯୧୬ରେ ତାଂକର 'ବିକାଶ' ନାମକ ଏକ ପୁସ୍ତକ ପ୍ରକାଶିତ ହୋଇଥିଲା।

## ଟଂକଧର ଦାସ (୧୮୮୯-୧୯୬୪)

ବାମଂଡା ରାଜ୍ୟର ପ୍ରଥମ ମାଟ୍ରିକ୍ ପାସ୍ ବ୍ୟକ୍ତି । ଅନେକ ଦିନ ଧରି ସେ ବାମଂଡା, ଛାତ୍ର ସମିତିର ସଂପାଦକ ଥିଲେ। ବାମଂଡା ଆଲୋଚନା ସଭାରେ ମଧ୍ୟ ସେ ସକ୍ରିୟ ଭାଗ ନେଉଥିଲେ। ରାଜ୍ୟର ଶିକ୍ଷା ବିଭାଗରେ ସେ କାର୍ଯ୍ୟ କରୁଥିଲେ। ତାଂକର ଅନେକ କବିତା ଓ ଚିଂତାଶୀଳ ପ୍ରବଂଧ ହିତୈଷିଣୀରେ ପ୍ରକାଶ ପାଇଥିଲା। ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସେ ଜଣେ ସମାଜ ସଂସ୍କାରକ ଓ ଆଦର୍ଶବାଦୀ ଥିଲେ। ଧାରାବାହିକ ଭାବରେ ପ୍ରକାଶିତ ପ୍ରବଂଧ 'ଶିକ୍ଷା'ରେ ସେ ପ୍ରଚଳିତ ଶିକ୍ଷାର ବିଶ୍ଳେଷଣ ସହିତ ଉତ୍କୃଷ୍ଟ ଶିକ୍ଷା ପଦ୍ଧତିର ଆଲୋଚନା କରୁଥିଲେ। ଉଭୟ ମିତ୍ରାକ୍ଷର ଓ ଅମିତ୍ରାକ୍ଷର ଛଂଦରେ ସେ କବିତା ରଚନା କରୁଥିଲେ। ୧୯୧୮ରେ ହିତୈଷିଣୀରେ ପ୍ରକାଶିତ 'ବସଂତ ଆଗମନ' କବିତାରେ ସେ ଲେଖିଥିଲେ -

"ଜଳସ୍ଥଳ ଅଂତରୀକ୍ଷ ପବିତ୍ର ମଧୁର<br>
ସୌଂଦର୍ଯ୍ୟ ବିଳାସ କ୍ଷେତ୍ର ହୋଇ ଅଛି ଆଜି<br>
ଋତୁରାଟ ବସଂତର ଶୁଭ ଆଗମନେ,<br>
ପଂଜରୀ ଭେଦି ଶୀତର କଠୋର ଶାସନ<br>
ନିର୍ବାପିତ, ଅନାଗତ ନିଦାଘ ଦୁର୍ଦଶା<br>
ପ୍ରକୃତି ମଧୁର ହାସ୍ୟଛଳେ ପ୍ରକାଶିତ<br>
ହୃଦୟାନଂଦ ପ୍ରସାରି ନୟନ ରଂଜନ<br>
ଗଂଧଭରା ନାନାରଂଗ କୁସୁମ ପଲ୍ଲବେ"

୭୫ ବରଷ ବୟସରେ ତାଂକର ମୃତ୍ୟୁ ହୁଏ।

## ରାଜୀବ ଲୋଚନ ଦେବ (୧୮୮୩-୧୯୪୩)

ସାର ବାସୁଦେବଂକର ଷଷ୍ଠ ପୁତ୍ର ରାଜୀବ ଜଣେ ନୀରବ ସାହିତ୍ୟସେବୀ ଥିଲେ। ସଚ୍ଚିଦାନଂଦ ଓ ବଳଭଦ୍ରଂକର ସାରସ୍ୱତ ସାଧନା ତାଂକୁ ପ୍ରଭାବିତ କରିଥିଲା ୧୯୧୪ରେ ତାଂକର ଏକମାତ୍ର ପୁସ୍ତକ 'ପାରିଜାତ' ପ୍ରକାଶିତ। ଉଦାର କଂଠରେ ଏଥିରେ ସେ ପ୍ରକୃତିର ଜୟଗାନ କରିଅଛଂତି। ହିତୈଷିଣୀ ପୃଷ୍ଠାରେ ୧୯୦୯ ରୁ ୧୯୧୨ ପର୍ଯ୍ୟଂତ ଅନେକ କବିତା ତାଂକର ପ୍ରକାଶ ପାଇଥିଲା। ତାଂକର ଅନୁବାଦିତ କବିତା 'ଘଡ଼ି ଓ ମନୁଷ୍ୟ'

## ବୁଧହଂସ କେଳିସର ସରସିଜ

ପୂର୍ଣଚଂଦ୍ର ପ୍ରଦୀପ' ହିତୈଷିଣୀରେ ୧୯୧୫ ଜୁଲାଇ ୩୧ ତାରିଖରେ ପ୍ରକାଶିତ । ହରିଶ୍ଚଂଦ୍ର ନାମରେ ସେ ଏକ କାବ୍ୟ ରଚନା କରିଥିଲେ । ଏହା ଆଂଶିକ 'ଉପହାର' ପତ୍ରିକାରେ ତାଂକର ଅନ୍ୟାନ୍ୟ ୨ଟି କବିତା 'ମାତୃଭୂମି'ଓ 'ପ୍ରକୃତି' ସହିତ ଯଥାକ୍ରମେ ୧୯୩୫, ୧୯୩୯ ଓ ୧୯୪୦ରେ ପ୍ରକାଶ ପାଇଥିଲା । କବି ପ୍ରକୃତି ଭିତରେ ଜଂଜାଳଗ୍ରସ୍ତ ଜୀବନର ଶାଂତି ଅନ୍ୱେଷଣ କରିଅଛଂତି । ପ୍ରଜ୍ଞା **ବୈରାଗୀ ପଂଡା, ନବଘନ ନାୟକ, କରୁଣାକର ସାହୁ** ପ୍ରମୁଖ ହିତୈଷିଣୀର ଗୋଟିଏ ଗୋଟିଏ ସଂଖ୍ୟା ସଂପାଦନ କରିଅଛଂତି । ହିତୈଷିଣୀର ଅଂତରାଳରେ ଯେଉଁ ଲେଖକମାନଂକୁ ସାରସ୍ୱତ ପ୍ରତିଷ୍ଠା ମିଳିଥିଲା । ସେହିମାନେ ହିଁ ହିତୈଷିଣୀ ସଂପାଦନାରେ ଆଗ୍ରହ ପଦର୍ଶନ କରିଥିଲେ । ପୂର୍ବୋକ୍ତ ତିନିଜଣ ବାମଂଡାରେ ଜନ୍ମିତ ସାହିତ୍ୟିକ ଥାଇ ରାଜ୍ୟର ଶିକ୍ଷା ବିଭାଗରେ ଶିକ୍ଷକ ତଥା ଅନ୍ୟ କାର୍ଯରେ ନିଯୁକ୍ତି ପାଇଥିଲେ । ବୈରାଗୀ ପଂଡା ଓ କରୁଣାକର ସାହୁ ପ୍ରଜ୍ଞା ପାସ୍ କରିଥିଲେ । କରୁଣାକର ରାଜାଂକର ଭଂଡାରରକ୍ଷକ ମଧ୍ୟ ଥିଲେ ଓ ତାଂକର ଶିଶୁଶିକ୍ଷା ବିଧାନ (୧୯୧୪) ପୁସ୍ତକ ଛାତ୍ରମାନଂକ ପାଇଁ ଶିକ୍ଷଣୀୟ ଥିଲା । ସେ ବିଦ୍ୟାଚକୋର ଉପାଧି ପାଇଥିଲେ । ସଂବଲପୁର ହିତୈଷିଣୀର ପ୍ରକାଶନ ୧୯୨୩ରେ ବଂଦ ହୋଇଯିବା ପରେ ଏହି ଲେଖକମାନେ ନିଜ ରଚନା ପ୍ରକାଶନର ସୁଯୋଗ ପାଇ ନ ଥିଲେ । ତେଣୁ ସେମାନଂକର କବି ପ୍ରତିଭା ସଂପୂର୍ଣ ବିକଶିତ ହେବାର ସୁଯୋଗ ମିଳିଲା ନାହିଁ । ସେମାନଂକର ଅପ୍ରକାଶିତ ରଚନା କାଳକ୍ରମେ ନଷ୍ଟ ହୋଇଗଲା ।



କାମର ବେଳେ କାମର ଚିଂତା
ଫୁରସତ ବେଳେ ପଢ଼େ ଗୀତା
ପରର ଛିଡ଼ଲା ପୁଡ଼ଲା କଥା ଲାଗେତାକେ ପିତା
ହିଁସା କପଟ୍ ନାଇଁ ତାର, ପ୍ରଭୁର ନାମ କରେ ସାର
ନାମ ଗାଇ ନାମ ଶୁନି ଯାର ଦିନ ଯାଏରେ
ତାର ଏକା ଜୀବନ ସୁଖ ଭାୟରେ ।

**—ଶଶିଭୂଷଣ**

ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାଂକ ସଂପାଦିତ ଓ ପ୍ରକାଶିତ ''ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ'' ଗ୍ରଂଥରୁ ଓ ପୁରାତନ ସଂବଲପୁଣ ହିତୈଷିଣୀରୁ ଏହି ବିସ୍ମୃତ ରଚୟିତା ମାନଂକର ନାମ ଓ ରଚନାବଳୀ ଗୃହୀତ । ସେମାନଂକ ବିଷୟରେ ସବିଶେଷ ତଥ୍ୟ ସଂଗୃହୀତ ହୋଇ ପାରିଲା ନାହିଁ ଏଥିପାଇଁ ସଂକଳକ ଦୁଃଖିତ ।

## ମନସାରାମ ଗୌଂତିଆ

୧୯୧୪ରେ ବାମଂଡାର ମନସାରାମ ଗୌଂତିଆ ସଂଗୀତ ଚଂପକ ନାମରେ ନିଜ ରଚନା ପ୍ରକାଶ କରିଥିଲେ ।

## ନାରାୟଣ ଚଂଦ୍ର ଦାସ

ଜଣେ ବାମଂଡାର ଅନାଲୋଚିତ ନାଟ୍ୟପ୍ରତିଭା । କଟକରୁ ଯାଇ ବାମଂଡାରେ ଚାକିରୀ କରୁଥିଲେ । ରାମାୟଣ କଥାବସ୍ତୁକୁ ଆଧାର କରି ରାଜପାରିଧି , ଦଶରଥ ବିୟୋଗ, ସୀତା ହରଣ, ସୀତା ଉଦ୍ଧାର, ସୀତା ଗର୍ଜନ, ସୀତା ପାତାଳ ପ୍ରବେଶ ପ୍ରଭୃତି ନାଟକ ରଚନା କରି ପ୍ରଶଂସିତ ହୋଇଥିଲେ । ତାଂକର ମୃତ୍ୟୁ ହୁଏ ୧୯୧୭ରେ ।

# କାଳିଚରଣ ଦ୍ୱିବେଦୀ

(ଖ୍ରୀ ୧୮୩୫-୧୯୨୧)

ବାମଂଡାର ସେ ଜଣେ ବିଶିଷ୍ଟ ପଂଡିତ, ଥିଲେ। ବାମଂଡା ମଂଦିର ସମୂହର ମୁଖ୍ୟ ପୁରୋଧା ଓ ଟିକାୟତ୍ ସଚ୍ଚିଦାନଂଦଂକର ଶିକ୍ଷାଗୁରୁ ଥିଲେ। ତାଂକର ଅନେକ ପାଂଡିତ୍ୟପୂର୍ଣ ରଚନା ପ୍ରବଂଧ ହିତୈଷିଣୀରେ ପ୍ରକାଶ ପାଇଥିଲା। ଚଂଡୀର ଶୁଦ୍ଧ ସଂସ୍କରଣ ୧୮୮୯, ନୀତିସାର ୧୮୮୭, ଓ ନିଆଳୀ ତାଂକର ପ୍ରକାଶିତ ପୁସ୍ତକ। ନିଆଳୀ ଏକ ସଂସ୍କୃତ କାବ୍ୟ ଓ ଏହା ବାମଣାର ସୁଦୃଶ୍ୟ ବର୍ଣନା।

# ଦାଶରଥି ରାଉତ ଓ ଜଗଦାନଂଦ ଦାସ

ଏମାନେ ବାମଂଡାରେ ଶିକ୍ଷକତା କରୁଥିଲେ । ସେମାନଂକର ଅନେକ ପ୍ରବଂଧ ଓ କବିତା ହିତୈଷିଣୀରେ ପ୍ରକାଶ ପାଇଥିଲା।



# SONEPUR DISTRICT



## ସୋନପୁର

| | |
|---|---|
| ଆୟତନ | ୨୨୮୪ ବର୍ଗ କି.ମି. |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୫୪୦୬୫୯ |

୧୯୪୮ ମସିହାରେ ମିଶ୍ରଣ ସମୟରେ ସୋନପୁର କରଦ ରାଜ୍ୟର ଆୟତନ ୯୦୬ ବର୍ଗ ମାଇଲ ଓ ଲୋକ ସଂଖ୍ୟା ୨୨୬୭୫୧ ଥିଲା। ବ୍ରିଟିଶ ସରକାରଙ୍କୁ ଦେୟ ପେସ୍‌କିସ୍ ୧୨୦୦୦ ଟଂକା ଥିଲା।

''ଭୂଷଣ ପ୍ରଭାରେ ଦିଗ ଦୀପ୍ତ କରି
ଯାଇଥିଲେ ସୁରେଶ୍ୱରୀ
ନିରାଜନା କଲେ କର ପଲ୍ଲବରେ
ସୁବର୍ଣ ପ୍ରଦୀପ ଧରି।''

(ଉତ୍କଳ ଲକ୍ଷ୍ମୀ ୧୯୧୪) – ଗଙ୍ଗାଧର



# ସୋନପୁର ରାଜା ନୀଳାଧରଂକ ସଭାପଂଡିତ

# ଭୁବନେଶ୍ୱର ପାଣିଗ୍ରାହୀ ଓ

# ଚଂଦ୍ରମଣି ଦାସ

ସୋନପୁରର ରାଜା ପୃଥ୍ୱୀସିଂହ ୧୮୪୧ରେ ପ୍ରାଣତ୍ୟାଗ କଲାବେଳକୁ ତାଂକ ଜ୍ୟେଷ୍ଠପୁତ୍ର ନୀଳାଧର ଯୁବରାଜଂକ ବୟସ ମାତ୍ର ଚାରି ବରଷ। ତାଂକର ମାଆ ରାଣୀ ଗୁଂଡିଚା ଦେବୀ ନାବାଳକ ତରଫରୁ ରାଜ୍ୟ ପରିଚାଳନାର ଭାର ନେଲେ। ଓଡ଼ିଶାରେ ଇଂରେଜ ଶାସନର ସେତେବେଳକୁ ମୂଳଦୁଆ ଦୃଢ଼ ହୋଇ ନ ଥାଏ। ରାଣୀ ସାହେବା ପୁଅକୁ ବଳବାନ ଓ ବିଦ୍ୱାନ କରି ଗଢ଼ିବାକୁ ଉଦ୍ୟମ କଲେ। ଖେଳରେ ସେ ସମସ୍ତଂକୁ ଟପିଗଲେ। ସକାଳୁ ତାଂକର ଜଳଖିଆ ଥିଲା କୁଟାଏ ଚୁଡ଼ା (ପ୍ରାୟ ଆଠ କି.ଗ୍ରା) ତିନି ଡାଂବି (ଚାରି କି.ଗ୍ରା) ଗୁଡ଼, ଗୋଟିଏ ଶୁଖିଲା ନଡିଆ, ଅଧା କାଂଦି କଦଳୀ ଓ ଅଧା ଡାଂବି (ଅଧା କି.ଗ୍ରା) ଘିଅ। ପହିଲମାନ ଭଳିଆ ଚେହେରା। ବଳ ମଧ୍ୟ ସେମିତି। ଗଡ଼ରେ ଥରେ ରଜାଘରର ଗୋଟିଏ ସ୍ତଂଭ ତିଆରି ଚାଲିଥାଏ। ଯୁବରାଜ ମିସ୍ତ୍ରିକୁ ମଜବୁତ କରି

କାମ କରିବାକୁ ବତାଇଲେ। ନିଜ ବଡ଼େଇ ଦେଖାଇବାକୁ ମିସ୍ତ୍ରି କହିଲା ମଣିମା ଏ କାମକୁ ମଣିଷ କଅଣ ହାତୀଟାଏ ବି ଭାଂଗି ପାରିବନାହିଁ। ଯୁବରାଜ କାଂଧ ଲଗାଇ ଖୁଂଟକୁ ଠେସିଲେ। ଖୁଂଟଟି ଭାଂଗି ତଳେ ପଡ଼ିଲା। ଦୈନିକ ଯେଉଁ ମୁଦ୍‌ଗର ଓ ପଥର ଧରି ସେ ସକାଳେ କୁସ୍ତି କସରତ କରୁଥିଲେ ତାକୁ ତିନିଜଣ ମଣିଷ ଉଠାଇ ଏକ ସ୍ଥାନରୁ ଅନ୍ୟତ୍ର ନେଉଥିଲେ। ବଡ଼ ହୋଇ ସେ ଇଂରେଜମାନଂକ ସହିତ ସଂଧି ସ୍ଥାପନ କଲେ। ଚୁକ୍ତିରେ ସେମାନେ ତାଂକର ଅଭ୍ୟଂତରୀଣ ସାର୍ବଭୌମତ୍ୱ ସ୍ୱୀକାର କଲେ ଓ ତାଂକୁ ରାଜା ବାହାଦୁର ଉପାଧିଦେଲେ। କରଦ ରାଜ୍ୟ ଭାବରେ ତାଂକର ପେସ୍‌କିସ୍ ମଧ୍ୟ ଧାର୍ଯ୍ୟ କରାଗଲା। ରାଜା ନୀଳାଧର କୌଣସି ବିଦ୍ୟାଳୟରେ ପଢ଼ି ନଥିଲେ। ସେ ନିଜ ରାଜ୍ୟ ବାହାରକୁ କେବେ ଯାଇ ନ ଥିଲେ। ମାତ୍ର ନିଜ ମାଆ ଗୁଂଡିଚା ଦେବୀଂକର ତତ୍ତ୍ୱାବଧାନରେ ସେ ଓଡ଼ିଆ, ସଂସ୍କୃତ, ଉର୍ଦ୍ଦୁ ଓ ବଂଗଳା ଭାଷା ଶିକ୍ଷା କରିଥିଲେ।

ସାହେବମାନଂକ ସହିତ ସେ ଇଂରାଜୀରେ ମଧ୍ୟ କଥାବାର୍ତା କରି ପାରୁଥିଲେ। ତାଂକ ରାଜ୍ୟସଭାରେ ଅନେକ ବିଦ୍ୱାନ୍ ପଂଡିତ ଥିବାରୁ ସେ ସାହିତ୍ୟ ଓ ସଂସ୍କୃତି ପ୍ରତି ଆକର୍ଷିତ ହୋଇଥିଲେ। ପଂଡିତମାନଂକ ସାହାଯ୍ୟରେ ସେ ନୀଳାଦ୍ରିନାଥ ଜଗନ୍ନାଥଂକର ପୂଜା ପଦ୍ଧତିମାନ ନୀଳାଦ୍ରି ମହୋଦୟ ନାମକ ଗ୍ରଂଥରେ ଲିପିବଦ୍ଧ କଲେ। ସ୍କଂଦ ପୁରାଣର ପୁରୁଷୋତମ ମାହାତ୍ମ୍ୟର ଅନୁକରଣରେ ଏହା ରଚନା କରାଯାଇଥିଲା। ତାଂକ ମୃତ୍ୟୁ ପରେ ରାଜବାଟିର ପୁସ୍ତକମାନଂକ ମଧ୍ୟରୁ ଏହା ଉଦ୍ଧାର କରାଯାଇ ତାଂକ ପୌତ୍ର ରାଜା ବୀରମିତ୍ରୋଦୟଂକ ଦ୍ୱାରା ୧୯୨୨ରେ ପ୍ରକାଶିତ ହୋଇଥିଲା। ୯ଟି ଅଧ୍ୟାୟରେ ଓଡ଼ିଆ ଲିପିରେ ଏହି କାବ୍ୟ ଲେଖାଯାଇଥିଲା। ଏହା ବାଦେ ପ୍ରାୟ ୪୦୦ ସଂଗୀତ ଓ କେତେକ ହାସ୍ୟରସାତ୍ମକ କବିତା ସେ ରଚନା କରିଥିଲେ, ମାତ୍ର ତାହା ଦୁଷ୍ପାପ୍ୟ। ନୀଳାଧରଂକ ଦରବାରର ଦୁଇ ପ୍ରସିଦ୍ଧ ବିଦ୍ୱାନ୍ ହେଲେ ଚଂଦ୍ରମଣି ଦାସ ଓ ଭୁବନେଶ୍ୱର ପାଣିଗ୍ରାହୀ। ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଚଂଦ୍ରମଣି କୋଟସମଲାଇ ନିକଟ ବାଘପାଲିରେ ନିଜ ଆଶ୍ରମ କରିଥିଲେ। ସେ ଶ୍ରୀକ୍ଷେତ୍ର ଜଗନ୍ନାଥଂକର ପରମ ଭକ୍ତଥାଇ ସୁଧାସାର ଗୀତା, କୃଷ୍ଣସୁଧାମୃତ ଓ ନାରଦଗୀତା କାବ୍ୟମାନ ରଚନା କରିଥିଲେ। ବଉଦରେ ବ୍ରାହ୍ମଣବଂଧରେ ସେ ଜନ୍ମ ହୋଇଥିଲେ। ସେଠାରୁ ସେ ଅନ୍ୟତ୍ର ଯାଇ ସେଠାରେ କିଛିକାଳ କଟାଇବା ପରେ ଦୁର୍ଭିକ୍ଷ ପଡିବାରୁ ବୀରମହାରାଜ ପୁର ପାଖ ବାଘବର ପଳାଇ ଆସିଲେ। ସେଠାରେ ବ୍ରଜବଂଧୁ ଦାସ ଓରଫ ଡେଂଗାବାବାଂକ ସହିତ ତାଂଙ୍କର ସାକ୍ଷାତ ହେଲା। ତାଂକଠାରୁ ସେ ଯୋଗଶିକ୍ଷା କଲେ। ୧୮୫୪ରେ ତାଂକର ଗ୍ରଂଥ କୃଷ୍ଣସୁଧାମୃତରେ ନିଜକୁ ଚଂଦ୍ରଦ୍ୱିଜ ବୋଲି ବର୍ଣ୍ଣନା କରିଥିବା ଏହି ଚଂଦ୍ରମଣି ପରେ ଯୋଗୀଂଦ୍ର ବୋଲାଇଲେ। ତାଂକର

ସୁଧାସାର ଗୀତା, କୃଷ୍ଣସୁଧାମୃତ ଓ ନାରଦ ଗୀତା ନବାକ୍ଷରୀ ଭାଗବତ ବୃତ୍ତରେ ରଚିତ। ଏହି ସମୟରେ ଚୈତନ୍ୟ ମହାପ୍ରଭୁ ଓ ଜଗନ୍ନାଥ ଦାସ ଆଦି ପଂଚସଖାଂକର ଧର୍ମଚେତନାର ବିଶେଷ ପ୍ରଭାବ ଥିଲା। ଚଂଦ୍ରମଣି ତାହାଦ୍ୱାରା ବିଶେଷ ପ୍ରଭାବିତ ହେଲେ। ତାଂକର କାବ୍ୟର  ମୁଖ୍ୟ ନାୟକ କୃଷ୍ଣ। ସେ କେତେବେଳେ ଅନଂତଶାୟୀ ବିଷ୍ଣୁ ଓ କେତେବେଳେ ଅବା ଶୂନ୍ୟ ପୁରୁଷ। ନାରଦଗୀତା ନାରଦ ଓ ଉଦ୍ଧବଂକ ମଧ୍ୟରେ କଥୋପ କଥନ ଉପରେ ଆଧାରିତ। ଏହା ଏକ ଯୋଗଶାସ୍ତ୍ର। ନିଷ୍କାମ ଭକ୍ତିଯୋଗ, ଉତ୍ପତି ଯୋଗ, ନିର୍ଗୁଣ ଭକ୍ତି ଯୋଗ, ଧ୍ୟାନ ଯୋଗ, ହରଣ ଯୋଗ, ସମାଧି ଯୋଗ, ସିଦ୍ଧିଯୋଗ ଓ ପ୍ରଳୟଯୋଗ ଏଥିରେ ବର୍ଣିତ। କାବ୍ୟରେ ଭଗବାନ ବିଷ୍ଣୁ ମୁଖ୍ୟ ନାୟକ। ତାଂଡବ ନୃତ୍ୟ ଓ ଭବତାରକ ତାଂକ ରଚିତ ଅନ୍ୟ ଦୁଇକାବ୍ୟ। ତାଂଡବ ନୃତ୍ୟରେ ବିବିଧ ବାଦ୍ୟଯଂତ୍ର ଦେବତାମାନେ ବାଦନ କରିବା ସହିତ ବିଷ୍ଣୁ ନୃତ୍ୟ କରିଛଂତି। ଭବତାରକରେ ବିଷ୍ଣୁ କୃପା ଫଳରେ ପ୍ରାରବ୍ଧ ବଳରେ ପଶୁପକ୍ଷୀ ଯୋନିରେ ଜନ୍ମଗ୍ରହଣ କରିଥିବା ଇତର ପ୍ରାଣୀମାନେ ଭଗବଦ୍ କୃପା ଲାଭ କରି ମୁକ୍ତି ପାଇବା ଯୋଗ୍ୟ ବୋଲି ଦର୍ଶାଯାଇଅଛି। ଏହି କାବ୍ୟମାନଂକ ବ୍ୟତୀତ ଚଂଦ୍ରମଣି ହଳିଆ ଗୀତ, ଭ୍ରମର ଗୀତ, ବାଳଗୋପାଳ ଚଉତିଶା ଗୁପ୍ତ ଗୋପୀଭାଷା ରଚନା କରିଥିଲେ। ତାହା ମଧ୍ୟରୁ କେବଳ ହଳିଆ ଗୀତ ଉଦ୍ଧାର କରାଯାଇଅଛି। ନିଜକୁ ନିଜ କାବ୍ୟ ନାରଦ ଗୀତାରେ ସେ ମୂର୍ଖ ବୋଲି ବର୍ଣନା କରିଥିଲେ ମଧ୍ୟ ବେଦ ବେଦାଂତ ପାତଂଜଳିଂକର ଯୋଗଶାସ୍ତ୍ର ପଂଚସଖା ବିରଚିତ ସାହିତ୍ୟରେ ତାଂକର ପ୍ରଭୁତ ଜ୍ଞାନ ଥିବାର ତାଂକ ରଚନାରୁ ଜଣାଯାଏ।

ଅନ୍ୟ କବି ଭୁବନେଶ୍ୱର ପାଣିଗ୍ରାହୀ ଉଲୁଂଡା ବ୍ଲକର ଗୌର ଗାଁର ଲୋକ ବୋଲି ବିଶ୍ୱାସ କରାଯାଏ। ଭୁବନେଶ୍ୱର କାତ୍ୟାୟନୀ ଗୋତ୍ର ବ୍ରାହ୍ମଣ ଥିଲେ। ତାଂକ ପିତା କରୁଣାକର ପାଣିଗ୍ରାହୀ ଓ ମାତା ଚଂପାଦେଇ। ତ୍ରିଲୋଚନ ଶତପଥୀ ନାମକ ଜଣେ ବ୍ରାହ୍ମଣ ପୁରୀର ବୀର ରାମଚଂଦ୍ରପୁର ଶାସନରୁ ସୋନପୁର ଆସିଥିଲେ। ରାଜାତାଂକୁ ଉଦୟ ଅସ୍ତଦାନ (ସୂର୍ଯୋଦୟଠାରୁ ସୂର୍ଯାସ୍ତ ପର୍ଯଂତ ଯେତେ ଭୂମି ଗ୍ରହୀତା ପ୍ରଦକ୍ଷିଣ କରିପାରିବ) ଭାବରେ ଗୌର ଗାଁର ଭୂମି ପ୍ରଦାନ କରିଥିଲେ। ଭୁବନେଶ୍ୱର ଏହି ପରିବାରର ଅଂଶ ଥିଲେ। ତାଂକ ବାଲ୍ୟ ଜୀବନର ଶିକ୍ଷା ବିଷୟରେ ଜଣାନାହିଁ। ମାତ୍ର ଅଷ୍ଟପଦୀ ଓ ପ୍ରେମତରଂଗିଣୀ ଗ୍ରଂଥରେ ତାଂକର ରଚନା ଦେଖି ଜଣାଯାଏ ସେ କାଳିଦାସ, ଭବଭୂତି, ଶ୍ରୀହର୍ଷ ଆଦ ସଂସ୍କୃତ କବିମାନଂକର ରଚନା ସହିତ ସୁପରିଚିତ ଥିଲେ ଓ ବିଶ୍ୱକୋଷ ଅମରକୋଷ ଆଦି ପଢ଼ିଥିଲେ। ଓଡ଼ିଆ କବି ଦୀନକୃଷ୍ଣ, ଉପେଂଦ୍ର ଭଂଜ, ଅଭିମନ୍ୟୁ ଓ ଭକ୍ତ ଚରଣଂକର ରଚନାମାନ ସେ ଅଧ୍ୟୟନ କରିଥିଲେ ଓ ରୀତିଯୁଗର ଓଡ଼ିଆ ପଦ୍ୟ ରଚନା ତାଂକର

କାବ୍ୟକୁ ଉପାଦାନ ଯୋଗାଇଥିଲା । ପ୍ରତାପ ରୁଦ୍ର ସିଂହ ଦେଓଂକ ଅମଳରେ ଭୁବନେଶ୍ୱରଂକର ୩ୟ ପୁତ୍ର ନୀଳାଂବର ପାଣିଗ୍ରାହୀ ତାଂକ ରାଜସଭାର ପଂଡିତ ଥିଲେ । ସେ ଦ୍ୱିଜ ନୀଳାଂବର ନାମରେ ପରିଚିତ ଥିଲେ । ଭୁବନେଶ୍ୱର ପାଣିଗ୍ରାହୀ, ଗୋପୀନାଥ ପାଣିଗ୍ରାହୀ ଓ ନିଜର ସମସ୍ତ ରଚନା ଏକତ୍ରିତ କରି ପାଂଡୁଲିପି ପ୍ରସ୍ତୁତ କରିଥିଲେ ମଧ୍ୟ ଏହା ପ୍ରକାଶ ପାଇପାରି ନଥିଲା । ତିରିଶ ଗୋଟି ଛାଂଦରେ ସେ ଓଡ଼ିଆରେ ପ୍ରେମ ତରଂଗିଣୀ କାବ୍ୟ ରଚନାକରି ସେଥିରେ କୃଷ୍ଣ ଓ ଗୋପୀକାମାନଂକର ଅପ୍ରାକୃତ ପ୍ରେମର ବର୍ଣନା କରିଅଛଂତି । ଛାଂଦ ଗୁଡ଼ିକ ୨୪ ଗୋଟି ଭିନ୍ନ ଭିନ୍ନ ବୃତରେ ରଚନା କରାଯାଇଅଛ । କାବ୍ୟଟି ଅଳଂକାରର ଏକ ଅସରଂତି ଭଂଡାର । ପ୍ରେମତରଂଗିଣୀ ବ୍ୟତୀତ ଭୁବନେଶ୍ୱର ଭାଗବତ ମହାତ୍ମ୍ୟ କାବ୍ୟ ଓ ଅଷ୍ଟପଦୀ ମଧ୍ୟ ରଚନା କରିଥିଲେ । ତାଂକର ସମସ୍ତ ରଚନାରେ ରାଧାକୃଷ୍ଣ ପ୍ରେମ ସ୍ଥାନ ପାଇଅଛି । ମାତ୍ର ଚଉବନ ବର୍ଷ ବୟସରେ ରାଜା ନୀଳାଧରଂକ ମୃତ୍ୟୁ ପରେ ପ୍ରତାପରୁଦ୍ରଦେବଂକୁ ରାଜ୍ୟପ୍ରାପ୍ତି ହେଲା ।





# ରାଜା ପ୍ରତାପରୁଦ୍ର ଦେବ ଓ ବଲାଂଗିରର ଚିଂତାମଣିନଂଦ ବିଦ୍ୟାଭୂଷଣ

୧୮୯୧ରେ ୩୮ ବର୍ଷ ବୟସରେ ପିତାଂକ ମୃତ୍ୟୁପରେ ପ୍ରତାପରୁଦ୍ର ସିଂହ ଦେଓ ସୋନପୁର ରାଜଗାଦିରେ ବସିଲେ। ୧୮୫୩ରେ ତାଂକର ଜନ୍ମ। ତାଂକୁ ନଅ ବର୍ଷ ବୟସରେ ସେ ମାତୃହରା ହେଲାରୁ ତାଂକ ପିତାମହୀ ଗୁଂଡିଚା ଦେବୀ ତାଂକୁ ଇଂରେଜ ଶିକ୍ଷା ଦେବାକୁ ଶିକ୍ଷକ ନିଯୁକ୍ତି ଦେଇଥିଲେ। ବିଦ୍ୟାଶିକ୍ଷା କରି ସେ ଓଡ଼ିଆ, ସଂସ୍କୃତ, ହିଂଦି, ବଂଗଳା ସହିତ ଇଂରେଜୀରେ ଦକ୍ଷତା ଲାଭ କଲେ। ମାତ୍ର ସଂସ୍କୃତ ପ୍ରତି ତାଂକର ବିଶେଷ ଆଗ୍ରହ ଥିବାରୁ ସେ ମନୁସ୍ମୃତି, ନାଟ୍ୟକଳା, କର୍ମକାଣ୍ଡ, ସ୍ମୃତିଶାସ୍ତ୍ର ଆଦି ଅଧ୍ୟୟନ କରି ସେଥିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ। କଳାହାଂଡିର ଜେମା ଅମୂଲ୍ୟମଣିଂକୁ ସେ ବିବାହ କଲେ। ରାଣୀ ମଧ୍ୟ ଜଣେ ବିଦୂଷୀ ନାରୀ ଥିଲେ।

ପ୍ରତାପ ରୁଦ୍ର ରାଜା ହେବା ବେଳକୁ ବନମାଳୀ ମିଶ୍ର ଦେୱାନ ଥିଲେ। ରାଜା ତାଂକ ସ୍ଥାନରେ ତ୍ରିଂବକରାଓ ସାଠେ ନାମରେ ଜଣେ ମରହଟ୍ଟା ବ୍ରାହ୍ମଣକୁ ନିଯୁକ୍ତି ଦେଲେ। ମାତ୍ର ରାଜ୍ୟ ଶାସନ ଅତି ପୁରୁଣା ଢଂଗରେ ଚାଲୁଥିବାରୁ ସରକାର କ୍ଷୋଭ ପ୍ରକାଶ କଲେ।

ସେତେବେଳେ ଚିଂତାମଣି ନଂଦ ବିଦ୍ୟାଭୂଷଣ (ଡାକ ନାମ ମଣିନଂଦ) ପାଟଣାରେ ତହସିଲଦାର ଥିଲେ। ସେ ସୋନପୁର ରାଜାଂକ ପରାମର୍ଶଦାତା ଭାବରେ ପଠାଗଲେ। ଜଗଦୀଶ ମହିମ୍ନସ୍ତବ ନାମକ ୨୧ ଶ୍ଳୋକ ବିଶିଷ୍ଟ ଜଗନ୍ନାଥଂକର ସ୍ତବ ସେ ସଂସ୍କୃତରେ ରଚନା କରିଥିଲେ। ଜଗନ୍ନାଥ ମହାପ୍ରଭୁଂକ ପ୍ରାକୃତିକ ବୈଭବ ଓ ଲୀଳା ଏହି ଶ୍ଳୋକମାନଂକରେ ବର୍ଣିତ।

ଓଡ଼ିଶା ଭାଷା ଆଂଦୋଳନ ସମୟରେ ସଂବଲପୁର ହିତୈଷିଣୀର ତା ୬-୩-୧୮୯୫ ସଂଖ୍ୟାରେ କବି ଗଂଗାଧର ଲେଖିଥିଲେ :-

ଚିଂତାମଣି ବିଦ୍ୟାଭୂଷଣ ବସିଛଂତି ନିକଟେ
ପଚାରିଲେ ତାଂକୁ ମୋ କଥା ସବୁ କହିବେ ଭଲେ।

ଭାଷା ରକ୍ଷା ନିମିତ ସବୁ ସଂଭ୍ରାଂତ ଲୋକଂକୁ ନିବେଦନ ପ୍ରସଂଗରେ ମଣିନଂଦଂକୁ ଏକ ନିର୍ଣାୟକ ଭୂମିକା ଦେବା ସମକାଳୀନ ସମାଜରେ ତାଂକର ପ୍ରତିଷ୍ଠା ଓ ଗୁରୁତ୍ୱର ପରିଚାୟକ। ସଂବଲପୁର ଜିଲ୍ଲାରେ ୧୮୭୧ରୁ ୧୮୭୭ ରସେଲ୍ ବଂଦୋବସ୍ତ, ୧୮୮୫ରୁ ୮୯ ନେଦରସୋଲ୍ ଓ ୧୯୦୨ରେ ଡେଓ୍ୱାର ବଂଦୋବସ୍ତ ହୋଇ ଜରିବ ମାପ ଓ ଜମା ଧାର୍ଯ ହୋଇଥିଲା। ମଧ୍ୟପ୍ରଦେଶରେ ଥିବା ମଣିନଂଦ ଏହି ବଂଦୋବସ୍ତରେ ଗୁରୁତ୍ୱପୂର୍ଣ ଅଂଶ ଗ୍ରହଣ କରିଥିବା ଡେଓ୍ୱାର ରିପୋଟରେ ଉଲ୍ଲେଖ ଅଛି। ପରବର୍ତୀ କାଳରେ ସୋନପୁର ଓ କଳାହାଂଡି ବଂଦୋବସ୍ତ ସହିତ ସେ ସଂପୃକ୍ତ ଥିଲେ। ତାଂକ କାର୍ଯଦକ୍ଷତା ଓ ବିଦ୍ୱତ୍ତା ଯୋଗୁ ଦରବାର ତାଂକୁ ବିଦ୍ୟାଭୂଷଣ ଉପାଧିରେ ଭୂଷିତ କରିଥିଲେ।

ସୋନପୁରର ମହାରାଜା ପ୍ରତାପ ରୁଦ୍ରଂକର ରାଜସଭାର ସେ ଅନ୍ୟତମ ବିଦ୍ୱାନ ଥିଲେ। ତାଂକ ବ୍ୟତୀତ ଭ୍ରମର ପାଲିର ମହେଶ୍ୱର ବାବୁ, ନାଥ ପାଣିଗ୍ରାହୀ, ଜଗ ପାଣିଗ୍ରାହୀ, ଚୁଂଚୁପାଲିର ରାମଚଂଦ୍ର ପାଢ଼ି, ଦାମୋଦର ମିଶ୍ର, ସଂବଲପୁର ଜିଲ୍ଲା ଗୋବିଂଦ ପୁରର କୃପାସିନ୍ଧୁ ମିଶ୍ର, ଲେହିଡିର କପିଳ ମହାପାତ୍ର, ପଦ୍ମନାଭ ପୁରୋହିତ ଓ ଚଂଦ୍ରଶେଖର ମିଶ୍ର ବିଦ୍ୟାଳଂକାର ସେହି ରାଜସଭାର ପଂଡିତ ମର୍ଯାଦା ପାଉଥିଲେ। ଚିଂତାମଣି ନଂଦ ୧୮୯୧ରୁ ୧୮୯୪ ପର୍ଯଂତ ନିଜ ପଦବୀରେ ଥିଲେ। ରାଜା ପୁରାତନ ପଂଥୀ ଥିବାରୁ ଏପରିକି ନିଜ ପିଲାମାନଂକୁ ହଇଜା ବସଂତ ପ୍ରତିଷେଧକ ଟୀକା ନେବାକୁ ମନା କରିବାରୁ ଦୀନବଂଧୁ ପଟ୍ଟନାୟକ ଚିଂତାମଣିଂକ ସ୍ଥାନରେ ୧୮୯୪ରେ ଦେଓ୍ୱାନ ଭାବରେ ନିଯୁକ୍ତ ହେଲେ। ଏହାଫଳରେ ଏ ଦିଗରେ କିଛି ପରିବର୍ତନ ଦେଖାଦେଲା। ସରକାର ଦୀନବନ୍ଧୁଂକ ଅମଳରେ ଶାସନର ଉନ୍ନତି ଦେଖି ରାଜାଂକୁ ୧୮୯୯ରେ ରାଜା ବାହାଦୁର ଓ ଦେଓ୍ୱାନ ଦୀନବନ୍ଧୁଂକୁ ରାୟସାହେବ ଉପାଧିରେ ସମ୍ମାନିତ କଲେ ରାଜା ପ୍ରତାପ ରୁଦ୍ର ବ୍ୟକ୍ତିଗତ ଜୀବନରେ

ଆଦର୍ଶ ଚରିତ୍ରର ଥାଇ ଯୁଧିଷ୍ଠିର ନାମରେ ପ୍ରଜାମାନଂକର ପ୍ରିୟ ଥିଲେ। ରାଜ୍ୟର ବୈଷୟିକ ଉନ୍ନତି ବ୍ୟତୀତ ମଂଦିର ନିର୍ମାଣରେ ମଧ୍ୟ ସେ ରାଜକୋଷରୁ ଅର୍ଥ ବ୍ୟୟ କରୁଥିଲେ। ୧୯୦୨ ଅଗଷ୍ଟ ମାସରେ ସେ ପ୍ରାଣତ୍ୟାଗ କଲେ। 'ଶାସ୍ତ୍ର ବିଚାର ପରାଗ' 'ସଦପଂଡିତାନାଂ ପ୍ରିୟ' ଥାଇ ସେ ଜଣେ ଆଦର୍ଶ ନରପତି ଥିଲେ। ପଂଡିତମାନଂକ ମଧ୍ୟରେ ଧର୍ମ କଳହର ସଂଭାବନା ଏଡ଼ାଇବା ଉଦ୍ଦେଶ୍ୟରେ ସେ ପ୍ରଚଳିତ ବିଭିନ୍ନ ସ୍ମୃତିଶାସ୍ତ୍ରମାନଂକରୁ ତଥ୍ୟ ସଂଗ୍ରହ କରି ସ୍ମୃତିଶାସ୍ତ୍ର ନାମରେ ଏକ ଗ୍ରଂଥ ରଚନା କରାଇଥିଲେ ମାତ୍ର ଏହାର ପାଂଡୁଲିପି କାଳକ୍ରମେ ହଜିଗଲା। ପ୍ରତାପରୁଦ୍ର ଓଡ଼ିଆରେ ଚଂଦ୍ରାବତୀ ପରିଣୟ, ଚତୁର୍ଦଶ ପଦୀ ଚୌପଦୀରତ୍ନ ଓ କେତେକ ଚଉତିଶା ମଧ୍ୟ ରଚନା କରିଥିଲେ। ୧୯୧୪ରେ ଚଂଦ୍ରାବତୀ ପରିଣୟ କଟକ ଉତ୍କଳ ସାହିତ୍ୟ ପ୍ରେସରେ ଛପାଯାଇ ପ୍ରକାଶ ପାଇଥିଲା। ଗୋପୀନାଥ ପାଣିଗ୍ରାହୀ ବିଦ୍ୟାରତ୍ନ ଏହି ଗ୍ରଂଥକୁ ସଂଶୋଧନ କରିଥିଲେ। ୧୯୧୮ରେ ପ୍ରକାଶିତ 'ଭକ୍ତି ଉପହାର' କବିତାରେ ସ୍ୱଭାବକବି ଗଂଗାଧର, ପ୍ରତାପରୁଦ୍ରଦେବଂକୁ ଲକ୍ଷ୍ୟକରି ଲେଖିଥିଲେ :-

'' ସ୍ୱଚ୍ଛ ସୁପ୍ରଶସ୍ତ ତୁଂଭ ମାନସ ଦର୍ପଣ
ନ୍ୟାୟ ଧର୍ମ ମୁଖ ଦେଖୁଛଂତି ପ୍ରତିକ୍ଷଣ,
ପବିତ୍ର ହୃଦୟ ତୁଂଭ ଅତ୍ୟଂତ ଉଦାର
ଅଟଇ ପ୍ରିୟ ନିଳୟ ବିନୟ ଦୟାର
ଜ୍ଞାନରେ ଉଜ୍ଜ୍ୱଳ ସେହି ଉନ୍ନତ ହୃଦୟ
କାର୍ଯଚୟ ଦେଉଅଛି ତାର ପରିଚୟ
ଦରିଦ୍ର ପାଳନେ ତୁଂଭେ ସଦା ମୁକ୍ତକର
ବିଜ୍ଞଜନ ଦେଖି କରୁଥାଅ ସମାଦର।

x x x

ପାଇଅଛ ମନୋମତ ଅମାତ୍ୟ ଆପଣ
ବସଂତକୁ ମିଳିଯାଏ ମଳୟ ପବନ
ଦୁର୍ଲଭ ବିଭବ ଦେଇଛଂତି ଭଗବାନ
ପୂଣ୍ୟ ଅନୁରୂପ ଫଳ ଲଭେ ପୁଣ୍ୟବାନ
'ଦୀନବଂଧୁ' ପାଇଅଛ ଶୁଭ ଅବସର
ରଖାଇଣ ରଖିଯାଅ କୀର୍ତି ଅନଶ୍ୱର'' ଇତ୍ୟାଦି।

❑ ❑ ❑



ବୀରମିତ୍ରୋଦୟ



ସୋମଭୂଷଣ

## ମହାରାଜା

# ବୀରମିତ୍ରୋଦୟ

୧୯୪୩ ଅଗଷ୍ଟ ମାସରେ ଓଡ଼ିଶାର ପ୍ରଥମ ବିଶ୍ୱବିଦ୍ୟାଳୟ ଉତ୍କଳ - ପ୍ରତିଷ୍ଠା ହେବାବେଳକୁ ରାଜ୍ୟରେ ଉପାଧ୍ୟୁତର ଶିକ୍ଷା ସୁବିଧା କେବଳ କଟକର ରେଭେନ୍ସା କଲେଜରେ ଥିଲା। ସେଠାରେ ମଧ୍ୟ କେବଳ ଇଂରାଜୀରେ ଏମ.ଏ. ପଢ଼ିବାର ବ୍ୟବସ୍ଥା ଥିଲା। ପରବର୍ଷ ଅବଶ୍ୟ ଓଡ଼ିଆରେ ଏମ.ଏ. ଖୋଲାଗଲା। ମାତ୍ର ତାହା ପୂର୍ବରୁ କେବଳ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ.ଏ ପଢ଼ିବାର ସୁବିଧା ଥିଲା। ପରେ ଏହା ଶାଂତିନିକେତନରେ ଉପଲବ୍ଧ ହେଲା। ଓଡ଼ିଶାର ଅନେକ ଲବ୍ଧ ପ୍ରତିଷ୍ଠ ଓଡ଼ିଆ ଅଧ୍ୟାପକ ରାଜ କିଶୋର ରାୟ, କାହ୍ନୁ ଚରଣ ମିଶ୍ର, ବୈକୁଂଠ ନାଥ ପଟ୍ଟନାୟକ, ରାମଚଂଦ୍ର ମହାପାତ୍ର, ଜୟକୃଷ୍ଣ ମିଶ୍ର, ଲୋକନାଥ ମହାପାତ୍ର ପ୍ରଭୃତି ଏହିଠାରୁ ଓଡ଼ିଆରେ ଏମ୍.ଏ. ପାସ୍ କରିଥିଲେ। ଏମାନଂକ ବ୍ୟତୀତ ଲକ୍ଷ୍ମୀନାରାୟଣ ସାହୁ, କୃଷ୍ଣଚଂଦ୍ର ସେନଗୁପ୍ତ, କୃଷ୍ଣଚଂଦ୍ର ମହାଂତି, ଭାବଗ୍ରାହୀ ମହାଂତି, ଚିଂତାମଣି ଆଚାର୍ଯଂକ ପରି ଓଡ଼ିଶାର ଅନେକ ଲବ୍ଧପ୍ରତିଷ୍ଠ ଶିକ୍ଷାବିତ୍ ମଧ୍ୟ ଘରୋଇ ଭାବରେ ପରୀକ୍ଷା ଦେଇ କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍.ଏ. ପାସ୍ କରିଥିଲେ। ସୋନପୁରର

ମହାରାଣୀ ଲେଡି ପାର୍ବତୀ ଦେବୀ କାଇଜର-ଇ-ହିଂଦ୍‌ଂକ ତରଫରୁ ସୋନପୁର ମହାରାଜା ଏକ ଲକ୍ଷ ଏକସ୍ତରି ହଜାର ପାଂଚଶହ ଟଂକା ଦାନ ଦେବା ଫଳରେ ସରକାରଂକର ରେଭେନ୍‌ସା କଲେଜରେ ୧୯୨୨ରୁ ଇଂରେଜୀରେ ଏମ.ଏ ଶ୍ରେଣୀ ଖୋଲାଗଲା। ଜୁଲାଇ ମାସରୁ ଶ୍ରେଣୀ ଖୋଲିଲା ଓ ଏହି ଅଧ୍ୟାପକଂକ ପଦବିକୁ 'ସୋନପୁର ଚେୟାର୍' ନାମିତ କରାଗଲା। ସେହିପରି ବଂଗାଳୀମାନେ ଓଡ଼ିଆ ଭାଷାର ବିଲୋପ ନିମିତ ଉଦ୍ୟମ କରୁଥିବା ସମୟରେ ସୋନପୁର ମହାରାଜା ଆବଶ୍ୟକ ଅର୍ଥଦାନ ପୂର୍ବକ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ.ଏ. ଶ୍ରେଣୀ ଖୋଲିବାର ପଥ ସୁଗମ କରି କୁଳପତି ଜଷ୍ଟିସ୍ ସାର ଆଶୁତୋଷ ମୁଖାର୍ଜିଂକ ପ୍ରଶଂସା ପାତ୍ର ହୋଇଥିଲେ। ସୋନପୁରର ଏହି ମହାରାଜାଂକର ନାମ ବୀର ମିତ୍ରୋଦୟ ସିଂହ ଦେଓ। ୧୮୭୪ରେ ଋଷି ପ୍ରତିମ ରାଜା ପ୍ରତାପ ରୁଦ୍ରଦେବଂକ ଔରସରୁ ମାତା ଅମୂଲ୍ୟମଣିଂକ ଗର୍ଭରେ ତାଂକର ଜନ୍ମ ହୋଇଥିଲା। ପୂର୍ବ ରାଜା ରାଜ୍ୟ ଶାସନରେ ବୀତସ୍ପୃହ ଥିଲେ। ରାଜାରାଣୀ କାବ୍ୟ ଶାସ୍ତ୍ର ଚର୍ଚାରେ କାଳାତିପାତ କରୁଥିଲେ। ସରଳ ଜୀବନ ଯାପନ ଓ ଉଚ୍ଚ ଚିଂତାଧାରା ସେମାନଂକର ଜୀବନର ଆଦର୍ଶ ଥିଲା। ବୀର ମିତ୍ରୋଦୟଂକର ଶିକ୍ଷା କୌଣସି ଆନୁଷ୍ଠାନିକ ଭାବରେ ହୋଇ ନ ଥିଲା। ବିଦୂଷୀ ମାତା ତାଂକୁ ଶିକ୍ଷା ଦେବା ସହିତ ରାଜ ସଭାର ପଂଡିତ ମାନଂକ ମାଧ୍ୟମରେ ଧର୍ମଶାସ୍ତ୍ର ଓ ସଂସ୍କୃତ ସାହିତ୍ୟ ପ୍ରତି ତାଂକର ରୁଚି ପ୍ରସ୍ତୁତି କରିଥିଲେ। ୧୯୦୨ରେ ପ୍ରତାପ ରୁଦ୍ରଂକ ମୃତ୍ୟୁପରେ ସେ ସୋନପୁର ରାଜ ଗାଦିରେ ଅଭିଷିକ୍ତ ହେଲେ। ୧୯୩୭ ପର୍ଯଂତ ସେ ସୋନପୁରର ମହାରାଜା ଥାଇ ଇଂରେଜ ସରକାରଂକର ଅତି ବିଶ୍ୱସ୍ତ ଦାନଶୀଳ ବିଦ୍ୱାନ ନରପତି ଭାବରେ ସମ୍ମାନିତ ହୋଇଥିଲେ। ଇଂରେଜ ସରକାର ବ୍ରିଟିଶ ସାମ୍ରାଜ୍ୟର ସମ୍ମାନ ଜନକ କେ.ସି. ଆଇ.ଇ Knight Commander of the Order of the Indian Empire ଉପାଧି ପ୍ରଦାନ କରିଥିଲେ। ପୁରୀ ମୁକ୍ତିମଂଡପ ପଂଡିତ ସଭା ତାଂକୁ 'ଧର୍ମନିଧି' ଓ ବଂଗଳାର ବଂଗୀୟ ସଂସ୍କୃତ ମହାମଂଡପ ତାଂକୁ 'ଜ୍ଞାନ ଗୁଣାକର' ଉପାଧିରେ ସମ୍ମାନିତ କରିଥିଲେ। ତାଂକୁ କଲିକତାର ରୟଲ ଏସିଆଟିକ ସୋସାଇଟିର ସଭ୍ୟଭାବେ ମନୋନୀତ କରାଯାଇଥିଲା। କଟକର ଉତ୍କଳ ସାହିତ୍ୟ ସମାଜର ସେ ସଭାପତି ହୋଇଥିଲେ ଓ ବିହାର ଓଡ଼ିଶାର ଗଭର୍ନର ସାର୍ ଉଇଲିଅମ ଗେଟଂକ ଦ୍ୱାରା ପ୍ରତିଷ୍ଠିତ ବିହାର ଓଡ଼ିଶା ରିସର୍ଚ ସୋସାଇଟିର ସେ ଉପ-ପୃଷ୍ଠପୋଷକ ଥିଲେ। ସେ ଦାନରେ କର୍ନ ଭାବରେ ବିବେଚିତ ହେଉଥିଲେ। ତାଂକର ଦରବାର ବହୁ ପଂଡିତ ଓ ଗୁଣୀମାନଂକର ଆସନ ହେତୁ ସୁଧର୍ମା ସଭା ସହିତ ତୁଳନୀୟ ଥିଲା।

ତାଂକର ପୂର୍ବପୁରୁଷରେ କେହି ରାଜ୍ୟ ବାହାରକୁ ଯାଇ ନ ଥିଲେ। ଏହି ପରଂପରା ଭଂଗ କରି ବୀରମିତ୍ରୋଦୟ ୧୯୦୩ରେ ଦିଲ୍ଲୀ ଯାତ୍ରା କଲେ। ୧୯୧୨ରେ

ଭାରତ ସମ୍ରାଟ କଲିକତାରେ ଜାହାଜରେ ଆସି ପହଂଚିବା ବେଳକୁ ତାଂକୁ ଅଭିନଂଦନ ଜଣାଇବାକୁ ଥିବା ନରପତିମାନଂକ ମଧ୍ୟରେ ସେ ପ୍ରଥମ ଥିଲେ। କଟକରେ ଭାଇସରାୟ ଆସି ଦରବାର କଲାବେଳେ ତାକୁ ଉଚ୍ଚ ଆସନ ଦିଆଯାଇଥିଲା। ସାର୍ ଆଂଡ୍ରୁ ଫ୍ରେଜର ମଧ୍ୟପ୍ରଦେଶ ଓ ପରେ ବଂଗଳାର ଲାଟ ଥାଇ ସୋନପୁର ଦରବାର ସହିତ ତିରିଶ ବରଷ ଧରି ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ। ୧୯୦୮ ନଭେଂବରରେ ସେ କଲିକତାରେ ଏକ ଦରବାର କରି ମହାରାଜାଂକର କୀର୍ତି ରାଜି ବର୍ଣନା କରିଥିଲେ। ଏହି ଦରବାରରେ ମୁରସିଦାବାଦର ନବାବ ଓ ବର୍ଧମାନର ମହାରାଜାଧିରାଜଂକଠାରୁ ତାଂକୁ ଉଚ୍ଚତର ଆସନ ଦିଆଯାଇ ତାଂକୁ ମହାରାଜା ଉପାଧି ପ୍ରଦାନ କରାଯାଇଥିଲା। ପରବର୍ତୀ କାଳରେ ୧୯୨୧ ଜାନୁଆରିରେ ବଡ଼ଲାଟ ଲର୍ଡ ଚେମସ ଫୋର୍ଡ ଏହି ମହାରାଜା ଉପାଧିକୁ ତାଂକୁ ପୁରୁଷାନୁକ୍ରମେ ଧାରଣ ଯୋଗ୍ୟ ବୋଲି ପ୍ରଦାନ କଲେ। ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ବୀରମିତ୍ରୋଦୟ ଯୁଦ୍ଧ ଉଦ୍ୟମରେ ବିଶେଷ ସହାୟକ ହୋଇଥିଲେ। ଯୁଦ୍ଧରେ ପାଇକ-ମେହେଂତର ଆଦି ଜନବଳ ସାହାଯ୍ୟ ବ୍ୟତୀତ ସେ ଆଂଭୁଲାନ୍ସ ଗାଡ଼ି, ମେସିନଗନ୍ ଆଦି ସାହାଯ୍ୟ ଓ ଯୁଦ୍ଧ ଋଣ ପାଣ୍ଠିକୁ ବିପୁଳ ଅର୍ଥଦାନ କରିଥିଲେ।

ରାଜ୍ୟ ମଧ୍ୟରେ ସେ ଅନେକ ସଂସ୍କାର ଆଣିଲେ। ରାଜ୍ୟରେ ବଂଦୋବସ୍ତ କରାଇଲେ। ପ୍ରଜାମାନଂକର ସ୍ୱତ୍ୱାସତ୍ତ୍ୱ ନିର୍ଣୟ ନିମିତ ଭୂମିବିଧି ଆଇନ କରାଇଲେ। ରାସ୍ତାଘାଟର ସୁବିଧା କରାଇଲେ। କୃଷିର ସୁବିଧା ଯୋଗାଇଦେଲେ। ଦେୱାନ ପଦବୀ ଉଠାଇ ଦେଇ ସେହି ସ୍ଥାନରେ ୧୯୩୧ ରେ ସେ ନିଜ ମନୋନୀତ ଓ ନିର୍ବାଚିତ ସଭ୍ୟମାନଂକୁ ନେଇ ଏକ ବିଚାର ସମିତି ତାଂକୁ ଦୈନଂଦିନ ରାଜ କାର୍ଯରେ ସହାୟତା ନିମିତ ଗଠନ କଲେ। ଇଂରେଜ ଶାସନ ଅନୁକରଣରେ ସେ ଦେୱାନି ଓ ଫୌଜଦାରି କୋର୍ଟମାନ ପ୍ରତିଷ୍ଠା କଲେ। ପୁଲିସ୍ ସଂସ୍ଥାରେ ସଂସ୍କାର ଆଣିଲେ। ୧୯୩୪ ରେ ରାଜ୍ୟରେ ଗୋଟିଏ ହାଇକୋଟ ଓ ୧୯୩୬ରେ ହଜୁର କୋଟ (ସୁପ୍ରିମ କୋଟ) ପ୍ରତିଷ୍ଠା ଘୋଷଣା କଲେ।

ତାଂକ ପୂର୍ବରୁ ରାଜା ପ୍ରତାପରୁଦ୍ର ଚାଳଛପର ଘରେ ବାସ କରୁଥିଲେ। ବୀରମିତ୍ର ରାଜ୍ୟରେ ନିର୍ମାଣ ଯୁଗ ଆରଂଭ କରି ବୀରମିତ୍ରୋଦୟ ଭବନ (ରାଜଭବନ) ରାଜଭଂଡାର ଦରବାର ମହଲ, ଡାକ ବଂଗଳା ଆଦି ରାଜଧାନୀରେ ପ୍ରଥମେ ନିର୍ମାଣ କଲେ। ପରେ ରାଜ୍ୟ ମଧ୍ୟରେ ଅନ୍ୟ ସ୍ଥାନମାନଂକରେ ଡାକ ବଂଗଳା ଓ ବିଶ୍ରାମାଗାରମାନ ପ୍ରତିଷ୍ଠା କଲେ। ସଂବଲପୁର, ଝାରସୁଗୁଡା, କଟକ, ପୁରୀ, ପରି ସୁଦୂର ସ୍ଥାନମାନଂକରେ ମଧ୍ୟ ସେ ନିଜର ଡାକ ବଂଗଳାମାନ ବ୍ୟବହାର ପାଇଁ

ରଖିଥିଲେ। ହିଂଦୁ ତୀର୍ଥକ୍ଷେତ୍ର ବୃଂଦାବନ ଓ ଗୟାରେ ମଧ୍ୟ ସେ ସାଧାରଣ ଲୋକଂକ ସୁବିଧା ପାଇଁ ନିର୍ମାଣ କାର୍ଯରେ ଅର୍ଥଦାନ କରିଥିଲେ। ରାଜ୍ୟ ମଧ୍ୟରେ ଅନେକ ଦେବ ମଂଦିରର ଜୀର୍ଣସଂସ୍କାରର ଆବଶ୍ୟକତା ଅନୁଭବ କରି ସେ ଏହା ସଂପୂର୍ଣ କରିଥିଲେ। ଏହା ମଧ୍ୟରେ ସୋମନାଥ ମଂଦିର, ଗୋକର୍ଣେଶ୍ୱର ମଂଦିର, ରାମଚଂଦ୍ର, ଖଂବେଶ୍ୱରୀ, ଜଗନ୍ନାଥ, ଭଗବତୀ, ଦୁର୍ଗା ମଂଦିର ଆଦି ଅଂତର୍ଭୁକ୍ତ ଥିଲା। ଏ ସବୁର ନିୟମିତ ମରାମତି ଉଦ୍ଦେଶ୍ୟରେ ସେ ରିପେୟାର ଫଂଡ ସୃଷ୍ଟି କରି ଟ୍ରଷ୍ଟ ମାନ ଗଠନ କରିଥିଲେ। ଜୁବୁଲି ଫଂଡ, ରେଡକ୍ରସ, ପଂଚମ ଜର୍ଜ ସ୍ମୃତି ଫଂଡ ଆଦି ଇଂରେଜ ସରକାରଂକ ପ୍ରଯୋଜିତ ପାଂଠିକୁ ଦାନ ଦେବା ବ୍ୟତୀତ ସେ ୧୯୧୮-୧୯ରେ ଦୁର୍ଭିକ୍ଷ ପ୍ରପୀଡିତ ବଡ଼ଂବା, ଆଠଗଡ, ତାଳଚେର ଆଦି ରାଜ୍ୟମାନଂକୁ ଚାଉଳ ଯୋଗାଇ ଦେଇଥିଲେ। ୧୯୩୩ରେ ଓଡ଼ିଶା ବନ୍ୟା ସାହାଯ୍ୟ ଓ ୧୯୩୪ରେ ବିହାର ଭୂମିକଂପ ସାହାଯ୍ୟ ପାଂଠିକୁ ସେ ଉଦାରତା ସହିତ ଦାନ କରିଥିଲେ।

ମାତ୍ର ସର୍ବୋପରି ଓଡ଼ିଶାର ଶିକ୍ଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ବୀରମିତ୍ରୋଦୟଂକର ଦାନ ଅନନ୍ୟ ଥିଲା। ରାଜ୍ୟରେ ନାରୀଶିକ୍ଷା ଓ ଆଦିବାସୀମାନଂକର ମଧ୍ୟରେ ସାକ୍ଷରତା ବିସ୍ତାର ନିମିତ ସେ ଉଦ୍ୟମରତ ଥିଲେ। ରାଜ୍ୟ ବାହାରେ ମଧ୍ୟ ସେ ଶିକ୍ଷାଦାନ ନିମିତ୍ତ ରାୟପୁର ରାଜକୁମାର କଲେଜ, କଲିକତାର ଆଶୁତୋଷ କଲେଜ ଓ ସିଟି କଲେଜ, ଆଜମିରର ମେୟୋ କଲେଜ,ବନାରସ ଆୟୁର୍ବେଦ କଲେଜକୁ ଅର୍ଥଦାନ କରିଥିଲେ। ପାଟଣା ମିଉଜିଅମ, ପୁରୀ ସଂସ୍କୃତ କଲେଜ, ପୁରୀ ମୁକ୍ତିମଂଡପ ସଭା ଓ ଧର୍ମ ବିପ୍ଳବ ବିଧ୍ୱଂସିନୀ ସଭା କଟକ କ୍ଳବ, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ବ୍ରାହ୍ମଣ ସମିତି, ପୁରୀ କରଣ ସମାଜ, ବ୍ରହ୍ମପୁରର ଉତ୍କଳ ଆଶ୍ରମ, ଦିଲ୍ଲୀ ଇଂଦ୍ରପ୍ରସ୍ଥ ବୈଦ୍ୟ ସଭା, କଲିକତା ସଂସ୍କୃତ ଧର୍ମ ମହାମଂଡଳ, ପାଟଣାର ନିଖିଳ ଭାରତ ପ୍ରାଚ୍ୟ ସମ୍ମିଳନୀ ମଧ୍ୟ ତାଂକର ବଦାନ୍ୟତାର ସୁଯୋଗ ଲାଭ କରିଥିଲେ।

ଓଡ଼ିଶା ସାହିତ୍ୟ ଜଗତରେ ତାଂକର ଅବଦାନ ଚିରସ୍ମରଣୀୟ ହୋଇ ରହିଛି। ଭାରତର ବିଖ୍ୟାତ ବିଦ୍ୱାନ୍‌ମାନଂକ ସହିତ ସେ ସୁସଂପର୍କ ରଖିଥିଲେ ଓ ତାଂକ ରାଜସଭାକୁ ବିଦ୍ୟାଭୂଷଣ ଚିଂତାମଣି ନଂଦ, ବିଦ୍ୟାରତ୍ନ ଗୋପୀନାଥ ପାଣିଗ୍ରାହୀ, କୃପାସିଂଧୁ ମିଶ୍ର ଜ୍ୟୋତି ଷାଳଂକାର, ଆଦିତ୍ୟ ପ୍ରସାଦ ଗୁରୁ କାବ୍ୟତୀର୍ଥ, ପଂଡିତ ଦାମୋଦର ଶାସ୍ତ୍ରୀ ପ୍ରଭୃତି ବିଶିଷ୍ଟ ବିଦ୍ୱାନ ମାନେ ଅଳଂକୃତ କରି ରାଜ୍ୟର ଶୋଭାବର୍ଧନ କରୁଥିଲେ। ବୀରମିତ୍ରୋଦୟଂକ ରାଜତ୍ୱ କାଳରେ ସଂସ୍କୃତ ଓ ଓଡ଼ିଆରେ ଅନେକ ଗ୍ରଂଥ ଅନୁବାଦିତ, ରଚିତ ଓ ପ୍ରକାଶିତ ହୋଇ ତାଂକ ଗୌରବ ବର୍ଧନ କରିଥିଲେ। ଏଗୁଡିକ (୧) ସାମୟିକ ରଚନା: ଅଶ୍ରୁଧାରା ସ୍ମୃତିପୂଜା ପୂଜାଡାଲା ବୀରମିତ୍ରୋଦୟ ଅଂତେଷ୍ଟି

ଆଦି (୨) ଐତିହାସିକ ରଚନା: ବିଜୟ ଚଂଦ୍ର ମଜୁମଦାରଂକର (Orissa in the making) କୁମାର ଜନ୍ମୋତ୍ସବ, ଏକାଦଶୀ ଉଦ୍‌ଯାପନ, ସୋନପୁର ରାଜ ବଂଶାନୁ ଚରିତମ ଆଦି । (୩) ଜୀବନ ଚରିତ Chauhan Ruler of Sonepur ସଦ୍‌ଚରିତ ସମାଦର । (୪) କାବ୍ୟ (୫) ନାଟକ (୬) ଉପନ୍ୟାସ (ଭଗ୍ନକଂକଣ ନୀଳକୁଂତଳ) (୭) ସଂଗୀତ ଓ ଜଣାଣ (୮) ଭ୍ରମଣ ସାହିତ୍ୟ (୯) କୃଷି (୧୦) ଜ୍ୟୋତିଷଶାସ୍ତ୍ର (୧୧) ବିବିଧ ରଚନା (୧୨) ଆୟୁର୍ବେଦ (୧୩) ସ୍ମୃତି (୧୪) ଅନୁବାଦ ଓ (୧୫)ବିବିଧ ସାହିତ୍ୟ ଭାବରେ ଶ୍ରେଣୀ ବିଭାଗ କରାଯାଇପାରେ । ପ୍ରକାଶନର ବିବିଧତା ନିମ୍ନଲିଖିତ ତାଲିକାରୁ ଜଣାଯିବ।

ସ୍ତୋତ୍ର ତରଂଗିଣୀ ୧୮୯୩ ରତ୍ନାବଳୀ ୧୮୯୪ ଅଭିଜ୍ଞାନ ଶାକୁଂତଳଂ ନାଟକ ୧୮୯୯ ସଂଗୀତ କୁସୁମାଂଜଳି ୧୯୦୦ ଚଂଦ୍ରପ୍ରଭା କାବ୍ୟ ୧୯୦୨ ବିକ୍ରମୋର୍ବଶୀ ୧୯୧୦ ସ୍ୱର୍ଣ୍ଣପୁର ବେଢ଼ା ପରିକ୍ରମା ୧୯୧୦ ଋତୁ ସଂହାର ୧୯୧୫ ଭଗ୍ନକଂକଣ ଉପନ୍ୟାସ ୧୯୨୦ ଦୁଇ ଖଂଡରେ ନୈଷଧ ଚରିତ ୧୯୨୩ ଉଦାହରଣ ଶ୍ଳୋକ ମଂଜରୀ ୧୯୨୪ ଅନଂଗ ରଂଗିଣୀ ୧୯୨୫ ସଂଗୀତ ରତ୍ନହାର ୧୯୨୫ ନୀଳକୁଂତଳା ଉପନ୍ୟାସ, ୧୯୨୫ ଅଷ୍ଟପଦୀ, ୧୯୨୬ ଦଶକୁମାର ଚରିତ, ୧୯୨୮ ଶିଶୁପାଳ ବଧ, ୧୯୨୮କାଳିକା ପୁରାଣ, ୧୯୨୯ ଉତ୍ତର ରାମଚରିତ କାବ୍ୟ ୧୯୩୦ ସଂଗୀତ ବଲ୍ଲରୀ, ୧୯୩୧ କୃଷ୍ଣ ପ୍ରେମୋଦୟ ଚଂପୂ ଏବଂ ସଂଗୀତ ସୁଧାକର ୧୯୩୩।

ସଂଗୀତ ମିତ୍ରୋଦୟ ୧୯୩୪, ସୁବର୍ଣ୍ଣମେରୁ, ଶତକର୍ମ, ସ୍ୱର୍ଣ୍ଣପୁର ମହାରାଜା ଗୃହକୃତ୍ୟ ଚଂଦ୍ରିକା ୧୯୩୭ ଭାରତ ଭ୍ରମଣ, ୧୯୩୭ ଜମିଦାରୀ ଦ୍ୱାଜିବ-ଉଲ-ଅର୍ଜ ୧୯୧୦ ଭୂମିବିଧି ଓ ବିବିଧ ବିଧି ୧୯୧୫।

ବୀରମିତ୍ରୋଦୟ ଜୀବନର ପ୍ରାରଂଭରେ ଚଂଦ୍ରପ୍ରଭା କାବ୍ୟ (୧୯୧୦) ଅନଂଗ ରଂଗିଣୀ (୧୯୦୫) ଓ ଅଷ୍ଟପଦୀ (୧୮୯୬) ନାମକ ତିନିଗୋଟି କାବ୍ୟ ରଚନା କରିଥିଲେ। ମହାରାଣୀ ପାର୍ବତୀ ଦେବୀ ମଧ୍ୟ ୧୯୨୮ ରେ ସ୍ୟମଂତକ ମଣି ଓ ସ୍ୱର୍ଗତ ରାଜକୁମାର ସୋମଭୂଷଣ (୧୮୯୬-୧୯୧୮) ଗଜେଂଦ୍ର ମୋକ୍ଷଣ କାବ୍ୟ ୧୯୦୭ ରେ ରଚନା କରିଥିଲେ। ଦରବାରର ଅନ୍ୟ କବିମାନେ ମଧ୍ୟ ନିଜ ରଚନା ମାଧ୍ୟମରେ ଓଡ଼ିଆ ଓ ସଂସ୍କୃତ ସାହିତ୍ୟକୁ ଋଦ୍ଧିମଂତ କରିଥିଲେ। ବୀରମିତ୍ରୋଦୟ ଭଗ୍ନ କଂକଣ ଓ ନୀଳକୁଂତଳ ନାମରେ ଦୁଇଟି ଉପନ୍ୟାସ ରଚନା କରିଥିଲେ। ପ୍ରସିଦ୍ଧ ସଂସ୍କୃତକାବ୍ୟ ନୈଷଧେୟ ଚରିତ, ଶିଶୁପାଳ ବଧ, ଋତୁସଂହାର, ଉତ୍ତରରାମ ଚରିତ,

କାଳିକା ପୁରାଣ ବ୍ୟତୀତ ସଂଗୀତ ମିତ୍ରୋଦୟ, ସ୍ମୃତି ଚିନ୍ତାମଣି ଆଦି ଗ୍ରଂଥ ମାନଂକର ଭୂମିକା ଲେଖି ସେ ନିଜ ପାଂଡିତ୍ୟର ସ୍ୱାକ୍ଷର ଛାଡ଼ି ଯାଇଅଛଂତି। ମହାରାଣୀ ପାର୍ବତୀ ଦେବୀ ମଧ୍ୟ ୧୯୨୯ରେ ୬୬ ପଦ ବିଶିଷ୍ଟ ହଂଭା ଗୀତ ରଚନା କରି ପ୍ରକାଶ କରିଥିଲେ। ବିବିଧ ଦେବଦେବୀମାନଂକ ଉଦ୍ଦେଶ୍ୟରେ ଏହା ରଚିତ। ଅନେକ ସ୍ତୋତ୍ର , ଜଣାଣ, ପ୍ରାର୍ଥନା, ସ୍ୱର୍ଣ୍ଣପୁର ଗୁଣାଦର୍ଶ, ରତ୍ନ ସିଂହାସନ ପ୍ରଶସ୍ତି, ମହା ରୁଦ୍ର ଯଜ୍ଞ, ପାଣି ଗ୍ରହଣ ପାଦପ, ଉତ୍ସବ ରଂଗିଣୀ ଚଂପୂ, ଶ୍ୟେନ ଗୃହ, ପୁରଶ୍ଚରଣ ବର୍ଣ୍ଣନା, ଚଂପୂ ବ୍ରତ ଚରିତ, କୁମାର ଜନ୍ମୋତ୍ସବ ଗଜେଂଦ୍ର ମୋକ୍ଷଣ, ମଂଗଳା ଚରଣ, ବିଘ୍ନୋଦ୍ଧରଣ କାବ୍ୟମାନଂକରେ ଦେଖିବାକୁ ମିଳେ।

ସଂଗୀତ, ସାହିତ୍ୟ, ସଂସ୍କୃତି ବ୍ୟତୀତ ରାଜ୍ୟର ଆଇନ ବ୍ୟବସ୍ଥା ଶୃଙ୍ଖଳିତ କରାଯାଇ ଭୂମି ବିଧି ଓ ବିବିଧ ବିଧିରେ ଦର୍ଶାଯାଇଥିଲା। ଇଂରେଜ ଶାସନ ଅନୁକରଣରେ ସବୁ ଆଇନ ରାଜ୍ୟରେ ପ୍ରଚଳିତ ବୋଲି କୁହାଯାଉଥିଲା। ଜ୍ୟୋତିଷ ଶାସ୍ତ୍ର ଉପରେ ଆଧାରିତ ଗ୍ରଂଥମାନ ଚକ୍ରସରମ, ସତ ପଂଚାଶିକ, ମିତ୍ରୋଦୟ ପଂଜିକା, ଆୟୁର୍ବେଦ ଉପରେ ଆୟୁର୍ବେଦ ରତ୍ନମାଳା ଦରବାର ପକ୍ଷରୁ ପ୍ରକାଶିତ ହୋଇଥିଲା। ଓଡ଼ିଆ ସାହିତ୍ୟ ଉପରେ ପାଠ୍ୟପୁସ୍ତକର ଅଭାବ ଦୂର କରିବା ଉଦ୍ଦେଶ୍ୟରେ ସେ ତାଂକର ଆଶ୍ରିତ ବିଜୟଚଂଦ୍ର ମଜୁମଦାରଂକ ଦ୍ୱାରା ଓଡ଼ିଆ ସାହିତ୍ୟର ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ Typical Selection from Oriya literature ୧୯୨୧ରେ ୩ଖଂଡରେ ପ୍ରକାଶ କରାଇଥିଲେ ଓ ଏହା କଲିକତା ବିଶ୍ୱବିଦ୍ୟାଳୟରେ ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିଲା। ୩ ଖଂଡରେ ସମାପ୍ତ ସ୍ୱର୍ଣ୍ଣପୁର ମହାରାଜା ଗୃହକୃତ୍ୟ ଚଂଦ୍ରିକାରେ, ୧୨ ଗୋଟି ସଂକ୍ରାଂତି ଜଗନ୍ନାଥ ମହାପ୍ରଭୁଂକର ୧୨ଟି ଯାତ୍ରା, ଲିଂଗରାଜ ମହାପ୍ରଭୁଂକର ୧୫ଟି ଯାତ୍ରା ଓ ବିଭିନ୍ନ ପର୍ବପର୍ବାଣିର ପୂଜାପଦ୍ଧତି ଲିପିବଦ୍ଧ କରାଯାଇଅଛି। ତାଂକ ପିତାଂକ ଦ୍ୱାରା ରଚିତ, ଗଦାଧର କାଳସାର, କାଳପ୍ରଦୀପ, ନିର୍ଣ୍ଣୟ ସିନ୍ଧୁ ଆଦି ସ୍ମୃତିଗ୍ରଂଥ ଉପରେ ଆଧାରିତ, ସ୍ମୃତି ସଂହିତା ଭାରତର ବିଖ୍ୟାତ ପଂଡିତ ମାନଂକର ମତାମତ ବିଚାରକୁ ନେଇ ୧୯୩୭ରେ ପ୍ରକାଶ ପାଇଥିଲା। ବାମଂଡା ଦରବାର ଆନୁକୂଲ୍ୟରେ ଦେବଗଡରୁ ସଂବଲପୁର ହିତୈଷିଣୀ ପ୍ରକାଶ ପାଉଥିଲା। ନିଜେ ସେହିପରି 'ବୈତରଣୀ' ନାମକ ପତ୍ରିକା ପ୍ରକାଶନ ଦାୟିତ୍ୱ ନେଲେ। କବି ଗଂଗାଧର ମେହେରଂକୁ ତାଂକ ପାଉଥିବା ବେତନର ଦୁଇଗୁଣ ଭତାନେଇ ଏହାର ସଂପାଦନା ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ ମଧ୍ୟ କବି ଏହା ପ୍ରତ୍ୟାଖ୍ୟାନ କରିଥିଲେ।

କାଳିଦାସ, ଶ୍ରୀହର୍ଷ, ଭବଭୂତି, ଦଣ୍ଡି,ମାଘ, ମାର୍କଂଡେୟ, ଜୟଦେବ ଆଦି ସଂସ୍କୃତର ଅମର କବିମାନଂକର ରଚନାର ଅନୁବାଦ ପ୍ରକାଶନ ତାଂକର ଉଲ୍ଲେଖଯୋଗ୍ୟ କୃତିତ୍ୱ।

ମହାରାଣୀ ପାର୍ବତୀ ଦେବୀଂକର ଓଡ଼ିଶା ସାହିତ୍ୟକୁ ଅବଦାନ ମଧ୍ୟ ଉଲ୍ଲେଖନୀୟ। କବିତା ମନୋରମା, ସୁଲୋଚନା ଦେବୀଂକର ରଚିତ ବନମଲ୍ଲୀ, ପଂଡିତ ଆଦିତ୍ୟ ପ୍ରସାଦ ଗୁରୁଂକର ରଚିତ କୁଟୀର ବାସିନୀ, ଲକ୍ଷ୍ମୀ ନାରାୟଣ ସାହୁଂକର ସ୍ତ୍ରୀ ଶିକ୍ଷା ତାଂକର ଅର୍ଥ ସାହାର୍ଯରେ ପ୍ରକାଶ ପାଇଥିଲା। ସେ ଭକ୍ତି କାବ୍ୟର ଅନୁବାଦ କରିଥିଲେ। ୧୯୩୨ ରେ ପୁରାଣ କଥାସାର ନାମକ ନିଜର ଗଦ୍ୟ ରଚନା ପ୍ରକାଶ କରିଥିଲେ। ବୀର ମିତ୍ରୋଦୟଂକ ଆନୁକୂଲ୍ୟରେ ୫୨୩ ଶ୍ଳୋକ ବିଶିଷ୍ଟ ଉଦାହରଣ ଶ୍ଳୋକ ମଂଜରୀ ୧୯୨୪ ରେ ପ୍ରକାଶିତ ହୋଇଥିଲା। "ବହୁଶାସ୍ତ୍ର ଜ୍ଞାନ ବାରିଧି ମଂଥିତିବାକ୍ୟ" ନାମରେ ଏହି ସଂକଳନ ବର୍ଣିତ ହୋଇଥିଲା। ସଂକ୍ଷେପରେ କହିବାକୁ ଗଲେ ସୋନପୁର ଦରବାର ମହାରାଜା ବୀର ମିତ୍ରୋଦୟଂକ ରାଜତ୍ୱ କାଳରେ ସାହିତ୍ୟ ଓ ସଂସ୍କୃତି ରକ୍ଷା ଦିଗରେ ଅଭୁତପୂର୍ବ ଉଦ୍ୟମ କରି ସଫଳତା ଲାଭ କରିଥିଲେ।

ପୂର୍ବାଂଚଳ ନରପତିମାନଂକ ମଧ୍ୟରେ ବୀର ମିତ୍ରୋଦୟ ଶ୍ରେଷ୍ଠ ଧନୀବୋଲି ଗୃହୀତ ହୋଇଥିଲେ। ମୟୂରଭଂଜ ରାଜ୍ୟ ପେସକିସ ବାବଦରେ ମାତ୍ର ଏକ ହଜାର ଟଂକା ଦେଉଥିବା ବେଳେ କ୍ଷୁଦ୍ର ସୋନପୁରର ବାର୍ଷିକ ଦେୟ ୧୨ ହଜାର ଟଂକା ଥିଲା। ନିଜର ଗୁରୁତ୍ୱ ଦର୍ଶାଇବାକୁ ଏହା କରାଯାଇଥିଲା। ଲକ୍ଷଲକ୍ଷ ଟଂକା ରାଜାଂକର ବିଭିନ୍ନ ସୂତ୍ରରୁ ଆୟ ଥିଲା। ଏହା କିପରି ସଂଭବ ହୋଇଥିଲା ତାହା ଆଲୋଚନା କଲେ ରାଜ୍ୟର ଦୀନହୀନ ପ୍ରଜାଂକର ଦୁଃଖ ଅପନୋଦନ ନିମିତ ସାମାନ୍ୟତମ ଉଦ୍ୟମ ମଧ୍ୟ ଦେଖିବାକୁ ମିଳେ ନାହିଁ। ମୋଗଲବଂଦୀ ଅଂଚଳରେ ଗଭର୍ନରଂକର ପରାମର୍ଶଦାତା ଥିବା କନିକା ରାଜାଂକର ରାଜ୍ୟ (ଜମିଦାରି) ରେ ଚଉଷଠି ପ୍ରକାର କର ଆଦାୟ ହେଉଥିବା ଓ ପ୍ରଜାମାନଂକର ଦୁଃଖ ଶୁଣାଯାଉ ନଥିବା ଅଭିଯୋଗରେ ଆନଂଦ ଚଂଦ୍ର ଜେନା ନାମରେ ଜଣେ ସାଧାରଣ ବ୍ୟକ୍ତି 'ଦୁଃଖିନୀ କନିକା' ପୁସ୍ତକ ୧୯୨୨ରେ ପ୍ରକାଶ କରି ଦେଶରେ ଚହଳ ପକାଇ ଦେଇଥିଲେ। ଫଳରେ ପ୍ରଜାମାନଂକର ଦୁଃଖ ଅନେକ ପ୍ରକାର ଲାଘବ କରାଯାଇଥିଲା। ମାତ୍ର ସୋନପୁର ରାଜ୍ୟରେ ପଂଡିତମାନେ 'ସର୍ବେଗୁଣାଃ କାଂଚନମାଶ୍ରୟଂତି' ନ୍ୟାୟରେ ରାଜାନୁଗ୍ରହ ଉପରେ ପ୍ରତିଷ୍ଠିତ ଥିଲେ। ରାଜାଂକର ଭିତରିଆମାନେ ସବୁ ପ୍ରକାର ଲୋକଂକ ଉପରେ ତାଂକୁ ତଥ୍ୟ ଯୋଗାଉଥିଲେ। ରାଜ୍ୟ ମଧ୍ୟରେ ଶାସନ ସମାଲୋଚନାର କୌଣସି ସୁଯୋଗ ନ ଥିଲା। କଲିକତା କଟକ ବା ଓଡ଼ିଶାର ଅନ୍ୟଠାରୁ ଆସୁଥିବା ବୁଦ୍ଧିଜୀବୀମାନେ ମଧ୍ୟ ରାଜାନୁଗୃହୀତ ହୋଇ ଜନତାର ସୁଖଦୁଃଖ ଅନୁଧ୍ୟାନ କରିବାର ଅବକାଶ ପାଉ ନ ଥିଲେ। ଯୌବନରେ ରାଜା ବୀରମିତ୍ରୋଦୟ ନିଜ ସ୍ୱର୍ଗତ ପିତାଂକ ଉଚ୍ଚ ଚିଂତାଧାରା ଓ ସରଳ ଜୀବନ ଯାପନ ଫଳରେ ଆର୍ଥିକ ଦୁରବସ୍ଥା ଆଖିରେ ଦେଖିଥିଲେ। ବନାରସର ଜଣେ ବ୍ୟବସାୟୀଠାରୁ ଧାରରେ ମାଲ ନେଇ ପରିଶୋଧ କରିବାକୁ ଅକ୍ଷମ ଥିବାବେଳେ ମହାରାଣୀ ତାଂକ

ମର୍ଯାଦା ରକ୍ଷା କରିଥିଲେ। ପୁରୀରୁ ଆଗତ ଜଣେ ବ୍ରାହ୍ମଣଂକୁ ନିଜ ପୁଅର ବ୍ରତୋପନୟନ ନିମିତ ସାହାଯ୍ୟ କରିବାକୁ ଅସମର୍ଥ ଥାଇ ରାଜା ପ୍ରତାପରୁଦ୍ର ଉପବାସ କରିଥିଲେ। ସେ ନିଜେ ଚାଳ ଘରେ ବାସ କରୁଥିଲେ ମଧ୍ୟ ତାଂକର ଅବସ୍ଥାପନ୍ନ ପ୍ରଜାମାନେ କୋଠାଘର କରି ରହୁଥିଲେ। ରାଜଗାଦି ପାଇବାପରେ ୧୯୦୩ରେ ସେ ଦିଲ୍ଲୀ ଯିବା ସମୟରେ ରାଜକୋଷର ଅର୍ଥାଭାବ ଦୃଷ୍ଟେ ବୀର ମିତ୍ରୋଦୟ ମନମୁଂଡା (ବଉଦ)ର ଜଣେ ଢୋଡା ବ୍ୟବସାୟୀଂକ ଠାରୁ ପଚିଶ ହଜାର ଟଂକା କରଜ କରିଥିଲେ। ଏସବୁ ତାଂକ ଉପରେ ମନସ୍ତାତ୍ତ୍ୱିକ ପ୍ରଭାବ ପକାଇ ତାଂକୁ ଧନ ଅର୍ଜନକୁ ରାଜତ୍ୱର ପ୍ରଧାନ ଲକ୍ଷ୍ୟ ବୋଲି ଶିକ୍ଷା ଦେଉଥିଲା। ବୀରମିତ୍ରୋଦୟ ଇଂରେଜ ଶାସକମାନଂକୁ ସଂତୁଷ୍ଟ କରିବାର କଳା ସଂପୂର୍ଣ ଆୟତ କରିଥିଲେ। ଗଭର୍ନର, ପଲିଟିକାଲ ଏଜେଂଟ ଓ ଭାଇସରାୟଂକର ସଚିବ ଆଦି ସବୁ ପ୍ରମୁଖ କର୍ମକର୍ତାଂକୁ ସେ ନିଜର ପ୍ରାଧାନ୍ୟ ସୂଚିତ କରାଇ ସେମାନଂକର ଆଶାନୁରୂପ କାର୍ଯ ସଂପନ୍ନ କରୁଥିଲେ। ସେମାନଂକର ଯୁଦ୍ଧ ଉଦ୍ୟମରେ ଶକ୍ତି ବହିର୍ଭୂତ ସାହାଯ୍ୟ, ଉଚ୍ଚ ଇଂରେଜ ରାଜ କର୍ମଚାରୀମାନଂକର ପ୍ରତିମୂର୍ତି ନିର୍ମାଣ, ବ୍ରିଟିଶ ଅନୁଷ୍ଠାନମାନଂକୁ ଦାନ, ରାଜ୍ୟର ପ୍ରଧାନ ପ୍ରାସାଦମାନ ବିଲାତି ସାହେବମାନଂକର ନାମରେ ଉତ୍ସର୍ଗ ତାଂକୁ ସେମାନଂକର ପ୍ରିୟ ପାତ୍ର କରି ରଖିଥିଲା। ସେ ଅତି ବିଶ୍ୱସ୍ତ, ଜ୍ଞାନୀ, କର୍ମଦକ୍ଷ ଓ ପ୍ରଜାବତ୍ସଳ ଭାବରେ ସେମାନଂକ ଚକ୍ଷୁରେ ନିଜକୁ ପ୍ରତିପାଦିତ କରୁଥିଲେ। ପ୍ରଥମ ବିଶ୍ୱଯୁଦ୍ଧ ଶେଷବେଳକୁ ସେ ଯୁଦ୍ଧଋଣ ପାଂଠିରେ ପାଂଚଲକ୍ଷରୁ ଅଧିକା ଟଂକା ଖଟାଇ ସାରିଥିଲେ। ଓଡ଼ିଶା ରାଜାମାନଂକ ତରଫରୁ ଦାନ କରାଯାଉଥିବା ଯୁଦ୍ଧ ବିମାନ ପାଣ୍ଠି ପାଇ ସେ ୮୬ ହଜାରରୁ ଅଧିକ ଟଂକା ଦାନ କରିଥିଲେ। ଯୁଦ୍ଧ ଶେଷରେ ଭାରତସମ୍ରାଟ ତାଂକୁ ଉଚ୍ଚ ପ୍ରଶଂସା କରି ସାମ୍ରାଜ୍ୟର କୃତଜ୍ଞତା ଜଣାଇଥିଲେ।

ଏସବୁ ରାଜବୈଭବର ଧନ ପ୍ରଜାମାନଂକଠାରୁ ଆଦାୟ କରିବାକୁ ବୀରମିତ୍ରୋଦୟ ନାନା ପ୍ରକାର ଉପାୟ ଅବଲଂବନ କରିଥିଲେ। ଇତିହାସରେ ସେ ସ୍ୱୟଂ ଏକ ପ୍ରହେଳିକା ହୋଇ ରହିଗଲେ। ରାଜକୋଷ ପୂର୍ଣ ହେଲା ମାତ୍ର ରାଜ୍ୟର ପ୍ରଜାମାନେ ଦରିଦ୍ର ଭାବରେ ଜୀବନଯାପନ କରିବାକୁ ବାଧ୍ୟ ହେଲେ। ପ୍ରଜାମାନେ ପକ୍କାଘର ତିଆରି କରିବାକୁ ଅନୁମତି ଲୋଡୁଥିଲେ, ଏହା ତାଂକ ଆର୍ଥିକ ସ୍ୱଚ୍ଛଳତାର ପ୍ରମାଣ ବୋଲି ଧରାଯାଇ ତାଂକଠାରୁ ନାନା ପ୍ରକାର କର ଅସୁଲ କରାଯାଉଥିଲା। ଜମିପାଇଁ ଖଜଣା, ହଳପାଇଁ କର, ପଶୁପାଇଁ ଲାଙ୍ଗୁଡକର, ଚୁଲିକର, ବିବାହ କର, ଧୋବା ଲୁଗା କାଚିବାକୁ ପାଉଁଶକର, କୋଇଲା ପ୍ରସ୍ତୁତ ପାଇ କର, ଜଂଗଲରେ ପଶୁ ଚରାଇବା ପାଇଁ କର, ଛାଜଣି ଓ ବାଉଁଶ ପାଇଁ କର ଆଦି ମନୁଷ୍ୟ କଳ୍ପନା କରି ପାରୁଥିବା ସବୁପ୍ରକାର

ସଂଭାବ୍ୟ ପାଉଣା ପ୍ରଜାଂକଠାରୁ ଅସୁଲ କରାଯାଉଥିଲା। ଦରଖାସ୍ତ ଉପରେ କୋଟଫି ଅସୁଲ ହେଉଥିବା ବେଳେ ସାକ୍ଷାତ ନିମିତ ରାଜା ଅଲଗା ଫିଜ ନେଉଥିଲେ। ରାଜା ରାଜ୍ୟ ବାହାରକୁ ଗଲେ ଏହାର ଖରଚ ପ୍ରଜାମାନଂକଠାରୁ ଅସୁଲ ହେଉଥିଲା। ରାଜ ପରିବାରରେ ଜନ୍ମ, ମୃତ୍ୟୁ, ବିବାହ, ବ୍ରତ ଶୁଭାଶୁଭ କର୍ମ ନିମିତ ପ୍ରଜାମାନେ ଅର୍ଥଦାନର ବ୍ୟବସ୍ଥା ଥିଲା। ବଢ଼େଇ, କମାର, ଧୋବା ମୋଚି, କୁଂଭାର ଆଦି ଗ୍ରାମ୍ୟ କାରିଗରମାନେ ମାଗଣାରେ ରାଜାଘରର ସେବା ଖଟୁଥିଲେ। ଚଇତମାସ ମଂଗଳବାର, ମାର୍ଗଶିର ଗୁରୁବାର, ପ୍ରତ୍ୟେକ ସଂକ୍ରାଂତି, ଗୋବର୍ଧନ ପୂଜା ଆଦି ଉତ୍ସବ ଓ ପର୍ବପର୍ବାଣି ଉପଲକ୍ଷେ ପ୍ରଜାମାନେ ମାଗଣାରେ ଧାନ, ଚାଉଳ, ମୁଗ, ବିରି, ଚୁଡା, ପନିପରିବା, ଦୁଧଦହି ଘିଅ ଯୋଗାଇବାକୁ ବାଧ୍ୟ ଥିଲେ। ଜଂଗଲରେ ନିଆଁ ଲିଭାଇବା, ରାସ୍ତାତିଆରି କରିବା, ସରକାରୀ ଛପର ଘରମାନଂକର ଛପର କରିବା କାମରେ ଲଗାଯାଇ ସେମାନେ ମାଗଣାରେ ଖଟୁଥିଲେ। ସରକାରୀ କର୍ମଚାରୀ ଗସ୍ତରେ ଗଲେ ସେମାନଂକୁ ମାଗଣାରେ ଖାଦ୍ୟଦ୍ରବ୍ୟ ଯୋଗାଇବା, ସେମାନଂକର ହୁକୁମ ତାମିଲ କରିବା ପ୍ରଜାମାନଂକର ନିର୍ଦ୍ଧାରିତ କର୍ତବ୍ୟ ଥିଲା। ରାଜ୍ୟରେ ଚଉକିଦାର, ଝାଂକର ଆଦି ଶାଂତି ଶୃଙ୍ଖଳା ରକ୍ଷା କାର୍ଯରେ ନିୟୋଜିତ କର୍ମଚାରୀମାନଂକର ବେତନ ବାବଦରେ ପ୍ରଜାମାନେ ଅମଳ ସମୟରେ ଫସଲର ଏକାଂଶ ଦାଖଲ କରୁଥିଲେ।

ଫସଲ ରାଜାଂକ ଦ୍ୱାରା ନିଯୁକ୍ତ ଲୋକକୁ ବିକ୍ରି କରାଯିବା, ଗଛ, ଖଣି, ବାଲି ଆଦି ଉପରେ ପ୍ରଜାର ନିଜ ବ୍ୟବହାର ନିଷିଦ୍ଧ ଥିବା ଫଳରେ ଏହା ଦରବାରର ଲାଭଜନକ ହେଉଥିଲା। ନୂଆ ଗ୍ରାମ ପ୍ରଧାନ ନିଯୁକ୍ତି ପାଇଲେ ରାଜାଂକୁ ସେ ଅର୍ଥ ସଲାମି ଦେଉଥିଲା। ଅସାଧୁ ମହାଜନମାନଂକର କବଳରୁ ପ୍ରଜାମାନଂକୁ ରକ୍ଷା କରିବା ପାଇଁ ରାଜ୍ୟରେ ପଚିଶ ଗୋଟି ଉଧାର ଭଂଡାର ଖୋଲାଯାଇଥିଲା ମାତ୍ର ବାସ୍ତବରେ ଏହା ରାଜାଂକର ସୁବିଧା ପାଇଁ ସୃଷ୍ଟି କରାଯାଇଥିଲା। ରାଜା ପାଂଠି ରଖି ସେଥିରୁ ମହାଜନି କରୁଥିଲେ। ପ୍ରଜାମାନେ ଶତକରା ଏକଶ ପଚାଶ ହାରରେ ବାର୍ଷିକ ସୁଧ ଦେଇ ଏଥିରୁ ଋଣ ଗ୍ରହଣ କରୁଥିଲେ। ଖମାର ଓ ଧାନ ଗୋଲାରୁ ଶସ୍ୟ ଋଣ ନେଲେ ଏହାର ପାଂଚଗୁଣା ଅସୁଲ ଦେବାବେଳେ ସୁଝିବାକୁ ହେଉଥିଲା। ଦେବା ବେଳେ ଛୋଟ ତାଂବି (ମାପପାତ୍ର) ଓ ନେବାବେଳେ ବଡ଼ତାଂବିର ବ୍ୟବହାର ଏହାକୁ ଅଧିକ ମାତ୍ରାରେ ଶୋଷଣର ଆୟୁଧ କରୁଥିଲା। ଯେଉଁମାନେ ଏ ପ୍ରକାର ଶୋଷଣର ପ୍ରତିବାଦ କଲେ ସେମାନଂକୁ ରାଜ୍ୟରୁ ବହିଷ୍କାର କରାଯାଉଥିଲା ଓ ଏଥି ନିମିତ ରାଜ୍ୟର ଆଇନ ସଂଶୋଧନ କରାଯାଇଥିଲା। ଫଳରେ ଏ ପ୍ରକାର କାର୍ଯ ଦେଶଦ୍ରୋହ ଭାବରେ ବିବେଚିତ ହେଉଥିଲା। ଏକ ପତ୍ନୀବ୍ରତ ରାଜା ପ୍ରତାପରୁଦ୍ର, ରାଣୀଂକ ସହିତ ଆସିଥିବା ଦାସୀମାନଂକୁ ଗ୍ରହଣ ନ କରି ସେମାନଂକ ପରିବାରକୁ ଫେରାଇ ଦେଇଥିବା ବେଳେ

ବୀରମିତ୍ରୋଦୟଂକର ଗୁପ୍ତଚର ଭିତିରିଆମାନଂକୁ ନିଯୁକ୍ତି କରି ସେମାନଂକଠାରୁ ଖବର ସଂଗ୍ରହ କରି ସୁଂଦରୀ ଦାସୀ ସଂଖ୍ୟା ରାଜନବରରେ ବୃଦ୍ଧି କରିବାରେ ତତ୍ପର ଥିଲେ। ପ୍ରତାପ ରୁଦ୍ରଂକ ମୃତ୍ୟୁ ସମୟରେ ସେ ଏକ ଲକ୍ଷ ଅଢ଼େଇ ହଜାର ଟଂକା ଋଣ କରିଥିବାବେଳେ ବୀର ମିତ୍ରୋଦୟଂକ ମୃତ୍ୟୁ ସମୟରେ ସେ ୩ କୋଟି ଟଂକା ରାଜ୍ୟର ବିଭିନ୍ନ ପାଣ୍ଡିରେ ରଖି ଯାଇଥିଲେ। ତାଂକ ଚରିତ୍ରରେ ପ୍ରଜାଂକଠାରୁ ଅର୍ଥ ଶୋଷଣ ଏକ କଳଂକ ଥିଲା, ମାତ୍ର ସେ ସୃଷ୍ଟି କରିଥିବା ଟ୍ରଷ୍ଟ ପାଂଠିମାନ ଉପାଧ୍ୟାୟତର ଶିକ୍ଷା ପ୍ରସାର ଓ ଦରବାର ତରଫରୁ ପ୍ରକାଶିତ ବିଭିନ୍ନ ଗ୍ରଂଥମାନଂକ ପ୍ରକାଶନ ଉଦ୍ଦେଶ୍ୟରେ ବ୍ୟୟିତ ହୋଇଥିଲା।

ଏସବୁ ସତ୍ତ୍ୱେ ଓଡ଼ିଶାର ସାହିତ୍ୟ ସଂସ୍କୃତ ଓ ଭାଷା ଇତିହାସରେ ନିଜ ଅବଦାନ ନିମିତ ବୀର ମିତ୍ରୋଦୟ ସ୍ମରଣୀୟ ହୋଇ ରହିବେ।



ରାଜଧର୍ମ ଅନୁସରି ପ୍ରଜାଏ ଚଳଂତି
ପ୍ରଜାଂକ ଆଦର୍ଶ ସିନା ହୁଅଂତି ନୃପତି
ନୃପତି କରିବେ ଯେବେ ଆପେ ଅନାଚାର
ଦୁରାଚାର ନିବାରିବେ କେମଂତେ ପ୍ରଜାର।

—ନଂଦକିଶୋର

"ଜନମ ଭୂମି ଯେ ଜନମ ଦେଇଛି
ଜନନୀରୁ ବଳି ବଡ଼
ତହିଁ ସିନା ଉଠେ ଦୟା ମାୟା ପ୍ରୀତି
ପ୍ରାଣ ପରି ଦୃଢ଼ ଦୃଢ଼।"

–ପଂଡିତ ଗୋଦାବରୀଶ ମିଶ୍ର

# ବିଦ୍ୟାରତ୍ନ
# ଗୋପୀନାଥ ପ୍ରାଣିଗ୍ରାହୀ

ସୋନପୁର ଗଡ଼ରେ ୧୮୫୫ରେ ଜନ୍ମ ନେଇଥିଲେ ନାରାୟଣ ପାଣିଗ୍ରାହୀଂକର ପୁତ୍ର ଗୋପୀନାଥ। ସୋନପୁର ଦରବାର ଅଧୀନରେ ବିଦ୍ୟାଶିକ୍ଷା ପରେ ତାଂକର କର୍ମମୟ ଜୀବନ ଆରଂଭ ହୋଇଥିଲା। ସେ ଏକାଧାରରେ ଜଣେ ଲୋକପ୍ରିୟ ଶାସକ କର୍ମଚାରୀ, କବି, ଐତିହାସିକ, ପ୍ରାବଂଧିକ, ଅନୁବାଦକ ଓ ସମାଲୋଚକ ଥିଲେ। ଓଡ଼ିଆ ଓ ସଂସ୍କୃତ ଉଭୟ ଭାଷାରେ ସେ ୨୦ ଖଂଡ ପୁସ୍ତକ ରଚନା କରିଅଛଂତି। ଏହା ବ୍ୟତୀତ ତତ୍‌କାଳୀନ ପରଂପରା ଅନୁସାରେ ତାଂକର ଅନେକ ରଚନା ଅନ୍ୟମାନଂକର ନାମରେ ପ୍ରକାଶିତ ହୋଇଥିଲା।

ମହାକବି କାଳିଦାସଂକର ସଂସ୍କୃତ ନାଟକ 'ଅଭିଜ୍ଞାନ ଶାକୁଂତଳମ'ର ସେ ପ୍ରଥମେ ଓଡ଼ିଆ ଭାଷାରେ ଅନୁବାଦ କରିଥିବାର କୁହାଯାଏ। ସୋନପୁର ଯୁବରାଜ ବୀରମିତ୍ରୋଦୟ ସିଂହ ଦେବଂକର ସହଯୋଗରେ ସୋନପୁର ଦରବାର ତରଫରୁ ଏହା ୧୮୯୯ରେ ପ୍ରକାଶ ପାଇଥିଲା। ୧୯୧୫ରେ ପ୍ରକାଶିତ ବ୍ରତଚରିତ ଏକ ଐତିହାସିକ ଗଦ୍ୟ ସାହିତ୍ୟ। ପୁସ୍ତକରେ ସୋନପୁର ରାଜ୍ୟର ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କ୍ରମୋନ୍ନତିର

ଧାରା ବର୍ଣନା କରାଯାଇଅଛି । ଛଂଦ କବିତା 'ଉପହାର ପୁଷ୍ପାଂଜଳି' ରତ୍ନ ସିଂହାସନୋତ୍ସବ ୧୯୧୯ରେ ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ ଆଶୀର୍ବାଦ ମାଳା, କୁମାର ଜନ୍ମୋତ୍ସବ, ଅନ୍ନପ୍ରାଶନୋତ୍ସବ ତାଂକର ଉପାଦେୟ କାବ୍ୟ ରଚନା ପରବର୍ତ୍ତୀ ସମୟରେ ପ୍ରକାଶିତ ହୋଇଥିଲା । ସଂସ୍କୃତ ସାହିତ୍ୟରେ ବିଦ୍ୱାନ୍ ଥାଇ ସେ 'ସ୍ୱର୍ଣପୁର ବଂଶାନୁଚରିତମ' ସଂସ୍କୃତ ଭାଷାରେ ରଚନା କରିଥିଲେ । ପଂଡିତ ଗୋପୀନାଥ ପାଣୀଗ୍ରାହୀଂକର ୧୯୧୫ରେ ପ୍ରକାଶିତ ବ୍ରତ ଚରିତ ତାଂକର କୁମାର ଜନ୍ମୋତ୍ସବ କାବ୍ୟ ପରି ରାଜା ବୀର ମିତ୍ରୋଦୟଂକୁ ଉତ୍ସର୍ଗୀକୃତ । କାବ୍ୟକୁ ଅଗ୍ନିଦେବତାଂକୁ ଦୀପ ଦାନ ବା ସାଗର ଦେବତାଂକୁ ଜଳାଂଜଳି ପ୍ରଦାନ ପରି ସେ ମହାରାଜାଂକୁ ପ୍ରଦତ୍ତ କଲେ ବୋଲି ବର୍ଣନା କରାଯାଇଅଛି । ଯୁବରାଜ ସୋମଭୂଷଣ ସିଂହ ଦେଓଂକର ବ୍ରତୋପନୟନ ଉପଲକ୍ଷେ ବ୍ରତଚରିତ ରଚିତ । ଗ୍ରଂଥଟି ପ୍ରବଂଧ ଆକାରରେ ଦୁଇ ଭାଗରେ ଲେଖା । ପ୍ରଥମ ଭାଗରେ ଲେଖକ ନିମଂତ୍ରଣ ପତ୍ର ଧରି ମହାରାଜା ବୀର ମିତ୍ରୋଦୟଂକ ସହିତ ପୁରୀ ର ଗଜପତି ମହାରାଜା, ଛୋଟନାଗପୁରର ମହାରାଜା, ସରେଇକଳାର ମହାରାଜା, ଢେଂକାନାଳ ବଉଦ ବାମଂଡା ନରପତିମାନଂକ ପାଖକୁ ଯିବା ବିଶଦ ଭାବରେ ବର୍ଣନା କରାଯାଇଅଛି । ଭ୍ରମଣସାହିତ୍ୟ ଭାବରେ ଏହା ସମକାଳୀନ ସାହିତ୍ୟରେ ଅନନ୍ୟ । ପ୍ରାକୃତିକ ଦୃଶ୍ୟ ସହିତ ବିଭିନ୍ନ ରାଜ୍ୟର କରାଳ ଓ ରମଣୀୟ ପ୍ରକୃତିର ଚିତ୍ର ଏଥିରେ ବର୍ଣିତ । ବ୍ରତ ଚରିତ୍ରର ଦ୍ୱିତୀୟ ଭାଗରେ ସୋନପୁର ସହରର ଗୋପାଳୁଣୀ, ଜଗନ୍ନାଥ, ସୋମନାଥ, ଦଧିବାମନ, ଗୋକର୍ଣେଶ୍ୱର, ରାମେଶ୍ୱର, ନୃସିଂହନାଥ, ବୃଂଦାବନ ବିହାରୀ, ସୁରେଶ୍ୱରୀ, ସମଲେଇ, ମାଣିକେଶ୍ୱରୀ ଭଗବତୀ, ପାର୍ବତୀ, ଖଂବେଶ୍ୱରୀ, ରାମଚଂଡୀ, ବୂଢ଼ୀ ସମଲେଇ, ଦଶାମତି, ନାରାୟଣୀ ଆଦି ଦେବଦେବୀମାନଂକର ବର୍ଣନା ଓ ଅଧିଷ୍ଠିତ ଦେବ ଦେବୀଂକର ସଂସ୍କୃତରେ ସ୍ତବ ଗ୍ରଂଥଟିକୁ ଅସାଧାରଣ କରିଅଛି । ଗ୍ରଂଥ ଶେଷରେ ବ୍ରତୋପନୟନ ଉତ୍ସବରେ ଉପସ୍ଥିତ ବିଶିଷ୍ଟ ନରପତିମାନଂକର ବର୍ଣନା ସହିତ ଉତ୍ସବ ପରିଚାଳନା ଚୌହାନ ରାଜବଂଶର ଗୌରବ ବୋଲି କୁହାଯାଇଅଛି । ତା୧୬.୬.୦୮ରେ ବ୍ରତୋପନୟନ ସଂପାଦିତ ହୋଇଥିଲା ।

ପଂଡିତ ଗୋପୀନାଥଂକୁ ୩ ପୁରୁଷ ଧରି ରାଜ ଦରବାରରେ କାମ କରିବାକୁ ପଡିଥିଲା । ମହାରାଜା ପ୍ରତାପରୁଦ୍ର, ବୀରମିତ୍ରୋଦୟ ଓ ସୁଧାଂଶୁ ଶେଖରଂକ ରାଜତ୍ୱ କାଳରେ ସେ ପେସ୍କାର ତହସିଲଦାର ଓ ମାଜିଷ୍ଟ୍ରେଟ ଭାବରେ ଦରବାର ଶାସନ ସହିତ ସଂପୃକ୍ତ ଥିଲେ । ଏକାଧାରରେ ସେ ଜଣେ କବି, ଐତିହାସିକ, ଭ୍ରମଣ ଗ୍ରଂଥ ପ୍ରଣେତା ଓ କାବ୍ୟ ରସିକ ଥିଲେ । ପ୍ରକାଶିତ ପୁସ୍ତକମାନ ଉପହାର ପୁଷ୍ପାଂଜଳି (୧୯୧୭) କୁମାର ଜନ୍ମୋତ୍ସବ (୧୯୨୭) ଏକାଦଶୀ ଉଦଯାପନ (୧୯୨୮) । ସୋନପୁର ରାଜବଂଶାନୁ

ଚରିତମ ସଂସ୍କୃତରେ ଲିଖିତ ଓ ଅପ୍ରକାଶିତ। ଏହା ତାଂକ ରଚନା ମାନଂକ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି। ଏହା ବ୍ୟତୀତ ରତ୍ନସିଂହାସନୋତ୍ସବ (୧୯୨୦) ଆଶୀର୍ବାଦମାଳା (୧୯୨୫) ଅନ୍ନପ୍ରାସନୋତ୍ସବ (୧୯୨୮) ତାଂକର ଅନ୍ୟାନ୍ୟ ରଚନା ପରି ଦରବାର ଆନୁକୂଲ୍ୟରେ ପ୍ରକାଶିତ ହେଇଥିଲା।

୧୯୨୭-୨୮ରେ ଗୋପୀନାଥଂକ ସଂପାଦନାରେ ଶଶିଶେଣା କାବ୍ୟ ପ୍ରକାଶିତ ହୋଇଥିଲା। ସୋନପୁର ଦରବାର ତାଂକୁ ବିଦ୍ୟାରତ୍ନ ଉପାଧିରେ ସମ୍ମାନିତ କରିଥିଲେ। ଦରବାର ଅଧୀନରେ ନିଜ ରାଜକାର୍ଯ ସୁଚାରୁ ରୂପେ ସଂପାଦିତ କରି ଅବସର ସମୟରେ କାବ୍ୟ କବିତା ରଚନା ଗୋପୀନାଥଂକୁ ସାହିତ୍ୟ ଜଗତରେ ସ୍ମରଣୀୟ କରି ରଖିବ।

୧୯୪୦ ରେ ତାଂକର ତିରୋଧାନ ହେଲା। ମାତ୍ର ନିଜ ଦୀର୍ଘ ପଂଚାଅଶୀ ବର୍ଷ ଆୟୁକାଳ ମଧ୍ୟରେ ନିଜର ସାହିତ୍ୟିକ କୃତି ନିମିତ ତାଂକୁ ଦରବାରରେ କେବଳ ମାନ୍ୟତା ମିଳି ଥିଲା।



ଇ ଦୁନିଆଁ ଏକ ଧରମଶାଳା
ଯିବାର ଆସ୍‌ବାର ବାଟେ
ନାଇଁନ କବାଟ୍, କୁଁଚି, ତାଲା।
ବାପ ନାଇଁ ରହେ, ମାଆ ନାଇଁ ରହେ
ରହେନାଇଁ ଭଏନ, ଭାଏ।
ଶାଶୁ, ଶଶୁର, କକା, କାକୀ
ନାଇଁ ରହେନ ସବେ ଯିବେ ସାଏଁ ସାଏଁ।
ସମକୁଁ ଛାଡ଼ବାକ୍ ପଡ଼ବ ଇଟା,
କାଏଁ ଗୁରୁ କାଏଁ ଚାଲା।

– (ରସକବିତା) ଶଶିଭୂଷଣ

# ପଂଡିତ
# ଦାମୋଦର ମିଶ୍ର

ମହାରାଜା ବୀରମିତ୍ରୋଦୟଂକ ଦରବାରରେ ଦାମୋଦର ମିଶ୍ର ଶାସ୍ତ୍ରୀ ଜଣେ ବିଦ୍ୱାନ୍ ପଂଡିତ ଥିଲେ। ସେ ଖଡ଼ିଆଳ ବିଦ୍ୟାଳୟର ହେଡପଂଡିତ ଥିବା ସମୟରେ ତାଂକ ରଚିତ ସ୍ୱର୍ଣପୁର ଚୌହାନ କୀର୍ତି ଦର୍ପଣ କାବ୍ୟ ୧୯୦୪-୦୫ରେ ସଂବଲପୁର ହିତୈଷିଣୀରେ ଧାରାବାହିକ ଭାବରେ ପ୍ରକାଶ ପାଉଥିଲା। କାବ୍ୟରେ ସୋନପୁରରେ ଚୌହାନ ରାଜାମାନଂକର ରାଜୁତି ବର୍ଣିତ ହୋଇଥିଲା। ପରେ ଭକ୍ତି ରତ୍ନମାଳା ନାମରେ ଏକ କାବ୍ୟ ସେହି ସଂବଲପୁର ହିତୈଷିଣୀରେ ପ୍ରଥମେ ୧୯୦୫ ଏପ୍ରିଲ୍ ପହିଲାଦିନ ପ୍ରକାଶିତ ହେଲା। କାବ୍ୟ ପଠନ ପ୍ରିୟ ରାଜା ବୀରମିତ୍ରୋଦୟଂକ ଦୃଷ୍ଟିକୁ ଏହା ଆସିବା ଫଳରେ ସେ ଦାମୋଦରଂକୁ ସୋନପୁର ମହାରାଜା ହାଇସ୍କୁଲର ସହକାରୀ ଶିକ୍ଷକ ଭାବରେ ନିଯୁକ୍ତି ଦେଲେ। ଯୁବରାଜ ସୋମଭୂଷଣଂକର ବ୍ରତ ଉପନୟନ ଉପଲକ୍ଷେ ୧୯୧୦ରେ ତାଂକୁ ଶାସ୍ତ୍ରୀ ଉପାଧି ଦ୍ୱାରା ସମ୍ମାନିତ କରା ଯାଇଥିଲା। ଦରବାରର ଅନ୍ୟ ତିନିଜଣ ପଂଡିତ କାଶୀନାଥ ମିଶ୍ର, ରାମଚଂଦ୍ର ପାଢ଼ି, ବୃଷଭ ମିଶ୍ର ମଧ୍ୟ ଏହି ଉପଲକ୍ଷେ ଯଥାକ୍ରମେ କାବ୍ୟ ବିନୋଦ, ସିଦ୍ଧାଂତ ତିଳକ, ଓ ପଂଡିତ ରତ୍ନ ଉପାଧିରେ ସଂବର୍ଧିତ ହୋଇଥିଲେ। ରାଜ୍ୟର ବିଭିନ୍ନ ଜାତି ସଂପର୍କୀୟ ବିବାଦ ତୁଟାଇବା ପାଇଁ ଗଠିତ ବ୍ରହ୍ମପୁର ସଭାର ଦାମୋଦର ମୁଖ୍ୟ ବ୍ୟବସ୍ଥାପକ ଥିଲେ। ୧୯୨୧ ରେ ଦାମୋଦରଂକର ସୋନପୁର ଗୁଣାଦର୍ଶ ନାମକ ଗଦ୍ୟ ପଦ୍ୟାଶ୍ରିତ ଚଂପୂକାବ୍ୟ ପ୍ରକାଶ ପାଇଲା। ଏହାର ଗଦ୍ୟ ରଚନା ହୃଦୟସ୍ପର୍ଶୀ ଓ ପଦ

ଲାଳିତ୍ୟ ବିଦ୍ୱାନମାନଂକର ପ୍ରିୟ ଥିଲା । ୨୫୩ ପଦ୍ୟ ବିଶିଷ୍ଟ ଏହି ଐତିହାସିକ ଭୂଗୋଳରେ ପ୍ରୟାଗର ଲୋକାନଂଦ ଓ ସଦାନଂଦ ନାମଧେୟ ଦୁଇ ବଣିକ ମହାନଦୀର ବାମତଟରେ ପହଂଚି ସୋନପୁର ରାଜ୍ୟ ପରିକ୍ରମା କରିଅଛଂତି । ରାଜ୍ୟର ବିଭିନ୍ନ ସ୍ଥାନ ଗୁଡିକର ବର୍ଣ୍ଣନା ଏଥିରେ ଦିଆଯାଇଅଛି । ଜଗନ୍ନାଥ ମିଶ୍ରଂକର ଉତ୍ସବ ତରଂଗିଣୀ ଚଂପୂରୁ ଅନେକ ପଦ୍ୟାଂଶ ଏଥିରେ ଅଂତର୍ଗତ କରାଯାଇଅଛି । ପଂଡିତ ଜଗନ୍ନାଥ ମିଶ୍ର ତର୍କ ସାଂଖ୍ୟ ନ୍ୟାୟ ରତ୍ନଂକର ସ୍ୱର୍ଣ୍ଣପୁରାଧୀଶ୍ୱରଂକ ପୁତ୍ର ଉପନୟନ ଉପଲକ୍ଷେ ୧୯୧୦ରେ ଉତ୍ସବ ତରଂଗିଣୀ ଚଂପୂ ପ୍ରକାଶିତ ହୋଇଥିଲା । ବିଭିନ୍ନ ମଂଦିରକୁ ସେ ବିଭିନ୍ନ ପୂର୍ବତନ ସୋନପୁର ନରପତିମାନଂକ କୀର୍ତି ସହିତ ଯୋଡ଼ିଅଛଂତି । ମାତ୍ର ଏହା ତ୍ରୁଟି ପୂର୍ଣ୍ଣ ବୋଲି ଜଣାପଡ଼ିଥିଲା । ଉକ୍ତ କାବ୍ୟରେ ଚଂଦ୍ରାବତୀ ପରିଣୟ, ଚଂଦ୍ର ପ୍ରଭା କାବ୍ୟ, ପାଣିଗ୍ରହଣ ପାଦପ, ଅଭିଜ୍ଞାନ ଶାକୁଂତଳମ୍ ନାଟକ ରତ୍ନାବଳୀ, ଋତୁସଂହାର, ଭକ୍ତି ଉପହାର,  ଉପହାର ପୁଷ୍ପାଂଜଳି, ସଂଗୀତ କୁସୁମାଂଜଳି ଗ୍ରଂଥମାନଂକ ବିଷୟ କୁହାଯାଇଅଛି । ଶ୍ରୀ ଜଗନ୍ନାଥ ମଂଦିର, ଶୀତଳ ଷଷ୍ଠୀ ପର୍ବ, ଚୈତ୍ର ମାସର ବସଂତ ଉତ୍ସବ ପ୍ରସଂଗରେ ଯେଉଁ ଗ୍ରଂଥମାନ ସୂଚୀତ କରାଯାଇଅଛି ତନ୍ନ ତନ୍ନ ପରୀକ୍ଷା ପରେ ତାହା ତ୍ରୁଟି ଯୁକ୍ତ ବୋଲି ଜଣାପଡଅଛି ।

ବୀରମିତ୍ରୋଦୟ ବହୁମୂଲ୍ୟ ରତ୍ନ ଖଚିତ ଏକ ରତ୍ନ ସିଂହାସନ ନିର୍ମାଣ କରାଇ ୧୯୧୮ ମସିହା ବିଜୟା ଦଶମୀ ଦିନ ଏଥିରେ ଅଧିଷ୍ଠିତ ହେଲେ । ଏହି ଉପଲକ୍ଷେ ପଂଡିତ ଦାମୋଦର ଓ ପଂଡିତ ଗୋପୀନାଥ ପାଣିଗ୍ରାହୀ ରତ୍ନସିଂହାସନୋତ୍ସବ (୧୯୨୦) ରଚନା କରି ସୁବର୍ଣ୍ଣପୁରର ସୂର୍ଯୋଦୟ, ନଦୀ, ଶସ୍ୟକେଦାର ଓ ବୃକ୍ଷର ପତ୍ର ସବୁ ସୁବର୍ଣ୍ଣଖଚିତ ବୋଲି ବର୍ଣ୍ଣନା କରି ରାଜାଂକର ପ୍ରଶଂସା ଗାନ କରିଥିଲେ ।



ଆଉର ଗୁଟେ କଥା କହୁଛେଁ ଶୁନ୍
ସମାନ ନୁହେଁ ଚେହେରା ଗୁନ୍
ଭିଖାରୀ ବେଶେ ମନ ବଡସନ୍
ଠାକୁର ଠାକୁରାନୀ
ମାଆ କହ ଗୁଟେ କଥାନି ।

– ଶଶିଭୂଷଣ

# ପଂଡିତ
# ଆଦିତ୍ୟ ପ୍ରସାଦ

ପଂଡିତ ଆଦିତ୍ୟ ପ୍ରସାଦ ଗୁରୁ ନିଜକୁ କୋଶଳାନଂଦ କାବ୍ୟ ପ୍ରାୟ ୧୭୦୦ରେ ସଂପାଦକ ଗଂଗାଧର ଗୁରୁଂକର ଉତର ଦାୟାଦ ଭାବରେ ପରିଚିତ କରାଇବାକୁ ଉଦ୍ୟମ କରିଅଛଂତି । ରାଜାଂକ ପୃଷ୍ଠ ପୋଷକତାରେ ସେ ବାରାଣସୀର ହିଂଦୁ କଲେଜରୁ ବ୍ୟାକରଣ ଶାସ୍ତ୍ରୀ ଓ କାବ୍ୟତୀର୍ଥ  ଉପାଧି ଅର୍ଜନ କରି ମହାରାଜା ହାଇସ୍କୁଲ ସୋନପୁରରେ ହେଡ୍ ପଂଡିତ ଭାବରେ ୧୯୧୧ରେ ନିଯୁକ୍ତି ପାଇଥିଲେ । ତାଂକର ସଂସ୍କୃତ ରଚନାମାନ ବିଂଶ ଦଶକରେ ଓ ଓଡ଼ିଆ କାବ୍ୟମାନ ତ୍ରିଂଶ ଦଶକରେ ପ୍ରକାଶିତ ହୋଇଥିଲା ।

ମହାରାଜା ବୀରମିତ୍ରୋଦୟ ତାଂକ କାଳିକା ପୁରାଣର ଅନୁବାଦରେ ଆଦିତ୍ୟ ପ୍ରସାଦଂକର ବିଶେଷତ୍ୱ ସଂପର୍କରେ କହିବାକୁ ଯାଇ ଦାମୋଦର ମିଶ୍ର ନିଜ ସ୍ୱର୍ଣପୁର ଗୁଣାଦର୍ଶ ଓ ମହାରୁଦ୍ରଯଜ୍ଞ କାବ୍ୟରେ, କାଶୀନାଥ ରାଜଗୁରୁ ସ୍ୱରଚିତ ରାମେଶ୍ୱର କାବ୍ୟରେ, ସନାତନ ନାୟକ ତାଂକ ରାଧାବିଗ୍ରହ ଚଉତିଶାରେ, ଲୋକନାଥ ମିଶ୍ର ନିଜ ମୟୂରଦୂତ କାବ୍ୟରେ ଆଦିତ୍ୟ ପ୍ରତାପଂକର ସ୍ୱ ସ୍ୱ ଗ୍ରଂଥ ରଚନାରେ ଦିଗଦର୍ଶନର ଉଲ୍ଲେଖ କରିଅଛଂତି । ସଂସ୍କୃତ କାବ୍ୟ ଓ  ରୀତି ଯୁଗର ଓଡ଼ିଆ ପଦ୍ୟଧାରା ଅନୁକରଣରେ ଆଦିତ୍ୟ ପ୍ରସାଦ ସଂସ୍କୃତରେ ନିଜର ସ୍ୱେନ ଗୃହ (୧୯୨୦) ପୁରଶ୍ଚରଣ ବର୍ଣନାଚଂପୂ (୧୯୨୧) ଅନୁତାପ ତରଂଗିଣୀ (୧୯୨୨) ଓଡ଼ିଆରେ କୁଟୀର ବାସିନୀ (୧୯୩୧) କୋକିଳ ସଂଦେଶ ଓ ତାରାପୁର ଗଡ ରଚନା କରି ଯଶସ୍ୱୀ ହୋଇଅଛଂତି । 'କୁଟୀର ବାସିନୀ' ମହାରାଣୀ

ପାର୍ବତୀ ଦେବୀଂକୁ ଉତ୍ସର୍ଗୀକୃତ ଓ ସେ କାଇଜର-ଇ-ହିଂଦ୍ ମେଡାଲ ପାଇବା ଅବସରରେ ତାଂକ ବ୍ୟୟରେ ପ୍ରକାଶିତ ହୋଇଥିଲା ।

'ପୁରଶ୍ଚରଣ ବର୍ଣ୍ଣନା ଚଂପୂ' ଲାଂଜିଗଡ ରାଜା ମାହେଶ୍ୱରୀ ପ୍ରସାଦ ଦେବ ସମ୍ମାନନୀୟ ସଜ୍ଜନଂକୁ ଉତ୍ସର୍ଗୀକୃତ । ରାଜ ପ୍ରସାଦରେ ୨୭ ବର୍ଷ ଧରି କୋଟି ଗାୟତ୍ରୀ ମନ୍ତ୍ର ଉଚ୍ଚାରଣ ପ୍ରସଂଗରେ ଭୂଦେବ ଓ ବିଶାଳ ଦାସ ନାମକ ଦୁଇଜଣ କୋଶଳ ରାଜ୍ୟର ଭ୍ରମଣ କାରୀଂକର କଥୋପ କଥନ ଏହି କାବ୍ୟରେ ଦିଆଯାଇଅଛି । ୧୯୩୨ ରେ ପ୍ରକାଶିତ କୋକିଳ ଚଂପୂକୁ କବି ଆଦିତ୍ୟ ପ୍ରସାଦ ରାମପୁରର ଜମିଦାର ଚଂଦ୍ରଭାନୁ ସିଂହ ବରିହାଂକୁ ଉତ୍ସର୍ଗ କରିଥିଲେ । ସଂସ୍କୃତ ଦୂତକାବ୍ୟ ଅନୁକରଣରେ ରଚିତ ଏହା ଏକ ଖଂଡ କାବ୍ୟ ।



ଭଗବାନ ଏକ ଧରମ ଏକ୍
ସବୁ ମନୁଷ୍ ତ ସମାନ ଦେଖ୍
ବଡ଼ ସାନ ଯେ ରଖ୍‌ବା ଟେକ୍
ତାର୍ ରକ୍‌ତେ ଛୁରା ପଡ଼ୁ ।

–ଶଶିଭୂଷଣ

# ପଂଡିତ
# ବିଶ୍ୱନାଥ କାବ୍ୟତୀର୍ଥ

ବିଶ୍ୱନାଥ ରଥ କାବ୍ୟତୀର୍ଥ ପୁରୀ ସଂସ୍କୃତ ବିଦ୍ୟାଳୟର ଛାତ୍ର ଥିଲେ। ୧୯୧୮ରେ ମହାମହୋପାଧ୍ୟାୟ ପଂଡିତ ସଦାଶିବ ମିଶ୍ରଂକ ଅନୁରୋଧ କ୍ରମେ ସେ 'ପାଣିଗ୍ରହଣ ପାଦପ' ନାମକ ଏକ ଚଂପୂ କାବ୍ୟ ରଚନା କରିଥିଲେ। ବିଦ୍ୟାଧର ଓ ବିଦ୍ୟାଧରୀ ଦୁଇ ଜଣଂକ ମଧ୍ୟରେ କଥୋପକଥନ ଛଳରେ ବୈଦର୍ଭି ଛଂଦରେ ୫ଟି ଅଧ୍ୟାୟ (ପଲ୍ଲବ)ରେ କାବ୍ୟଟି ରଚିତ। ଏହି କାବ୍ୟରେ ଯୁବରାଜ ସୋମଭୂଷଣଂକର ଗଂଗବଂଶୀ ବଡ଼ଖେମୁଂଡି ରାଜା କୃପାମୟ ଦେବଂକର କନ୍ୟା ସୀତାଦେବୀଂକ ପରିଣୟ ବର୍ଣନା କରାଯାଇଅଛି। ପାଂଚଗୋଟି ପଲ୍ଲବରେ ପ୍ରାଚୀନ ଉତ୍କଳର ଗୌରବ ମହାନଦୀ, ଓ ସୋନପୁରର ପ୍ରାକୃତିକ ଶୋଭା, ସୋନପୁରର ଚୌହାନ ରାଜାମାନଂକର କୀର୍ତି, ବଡ଼ଖେମୁଂଡିରୁ ସୋନପୁରକୁ ରାଜପଥ ବର୍ଣନା ସହିତ ବିବାହ ଉତ୍ସବର ବିଶେଷ ବିବରଣୀ ଏହି କାବ୍ୟରେ ଦିଆଯାଇଅଛି। ସୋନପୁରରୁ ସଂବଲପୁର, ଖଡ଼ଗପୁର, ବ୍ରହ୍ମପୁର ଦେଇ ବଡ଼ଖେମୁଂଡି ଗଡ଼କୁ ଯାତ୍ରା ସହିତ ଚୌହାନ ବଂଶ କୁମୁଦ କରାମୋଦ ଚଂଦ୍ରସୋମଭୂଷଣଂକ ପରିଣୟ 'ମଂଜୁ କାଂଚନ ମଂଚିର ସଂଜିତ ବିଜିତ ରାଜହଂସ କାଳେଶ୍ୱର' ଜେମା ସୀତାଂକ ସହିତ ଅନୁଷ୍ଠିତ ହେବା ଦର୍ଶାଯାଇଛି। ବଡ଼ଖେମୁଂଡି ରାଜା କୃପାମୟ ଦେବଂକୁ ଜ୍ଞାନରେ ବୃହସ୍ପତି, ନ୍ୟାୟରେ ଶୁକ୍ରାଚାର୍ଯ, ଐଶ୍ୱର୍ଯରେ କୁବେର, ବିକ୍ରମରେ ପବନପୁତ୍ର ହନୁମାନ, ପ୍ରଜାପାଳନରେ ରାମଚଂଦ୍ର, ଦାନରେ କର୍ଣ ଓ ଶରୀର ଶୋଭାରେ ରତିପତି ମଦନ ବୋଲି କାବ୍ୟରେ ବର୍ଣନା କରାଯାଇଅଛି। ବିବାହ ଉତ୍ସବରେ ରାଜନର୍ତକୀ ମାନଂକର ବର୍ଣନା –

ସୁବର୍ଣ୍ଣପୁର ସ୍ୱର୍ଣ୍ଣକାର

" ଶ୍ରବଣ ଯୁଗ ସଂଚଳିତ କନକ କୁଂଡଳ କିରଣ ସମୁଜ୍ଜ୍ୱଳ କପୋଳ
କାଂଚନ ପଦକ ବିଭ୍ରାଜିତ ତରଳ ମୁଖ ହରଷୋଭିତ ଗଳ
ମୃଦୁ ପଦ ବିକ୍ଷେପ ଚଳିତ କଳେବର ମଂଜୁଳ।"

ସମକାଳୀନ ସାମାଜିକ ଉତ୍ସବରେ ଏକ ଅଧୁନାଲୁପ୍ତ ଚିତ୍ର ପ୍ରଦାନ କରେ।

ଯୁବରାଜଙ୍କ ବିବାହ ଉପଲକ୍ଷେ ବିଶ୍ୱନାଥ ରଥଂକ ରଚିତ କାବ୍ୟ ବ୍ୟତୀତ ପଂଡିତ ଜଗନ୍ନାଥ ମିଶ୍ର ତର୍କତୀର୍ଥ ଉତ୍ସବ ରଂଗିନୀ ଚଂପୂ ୧୯୧୦ରେ ସେହି ଯୁବରାଜ ସୋମଭୂଷଣଂକର ବ୍ରତୋପନୟନ (ତା ୧୬ ଜୁନ ୧୯୦୮) ଅବସରରେ ରଚନା କରିଥିଲେ। ପଂଡିତ ରାମଚଂଦ୍ର ମିଶ୍ର ନ୍ୟାୟରତ୍ନ ଏହି ଚଂପୂକାବ୍ୟକୁ ସଂଶୋଧନ କରିଥିଲେ। ଏହି କାବ୍ୟ ୭ଟି ଲହରୀରେ ସମାପ୍ତ।

ମହାରାଜା ବୀରମିତ୍ରୋଦୟଂକୁ କାବ୍ୟରେ 'ସୁଭୃଂଗବଦ୍ କାବ୍ୟ ସରୋଜିନୀଷୁ' ବୋଲି କୁହାଯାଇଅଛି। ସେ ଭୃଂଗ ନ ହୁଅଂତୁ ପଛକେ ତାଂକ ଦରବାରର କବିମାନେ ତାଂକ ଦରବାରକୁ ମଧୁଫେଣା କରି ରଖି ମଧୁ ପ୍ରଦାନରେ ସମର୍ଥ ଥିଲେ ଏହା ଅସ୍ୱୀକାର କରାଯାଇ ନ ପାରେ।



ଚଲ୍‌ରେ ଯୁଆନ ଚାଲ୍
　　　　ଗୋଡ୍ ମିଶେଇ ମିଶେଇ ଚାଲ୍
ବାପ ଅଜାର ନାମେ ଚାଲ୍
　　　　ତୋର ଜାଏଁଦ୍ ଅଜା ସଁଭାଲ୍।
ତର୍ ହାମରହା ଛେରହାଛକ୍‌କା
　　　　ତୋର ଭିଲୁଁ ନିକାଲ୍।

—ଶଶିଭୂଷଣ

# ଜ୍ୟୋତିଷାଚାର୍ଯ୍ୟ
# ପଂଡିତ ନୀଳମଣି

ପଂଡିତ ନୀଳମଣି ରଥ ଜ୍ୟୋତିଷାଚାର୍ଯ୍ୟ (୧୮୮୪-୧୯୬୦) ଜଗନ୍ନାଥ ରଥଂକ ପୁତ୍ର ଓ ଭଗବାନ ରଥଂକର ନାତି ଥିଲେ। ସୋନପୁରଠାରୁ ୨୭ କିଲୋମିଟର ଦୂର ମସିଣାପାଲିରେ ରଥ ପରିବାର ରହୁଥିଲେ। ରାଜାନୁଗ୍ରହ ଫଳରେ ସେମାନେ ପ୍ରତିପାଳିତ ହେଉଥିଲେ। ୧୯୧୨ର ମହାରାଜା ବୀରମିତ୍ରୋଦୟ ନୀଳମଣିଂକୁ ବାରାଣସୀରେ ଜ୍ୟୋତିଷଶାସ୍ତ୍ର ଅଧ୍ୟୟନ ପାଇଁ ପଠାଇଥିଲେ। ସେ ସେଠାରେ ଛଅବର୍ଷ ଶିକ୍ଷା ପ୍ରାପ୍ତି ପରେ ଜ୍ୟୋତିଷତୀର୍ଥ ଉପାଧି ଲାଭ କରିଥିଲେ। ରାଜ୍ୟକୁ ଫେରିବା ପରେ ସେ ନୂତନ ଭାବେ ପ୍ରତିଷ୍ଠିତ ଜ୍ୟୋତିଷ ବିଦ୍ୟାଳୟର ପ୍ରଧାନ ଆଚାର୍ଯ୍ୟ ରୂପେ ନିଯୁକ୍ତି ପାଇଲେ। ଏହି ପଦବିରେ ସେ ୧୯୫୨ ପର୍ଯ୍ୟଂତ କାର୍ଯ୍ୟ କରିଥିଲେ। ଜ୍ୟୋତିଷ ଭାବରେ ସେ ସୁପରିଚିତ ଥାଇ ବାରାଣସୀ ହିଂଦୁ ବିଶ୍ବବିଦ୍ୟାଳୟର ପରୀକ୍ଷକ, ପୁରୀ ସଂସ୍କୃତ ଶିକ୍ଷାପରିଷଦ ସଭ୍ୟ ଓ ସୋନପୁର ରାଜଦରବାରର ପ୍ରଧାନ ଜ୍ୟୋତିଷାଚାର୍ଯ୍ୟ ଭାବେ ସମ୍ମାନିତ ହୋଇଥିଲେ। ଫଳିତ ଜ୍ୟୋତିଷ, ହସ୍ତରେଖା ବିଚାର ଓ ସାମୁଦ୍ରିକ ଶାସ୍ତ୍ରବିଦ୍ୟାରେ ସେ ଧୂରଂଧର ଥାଇ ନିଜ ଗଣନାର ନିର୍ଭୁଲ ପ୍ରମାଣ ଦରବାରରେ ଦେଇଥିଲେ। ଚାକିରିରୁ ଅବସର ଗ୍ରହଣ ପରେ ବୀର ମହାରାଜପୁର ନିକଟ ବରଗଡ଼ ଗ୍ରାମରେ ରହୁଥିବା ବେଳେ ୭୬ ବର୍ଷ ବୟସରେ ସେ ୧୯୬୦ରେ ପ୍ରାଣତ୍ୟାଗ କଲେ। ବୀରମିତ୍ରୋଦୟଂକ ଦରବାରରେ ନୀଳମଣିଂକ ବ୍ୟତୀତ ଜ୍ୟୋତିଷାଳଂକାର ପଂଡିତ କୃପାସିଂଧୁ ମିଶ୍ର, ସିଦ୍ଧାଂତ ତିଳକ ପଂଡିତ ରାମଚଂଦ୍ର ପାଢ଼ି, ଜ୍ୟୋତିଷଚଂଦ୍ର ପଂଡିତ ଗୋବିଂଦ ରଥ, ରାଜ ଜ୍ୟୋତିଷ ପଂଡିତ ଭଗବାନ ମହାପାତ୍ର, ଜ୍ୟୋତିଷରତ୍ନ ପଂଡିତ ଦ୍ୱାରକାନାଥ ମିଶ୍ରଂକ ପରି ଜ୍ୟୋତିଷୀମାନେ ରହୁଥିଲେ। ସେମାନେ ନିଜର ବୃତ୍ତିଗତ ଦକ୍ଷତା ପ୍ରମାଣିତ କଲାପରେ ରାଜା ଜ୍ୟୋତିଷ ଶିକ୍ଷା ନିମିତ୍ତ ବିଦ୍ୟାଳୟ ପ୍ରତିଷ୍ଠାର ଘୋଷଣା କରିଥିଲେ।

## ସୁବର୍ଣ୍ଣପୁର ସ୍ୱର୍ଣ୍ଣକାର

ପଂଡିତ ନୀଳମଣିଂକର ଜ୍ୟୋତିଷ ଶାସ୍ତ୍ର ଉପରେ ଚକ୍ରଶରମ୍ ସତପଂଚାଶିକା ଓ ମିତ୍ରୋଦୟ ପଂଜିକା ଗ୍ରଂଥ ରଚନା କରାଯାଇଥିଲା। ପ୍ରଥମ ଦୁଇଟି ଯଥାକ୍ରମେ ୧୯୧୮ ଓ ୧୯୨୧ରେ ପ୍ରକାଶ ପାଇଥିଲା। ଚକ୍ରଶରମ ଗ୍ରଂଥରେ ଅତୀତ ଭବିଷ୍ୟତ ଓ ବର୍ତ୍ତମାନ ଉପରେ ଯେ କୌଣସି ପ୍ରଶ୍ନର ଉତ୍ତର ବାହାର କରିବାକୁ ନରପତି ଚକ୍ର, ଛାତ୍ରଚକ୍ର, ସିଂହାସନ ଚକ୍ର, କୂର୍ମ ଚକ୍ର, ଘୋର କାଳାନଳ ଚକ୍ର, ସପ୍ତଶଳାକା ଚକ୍ର, ବକ୍ରଚଂଦ୍ର ଚକ୍ର, ଚତୁରଂଗ ସୂର୍ଯଚକ୍ର, ଶଶିସୂର୍ଯ କାଳାନଳ ଚକ୍ର ଆଦି ବିବିଧଚକ୍ରର ଅନୁବାଦ ସଂସ୍କୃତ ଗ୍ରଂଥମାନଂକରୁ ଉଦ୍ଧୃତ କରାଯାଇଅଛି। ଓଡ଼ିଶାର ଜ୍ୟୋତିଷମାନଂକର ବ୍ୟବହାର ନିମିତ୍ତ ପୃଥୁଯଶୀଂକର ସଂସ୍କୃତ ଗ୍ରଂଥର ଅନୁବାଦ ସତ ପଂଚାଶିକାରେ ଦିଆଯାଇଅଛି। ସାତଗୋଟି ଅଧ୍ୟାୟରେ ଜନ୍ମ-ମୃତ୍ୟୁ, ଆଗମନ ଓ ପ୍ରସ୍ଥାନ, ସ୍ୱାସ୍ଥ୍ୟ ଓ ରୋଗ, ସଫଳତା ଓ ବିଫଳତା, ଭଲ ଓ ମଂଦ, ଲାଭ ଓ କ୍ଷତି, ବୃଷ୍ଟି ଓ ଶସ୍ୟହାନି ବିଷୟରେ ଶାସ୍ତ୍ରୀୟ ଆଲୋଚନା କରାଯାଇଅଛି। ମିତ୍ରୋଦୟ ପଂଜିକା ପ୍ରକାଶିତ ହୋଇପାରି ନ ଥିଲା।



ଦୁନିଆଁ ବଣତୁଇଁ, କେନ ହିସାବେ ଚାଲୁ<br>
ତୋର ନଜର ପଡ଼େ କି ନାଇଁ<br>
ଯେ ବସିବେ ମାରି ହାଇ,<br>
ତାର ଚାହାରୁଟି ପାନ ସିଗାରେଟ୍<br>
କର୍‌ତେ କର୍‌ତେ ଫୁରସତ ନାଇଁ।<br>
ଆଉର ମୁର୍‌ହି ମୁଠେ ଭି ନାଇଁ<br>
ମିଳେ ଯାର ଖରେଁ ଫାଟୁଛେ ତାଲୁ।

—ଶଶିଭୂଷଣ

# କବିରାଜ ପଂଡିତ
# ଲୋକନାଥ ମିଶ୍ର

ପଂଡିତ ଆଦିତ୍ୟ ପ୍ରସାଦଂକ 'କୋକିଳ ସଂଦେଶ' ପରି ସେ 'ମୟୂର ଦୂତ' କାବ୍ୟ ରଚନା କରିଥିଲେ। ୧୯୨୧ରେ ଯୁବରାଜ ସୋମଶେଖରଂକୁ ଉତ୍ସର୍ଗୀକୃତ ହରିପ୍ରିୟା କାବ୍ୟ ସେ ରଚନା କରିଥିଲେ। କବିରାଜ ଲୋକନାଥ, ସୋମଭୂଷଣ ଆୟୁର୍ବେଦ ବିଦ୍ୟାଳୟ ୧୯୧୮ରେ ପ୍ରତିଷ୍ଠିତ ହେବାପରେ ଏହାର ପ୍ରଧାନ ଶିକ୍ଷକ ହୋଇ ଥିଲେ। ପଦ୍ୟ ଓ ବଟିକା, ସାହିତ୍ୟ ଓ ଆୟୁର୍ବେଦ ଉଭୟ ତାଂକ କର୍ମକ୍ଷେତ୍ର ଥିଲା। ତିନି ଖଂଡରେ ସଂପୂର୍ଣ୍ଣ ଆୟୁର୍ବେଦ ରତ୍ନମାଳା ସେ ସଂପାଦନା କରିଥିଲେ। ମହାରାଜା ବୀରମିତ୍ରୋଦୟ ଏହାର ପ୍ରଥମ ଖଂଡ ୧୯୨୧ରେ ପ୍ରକାଶ କରିଥିଲେ। ଆୟୁର୍ବେଦ ଚିକିତ୍ସା ଉପରେ ରାଜାଂକର ଗଭୀର ଅନୁରକ୍ତି ହେତୁ ସେ କବିରାଜି ଔଷଧାଳୟ ପାଂଠି, କବିରାଜି ଡାକ୍ତରଖାନା ପାଂଠି, କବିରାଜ ସ୍କୁଲ ପାଂଠିସବୁ ସୋନପୁର ଟ୍ରଷ୍ଟ ଫଂଡ ଅଧୀନରେ ସୃଷ୍ଟି କରିଥିଲେ।

ଦରବାର ପକ୍ଷରୁ ମାଣିକେଶ୍ୱରୀ ମଂଦିର ନିକଟରେ ଲତା ଗୁଳ୍ମଯୁକ୍ତ ଉଦ୍ୟାନ ପ୍ରତିଷ୍ଠା କରାଯାଇଥିଲା। କବିରାଜ ଚତୁର୍ଭୁଜ ରାଜଗୁରୁ, କବିରାଜ ରାମଚଂଦ୍ର ପାଢ଼ି, କବିରାଜ ବୈଦ୍ୟନାଥ ପାଣିଗ୍ରାହୀ ପ୍ରଭୃତି ଅନେକ କବିରାଜ ସୋନପୁର ଦରବାର ଅଧୀନରେ ନିଯୁକ୍ତି ପାଇଥିଲେ। କବିରାଜ ଚତୁର୍ଭୁଜ ହଇଜା ଚିକିତ୍ସାରେ ବିଶେଷଜ୍ଞ ଥିଲେ। ୧୯୨୦ରେ ସଂବଲପୁର ସହରରେ ହଇଜା, ମହାମାରୀ ରୂପେ ଦେଖାଯିବା ବେଳେ ସେ ଦରବାର ତରଫରୁ ସେଠାକୁ ଯାଇ ନିଜ ଚିକିତ୍ସା ବୈଶିଷ୍ଟ୍ୟ ପ୍ରତିପାଦନ କରି ପାରିଥିଲେ। ନିଜ ଗ୍ରଂଥ ଆୟୁର୍ବେଦ ରତ୍ନମାଳାର ପ୍ରଥମ ଖଂଡ ମୁଖବଂଧରେ ଏ ପଦ୍ଧତିର ଚିକିତ୍ସା ପ୍ରତି ଲୋକମାନଂକର ଆଗ୍ରହ ଓ ବିଶ୍ୱାସ କ୍ରମଶଃ କମିଁଯାଉଥିବାରୁ ସେ ଏହାର ପୁର୍ନଜୀବନ ଓ

ପ୍ରଚାର ନିମିତ ଏହି ଗ୍ରଂଥ ସଂକଳନ କରିଥିବା ଲେଖିଅଛଂତି । ଜାପାନ, ମିସର, ଗ୍ରୀସ୍ ଆଦି ଦେଶରେ ଆୟୁର୍ବେଦ ଶିକ୍ଷା ଲୋକପ୍ରିୟ ହେଉଥିବା ସେ ପ୍ରକାଶ କରିଅଛଂତି । ମହର୍ଷି ଧନ୍ୱଂତରୀ, ଚରକ ଶୁଶ୍ରୁତ ଆଦି ଋଷିମାନେ ଏହାର ପ୍ରଚଳନ କରାଇଥିଲେ । ତାଂକ ସଂକଳିତ ଗ୍ରଂଥ ସାରଂଗଧର, ହରିତ ସଂହିତା, ଧନ୍ୱଂତରୀ ସଂହିତା, ବରଭଟ୍ଟ ଭାବପ୍ରକାଶ ଆଦି ପୁରାତନ ଗ୍ରଂଥ ଉପରେ ଆଧାରିତ ଥିବା ସେ ସ୍ୱୀକାର କରି ଏଥିରେ ଗର୍ଭଧାରଣ, ଶିଶୁଚର୍ଯ୍ୟା, ରକ୍ତ, ମାଂସପେଶୀ, ଶିରା, ଧମନୀ, ମଳରକ୍ତ ଆଦି ପରୀକ୍ଷା, ଧ୍ୱନି ଓ ସ୍ପର୍ଶଦ୍ୱାରା ରୋଗ ନିର୍ଣ୍ଣୟ ଆଦି ବିଷୟ ବିଶଦଭାବରେ ବର୍ଣ୍ଣନା କରିଅଛଂତି । କବିରାଜ ଲୋକନାଥଂକର ଏହା ଏକ ସ୍ମରଣୀୟ ଅବଦାନ । ତାଂକ ରଚିତ ଗ୍ରଂଥ ହରପ୍ରିୟା କାବ୍ୟ ୧୯୨୩ ରେ ପ୍ରକାଶିତ ହୋଇଥିଲା ।



ଜନମ ଯାକ ବସ୍‌ତା ବୁହି
ପିଠ୍ କଲୁନ୍ କୁଜା
ପୟସେ ଅଧଲେ ପାୟସୁ କେଭେଁ
ଖାଇବୁ ବଲି ଭୂଜା ।
ସେ ବସ୍‌ତା ବିକି ଆସସନ୍ ଲାଖ
ଲାଖ୍ ଯେନ ଚନ୍ଦ୍ରକା ।
ସେଟା ବୁହି ଫେନ ହରଦମ
ତୋର ଅନ୍‌ଟା ହେଲାନ ବଂକା
ଇଟା ଦୁନିଆଁର ରାୟ୍‌ରେ ।

—ଶଶିଭୂଷଣ

# ପଂଡିତ
# ହରିହର

ପଂଡିତ ଗୋପୀନାଥ ପାଣିଗ୍ରାହୀ ବିଦ୍ୟାଭୂଷଣଂକର ପୁତ୍ର ଥିଲେ ପଂଡିତ ହରିହର। ୧୮୯୫ ଏପ୍ରିଲ୍‌ରେ ସେ ଜନ୍ମଗ୍ରହଣ କରିଥିଲେ। ପକ୍ଷାଘାତ ରୋଗରେ ଆକ୍ରାଂତ ହୋଇ ସେ ୧୯୫୦ରେ ପ୍ରାଣତ୍ୟାଗ କଲେ। ସୋନପୁର ମଧ୍ୟଇଂରାଜୀ ବିଦ୍ୟାଳୟରେ ସେ ଶିକ୍ଷା ସମାପ୍ତି କରିଥିଲେ ମଧ୍ୟ ପିତାଂକର କବିତ୍ୱ ତାଂକଠାରେ ଦେଖିବାକୁ ମିଳିଥିଲା। ସେ ଖଳା ଥିଲେ ତଥାପି ଲେଖନୀ ଚାଳନାରେ ଧୁରଂଧର ଥିଲେ। ୧୯୩୬ ରୁ ୧୯୩୮ ମଧ୍ୟରେ ସେ ଆଗମନୀ ଓ ନିରଞ୍ଜନା ନାମରେ ଦୁଇଗୋଟି କାବ୍ୟ ରଚନା କରିଥିଲେ। ଅନ୍ୟାନ୍ୟ ସମକାଳୀନ କବିମାନେ ନିଜ ରଚନାରେ ସୋନପୁର ରାଜ୍ୟ ଓ ଆଂଚଳିକ ପ୍ରାକୃତିକ ଶୋଭା ବର୍ଣନା କରିଥିବା ବେଳେ ହରିହର ସମଗ୍ର ଓଡ଼ିଶାର ଲୋକଂକୁ ଲକ୍ଷ୍ୟ କରି ନିଜ ରଚନା ସୃଷ୍ଟି କରିଥିଲେ। ଓଡ଼ିଶାର ପୂର୍ବ ବିଭବ ଫେରାଇ ଆଣିବାକୁ ସେ ଦେଶର ମାନ୍ୟଗଣ୍ୟ ବ୍ୟକ୍ତିମାନଂକୁ ଆହ୍ୱାନ ଦେଇଥିଲେ। ଆଗମନ କାବ୍ୟରେ ଦୁର୍ଗାଦେବୀଂକର ପୃଥିବୀକୁ ଆଗମନର ବର୍ଣନା ସହିତ ପ୍ରାଚୀନ ଉତ୍କଳର କାବ୍ୟ, ସାହିତ୍ୟ, କାରୁକାର୍ଯ ଶିଳ୍ପକଳା ଓ ନୌବାଣିଜ୍ୟର ଉତ୍କର୍ଷ ଦର୍ଶାଯାଇଅଛି। ସେହି ହୃତଗୌରବ ଏହି ସବୁ କ୍ଷେତ୍ରରେ ଫେରି ଆସିବାକୁ କାବ୍ୟରେ ପ୍ରାର୍ଥନା କରାଯାଇଅଛି।

ମହାରାଜ ବୀରମିତ୍ରୋଦୟଙ୍କ ବିୟୋଗରେ ସେ 'ଅଶ୍ରୁଧାରା ଅର୍ଚ୍ଚନା' ସାଂତ୍ୱନା ପୁଷ୍ପମାଲ୍ୟ ନାମରେ କାବ୍ୟ ପ୍ରକାଶ କରି ରାଜ୍ୟବାସୀଂକର ଶୋକ ବର୍ଣନା କରିଥିଲେ। ସେ ତାଂକ ସ୍ମୃତିରେ ଲେଖିଥିଲେ ସମୁଦ୍ର କୂଳରେ ପୁରୀରେ ଜଗନ୍ନାଥ ମହାପ୍ରଭୁ ଥିବା ପର୍ଯ୍ୟଂତ, ତାଂକ ମଂଦିରରେ ଧ୍ୱଜା ଫରଫର ହୋଇ ଉଡୁଥିବା ପର୍ଯ୍ୟଂତ ରାଜ୍ୟବାସୀ ଆପଣଂକୁ ସ୍ମରଣକରି ଗୁଣଗାନ କରୁଥିବେ। ହରିହରଂକ ବିଷୟରେ ସମାଲୋଚକମାନେ ତାଂକ ରଚନାର ସ୍ୱଚ୍ଛତା ଦେଖାଇ ମାତ୍ର ୨ ବର୍ଷ ସେ ସାହିତ୍ୟ ସାଧନା କରି ପରେ ମୃତ୍ୟୁ ପର୍ଯ୍ୟଂତ ସଂପୂର୍ଣ ନିରବ ଥିବାର କାରଣ ନିର୍ଣୟ କରିବାରେ ଅସମର୍ଥ ହୋଇଅଛଂତି। ସଂଭବତଃ ପାରିପାର୍ଶ୍ୱିକ ଅବସ୍ଥା ବା ପୃଷ୍ଠପୋଷକତାର ଅଭାବ ଏହାର କାରଣ ହୋଇପାରେ।



ସହର ମୁହାଁ ହେଇ ବସ୍‌ସୁ କେନଦୁରେ ତୁଇ<br>
ଛାଡ଼ି ବାପ ଅଜାର ମାଟି,<br>
ନିଜର ହାତେଁ ନିଜେଁ ରଟକି ହେବୁ<br>
କାଏଁ ଦେବୁ ନିଜର ହାତେ ଟେଁଟି କାଟି<br>
ନାଇଁ ଭାବି ଟିଁଡି ଗଲେଁ ପଛେଁତେ<br>
ଅଡ଼ଉଆରେ ପଡ଼ି ହେବୁ ଘାଁଟି।

–ଶଶିଭୂଷଣ

# ଦରବାରୀ କବି

# ନରେଂଦ୍ର ସାହୁ

ଅନୁଗୁଳରୁ ଆଗତ ନରେଂଦ୍ର ସାହୁ ନାମକ ଜଣେ କବି ସୋନପୁର ଦରବାରର କାବ୍ୟିକ ଇତିହାସ ୧୯୧୯ର ଦୁର୍ଭିକ୍ଷ ସମୟରେ ଅଂଗେ ନିଭାଇଥିବା କେତେ ଜଣଂକ ଠାରୁ ତଥ୍ୟ ସଂଗ୍ରହ କରି ରଚନା କରିଥିଲେ। ଦାମୋଦର ମିଶ୍ର 'ସୋନପୁର ବର୍ଣନା' ନାମକ ଏହି କାବ୍ୟକୁ ସଂଶୋଧନ କଲାପରେ ଏହା ମହାରାଜା ବୀର ମିତ୍ରୋଦୟଂକୁ ଉତ୍ସର୍ଗ କରାଯାଇ ୧୯୨୪ ରେ ପ୍ରକାଶ ପାଇଥିଲା। ତିନି ଅଧ୍ୟାୟରେ ଏହି କାବ୍ୟ ରଚିତ ହୋଇଥିଲା। ବଂଗଶ୍ରୀ ରସକୋଇଲା, ରାମକେଳି ବୃତରେ ଲିଖିତ ଉକ୍ତ ଗ୍ରଂଥରେ ମଦନଗୋପାଳଂକର ଚରିତ ବର୍ଣନା ସହିତ ସୁବର୍ଣମେରୁ ଉପାଖ୍ୟାନ ମଧ୍ୟ ଦିଆଯାଇଅଛି। ଐତିହାସିକ ତଥ୍ୟଗତ ଅନେକ ପ୍ରମାଦ ଏଥିରେ ଅବଶ୍ୟ ଦେଖିବାକୁ ମିଳେ, ମହାରାଜା ବୀରମିତ୍ରୋଦୟ ପାଠ୍ୟ ପୁସ୍ତକ ଭାବେ ପ୍ରଚଳିତ ହେବାପାଇଁ ୧୯୧୦ରେ ବିବିଧ ଶିକ୍ଷା ରଚନା କରିଥିଲେ। ୩ ଖଂଡରେ ସୋନପୁର ଚୌହାନ ବଂଶର ଇତିହାସ ଓ ୫ ଖଂଡରେ ସୋନପୁରର ଇତିହାସ ଏହି ଉଦ୍ଦେଶ୍ୟରେ ଯଥାକ୍ରମେ ପଂଡିତ ବିଶ୍ୱନାଥ ରଥ ଓ ପଂଡିତ ଆଦିତ୍ୟ ପ୍ରସାଦ ଗୁରୁଂକ ଦ୍ୱାରା ରଚନା କରାଯାଇଥିଲା।

ଜଣାପଡ଼େ ବୀରମିତ୍ରୋଦୟଂକର ପ୍ରଶସ୍ତି ଗାନ ଏ ଗ୍ରଂଥଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଐତିହାସିକ ତ୍ରୁଟିମାନ ମଧ୍ୟ ଏଥିରେ ପାଠକ ଦୃଷ୍ଟିକୁ ଆସିଥାଏ, ମାତ୍ର ଏ ସବୁ ତ୍ରୁଟି ସତ୍ତ୍ୱେ ଓଡ଼ିଶାର ଅନ୍ୟ କୌଣସି ରାଜଦରବାର ଇଂରେଜୀ ସଂସ୍କୃତ ଓ ଓଡ଼ିଆରେ ଏତେ ଗୁଡ଼ିଏ ଐତିହାସିକ ତଥ୍ୟଯୁକ୍ତ ପଦ୍ୟ ସାହିତ୍ୟ ରଚନା ବା ପ୍ରକାଶନ କରି ନାହାଂତି । 'ସୋନପୁର ଇତିହାସ' ଲେଖକ ବିଜୟ ଚଂଦ୍ର ମଜୁମଦାର ମଧ୍ୟ ମହାରାଜାଂକର ଆଶ୍ରିତ ଓ ସ୍ତାବକ ଥାଇ ରାଜ୍ୟର ଶାସନ ସହିତ ଘନିଷ୍ଠତା ସତ୍ତ୍ୱେ ନିଜ ରଚନାରେ ବୀର ମିତ୍ରୋଦୟଂକର ବ୍ୟକ୍ତିଗତ ଦୂଷିତ ଚରିତ୍ର, ରାଣୀଂକ ସହିତ ସଂପର୍କ, ଦେବୋପମ ଚରିତ୍ର ବିଶିଷ୍ଟ ଯୁବରାଜ ସୋମ ଭୂଷଣଂକ ମୃତ୍ୟୁରେ ମହାରାଜାଂକ ଭୂମିକା, ପ୍ରଜାମାନଂକର ଶୋଷଣ, ବିରୁଦ୍ଧ ମତାବଲଂବୀମାନଂକର ନିଗ୍ରହ ଓ ଦର୍ପଣଯୁକ୍ତ କେଳିଗୃହରେ ତାଂକର ନୈଶ କାମକ୍ରୀଡ଼ା ବର୍ଣ୍ଣନା କରିବାକୁ ସାହସ କରିନାହାଂତି । ତେଣୁ ଏହି ଗ୍ରଂଥମାନଂକରେ ଐତିହାସିକ ପ୍ରମାଦ ରହିଥିବା ସ୍ପଷ୍ଟ ହୋଇଯାଏ ।



ଗାଂଧି ବୁଢ଼ାର ପଛେଁ ଗଲୁଁ
ଭଲ ହେମୁଁ ବଲୁଁ ବଲୁଁ
ହାୟରେ ଆମେ କାଣା କଲୁ ।
ଲୁକେ ଛାଡ଼ନ୍ ନିର୍ଧୂମ ରଡ଼ି
ଏଭେ ଆଁଭର୍ ଗଲା ବଢ଼ି (କର)
ଆଛା ଭାଇ ସ୍ୱାଧୀନ୍ ହେଲୁ
ହାୟରେ ଆମେ କାଣା କଲୁଁ ।

(ରସ କବିତା) – ଶଶିଭୂଷଣ



## ପଂଡିତ

# କୈବଲ୍ୟ ଚରଣ ନାୟକ

ସୋନପୁର ଦରବାରର ଗୀତଗାଥା କବି ଥିଲେ କୈବଲ୍ୟ ଚରଣ ନାୟକ ସେ ଜଂଗଲ ବିଭାଗର କର୍ମଚାରୀ ଥିଲେ ମଧ୍ୟ ତାଂକ କବି ପ୍ରତିଭା ପ୍ରଚ୍ଛନ୍ନ ରହିପାରି ନ ଥିଲା। ରେଭେନ୍ସା କଲେଜରେ ଅଧ୍ୟୟନ ସମୟରେ ସେ ମଧ୍ୟଯୁଗର ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ଭକ୍ତ ଚରଣ, ଦୀନକୃଷ୍ଣ ଆଦି ପ୍ରାଚୀନ କବିମାନଂକ ସହିତ ନବଜାଗରଣର କବି ରାଧାନାଥ ଓ ଗଂଗାଧରଂକର ରଚନା ଗଭୀର ଅନୁଧ୍ୟାନ କରିଥିଲେ। ପଦ୍ୟ ମାଧ୍ୟମରେ ନିଜର ଭାବଧାରା ସେ ନଳଚରିତ ଓ ଶାଖା ପ୍ରଶାଖା କାବ୍ୟରେ ପ୍ରକାଶ କରିଥିଲେ। ପ୍ରକାଶନ ପୂର୍ବରୁ କାବ୍ୟ ଦୁଇଟି ହଜିଗଲା କିଂତୁ ପରବର୍ତୀ କାଳରେ ସେ ମରୁଧାରା, ସଂଧ୍ୟାତାରା, ମହାପଥର ଯାତ୍ରୀ ଆଦି କବିତା ସଂକଳନ ପ୍ରକାଶ କରିଥିଲେ। ସେ ସ୍ୱାଧୀନ ମତାବଲଂବୀ ଥାଇ ରାଜ ଅନୁଗ୍ରହରେ ନିଜର ରଚନା ପ୍ରକାଶିତ ହେବା ଇଚ୍ଛା କରୁ ନ ଥିବାରୁ ପୃଷ୍ଠପୋଷକତାର ଅଭାବରେ ତାଂକର ପାଂଡୁଲିପିମାନ ନଷ୍ଟ ହୋଇଗଲା। ତାଂକ ସ୍ୱାଧୀନ ଚିଂତାଧାରା ନିଜ ଜୀବିକାର୍ଜନରେ ମଧ୍ୟ ପ୍ରକାଶିତ ହୋଇଥିଲା। ଜଂଗଲରୁ ଆୟ ହ୍ରାସ

ପାଉଥିବାରୁ ବୀରମିତ୍ରୋଦୟ ନିଜର ବିରକ୍ତି ପ୍ରକାଶ କରିବାରୁ କୈବଲ୍ୟ ଦରବାରରେ ଉପସ୍ଥିତ ଯୁବରାଜଙ୍କୁ ଆଙ୍ଗୁଠି ଦେଖାଇ କହିଲେ 'କାର୍ଯ୍ୟରେ ବାଧାସୃଷ୍ଟି କଲେ ଆୟ ବୃଦ୍ଧି ପାଇ ପାରିବ ନାହିଁ। ମଣିମା ଯୁବରାଜଙ୍କୁ ପଚାରନ୍ତୁ। ସେ ମୋତେ ମୋ କାର୍ଯ୍ୟ କରିବାର ସଂପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି କି ?' ମହାରାଜା ନିରବ ହେଲେ। ରାଜ୍ୟ ମିଶ୍ରଣ ପରେ ସେ ଓଡ଼ିଶା ସରକାର ଅଧୀନରେ ଚାକିରି ନ କରିବାକୁ ଓ ମହାରାଜାଙ୍କ ପ୍ରତି ଆନୁଗତ୍ୟ ଦେଖାଇବାକୁ ମହାରାଜାଙ୍କ ଅଧୀନରେ ତାଂକ ବ୍ୟକ୍ତିଗତ ସଂପତିର ତତ୍ତ୍ୱାବଧାୟକ ଭାବରେ କାର୍ଯ୍ୟ କଲେ। ସେଥିରେ ଅସନ୍ତୁଷ୍ଟ ହୋଇ ମାତ୍ର ୪୭ ବର୍ଷ ବୟସରେ ୧୯୫୬ରେ ଚାକିରିରୁ ଇସ୍ତଫା ଦେଲେ। ତାଂକର ଜନ୍ମ ୧୯୦୯ରେ ହୋଇଥିଲା।

କୈବଲ୍ୟ ଗୀତା ପ୍ରେସରୁ ପ୍ରକାଶିତ ହିଂଦି 'କଲ୍ୟାଣ' ପତ୍ରିକାର ନିୟମିତ ପାଠକ ଥିବାରୁ ତାଂକ ନିଜର ଜୀବନଧାରା ଓ କବିତା ରଚନାରେ ଏହାର ଧାର୍ମିକ ପ୍ରଭାବ ପଡ଼ିଥିଲା। ମରୁଧାରାରେ ୧୯ଟି କବିତା ଦିଆଯାଇଅଛି।

'ବ୍ୟତିକ୍ରମ', 'ସାବଧାନ', 'ଅନୁରାଗର ଇନାମ', 'ହୀହତୋସ୍ମି', 'ଶ୍ରଦ୍ଧାଞ୍ଜଳି' 'କର୍ମୀ', 'ବୃନ୍ଦାବନ ପରିକ୍ରମା', 'ଅଶେଷ ତୀର୍ଥ ଅର୍ଚନା', 'ନୀଳ କନ୍ଦରେ' ଆଦି ନାମଯୁକ୍ତ ଏହି କବିତା ମାନଂକରେ କବିଂକର ଆଧ୍ୟାତ୍ମିକ ଚେତନା ପରିସ୍ଫୁଟ। କବିତା 'ସମାଧାନ'ରେ ଇଂଦ୍ର ଓ ବୃତାସୁରର ବୃତାଂତ ବର୍ଣନା କରାଯାଇ ଜୀବନରେ କର୍ମ ପ୍ରଧାନ ଓ କର୍ମ ଫଳ ଭୋଗ ଅବଶ୍ୟାଂଭବୀ ଦର୍ଶାଯାଇଅଛି। ଫେରିବାଲା, ମିଳନବାସରେ ଆଦି ଅନ୍ୟାନ୍ୟ କବିତା ମଧ୍ୟ ଏଥିରେ ସ୍ଥାନିତ। କୈବଲ୍ୟ ଚରଣ ଝାଡୁଆ ବ୍ରାହ୍ମଣମାନଂକର ଆରଣ୍ୟକ ବ୍ରାହ୍ମଣ ସମାଜ ନାମରେ ଏକ ସଂଗଠନ ପ୍ରତିଷ୍ଠା କରିଥିଲେ। ଏହି ବ୍ରାହ୍ମଣମାନଂକର ସାମାଜିକ ଉନ୍ନତି, ଶିକ୍ଷାଦାନ ଓ ବ୍ରତ ଉପନୟନ ନିମିତ ଅର୍ଥ ପ୍ରଦାନ, ଦରିଦ୍ରମାନଂକର ବିବାହ ଓ ଅଂତ୍ୟେଷ୍ଟି କ୍ରିୟା ସଂପାଦନ ସଂଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ସେମାନେ ସମାଜ ସଂସ୍କାର କ୍ଷେତ୍ରରେ ପ୍ରଶଂସନୀୟ କାର୍ଯ୍ୟ କରିଥିଲେ। ୧୯୬୧ରେ ତାଂକର ମୃତ୍ୟୁ ହେଲା।





ଗୌରୀଶଂକର ରାଜଗୁରୁ



ଲକ୍ଷ୍ମଣ ଶତପଥୀ

# ସୋନପୁର ପ୍ରଜାମଂଡଳ କର୍ମୀ
# ଗୌରୀଶଂକର ରାୟଗୁରୁ ଓ ଲକ୍ଷ୍ମଣ ଶତପଥୀ

ବ୍ରିଟିଶ ଶାସିତ ପ୍ରଦେଶମାନଂକରେ ଦାୟିତ୍ୱଶୀଳ ସରକାର ପ୍ରତିଷ୍ଠା ପରେ ଭାରତର ସବୁ ଦେଶୀୟ ରାଜ୍ୟମାନଂକରେ ସ୍ୱାୟତ୍ତ ଶାସନ ଦାବି କରି ପ୍ରଜା ଆଂଦୋଳନ ଆରଂଭ ହେଲା । ୧୯୩୧ରେ ଗଠିତ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ସହିତ ଏଗୁଡ଼ିକର ସହବଂଧନ ଥିଲା । ଓଡ଼ିଶାରୁ ସୋନପୁର ରାଜ୍ୟ ଆଦୋଂଳନରୁ ବାଦ ପଡ଼ି ନ ଥିଲା । ସେହି ଆଂଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିବା ବ୍ୟକ୍ତିମାନଂକ ମଧ୍ୟରେ ଗୌରୀ ଶଂକର ରାଜଗୁରୁ ଓ ଲକ୍ଷ୍ମଣ ଶତପଥୀ ପ୍ରଧାନ ଥିଲେ । ଅନ୍ୟମାନଂକ ମଧ୍ୟରେ ଥିଲେ ଧନବଂତ ମଲ୍ଲିକ, ଚତୁର୍ଭୁଜ ମିଶ୍ର, ମୋହନ ମିଶ୍ର, ଦାମୋଦର ରଥ, ହରି ମିଶ୍ର କାଳିଆ ମଲିକ, ରାମଚଂଦ୍ର ଶତପଥି, ସତ୍ୟାନଂଦ ହୋତା, ଦୈତ୍ୟାରି ଶୁଂଡି, ମୁରଲି ମିଶ୍ର, ବାଂଚାବଟ ପୂଜାରୀ, ଦାଶରଥି ରଥ, ନଂଦଲାଲ ସେଠି, ଭୀମସେନ ଭୋଇ, ବୈଶଂପାୟନ ପାଢ଼ି, କାଶୀନାଥ ଦାନ ଓ ବଂଧାଇନ ଦୈତାରି ବଡ଼ପଂଡା ପ୍ରଭୃତି । ମହାରାଜା, ବୀରମିତ୍ରୋଦୟ ସିଂହଦେଓ (୧୮୭୪-୧୯୩୭) ୨୫ ବର୍ଷ ରାଜତ୍ୱ କାଳରେ ରାଜ୍ୟ ବାହାରେ ଦାନରେ

କର୍ଣ୍ଣ ଓ ବିଭବରେ ଇଂଦ୍ର ବୋଲି ଗଣାଯାଉଥିଲେ ସୁଦ୍ଧା ପ୍ରଜାମାନଂକର ଦୁଃଖର ସୀମା ନ ଥିଲା। ଦାରିଦ୍ର୍ୟ ସୀମାରେଖାର ସର୍ବନିମ୍ନରେ ସେମାନେ ଥିଲେ ମାତ୍ର ସେମାନଂକୁ ମଣିଷ ଯେତେପ୍ରକାର କର ଅସୁଲ କରିବା କଳ୍ପନା କରି ପାରେ ତାହା ସବୁ ଦେବାକୁ ପଡୁଥିଲା। ବୀରମିତ୍ରୋଦୟ ଇଂରେଜ ସରକାରଂକୁ ଖୁସିରେ ରଖି ସବୁ ପ୍ରକାର ଅତ୍ୟାଚାର ଚଳାଉଥିଲେ। ୧୯୩୭ରେ ତାଂକର ମୃତ୍ୟୁ ପରେ ପ୍ରଜା ଆଂଦୋଳନ ତେଜି ଉଠିଲା। ଇଂରେଜ ଶାସିତ ପ୍ରଦେଶମାନଂକରେ ନୂଆ ଲୋକ ପ୍ରତିନିଧି ଶାସନ ପ୍ରତିଷ୍ଠିତ ହୋଇ ସାରିଥାଏ। ଡିସେଂବର ମାସ ୧୯୩୮ ସାଲରେ ଭୀମସେନ ଭୋଇଂକ ସଭାପତିତ୍ୱରେ ତୁରୁମରେ ପ୍ରଜାମଂଡଳର ଗୋଟିଏ ବିରାଟ ସଭା ପରେ ବେଠି ବେଗାରି ଚାଂଦା ଭେଦା ଆସି ସବୁ ପ୍ରକାର ବେଆଇନ ପାଉଣା ଉଠାଇଦେବାକୁ ଦାବି କରି ୧୪ ଦଫାର ଏକ ଦାବିପତ୍ର ଦରବାରକୁ ଦିଆଗଲା। ନୂଆ ରାଜା ସୁଧାଂଶୁ ଶେଖର ଦାବି ଗ୍ରହଣ ନ କଲେ ମଧ୍ୟ ଆଂଦୋଳନକୁ ମୁକାବିଲା କରିବାର ସାମର୍ଥ୍ୟ ଯେ ତାଂକର ନ ଥିଲା, ଏହା ଜଣାପଡ଼ିଲା। ଲକ୍ଷ୍ମଣ ଶତପଥୀ ଓ ଗୌରୀଶଂକର ରାଜଗୁରୁଂକ ନେତୃତ୍ୱରେ ଆଂଦୋଳନ ଚାଲୁ ରହିଲା।

ଗୌରୀଶଂକରଂକର ଜନ୍ମ ସୋନପୁର ରାଜ୍ୟର ଏକ ଛୋଟ ଗ୍ରାମରେ ୧୮୯୪ରେ। ସେ ୧୯୧୧ରେ ସୋନପୁର ମଧ୍ୟଇଂରାଜୀ ବିଦ୍ୟାଳୟରୁ ମାଇନର ପାସ୍ କଲେ। କିଛିଦିନ ଦରବାର ଅଧୀନରେ ପଟୁଆରି କାମ କଲେ। ସେତେବେଳେ ରାଜା ପ୍ରଜାମାନଂକଠାରୁ ଖଜଣା ବ୍ୟତୀତ ନାନା ପ୍ରକାରର କର ଅସୁଲ କରୁଥିଲେ। ପ୍ରଜାମାନଂକର ଆର୍ଥିକ ସଂଗତି ନ ଥିଲେ ମଧ୍ୟ ଏସବୁ ଅସୁଲ କରାଯାଇଥିଲା। ଗୌରୀଶଂକର ପ୍ରତିବାଦ କଲେ। ରାଜାଂକର କୋପଦୃଷ୍ଟି ଏଡାଇବାକୁ ୧୯୧୩ ରେ ସେ ପାଖରାଜ୍ୟ ବଉଦକୁ ପଳାଇଲେ। ସେଠାରେ କିଛିଦିନ ଜଂଗଲ ବିଭାଗରେ ଚାକିରି କଲେ। ଶିକ୍ଷକତା ମଧ୍ୟ କଲେ। ଦେଶରେ ଅସହଯୋଗ ଆଂଦୋଳନ ଆରଂଭ ହେଲା। ସଂବଲପୁର ସହରରେ ଜାତୀୟ ବିଦ୍ୟାଳୟ ସ୍ଥାପିତ ହେଲା ଓ 'ସେବା' ନାମକ ଏକ ସଂବାଦପତ୍ର ପ୍ରକାଶ ପାଇଲା। ଗୌରୀଶଂକର ୧୯୨୧ରେ ଅସହଯୋଗ ଆଂଦୋଳନରେ ଯୋଗଦେଇ ଗଡଜାତ ପ୍ରଜାମାନଂକର ଶୋଷଣ ବୃତ୍ତାଂତ ସେଥିରେ ବର୍ଣ୍ଣନା କଲେ। ଫଳରେ ବଉଦ ଦରବାର ମଧ୍ୟ ତାଂକୁ ରାଜ୍ୟରୁ ବହିଷ୍କାର କଲେ। ସଂବଲପୁରକୁ ପଳାଇ ଯାଇ ସେ ସେଠାରେ ଆଶ୍ରୟ ନେଲେ। କିଛିଦିନ ଶିକ୍ଷକତା କଲାପରେ ସେ ଜାତୀୟ କଂଗ୍ରେସରେ କର୍ମୀ ଭାବରେ ନିଜର ସମସ୍ତ ସମୟ ପ୍ରଦାନ କଲେ। ଗ୍ରାମକୁ ଗ୍ରାମ ବୁଲି କଂଗ୍ରେସର ବାର୍ତ୍ତା ପ୍ରଚାର କଲେ। ସୋନପୁର ଓ ଅନ୍ୟାନ୍ୟ ଗଡଜାତର ପ୍ରଜାମାନଂକର ଅଭାବ ଅସୁବିଧା ପ୍ରତିଷ୍ଠିତ ଜନନାୟକମାନଂକ ଦୃଷ୍ଟିକୁ ଆଣିଲେ। ତାଂକ ସହିତ ଏହି ସମୟରେ ଲକ୍ଷ୍ମଣ ଶତପଥୀ ମଧ୍ୟ ଯୋଗ ଦେଲେ।

ସୋନପୁର ରାଜ୍ୟର ମହାନଦୀର ଉତ୍ତର ପାର୍ଶ୍ୱରେ ବୀରମହାରାଜପୁର ଉପଖଂଡରେ କଳାପଥର ଗ୍ରାମରେ ଲକ୍ଷ୍ମଣଂକର ଜନ୍ମ । ତାଂକର ପିତା ଗ୍ରାମର ଅବଧାନ ଥିଲେ । ଗୌଂତିଆ ଘର ପିଲାମାନଂକ ସହିତ ଅନ୍ୟମାନଂକୁ ବିଦ୍ୟାଶିକ୍ଷା ଦେଇ ସେ ଅଭାବରେ ଗୁଜୁରାଣ ମେଂଟାଉ ଥିଲେ । ଲକ୍ଷ୍ମଣ ତାଂକ ପାଖରେ ପାଠ ସାରି ସୋନପୁର ଗଲେ । ୭ମ ଶ୍ରେଣୀ ଯାଏ ପାଠପଢି ପରିବାରର ଅଭାବ ମେଂଟାଇବାକୁ ଚାକିରି କଲେ । ରାଜ୍ୟରେ ଅନେକ ପ୍ରକାର କର ଅସୁଲ ହେଉଥିଲା । ବେଠି ବେଗାଡି ପ୍ରଚୁର ଖଟିବାକୁ ପଡୁଥିଲା । ଏଥିରେ ଖିଲାପ କଲେ ନାନା ପ୍ରକାର ଶାରିରୀକ ଦଂଡ ଭୋଗିବାକୁ ପଡୁଥିଲା । ଲକ୍ଷ୍ମଣ ଏହା ବିରୋଧରେ ଜନମତ ସୃଷ୍ଟି କଲେ । ଫଳରେ ରାଜାଂକ କୋପ ଦୃଷ୍ଟିରେ ପଡ଼ି ରାଜ୍ୟ ଛାଡି ସଂବଲପୁର ପଳାଇଗଲେ । ଦେଶରେ ଅସହଯୋଗ ଆଂଦୋଳନ ପ୍ରବଳ ହୋଇଥାଏ । ଗୌରୀଶଂକର ରାୟଗୁରୁଂକଠାରୁ ଉତ୍ସାହ ପାଇ ସେ ଏଥିରେ ଯୋଗଦେଲେ । ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀର ଓଡ଼ିଶାର ମୁଖ୍ୟ କର୍ତା ହରେକୃଷ୍ଣ ମହତାବ ଓ ସାରଂଗଧର ଦାସଂକ ସହିତ ସଂପର୍କ ସ୍ଥାପନ କଲେ । ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀ ମଂଡଳ ଗଠିତ ହେବାପରେ ୧୯୩୮ରେ ସେମାନେ ସୋନପୁରର ଏକ ବଡ଼ ଗାଁ ସୁଖାରେ ଗୋଟିଏ ସଭା କରି ପ୍ରଜାମଂଡଳ ଗଠନ କଲେ । ଏହା ଦରବାରର କୋପଦୃଷ୍ଟିକୁ ଆସିବାରୁ ସେ ରାଜ୍ୟ ଛାଡ଼ି ପଳାଇଗଲେ, ମାତ୍ର ଜାତୀୟ କଂଗ୍ରେସର ସଭ୍ୟ ଓ ପୁରା ସମୟଦେଇ ଖଟୁଥିବା କର୍ମୀ ଭାବରେ ଗୁପ୍ତରେ ପ୍ରଜାମାନଂକୁ ସଂଗଠିତ କରିବା କାର୍ଯ ଜାରି ରଖିଲେ । ବିଶ୍ୱଯୁଦ୍ଧ ଆରଂଭ ହେଲା । ରାଜ୍ୟରେ ଆଂଦୋଳନକୁ ପ୍ରଖରତର କରିବାକୁ ଲକ୍ଷ୍ମଣ ଓ ଗୌରୀଶଂକର ଉଦ୍ୟମ ଜାରି ରଖିଲେ । ଭାରତଛାଡ଼ ଆଂଦୋଳନ ସମୟରେ ତାଂକୁ ଭାରତ ରକ୍ଷା ଆଇନ ବଳରେ ଅନ୍ୟଜଣେ ସହକର୍ମୀ ଧନବଂତ ମଲିକଂକ ସହିତ ଗିରଫ କରାଯାଇ ମକଦମା ବିଚାର ହେଲା । ସଂବଲପୁରର ଯୁବ ଓକିଲ ଶ୍ରଦ୍ଧାକର ସୂପକାର ତାଂକ ତରଫରୁ ମକଦମା ଲଢ଼ିଲେ, ମାତ୍ର ଏଥିରେ ତାଂକୁ ସଜାହେଲା । କିଛିଦିନ ଜେଲ ଭୋଗିବା ପରେ ସେ ଖଲାସ ହୋଇ ସଂବଲପୁର ଆସିଲେ । ସେଠାରେ ସେ ଗଡ଼ଜାତ ପ୍ରଜାମାନଂକର ଗୋଟିଏ ସମ୍ମିଳନୀ କରାଇଲେ । ଏହି ସମୟରେ ଦେଶରେ ଦ୍ରୁତ ରାଜନୈତିକ ପରିବର୍ତନ ଘଟୁଥିଲା । ୧୯୪୭ ଅଗଷ୍ଟରେ ଭାରତ ସ୍ୱାଧୀନ ହେଲା ଓ ୧୯୪୮ ଜାନୁଆରିରେ ସୋନପୁର ଗଡ଼ଜାତର ଓଡ଼ିଶା ସହିତ ମିଶ୍ରଣ ହେଲା ।

ମିଶ୍ରଣ ଉତାରେ ଓଡ଼ିଶା ବିଧାନସଭାର ମନୋନୀତ ସଭ୍ୟଭାବରେ ଗୌରୀଶଂକର ଓ ଲକ୍ଷ୍ମଣ ଶତପଥୀ ମର୍ଯାଦା ଲାଭ କରିଥିଲେ । ପରେ ସେମାନଂକୁ ରାଜନୈତିକ ପେନ୍‌ସନ୍ ମଧ୍ୟ ମିଳିଲା । ୭୪ ବର୍ଷ ବୟସରେ ୧୯୬୮ରେ ଗୌରୀଶଂକର ପ୍ରାଣତ୍ୟାଗ କଲେ ।

ଲକ୍ଷ୍ମଣ ସଂବଲପୁରରେ ଥାଇ ସୋନପୁର ସହିତ ସଂପର୍କ ରଖୁଥିଲେ ଓ ସେଠାରେ ସବୁ ପ୍ରକାର ସାଂସ୍କୃତିକ ସାମାଜିକ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ। ସ୍ୱାଧୀନତାର ରଜତ ଜୟଂତୀ ଉପଲକ୍ଷେ ତାଂକୁ ତାମ୍ର ଫଳକ ଦିଆଯାଇ ସଂବର୍ଧିତ କରାଯାଇଥିଲା। ପରିଣତ ବୟସରେ ୨୦୦୧ରେ ଆଶ୍ୱିନମାସରେ ତାଂକର ମୃତ୍ୟୁ ହେଲା।

ଗଡ଼ଜାତ ପ୍ରଜା ଆଂଦୋଳନ ଉଦ୍ଦେଶ୍ୟରେ ନିଜର ସମସ୍ତ ସୁଖ ସ୍ୱାଚ୍ଛଂଦ୍ୟ ତ୍ୟାଗ ପୂର୍ବକ ଜନସାଧାରଣଂକର ସେବା ନିମିତ୍ତ ଦରବାର ଶାସନର ଦମନ, ପୀଡ଼ା ଓ ଅତ୍ୟାଚାର ସହ୍ୟ କରି ନିଜର ସମାଜ ଓ ରାଜନୀତିକୁ ଅବଦାନ ନିମିତ୍ତ ଏ ଦୁହେଁ ସ୍ମରଣୀୟ ରହିବେ।



ଡର୍‌ହା ମର୍‌ହା ଛେର୍‌ହା ଛନ୍‌କା
ଯେତେ ଅଛନ୍ ବାଛି ପକା
ତାଁକର ମୁଁଡେ ରକଦ୍ ମଖା
ଦୁଲକୁ ଛାଡି ବଙ୍କା।

(ରସକବିତା) - **ଶଶିଭୂଷଣ**

ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ ମସିହାରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାଂକ ସଂପାଦିତ ଓ ପ୍ରକାଶିତ "ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ" ଗ୍ରଂଥରୁ ଏହି ବିସ୍ମୃତ ରଚୟିତାମାନଂକର ନାମ ଓ ରଚନାବଳୀ ଗୃହୀତ ।

# ପ୍ରତାପଚଂଦ୍ର ସିଂହଦେଓ

ସୋନପୁରରେ ଅଷ୍ଟାଦଶ ଶତାବ୍ଦୀରେ ୧୭୯୦ରେ ଜନ୍ମ ପ୍ରତାପ ଚଂଦ୍ର ସିଂହଦେଓଂକର ଚଂଦ୍ରାବତୀ ପରିଣୟ କାବ୍ୟ ସୋନପୁର ରାଜକୁମାର ସୋମଭୂଷଣ ସିଂହ ଦେଓଂକ ଆନୁକୂଲ୍ୟରେ ପ୍ରକାଶ ପାଇଥିଲା ।

# ମହେଶ୍ୱର ବିପ୍ର

ଊନବିଂଶ ଶତାବ୍ଦୀର ମହେଶ୍ୱର ବିପ୍ର ସୋନପୁର ସମ୍ବଲପୁର ଅଂଚଳର କାବ୍ୟ ଲେଖକ ଥିଲେ । ତାଂକ ରଚିତ ଲକ୍ଷ୍ମୀ ଜଗନ୍ନାଥ ବଚନିକା ବାମଂଡାର ଜଗନ୍ନାଥ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା ।

# ଅର୍ଜୁନ ହୋତା

ଜନ୍ମ ୧୯୧୧ରେ । ସୋନପୁର ରାଜ୍ୟ ଅଂତର୍ଗତ ଖଂବେଶ୍ୱର ପାଲିରେ । ବସ୍ତର ବିଜୟ ସୁଭଦ୍ରାର୍ଜୁନ (ନାଟକ) ଦୃଶ୍ୟ ଅଦୃଶ୍ୟ, ପ୍ରଳାପ ଦାର୍ଶନିକ ମୁକ୍ତକ ତାଂକର ରଚନା । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସେ ନିଜ ସାହିତ୍ୟିକ କୃତି ନିମିତ୍ତ ଉପାୟନ ଓ ମାନପତ୍ର ଦ୍ୱାରା ସମ୍ମାନିତ ।

# ରାମଚଂଦ୍ର ଶତପଥୀ

ରାମଚଂଦ୍ର ଶତପଥୀଂକ ଘର ବଲାଂଗିର ଜିଲାର କଙ୍କାପଥରରେ ଥିଲା । ସୋନପୁର ରାଜନୈତିକ ଆଂଦୋଳନର ସଂକ୍ଷିପ୍ତ ଇତିହାସ ଓ ହରିଜନ ମଂଦିର ପ୍ରବେଶ ପୁସ୍ତକର ରଚୟିତା ଥିଲେ ।

# ବାଂଛାନିଧି ମେହେର

ବାଂଛାନିଧି ମେହେର ବଲାଂଗିର ଜିଲ୍ଲାର ସୋନପୁର ସବ୍‌ଡିଭିଜନ ଅଂତର୍ଗତ ବନମୁଂଡା ଗ୍ରାମରେ ୧୯୧୪ରେ ଜନ୍ମଗ୍ରହଣ କରିଥିଲେ । ମାଅର ଦୁଃଖ, ଦେବାଂଗ ଜନ୍ମ, ନାରୀଶକ୍ତି, ଦାରୁବ୍ରହ୍ମ ଆଦି ୧୦ ଖଂଡ ପୁସ୍ତକ ସେ ରଚନା କରିଥିଲେ ।

# କିଶୋର ଚଂଦ୍ର ସାହୁ

୧୯୨୦ରେ ସ୍ୱର୍ଣ୍ଣପୁରର ଡରଭାରେ ଜନ୍ମଲାଭ କରିଥିଲେ । ଗାଁ ବାହୁଡ଼ା ବୁଝିଲେ କି ଅନୁତାପ କିଏ ଶୁଣିବ ଆଦି ପୁସ୍ତକ ରଚନା କରିଥିଲେ । ଏହା ବ୍ୟତୀତ କୋଶଳୀ ଭାଷାରେ ଧିରତେକେ ନାମରେ ଏକ ନାଟକ ମ–ଧ୍ୟ ରଚନା କରିଥିଲେ ।



# NUAPADA DISTRICT (KHADIAL)



# ନୂଆପଡ଼ା

| | |
|---|---|
| ଆୟତନ | ୩୪୦୮ ବର୍ଗ କି.ମି. |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୫,୩୦,୫୨୪ |

୧୯୩୬ ଓଡ଼ିଶା ପ୍ରଦେଶ ଗଠନ ସମୟରେ ଏହି ଖଡ଼ିଆଳ ଜମିଦାରୀ ମଧ୍ୟପ୍ରଦେଶର ରାୟପୁର ଜିଲ୍ଲାରୁ ଆସି ସଂବଲପୁର ଜିଲ୍ଲା ସହିତ ମିଶିଥିଲା।

''ଖଡ଼ିଆଳପତି ବ୍ରଜରାଜଙ୍କର
ସଂଗୀତ ଲଳିତ ରାଗେ
ଗାଉଥିଲେ ବେନି କଲ୍ଲୋଳିନୀ 'ତେଲ'
'ଚିତ୍ରୋତ୍ପଳା' ପଛଭାଗେ।
ଖଡିଆଳ ବନ ସୁମଂତ ସ୍ତବକେ
ଶୋଭୁଥିଲା ତାଂକ ଖୋଷା
ଜନମନ ଟାଣି ନେଉଥିଲେ ଫୁଲ
ବାସେ ସେହି ବେନି ଯୋଷା।

(ଉତ୍କଳଲକ୍ଷ୍ମୀ ୧୯୧୪)ରୁ

– ଗଙ୍ଗାଧର





# ରାଜକବି ବ୍ରଜରାଜ ଓ ରାଜକୁମାର ବୀରବିକ୍ରମ

ପଶ୍ଚିମ ଓଡ଼ିଶାରେ ସାଢ଼େ ତିନିହଜାର ବର୍ଗ କିଲୋମିଟର ଆୟତନ ଓ ସାଢ଼େ ଚାରି ଲକ୍ଷ ଲୋକ ସଂଖ୍ୟା ବିଶିଷ୍ଟ ଜିଲ୍ଲା ନୂଆପଡ଼ା । ସମଗ୍ର ଜିଲ୍ଲାଟି ଖଡ଼ିଆଳି ଜମିଦାରିର ଅଂତର୍ଭୁକ୍ତ ଥିଲା । ଯେତେବେଳେ ମଧ୍ୟପ୍ରଦେଶରୁ ଆସି ସଂବଲପୁର ୧୯୦୫ରେ ଓଡ଼ିଶାରେ ମିଶିଲା ସେତେବେଳେ ଏହି ଅଂଶ ବାଦ ପଡ଼ିଯାଇଥିଲା ମାତ୍ର ସଂବଲପୁରର ତତ୍‌କାଳୀନ ଜିଲ୍ଲାପାଳ ନୀଳମଣି ସେନାପତି ଆଇ.ସି.ଏସ ଏହି ଜମିଦାରିର ରାଜା ଆର୍ତତ୍ରାଣ ଦେଓଂକୁ ପ୍ରଭାବିତ କରି ଏହାକୁ ନୂତନ ଓଡ଼ିଶା ପ୍ରଦେଶ ଗଠନ ସମୟରେ ୧୯୩୬ ଅପ୍ରେଲ ପହିଲା ଦିନ ସଂବଲପୁର ଜିଲ୍ଲାରେ ମିଶାଇବାକୁ ସକ୍ଷମ ହୋଇଥିଲେ । ଫୁଲଝରର ବିନ୍ଦ୍ରା ନୂଆଗଡ଼ ଦେଓଭୋଗ ଆଦି ଅଂଚଳ ତଥାପି ଓଡ଼ିଶା ବାହାରେ ରହିଗଲା । ଆକାର ଓ ଲୋକସଂଖ୍ୟାରେ କ୍ଷୁଦ୍ର ହେଲେ ମଧ୍ୟ ଖଡ଼ିଆଳର ଏକ ଐତିହ୍ୟ ଥିଲା । ପ୍ରଥମେ ଓଡ଼ିଶାକୁ ଆସି ଏହା ସଂବଲପୁର ଜିଲ୍ଲାର ଏକ ସବ୍‌ଡିଭିଜନ ଥିଲା । ଏହାକୁ ୧୯୫୦ ରେ କଳାହାଂଡି ଜିଲ୍ଲା ଗଠନ ସମୟରେ ତାହା ସହିତ ସାମିଲ

କରାଗଲା। ଜିଲ୍ଲା ପୁର୍ନଗଠନ ସମୟରେ ୧୯୯୨ରେ ଏହା ଗୋଟିଏ ନୂଆ ଜିଲ୍ଲାର ମାନ୍ୟତା ପାଇଅଛି। ଖଡ଼ିଆଳ ରାଜବଂଶ ଚିରକାଳ ଓଡ଼ିଶାର ଶିକ୍ଷା ସଂସ୍କୃତି କଳା ଓ ସାହିତ୍ୟର ଶ୍ରୀବୃଦ୍ଧି ନିମିତ୍ତ ଉଦ୍ୟମ କରି ଆସିଛନ୍ତି। ସେହି ଖଡ଼ିଆଳର ଜଣେ ରାଜାଙ୍କ ମୃତ୍ୟୁ ପରେ ୧୯୩୫ରେ ପ୍ରକାଶିତ 'ଉତ୍କଳ ମିଳନ' କାବ୍ୟରେ କବିଶେଖର ଚିନ୍ତାମଣି ଲେଖିଥିଲେ :

''ଉତ୍କଳ ବିକ୍ରମାଦିତ୍ୟ ରାଜ ବ୍ରଜରାଜ
ଖଡ଼ିଆଳ ଧରାଧିପ, ସ୍ୱୀୟ ରାଜକୋଷ
ମଣିଥିଲା ପ୍ରଜାଙ୍କର ଗଚ୍ଛିତ ସଂପଦ,
ସ୍ୱକୀୟ ଅସାଧାରଣ ପ୍ରତିଭା ବଳରେ
ସାଧିଲା ସ୍ୱରାଜ୍ୟୋନ୍ନତି, ଯଶୋଧର୍ମ ଆଦି
ଯଥାତଥା ଢାଳିଦେଇ ତହିଁ ପ୍ରଜାମନ
ଘାରିଥିଲା ରାଏ ପୁଣି ସାହିତ୍ୟ ଅମଳେ
ଆବାଲ୍ୟ ବାର୍ଧକ୍ୟ ମଂଥି ସୁଜ୍ଞାନ ଖୁଆରେ
ଉତ୍କଳ ସାହିତ୍ୟ ରୂପୀ ଦଧିଭାଂଡେ, ତହୁଁ
ଜାତ କଲା ଯେଉଁ ସ୍ୱାଦୁ ସୁଗଂଧ ଲହୁଣି
ଅମର ବାଂଚ୍‌ତ ତାହା ସ୍ୱଧର୍ମ ନିରତ
ସେହି ରାଜଧର୍ମୀ ରାଜା ନାହିଁରେ ବାକୁତ,
ଆଉ ଏ ରିପୁ ପିଛିଳ ମର ନରଲୋକେ।

ଖଡ଼ିଆଳ ରାଜବଂଶର ବର୍ତମାନର ରାଜାମାନେ ୧୫୯୦ରୁ ଉକ୍ତ ରାଜ୍ୟ ଶାସନ କରୁଥିବା ଜଣାଯାଏ। ରାଜା ପଦ୍ମନ ସିଂହ ୧୮୬୭ରୁ ୧୮୮୯ ପର୍ଯ୍ୟଂତ ରାଜପଣ କରିଥିଲେ। ତାଂକ ପୁତ୍ର ଥିଲେ ବ୍ରଜରାଜ। ସେ ୧୮୫୧ରେ ଜନ୍ମ ହୋଇଥିଲେ। ପିଲାଦିନୁ ତାଂକର ସାହିତ୍ୟରେ ଅନୁରାଗ ଥିଲା। ସ୍ୱତଂତ୍ର ଉତ୍କଳ ପ୍ରଦେଶ ଗଠନ ପୂର୍ବରୁ ଏହା ମଧ୍ୟପ୍ରଦେଶର ଅଂତର୍ଗତ ଥିବାରୁ ଓ ହିଂଦି ଭାଷାଭାଷୀ ଅଂଚଳ ଭାବେ ପରିଗଣିତ ହେଉଥିବାରୁ ଓଡ଼ିଆ ଭାଷା ଓ ସାହିତ୍ୟ ଅବହେଳିତ ହେବାର କଥା ମାତ୍ର ରାଜ ଅନୁଗ୍ରହରୁ ଏହା ଦୃଢ଼ ଭାବରେ ତିଷ୍ଠି ପାରିଥିଲା। ଅନେକ କବି ଓ ସାହିତ୍ୟସାଧକ ରାଜପୃଷ୍ଠପୋଷକତା ପାଇଁ ଦରବାରରେ ରହୁଥିଲେ। ସେମାନଂକ ମଧ୍ୟରେ ଗଂଗାଧର

ବୈଦ୍ୟରାଜ, ହରେକୃଷ୍ଣ ପ୍ରହରାଜ, ମଧୁସୂଦନ ପଟ୍ଟନାୟକ ଓ ଭୁବନେଶ୍ୱର ବଡପଂଡାଂକର ନାମ ଉଲ୍ଲେଖଯୋଗ୍ୟ। ସେହିମାନଂକ ପ୍ରଭାବରେ ଯୁବରାଜ ବ୍ରଜରାଜଂକର କବି ପ୍ରତିଭା ବିକଶିତ ହେବାର ସୁଯୋଗ ମିଳିଲା। ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ଉଭୟ ସେ ଗଭୀର ଭାବରେ ଅଧ୍ୟୟନ କଲେ। ପ୍ରାଚୀନ ଓଡ଼ିଆ ସଂଗୀତ ଓ ସାହିତ୍ୟ ତାଂକୁ ଆକର୍ଷିତ କଲା। କବିସମ୍ରାଟ ଉପେଂଦ୍ର ଭଂଜଂକୁ ସେ ଆଦର୍ଶରୂପେ ରଖି ନିଜ ରାଜ୍ୟ ଶାସନ ୧୮୮୯ରୁ ଆରଂଭ କଲେ। ଶାସନ ସହିତ ସାହିତ୍ୟ ଚର୍ଚା ପ୍ରତି ସମଦୃଷ୍ଟି ରଖିଲେ। ଭଂଜ ଶୈଳୀକୁ ଅନୁକରଣ କରି ସେ ଅନେକ କାବ୍ୟ କବିତା ଓ ଚଉପଦୀ ରଚନା କଲେ। ଭଂଜଂକ ଅନୁକରଣରେ ନିଜ ଛାଂଦ ଭଣିତା କଲାବେଳେ ସେ ନିଜ ଯୌବରାଜ୍ୟର ଉଲ୍ଲେଖ କରିଅଛଂତି। ତାଂକର ପ୍ରାୟ ସମସ୍ତ ରଚନା ସେ ଯୁବରାଜ ଥିବା ସମୟରେ ଶେଷ ହୋଇଥିବାର ଜଣାପଡୁଛି। ତାଂକର ରଚନାବଳୀ ମଧ୍ୟରେ ବ୍ରଜବଂଧୁ ବିଳାସ, ଶୋଭା ବଲ୍ଲରୀ, ରତ୍ନପ୍ରଭା, ରୂପମଂଜରୀ, ବର୍ଣ୍ଣୋଦ୍ଧକ ଚଉତିଶା, ମାନଭଂଗ ଚଉତିଶା, କ୍ଷମାନିଧି ଚଉତିଶା, ସଂଗୀତ ଗୁଚ୍ଛ, ସଂସ୍କୃତ ଶ୍ଳୋକର ନବାକ୍ଷରୀ ବୃତ୍ତରେ ପଦ୍ୟାନୁବାଦ ସତ୍ୟନାରାୟଣ ବ୍ରତ କଥା ଓ ପ୍ରବଂଧ ଚିତ୍ର କାବ୍ୟ ବିଶେଷ ଲୋକପ୍ରିୟ। ଆନଂଦର ବିଷୟ ଏହି ସମଗ୍ର ରଚନାବଳୀ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ୧୯୭୫ରେ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ବିଭାଗର ନିର୍ଦେଶାଳୟ ଦ୍ୱାରା 'ବ୍ରଜରାଜ ଗ୍ରଂଥାବଳୀ' ନାମରେ ପ୍ରକାଶିତ ହେଇଅଛି। ଏହି ସାଧୁ ଉଦ୍ୟମ ନିମିତ୍ତ ଖଡ଼ିଆଳ ନିବାସୀ ତତ୍କାଳୀନ ଡାଇରେକ୍ଟର ଅଷ୍ଟଧ ନାରାୟଣ ତେୱାରୀ ପ୍ରଶଂସାର୍ହ। ରାଜା ହୋଇ ମଧ୍ୟ ହିଂଦି ପ୍ରାଂତରେ ଓଡ଼ିଶା ଭାଷାରେ ଲେଖନୀଚାଳନା ପୂର୍ବକ ଉତ୍କଳ ଜନନୀର ସ୍ୱାଭିମାନ ଓ ଗୌରବ ରକ୍ଷାକରି ବ୍ରଜରାଜ ଓଡ଼ିଆ ଭାଷାର ନବ ଜାଗରଣରେ ନମସ୍ୟ ହୋଇ ପାରିଛଂତି। ଭଂଜୀୟ ଶୈଳୀର ରଚନା ଥିଲେ ମଧ୍ୟ ତାଂକ କାବ୍ୟରେ ବିଶେଷ କ୍ଲିଷ୍ଟତା ଲକ୍ଷ୍ୟ କରାଯାଇ ନଥାଏ। ରାଧାକୃଷ୍ଣ ଲୀଳା ବର୍ଣନା ପ୍ରସଂଗରେ କବି ଦୀନକୃଷ୍ଣ ଓ ଅଭିମନ୍ୟୁଂକର ଶୈଳୀର ନିକଟତର ଜଣା ପଡଂତି।

୧୮୮୧ରେ ରଚିତ ବ୍ରଜବଂଧୁ ବିଳାସ କାବ୍ୟ 'ବ' ଆଦ୍ୟ ଅନୁପ୍ରାସ ହୋଇ ବାଇଶଗୋଟି ଛାଂଦରେ ସଂପୂର୍ଣ। ଶ୍ରୀକୃଷ୍ଣଂକର ଜନ୍ମଠାରୁ କଂସବଧ ଏହି କାବ୍ୟର ବିଷୟବସ୍ତୁ। ଶୋଭା ବଲ୍ଲରୀ କାବ୍ୟରେ ପାଂଚଛାଂଦରେ ବିଦର୍ଭ ରାଜା ନରକେଶରୀ ଓ ସିଂଧୁଦେଶ ରାଜଜେମା ଶୋଭା ବଲ୍ଲରୀଂକ ବିବାହ ଓ ବିରହ ବର୍ଣିତ। ଏହା ୧୮୮୫ରେ ପ୍ରକାଶିତ। ଦ୍ୱାଦଶ ଛାଂଦରେ ସଂପୂର୍ଣ ରତ୍ନପ୍ରଭା କାବ୍ୟରେ ସୁଧାକରପୁର

ରାଜପୁତ୍ର ସୁରକେଶରୀ ଓ ଅଭୟ ପୁରର ରାଜକନ୍ୟା ରତ୍ନପ୍ରଭାଂକର ବିବାହ ବର୍ଣନା ଦିଆଯାଇଅଛି। ବିରହ ଅନୁଚିଂତା ପରେ ମିଳନରେ କାବ୍ୟର ସମାପ୍ତି। ତେଇଶଟି ଛାଂଦରେ ସଂପୂର୍ଣ ରୂପମଂଜରୀ କାବ୍ୟ ଅଭିଶପ୍ତ ଅପସରା ଓ ଗଂଧର୍ବଂକର ମର୍ତ୍ୟରେ ଜନ୍ମ, ବିବାହ, ବିରହ ଆଦି ନେଇ ରଚିତ। ବଳାହକ ଚଉତିଶା ଓ କ୍ଷମାନିଧି ଚଉତିଶା ପ୍ରିୟା ବିରହୀ ନାୟକଂକ ପୂର୍ବ ମିଳନ ସ୍ମୃତି ବର୍ଣନାରେ ସଂପୂର୍ଣ। ମାନଭଂଗ ଚଉତିଶାରେ ଶ୍ରୀକୃଷ୍ଣଂକ ମାନିନୀ ରାଧାଂକର ମାନଭଂଜନ ବର୍ଣନା ଦିଆଯାଇଅଛି। ସଂଗୀତଗୁଚ୍ଛରେ ଚଉଦଟି ସଂଗୀତ ଓ ଗୋଟିଏ ଭଜନ ଦିଆଯାଇ ପ୍ରେମ ଭକ୍ତି ରସମୟ ସଂଗୀତ ପରିବେଷଣ କରାଯାଇଅଛି। ବାଆସ୍ତରି ବଂଧଯୁକ୍ତ ଏଗାର ଛଂଦ ବିଶିଷ୍ଟ ପ୍ରବଂଧ ଚିତ୍ରକାବ୍ୟ ଉପେଂଦ୍ର ଭଂଜଂକର ଚିତ୍ର କାବ୍ୟ ବଂଧୋଦୟ ଅନୁକରଣରେ ରଚିତ ଓ ୧୮୮୭ରେ ପ୍ରକାଶିତ।

କବିଂକର ପ୍ରତିଭା ଉତ୍କଳର ସ୍ୱଭାବ କବି ଗଂଗାଧରଂକୁ ଆକର୍ଷିତ କରିଛି। ସେ ତାଂକୁ 'ରାଜକବି' ଆଖ୍ୟା ଦେଇଛଂତି। ତାଂକର ସାହିତ୍ୟ ଓ ସଂଗୀତର ପ୍ରଶଂସା କରି 'ଉତ୍କଳ ଲକ୍ଷ୍ମୀ' କାବ୍ୟରେ କବି ଗଂଗାଧର ଲେଖିଅଛଂତି।

''ଅଳକ୍ଷ୍ୟରେ 'ତେଲ' ଥାଇ
ନ ପାଇଲା ଲାସ୍ୟ ବିଳାସିନୀ ଯଶ
କିନ୍ତୁ ହୃଦୟରେ ବହୁଥିଲା ତାର
ମଧୁର ସଂଗୀତ ରସ।
ଖଡ଼ିଆଳ ପତି ବ୍ରଜରାଜଂକର
ସଂଗୀତ ଲଳିତ ରାଗେ,
ଗାଉଥିଲେ ବେନି କଲ୍ଲୋଳିନି 'ତେଲ'
'ଚିତ୍ରୋତ୍ପଳା' ପଛଭାଗେ।
ଖଡ଼ିଆଳ ବନ କୁସୁମ ସ୍ତବକେ
ଶୋଭୁଥିଲା ତାଂକ ଖୋଷା
ଜନମନ ଟାଣି ନେଉଥିଲେ ଫୁଲ
ବାସେ ସେହି ବେନି ଯୋଷା''।

କବି ଗଂଗାଧରଂକ ମତରେ ତଥା ତତ୍କାଳୀନ 'ଇଂଦ୍ରଧନୁ' ଓ 'ବିଜୁଳି' ଉଭୟ ପତ୍ରିକାରେ ରାଜା ବ୍ରଜରାଜ ସିଂହ ଦ୍ୱିତୀୟ ଉପେଂଦ୍ର ଭଂଜ ବୋଲି ପରିଚିତ।

ଗମନାଗମନର ବିଶେଷ ସୁବିଧା ନ ଥିବା ଘନ ବନ ପୂର୍ଣ ଖଡ଼ିଆଳ ରାଜ୍ୟରେ କବିଂକର ସାରସ୍ୱତ ସାଧନା ତାଂକ ପ୍ରତିଭାର ପ୍ରମାଣ ଦିଏ। ରାଜା ଈଶ୍ୱର ବିଶ୍ୱାସୀ ଥାଇ ନିଜ ରଚନାରେ ଲେଖିଲେ

''ବରହୀଚୂଳିଆ ହେ ଗୁଂଜମାଳିଆ,
ପୀତରଂଗ ଦୁକୁଳିଆ,
ବଂଶୀ ବଦନିଆଁ କଦଂବମୂଳିଆ
ଶ୍ରୀମତୀ ମତିହରିଆ,
ବନଜ ବେନିପଦ ତାଂକ ଧ୍ୟାୟି,
ବ୍ରଜରାଜ ସିଂହ ଯୁବରାଜ ଭଣି
ବାଇଶି ପଦରେ ଏହି ଯେ'' (ବ୍ରଜବଧୂ ବିଳାସ)
ପୁଣି ଶୋଭା ବଲ୍ଲରୀରେ
''ହେ ପ୍ରଭୁ ବୃଂଦାବନ ନଭ-ନିଶୀଶ
ଯେଉଁପାଦେ ଦଳିଲ କାଳୀୟ ବଂଶ,
ଶ୍ରୀ ବ୍ରଜରାଜ ସିଂହ ଯୁବ ନରେଶ
ବୋଲି ସେ ପାଦେ ରହୁ ମୋର ମାନସ।''

ଏହି ରଚନାରୁ ତାଂକର କୃଷ୍ଣପ୍ରେମ ଭକ୍ତି ଅନୁମିତ। ସାହିତ୍ୟ ବ୍ୟତୀତ ଜ୍ୟୋତିଷ, ଆୟୁର୍ବେଦ, ଅଶ୍ୱଶାସ୍ତ୍ରରେ ମଧ୍ୟ ତାଂକର ପାରଦର୍ଶିତା ଜଣାପଡ଼େ। ବ୍ରଜରାଜଂକ ପିତା ଏକ ସମୟରେ ଅବସ୍ଥାଚକ୍ରରେ ରାଜ୍ୟରୁ ବିତାଡ଼ିତ ହୋଇ ମିତ୍ର ରାଜ୍ୟ କଳାହାଂଡିର ତତ୍‌କାଳୀନ ରାଜଧାନୀ ଜୁନାଗଡରେ ଅବସ୍ଥାନ କରୁଥିଲେ। ଏହି ସମୟରେ ବ୍ରଜରାଜଂକର ଜନ୍ମ। ତେଣୁ ଭାଷା ଓ ସଂସ୍କୃତ ସାହିତ୍ୟ ଅଧ୍ୟୟନ ସହିତ ସେ ନିଜକୁ ଜଣେ ସାଧାରଣ ନାଗରିକ ଭାବରେ ଅନ୍ୟ ବିଦ୍ୟାଚର୍ଚାରେ ନିୟୋଜିତ କରିଥିଲେ। ନିୟମିତ ଶରୀର ଚର୍ଚା ଫଳରେ ତାଂକର ସୁଗଠିତ ବପୁ ସହୁରି ଦୃଷ୍ଟିକୁ ଆସୁଥିଲା। ଯେଉଁ ଦୁଇଟି ମୁଦ୍‌ଗର ଧରି ସେ ଅଭ୍ୟାସ କରୁଥିଲେ ତାହା ମଧ୍ୟ ଏକ ସୁରକ୍ଷିତ। ଘୋଡ଼ାଚଢ଼ାକି ସେ ଅଶ୍ୱବିଦ୍ୟା, ନିପୁଣ ଓ ବିଭିନ୍ନ ଜାତୀୟ ଅଶ୍ୱ ନିର୍ବାଚନରେ ବିଶେଷ ଆଗ୍ରହୀ ଥିଲେ। ରାଜଗାଦି ପାଇ ସେ ନିଜ ରାଜ୍ୟରେ ଗମନାଗମନ ସୁବିଧା ନିମିତ୍ତ ରାସ୍ତା କରାଇଲେ। କଳାହାଂଡିରୁ ଖଡ଼ିଆଳ ଦେଇ ରାୟପୁର ରାଜପଥରେ ନିଜର ଜମି

ନିଆଯାଇଥିଲେ ମଧ୍ୟ ସେ କ୍ଷତିପୂରଣ ଦାବି ଛାଡ଼ି ଦେଇଥିଲେ। ରାଜ୍ୟରେ ଉନ୍ନତ ଧରଣର କୃଷି ପ୍ରଚଳନ ଉଦ୍ୟମରେ ସେ ମହାରାଣୀ ଭିକ୍ଟୋରିଆଁଙ୍କର ହୀରକ ଜୟନ୍ତି ଉପଲକ୍ଷେ ବ୍ରଜରାଜବାଗ ଓ ମହାରାଣୀ ଗେଟ ନିର୍ମାଣ କରାଇଥିଲେ। ୧୮୯୭ର ଛପନ ସାଲ କାଂଗାଳି ଦୁର୍ଭିକ୍ଷରେ ସେ ନିଜର ଖମାରରୁ ଶସ୍ୟ ପ୍ରଜାମାନଂକ ନିମିତ୍ତ ଅକାତରରେ ବ୍ୟୟ କରିଥିଲେ। ଏହା ପୂର୍ବରୁ ସେ ଅକାଳରେ ବ୍ୟବହାର ପାଇଁ ୧୮୯୦ରେ ନିଜେ ନିଜର ଅନ୍ନପୂର୍ଣ୍ଣା ଖମାର ପ୍ରତିଷ୍ଠା କରି ଶସ୍ୟ ମହଜୁଦ ରଖିଥିଲେ। ସପ୍ତାହିକ ଓ ଦୈନିକ ହାଟ ମଧ୍ୟ ଖୋଲାଯାଇଥିଲା। ଜ୍ୟୋତିଷ ଓ ଆୟୁର୍ବେଦରେ ମଧ୍ୟ ସେ ଆଗ୍ରହୀ ଥାଇ ବିଶେଷଜ୍ଞମାନଂକୁ ନିଜ ସଭାରେ ସ୍ଥାନ ଦେଇଥିଲେ। ଖଡ଼ିଆଳରେ ସେ ଗୋଟିଏ ଏଲୋପାଥିକ ଡାକ୍ତରଖାନା ପ୍ରତିଷ୍ଠା କରିଥିଲେ। ରାୟପୁର ରାଜକୁମାର କଲେଜର ପ୍ରଥମ ପରିଚାଳନା ସମିତିର ସଭ୍ୟଭାବେ ସେ ଗୃହୀତ ହୋଇଥିଲେ। ନିଜ ରାଜ୍ୟରେ ବାଳିକା ଓ ମଧ୍ୟ ଭର୍ନାକୁଲାର ବିଦ୍ୟାଳୟ ଖୋଲି ସେ ଶିକ୍ଷାର ସୁବିଧା କରିଥିଲେ। କଳାହାଂଡି ରାଜ୍ୟରେ କଂଧ ବିଦ୍ରୋହ ସମୟରେ ସେ ପ୍ରତିଷ୍ଠିତ ସରକାରଂକୁ ସାହାଯ୍ୟ କରିଥିଲେ। ତାଂକ ଶାସନ ପରିଚାଳନାରେ ବିଶେଷତ୍ୱ ପରିଲକ୍ଷିତ ହୋଇଥିଲା। ଇଂରେଜ ସରକାର ସେଥି ଯୋଗୁ ତାଂକୁ କାଇଜର-ଇ-ହିଂଦ (ସୁବର୍ଣ୍ଣ) ମେଡାଲ ପ୍ରଦାନ କରିଥିଲେ। ସେ ଦିଲ୍ଲୀ ଯାଇ ସେଠାରେ ଲାଲକିଲ୍ଲା ଦରବରରେ ଏହା ଗ୍ରହଣ କରିଥିଲେ। ମଧ୍ୟପ୍ରଦେଶ ସରକାରଂକର ରାଜ୍ୟ ଶାସନ ରିପୋର୍ଟରେ ତାଂକ ସୁଶାସନର ବର୍ଣ୍ଣନା କରାଯାଇଥିଲା। ଖଡ଼ିଆଳ ଗଡ଼ରେ ସେ ଚଂଦନଯାତ୍ରାର ପ୍ରଚଳନ କରାଇ ଓଡ଼ିଆ ସଂଗୀତ ଲୋକପ୍ରିୟ କରିବାକୁ ଉଦ୍ୟମ କଲେ। ୧୮୮୩ରେ ଖଡ଼ିଆଳ ସାହିତ୍ୟ ସମିତି ସେ ଗଠନ କଲେ। ଏହା ରାଜ୍ୟରେ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଶତାବ୍ଦୀରୁ ଅଧିକ କାଳ ସକ୍ରିୟ ଭୂମିକା ଗ୍ରହଣ କରି ଆସୁଅଛି। ୧୯୦୭ରେ ତାଂକର ପରଲୋକ ପ୍ରାପ୍ତି ହେଲା ମାତ୍ର ଉତ୍କଳ ଭାରତୀ ଓ ଉତ୍କଳ ଜନନୀଂକର ଜଣେ ସୁଯୋଗ୍ୟ ପୁତ୍ରରୂପେ ସେ ଏବେ ମଧ୍ୟ ସ୍ମରଣୀୟ।

ରାଜା ବ୍ରଜରାଜଂକର ସୁଯୋଗ୍ୟ ଦାୟାଦ ବୀରବିକ୍ରମ ମଧ୍ୟ ଜଣେ ସାହିତ୍ୟ ସେବକ ଥିଲେ। ୧୮୭୪ରେ ଜନ୍ମଗ୍ରହଣ କରି ପିତାଂକ ମୃତ୍ୟୁର ମାତ୍ର ଚାରିବରଷ ପରେ ୩୭ ବର୍ଷ ବୟସରେ ଅକାଳରେ ମୃତ ହେଲେ ମଧ୍ୟ ବୀର ବିକ୍ରମ ସାହିତ୍ୟ ସଂଗୀତ ନାଟକ କ୍ଷେତ୍ରରେ ନିଜ ପ୍ରତିଭାର ସାକ୍ଷ୍ୟ ପ୍ରଦାନ କରିଅଛଂତି। କପର୍ଦ୍ଦୀ ଜଣାଣ ଶିବସ୍ତୁତି ୧୮୯୭ରେ ରଚନା ଓ ପ୍ରକାଶ କରି ସେ ନିଜର ସାହିତ୍ୟ ସାଧନା

ଆରଂଭ କଲେ। ରାଜା ସାର ବାସୁଦେବ (ବାମଂଡା)ଂକର କନ୍ୟାଂକୁ ସେ ବିବାହ କରିଥିଲେ। ତାଂକର ପତ୍ନୀ ବିୟୋଗ ପରେ ସେ ବଣେଇ ଜେମା ଦୋଳାନଂଦ ପ୍ରିୟା ଦେବୀଂକୁ ବିବାହ କଲେ। ୨ୟ ପତ୍ନୀ 'ନାରୀ ସ୍ୱତଂତ୍ର' ରଚନା କରିଥିଲେ ଓ ଏହା ୧୯୦୯ ରେ ବୀରବିକ୍ରମ ରଂଗମଂଚରେ ଅଭନୀତ ହୋଇଥିଲା। ସ୍ୱଳ୍ପ ରାଜ୍ୟଶାସନ ସମୟରେ ସେ ରାୟପୁର ଜିଲ୍ଲା ମହାସମୁନ୍ଦ ଯେଉଁଠାରେ ତାଂକ ପିତା କାଶୀ ଅଭିମୁଖେ ରାୟପୁର ଦେଇ ଯାଉଥିବାବେଳେ ପ୍ରାଣତ୍ୟାଗ କରିଥିଲେ, ସେଠାରେ ଏକ ବିଦ୍ୟାଳୟ ଓ ବୀରବିକ୍ରମ କ୍ଲବ ତାଂକର ଅନ୍ୟତମ କୀର୍ତି। ହିଂଦି ଓ ଓଡ଼ିଆ ଉଭୟ ଭାଷାରେ ସେ ରଚନା କରୁଥିଲେ। ଓଡ଼ିଆରେ ସେ ଅନେକଗୁଡ଼ିଏ ଗ୍ରଂଥ ରଚନା କରି ଯାଇଛଂତି। ଖଡ଼ିଆଳରେ ନାଟ୍ୟମଂଚ ଥିଲା। ସେ ନିଜେ ଜଣେ ଅଭିନେତା ଓ ନାଟ୍ୟକାର ଥିଲେ। ତାଂକ ରଚନା ମଧ୍ୟରେ ଗଜଶାସ୍ତ୍ର, ଅଶ୍ୱଶାସ୍ତ୍ର, ବୀର ବିକ୍ରମ ରାମାୟଣ, ଉତ୍କଳ ଦୁର୍ଦଶା ନାଟକ, ପ୍ରେମଲତା ନାଟକ, ଭ୍ରାତୃସ୍ନେହ, କୁସୁମ ସୁଂଦରୀ, ହରିଶ୍ଚଂଦ୍ର, ବାଲ୍ୟ ବିବାହ, ବୃଦ୍ଧ ବିବାହ ନାଟକ ଆଦି ପ୍ରଧାନ। ତତ୍କାଳୀନ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଜୀବଂତ ରଖିବାରେ ଏପରି ସାହିତ୍ୟର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ ଥିଲା। ନାଟ୍ୟକାର ବୀର ବିକ୍ରମ ଦେବ ସଂବଲପୁର ହିତୈଷିଣୀର ଜଣେ ପ୍ରେରଣାଦାତା ଥିଲେ। ତାଂକର ବିଧବା ବିବାହ ତା୨୫-୩-୧୯୦୫ ଓ ସମାଲୋଚକ ପ୍ରତି (ତା ୧-୪-୧୯୦୫) ହିତୈଷିଣୀରେ ପ୍ରକାଶିତ ହୋଇଥିବାର ଜଣାପଡୁଛି। ୧୯୦୩ରେ ରଂଭାଠାରେ ଆୟୋଜିତ ପ୍ରଥମ ଉତ୍କଳ ସମ୍ମିଳନୀରେ ସେ ଯୋଗ ଦେଇ ନିଜ ରଚିତ ଉତ୍କଳ ଦୁର୍ଦଶା ନାଟକ ଉପସ୍ଥିତ ବିଶିଷ୍ଟ ବ୍ୟକ୍ତିମାନଂକୁ ବଂଟନ କରିଥିଲେ। ବାମଂଡା ଯୁବରାଜଂକର ବ୍ରତ ଉପନୟନ ସମୟରେ ମଧ୍ୟ ସେ ଏହା ବଂଟନ କରି ଦେଶର ଦୁର୍ଦଶା ସମସ୍ତଂକୁ ସ୍ମରଣ କରାଇ ଦେଇଥିଲେ। ପଂଚମ ଜର୍ଜଂକର ରାଜ୍ୟ ଅଭିଷେକ ଉପଲକ୍ଷେ ୧୯୧୧ରେ ଦିଲ୍ଲୀ ଦରବାରରେ ସେ ଯୋଗଦେଇଥିଲେ। ଫେରିଆସି ନିମୋନିଆ ରୋଗରେ ଆକ୍ରାଂତ ହୋଇ ସେ ପ୍ରାଣ ହରାଇଥିଲେ। ତାଂକ ମୃତ୍ୟୁରେ କବିଶେଖର ଚିଂତାମଣି ଲେଖିଥିଲେ।

"ଗଲା ଆହା ମାତୃଭକ୍ତ ଶ୍ରୀବୀରବିକ୍ରମ  
ଖଡିଆଳ ଧରାଧିପ, ଅକାଳେ ସ୍ୱରଗେ,  
ଥିଲେ ସେ ଉତ୍ସର୍ଗି ପ୍ରାଣ ସମାଜ ସଂସ୍କାରେ  
ପୁଣି ସାହିତ୍ୟ ସେବାରେ ଯାଇଛି ସେ ଲେଖି

ସୁକାବ୍ୟ ନାଟକ କେତେ ଅତି ଉପାଦେୟ
ସାହିତ୍ୟ ଭଂଡାରେ ତାହା ଦୀପ୍ତ ରତ୍ନ ରେଣୁ।
ନିଜେ ଲେଖି କ୍ଷାଂତ ନୋହି ଲେଖାଇ ଅପରେ
ପ୍ରଦାନ ପାରିତୋଷିକ ଉତ୍ସାହ ତାହାର
କରୁଥିଲା କ୍ରମେ ବୃଦ୍ଧି ଗ୍ରାହକତା ହାଟେ।
ଥିଲା ବୀରମଣି ଜଣେ ଚିହ୍ନରା ଗ୍ରାହକ
ତାର ରାଜ୍ୟ ସଭା କାବ୍ୟ କୋଳାହଳମୟ
ପରିପୂର୍ଣ୍ଣ ଥିଲା ସଦା ସୁକବି ପଂଡିତେ।
ବଂଦୀଶାଳେ ଦେହ ନିହି ବଂଦୀଜନ ଯଥା
ରଖିଥାଏ ଧ୍ୟାନ ଜ୍ଞାନ ମାତୃଭୂମି କତି।
ତଥା ସେ ସୁଧୀରବର ରହି ଚିରକାଳ
ହିଂଦିଭାଷା ଆବରଣ ମଧ୍ୟେ ଅର୍ପିଥିଲା
ପ୍ରାଣମନ ପ୍ରାଣାଧିକା ମାତୃଭାଷା ପଦେ।

ସୌଭାଗ୍ୟର ବିଷୟ ରାଜା ବୀର ବିକ୍ରମଂକ ଅକାଳ ବିୟୋଗରେ ମଧ୍ୟ ଖଡ଼ିଆଳରେ ଉତ୍କଳ ଭାରତୀ ସେବା ଉପଯୁକ୍ତ ଦାୟାଦଂକ ପୃଷ୍ଠପୋଷକତାରେ କ୍ଷୁଣ୍ଣହୋଇ ନ ଥିଲା।





# ବ୍ୟବସ୍ଥାପକ ରାଜା
# ଆର୍ତ୍ତତ୍ରାଣ ଦେବ

ନୂତନ ଓଡ଼ିଶା ପ୍ରଦେଶ ଗଠନ ସମୟରେ ଖଡ଼ିଆଳର ରାଜାଥିଲେ ରାଜା ଆର୍ତ୍ତତ୍ରାଣ ଦେବ। ତାଂକର ଜନ୍ମ ୧୯୦୦ରେ। ମାତ୍ର ଏଗାର ବର୍ଷ ବୟସରେ ସେ ପିତାଂକୁ ହରାଇଲେ। ସରକାର ଜମିଦାରୀର ପରିଚାଳନା ଦାୟିତ୍ୱ ହାତକୁ ନେଲେ। ରାୟପୁର ଜିଲ୍ଲା ମାଜିଷ୍ଟେଟ୍‌ଂକ ଅଧିନରେ ତାଂକ ଶିକ୍ଷାର ବ୍ୟବସ୍ଥା କରାଗଲା। ଭାରତର ବିଖ୍ୟାତ ପ୍ରଶାସକ ଆଇ.ସି.ଏସ୍. ସାର ଚିଂତାମନ ଦେଶମୁଖ ଏକ ସମୟରେ ଏଠାରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ। ଦେଖମୁଖ ପରେ ପଂଡିତ ନେହରୁଂକ ମଂତ୍ରୀମଂଡଳରେ ଅର୍ଥମଂତ୍ରୀ ଥାଇ ବିଶେଷ ଖ୍ୟାତି ଅର୍ଜନ କରିଥିଲେ। ସାର୍ ହରିଦାସ ଗୌର ଜଣେ ନାମଜାଦା ଫୌଜଦାରୀ ଓକିଲ, ବ୍ୟବସ୍ଥାପକ ଆଇନସଭ୍ୟ ସାଗର ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଥିଲେ। ଖଡ଼ିଆଳ ରାଜା ବ୍ରଜରାଜସିଂହ ତାଂକୁ ଉଚ୍ଚଶିକ୍ଷା ଲାଭରେ ସାହାଯ୍ୟ କରିଥିଲେ। ସେ ଖଡ଼ିଆଳ ଓଡ଼ିଶାରେ ମିଶିବା ବିରୋଧରେ ରାଜା ଆର୍ତ୍ତତାଣଂକୁ ପ୍ରଭାବିତ କରୁଥିଲେ, ମାତ୍ର ସଂବଲପୁରର ତତ୍‌କାଳୀନ ଡେପୁଟି କମିଶନର ନୀଳମଣି ସେନାପତିଂକର ଆହ୍ୱାନରେ ସେ ନିଜକୁ ସ୍ୱତଂତ୍ର ଉତ୍କଳ ଗଠନ ଉଦ୍ୟମରେ ସାମିଲ କରାଇ ପାରିଥିଲେ।

ସେନାପତି କିପରି ଭାବରେ ନାନା କୌଶଳ ଅବଲଂବନ କରି ଖଡ଼ିଆଳକୁ ଓଡ଼ିଶାରେ ମିଶାଇବାକୁ ସମର୍ଥ ହୋଇଥିଲେ । ଏ ସଂପର୍କରେ ଜିଲ୍ଲା ଅଫିସର ମୁଖ୍ୟ ଅମଲା ମୁରଲୀଧର ବହିଦାର କୃତ୍ତିବାସ ପ୍ରଧାନ ମୃତ୍ୟୁଂଜୟ ପତି ଆଦିଂକଠାରୁ ସଂବଲପୁରରେ ନାନା କଥା ଶୁଣାଯାଇଥିଲେ ମଧ୍ୟ ସ୍ୱୟଂ ସେନାପତି ସାହେବ ଉତ୍କଳ ପ୍ରସଂଗରେ ୧୯୮୦ ଏପ୍ରିଲ୍ ସଂଖ୍ୟାରେ 'ନୂଆଗଡ଼ ସବଡିଭିଜନ କିପରି ଓଡ଼ିଶାକୁ ଆସିଲା' ନାମକ ପ୍ରବଂଧରେ ଏହାର ପ୍ରକୃତ ଚିତ୍ର ଦେଇଛଂତି । ମଧ୍ୟପ୍ରଦେଶରୁ ଖଡ଼ିଆଳ, ପଦ୍ମପୁର, ଫୁଲଝର ବିଂଦ୍ରାନୂଆଗଡ଼ ଉପରେ ଭାଷାଦୃଷ୍ଟିରୁ ଓଡ଼ିଶାର ଦାବି ଥିଲା ମାତ୍ର ପ୍ରଦେଶ ସୀମା ନିର୍ଦ୍ଧାରଣ କରିବାକୁ ଥିବା ଓଡ଼ନେଲ୍ କମିଟି (୧୯୩୧) ରାୟପୁର ଠାରେ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି ମଧ୍ୟପ୍ରଦେଶର କୌଣସି ଅଂଶ ଓଡ଼ିଶାରେ ମିଶିବନାହିଁ ବୋଲି ଠିକ୍ କରିସାରିଥାଂତି । ସେଠାରୁ ସେମାନେ ସଂବଲପୁର ଆସି ଡେପୁଟି କମିସନରଂକ ନିମଂତ୍ରଣରେ ତାଂକ ଘରେ ରହିଲେ । କମିଟିର ସେକ୍ରେଟାରି ଥିଲେ ଭବାନୀ ଚରଣ ମୁଖାର୍ଜୀ । ସେ ପରେ ଓଡ଼ିଶାର ଚିଫ୍ ସେକ୍ରେଟାରି ହୋଇଥିଲେ । ସେମାନଂକ ସହିତ ରାୟପୁରର କମିସନର ମଧ୍ୟ ଆସିଥିଲେ । ପ୍ରାତଃଭୋଜନ ସମୟରେ ସେମାନେ ସିଂହଭୂମି ବା ରାୟପୁରର କୌଣସି ଅଂଶ ଓଡ଼ିଶାରେ ମିଶିବାର ସଂଭାବନା ନାହିଁ ବୋଲି କହିଥିଲେ । ରବୀଂଦ୍ରନାଥ ବାନାର୍ଜୀ ମଧ୍ୟପ୍ରଦେଶର ଡେପୁଟି କମିଶନର ଥିଲେ । ୧୯୨୦ର ସେ ଜଣେ ଆଇ.ସି.ଏସ୍. । ଏକଦା ସେ ସଂବଲପୁରର ଛାତ୍ର ଥିଲେ । ମଧ୍ୟପ୍ରଦେଶର ଡେପୁଟି କମିସନର ଥିବା ସମୟରେ ଅନେକ ଓଡ଼ିଆଭାଷୀ ଅଂଚଳ ମଧ୍ୟପ୍ରଦେଶରେ ଥିବା ଅନୁସଂଧାନ କରି ଜାଣିଥିଲେ ଓ ସରକାରଂକୁ ଏହା ଜଣାଇ ଦିଆଯାଇଥିଲା । ତାଂକ ମତ ମଧ୍ୟ କମିଟିକୁ ଜଣାଇ ଦିଆଗଲା । ଓଡ଼ନେଲ୍ କମିଟି ଜମିଦାରମାନେ ଓଡ଼ିଶାରେ ମିଶିବାକୁ ରାଜି ନୁହଂତି, ସଂବଲପୁର ସହିତ ଏ ଅଂଚଳ ଗୁଡିକର ଗମନାଗମନ ସୁବିଧା ନାହିଁ ଓ ସଂପୃକ୍ତ ଅଂଚଳରେ ବଂଦୋବସ୍ତରେ ପ୍ରଜାସ୍ୱତ୍ୱ ଲିପି ହିଂଦି ଭାଷାରେ ପ୍ରଜାଦ୍ୱାରା ଗୃହୀତ ବୋଲି ଯୁକ୍ତି ଦେଖାଇଲେ । ସଂବଲପୁରର ତତ୍କାଳୀନ ଜନନାୟକମାନେ ଡେପୁଟି କମିଶନରଂକଠାରୁ ଉତ୍ସାହ ପାଇ ଅକାଟ୍ୟ ସାକ୍ଷ୍ୟ ପ୍ରମାଣ ଯୋଗାଡ କରି ଏ ଯୁକ୍ତିମାନ ଖଂଡନ କରିବାକୁ ସମର୍ଥ ହୋଇଥିଲେ । ଖଡ଼ିଆଳ ରାଜା ୨ୟବାର ସାକ୍ଷ୍ୟ ଦେଇ ନିଜ ମତ ପରିବର୍ତ୍ତନ କରି ଓଡ଼ିଶାରେ ମିଶିବାକୁ ରାଜି ହେଲେ । କମିଟିକୁ ଦେଖାଇ ଦିଆଗଲା ସ୍ୱତ୍ୱଲିପିମାନ ରୟତକୁ ଓଡ଼ିଆ ଭାଷାରେ ଦିଆଯାଇ ହିଂଦିଭାଷୀ ଅମଲାମାନଂକର ସୁବିଧା ନିମିତ୍ତ ହିଂଦିଭାଷାରେ ପ୍ରସ୍ତୁତ ନକଲ କେବଳ ସରକାରୀ ରେକର୍ଡ ରୁମରେ ରଖାଯାଉଥିଲା । ସାଲିହା ସାହେବଂକ ଖଡ଼ିଆଳଠାରେ ଗୋଟିଏ ପେଟ୍ରୋଲ ପଂପ୍ ଥିଲା । ତାଂକୁ ଗୋଟିଏ ରାତିରେ ଫୋର୍ଡ ଗାଡ଼ି ଧରି ସେଠାକୁ ଯାଇ ଫେରିଆସିବାକୁ

ଡେପୁଟି କମିଶନରର ନିର୍ଦ୍ଦେଶ ଦେଲେ। ତାହା ପାଳିତ ହେଲା। ପରଦିନ ସେ ସାକ୍ଷ୍ୟ ଦେଇ ଗମନାଗମନର କୌଣସି ଅସୁବିଧା ନାହିଁ ବୋଲି ପ୍ରମାଣିତ କଲେ। ଫୁଲଝରକୁ ଦୁଇଭାଗ କରି ଓଡ଼ିଶାରେ ଅଧା ରଖିବା ଦାବି ଗୃହୀତ ହୋଇ ନଥିଲା। ମାତ୍ର ପଦ୍ମପୁର ଅଂଚଳ (ମହାଦେବପାଲି ଚୁଡିଥାନା) ମଧ୍ୟ ଏହି ଉଦ୍ୟମ ଫଳରେ ଓଡ଼ିଶାରେ ମିଶିପାରିଥିଲା।

୧୯୨୧ରେ ଆର୍ତ୍ତତ୍ରାଣ ଦେବ ରାଜଗାଦି ପାଇଲେ। ରାୟପୁର ରାଜକୁମାର କଲେଜରେ ଶିକ୍ଷା ସମାପ୍ତ କରି ସେ କଲିକତାର ବଂଗବାସୀ କଲେଜରେ ପଢ଼ିଥିଲେ। ଘରୋଇ ଭାବରେ ଆଇ. ଏ. ପାସ୍ କଲେ। ପାଠପଢ଼ା ସମୟରେ ଆର୍ତ୍ତତ୍ରାଣ କ୍ରୀଡାରେ ବିଶେଷ ଉତ୍ସାହୀ ଥାଇ ଅନେକ କପ୍ ଓ ମେଡାଲ୍ ପାଇଥିଲେ। ରାଜଗାଦି ପାଇବାର କିଛିଦିନ ପୂର୍ବରୁ ସେ ସରକାରୀ ମେନେଜରର ପଦ ତୁଲାଇଥିଲେ। ପୋରହାଟ (ଚକ୍ରଧରପୁର ବିହାର) ଜମିଦାରଂକ କନ୍ୟା ମୟଂକ ମଂଜରୀଂକୁ ସେ ୧୯୧୯ରେ ବିବାହ କରିଥିଲେ। ୧୯୨୧ରେ ସେ ଛତିଶଗଡ଼ ଡିଭିଜନର ବୟସ୍କାଉଟ ଆସୋସିଏସନର ଉପ ସଭାପତି ନିର୍ବାଚିତ ହୋଇ ସ୍ୱସ୍ତିକ ଚିହ୍ନ ଅର୍ଜନ କରିଥିଲେ। ସେହିବର୍ଷ ଖଡ଼ିଆଳରେ ଥିବା ସାନିଟେସନ ବୋର୍ଡ (ପରେ ଇଉନିୟନ ବୋର୍ଡର) ସେ ସଭାପତି ହୋଇଥିଲେ। ୧୯୨୪ରେ ରାଜ୍ୟରେ ମରୁଡ଼ି ପଡ଼ିଲା। ଜମିଦାର ଭାବରେ ସେ ପ୍ରଜାମାନଂକୁ ମୁକ୍ତହସ୍ତରେ ରିଲିଫ୍ ଦେଇ ପ୍ରଶଂସିତ ହୋଇଥିଲେ। ରାୟପୁର ରାଜକୁମାର କଲେଜ ପରିଚାଳନା କମିଟିର ସେ ସଭ୍ୟ ଥିଲେ। ନିଜ ରାଜ୍ୟରେ ଥିବା ଶିକ୍ଷା ଅନୁଷ୍ଠାନର ସୁପରିଚାଳନା ଓ ଉନ୍ନତି ନିମିତ୍ତ ସେ ବିଶେଷ ଧ୍ୟାନ ଦେଇଥିଲେ। ଖ୍ରୀଷ୍ଟିଆନ ମିଶନାରୀମାନେ ଅବହେଳିତ ଉପାଂତ ଅଂଚଳରେ ଜନସାଧାରଣଂକୁ ସୁବିଧାରେ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ନିମିତ୍ତ ଉଦ୍ୟମ କରୁଥିବା ସମୟରେ ଆର୍ତ୍ତତ୍ରାଣ ୧୯୨୯ରେ ସେମାନଂକୁ ମାଗଣାରେ ଜମି ଯୋଗାଇ ଦେଇଥିଲେ ଓ ସେଠାରେ ଖ୍ରୀଷ୍ଟିଆନ ମିସନାରି ଡାକ୍ତରଖାନା ପରବର୍ତ୍ତୀ କାଳରେ ଏକ ଉନ୍ନତ ଅନୁଷ୍ଠାନରେ ପରିଣତ ହୋଇଥିଲା। ରାଜ୍ୟର ସୁଯୋଗ୍ୟ କୃତୀ ଛାତ୍ରମାନଂକୁ ଉଚ୍ଚଶିକ୍ଷା ନିମିତ୍ତ ସେ ରାଜ୍ୟ ପାଂଠିରୁ ଅର୍ଥଦାନ କରି ଅନ୍ୟମାନଂକୁ ଆଦର୍ଶ ଦେଖାଇଥିଲେ। ରାୟପୁର ରେଲୱେ ରିକ୍ରେସନ କ୍ଲବକୁ ଅର୍ଥଦାନ କରି ସେ ସେଠାରେ ପ୍ରତିବର୍ଷ ଖଡ଼ିଆଳ ଦରବାର ଫୁଟବଲ ଚାଲେଂଜ ସିଲ୍ଡ ପ୍ରତିଷ୍ଠା କଲେ। ପ୍ରତିବର୍ଷ ଏଠାରେ ନିଖିଳ ଭାରତ ଫୁଟବଲ ଟୁର୍ନାମେଂଟ୍ ଅନୁଷ୍ଠିତ ହେଉଥିଲା। ରାଜ୍ୟରେ ପ୍ରାଥମିକ ଶିକ୍ଷାର ଉନ୍ନତି ଓ ପ୍ରସାର ନିମିତ୍ତ ସେ ରାଜ୍ୟର ବିଦ୍ୟାଳୟ ଗୃହମାନ ନିର୍ମାଣ କରାଇ ତାହାକୁ ଜିଲ୍ଲା କାଉନସିଲକୁ ହସ୍ତାଂତର କରିଥିଲେ। ରାଜା ପଂଚମ ଜର୍ଜଂକ ରଜତ ଜୁବିଲି ଉପଲକ୍ଷେ ୧୯୩୫ରେ ତାଂକୁ ଜୁବିଲି ମେଡାଲ୍ ଓ ୧୯୩୭ରେ ଷଷ୍ଠଜର୍ଜଂକର ଅଭିଷେକ ଉପଲକ୍ଷେ ରାଜ୍ୟ ଅଭିଷେକ ମେଡାଲ୍ ଦ୍ୱାରା

ଇଂରେଜ ସରକାର ସମ୍ମାନିତ କରିଥିଲେ। ଭାରତୀୟ ରେଡ଼କ୍ରସ୍, ବୟ ସ୍କାଉଟ ଆସୋସିଏସନ, ଓଡ଼ିଶା ବନ୍ୟା ରିଲିଫ କମିଟି ଆଦିର ସଭ୍ୟଭାବେ ସେ କାର୍ଯ୍ୟ କରିଥିଲେ। ସଂବଲପୁର ଜିଲ୍ଲା କାଉନ୍‌ସିଲର ମଧ୍ୟ ସେ ସଭ୍ୟ ହୋଇଥିଲେ। ଜଣେ ଦକ୍ଷ ଟେନିସ୍ ଖେଳାଳି ଭାବରେ ସେ ପରିଚିତ ଥିଲେ। ୨ୟ ବିଶ୍ୱଯୁଦ୍ଧ ସମୟରେ ବଂଗ ଦୁର୍ଭିକ୍ଷ ପଡ଼ିଲା। ସେହି ସମୟରେ ରାଜ୍ୟରେ ଅନାଥାଶ୍ରମ ଓ ବାଳାଶ୍ରମ ପ୍ରତିଷ୍ଠା କରାଇ ସେ ନିଃସହାୟମାନଂକର ସେବାରେ ଏହା ଉତ୍ସର୍ଗ କରିଥିଲେ। ନୂତନ ସବଡିଭିଜନ ନୂଆପଡ଼ାଠାରୁ ବରଗଡ଼ର ସୋହେଲା ପର୍ଯ୍ୟଂତ ରାସ୍ତା ନିର୍ମାଣ ସମୟରେ ନିଜ ରାଜ୍ୟରେ ଜମି ଏଥିପାଇଁ ମାଗଣାରେ ଦାନ କରିଥିବାରୁ ଜିଲ୍ଲାର ଡେପୁଟି କମିସନର ତାଂକୁ ସବୁ ଡାକବଂଗଳାରେ ବିନା ଶୁଳ୍କରେ ରହିପାରିବାର ସୁବିଧା ପ୍ରଦାନ କରିଥିଲେ। ରାଜଭକ୍ତ ଜମିଦାର ଭାବରେ ସେ ଯୁଦ୍ଧପାଂଠିକୁ ମଧ୍ୟ ଅକାତରରେ ଅର୍ଥଦାନ କରିଥିଲେ।

ତାଂକ ଜମିଦାରିର ସାଧାରଣ ବୃଷ୍ଟିପାତ ସବୁବର୍ଷ କମ୍ ଥିବାରୁ ଏହା ମରୁଡି ପ୍ରବଣ ଥିଲା ମାତ୍ର ଆର୍ତତାଣ ଏ ଦିଗରେ ଦୃଷ୍ଟିଦେଇ ଜଳସେଚନର ସୁବିଧା ସୃଷ୍ଟିରେ ଉଦ୍ୟମୀ ହେଲେ। ନାନା ଅନୁଷ୍ଠାନ ସହିତ ସେ ସମ୍ପୃକ୍ତ ଥାଇ ଶିକ୍ଷା ବିକାଶ ଦିଗରେ ମଧ୍ୟ ସାହାଯ୍ୟ କରିଥିଲେ। ତାଂକ ଜମିଦାରି ତରଫରୁ ଖଡ଼ିଆଳ ସହରରେ ଗୋଟିଏ ମିଡିଲ୍ ସ୍କୁଲ୍ ଓ ପ୍ରାଥମିକ ବାଳିକା ବିଦ୍ୟାଳୟ ଆଗରୁ ସ୍ଥାପିତ ହୋଇଥିଲା। ଖଡ଼ିଆଳ ରାଜ୍ୟ ଓଡ଼ିଶାରେ ମିଶିବା ପରେ ଏହାର ସଦର ମହକୁମା ଖଡ଼ିଆଳ, ରେଲ୍‌ଷ୍ଟେସନ ଠାରୁ ଦୂରରେ ଥିବାରୁ ନୂଆ ସହର ତାନୱାଟ ନୂଆପଡ଼ାଠାରେ ସ୍ଥାପନ କରାଗଲା ଓ ରାସ୍ତାଘାଟର ସୁବିଧା ମଧ୍ୟ କରାଗଲା। ଜମିଦାରୀର ଶିକ୍ଷିତ ଓ ଉଚ୍ଚବର୍ଗର ଲୋକମାନେ ପ୍ରାୟ ଖଡ଼ିଆଳରେ ରହୁଥିଲେ। ସରକାର ନୂଆପଡ଼ାଠାରେ ନୂଆ ବିଦ୍ୟାଳୟ ସ୍ଥାପନ କଲେ। ଶିକ୍ଷା ଦିଗରେ ଖଡ଼ିଆଳ ଅବହେଳିତ ନ ହେବ ବୋଲି ୧୯୪୩ରେ ସେଠାରେ ଗୋଟିଏ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା କଲେ। ଓଡ଼ିଶାର ରାଜ୍ୟପାଳ ଓ ଏକଦା ସଂବଲପୁର ଜିଲ୍ଲାର ଡେପୁଟି କମିସନର ଥିବା ସାର ଉଇଲିୟମ ହଥର୍ନ ଲୁଇସ ଆଇସିଏସ୍ ଏହି ବିଦ୍ୟାଳୟର ଶିଳାନ୍ୟାସ କରିଥିଲେ। ବର୍ତମାନ ଏହା ରାଜାଂକ ନାମରେ ରାଜା ଆର୍ତତ୍ରାଣ ଉଚ୍ଚ ବିଦ୍ୟାଳୟ ନାମରେ ପରିଚିତ। ଜମିଦାରି ତରଫରୁ ମେଧାବୀ ଛାତ୍ରମାନଂକୁ ଏହି ବିଦ୍ୟାଳୟରେ ବୃତ୍ତିଦେବାର ବ୍ୟବସ୍ଥା ହେବାରୁ ଅନେକ ଛାତ୍ର ଏହାର ସୁଯୋଗ ନେଇଥିଲେ। ରାଜା ନିଜେ ମଧ୍ୟ ସ୍କାଉଟ୍ ଓ ରେଡକ୍ରସର ସଭ୍ୟ ଥାଇ ବିଦ୍ୟାଳୟରେ ଏହାର ଶାଖାମାନ ଖୋଲିଥିଲେ। ଲୋକମାନଂକର ସ୍ୱାସ୍ଥ୍ୟ ସେବାର ଉନ୍ନତି ନିମଂତେ ସେ ଖଡ଼ିଆଳରେ ଥିବା ଡାକ୍ତରଖାନାର ଉନ୍ନତି କରାଇଥିଲେ। ଖଡ଼ିଆଳରେ ପ୍ରଥମ ସ୍ଥାୟୀ ଓଡ଼ିଆ ରଂଗମଂଚ

ପ୍ରତିଷ୍ଠା କରାଇ ନିଜ ପିତା ବୀର ବିକ୍ରମ ଦେବଂକର ନାଟକମାନ ଅଭିନୟ ହେବାର ବ୍ୟବସ୍ଥା କରାଇଥିଲେ । ଖଡ଼ିଆଳରେ ଆଗରୁ ଗୋଟିଏ ସାହିତ୍ୟ ସମିତି ଥିଲା । ରାଜଗାଦିରେ ବସିଲା ପରଠାରୁ ଏଥିର ସଭାପତି ଓ ପୃଷ୍ଠପୋଷକ ଥାଇ ସେ ସାହିତ୍ୟ ଚର୍ଚ୍ଚାର ସୁଯୋଗ ସୃଷ୍ଟି କରିଥିଲେ । ରାଜବଂଶର ସାହିତ୍ୟ ପରଂପରା ରକ୍ଷାକରି ସେ ନିଜେ ଲେଖିଥିବା କବିତା ଗୁଡ଼ିକ 'ଖଡ଼ିଆଳ କୁସୁମ' ନାମରେ ପ୍ରକାଶ କରିଥିଲେ । ନିଜର କବିତା ସହିତ ଅନ୍ୟ ଅଜ୍ଞାତ କବିଂକର ରଚନା ଏଥିରେ ମଧ୍ୟ ସ୍ଥାନ ପାଇଥିଲା । ଅନେକ ଜନହିତକାରୀ ଅନୁଷ୍ଠାନ ଓ ସଂସ୍ଥା ମାନଂକୁ ସେ ଉଦାର ଭାବରେ ଅର୍ଥଦାନ କରୁଥିଲେ । ପୂର୍ଣଚଂଦ୍ର ଓଡ଼ିଆ ଭାଷା କୋଷର ମୁଦ୍ରଣ ପାଇ ନିଜ ଦେଓ୍ୱାନ ବଟକୃଷ୍ଣ ମହାଂତିଂକ ପ୍ରରୋଚନାରେ ସେ ଆର୍ଥିକ ସାହାଯ୍ୟ ପ୍ରଦାନ କରିଛଂତି । ଓଡ଼ିଶା ପ୍ରଦେଶ ଗଠନ ପରେ ସାଧାରଣ ନିର୍ବାଚନ ହେବା ପର୍ଯ୍ୟଂତ ଓଡ଼ିଶାରେ ଗୋଟିଏ ପରାମର୍ଶ ପରିଷଦ ଶାସନ କାର୍ଯ୍ୟରେ ଲାଟସାହେବଂକୁ ସାହାଯ୍ୟ କରୁଥିଲେ ଓ ରାଜା ଆର୍ତତାଣ ଏହାର ସଭ୍ୟଭାବେ ମନୋନୀତ ହୋଇଥିଲେ । ୧୯୩୭ ନିର୍ବାଚନରେ ପ୍ରତିଦ୍ୱଂଦ୍ୱିତା କରି ସେ ଖଡ଼ିଆଳ ନିର୍ବାଚନ ମଂଡଳୀରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ନିଜେ ଜମିଦାର ଥିବାରୁ ସେ କଂଗ୍ରେସ ମଂତ୍ରୀମଂଡଳ କାଳରେ ବିରୋଧୀ ଦଳର ସଭ୍ୟଥିଲେ । ଓଡ଼ିଶା ବନ୍ୟାସାହାଯ୍ୟ କମିଟିର ସକ୍ରିୟ ସଭ୍ୟ ଓ ସ୍କାଉଟ୍ କମିସନର ଭାବରେ ସେ ପ୍ରଦେଶରେ ସୁପରିଚିତ ଥିଲେ ।

ପାରଳା ମହାରାଜାଂକ ମିଳିତ ମଂତ୍ରୀମଂଡଳ ଗଠନରେ ସେ ସହଯୋଗ କରିଥିଲେ । ଯୁଦ୍ଧ ଉଦ୍ୟମରେ ମିତ୍ରଶକ୍ତିକୁ ସମର୍ଥନ କରି ଅକ୍ଷଶକ୍ତିର ବିରୋଧରେ ଲୋକମତ ଜାଗ୍ରତ କରାଇବାକୁ ସେ 'ବିଜୟ ଝଂକାର' ନାମରେ ଗୋଟିଏ ନାଟକ ରଚନା କରିଥିଲେ । ଏହା ତାଂକ ରାଜ୍ୟରେ ବିକ୍ରମ ଥିଏଟର୍‌ରେ ଅଭିନୟ କରାଯାଇଥିଲା । ଜାତୀୟ ଯୁଦ୍ଧ ସାମ୍ମୁଖ୍ୟର ପ୍ରଚାର ଉଦ୍ୟମରେ ଏହା ବିଶେଷ ସହାୟକ ହୋଇଥିଲା । ଯୁଦ୍ଧ ସମୟରେ ଅନେକ କବି ନାଟ୍ୟକାର ସଂଗୀତ ଓ ନୃତ୍ୟ ଶିଳ୍ପୀମାନଂକୁ ସେ ଯୁଦ୍ଧ ସାମ୍ମୁଖ୍ୟ ପ୍ରଚାରରେ ଅର୍ଥ ସାହାଯ୍ୟ କରି ଓଡ଼ିଆ ସଂସ୍କୃତିକୁ ଉପାଂତ ଅଂଚଳରେ ସୁରକ୍ଷିତ କରିଥିଲେ । ତାଂକର ଲୋକପ୍ରିୟତା ରାଜ୍ୟର ଯୋଗୀ ଓ ଭାଟମାନେ କେଂଦରାରେ ଗୀତ ବୋଲି ଜିଲ୍ଲାରେ ପ୍ରଚାର କରୁଥିଲେ । "ଜୟ ଆର୍ତତ୍ରାଣ କ୍ଷତ୍ରୀୟ ଭୂଷଣ ଜୟ ଖଡ଼ିଆଳ ନରେଶ ହେ" । ୧୯୪୬ରେ ଦ୍ୱିତୀୟ ବାର ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହେବାର ଅଳ୍ପଦିନ ପରେ ସେ ସେପ୍‌ଟେଂବରରେ ଅଳ୍ପ ବୟସରେ ପ୍ରାଣତ୍ୟାଗ କରିଥିଲେ ।





## ସମାଜସେବୀ

# ଜଗଦୀଶ ପ୍ରସାଦ

ଖଡ଼ିଆଳ ରାଜ୍ୟରେ ସେ ଥିଲେ ଜଣେ ସୁପରିଚିତ ରାଜନୈତିକ କର୍ମୀ। ରାୟପୁରରେ ବିଦ୍ୟାଳୟରେ ପାଠ ପଢୁଥିଲେ। ପିତୃ କୁଟୁଂବରେ ଶିକ୍ଷାର ଆଦର ଥିଲା। ଛାତ୍ର ହିସାବରେ ମହାତ୍ମା ଗାଂଧିଂକର ବିଦେଶୀ ବର୍ଜନ ଅସହଯୋଗ ଆଂଦୋଳନ ତାଂକୁ ପ୍ରଭାବିତ କଲା। ବିଦେଶୀ ଶାସନରୁ ଦେଶର ମୁକ୍ତି ଆଣିବା ତାଂକୁ ବେଶି ଘାରିଲା। ଏହା କର୍ତୃପକ୍ଷଂକ ଦୃଷ୍ଟିକୁ ଆସିବାରୁ ତାଂକୁ ବିଦ୍ୟାଳୟରୁ ବହିଷ୍କୃତ କରାଗଲା। ସେ ପାଠଛାଡ଼ି ଖଡ଼ିଆଳ ଫେରି ଆସିଲେ। ସେଠାରେ ଅସହଯୋଗ ଆଂଦୋଳନ ଆରଂଭ କଲେ। ତାଂକ ସାଂଗରେ ଅନ୍ୟମାନେ ମିଶିଲେ। ନିଶା ନିବାରଣ, ହରିଜନ ମୁକ୍ତି, ଅସ୍ପୃଶ୍ୟତା ନିବାରଣ ବିଦେଶୀ ଦ୍ରବ୍ୟ ବର୍ଜନ ସେମାନଂକର କର୍ମଧାରା ହେଲା। ଦେଶରେ ଦ୍ରୁତ ରାଜନୈତିକ ପରିବର୍ତ୍ତନ ହେଉଥାଏ। ଇଂରେଜ ସରକାର ବିଦ୍ରୋହ ଦମନ ନିମିତ୍ତ ସବୁପ୍ରକାର କଠୋର ପଦକ୍ଷେପ ନେଲେ। ୧୯୩୦ ଓ ୧୯୩୨ ଅସହଯୋଗ ଆଂଦୋଳନରେ ଅଂଶଗ୍ରହଣ କରି ବାରଂବାର ସେ ଜେଲଦଂଡ ଭୋଗିଲେ। ତାଂକୁ ଆଶ୍ରୟ ଦେଇ ଦେଶଦ୍ରୋହରେ ତାଂକୁ

ସାହାଯ୍ୟ କରୁଥିବାରୁ ତାଂକ ବାପ ଓ ଭାଇଂକୁ ରାଜାଂକ ଚାକିରିରୁ ନିକାଲି ଦିଆଗଲା। ସମାଜରୁ ବାସଂଦ ହୋଇ ମଧ୍ୟ ସେ ଆତ୍ମବିଶ୍ୱାସରେ ଅଟଳ ଥିଲେ। ଏହି ଅଦମନୀୟ ବ୍ୟକ୍ତିତ୍ୱ ହେଉଛଂତି ଖଡ଼ିଆଳର ଜଗଦୀଶ ପ୍ରସାଦ ପଟ୍ଟଯୋଷୀ। ଜନ୍ମ ତାଂକର ୧୯୦୮ ଫେବ୍ରୁଆରିରେ। ତାଂକ ବାପା ଚଂଦ୍ରଶେଖର ପଟ୍ଟଯୋଷୀ ଖଡ଼ିଆଳରେ ବେଶ ଜଣାଶୁଣା ବ୍ୟକ୍ତି ଥିଲେ। ରାଜାଂକ ପାଖରେ ତାଂକର ଖାତିର ଥିଲା। କଂଗ୍ରେସ ଆଂଦୋଳନ ଧିମେଇ ଯିବାରେ ସେ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନ ଉଦ୍ୟମରେ ମିଶିଲେ। ଉତ୍କଳ ସମ୍ମିଳନୀ କର୍ମକର୍ତାଂକର ସଦିଚ୍ଛା ଲାଭ କରି ଏ ଦିଗରେ କାମ କଲେ। ଜନମତ ସୃଷ୍ଟି କଲେ। ମଧ୍ୟପ୍ରଦେଶର ତତ୍‌କାଳୀନ ସରକାର ଶେଷରେ ଅନୁଭବ କଲେ ଖଡ଼ିଆଳ ଓଡ଼ିଆଭାଷୀ ଜମିଦାରି ଭାବରେ ନୂତନ ଓଡ଼ିଶା ପ୍ରଦେଶରେ ସାମିଲ ହେବା ଉଚିତ୍।

୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ହେଲା। ସେ ନିଜେ ଗଠନମୂଳକ କର୍ମପଂଥା ଗ୍ରହଣ କରି ନିଜ ଅଂଚଳର ଲୋକମାନଂକର ଶିକ୍ଷା ସଂସ୍କୃତିର ପ୍ରସାର ଦିଗରେ ବ୍ରତୀ ହେଲେ। ୧୯୩୪ରେ ସେ ରାୟପୁର ଜିଲ୍ଲା କାଉନସିଲ କଂଗ୍ରେସ ହାତକୁ ଆସିବାରୁ ଲରକା ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହୋଇଥିଲେ। ତାକୁ ଛାଡ଼ି ନୂତନ ପ୍ରଦେଶ ଗଠନ ନିମିତ୍ତ କାର୍ଯ୍ୟକଲେ। ୧୯୪୨ରେ ସେ ଗୋଟିଏ ଆଶ୍ରମ କରଂଗାମାଲ ଗାଁରେ ପ୍ରତିଷ୍ଠା କଲେ। 'ଭାରତ ଛାଡ଼' ଆଂଦୋଳନ ହେଲା। ଦେଶ ସ୍ୱାଧୀନ ହେଲା। ୧୯୫୭ ସାଧାରଣ ନିର୍ବାଚନରେ ସେ ପ୍ରଜା ସମାଜବାଦୀ ତରଫରୁ ବ୍ୟବସ୍ଥାପକ ସଭାକୁ ପ୍ରତିଦ୍ୱଂଦ୍ୱିତା କରି ବିଫଳ ହେଲେ। ପରେ ସେ କଂଗ୍ରେସ ଦଳର ଜଣେ ନିଷ୍ଠାପର କର୍ମୀ ହୋଇ ଦଳର କାର୍ଯ୍ୟକ୍ରମରେ ସବୁ ପ୍ରକାର ଭାଗ ନେଲେ। ଗ୍ରାମ ପଂଚାୟତରାଜ ପ୍ରତିଷ୍ଠା ହେବା ଉତ୍ତାରେ ସେ ଜଣେ ସରପଂଚ ଭାବରେ ନିର୍ବାଚିତ ହେଲେ ଓ ଲୋକମାନଂକର ସଦିଚ୍ଛା ଅର୍ଜନ କଲେ। ଅଂଚଳର ଉନ୍ନତି ନିମିତ୍ତ ସ୍ଥାନୀୟ କର୍ତୃପକ୍ଷଂକ ସହିତ ସେ ସହଯୋଗ କରି କରଂଗାମାଲ ଗାଁରେ ଗୋଟିଏ ଉଚ୍ଚଇଂରାଜୀ ବିଦ୍ୟାଳୟ ମଧ୍ୟ ସ୍ଥାପନ କରେଇ ପାରିଲେ।

ତାଂକର ଅନ୍ୟ ପରିଚୟ ଥିଲା ଜଣେ ଧର୍ମ ସଂସ୍କାରକ ଓ ସାହିତ୍ୟ ପ୍ରେମୀ ଭାବରେ। ଆଧ୍ୟାତ୍ମିକ ଚେତନାର ବିକାଶ ଓ ପ୍ରସାର ନିମିତ୍ତ ସେ ଗାୟତ୍ରୀ ଯୁଗ ନିର୍ମାଣ ଯୋଜନାରେ ନିଜକୁ ସାମିଲ କଲେ ଓ ପରେ ରାଜନୀତିଠାରୁ ଅଲଗା ହୋଇଗଲେ। ବିଭିନ୍ନ ସ୍ଥାନରେ ଗାୟତ୍ରୀ ମହାଯଜ୍ଞମାନ କରାଇଲେ। ଓଡ଼ିଶା ବାହାରକୁ ଯାଇ ସେଠାରେ ଏହି ମହାଯଜ୍ଞ ସଂପାଦନରେ ଭାଗୀ ହେଲେ ଓ ନିଜକୁ ବାନପ୍ରସ୍ଥୀ ବୋଲାଇଲେ। ଜ୍ୟୋତିଷ ବିଦ୍ୟାରେ ତାଂକର ପାରଦର୍ଶିତା ହେତୁ ଲୋକେ ତାଂକୁ ନୂତନ କାର୍ଯ୍ୟାରଂଭର ଦିନ ଧାର୍ଯ୍ୟପାଇଁ ପରାମର୍ଶ ମାଗୁଥିଲେ।

ସାହିତ୍ୟ ସୃଷ୍ଟିରେ ସେ ଖଡ଼ିଆଳ ସାହିତ୍ୟ ସମିତିର ସହଯୋଗ ପାଇଥିଲେ। ତାଂକର ଶ୍ରୀମହାଲକ୍ଷ୍ମୀ ଜଣାଣ ଚଉତିଶା, ଦୋଳିସୁଆଣି ଚଉତିଶା, ଶ୍ରୀ ସିଦ୍ଧ ବିନାୟକ ସ୍ତୋତ୍ର ପ୍ରକାଶ ପାଇଲା। ସ୍ଥାନୀୟ ଲୋକେ ପଢିବୁଝି ଏହାର ଆଦର କଲେ । ତାଂକର ଯେଉଁସବୁ ପାଂଡୁଲିପି ପ୍ରକାଶ ନ ହୋଇ ପାରିଲା, ସେ ସବୁ ଖଡ଼ିଆଳ ସାହିତ୍ୟ ସମିତି ନିଜ ପାଖରେ ଆଣି ଗଚ୍ଛିତ ରଖିଲେ। ସେଥିରେ ଅଛି ମହାଲକ୍ଷ୍ମୀ ଜଣାଣ, ମହାଦେବ ଜଣାଣ ବାରୁଣି ସ୍ନାନ, ସ୍ମୃତିକ, ପଂଚବଟୀରେ ନିଶା ଅବସାନ, ଜଗଦୀଶ ଜଣାଣ ଆଦି କାବ୍ୟ କବିତା। ୧୯୭୧ରୁ ସେ ସମାଜ ସେବାରୁ ମଧ୍ୟ ବିରତି ନେଲେ। ଆଧ୍ୟାତ୍ମିକ ଚେତନା ସୃଷ୍ଟି ନିମିତ୍ତ ପରିବ୍ରାଜକ ଦୀକ୍ଷା ଗ୍ରହଣ କରି ଉତ୍ତର ପ୍ରଦେଶ, ରାଜସ୍ଥାନ, ହିମାଚଳ ପ୍ରଦେଶ, ବିହାର ଆଦି ରାଜ୍ୟ ଭ୍ରମଣ କରି ସେଠାର ଅଭିଜ୍ଞତା ନିଜ କବିତା ମାଧ୍ୟମରେ ବ୍ୟକ୍ତ କରି ଯାଇ ଅଛଂତି। ୧୯୮୫ରେ ୭୭ ବର୍ଷ ବୟସରେ ସେ ଖଡ଼ିଆଳରେ ଶେଷ ନିଶ୍ୱାସ ତ୍ୟାଗ କଲେ।



# କୋମନାର କୋଣରୁ
# କବି ଗଦାଧର

ଖଡ଼ିଆଳ ରାଜାମାନେ ପୁରୁଷାନୁକ୍ରମେ ସାହିତ୍ୟ ସେବୀ ଥିଲେ। ସେମାନେ ନିଜେ ସାହିତ୍ୟିକ ଥିବାରୁ ସାହିତ୍ୟ ଚର୍ଚ୍ଚାର ଗୋଟିଏ ବାତାବରଣ ସମଗ୍ର ରାଜ୍ୟରେ ବ୍ୟାପିଯାଇଥିଲା। ରାଜା ଆର୍ତ୍ତତ୍ରାଣ ନିଜ ରଚନାମାନ ଖଡ଼ିଆଳ କୁସୁମରେ ଲିପିବଦ୍ଧ କରି ପ୍ରକାଶ କରିଥିଲେ। ତାଂକ ପୁଅ ଅନୁପସିଂହ ଉପମଂତ୍ରୀ ଓ ମଂତ୍ରୀ ଭାବରେ ରାଜ୍ୟରେ ଜଣେ ରାଜନୈତିକ ନେତା ଭାବରେ ପରିଚିତ ଥିଲେ ମାତ୍ର ସେ ନିଜେ କବିତା ଲେଖୁଥିଲେ ଅବସର ବିନୋଦନ ନିମିତ୍ତ। ଖଡ଼ିଆଳ ସାହିତ୍ୟ ସମିତିର ସେ ପ୍ରଥମ ପୃଷ୍ଠପୋଷକ ଥିଲେ। ଖଡ଼ିଆଳ କୁସୁମରେ ରାଜାଂକ କବିତା ସହିତ ଆଉ କେତେଜଣ ଅଜଣା କବିଂକର ଲେଖା ମଧ୍ୟ ପ୍ରକାଶ ପାଇଥିଲା। ତାହା ମଧ୍ୟରେ ଥିଲେ କବି ଗଦାଧର। ୧୯୭୨ର ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ ସେମାନଂକ ନିର୍ବାଚିତ ପାଠ୍ୟପୁସ୍ତକରେ ଗଦାଧରଂକର 'ଶରଦାଗମନ' କବିତାଟିକୁ ସ୍ଥାନ ଦେଇ ତାଂକୁ ବୃହତ୍ତର ଓଡ଼ିଶାର ପାଠକମାନଂକ ସମ୍ମୁଖରେ ଉପସ୍ଥାପିତ କରିଥିଲେ। କୋମନାଥାନା ଖଡ଼ିଆଳର

## ଖଡ଼ିଆଳର ଖଡ଼ିକାର

ମଧ୍ୟ ଦକ୍ଷିଣ ପୂର୍ବର ଉପାଂତ ଅଂଚଳ। ସେଇଠି ଗଦାଧର ୧୯୦୬ ନଭେଂବର ମାସରେ ଜନ୍ମ ହୋଇଥିଲେ। ଓଡ଼ିଶାର ସେଇ ସୀମାଂତ କୋମନାଗଡ଼। ତାପରେ ବର୍ତ୍ତମାନ ଛତିଶଗଡ଼ ରାଜ୍ୟ। ଓଡ଼ିଆଭାଷୀ ଅଂଚଳ ଥିଲେ ମଧ୍ୟ ସେଗୁଡ଼ିକ ରାଜନୈତିକ ପୃଷ୍ଠଭୂମିରେ ଲରହା ଭାଷାଭାଷୀ ହୋଇ ସେମାନେ ଓଡ଼ିଆ ବଦଳରେ ହିଂଦି ମାଧ୍ୟମରେ ପାଠ ପଢୁଛଂତି। ସେ ନିଜ ଉଦ୍ୟମରେ ଓଡ଼ିଆ, ବଂଗଳା, ଗୁଜରାଟୀ ଓ ଇଂରାଜୀ ଭାଷା ଶିକ୍ଷାକଲେ। ବହିପତ୍ର ସଂଗ୍ରହ କରି ପଢ଼ିଲେ। ଜ୍ଞାନ ଆହରଣ କଲେ। ଜୀବିକା ଅର୍ଜନ ନିମିତ୍ତ ବିଦ୍ୟାଳୟ ଶିକ୍ଷକ, ଡାକଘର ବ୍ରାଂଚ ପୋଷ୍ଟମାଷ୍ଟର, ଜମିମପା ପଟୁଆରି ଆଦି ବୃତ୍ତିରେ କିଛିଦିନ ରହିଥିଲେ। ପୁରାଣ ଶାସ୍ତ୍ର ସେ ଆଲୋଚନା କରୁଥିଲେ ଓ ତା ସହିତ କର୍ମକାଂଡ, ଜ୍ୟୋତିଷ ଶାସ୍ତ୍ର, ହୋମିଓପାଥି ଚକିତ୍ସା ମଧ୍ୟ କିଛି କିଛି ଜାଣିଥିଲେ। ଏକନିଷ୍ଠ ସାଧନା ଫଳରେ ସେ ଓଡ଼ିଆ ସାହିତ୍ୟକୁ ନିଜ ରଚିତ କବିତାମାନ ଦାନ କରିଗଲେ। ମହାନଦୀ, ଅର୍ଜୁନୋତ୍ତର, ଯୌତୁକ, ଜୀବନ୍ୟାସ, ରାମକଥା ରାମରାଜ୍ୟ, ଶ୍ରୁର ସୌଭଦ୍ର, ପ୍ରେମାୟନ, କବିତାବଳୀ, ପୁଷ୍ପକ, ସୀତାରାମ ଆଦି ତାଂକର କାବ୍ୟକୃତି। କେବଳ ଖଂଡିଏ ଗଦ୍ୟ ପୁସ୍ତକ ସେ ଲେଖି ଯାଇଛଂତି। ଏହି ପୁସ୍ତକ 'ମୋର ପରିଚୟ ଓ ଚିଂତାଧାରା' ଆତ୍ମ ଅନୁଭୂତିମୂଳକ ଏକ ସମସାମୟିକ ସାମାଜିକ ଚିତ୍ର। ବହୁ ବିଳଂବରେ ବଣମଲ୍ଲି ଭାବରେ ତାଂକ ସୁଗନ୍ଧ ଲୋପ ହେବା ଆଗରୁ ସେ ଓଡ଼ିଶା ସରକାରଂକ ଦୃଷ୍ଟିକୁ ଆସିବାରୁ ତାଂକୁ ସଂସ୍କୃତି ବିଭାଗରୁ ସାହିତ୍ୟିକ ଭତ୍ତା ମିଳିଗଲା ଓ ସେ ଜୀବନର ଶେଷ ପର୍ଯ୍ୟଂତ ଏହା ଭୋଗ କରିବାକୁ ସୁଯୋଗ ପାଇଥିଲେ। ଜୀବନର ଶେଷ ଆଡ଼କୁ ସେ ଯୋଗବାଶିଷ୍ଠ ପରି ତାତ୍ତ୍ୱିକ ଗ୍ରଂଥର ସରଳ ଓଡ଼ିଆ ଅନୁବାଦ ଦିଗରେ ନିଜକୁ ନିୟୋଜିତ କରିଥିଲେ। ଜୀବନର ଶେଷାଂଶରେ ଭବାନୀପାଟଣା ଖଡ଼ିଆଳ ରୋଡ (ଜଂକ) ଖଡ଼ିଆଳ, ନୟାଗଡ, ନୂଆଗାଁ ଉଦୟପୁରର ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନମାନେ ତାଂକୁ ସମ୍ମାନିତ କରି ଉପାୟନମାନ ପ୍ରଦାନ କରିଥିଲେ। ୮୪ ବର୍ଷ ବୟସରେ ଏହି କର୍ମମୟ ଜୀବନର ଅବସାନ ଘଟିଲା।





# ଲୋକସେବକ କବି
# ଅନୁପ ସିଂହଦେଓ

ଖଡ଼ିଆଳ ରାଜବଂଶର ସାହିତ୍ୟସେବା ପରଂପରା ଅନୁପସିଂହ ବୋଧହୁଏ ଉତ୍ତରାଧିକାରୀ ସୂତ୍ରରେ ଲାଭ କରିଥିଲେ। ଖଡ଼ିଆଳ ସାହିତ୍ୟ ସମିତିର ସେ ପୃଷ୍ଠପୋଷକ ଥିଲେ। ତାଂକର ପ୍ରକାଶିତ କବିତାବଳୀ ମଧ୍ୟରେ 'ଆରତି' ଉର୍ମି ଲତିକା' 'ମୂର୍ଚ୍ଛନା' ହିଲ୍ଲୋଳ ବିରହୀ' ବାରିଧି 'ଚୟନିକା' 'ତୃପ୍ତି'ପରିତୋଷ', ସ୍ପଂଦନ, ରସମଂଜୁଷା ପ୍ରକାଶ ପାଇ ସୁଧୀ ପାଠକମାନଂକୁ ଆମୋଦ ପ୍ରଦାନ କରିଅଛି। ଏହାଛଡ଼ା ଅନେକ ଅପ୍ରକାଶିତ ପାଂଡୁଲିପି ମଧ୍ୟ ସାହିତ୍ୟ ଅନୁଷ୍ଠାନ ପାଖରେ ମହଜୁଦ ଅଛି।

ଅନୁପସିଂହ ଦେଓ ୧୯୨୦ରେ ଜନ୍ମ ଗ୍ରହଣ କରିଥିଲେ। ପିତା ରାଜା ଆର୍ତତ୍ରାଣ ନିଜେ ବିଦ୍ୟାପ୍ରେମୀ ଥାଇ ତାଂକ ଶିକ୍ଷାର ସୁବ୍ୟବସ୍ଥା କରିଥିଲେ। ତାଂକର ଅବସର ସମୟ ସେ ଶିକାର କବିତା ରଚନା ଓ ସଂଗୀତ ଚର୍ଚ୍ଚାରେ ବ୍ୟୟ କରୁଥିଲେ। କଳାହାଂଡି ରାଜଜେମା ସୌଭାଗ୍ୟ ମଂଜରୀ ଦେବୀଂକୁ ୧୯୩୮ ରେ ସେ ବିବାହ କରିଥିଲେ। ପିତା ବ୍ୟବସ୍ଥାପକ

ଥିଲେ ତେଣୁ ସେ ସ୍ୱତଃ ରାଜନୀତି ପ୍ରତି ଆକୃଷ୍ଟ ହେଲେ। ଶିକ୍ଷା ସମାପ୍ତି ପରେ ସେ ସଂବଲପୁର ଡେପୁଟି କମିସନର ଅଫିସରେ ଶାସନ ପରିଚାଳନାରେ ତାଲିମ ପାଇଥିଲେ। ଖଡ଼ିଆଳରେ ସେ ୧୯୪୧–୪୨ରେ ଅବୈତନିକ ମାଜିଷ୍ଟ୍ରେଟ୍ ଭାବରେ କାର୍ଯ୍ୟ କରିଥିଲେ। ସଂବଲପୁର ଜିଲ୍ଲାବୋର୍ଡର ସଭ୍ୟ ଭାବରେ ସେ ନିଜ ରାଜନୈତିକ ଜୀବନ ଆରଂଭ କଲେ। ଖଡ଼ିଆଳ ଇଉନିଅନ ବୋର୍ଡର ମଧ୍ୟ ସେ ସଭାପତି ଥିଲେ। ଯୁଦ୍ଧ ଉଦ୍ୟମରେ ସାହାଯ୍ୟ ନିମିତ୍ତ ସେ ୨ୟ ବିଶ୍ୱଯୁଦ୍ଧ ସମୟରେ ଜାତୀୟ ଯୁଦ୍ଧ ସାମ୍ମୁଖ୍ୟରେ ଜିଲ୍ଲାସ୍ତରୀୟ ମୁଖ୍ୟ ଥିଲେ। ସେ ଏଥିପାଇଁ କର୍ମୀ ସଂଗ୍ରହ ଅଧିକାରୀ ଭାବରେ କାର୍ଯ୍ୟ କରିଥିଲେ। ରାଜକୁମାର କଲେଜ ରାୟପୁରରେ ସେ ବିଦ୍ୟାଅଧ୍ୟୟନ କରିଥିଲେ। ତେଣୁ ସେ ପରବର୍ତ୍ତୀ କାଳରେ ସେହି କଲେଜର ପରିଚାଳନା ସମିତିର ମଧ୍ୟ ସଭ୍ୟ ହେଲେ। ଅନୁପ ଜଣେ କ୍ରୀଡାପ୍ରେମୀ ଓ ଅଶ୍ୱଚାଳକ ଥିଲେ। ୧୯୩୯ରେ ରାୟପୁରର ନିଖିଳ ଭାରତ ଫୁଟବଲ ଟୁର୍ନାମେଂଟ୍‌ରେ ସେ ସ୍ୱର୍ଣପଦକ ପାଇଥିଲେ। ରାଜକୁମାର କଲେଜରେ ୧୯୩୭ରେ ସେ ଶ୍ରେଷ୍ଠ ଘୋଡ଼ା ଚଢ଼ାଳି ଭାବରେ ରାଇଡିଂ କପ୍ ପାଇଥିଲେ। ଏହା ବ୍ୟତୀତ ଅନେକ ଅନୁଷ୍ଠାନରେ ସେ କ୍ରୀଡାରେ ଭାଗନେଇ ସମ୍ମାନିତ ହୋଇଥିଲେ। ଭବାନୀପାଟଣା ବ୍ରଜମୋହନ ସାହିତ୍ୟ ସମିତି ୧୯୭୧ରେ ତାଂକୁ କବି ସୌରଭ ଉପାଧି ପ୍ରଦାନ କରିଥିଲା। ଏହା ବ୍ୟତୀତ ପ୍ରଜାତଂତ୍ର ରଜତ ଜୟଂତୀ ସମିତି ଓଡ଼ିଶା ସାହିତ୍ୟ ଏକାଡେମୀ, ଶାରଳା ସମ୍ମାନ କଟକ ପାଠକ ସଂସଦ, ଓଡ଼ିଶା ସାଂସ୍କୃତିକ ସମିତି, ଖଡ଼ିଆଳ କଲେଜ ସମ୍ମାନ ଦ୍ୱାରା ତାଂକର ସାରସ୍ୱତ ପ୍ରତିଭା ସ୍ୱୀକୃତ। ନିଜର ଲୋକପ୍ରିୟତା ବଢ଼ିବା ସହିତ ସେ ନିଜ କର୍ମକ୍ଷେତ୍ରକୁ ବିସ୍ତାରିତ କରି ୧୯୫୨ରେ ରାଜ୍ୟ ବିଧାୟକ ହେଲେ। ତାପରେ ୧୯୫୭, ୧୯୬୧, ୧୯୭୧, ୧୯୭୪ ଓ ୧୯୮୦ରେ ଖଡ଼ିଆଳ ନିର୍ବାଚନ ମଂଡଳିର ପ୍ରତିନିଧିତ୍ୱ କରି ଆସୁଥିଲେ। ୧୯୫୨ ଓ ୧୯୬୫ରେ ସେ ରାଜ୍ୟର ଗ୍ରାମ ଗୋଷ୍ଠୀ ଉନ୍ନୟନ ବିଭାଗ ଉପମଂତ୍ରୀ ଥିଲେ ଓ ୧୯୮୦ରେ ବାଣିଜ୍ୟ ପରିବହନ ଶ୍ରମ ଓ ନିଯୁକ୍ତି ବିଭାଗର କାବିନେଟ ମଂତ୍ରୀ ଭାବରେ କଂଗ୍ରେସ ମଂତ୍ରୀମଂଡଳରେ କାର୍ଯ୍ୟ କରିଥିଲେ। ରାଜପୁତ୍ର ଭାବରେ ଜନ୍ମଗ୍ରହଣ କରି ମଧ୍ୟ ନିଜକୁ ସାଧାରଣ ଜନତାର ସେବାରେ ନିଃସ୍ୱାର୍ଥ ଭାବରେ ନିୟୋଜିତ କରି ସେ ଅଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ।

୮୩ବର୍ଷ ବୟସରେ ସେ ୨୦୦୩ରେ ପ୍ରାଣ ତ୍ୟାଗ କଲେ।





# ଅନୁବାଦକ

# ରୁଦ୍ରମାଧବ ଦେଓ

ରୁଦ୍ରମାଧବ ଜଣେ ସଫଳ ଅନୁବାଦକ । ରାଜା ବ୍ରଜରାଜ ସିଂହ ଦେବ (୧୮୮୯–୧୯୦୭)ଙ୍କର ୨ୟ ପୁତ୍ର ଶିବନାରାୟଣଙ୍କ ସେ ପୁତ୍ର । ରୁଦ୍ରମାଧବଙ୍କର ମାତା ନରେନ୍ଦ୍ର କୁମାରୀ । ତାଙ୍କର ଜନ୍ମ ୧୯୦୨ ମଇ ମାସ ୩୦ ତାରିଖରେ ଖଡ଼ିଆଳରେ । ବାଲ୍ୟକାଳରୁ ରୁଦ୍ରମାଧବଙ୍କର ବିଭିନ୍ନ ଭାଷା ଶିକ୍ଷାରେ ଆଗ୍ରହ ଦେଖାଯାଇଥିଲା । ସେ ରାୟପୁରରୁ ମାଟ୍ରିକ୍ ଓ କଲିକତାରୁ ଆଇ.ଏ. ପାସ୍ କରି ସାହିତ୍ୟ ଚର୍ଚ୍ଚାରେ ସମୟ କଟାଉଥିଲେ । ସେ ଏକାଧାରରେ ଜଣେ ରାଜନୀତିଜ୍ଞ, ନାଟ୍ୟପ୍ରେମୀ ତଥା ଅନୁବାଦକ ଥିଲେ । ଜଣେ ଉନ୍ନତ କୃଷିକାର ଭାବେ ପରିଚିତ ଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ରାଜା ଆର୍ତ୍ତତ୍ରାଣଙ୍କ ମୃତ୍ୟୁ ପରେ ଏକ ଉପନିର୍ବାଚନରେ ଓଡ଼ିଶା ବିଧାନସଭାର ସେ ସଭ୍ୟ ଥିଲେ । ରୁଦ୍ରମାଧବଙ୍କ ଜୀବଦ୍ଦଶାରେ ଖଡ଼ିଆଳର ବୀର ବିକ୍ରମ ଥିଏଟର ନାଟ୍ୟୋନ୍ନତିର ଶୀର୍ଷସ୍ଥାନରେ ପହଞ୍ଚିଥିଲା । ଏଠାରେ ସ୍ୱନିର୍ବାଚିତ ନାଟକମାନଙ୍କରେ ନିର୍ଦ୍ଦେଶନା ଦେବା ତଥା ନୂତନ ମଂଚ ଉପଯୋଗୀ ଉପକରଣ ସଂଗ୍ରହରେ ସେ ବହୁସମୟ ଅତିବାହିତ କରୁଥିଲେ । ଅବସର ସମୟରେ ସାହିତ୍ୟ ଚର୍ଚ୍ଚା କରୁଥିଲେ ।

କୌତୁକ କୋଳାହଳ ବା ମଧୁମାଳତୀ ନାମରେ ସେ ଏକ ମୌଳିକ ଗୀତିନାଟ୍ୟ ରଚନା କରିଥିଲେ। ଓମର ଖୟାମଂକୁ ସେ ଆଂଶିକ ଓଡ଼ିଆ ଅନୁବାଦ କରିଥିଲେ। କେତେଗୋଟି ଇଂରାଜୀ କବିତାର ମଧ୍ୟ ଅନୁବାଦ ସେ ଦକ୍ଷତା ସହକାରେ କରିଥିଲେ। ବଂଗଳାରୁ ଦ୍ୱିଜେଂଦ୍ରଲାଲ ରାୟଂକର ପ୍ରସିଦ୍ଧ ନାଟକ ପାଷାଣୀ ଓ କର୍ଣ୍ଣାର୍ଜୁନ ସେ ଅନୁବାଦକରି ଓଡ଼ିଶାରେ ରଂଗମଂଚସ୍ଥ କରିଥିଲେ। ଏହା ବ୍ୟତୀତ ପ୍ରତୀକ ପୂଜା ବା ଆତ୍ମଦର୍ଶନ ନାଟକ, ପରେ ପରେ ନାଟକ ଓ ଦୁର୍ଗାସ୍ତୁତି ସେ ବଂଗଳାରୁ ଓଡ଼ିଆରେ ଅନୁବାଦ କରିଥିଲେ। କୌତୁକ କୋଳାହଳ ନାଟକ ଏକ ଲାଳିକା, ଏହା କିଶୋର ଚଂଦ୍ରାନଂଦ ଚଂପୂର ଅନୁକରଣରେ ରଚିତ ଯଥା –

"ତୁହି ପରା ମୋ ହୃଦୟ
ମଣିମୟ ହାରାରେ ସହି
ତୁ ମୋହର ସକଳ ସଂପଦ
ମଦନ ଉତ୍ସାହପ୍ରଦ ମହୁଲି ମଦ
କାମୁକ ପରୀକ୍ଷା ପ୍ରବେଶିକା ପଦ
ଆରୋହଣ ପରଂପରାରେ"।

ନାଟକର ବିଭିନ୍ନ ସ୍ଥାନରେ ସ୍ଥାନୀୟ ଭାଷା ଓ ଶବ୍ଦର ପ୍ରୟୋଗ ଏହାକୁ ଉପଭୋଗ୍ୟ କରିଥିଲା। Thomas Grayଂକର ପ୍ରସିଦ୍ଧ Elegy written in a country church yardର ସେ ଅନୁବାଦ କରି ମୂଳ Curfew tolls the knell of parting daysର ନିମ୍ନ ଭାବରେ ଅନୁବାଦ କରିଥିଲେ।

"ଆରତି ଘଂଟା ବାଜେ ଦେବ ମଂଦିରେ,
ପ୍ରାଂତରୁ ଫେରଂତି ଗୋଧନ ଧୀରେ ଯେ,
କ୍ଳାଂତ କୃଷକ ଫେରେ ନିଜ ସଦନେ
ଗଭୀର ଭାବ ଜାଗେ ମୋହର ମନେ"

ଆଉଏକ ସ୍ଥାନରେ :– ଅଗ୍ରେଲତା ଜଡ଼ିତ ତରୁ କ୍ରୋଡରେ,
ପେଚକ ଶଶଧରେ ଗୁହାରି କରେ ଯେ,
ବହୁକାଳୁ ରାଜତ୍ୱ ଏଥି ମୋହର,
ଦ୍ୱଂଦ୍ୱ ଜନ୍ମାଏ ପାରାବତ ପାମର।

କବିରାଜ ପ୍ରୟାଗଦତ୍ତ ଯୋଷୀଂକ ସହିତ ମିଶି ସେ ଖଡ଼ିଆଳ କୁସୁମ ୧ମ ଓ ୨ୟ ଖଂଡ ଗୀତ ମଂଜୁଷା ନାମରେ ୩ଖଂଡ ପୁସ୍ତକ ସଂପାଦନା ଓ ପ୍ରକାଶନରେ ସମର୍ଥ ହୋଇଥିଲେ। ରାଜା ବ୍ରଜରାଜ ସିଂହ ଦେଓଂକର ସମଗ୍ର ରଚନାବଳୀ ସଂପାଦନ ନିମିତ୍ତ ସେ ପ୍ରଥମେ ଉଦ୍ୟମ କରିଥିଲେ। ମାତ୍ର ୫୮ ବର୍ଷ ବୟସରେ ରୁଦ୍ରମାଧବ ୧୯୬୦ ଅଗଷ୍ଟ ଛଅ ତାରିଖରେ ପ୍ରାଣତ୍ୟାଗ କଲେ।

❑ ❑ ❑





## ଭାଷା ଗବେଷକ

# କବିରାଜ ପ୍ରୟାଗଦତ୍ତଯୋଷୀ

ସଂବଲପୁର ବିଶ୍ୱବିଦ୍ୟାଳୟର ରଜତ ଜୟଂତୀ ଉପଲକ୍ଷେ ମାନପତ୍ର ଓ ଉପାୟନ ଦ୍ୱାରା ସଂବର୍ଦ୍ଧିତ ହୋଇଥିବା ପ୍ରତିଭାଧରମାନଂକ ମଧ୍ୟରେ ଥିଲେ କବିରାଜ ପ୍ରୟାଗ ଦତ୍ତ ଯୋଷୀ। ତାଂକ ପିତା ଖଡ଼ିଆଳର ରାଜପୁରୋହିତ ଚଂଦ୍ର ଶେଖର ପଢଯୋଷୀ, ମାତା ବୃଂଦାବତୀ ଦେବୀ। ୧୯୧୩ ଫେବ୍ରୁଆରିରେ ଖଡ଼ିଆଳରେ ତାଂକର ଜନ୍ମ, ବିଦ୍ୟାଶିକ୍ଷା ସମାପ୍ତି ପରେ ସେ ଖଡ଼ିଆଳ ମଧ୍ୟ ଭର୍ନାକୁଲାର ବିଦ୍ୟାଳୟରେ କିଛିଦିନ ଶିକ୍ଷକତା କଲେ ଓ କାଳକ୍ରମେ ଦେଶୀୟ ଆୟୁର୍ବେଦିକ ଶିକ୍ଷା ପ୍ରତି ଆକୃଷ୍ଟ ହେଲେ। ସେଥିପାଇଁ ସେ ବିଦ୍ୟାନଗରୀ ବାରାଣସୀକୁ ଯାଇ ସ୍ୱନାମଧନ୍ୟ କବିରାଜ ଧର୍ମଦାସ ଚରକାଚାର୍ଯ୍ୟାଂକର ଶିଷ୍ୟତ୍ୱ ଗ୍ରହଣ କଲେ। ଶାସ୍ତ୍ର ଅଧ୍ୟୟନ ସହିତ ସେ ଚିକିତ୍ସା ମଧ୍ୟ ଆରଂଭ କଲେ। ଅଖିଳ ଭାରତ ଆୟୁର୍ବେଦିକ ବୋର୍ଡ ପରିଚାଳିତ ପରୀକ୍ଷା ଦେଇ ୧୯୪୮ରେ ସେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ସ୍ୱର୍ଣ୍ଣପଦକ ହାସଲ କଲେ। ଏହି ସମୟରେ ସେ ଚାରିଖଂଡ ସଂସ୍କୃତ ଆୟୁର୍ବେଦିକ ଗ୍ରଂଥ–ନାଡି ବିଜ୍ଞାନ, ରସେଂଦ୍ରସାର ସଂଗ୍ରହ, ଶାରଂଗଧର ସଂହିତା ଓ ବୈଦିକ ପରିଭାଷା ପ୍ରଦୀପ–ର ହିଂଦି ଟିକା ୧୯୩୭ରୁ ୧୯୪୫ ମଧ୍ୟରେ ସଂକଳନ କରିଥିଲେ। କାଶୀର ବିଖ୍ୟାତ ସଂସ୍କୃତ ପ୍ରକାଶନ ସଂସ୍ଥା ବିଦ୍ୟାବିଳାସ ପ୍ରେସ ଆନୁକୂଲ୍ୟରେ ଏହା

ପ୍ରକାଶ ପାଇଲା ଓ ପଂଡିତ ସମାଜରେ ଆଦର ଲାଭ କଲା । ନିଜ ରାଜ୍ୟକୁ ଫେରିଆସି ସେ ଚିକିତ୍ସକ ଭାବରେ ଲୋକଂକର ସେବାରେ ନିଜକୁ ନିୟୋଜିତ, କଲେ ମାତ୍ର ତାଂକର ବହୁମୁଖୀ ପ୍ରତିଭା ସେଥିରେ ତୃପ୍ତି ଲାଭ କରି ନ ଥିଲା । ଅଧ୍ୟୟନ ଶେଷରେ ସେ କଂଗ୍ରେସର ସକ୍ରିୟ କର୍ମୀ ଥାଇ ୧୯୫୦ ପର୍ଯ୍ୟଂତ ପ୍ରଦେଶ କଂଗ୍ରେସ ବୋର୍ଡର ସଭ୍ୟ ଥିଲେ । ଖଡ଼ିଆଳ ଇଉନିଅନ ବୋର୍ଡର ସେ ଉପାଧ୍ୟକ୍ଷ ଥିଲେ । ଯେତେବେଳେ ଗ୍ରାମ ପଂଚାୟତ ଆଇନ ପ୍ରବର୍ତନ କରାଗଲା ଓ ଇଉନିଅନ ବୋର୍ଡ ସବୁ ଉଠାଇ ଦିଆଗଲା ସେ ଖଡ଼ିଆଳ ଗ୍ରାମ ପଂଚାୟତରେ ପ୍ରଥମ ସରପଂଚ ଭାବରେ ନିର୍ବାଚିତ ହୋଇଥିଲେ । ଖଡ଼ିଆଳରେ ବେସରକାରୀ ଉଦ୍ୟମରେ ହାଇସ୍କୁଲ ପ୍ରତିଷ୍ଠା ସମୟରେ ସେ ଏଥିରେ ସଂପୂର୍ଣ ସହଯୋଗୀ ଥିଲେ ଓ ପରେ ପରିଚାଳନା ସମିତିର ସଂପାଦକ ଥାଇ ବିଦ୍ୟାଳୟର ସଂପୂର୍ଣ ବିକାଶ ନିମିତ୍ତ ଧ୍ୟାନ ଦେଇଥିଲେ । ସମାଜସେବୀ ଭାବରେ ସେ କୁସଂସ୍କାର ଦୂର କରିବାକୁ ଉଦ୍ୟମରତ ଥାଇ ହରିଜନମାନଂକୁ ମଂଦିର ପ୍ରବେଶ ଅଧିକାର, ଅସ୍ପୃଶ୍ୟତା ସଂପୂର୍ଣ ନିବାରଣ, ବିଧବା ଓ ସ୍ୱାମୀ ପରିତ୍ୟକ୍ତାମାନଂକର ପୂନର୍ବିବାହ ନିମିତ୍ତ ଜନମତ ସୃଷ୍ଟିରେ ସମର୍ଥ ହୋଇଥିଲେ । ଖଡ଼ିଆଳର ପୁରାତନ ଖଡ଼ିଆଳ ସାହିତ୍ୟ ସମିତିର ଶତବାର୍ଷିକୀ ଉତ୍ସବ ୧୯୮୩ରେ ପାଳିତ ହେଲା । ସଂପାଦକ ଓ ସଭାପତି ଥାଇ ସେ ଏହି ଅନୁଷ୍ଠାନର ଉତ୍କର୍ଷ ସାଧନ କରିଥିଲେ ଏବଂ ସ୍ଥାନୀୟ ତରୁଣ ସାଧକମାନଂକ ପ୍ରେରଣାର ଉତ୍ସ ଥିଲେ । ନାଟ୍ୟକଳା ପ୍ରତି ଆକୃଷ୍ଟ ହୋଇ ସେ ଜଣେ କୁଶଳୀ ଅଭିନେତା, ମଂଚ ନିର୍ଦ୍ଦେଶକ ଓ ନାଟକ ଲେଖକ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ତାଂକ ରଚିତ କୋଶଳୀ ଭାଷାରେ ଲିଖିତ ନାଟକ 'କପଟ ବିବାହ' ସ୍ଥାନୀୟ ବୀରବିକ୍ରମ ଥିଏଟରରେ ବହୁବାର ମଂଚସ୍ଥ କରାଯାଇଥିଲା । ତାଂକର ଅନେକ ଉପାଦେୟ ନିବଂଧ ସମାଲୋଚନା ଓ ଗବେଷଣାମୂଳକ ପ୍ରବଂଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ତାଂକୁ ବିଶିଷ୍ଟ ଲେଖକର ମର୍ଯାଦା ଦେଇଥିଲା । ଖଡ଼ିଆଳ ସାହିତ୍ୟ ସମିତି, ଖଡ଼ିଆଳ ରୋଡ ସାଂସ୍କୃତିକ କ୍ରୀଡ଼ା ଅନୁଷ୍ଠାନ, ପଂଚପାଖୁଡ଼ା, ମହାବୀର ସାଂସ୍କୃତିକ ଅନୁଷ୍ଠାନ, ହୀରାଖଂଡ ବସଂତ ସମାରୋହ, ଓଡ଼ିଶା ଲେଖକ ସାମ୍ମୁଖ୍ୟ, ଯଦୁମଣି ସାହିତ୍ୟ ସଂସଦ, ସଂବଲପୁର ଲେଖକ ସଂଘ, ଦ୍ୱାରା ମଧ୍ୟ ସେ ସଂବର୍ଦ୍ଧିତ ହୋଇଥିଲେ । ଖଡ଼ିଆଳ ସାହିତ୍ୟ ସମିତି କୋଶଳୀ ଭାଷାରେ ତାଂକର ଅପ୍ରକାଶିତ ଗବେଷଣାମୂଳକ ଗ୍ରଂଥ 'କୋଶଲୀ ଭାଷା ଓ ତତ୍ତ୍ୱ' ନିମିତ୍ତ ତାଂକୁ କୋଶଳ ସାହିତ୍ୟରତ୍ନ ଉପାଧିରେ ସମ୍ମାନିତ କରିଥିଲେ । କୋଶଳୀ ଭାଷା ସାହିତ୍ୟ ଓ ବ୍ୟାକରଣକୁ ପରିପୁଷ୍ଟ କରିବା ନିମିତ୍ତ ୧୯୮୦ରେ ନିଜ ସ୍ଥାପିତ କୋଶଳ ଭାରତୀ କୁରିଆରେ ସେ ଉଦ୍ୟମରତ ଥିଲେ ଓ କୋଶଲୀ ଭାଷାକୁ ଏକ ସ୍ୱତଂତ୍ର ଓ ସାଂବିଧାନିକ ମାନ୍ୟତା ପ୍ରଦାନ ତାଂକର ପ୍ରଧାନ ଲକ୍ଷ୍ୟ ଥିଲା । ୧୯୯୬ ଅକ୍ଟୋବରରେ ତାଂକର ତିରୋଧାନ ଘଟିଲା ।



# କବି
# ଚୈତନ୍ୟ ଦାସ

ଷୋଡଶ ଶତାବ୍ଦୀର ପ୍ରଥମାର୍ଧରେ କବି ଚୈତନ୍ୟ ଦାସ ଖଡ଼ିଆଳର ବାସିଂଦା ଥିଲେ। ସେ ପାଟଣା ରାଜ୍ୟ ଶାସକ ୨ୟ ପ୍ରତାପରୁଦ୍ରଂକ ରାଜତ୍ୱ ବା ପଂଚସଖାଂକର ସମକାଳୀନ ବୋଲି କୁହାଯାଇଛି। ମତାଂତରରେ ତ୍ରୟୋଦଶ ବର୍ଷ ସଂବଲପୁର ବିଶ୍ୱବିଦ୍ୟାଳୟ ମୁଖପତ୍ର 'ସପ୍ତର୍ଷି'ରେ ପ୍ରକାଶିତ ପ୍ରବଂଧରେ ତାଂକୁ ଅଷ୍ଟାଦଶ ଶତାବ୍ଦୀର ବୋଲି ବର୍ଣନା କରାଯାଇଅଛି। ତାଂକର ରଚନା ନିର୍ଗୁଣ ମାହାତ୍ମ୍ୟ, ବିଷ୍ଣୁ ପୁରାଣ ଓ ଦେବ ଦର୍ଶନ ପୁରାଣ।

ଓଡ଼ିଶାର ସୁପ୍ରସିଦ୍ଧ ଐତିହାସିକ ଓ ମ୍ୟୁଜିୟମର ଗବେଷକ କେଦାରନାଥ ମହାପାତ୍ର ଟିଟିଲାଗଡ଼ ଡି.ଏଭି. କଲେଜର ୧୯୭୭ର କୋଶଳ ବକ୍ତୃତାମାଳାର ପ୍ରଥମ ଅଭିଭାଷଣରେ ଚୈତନ୍ୟ ଦାସଂକୁ ପ୍ରାଚୀନ ଉତ୍କଳର ନିର୍ଗୁଣ ଭକ୍ତିଧାରାର ଜଣେ ପ୍ରଧାନ ପ୍ରବର୍ତକ ଭାବରେ ବର୍ଣନା କରି ତାଂକର ଦୁଇଟି ଅମର କୃତି ନିର୍ଗୁଣ ମାହାତ୍ମ୍ୟ ଓ ବିଷ୍ଣୁଗର୍ଭ ପୁରାଣର ଉଲ୍ଲେଖ କରିଛଂତି। ପ୍ରାଚୀ ସମିତି ଆନୁକୂଲ୍ୟରେ ପ୍ରକାଶିତ ନିର୍ଗୁଣ ମାହାତ୍ମ୍ୟରେ ଏକ ଅଶୁଦ୍ଧ ପାଠ ଉପରେ ନିର୍ଭର କରି ଆର୍ତବଲ୍ଲଭ ମହାଂତି ତାଂକୁ ୧) ଭାଗବତକାର ଜଗନ୍ନାଥ ଦାସଂକ ପୂର୍ବବର୍ତୀ ୨) ଜନ୍ମସ୍ଥାନ କଟକ ଜିଲ୍ଲା ସାଇଲୋ, ପ୍ରଗନା ବଡ଼ମୂଳ ଗ୍ରାମ ଓ କାଉଁରି ପାଟଣା ନଗ୍ରକୁ କୁଅଁର ପୁର ଓ ଖଡ଼ିଆଳ ନଗ୍ରକୁ ଖଡବିଂଦ ଗ୍ରାମ ବୋଲି ଭ୍ରାଂତ ମତ ଉପସ୍ଥାପନ କରିଛଂତି। ପଂଡିତ ସୂର୍ଯନାରାୟଣ ଦାସ ମଧ୍ୟ ପ୍ରତାପରୁଦ୍ର ଦେବଂକୁ ସୂର୍ଯବଂଶୀୟ ଗଜପତି ପ୍ରତାପ ରୁଦ୍ର ଦେବ ରୂପେ ଗ୍ରହଣ କରି ଚୈତନ୍ୟଂକୁ ପଂଚସଖାଂକର ସମକାଳୀନ ବୋଲି ଗ୍ରହଣ କରିଛଂତି। ମାତ୍ର ୧୯୪୫ରେ କଳାହାଂଡିରେ ନିର୍ଗୁଣ ମାହାତ୍ମ୍ୟର ଶୁଦ୍ଧପାଠ ସଂକଳିତ ପୋଥିରେ ଲେଖାଅଛି।

ପ୍ରତାପରୁଦ୍ର ରାଜା ଦେଶ
ନଗ୍ର ଖଡ଼ିଆଳ ବିଶେଷ
ନିର୍ଗୁଣ ମାହାତ୍ମ୍ୟ ପୁସ୍ତକ,
ସେ ରଜ୍ୟେ ହୋଇଲା ଯେ ଯୁକ୍ତ।

## ଖଡ଼ିଆଳର ଖଡ଼ିକାର

କବି କାଉଁରିଆ ପାଟଣା (ପାଟଣା) ରାଜ୍ୟରେ ଅବସ୍ଥିତ ଖଡ଼ିଆଳ ନଗ୍ର (ଖଡ଼ିଆଳ) ନିକଟବର୍ତ୍ତୀ ବଟକୂଳ ଗ୍ରାମରେ ବୁଦ୍ଧେଶ୍ୱରଂକ ଔରସରେ ମେଘାବତୀଂକ ଗର୍ଭରୁ ଜନ୍ମଲାଭ କରିଥିଲେ। ତାଂକ ପିତାମହଙ୍କ ନାମ ଧନେଶ୍ୱର। ସନ୍ନ୍ୟାସୀ ଧ୍ୟାନ ଦାସଂକ ଠାରୁ ଶିକ୍ଷା ଗ୍ରହଣ କରିବା ପୂର୍ବରୁ ତାଂକ ନାମ ଥିଲା ଦେବଦତ୍ତ। ସେ ଜାତିରେ ମାଳାକାର କାମାଦୀ ଥିଲେ। ବଟମୂଳ ଗ୍ରାମରେ ନରେଶ (ଗୌଂତିଆ) ଭାଗିରଥି ତାଂକୁ ଜୀବିକା ଓ ଭୂମିଦାନ କରି ଗ୍ରଂଥ ରଚନାରେ ଉତ୍ସାହିତ କରିଥିଲେ। ନିର୍ଗୁଣ ମାହାତ୍ମ୍ୟ ପାଟଣା ରାଜ୍ୟ ଚୌହାନ ନରପତି ପ୍ରତାପରୁଦ୍ର ଦେବଂକ ରାଜତ୍ୱ କାଳରେ ରଚିତ ହୋଇଥିଲା।

ଭୂପତି ପଂଡିତଂକ ଦ୍ୱାରା ସମାପ୍ତ ପ୍ରେମ ପଂଚାମୃତ ଗ୍ରଂଥପାଠରୁ ଜଣାଯାଏ ଯେ ଉକ୍ତ ଗ୍ରଂଥ ରଚନା ସମୟକୁ ଚୈତନ୍ୟ ଦାସ ଶ୍ରୀକ୍ଷେତ୍ରର ପୂର୍ବରେ ଶ୍ରୀ କପାଳମୋଚନ ଓ ପଶ୍ଚିମରେ ଲୋକନାଥ ମଧ୍ୟବର୍ତ୍ତୀ ଏକ ସ୍ଥାନରେ ମଠ ପ୍ରତିଷ୍ଠା କରିଥିଲେ। ସେ ସମୟକୁ ସେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଜନତା ପ୍ରସିଦ୍ଧ ମହଂତ ରୂପେ ଖ୍ୟାତଥିଲେ। ସେ ଲେଖିଛଂତି –

"ଶ୍ରୀକୃଷ୍ଣ ଚରଣେ ବିଶ୍ୱାସ। ନାମ ଶ୍ରୀ ଚଇତନ ଦାସ<br>
ମହଂତ ଶୁଦ୍ଧ ବଇଷ୍ଣବ। ଗୋପୀକା ଭକ୍ତ ତାଂକ ଭାବ<br>
ଶ୍ରୀ ପୁରୁଷତ୍ତମେ ତାଂକ ଘର। ଶୁଦ୍ଧ ପଶ୍ଚିମ ପାରୁଶର<br>
ପୂର୍ବେ ଶ୍ରୀ କପାଳମୋଚନ। ପଶ୍ଚିମେ ଲୋକନାଥ ସ୍ଥାନ<br>
ଏ ଦୁଇ ଶିବଂକ ମଧ୍ୟର। ମଠ ଚୈତନ୍ୟ ଦାସଂକର<br>
ତାହାଂକ ସଂଗେ ମୋ ପୀରତୀ। ତାହାଂକ ଇଷ୍ଟ ଗୋପୀ ପତି<br>
ଆଜ୍ଞା ହୋଇଲା ତାହାଂକର। ଉତ୍କଳ ଭାଷା କାବ୍ୟକର<br>
ଚୌତିଶା ଚଉପଦୀ ଗୀତ। ବର୍ଣ୍ଣେ ଶ୍ରୀ ଗୋବିଂଦ ଚରିତ<br>
ତାହାଂକ ଆଜ୍ଞା ଘେନିଶିରେ। ମନ ଶ୍ରୀକୃଷ୍ଣ ଚରଣରେ "

ପ୍ରେମ ପଂଚାମୃତରେ ଭୂପତି ପଂଡିତଂକର ଉପରୋକ୍ତ ଉଦ୍ଧୃତିରୁ ଓଡ଼ିଶାର ପଶ୍ଚିମ ସୀମାଂତବର୍ତ୍ତୀ ଖଡ଼ିଆଳ ଅଂଚଳର ଶ୍ରୀ ଚୈତନ୍ୟ ଦାସ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀ କ୍ଷେତ୍ରବାସୀ ଜଣେ ପ୍ରସିଦ୍ଧ ମହଂତ ଓ କବି ଭାବରେ ଖ୍ୟାତି ଲାଭ କରିଥିବା ନିଃସଂଦେହରେ ପ୍ରମାଣିତ ହୁଏ।

ଶ୍ରୀ ଚୈତନ୍ୟ ଦାସ ପଶ୍ଚିମ ଓଡ଼ିଶାର ପ୍ରଥମ ପ୍ରଖ୍ୟାତ କବି।





## ସାହିତ୍ୟିକ

# ଶିବନାରାୟଣ

ଶିବ ନାରାୟଣ ଦୁର୍ଗାଚରଣ ରାୟଂକ ସଂପାଦିତ କବିବର ରାଧାନାଥଂକର ବିରାଟ  ଜୀବନୀ ଗ୍ରଂଥର ଭୂମିକା ଲେଖିବାର ସୌଭାଗ୍ୟ ଅର୍ଜନ କରିଥିଲେ। ଶିବନାରାୟଣ ୧୮୭୭ରେ ଖଡ଼ିଆଳରେ ଜନ୍ମ ଗ୍ରହଣ କରିଥିଲେ। ତାଂକ ମାତା ରାଣୀ ଧନେଶ୍ୱର ପ୍ରିୟା ଦେବୀ ବଣେଇ କଦଂବ ରାଜବଂଶର ଜେମା ଥିଲେ। ଖଡ଼ିଆଳର ସାହିତ୍ୟିକ ବାତାବରଣରେ ଶିବନାରାୟଣ ବିଦ୍ୟା ଶିକ୍ଷା ସମୟରେ ସାହିତ୍ୟ ପ୍ରୀତି ଆହରଣ କରିଥିଲେ। ଜାତି ଜାତି ଫୁଲ ନାମରେ ତାଂକର ଏକ ପଦ୍ୟ ରଚନା ୧୯୫୨ରେ ପ୍ରକାଶ ହୋଇଥିଲା। ସେ ସଂବଲପୁରୀ ଭାଷାରେ ଯୁଦ୍ଧ ପୂର୍ବରୁ ଶ୍ରୀରାମ ଚଂଦ୍ରଂକର ରାବଣ ଦରବାରକୁ ଦୂତ ରୂପେ ପଠାଯାଇଥିବା ଅଂଗଦ ଓ ରାବଣର କଥୋପକଥନ 'ରାବଣ ଅଂଗଦ ବାଚ' ନାମରେ ପ୍ରକାଶକରି ଲୋକପ୍ରିୟତା ଅର୍ଜନ କରିଥିଲେ। ଶିବନାରାୟଣ ଓ ତାଂକ ସାହିତ୍ୟ ଅନୁରାଗିଣୀ ଧର୍ମପତ୍ନୀ ବୈଦେହୀ କୁମାରୀ

ଗୋପାଳ ଚଂନ୍ଦ୍ର ପ୍ରହରାଜଂକ ସଂକଳିତ ପୂର୍ଣଚଂନ୍ଦ୍ର ଓଡିଆ ଭାଷାକୋଷର ୭ମ ଖଂଡ ପ୍ରଣୟନରେ ଶବ୍ଦ ସଂଗ୍ରହ ଓ ଅର୍ଥଦାନ ଦ୍ୱାରା ସାହାଯ୍ୟ କରିଥିଲେ। ଏହା ନିଜେ ସଂକଳକ ସ୍ୱୀକାର କରି ଉକ୍ତ ଖଂଡରେ ସେ ଦୁଇଜଣଂକର ଫଟୋଚିତ୍ର ଦେଇଅଛଂତି। ଶିବନାରାୟଣ ଆଦର୍ଶ କୃଷିଜୀବି ଥିଲେ। ନାନା ଧରଣର ଉନ୍ନତ ଫଳଚାଷ ପ୍ରସାରରେ ସେ ଲୋକମାନଂକୁ ସାହାଯ୍ୟ କରିଥିଲେ। ୧୯୫୮ରେ ସେ ପରଲୋକ ଗମନ କଲେ। ତାଂକର ଅନେକ ଅପ୍ରକାଶିତ ରଚନା ପାଂଡୁଲିପି ବର୍ତମାନ ମଧ୍ୟ ଉପଲବ୍ଧ। ଶିବନାରାୟଣ ଆଦର୍ଶ କୃଷିଜୀବିଥିଲେ। ନାନା ଧରଣର ଉନ୍ନତ ଫଳଚାଷ ପ୍ରସାରରେ ସେ ଲୋକମାନଂକୁ ସାହାଯ୍ୟ କରିଥିଲେ। ୧୯୫୮ରେ ସେ ପରଲୋକ ଗମନ କଲେ। ତାଂକର ଅନେକ ଅପ୍ରକାଶିତ ରଚନାର ପାଂଡୁଲିପି ବର୍ତମାନ ମଧ୍ୟ ଉପଲବ୍ଧ।



# KALAHANDI DISTRICT



## କଳାହାଣ୍ଡି

| | |
|---|---|
| ଆୟତନ | ୮୧୯୭ ବର୍ଗ କି.ମି. |
| ଲୋକ ସଂଖ୍ୟା ୨୦୦୧ ଜନଗଣନା | ୧୩୩୪୩୭୨ |

୧୯୪୮ ମସିହାରେ ମିଶ୍ରଣ ସମୟରେ ଅବିଭକ୍ତ କଳାହାଂଡି କରଦ ରାଜ୍ୟର ଆୟତନ ୩୭୪୫ ବର୍ଗ ମାଇଲ ଓ ଲୋକ ସଂଖ୍ୟା ୪୧୫୮୨୭ ଥିଲା। ବ୍ରିଟିଶ ସରକାରଂକୁ ଦେୟ ପେସ୍‌କିସ୍ ୧,୬୦୦ ଟଂକା ଥିଲା ।

ମୋର ଜନମ ଭୂଇଁ,
ଇତାର ମିତାନ କିଏ ନାଇଁ
ଦେଶମଧ୍ୟେ ରାନୀ ସରବ୍ ସହନି
ନାଁ ପାଇଛେ ସୁନା ମୁହିଁ
ଇ ମାଟିଥିଁ ଗାଏଁକେ ଆମେ
ଡାକସୁ ଗୁରୁମାତା
ଇ ମାଏଟ୍‌କେ ତିଲକ କରି
କପାଲେ ମାଖ୍‌ସୁଁ ଚିତା
ଇ ମାଟିର ଯୁଆନପିଲା
ସୁଖଦୁଃଖ ସବୁ ପାର୍‌ସି ସହି
ନାଁ ପାଇଛେ ସୁନା ମୁହିଁ।
ଇଟା ଆମର ମାଟିର ବଏକୁଁଠ
ଦେ ଦେବ୍‌ତାର ପୁର
ତେତିଶକୋଟି ଦେବ ଦେବୀ
ଇନେ କରିଛନ୍ ଘର୍
ଇ ମାଟିର ରସ୍ ଯେ ଚାଖିଛେ
ହେତଉଥିବା ଧୂରେଁ ରହି।
ନାଁ ପାଇଛେ ସୁନା ମୁହିଁ।

(ସରଗମଲ୍ଲୀ) –ଶ୍ରୀପତି ପାଣିଗ୍ରାହୀ





## ମହାରାଜାରୁ ବିଧାୟକ ଓ ସାଂସଦ

# ପ୍ରତାପ କେଶରୀ ଦେଓ

୧୮୯୬ରେ ପ୍ରକାଶିତ 'ଦରବାର' କାବ୍ୟରେ କବିବର ରାଧାନାଥ ଓଡ଼ିଶାର ଗଡଜାତ ରାଜାମାନଙ୍କର ଆଚରଣକୁ ଲକ୍ଷ୍ୟକରି ଲେଖିଥିଲେ -

''କର୍ମଫଳେ ଲଭିଅଛ ଅପ୍ରମିତ
ଶକ୍ତି ସାଧିବାକୁ ସଂସାରର ହିତ।
ଜନ୍ମ ଫଳେ ଲଭି ସଂପଦ ଅମାପ
ଭୋଗିନାହଁ କେବେ ଅଭାବର ତାପ।
ଜମା ଅନୁରୂପେ ବ୍ୟୟଲାଗି ଦାୟୀ
ହେବ ଏହା ଦିନେ ମନେ କଲ ନାହିଁ।
ବୁଡ଼ିଣ ରହିଲ ଆମୋଦେ ଆବାଲ୍ୟ
ବିଦ୍ୟାକୁ ମଣିଲ ଶିବ ନିରିମାଲ୍ୟ।

ରକ୍ଷଣ, ପାଳନ, ଭୋଗ ଏଧରାର
ତିନିକାର୍ଯେ କଲ ତୃତୀୟକୁ ସାର।
ପରସେବା ଲାଗି ତୁଂଭର ଜନମ
ଆତ୍ମସେବା କଲ କୌଳିକ ଧରମ।
ପଂଡିତଂକୁ ମଣ କେବଳ କଂଟକ
ଆସ୍ଥାନ ନଳିନୀ ଧୂର୍ତ ବକ ଠକ।
ପ୍ରତିଧ୍ୱନି ପରି ସଦା ସେବାକାରୀ
ତୁଂଭ ପ୍ରିୟ ପାତ୍ର ଗଉଡ଼ ଭଂଡାରି।
ପ୍ରଭୁ ବୋଲାଇଲ ତୁଂଭେ ଅନୁକ୍ଷଣ
ହେଲ ଦେହଲଗା ଭୃତ୍ୟର ବାହନ।
ବାଇ ଶୁଣିବାକୁ ଖଳର କଳ୍ପନା
ଭଲ କଥା ଲାଗେ କାନକୁ ଅଲଣା।
ସତ୍ୟ ହୃଦେ ବାଜେ ଯେହ୍ନେ ଶତସୂଚୀ
ସ୍ୱାର୍ଥାନ୍ୱେଷୀ ମିଥ୍ୟା ବାକ୍ୟେ ସଦାରୁଚି।
ସତ୍ତ୍ୱ ଲେଶେ ସ୍ଥାନ ନ ମାନେ ମାନସେ
ସଦା ଅଭିରୂଚି ରାଜସେ ତାମସେ।
ସଂଗୀତ, ମୃଗୟା, ପକ୍ଷୀ, ନିଶା,ପଶା
ଖେଳ କଲ ତୁଂଭେ ଜୀବନ ବ୍ୟବସା
କିଏ ତୁଂଭେ ମର୍ତ୍ତ୍ୟେ ଆସିଲ କାହିଁକି
କାହିଁ ଯିବ ଥରେ ଭାବିଲ ନାହିଁକି।
ମନେ ନାହିଁ ତୁଂଭେ କାହାର ସଂତାନ
କେଶରୀ ଔରସେ ତୁଂଭେ ସିନା ଶ୍ୱାନ।
ପୂର୍ବ ପୁରୁଷର ପ୍ରତିଷ୍ଠା ବିଶାଳ
ବିକି ଭାଂଗି ଖାଉଥିବ କେତେ କାଳ!
ରାଜଧର୍ମ ହେଲା ପ୍ରଜାଧନ ବୁହା
ମଂତ୍ରୀ ହେଲେ ଖଳ, ଖଂଟ, କାନକୁହା।
ଧନର ସାଫଲ୍ୟ ସୁବ୍ୟୟେ କେବଳ
ଯକ୍ଷପ୍ରାୟେ ତାକୁ ଜଗି କେଉଁ ଫଳ।

॥ ୫୪୦ ॥

ଏ ରଚନାର ବାଇଶ ବରଷ ପରେ କଳାହାଂଡି ମହାରାଜା ବ୍ରଜମୋହନ ଦେବଂକର ଜ୍ୟେଷ୍ଠ ପୁତ୍ର ପ୍ରତାପ କେଶରୀ ଦେଓ ଜନ୍ମଗ୍ରହଣ କରିଥିଲେ। ରାଜପୁତ୍ରମାନେ ସେମାନଂକ ପାଇଁ ନିର୍ଦିଷ୍ଟ ରାଜକୁମାର କଲେଜରେ ପାଠ ପଢୁଥିଲେ। ସାଧାରଣ ଜନଜୀବନଠାରୁ ସାମାଜିକ ମୂଲ୍ୟବୋଧଠାରୁ ନିଜକୁ ଦୂରେଇ ରଖି ଜଣେ ଜଣେ ପ୍ରଧାନ ମନୁଷ୍ୟ ଅମନୁଷ୍ୟ ପଣେ ହୋଇ ବାହାରୁଥିଲେ। ଏହାର ବ୍ୟତିକ୍ରମ ଥିଲା ଯେଉଁ କେତେ ଜଣ ସାଧାରଣ ମଣିଷଂକ ପରି ପାଠପଢ଼ିଲେ, ସାମାଜିକ ପ୍ରତିଷ୍ଠାର ମୂଲ୍ୟ ଜାଣିଲେ, ଶ୍ରମ ଓ ପ୍ରତିଭାକୁ ମର୍ଯାଦା ଦେବାକୁ ବୁଝିଲେ। ପରବର୍ତୀ କାଳରେ ସେଇ କେତେ ଜଣ ବିଶାଳ ଉତ୍କଳର ବରପୁତ୍ର ଭାବେ ବିବେଚିତ ହେଲେ। ଦେଶରେ ଦ୍ରୁତ ରାଜନୈତିକ ପରିବର୍ତନ ଘଟୁଥିଲା। ଦେଶୀୟ ରାଜ୍ୟମାନଂକରେ ସ୍ୱାୟତ୍ତ ଶାସନ ନିମିତ୍ତ ପ୍ରଜା ଆଂଦୋଳନ ତେଜି ଉଠୁଥିଲା। କେଂଦ୍ର ସଶସ୍ତ୍ର ବାହିନୀ ସାହାଯ୍ୟରେ ମଧ୍ୟ ଏହାକୁ ଦମନ କରିବା ସଂଭବ ହୋଇ ନ ଥିଲା। ଶେଷରେ ଇଂରେଜମାନେ ଦେଶଛାଡ଼ି ଚାଲିଗଲେ। ଦେଶୀୟ ରାଜ୍ୟ ଗୁଡ଼ିକ ବ୍ରିଟିଶ ଶାସିତ ଅଂଚଳ ସହିତ ମିଶିଗଲା।

ବିଂଶ ଶତାବ୍ଦୀର ପ୍ରଥମାର୍ଧରେ, ଏହି ପରିବର୍ତନର ସାକ୍ଷୀ ଥିଲେ ସେଇ ଯୁବରାଜ ଓ ପରେ ମହାରାଜା ପ୍ରତାପ କେଶରୀ ଦେଓ। କଳାହାଂଡିର ଏହି ଶେଷ ଶାସକ ମହାରାଜା ପ୍ରତାପକେଶରୀ ଦେଓ କରୋଂଡ ବା କଳାହାଂଡି ରାଜ୍ୟର ୧୦୪୦ରୁ ରାଜତ୍ୱ କରୁଥିବା କାଶ୍ୟପଗୋତ୍ରୀ ନାଗବଂଶର ୩୧ ତମ ନରପତି ଥିଲେ। ପିତା ବ୍ରଜମୋହନ ଦେଓଂକର ସେ ପ୍ରଥମ ସଂତାନ। ୧୯୧୯ ଅକ୍ଟୋବର ପାଂଚ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ। ବ୍ରଜମୋହନ ପ୍ରଜାପୀଡ଼କ ନ ଥିଲେ ବୋଲି ଜଣାପଡ଼େ। ଅନ୍ୟସବୁ ଦେଶୀୟ ରାଜ୍ୟରେ ବେଠି ପ୍ରଥା ଚାଲୁଥିଲା। ତାଂକ ରାଜ୍ୟରେ ୧୯୧୯ରୁ ବ୍ରଜମୋହନ ଏହା ଉଠାଇଦେଇଥିଲେ। ପ୍ରଜାମଂଡଳ ଅନ୍ୟ ରାଜ୍ୟମାନଂକରେ ଗଠିତ ହୋଇ ସ୍ୱାୟତ୍ତ ଶାସନ ଦାବି କରୁଥିବା ସମୟରେ ତାଂକ ରାଜ୍ୟରେ ଏହା ନ ଥିଲା। ପ୍ରତାପ କେଶରୀ କଳାହାଂଡି ରାଜଧାନୀ ଭବାନୀପାଟଣା ହାଇସ୍କୁଲରୁ ମାଟ୍ରିକ୍ ପାସ କଲେ। ରାୟପୁର ରାଜକୁମାର କଲେଜ ପ୍ରତିଷ୍ଠା ସମୟରେ କଳାହାଂଡିର ଆର୍ଥିକ ଅନୁଦାନ ସର୍ବୋଚ୍ଚ ଥିଲେ ମଧ୍ୟ ବ୍ରଜମୋହନ ନିଜ ଭବିଷ୍ୟତ ଉତ୍ତରାଧିକାରୀଂକୁ ସାଧାରଣ ପ୍ରଜାମାନଂକର ସୁଖଦୁଃଖ ସହଜରେ ଉପଲବ୍ଧି କରିବା ଉଦ୍ଦେଶ୍ୟରେ ସର୍ବସାଧାରଣ ଶିକ୍ଷାନୁଷ୍ଠାନରେ ଶିକ୍ଷାଦାନର ବ୍ୟବସ୍ଥା କରିଥିଲେ। ଫଳରେ ଯୁବରାଜଂକୁ 'ଦରବାର' କାବ୍ୟ ପଢ଼ିବାର ସୁଯୋଗ ମିଳିଥିଲା। ୧୯୩୩ରେ ଭବାନି ପାଟଣାରୁ ମାଟ୍ରିକ୍ ପାସ୍ କରି ପ୍ରତାପ କେଶରୀ କଟକ ରେଭେନ୍ସା କଲେଜରେ ନାମ ଲେଖାଇଲେ। ସେଠାରୁ ୧୯୩୭ରେ ବି.ଏ. ପାସ୍ କଲେ। ବିଲାତର କେଂବ୍ରିଜ୍ ଟ୍ରିନିଟି କଲେଜରେ ସେ ସିଟ୍ ପାଇଲେ, ମାତ୍ର ଏହି ସମୟରେ ଇଉରୋପରେ ଯୁଦ୍ଧର ଘନଘଟା

ଦେଖାଦେଉଥିବାରୁ ତାଂକ ପିତା ଉପାଧ୍ୟାୟଙ୍କର ଶିକ୍ଷାପାଇଁ ତାଂକର ପାଟଣାରେ ପଢ଼ିବାର ବ୍ୟବସ୍ଥା କଲେ। ସେଠାରୁ ସେ ବି.ଏଲ୍. ପାସ୍ କଲେ, ଏମ.ଏ ପଢ଼ି ପରୀକ୍ଷା ଦେବା ବେଳକୁ ତାଂକ ପିତାଂକର ଅସୁସ୍ଥତା ହେତୁ ସେ ପରୀକ୍ଷା ଦେଇ ନ ପାରି ନିଜ ରାଜ୍ୟକୁ ଫେରି ଆସିଲେ। ପିତାଂକ ମୃତ୍ୟୁପରେ ସେ ୧୯୩୯ ସେପ୍ଟେଂବରରେ ରାଜଗାଦିରେ ବସିଥିଲେ। ଚିରାଚରିତ ପରଂପରା ଅନୁସାରେ ଜୁନାଗଡ଼ ନିକଟ ଯୁଗସାଇ ପାଟଣାଠାରେ କଂଧ ସରଦାର ମେରୁକୁଜର ପାଟମାଝି କୋଳରେ ବସି ତାଂକର ରାଜ ଅଭିଷେକ ହୋଇଥିଲା। ତାଂକ ରାଜ୍ୟର ଲାଂଜିଗଡ଼ର ଜମିଦାର ମହେଶ୍ୱର ପ୍ରସାଦ ଦେଓ ପାଟରାଜା ଭାବରେ ତାଂକ ମୁଂଡରେ ପଗଡ଼ି ବାଂଧି ଅଭିଷିକ୍ତ କରାଇଥିଲେ। ଏହା ରାଜ୍ୟର ଜମିଦାର ଓ ଆଦିବାସୀ ସମେତ ସାଧାରଣ ପ୍ରଜାଂକର ସ୍ୱୀକୃତିର ନିଦର୍ଶନ ଥିଲା। ସାଧାରଣତଃ ଦେଶୀୟ ରାଜାମାନେ ଅଭିଷେକ ଉତ୍ତାରେ ରାଜ୍ୟ ପରଚାଳନା ନିମିତ୍ତ ବ୍ରିଟିଶ ଶାସିତ ଅଂଚଳରେ ତାଲିମ ନେଇ ଥାଆଂତି। ପ୍ରତାପ କେଶରୀ ଆଇନ ପାସ୍ କରିଥିଲେ। ତାଂକର ବିଦ୍ୟାନୁରାଗ ଓ ସୁନାମ ଶୁଣି ପଲିଟିକାଲ ଏଜେଂଟ୍ ତାଂକୁ ୧୯ ବର୍ଷ ବୟସରେ ରାଜଗାଦି ଆରୋହଣ କରିବା ଓ ତାଲିମରୁ ଅବ୍ୟାହତ ଦେବାକୁ ଘୋଷଣା କଲେ। ସାଧାରଣତଃ ୨୧ ବରଷ ପୂର୍ଣ ହେଲେ ଅନ୍ୟ ରାଜପୁତ୍ରମାନେ ଗାଦିନସିନ ହେଉଥିଲେ। ୧୯୩୯ ରୁ ଡିସେଂବର ୧୯୪୭ ଶେଷ ପର୍ଯଂତ ସେ ରାଜ୍ୟର ଶାସକ ଥିଲେ। ତାଂକ ପିତାଂକର ଦେଓ୍ୱାନ ଥିଲେ ଜଣେ ଅଭିଜ୍ଞ କର୍ମଚାରୀ ବିନୋଦ ବିହାରୀ ମହାଂତି। ସେ ନୂତନ ରାଜାଂକୁ ବିଭିନ୍ନ ବିଭାଗର କାର୍ଯକାରିତା ବିଷୟରେ ଅବଗତ କରାଇଲେ। ରାଜା ନିଜେ ମଧ୍ୟ ବିଭାଗମାନଂକରେ ବୁଲି ତନ୍ନତନ୍ନ ଭାବରେ ସେମାନଂକର କାର୍ଯ ଅଧ୍ୟୟନ କଲେ। ୧୯୪୧ରେ ପୁରୀ ଗଜପତି ମହାରାଜା ଶ୍ରୀ ରାମଚଂଦ୍ର ଦେବଂକର ରାଜ ଜେମା କସ୍ତୁରିକାମୋଦିନୀ ଦେବୀଂକ ସହିତ ତାଂକର ବିବାହ ହେଲା। ପ୍ରତାପ କେଶରୀ ଦେଶର ଯୁଗାଂତକାରୀ ରାଜନୈତିକ ପରିବର୍ତନ ଓ ଦେଶୀୟ ରାଜ୍ୟମାନଂକରେ ପ୍ରଜାମାନଂକର ସ୍ୱାୟତ୍ତ ଶାସନ ଦାବି ବିଷୟରେ ସଚେତନ ଥିଲେ। ସେ ନିଜର ଭାଗ୍ୟ ପ୍ରଜାମାନଂକର ଉନ୍ନତି ସହିତ ଓତପ୍ରୋତ ଭାବରେ ଜଡ଼ିତ ଏହା ଗଭୀର ଭାବରେ ଉପଲବ୍ଧି କଲେ। ତେଣୁ ସେ ରାଜ୍ୟ ପ୍ରଶାସନରେ କେତେଗୁଡ଼ିଏ ମୌଳିକ ସଂସ୍କାର ଆଣିଲେ। ପୂର୍ବର ଦେଓ୍ୱାନ ଅବସର ନେଲେ। ଦେଓ୍ୱାନଂକ ପରିବର୍ତେ ସେ ଗୋଟିଏ ମଂତ୍ରୀମଂଡଳ ତାଂକୁ ପରାମର୍ଶ ଦେବାକୁ ଗଠନ କଲେ। ବିହାର ଓଡ଼ିଶାର ଜଣେ ଜ୍ଞାନୀ ଓ ଅଭିଜ୍ଞ କର୍ମଚାରୀ ରାୟବାହାଦୁର ଉମାଚରଣ ଦାସଂକୁ ସେ ଦେଓ୍ୱାନ କରି ଆଣି ତାଂକ ଅଧ୍ୟକ୍ଷତାରେ ଫକୀର ଚରଣ ମହାଂତି ରାଜ୍ୟର ସେସନ୍ ଜଜ୍ ଓ ଲାଂଜିଗଡ଼ର ପାଟରାଜା ମହେଶ୍ୱରୀ ପ୍ରସାଦ ଦେଓଂକୁ ଧରି ଦୁଇ ଜଣ ସରକାରୀ ଓ ଜଣେ ବେସରକାରୀ ମଂତ୍ରୀ ଘେନି ଏକ ମଂତ୍ରୀମଂଡଳ

ଗଠନ କଲେ । ରାଜ୍ୟ ନିମିତ୍ତ ସେ ୧୯୪୬ରେ ଗୋଟିଏ ବିଧାନ ସଭା ଗଠନ କଲେ । ଏଥିରେ ଉଭୟ ସରକାରୀ ଓ ବେସରକାରୀ ସଭ୍ୟ ରହିଲେ । ରାଜ୍ୟରେ ଆଇନ ଅନୁମୋଦିତ ପଛାରେ ଗ୍ରାମ ସଭା ମାନ ଗଠିତ ହେଲା । ଏହାର ସଭ୍ୟମାନେ ମନୋନୀତ ହେଲେ । ସେମାନେ ବିଧାନ ସଭାର ପ୍ରତିନିଧି ବାଛିଲେ । ରାଜା ମଧ୍ୟ ନିଜର କେତେକ ସରକାରୀ କର୍ମଚାରୀଂକୁ ଏଥିପାଇଁ ମନୋନୀତ କଲେ । ବେସରକାରୀ ମଂତ୍ରୀଂକୁ ବିଧାନ ସଭାରେ ଦାୟୀ କରିବାକୁ ଦାବି ହେଲା । ଫଳରେ ସେ ସେହି ସଭ୍ୟମାନଂକ ପ୍ରତିନିଧି ଭାବରେ ଜଣେ ମଂତ୍ରୀ ନିଯୁକ୍ତ କଲେ । ପୂର୍ବ ବେସରକାରୀ ମଂତ୍ରୀ ଇସ୍ତଫା ଦେଲେ ଓ ଉତ୍ସବାନଂଦ ପ୍ରଧାନ ଜଣେ ଉଚ୍ଚ ଶିକ୍ଷିତ ସାଧାରଣ ପ୍ରଜା ଏହି ପଦରେ ନିର୍ବାଚିତ ହେଲେ । ବିଧାନ ସଭାରେ ତାଂକ ବିରୁଦ୍ଧରେ ପ୍ରତିଦ୍ୱନ୍ଦୀ ପ୍ରାର୍ଥୀ ଗଜେଂଦ୍ର ରାମସ୍ୱାମୀ ଚଉଧୁରୀ ଅଳ୍ପ ଭୋଟ ପାଇ ହାରିଗଲେ । ଦେଶରେ ଯୁଦ୍ଧକାଳୀନ ପରିସ୍ଥିତି ହେତୁ ଖାଉଟି ଦ୍ରବ୍ୟର ଅଭାବ ଦେଖା ଯାଉଥିଲା । ନିର୍ବାଚିତ ମଂତ୍ରୀଂକୁ ସାଧାରଣ ସ୍ୱାସ୍ଥ୍ୟସହିତ ବେସରକାରୀ ଯୋଗାଣ ଓ ନିୟଂତ୍ରଣ ବିଭାଗ ଦିଆଗଲା । ରାଜ୍ୟ ବିଧାନସଭାରେ ବେସରକାରୀ ଓ ସରକାରୀ ଉଭୟ ମିଶି ୨୬ ଜଣ ସଭ୍ୟ ଥିଲେ । ୧୯୪୬ ଅଗଷ୍ଟ ୧୨ ତାରିଖରେ ମହାରାଜାଂକୁ ପ୍ରଦତ୍ତ ଅଭିନଂଦନରୁ ଜଣାଯାଏ ଏହି ସଭ୍ୟମାନେ ଥିଲେ,

୧) ବିପିନ ବିହାରି ପାଢ଼ି ।
୨) ଗଜେଂଦ୍ର ରାମସ୍ୱାମୀ ଚଉଧୁରୀ
୩) ମଂତ୍ରୀ ଉତ୍ସବାନଂଦ ପ୍ରଧାନ
୪) ଗଣାଧିପ ଭୋଇ
୫) ଜଗଜ୍ଜୀବନ ଲାଲ ଶର୍ମା
୬) ଦ୍ୱାରକା ନାଥ ସୁମଂତ ପାତ୍ର
୭) ସେଠ ରାମଗୋପାଳ
୮) କେଦାରନାଥ ମହାପାତ୍ର
୯) ସୁରେଶ ଚଂଦ୍ର ବେହେରା
୧୦) ଲକ୍ଷ୍ମଣ ପ୍ରସାଦ ବେହେରା
୧୧) ହରିଶଂକର ପଂଡା
୧୨) ରାମପ୍ରସାଦ ପାଟଯୋଷୀ
୧୩) ଗଗନ ମହାକୁଡ
୧୪) କର୍ମବୀର ରାୟସିଂହ ବାବୁ

୧୫) ଦୁର୍ଗାଚରଣ ପଟ୍ଟନାୟକ
୧୬) କିଶୋର ଚଂଦ୍ର ଦେଓ
୧୭) ଗୌର ଚଂଦ୍ର ସିଂହ
୧୮) ଲାଲ ଭୋଳାନାଥ ସାହ ଦେଓ
୧୯) କାଳୀ ପ୍ରସାଦ ବାବୁ
୨୦) ରାୟ ସାହେବ ଧନେଶ୍ୱର ପାତ୍ର
୨୧) ଇଂଦ୍ରମଣି କର
୨୨) ବ୍ରଜମଣି ସିଂହ
୨୩) ସୁରେଂଦ୍ର ନାଥ ଶର୍ମା
୨୪) ମାର୍କଣ୍ଡ ରଥ
୨୫) ରାୟସାହେବ ନେତ୍ରାନଂଦ କାନୁନଗୋ
୨୬) ଅନୁକୂଳ ଚଂଦ୍ର ସେନଗୁପ୍ତ

ଏହି ସଭ୍ୟମାନଂକ ମଧ୍ୟରୁ କେଦାରନାଥ ମହାପାତ୍ର ଜଣେ ଲବ୍ଧପ୍ରତିଷ୍ଠ ଐତିହାସିକ। ସେ ରାଜ୍ୟ ପ୍ରତ୍ନତତ୍ତ୍ୱବିତ୍ ଥାଇ ପ୍ରତ୍ନତତ୍ତ୍ୱ ବିଭାଗର ଅଧୀକ୍ଷକ ଥିଲେ। ସେ କୋଶଳ ଐତିହାସିକ ଗବେଷଣା ପ୍ରତିଷ୍ଠାନର ପତ୍ରିକାର ଯୁଗ୍ମ ସଂପାଦକ ଥିଲେ। ସୁରେଂଦ୍ର ନାଥ ଶର୍ମା ବାମଂଡା ରାଜ୍ୟର ଅଧିବାସୀ ଥାଇ ରାଜକବି ସଚ୍ଚିଦାନଂଦ ନାମରେ ଏକ ଜୀବନୀ ରଚନା କରିଥିଲେ। ବାମଂଡା ଦରବାରର ପ୍ରଥମେ କର୍ମଚାରୀ ଥାଇ ସେ କଳାହାଂଡି ରାଜ୍ୟର ଜିଲ୍ଲା ମାଜିଷ୍ଟ୍ରେଟ ଥିଲେ। ମିଶ୍ରଣ ପରେ ସେ ଭାରତୀୟ ପ୍ରାଶାସନିକ ସେବାକୁ ଉନ୍ନୀତ ହୋଇ ଅନେକ ଗୁରୁତ୍ୱପୂର୍ଣ ପଦବିରେ କାର୍ଯ କରିଥିଲେ। ସେ ବର୍ଣିତ ସମୟରେ ରାଜାଂକର ବ୍ୟକ୍ତିଗତ ସଚିବ ଓ ପରାମର୍ଶଦାତା ଥିଲେ। ମଂତ୍ରୀ ଉତ୍ସବାନଂଦ ପ୍ରଧାନ ଉତ୍‌କେଲାର ଭାଗୁଆଳି ଗୌଂତିଆ ଓ ଜଣେ ଉଚ୍ଚ ଶିକ୍ଷିତ ଯୁବକ ଥିଲେ। ମିଶ୍ରଣ ପରେ ସେ ମଧ୍ୟ ରାଜ୍ୟ ବିଧାନସଭାର ୧୯୪୮-୫୧ରେ ମନୋନୀତ ସଭ୍ୟ ଥିଲେ। ବୋରଡ଼ାର ଗୌଂତିଆଂକର ପୁତ୍ର ଗଣାଧିପ ଭୋଇ ଓଡ଼ିଶାର ଜଣେ ବିଶିଷ୍ଟ କ୍ରୀଡ଼ାବିଦ ଥିଲେ। କଲେଜ ଛାତ୍ର ଥାଇ ସେ ୧୯୪୩ରେ ରେଭେନ୍‌ସା କଲେଜର କ୍ରୀଡା ଚାଂପିଅନ ଥିଲେ। ୧୯୪୦ରେ ୪୦୦ ଗଜ ଦୌଡ଼କୁ ୫୬.୨ ସେକେଂଡରେ ୧୯୪୧ରେ ୧୯ ଫୁଟ ୧୦ଇଂଚ ଲଂବା ଡିଅାଁ ୧୬୦ ଫୁଟ ହରଡଲ ଦୌଡ଼କୁ ୧୭ ସେକେଂଡରେ ଅତିକ୍ରମ କରି ୧୯୪୧ ରେ ଡିଉକ୍ କପ୍ ଯୋଗ୍ୟତା ବଳରେ ଅର୍ଜନ କରିଥିଲେ। ପରବର୍ତୀ କାଳରେ ସେ ଉଚ୍ଚଶିକ୍ଷା ନିମିତ୍ତ ବିଲାତ ଯାଇଥିଲେ। ସେଠାରୁ ଫେରି ଓକିଲାତି କରିଥିଲେ ଓ ଅନେକ ଦିନଧରି

ଜିଲ୍ଲାର ସରକାରୀ ଓକିଲ ଥିଲେ। କାଳୀ ପ୍ରସାଦ ବାବୁ ଏମ. ଏ. ବି. ଏଲ. ରାଜ୍ୟର ଜିଲ୍ଲା ଓ ସେସନ୍ସ ଜଜ୍ ଥିଲେ। ମିଶ୍ରଣ ପରେ ବିଧାନ ସଭାକୁ ମନୋନୀତ ହୋଇଥିଲେ। ଚାକିରିରୁ ଇସ୍ତଫା ଦେଇ ପରବର୍ତୀ କାଳରେ ଓକିଲ ଓ ସମାଜସେବୀ ଭାବରେ ସେ ପ୍ରତିଷ୍ଠା ଅର୍ଜନ କରିଥିଲେ। ମାର୍କଣ୍ଡ ରଥ ବି.ଏ. ଡିଇଡି ରାଜ୍ୟର ଶିକ୍ଷାବିତ୍ ଓ ଶିକ୍ଷା ଅଧୀକ୍ଷକ ଥିଲେ। ଲାଲ ଭୋଳାନାଥ ସାହ ଦେଓ ରାଜ୍ୟର ଜଣେ ଦେୱାନୀ ଜଜ୍ ଥିଲେ। ରାୟ ସାହେବ ଧନେଶ୍ୱର ପାତ୍ର ରାଜ୍ୟର ଜଂଗଲ ବିଭାଗ ମୁଖ୍ୟ ପରିଚାଳକ ଓ ପରାମର୍ଶଦାତା ଥିଲେ। ରାୟସାହେବ ନେତ୍ରାନଂଦ କାନୁନଗୋ କଟକ ଜିଲ୍ଲାର ଲୋକ ଥାଇ ପୁଲିସ ବିଭାଗରୁ ଅବସର ନେଇ କଳାହାଂଡିର ଜିଲ୍ଲା ଆରକ୍ଷୀ ଅଧିକ୍ଷକ ଭାବରେ କାର୍ଯ କରୁଥିଲେ। ଇଂଦ୍ରମଣିକର ରାଜ୍ୟର ଇଂଜିନିୟର ଥିଲେ। ଅନୁକୂଳ ଚଂଦ୍ର ସେନଗୁପ୍ତ ରାଜ୍ୟର ଜଂଗଲ ବିଭାଗ କର୍ମଚାରୀ ଥିଲେ। କିଶୋର ଚଂଦ୍ର ଦେଓ ଜୟପାଟଣାର ଜମିଦାର ଥିଲେ। ଦୁର୍ଗାଚରଣ ପଟ୍ଟନାୟକ କାଶୀପୁରର ଜଣେ ବଡ଼ ରୟତ ଥିଲେ। ଗଜେଂଦ୍ର ରାମସ୍ୱାମୀ ଚୌଧୁରୀ ଜଣେ ପ୍ରଗତିଶୀଳ କୃଷକ ଓ ରାଜ୍ୟର ଏକମାତ୍ର ଅସ୍ତ୍ର ବ୍ୟବସାୟୀ ଥିଲେ। ସେଠ ରାମଗୋପାଳ ଓ ଜଗଜୀବନ ଲାଲ ଶର୍ମା ଜଣେ ଜଣେ ପାଇକାରୀ ବ୍ୟବସାୟୀ ଥିଲେ। ଏହା ବ୍ୟତୀତ ସୁରେଶ ଚଂଦ୍ର ବେହେରା, ଲକ୍ଷ୍ମଣ ପ୍ରସାଦ ବେହେରା ଓ ଅନ୍ୟମାନେ ରାଜ୍ୟର ଶିକ୍ଷିତ ଓ ରାଜାନୁଗତ ରୟତ ଥିଲେ। ୨୬ ଜଣଂକ ମଧ୍ୟରୁ ୧୬ ଜଣ ବେସରକାରୀ ଓ ୧୦ ଜଣ ସରକାରୀ ସଦସ୍ୟ ଥିଲେ।

ବିଧାନ ସଭାର ସଭ୍ୟମାନେ ସର୍ବସମ୍ମତି କ୍ରମେ ଭବିଷ୍ୟତରେ ଓଡ଼ିଶା ସହିତ କଳାହାଂଡି ରାଜ୍ୟ ମିଶ୍ରଣର ବିରୋଧ କରି ଏକ ପ୍ରସ୍ତାବ ଗ୍ରହଣ କରିଥିଲେ।

ବିଧାନସଭା ଗଠନ ବ୍ୟତୀତ ପ୍ରତାପ କେଶରୀ ପ୍ରଜାମାନଂକର ମଂଗଳ ନିମିତ୍ତ କେତେକ ଲୋକପ୍ରିୟ ପଦକ୍ଷେପ ନେଇଥିଲେ। ମହାରାଜା ନିଜେ ହାଇକୋର୍ଟ୍ କ୍ଷମତା ଉପଭୋଗ କରୁଥିଲେ ମଧ୍ୟ ରାଜ୍ୟରେ ବିଚାର ବିଭାଗକୁ ଶାସନ ବିଭାଗରୁ ପୃଥକ୍ କରାଇଲେ। ଅନେକ କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯକାରୀ କରି ସେ ଜଳସେଚନ ଫଳରେ କୃଷି ଉତ୍ପାଦନର ସୁବିଧା କରାଇଲେ। ଜଂଗଲରେ ପ୍ରଜାମାନଂକୁ ନିସ୍ତାର ଅଧିକାର ଦେଲେ। ସେମାନେ ଗାଈଗୋରୁ ଅବାଧରେ ଚରାଇ ପାରୁଥିଲେ ଓ ନିଜର ଆବଶ୍ୟକ ଘର ତିଆରି ଉପକରଣ ଛାଡ଼ (ପରମିଟ୍) ସାହାଯ୍ୟରେ ସହଜରେ ପାଇପାରୁଥିଲେ। ଜଳସେଚନ ସୁବିଧା ଫଳରେ କୃଷି ଉତ୍ପାଦନ ବଢ଼ିଲା। ବଂଗଳାର ୧୯୪୩ ଦୁର୍ଭିକ୍ଷ ସମୟରେ ତାଂକ ରାଜ୍ୟରୁ ସେ ବଳକା ଏକଲକ୍ଷ ଟନ ଚାଉଳ ରପ୍ତାନି କରିବାକୁ ସକ୍ଷମ ହୋଇଥିଲେ। ନିଜର ଘରୋଇ ଚାଷ ଜମି ଦାନ କରି ସେ ଭବାନୀପାଟଣା ନିକଟରେ

ଅରକାବାହାଲଠାରେ କୃଷି ଫାର୍ମ ଓ ପଶୁପାଳନ ପଶୁଚିକିତ୍ସା କେଂଦ୍ର ପ୍ରତିଷ୍ଠା କଲେ। ଇଂଦ୍ରାବତୀ ନଦୀର ଉପଯୁକ୍ତ ସ୍ଥଳ ନିର୍ଣୟ କରି ଜଳସେଚନ ଓ ବିଦ୍ୟୁତ ଶକ୍ତି ଉତ୍ପାଦନ ନିମିତ୍ତ ଏହି ନଦୀର ଜଳ ବ୍ୟବହାର ଉଦ୍ଦେଶ୍ୟରେ ସେ ଅନୁସଂଧାନ କରାଇଲେ। ଏହା ଅଂର୍ତରାଜ୍ୟ ଯୋଜନା ଥିଲା। ନିଜର ପରବର୍ତୀ ରାଜନୈତିକ ଜୀବନରେଏହା କାର୍ଯକାରୀ ହେବା ସେ ଦେଖିଥିଲେ। ଚିକିତ୍ସାର ସୁବିଧା ନିମିତ୍ତ ସେ ରାଜ୍ୟ ଡାକ୍ତରଖାନାର ଉନ୍ନତି କଲେ। ଏକ୍ସରେ ବ୍ୟବସ୍ଥା ପ୍ରଚଳନ କଲେ। ପେନ୍‌ସିଲିନ୍ ସେତେବେଳେ ଏକ ଦୁର୍ଲଭ ସର୍ବରୋଗହାରୀ ନୂତନ ଆବିଷ୍କୃତ ଔଷଧ ଥିଲା ଓ ତାହା ପ୍ରଜାମାନଂକର ସୁବିଧା ନିମିତ୍ତ ସେ ନିଜ ଡାକ୍ତରଖାନାରେ ଉପଲବ୍‌ଧ କରାଇଲେ। ରାଜ୍ୟରେ ୩୦ ଶଯ୍ୟା ବିଶିଷ୍ଟ ଗୋଟିଏ ଯକ୍ଷ୍ମା ହସ୍‌ପିଟାଲ ପ୍ରତିଷ୍ଠା କରାଯାଇ ଏହି ରୋଗ ଚିକିତ୍ସା ବ୍ୟବସ୍ଥା କରାଗଲା। ତାଂକ ରାଜ୍ୟ ଓଡ଼ିଶାରେ ମିଶିବା ସମୟରେ ଏହା ଓଡ଼ିଶାର ଏକମାତ୍ର ଯକ୍ଷ୍ମା ଚିକିତ୍ସାକେଂଦ୍ର ଥିଲା। ପ୍ରାଥମିକ ବିଦ୍ୟାଳୟ ଗୃହମାନ ନୂଆ କରି ଗଢ଼ି ସେଗୁଡ଼ିକର ସଂଖ୍ୟା ବଢ଼ାଇଲେ। ହାଇସ୍କୁଲରେ ଉଚ୍ଚ ଡିଗ୍ରିଧାରୀ ଶିକ୍ଷକ ନିଯୁକ୍ତ କରି ଶିକ୍ଷାଦାନର ସୁବ୍ୟବସ୍ଥା କଲେ ଓ ଉତୀର୍ଣ କୃତୀ ଛାତ୍ରମାନଂକୁ ଚିକିତ୍ସା ବିଜ୍ଞାନ, ଇଂଜିନିଅରିଂ, ଆଇନ, ଖଣିଜ ବିଦ୍ୟା, ଜଂଗଲ ବିଜ୍ଞାନ, ମତ୍ସ୍ୟ ବିଜ୍ଞାନ ପୁଲିଶ ପରିଚାଳନା, ଆଦି ବିଷୟରେ ଦେଶ ବିଦେଶରେ ଉଚ୍ଚ ଶିକ୍ଷା ଦେବାକୁ ସେ ରାଜବୃତ୍ତିର ବ୍ୟବସ୍ଥା କଲେ। ଏହା ଫଳରେ ପରବର୍ତୀ କାଳରେ ଭୁବନେଶ୍ୱର ବେହେରାଂକ ଭଳି କୃତୀ ଇଂଜିନିଅର, ଶ୍ରୀଧର ପାଟଯୋଷୀଂକ ଭଳି ଖଣିଜ ବିଦ୍ୟା ବିଶାରଦ ଆମେରିକାରୁ ବାଣିଜ୍ୟ ଓ ବ୍ୟବସାୟ ପରିଚାଳନା ଶିକ୍ଷା ପାଇଁ ସୂର୍ଯକାଂତ ଦାସଂକ ପରି ବାଣିଜ୍ୟ ବିଦ୍ୟା ବିଶାରଦ, ଓଡ଼ିଶା ସରକାରଂକର ସେବା ନିମିତ୍ତ ଉପଲବ୍‌ଧ ହୋଇ ପାରିଲେ। ମଂଦିରମାନଂକରେ ସେ ହରିଜନମାନଂକୁ ପ୍ରବେଶ ଅଧିକାର ଦେଇଥିଲେ। ରାଜଧାନୀର ନଗର ଉନ୍ନୟନ ବ୍ୟବସ୍ଥା ନିମିତ୍ତ ସେ ବାହାରୁ ବିଶେଷଜ୍ଞ ଅଣାଇ ସେମାନଂକ ସାହାଯ୍ୟରେ ଏଥିପାଇଁ ବିଧିବଦ୍ଧ ଯୋଜନା କଲେ। ପାଟଣା ରାଜ୍ୟର ସହଯୋଗରେ କଳିଂଗ ଇତିହାସ ଗବେଷଣା ପରିଷଦ ଗଠନ କଲେ ଓ ଏହାର ତ୍ରୈମାସିକ ପତ୍ରିକା ଭବାନୀପାଟଣାରୁ ପ୍ରକାଶିତ ହେଲା। ନିଜ ରାଜ୍ୟର ପ୍ରତ୍ନତତ୍ତ୍ୱ ଆବିଷ୍କାର ଖନନ ଓ ରକ୍ଷଣାବେକ୍ଷଣ ନିମିତ୍ତ ସେ ଐତିହାସିକ କେଦାରନାଥ ମହାପାତ୍ରଂକୁ ପ୍ରତ୍ନତତ୍ତ୍ୱବିତ୍ ଭାବରେ ନିଯୁକ୍ତି ଦେଇଥିଲେ। ୧୯୪୫ରେ ସେ ଆମପାଣିଘାଟ ନିକଟରେ ଗୁଡ଼ହାଂଡି ଗ୍ରାମ ପର୍ବତ କଂଦରରେ କେତେଗୁଡ଼ିଏ ଛବିଲିପି ଆବିଷ୍କାର କରିଥିଲେ। ନର୍ଲାରୋଡ ରେଳଷ୍ଟେସନ ନିକଟରେ ଅସୁରଗଡ଼ ନାମକ ଏକ ପ୍ରାଚୀନ ଦୁର୍ଗ ଆବିଷ୍କାର କରାଯାଇ ସେଠାରୁ ୫୩ଗୋଟି ମୁଦ୍ରା ଖନନ ଫଳରେ ସଂଗ୍ରହ କରାଯାଇଥିଲା। ଏ ମୁଦ୍ରାଗୁଡ଼ିକ ଚଂଦ୍ରଗୁପ୍ତ ମୌର୍ଯ ଯୁଗର ବୋଲି ଦାବିକରି ପ୍ରତାପ କେଶରୀ ଦେଓ ଲୋକସଭା ସଭ୍ୟଥିବା ସମୟରେ ଏକ ସାରଗର୍ଭକ ନିବଂଧ ପ୍ରକାଶ କରିଥିଲେ।

ରାଜ୍ୟ ମିଶ୍ରଣପରେ ସେ ଚାରିଲକ୍ଷ ଟଂକା ଓଡ଼ିଶାରେ ଇଂଜିନିୟରିଂ କଲେଜ ପ୍ରତିଷ୍ଠା ନିମିତ୍ତ ସରକାରଂକୁ ଦେଇଥିଲେ। ଫଳରେ ବୁର୍ଲା ଇଂଜିନିୟରିଂ କଲେଜ ପ୍ରତିଷ୍ଠା ସଂଭବ ହୋଇ ପାରିଥିଲା। ବ୍ରିଟିଶ ଶାସିତ ଅଂଚଳରେ ରାଜତଂତ୍ରର ବିଲୋପ ନିମିତ୍ତ ଆଂଦୋଳନ ଚାଲିଥିଲା ଏହା ପ୍ରତିହତ କରିବାକୁ ଏକ ପୂର୍ବାଂଚଳ ରାଜ୍ୟଗୋଷ୍ଠୀ ଗଠିତ ହୋଇଥିଲା ଓ ପ୍ରତାପ କେଶରୀ ଏହାର ଉପାଧ୍ୟକ୍ଷ ଥାଇ ଗୋଷ୍ଠୀଭୁକ୍ତ ରାଜ୍ୟମାନଂକର ସାଧାରଣ ସମସ୍ୟାର ସମାଧାନ ନିମିତ୍ତ ହାଇକୋର୍ଟ୍ ଜଜ, କୃଷି ଜଂଗଲ ଶିକ୍ଷା ବିଶାରଦ ମାନଙ୍କୁ ନିଯୁକ୍ତି ଦେଇ ବିକାଶ ଯୋଜନା ମାନ ପ୍ରସ୍ତୁତ କରିଥିଲେ। ମୋଟ ଉପରେ କହିବାକୁ ଗଲେ ଆଠବର୍ଷ ରାଜତ୍ୱ ମଧ୍ୟରେ ନିଜକୁ ଜଣେ ଆଧୁନିକ ଚିଂତାସଂପନ୍ନ ଦାୟିତ୍ୱବାନ ବିକାଶପ୍ରେମୀ ରାଜା ଭାବରେ ପ୍ରତାପ କେଶରୀ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ।

ରାଜପଦ ଲୋପ ପାଇଲା। ରାଜ୍ୟରେ ତାଂକୁ ମହାରାଜା ବୋଲି ସମସ୍ତେ ମାନୁଥିଲେ ମଧ୍ୟ ସେ ନିଜକୁ ଜଣେ ସାଧାରଣ ନାଗରିକ ଭାବରେ ଗ୍ରହଣ କରାଇନେଲେ। ଆଦିବାସୀମାନଂକ ମଧ୍ୟରେ ସେବା କାର୍ଯ, ଅସ୍ପୃଶ୍ୟତା ନିବାରଣ, ଯକ୍ଷ୍ମାରୋଗ ନିର୍ମୂଳନ, ପୁସ୍ତକାଳୟ ଆଂଦୋଳନ, ଦେଶର ଭାବନାତ୍ମକ ଏକୀକରଣ କାର୍ଯରେ ସେ ନିଜକୁ ନିୟୋଜିତ କଲେ। ଏହି କାର୍ଯ କରିବାକୁ ରାଜନୀତିକୁ ସେ ମାଧ୍ୟମ ଭାବରେ ଗ୍ରହଣ କଲେ। ୧୯୫୦ ନୂତନ ସଂବିଧାନ ଅନୁସାରେ ଦେଶରେ ସାବାଳକ ଭୋଟ ହେଲା। ଓଡ଼ିଶାରେ ପଶ୍ଚିମାଂଚଳରେ ହୀରାକୁଦ ବଂଧ ବିରୋଧୀ ଆଂଦୋଳନ ଲୋକମାନଂକୁ ସରକାରୀ ବିରୋଧୀ କରିଥାଏ। ଗଡ଼ଜାତମାନଂକରେ ଲୋକପ୍ରିୟ ରାଜାମାନେ ମଧ୍ୟ ନିଜର ସୁନାମ ଅତୁଟ ରଖିଥାଂତି। ସେହିମାନେ ଗଣତଂତ୍ର ପରିଷଦ ନାମରେ ଏକ ରାଜନୈତିକ ଦଳ ଗଠନ କଲେ। ଏହି ଦଳ ତରଫରୁ ସେ ରାଜ୍ୟ ବିଧାନସଭାକୁ ପ୍ରତିଦ୍ୱଂଦ୍ୱିତା କଲେ। ଜୁନାଗଡ଼ ନିର୍ବାଚନ ମଂଡଳୀରେ ପ୍ରତିଯୋଗିତା କରି ସେ ୫୫୩୪୦ ଭୋଟ ପାଇଥିଲେ। ତାଂକ କଂଗ୍ରେସ ପ୍ରତିଦ୍ୱଂଦ୍ୱୀ ମାତ୍ର ୫୭୦୭ ଭୋଟ ପାଇଲେ। କଳାହାଂଡିର ସବୁ ଆସନ ତାଂକ ଦଳକୁ ମିଳିଲା। କଂଗ୍ରେସ ମଂତ୍ରୀମଂଡଳ ଗଠନ କଲେ ମଧ୍ୟ ଗଣତଂତ୍ର ପରିଷଦକୁ ମୁଖ୍ୟ ବିରୋଧିଦଳର ମର୍ଯାଦା ମିଳିଲା ଓ ପ୍ରତାପ କେଶରୀ ଏହାର ଉପଦଳପତି ଭାବରେ ୧୯୫୨ରୁ ୧୯୫୬ ପର୍ଯଂତ କାର୍ଯ କଲେ। ଗଣତଂତ୍ର ପରିଷଦର ସେ ୧୯୫୪-୫୫ ଓ ୧୯୫୯-୬୦ରେ ରାଜ୍ୟସଭାପତି ଥିଲେ। ପ୍ରତାପ କେଶରୀ ରାଜ୍ୟ ବିଧାନସଭାର ବିରୋଧୀ ଉପନେତା ଥିବା ସମୟରେ ଭାଷାଭିତ୍ତିକ ରାଜ୍ୟଗଠନ ନିମିତ୍ତ ଭାରତ ସରକାର ଜଷ୍ଟିସ୍ ଫଜଲ ଅଲ୍ଲି (ସେତେବେଳେ ଓଡ଼ିଶାର ରାଜ୍ୟପାଳ)ଂକ ଅଧ୍ୟକ୍ଷତାରେ ଏକ କମିଟି ବସାଇଲେ। ସରେଇକଳା ଖରସୁଆ ରାଜ୍ୟ ଦୁଇଟି ୧୯୪୮ରେ ଓଡ଼ିଶାରେ ମିଶିଗଲା।

ମାତ୍ର ମୟୂରଭଂଜ ମିଶି ନ ଥିବାରୁ ପ୍ରଶାସନିକ ସୁବିଧା ନିମିତ୍ତ ଅସ୍ଥାୟୀ ଭାବରେ ଏହାକୁ ବିହାର ସହିତ ମିଶାଇ ନିଆଯାଇଥିଲା । ମୟୁରଭଂଜ ମିଶ୍ରଣପରେ ଓଡ଼ିଶାର ଏହି ଦୁଇ ରାଜ୍ୟ ଫେରିପାଇବାକୁ ଯୁକ୍ତିଯୁକ୍ତ କାରଣ ଥିଲା । ଉତ୍କଳ ସମ୍ମିଳନୀ ଏହି ଦିଗରେ ସକ୍ରିୟ କାର୍ଯାନୁଷ୍ଠାନ କଲା ଓ ପ୍ରତାପ କେଶରୀ ଏହା ସହିତ ସଂପୃକ୍ତ ଥିଲେ । ଓଡ଼ିଶାର ଦାବୀ ଅଗ୍ରାହ୍ୟ ହେଲାରୁ ରାଜ୍ୟରେ ଶାସନ ବିରୁଦ୍ଧରେ ଦୃଢ଼ ପ୍ରତିକ୍ରିୟା ଦେଖାଦେଲା । ସରକାର ସମ୍ମିଳନୀ ସଭାପତି ପାଟଣା ମହାରାଜା, ପଂଡିତ ନୀଳକଂଠ ଦାସ, ସୁରେଂଦ୍ର ନାଥ ଦ୍ୱିବେଦୀଂକୁ ଆଇନଭଂଗ ଅପରାଧରେ ଜେଲରେ ଭରିଦେଲେ । ପ୍ରତାପ କେଶରୀ ପୁରୀରେ ୧୪୪ ଧାରାଭଂଗ ନିମିତ୍ତ ସରକାରଂକୁ ଜଣାଇଲେ । ଏହା ଲୋକ ସମର୍ଥନ ପାଇବାରୁ ସରକାର ବାଧ୍ୟ ହୋଇ ୧୪୪ ଧାରା ଉଠାଇ ନେଲେ । ଏହାପରେ ସରେଇକଳା ଓ ଖରସୁଆଁରେ ଆଂଦୋଳନ କରି ସେଠାରେ ଜନସମର୍ଥନ ସୃଷ୍ଟି କରିବାକୁ ସେ ଉଦ୍ୟମ କଲେ । ସରେଇକଳାରେ ଏକ ସଭାରେ ଭାଷଣ ଦେବାବେଳେ ଲାଠିମାଡ଼ରେ ତାଂକ ମୁଂଡ ଫାଟିଗଲା, ଓ ଅନେକ ଦିନ କଲିକତାରେ ଚିକିତ୍ସିତ ହୋଇ ସେ ଆରୋଗ୍ୟ ଲାଭ କଲେ, ଏହା ଉପକୂଳ ଅଂଚଳରେ ତାଂକୁ ଲୋକପ୍ରିୟ କରିପାରିଥିଲା ।

୨ୟ ସାଧାରଣ ନିର୍ବାଚନରେ ସେ କଳାହାଂଡି ସାଂସଦୀୟ ନିର୍ବାଚନ ମଂଡଳୀରୁ ଲୋକସଭାକୁ ପ୍ରତିଦ୍ୱଂଦ୍ୱିତା କରି କୃତକାର୍ଯ ହେଲେ ଓ ୧୯୮୦ ପର୍ଯଂତ ସେ ଲୋକସଭାର ସଭ୍ୟ ଥିଲେ । ୨ୟ (୧୯୫୭-୬୨), ୩ୟ (୧୯୬୨-୬୭), ୪ର୍ଥ (୧୯୬୭-୭୦) ଲୋକସଭାର ସଦସ୍ୟ ଭାବରେ ସେ ପ୍ରଥମେ ଗଣତଂତ୍ର ଦଳର ଓ ଏହା ସର୍ବଭାରତୀୟ ସ୍ୱତଂତ୍ର ଦଳ ସହିତ ମିଶ୍ରଣ ହେବା ପରେ ୧୯୬୨ରୁ ଏହାର ସଂସଦୀୟ ନେତା ହେଲେ । ୧୯୫୭ରୁ ୧୯୬୦ ପର୍ଯଂତ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ସଭ୍ୟ ଥିଲେ ଓ ସଂବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଉତ୍ତାରେ ଏହାର ସିନେଟ୍‌ର ସଭ୍ୟ ଥିଲେ । ରାୟପୁର ରାଜକୁମାର କଲେଜ ପରିଚାଳନା କମିଟିର ସେ ୧୯୫୭ ରୁ ୧୯୬୦ ପର୍ଯଂତ ଅଧ୍ୟକ୍ଷ ଥିଲେ । ଦଳର ସାଂସଦ ଥାଇ ସେ ଅନେକ କମିଟିରେ କାର୍ଯ କରିଥିଲେ । ବ୍ରିଟିଶ ରାଜ୍ୟ ଗୋଷ୍ଠୀ ସାଂସଦୀୟ ସଂଘର ନାଇଜିରିଆ ରାଜଧାନୀ ଲାଗୋସଠାରେ ହେବା ଅଧିବେଶନରେ ସେ ଭାରତୀୟ ସାଂସଦୀୟ ଦଳର ଅଧିନାୟକ ଥିଲେ । ତାଂକର ସାଂସଦୀୟ ଓ ପରିଚାଳନା ଗତ ଅଭିଜ୍ଞତା ବିଭିନ୍ନ କମିଟିର କାର୍ଯରେ ପ୍ରତିଫଳିତ ହୋଇଥିଲା । ୧୯୫୯ର ଓଡ଼ିଶା ସରକାରଂକର ଜଂଗଲ ଅନୁସଂଧାନ କମିଟିର ସେ ସଭ୍ୟ ଥିଲେ । ରାଜ୍ୟ ବିକାଶ ପରାମର୍ଶଦାତା କମିଟିର ସେ ମଧ୍ୟ ୧୯୫୮ରେ ସଭ୍ୟ ଥିଲେ । ଦିଲ୍ଲୀରେ ତାଂକ ଉଦ୍ୟମରେ ଶ୍ରୀ ଜଗନ୍ନାଥ ମଂଦିର ପ୍ରତିଷ୍ଠା କରାଗଲା । ଶ୍ରୀ ନୀଳାଚଳ ସେବା ସଂଘ ଏହାର ପରିଚାଳନା ଦାୟିତ୍ୱ

ନେଲେ ଓ ପ୍ରତାପ କେଶରୀ ଦେଓ ସଂଘ ପ୍ରତିଷ୍ଠା ଦିନୁ ଜୀବନର ଶେଷ ପର୍ଯ୍ୟଂତ ଏହାର ସଭାପତି ଭାବରେ ନିର୍ବାଚିତ ହୋଇ ଆସୁଥିଲେ। ଦୁଇଟି ଲୋକ ସଭାର ଏଷ୍ଟିମେଟ କମିଟିର ସେ ସଭ୍ୟଥିଲେ। ଏହା ବ୍ୟତୀତ ବୈଦେଶିକ, ଶିକ୍ଷା ଯୁବକଲ୍ୟାଣ ଓ ରେଲୱେ ମଂତ୍ରଣାଳୟର ପରାମର୍ଶଦାତା କମିଟିରେ ମଧ୍ୟ ସେ ସଭ୍ୟଭାବେ କାର୍ଯ୍ୟ କରିଥିଲେ।

ପୃଥିବୀର ଅନେକ ଦେଶ ସେ ଭ୍ରମଣ କରି ନିଜର ଅଭିଜ୍ଞତାର ପରିସର ବୃଦ୍ଧି କରି ଲୋକସଭାରେ ନିଜ ଭାଷଣର ଉତ୍କର୍ଷତା ଦେଖାଇ ପାରୁଥିଲେ। ଶେଷଥର ଲୋକସଭାକୁ ସେ ସ୍ୱାଧୀନ ପ୍ରାର୍ଥୀ ଭାବରେ ନିର୍ବାଚନ ଲଢ଼ି କୃତକାର୍ଯ୍ୟ ହୋଇଥିଲେ। ଲୋକସଭାର ସଭ୍ୟଥିବା ସମୟରେ ସେ ଯୋଜନା କମିସନ ଅଧ୍ୟକ୍ଷଂକଠାରୁ ନିଜର ୩୫ ବର୍ଷ ତଳର ସ୍ୱପ୍ନ ଇଂଦ୍ରାବତୀ ଯୋଜନା ମଂଜୁର ହେବା ୧୯୭୮ରେ ଜାଣି ପାରି ସଂତୋଷଲାଭ କଲେ। ପ୍ରଧାନମଂତ୍ରୀ ମୋରାରାଜି ଦେଶାଇ ଏହି ଯୋଜନାର ଶୁଭ ଦେଲେ। ୧୯୭୨ ରୁ ୧୯୮୦ ଏହି ଯୋଜନାରେ ବିଶେଷ କାର୍ଯ୍ୟ ହୋଇ ନଥିଲା। ତାଂକ ପରାମର୍ଶରେ ୧୯୮୦ରେ ଜଣେ ଦକ୍ଷ ଦୂରଦୃଷ୍ଟିସଂପନ୍ନ ବିଶେଷଜ୍ଞ ଇଂଜିନିଅର ଦାମୋଦର ସାହୁ ଏହାର ଦାୟିତ୍ୱ ନେଲାପରେ କାର୍ଯ୍ୟ ସମୟାନୁକ୍ରମେ ଶେଷ ହୋଇ ପାରିଲା। ଲୋକସଭା କାର୍ଯ୍ୟକାଳ ମଧ୍ୟରେ ଜନତା ସରକାର ଇନ୍ଦିରା ଗାନ୍ଧିଂକୁ ଜରୁରି ଅବସ୍ଥା ସମୟରେ ସାହା କମିଶନ ଦ୍ୱାରା ଉଦ୍‌ଘାଟିତ ଯଥେଚ୍ଛାଚାର କାର୍ଯ୍ୟ ପାଇଁ କୈଫିୟତ ତଲବ କରିବା ଓ ସେ ଜରୁରି ପରିସ୍ଥିତିରେ ଅନେକ ଲୋକପ୍ରିୟ ସର୍ବଭାରତୀୟ ବିରୋଧୀ ନେତାକୁ ଜେଲରେ ରଖିଥିବାର ପ୍ରତିହିଂସାରେ ଲୋକସଭା ସ୍ୱାଧିକାର କମିଟି ଆଗରେ ହଜାର ନ ହେବାରୁ ପ୍ରତିହିଂସାରେ ସ୍ୱାଧିକାର ଭଂଗ ଆରୋପରେ ତାଂକୁ ଜେଲକୁ ପଠାଇବାକୁ ନିଷ୍ପତ୍ତି ନେଲେ। ମାତ୍ରଏହି ପ୍ରସ୍ତାବ ବିରୋଧରେ ନିଜେ ଭୋଟ ଦେଇ ପ୍ରତାପ କେଶରୀ ନିଜର ଦୂରଦୃଷ୍ଟି ଓ ଉଦାର ରାଜନୈତିକ ଚେତନାର ପ୍ରମାଣ ଦେଇଥିଲା।

କଳାହାଂଡିରେ ଭାରତୀୟଖାଦ୍ୟ ନିଗମର ଧାନସଂଗ୍ରହ କାର୍ଯ୍ୟ କରୁଥିବା ଏଜେଂଟ୍‌ମାନେ ରାଜ୍ୟ ସରକାରଂକୁ ପ୍ରାୟ ଦେଢ଼ଲକ୍ଷ ଟଂକା ଓ ଖାଦ୍ୟ ନିଗମକୁ ପ୍ରାୟ ଏକସ୍ତରି ଲକ୍ଷ ଟଂକା ଦେବାକୁ ଟାଳମଟାଳ ନୀତି ଧରୁଥିଲେ। ତାଂକର ଲୋକସଭାରେ ଏ ବିଷୟରେ ପ୍ରଶ୍ନୋତ୍ତର ଫଳରେ ସେମାନଂକର ନାମ ପ୍ରକାଶ ପାଇଲା। ସେମାନେ ବିଭିନ୍ନ ରାଜନୈତିକ ଦଳମାନଂକୁ ପାଂଠି ଯୋଗାଉଥିଲେ। ତେଣୁ ଜିଲ୍ଲାର ଏହି ଗୋଷ୍ଠୀର କ୍ଷମତାଶାଳୀ ବ୍ୟକ୍ତିମାନେ ତାଂକ ବିରୋଧରେ ଏକତ୍ର ହେଲେ। ଜୀବନର ଶେଷରେ ସେ ୧୯୮୦ ଲୋକସଭା ନିର୍ବାଚନରେ ପ୍ରଥମ ଥର ପାଇଁ ପରାଜିତ ହେଲେ। ନିଜ ଲୋକପ୍ରିୟତା ହ୍ରାସ ଜାଣି ସେ

ରାଜନୀତିରୁ ବିଦାୟ ନେଲେ। ତାଂକ ଭାଇ ବୀର କେଶରୀ ଦେଓ ପ୍ରଥମେ ରାଜ୍ୟ ବିଧାନ ସଭା ଓ ପରେ ରାଜ୍ୟ ସଭାର ସଭ୍ୟ ଥିଲେ। ପୁତ୍ର ପଞ୍ଚାୟତ ବିକ୍ରମ କେଶରୀ ଦେଓ ମଧ୍ୟ ବିଧାନ ସଭାର ସଭ୍ୟ। ୧୯୮୩ ଶ୍ରାବଣ ପୂର୍ଣିମା ଦିନ ସେ ନିଜ ପତ୍ନୀ କସ୍ତୁର କାମୋଦିନୀଙ୍କୁ ହରାଇଲେ। ୧୯୮୦ ଲୋକସଭା ନିର୍ବାଚନ ପରେ ସେ ଆଂତର୍ଜାତିକ ଚିନ୍ମୟ ମିଶନର ପ୍ରତିଷ୍ଠାତା ସ୍ୱାମୀ ଚିନ୍ମୟାନଂଦଂକଠାରୁ ଦୀକ୍ଷା ଗ୍ରହଣ କରି ଧର୍ମଚର୍ଚ୍ଚା ଓ ଶାସ୍ତ୍ର ଆଲୋଚନାରେ ଭବାନୀ ପାଟଣାରେ ବହୁସମୟରେ ନିଜକୁ ନିୟୋଜିତ କରୁଥିଲେ। ତାଂକର ତିରୋଧାନ ଘଟେ ମାତ୍ର ଦେଶୀୟ ରାଜ୍ୟମାନଂକର ଶେଷ ନରପତି ବ୍ୟବସ୍ଥାପକ ଭାବରେ ସେ ଓଡ଼ିଶାରେ ସ୍ମରଣୀୟ ହୋଇ ରହିବେ।



ଯେ ରାଜା ପ୍ରଜାମନରଂଜେ,<br>
ରାଜ୍ୟ ସଂପଦ ସୁଖେ ଭୂଂଜେ<br>
ସତ୍ୟ ସଂଧକ ଦୃଢ଼ ବ୍ରତ,<br>
ବିପ୍ରସେବକ ବିଷ୍ଣୁଭକ୍ତ<br>
ଶରଣ ସର୍ବ ପ୍ରାଣୀଂକର,<br>
ଦୀନବତ୍ସଳ ମନହର<br>
ପର ରମଣୀ ମାତୃପ୍ରାୟ,<br>
ନିତ୍ୟ କାମିନୀ ନିଜ କାୟ।



# ଦୀନବଂଧୁ
# ଦୟାନିଧି ନାୟକ

ପୃଥିବୀର ଜଣେପ୍ରଖ୍ୟାତ ଚିଂତାଶୀଳ ବ୍ୟକ୍ତି ଜର୍ଜ ବାର୍ନାଡ୍ ଶ କହିଥିଲେ ସଂସାରରେ ଗୋଟିଏ ଧଂଦା ଅଛି ଯେଉଁଥିରେ କୌଣସି ଯୋଗ୍ୟତା ବା ଅଭିଜ୍ଞତାର ମାପକାଠି ନାହିଁ ମାତ୍ର ସେଥିରୁ ମିଳେ ଅଶେଷ କ୍ଷମତା ଓ ଲାଭ। ରାଜନୀତିଟି ସେହି ଧଂଦା। ଆମ ଦେଶରେ ବହୁ ପଂଡିତ ଗୁଣୀମାନଂକଠାରୁ ଅଧାମୂର୍ଖ ପର୍ଯଂତ ସମସ୍ତେ ଏ ଧଂଦାରେ ପଶିଛଂତି। ଅନେକ ଗୁଣୀଜ୍ଞାନୀ ସେଥିରେ ରକ୍ଷଣ, ପାଳନ, ଭୋଗରୁ ତୃତୀୟ କାର୍ଯଟିକୁ ବାଛି ନେଇଥିବା ବେଳେ କେତେଜଣ ଅଳ୍ପ ଶିକ୍ଷିତ ଏହାକୁ ଜନସେବାର ଏକ ସୁଯୋଗ ବୋଲି ଗ୍ରହଣ କରି ଲୋକମାନଂକର ମଂଗଳକର କାର୍ଯ କରି ପାରିଛଂତି। ସେମାନଂକୁ ଦରିଦ୍ର ଜନସାଧାରଣ ଚିରଦିନ ସ୍ମରଣ କରିବେ। ଏହିପର ଜଣେ ମଣିଷ ଥିଲେ କଳାହାଂଡିର ଦୟାନିଧି ନାୟକ।

ଦୟାନିଧି ଏକ ଦରିଦ୍ର ହରିଜନ ପରିବାରରେ ଭବାନିପାଟଣା ସହରରେ ଜନ୍ମ ଗ୍ରହଣ କରିଥିଲେ। କଳାହାଂଡି ରାଜ୍ୟର ରାଜଧାନୀ ଥିଲା ଏହି କ୍ଷୁଦ୍ର ସହର। ତାଂକ ବାପା

ମେଟଣା ନାୟକ ଜଣେ ଦିନ ମଜୁରିଆ ଥିଲେ । ଦୟାନିଧି ନିଜ ଜନ୍ମ ବର୍ଷ ନିଜେ ମଧ୍ୟ ଠିକ କରି ଜାଣି ନ ଥିଲେ । ସେଇ ଭାଙ୍ଗୋଡ଼ା ଅମଳରେ ବିଦ୍ୟାଶିକ୍ଷା କରି ସେ ହାଇସ୍କୁଲ୍‌ରେ ପଢ଼ିଲେ । ହାଇସ୍କୁଲରେ ପ୍ରତି ଶ୍ରେଣୀରେ ସର୍ବୋଚ୍ଚ ନମ୍ବର ରଖୁଥିବା ପିଲାଂକ ପାଇଁ ଗୋଟିଏ ରନିଂ କପ୍ ଥାଏ । ପଲିଟିକାଲ ଏଜେଂଟ ଫିଲିପ୍‌ସଙ୍କ ନାମରେ ଏହା ଫିଲିପ୍‌ସ କପ କୁହାଯାଉଥିଲା । ନାନା ଅଭାବ ଅସୁବିଧା ସତ୍ତ୍ୱେ ପାଠପଢ଼ିବା ଟାଲୁ ରଖିଥିବା ଦୟାନିଧି କେତେବର୍ଷ ଏହା ପାଇଥିଲେ । ମାଟ୍ରିକ୍ ଯାଏ ପାଠ ପଢ଼ିଲେ । ରାଜା ଶାସନରେ ଅଳ୍ପ କେଇଦିନ ଓ୍ୱାର୍କ ସରକାର କାମ କଲେ । ମାତ୍ର ନିଜେ ଗରିବ୍ ଥିବାରୁ ସାଧାରଣ ଦରିଦ୍ର ଲୋକଂକର ଦୁଃଖ କଷ୍ଟ ସେ ସହଜରେ ବୁଝି ପାରୁଥିଲେ । ବୁଢ଼ାରାଜା ବ୍ରଜମୋହନ ଦେବଂକ ଦେହାଂତ ପରେ ପ୍ରତାପ କେଶରୀ ଦେଓ ରାଜା ହେଲେ । ସେ ସାଧାରଣ ଲୋକଂକ ସାଂଗରେ ମିଶୁଥିଲେ । ପୂର୍ବ ରାଜାଂକର ଲୋକଂକୁ ଦୁରମାର କରିବା ମନୋଭାବ ତାଂକଠାରେ ନ ଥିଲା । ଦୟାନିଧି ଦରିଦ୍ର ହରିଜନ ଥିବାରୁ ସେହି ହରିଜନମାନଂକୁ ନିଜର ଦାୟିତ୍ୱ ଓ ଅଧିକାର ବୁଝାଇବାକୁ ସେମାନଂକର ଦୁଃଖ କଷ୍ଟ ଅବଗତ ଥାଇ ଏକାଠି କରାଇଲେ । ସେମାନେ ମଲା ଗୋରୁ ମାଂସ ନ ଖାଇବା, ଚୋରି ଡକାୟତି କାମ ନ କରିବା, ମାଦକ ଦ୍ରବ୍ୟ ସେବନ ନ କରିବା ଉଚିତ ବୋଲି ସେ ତାଂକୁ ବୁଝାଇଲେ । ସେମାନେ ତାଂକୁ ନିଜର ବୋଲି ମନେ କଲେ । ତାଂକ କଥାରେ ଚାଲିଲେ । ଏ କଥା ରାଜାଂକ କାନକୁ ଯିବାରୁ ସେ ଦୟାନିଧିଂକୁ ଆଦର କଲେ । ଏହି କାର୍ଯ୍ୟରେ ତାଂକୁ ପ୍ରୋତ୍ସାହନ ଦେଲେ । ସେ ହରିଜନ ମାନଂକ ତରଫରୁ କୌଣସି ଆପତ୍ତି ଅଭିଯୋଗ କଲେ ମହାରାଜା ପ୍ରତାପକେଶରୀ ତାହା ଗ୍ରହଣ କରି ଶୀଘ୍ର ତଦଂତର ଆଦେଶ ଦେଉଥିଲେ । ତାଂକ ରାଜ୍ୟରେ ପ୍ରଜାମଂଡଳ ଆଂଦୋଳନ ଆରଂଭ ହେଲା । ବିକ୍ଷୋଭକାରୀମାନେ ନିଜ ପାଇଁ ସ୍ୱାୟତ୍ତ ଶାସନ ଦାବି କଲେ । ରାଜା ନିଜର ଗୋଟିଏ ପରାମର୍ଶ ଦାତା ସଭା ଗଢ଼ିଲେ । ସେମାନଂକର ମତାମତ ଅନୁସାରେ ରାଜ୍ୟ ଶାସନ କଲେ । ଦୟାନିଧିଂକୁ ଏହି ସଭାର ସଭ୍ୟଭାବେ ସେ ମନୋନୀତ କଲେ । ୧୯୪୮ରେ କଳାହାଂଡି ଦେଶୀୟ ରାଜ୍ୟ ଓଡ଼ିଶାରେ ମିଶିଲା । ସେ ପର୍ଯ୍ୟଂନ୍ତ ଦୟାନିଧି ପରାମର୍ଶ ସଭାର ସଭ୍ୟ ଥାଆନ୍ତି । ରାଜାଂକ ଆଖିରେ ତାଂକ ସୁଚିଂତିତ ପରାମର୍ଶର ମୂଲ୍ୟଥିଲା । ମିଶ୍ରଣ ପରେ ସେ ରାଜାଂକର ବିଶ୍ୱାସ ଭାଜନ ଥାଇ ଦଳିତ ଜାତିର ସେବା ପାଇଁ ଗୋଟିଏ ସଂଗଠନ ଗଢ଼ିଲେ । ଆଦିବାସୀ ହରିଜନ ଲୋକ ରାଜ୍ୟରେ ବେଶି ଭାଗ ଥିଲେ । ଏହି ଦଳିତମାନଂକ ସଭାର ଦୟାନିଧି ସଭାପତି ହେଲେ । ଲୋକଂକ ସହିତ ଖୁବ୍ ମିଶାମିଶି କଲେ । ଗାଁକୁ ଗାଁ ଯାଇ ମିଶ୍ରଣ ପରେ ଲୋକଂକର ଅଭାବ ଓ ଉଚିତ ଦାବି କର୍ତ୍ତୃପକ୍ଷଂକ ଦୃଷ୍ଟିକୁ ଆଣିଲେ । ତାଂକ [illegible] ଓଡ଼ିଶା [illegible] ହେଲା । ସେହି ଦଳିତମାନେ ତାଂକୁ [illegible] । ଓଡ଼ିଶା [illegible] ସଭାପତି କଲେ । [illegible] ସମାଜସେବାକୁ

ନିକଟତମ ଥିଲା । ସେ ରାଜାଂକର ଅନୁଗତ ଥାଇ ମିଶ୍ରଣପରେ ଗଢାଯାଇଥିବା ଗଣତଂତ୍ର ଦଳରେ ଯୋଗଦେଲେ । କଳାହାଂଡି ରାଜ୍ୟର ଏକମାତ୍ର ମୁନିସିପାଲଟିର ୧୯୫୮ରେ ଚେୟାରମ୍ୟାନ ହେଲେ । ଜିଲ୍ଲା ଗଣତଂତ୍ର ପରିଷଦର ସେ ମଧ୍ୟ ସଭାପତି ହେଲେ । ଗାଁ ଗାଁ ବୁଲି ଦଳର ନୀତି ଲୋକଂକୁ ବୁଝାଇଲେ । ଜିଲ୍ଲାର ସର୍ବଜନୀନ ଭୋଟ ଅଧିକାର ଲାଭ ପରେ ଭୋଟରମାନଂକୁ ସଚେତନ ଓ ସଂଗଠିତ କଲେ । ବିଧାନସଭା ନିର୍ବାଚନରେ କଳାହାଂଡି ରାଜ୍ୟରୁ କଂଗ୍ରେସ ଭାରତବର୍ଷରେ ସବୁଠାରୁ ବଡ଼ ଦଳ ଥିଲେ ବି ଗୋଟିଏ ସ୍ଥାନ ସୁଦ୍ଧା ପାଇ ପାରିଲା ନାହିଁ । ପ୍ରଥମ ସାଧାରଣ ନିର୍ବାଚନରେ ସେ ଓଡ଼ିଶା ବିଧାନସଭାର ସଭ୍ୟ ହେଲେ । ଯାହା ଦରମା ଭତ୍ତା ତାଂକୁ ମିଳୁଥିଲା ସେ ନିଜର ଚଳିବା ପାଇଁ ଆବଶ୍ୟକ ଅର୍ଥ ରଖି ବାକି ଦଳର କାମରେ ଖଟାଇବାକୁ ଦେଇଦେଉଥିଲେ । ଲୋକଂକ ସାଂଗରେ ମିଶି ଏପରି ନାଁ କରିଥାଆଂତି ସେ ଜୀବନ ତମାମ ସେ ରାଜନୀତିରେ ଥାଇ ଭିନ୍ନ ନିର୍ବାଚନ ମଂଡଳୀରୁ ଛିଡ଼ା ହୋଇ ସୁଦ୍ଧା ଜିତାପଟ ହାସଲ କରୁଥିଲେ । ଜୁନାଗଡ଼ରୁ ୧୯୫୨ରେ, କୋକସରାରୁ ୧୯୬୧ରେ ଓ ଭବାନୀପାଟଣାରୁ ୧୯୬୭ ଓ ୧୯୭୧ ରେ ସେ ସଭ୍ୟ ହୋଇ ଆସିଲେ । ସ୍ୱତଂତ୍ର ଜନକଂଗ୍ରେସ ମଂତ୍ରୀମଂଡଳ ଗଢ଼ାଯିବା ବେଳେ ସେ ୧୯୬୭ ରୁ ୧୯୭୧ ପର୍ଯଂତ ନିର୍ମାଣ ଓ ପରିବହନ ବିଭାଗର ମଂତ୍ରୀ ଥିଲେ । ପରବର୍ତୀ ମଂତ୍ରୀମଂଡଳ ସଂଯୁକ୍ତ ଦଳ ଗଢ଼ିଲେ । ସେଥିରେ ମଧ୍ୟ ସେ ଅବକାରୀ ଓ ବାଣିଜ୍ୟ ବିଭାଗର ମଂତ୍ରୀଥିଲେ । ମଂତ୍ରୀମଂଡଳର କାର୍ଯକାଳ ଥିଲା ପ୍ରାୟ ଏକବରଷ । ୧୯୭୪ରେ ଧର୍ମଗଡ଼ରୁ ୧୯୭୭ ଓ ୧୯୮୦ରେ ଭବାନୀପାଟଣାରୁ ସେ ବିଧାନ ସଭାକୁ ଆସିଲେ । ମଂତ୍ରୀ ହେଲେ । ଲଗାତର ଭାବରେ କ୍ଷମତାରେ ଥାଇ ମଧ୍ୟ ନିର୍ବାଚନ ଜିତିବା କମ୍ ଭାଗ୍ୟବାନ ଲୋକଂକୁ ମିଳିଥାଏ । ନିର୍ମାଣ ବିଭାଗରେ ବହୁ ପ୍ରତିଷ୍ଠିତ ନେତା ନିଜର ସୁନାମ ହରାଇ ଅଛଂତି । ଅଧିକାଂଶ ମଂତ୍ରୀଂକର କବର ଏହି ବିଭାଗରେ ଦୁର୍ନୀତିରେ ଖୋଳାଯାଇଛି । ମାତ୍ର ଦୟାନିଧି ଆମ ରାଜ୍ୟରେ ଏହାର ବୋଧହୁଏ ଏକମାତ୍ର ବ୍ୟତିକ୍ରମ । ଶେଷ ପର୍ଯଂତ ସେ ନିର୍ମାଣ ବିଭାଗ (ଗ୍ରାମ୍ୟ କୋଠାବାଡ଼ି ରାସ୍ତା ମିଶାଇ)ର ଗୁରୁ ଦାୟିତ୍ୱ ବହନ କରିଥିଲେ ।

ପଶ୍ଚିମ ଓଡ଼ିଶାକୁ ଯାତ୍ରା କରିବାକୁ ରାଜଧାନୀରୁ ଟ୍ରେନ୍‌ରେ ବା ବସ୍‌ରେ ମେରାମଂଡଳି ଦେଇ ସଂବଲପୁର ଓ ସେଠାରୁ ଅନ୍ୟ ଜିଲ୍ଲାକୁ ଯିବାକୁ ହେଉଥିଲା । ନିଜର ସାଧାରଣ ଜ୍ଞାନ ପ୍ରୟୋଗ କରି ଇଂଜିନିଅରମାନଂକୁ କାମରେ ଲଗାଇ ସେମାନଂକର ବୃତ୍ତିଗତ ଜ୍ଞାନ କୌଶଳର ସୁଯୋଗ ନେଇ ସେ ଭୁବନେଶ୍ୱର-ବଲାଂଗିର ରାସ୍ତାର ନିର୍ମାଣ ଶେଷ କରାଇଲେ । ଏହି ରାସ୍ତା ନିର୍ମାଣ ନୟାଗଡ଼ ଦଶପଲ୍ଲା, ବଉଦ, ସୋନପୁର ଓ ବଲାଂଗିରକୁ ରାଜଧାନୀ ସହିତ ସଂଯୋଗ କଲା । ଲୋକମାନଂକର ଯାତ୍ରା ସମୟ ଓ ବ୍ୟୟ ଏହା ଫଳରେ ବହୁତ ବଂଚିଗଲା ।

କାଳକ୍ରମେ ଆଂଚଳିକ ଦୂରତା ମଧ୍ୟ ଚାଲିଗଲା । ବର୍ତ୍ତମାନ ଖଡ଼ିଆଳ, ଜୁନାଗଡ଼, କଂଟାବାଂଝି, ଟିଟିଲାଗଡ଼ ଭବାନିପାଟଣା ଆଦି ଦୂରାଂତ ସ୍ଥାନକୁ ରାଜଧାନୀରୁ ଅତି ସହଜରେ ପହଂଚି ହେଉଛି । ନିଜର ପୁରୁଣା ନିର୍ବାଚନ ମଂଡଳୀ ଜୁନାଗଡ଼ କୋକସରାକୁ ଆଂପିନି ଘାଟି ଦେଇ ନିର୍ମିତ ଜାତୀୟ ରାଜପଥ କୋରାପୁଟ ଜିଲ୍ଲା ଓ ବିଶାଖାପାଟଣା, ବସ୍ତର, ଜଗଦଲପୁର ସହିତ ସଂଯୋଗ କରୁଛି । ଜଣେ ସ୍ୱଳ୍ପ ଶିକ୍ଷିତ ସାମାନ୍ୟ କର୍ମୀ ଥାଇ ନିଜର ନିରଳସ ସେବା ଓ ସାଧୁତା ଦ୍ୱାରା ସମୟ ମୁତାବକ ଏହି କାର୍ଯକରାଇ ପାରିବା କମ୍ ଦକ୍ଷତାର କାର୍ଯ ନୁହେଁ । ନିଜର ସାମାଜିକ କୌଳିକ ଚାଲିଚଳଣ ଓ ଲାଳନ ପାଳନ, ଉନ୍ନତ ଜ୍ଞାନାଲୋକ ଓ ଆଦର୍ଶରୁ ବଂଚିତ ଥିବାରୁ ତାଂକ ଚରିତ୍ରରେ ଅସହିଷ୍ଣୁତା ଓ ବଡ଼ପଣିଆ ତାଂକୁ ଅନ୍ୟମାନଂକ ଚକ୍ଷୁରେ କ୍ଷୁଣ୍ଣ କରୁଥିଲା । ମାତ୍ର ତାଂକର ସାଧୁତା ଓ ଜନସେବା ବିଚାରରେ ତାଂକ ସମାଲୋଚକମାନଂକ ଚକ୍ଷୁରେ ଏହା ଗୌଣ ଥିଲା ।

ନିଜେ ଭବାନୀପାଟଣାରେ ନିଜ ସଂଚିତ ଅର୍ଥରେ ଏକ ହିନ୍ଦୁ ମଂଦିର ପ୍ରତିଷ୍ଠା କରି ତାହାର ସେବା ପୂଜାର ବ୍ୟବସ୍ଥା କରିଥିଲେ । ସବୁ ଜାତି ଧର୍ମ ବର୍ଣ୍ଣର ମଣିଷଂକ ପାଇଁ ଏହାର ଦ୍ୱାର ଉନ୍ମୁକ୍ତ । ଅନେକ ଦରିଦ୍ର ଛାତ୍ରଂକୁ ସେ ପାଠପଢ଼ାରେ ସାହାଯ୍ୟ କରି ସେମାନଂକୁ ଋଣୀ ଛାଡିଯାଇଛଂତି ।





## ମାଟିର ମଣିଷ

# ଭୁବନେଶ୍ୱର ବେହେରା

ସଂସାରରେ ଏପରି ଅନେକ ଲୋକ ଜନ୍ମଗ୍ରହଣ କରନ୍ତି ଯେଉଁମାନଙ୍କର ପ୍ରତିଭା ଗୋଟିଏ ଦିଗରେ ସୀମିତ ନ ଥାଏ। ବିଖ୍ୟାତ ଇଂଜିନିୟର, ସାହିତ୍ୟର ବିଭିନ୍ନ ବିଭାଗରେ ହାତ ଦେଇ ସଫଳ, ଦକ୍ଷ ପ୍ରଶାସକ ଓ ବିଶ୍ୱବିଦ୍ୟାଳୟ କୁଳପତି ଭାବରେ ଖ୍ୟାତି ଅର୍ଜନ କରିଥିବା ଡକ୍ଟର ଭୁବନେଶ୍ୱର ବେହେରା ଏହିପରି ଜଣେ ଉତ୍କଳର କୃତୀ ସଂତାନ। ୧୯୧୬ରେ କଳାହାଂଡି ରାଜ୍ୟର କାଶୀବାହାଲ ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ। ସେମାନେ ଯଜୁର୍ବେଦୀ ବ୍ରାହ୍ମଣ ଓ ରାଜାଂକ ଉପାଧି ପାଇବା ପର୍ଯଂନ୍ତ ସେମାନଂକ ସଂଜ୍ଞା ହୋତୃଶର୍ମା ଥିଲା। ତାଂକର ପିତା ଲକ୍ଷ୍ମଣ ପ୍ରସାଦ ଜଣେ ମଧ୍ୟବିତ୍ତ ବ୍ରାହ୍ମଣ ଗୃହସ୍ଥ ଓ ଧର୍ମଶାସ୍ତ୍ରର ପ୍ରବାଚକ ଥିଲେ। ଭୁବନେଶ୍ୱରଂକର ଜେଜେବାପା ପୁରୋହିତ ଭାବରେ ସୁନାମ ଅର୍ଜନ କରିଥିଲେ। ସରଳ, ସଚ୍ଚୋଟ ଓ ଦେଶପ୍ରେମୀ ଭାବରେ ଖ୍ୟାତି ଅର୍ଜନ କରିଥିବା ଲକ୍ଷ୍ମଣ ପ୍ରସାଦଂକର ପ୍ରଭାବ ନିଜ ସଂତାନ ଉପରେ ପଡ଼ିଥିଲା। ଭୁବନେଶ୍ୱର ପିଲାଦିନୁ ରାମାୟଣ ମହାଭାରତ ପଢ଼ିବାକୁ ଭଲ ପାଉଥିଲେ। ବ୍ରାହ୍ମଣ ପରିବାରର ପିଲା ଭାବରେ

ଗାଁ ଚାହାଳିରେ ତାଂକର ପାଠପଢ଼ା ଆରମ୍ଭ ହେଲା। ଘୋର ଜଂଗଲ ଓ ପାହାଡ଼ ଘେରା ଅଂଚଳରେ ବିଦ୍ୟାଳୟର ଅଭାବ ଥିଲା। ୧୯୨୭ରେ ଭୁବନେଶ୍ୱର ଭବାନୀପାଟଣା ଗଲେ ଓ ହାଇସ୍କୁଲର ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲେ। ଏକାଦଶ ଶ୍ରେଣୀ ପର୍ଯ୍ୟଂତ ସେଇଠାରେ ପଢି ସେ ମାଟ୍ରିକ ପାସ୍ କଲେ। ହାଇସ୍କୁଲରେ ପଢ଼ିବା ସମୟରେ ଦେଶବ୍ୟାପୀ ଜାତୀୟ ଆଂଦୋଳନର ପ୍ରଭାବ ତାଂକଠାରେ ଦେଖାଯାଇଥିଲା। ତାଂକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ବାସୁଦେବ ମହାଂତି ଓ ଅନ୍ୟଜଣେ ଶିକ୍ଷକ ଜୟକୃଷ୍ଣ ମହାପାତ୍ର ଗଡ଼ଜାତ ବାହାରର ଲୋକଥିଲେ। ଗାଂଧିଜୀଂକ ଅସହଯୋଗ ଆଂଦୋଳନ, ଲବଣ ସତ୍ୟାଗ୍ରହ ଓ ଅହିଂସା ରେ ବିଶ୍ୱାସ ଏ ସବୁ ଭୁବନେଶ୍ୱର ସେମାନଂକଠାରୁ ଶୁଣିବାକୁ ପାଇଥିଲେ। ୧୯୩୫ରେ ସେ ରେଭେନ୍ସା କଲେଜରେ ଆଇ.ଏସସି.ରେ ନାମ ଲେଖାଇଲେ ଓ ଚାରିବର୍ଷ ପରେ ସେଠାରୁ ସେ ପଦାର୍ଥ ବିଜ୍ଞାନରେ ଅନର୍ସ ନେଇ ବି.ଏସ୍.ସି. ପାସ କଲେ। ପଦାର୍ଥ ବିଜ୍ଞାନରେ ଉଚ୍ଚତର ଶିକ୍ଷା ଓ ଗବେଷଣା ନିମିତ୍ତ ସେ ଆଗ୍ରହୀ ଥିଲେ ମଧ୍ୟ କଳାହାଣ୍ଡିର ରାଜା ପି.କେ. ଦେଓ ଏହି ମେଧାବୀ ଛାତ୍ରଂକୁ ନିଜ ରାଜ୍ୟର ଇଂଜିନିୟର ଭାବେ ନିଯୁକ୍ତ କରିବାକୁ ଲକ୍ଷ୍ୟ ରଖିଥିଲେ। ସେ ତାଂକୁ ବୃତ୍ତି ଦେଇ ପାଟଣାରେ ଇଂଜିନିୟରିଂ ପଢ଼ିବା ପାଇଁ ପଠାଇଲେ। ଓଡ଼ିଶାରେ ଇଂଜିନିୟରିଂ କଲେଜ ଆଦୌ ନଥାଏ। ପାଟଣାରେ ଇଂଜିନିୟରିଂ କଲେଜରେ ରାଜ୍ୟ ଛାତ୍ର ବୃତ୍ତି ପାଇଁ ପଢ଼ିବା ସମୟରେ ଦେଶରେ ଭାରତଛାଡ଼ ଆଂଦୋଳନ ହେଲା। ଛାତ୍ରସଂସଦର ସଭାପତି ଥିବା ହେତୁ ଭୁବନେଶ୍ୱର ଛାତ୍ରନେତା ଓ ସରକାର ବିରୋଧୀ ଭାବରେ ଚିତ୍ରିତ ହୋଇଗଲେ। ମାତ୍ର ଏହା ତାଂକ କୃତିତ୍ୱ ଓ ବ୍ୟକ୍ତିତ୍ୱକୁ ହ୍ରାସ କରିପାରି ନଥିଲା। ୧୯୪୩ରେ ବିଶ୍ୱବିଦ୍ୟଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ସେ ଇଂଜିନିୟରିଂ ପାସ୍ କଲେ। କିଛିଦିନ ପାଇଁ ସେ ଓଡ଼ିଶା ଓ ମୟୂରଭଞ୍ଜ ଷ୍ଟେଟରେ ଛାତ୍ରଶିକ୍ଷା ନିବାସ ସର୍ଭେରେ କାମ କରି ୧୯୪୫ରେ କଳାହାଣ୍ଡି ରାଜ୍ୟ ଇଂଜିନିୟର ହେଲେ। ସମ୍ବଲପୁରର ଜଣେ ବିଶିଷ୍ଟ ଶିକ୍ଷାପ୍ରେମୀ ଭାରତଚଂଦ୍ର ନାୟକ ତାଂକ ପ୍ରତିଭାର ପରିଚୟ ଆଗରୁ ପାଇଥିଲେ। ଭାରତ ଚଂଦ୍ର ମଧ୍ୟ ଜଣେ ସଂସ୍କାରବାଦୀ ଓ ନାରୀଶିକ୍ଷା ପ୍ରେମୀ ଉଦାର ପ୍ରଶାସକ ଥିଲେ। ଭୁବନେଶ୍ୱର ତାଂକର କନ୍ୟା ଉମାଦେବୀଂକୁ ବିବାହ କରିଥିଲେ।

ଉମାଦେବୀ ସଂଗୀତ ଓ ସାହିତ୍ୟରେ କୃତିତ୍ୱ ଅର୍ଜନ କରିଥିଲେ ଓ ପରେ ଓଡ଼ିଶା ସରକାରୀ କଲେଜରେ ଅଧ୍ୟାପିକା ହେଲେ। ସ୍ୱାମୀ [illegible] ପରେ [illegible] ଛାତ୍ରମାନଂକୁ ଉଚ୍ଚଶିକ୍ଷା ପାଇଁ [illegible] କରାଗଲା। ୧୯୪୬ରେ [illegible] ଭୁବନେଶ୍ୱରଙ୍କୁ [illegible] ଆମେରିକା ଗଲେ। ସେଠାରେ [illegible] ବିଶ୍ୱବିଦ୍ୟାଳୟର ସିଭିଲ ଇଂଜିନିୟରିଂରେ [illegible]

ଭାଲି ବଂଧ ଯୋଜନାର ନଦୀବଂଧ ନିର୍ମାଣ ସଂପର୍କରେ ସ୍ୱତଂତ୍ର ତାଲିମ ଘେନି ସେ ଦେଶକୁ ଫେରିଲେ। ଚୁକ୍ତି ଅନୁସାରେ ତାଂକର କଳାହାଂଡି ରାଜ୍ୟରେ ଚାକିରି କରିବାର କଥା। ସେହି ଅନୁସାରେ ସେ ସେଠାରେ ଯୋଗଦେଲେ। ମାତ୍ର ୧୯୪୮ ଜାନୁଆରିରେ ଗଡ଼ଜାତଗୁଡ଼ିକର ଓଡ଼ିଶାରେ ମିଶ୍ରଣ ହେବା ଫଳରେ ସେ ଏହି ଦାୟିତ୍ୱରୁ ଅବ୍ୟାହତ ପାଇଲେ। ତା ପରେ ହୀରାକୁଦ ବଂଧ ନିର୍ମାଣ ତାଂକର କର୍ମକ୍ଷେତ୍ର ହେଲା। ଦୀର୍ଘ ଆଠବର୍ଷ ଧରି ସେଠାରେ ସେ କାର୍ଯ୍ୟ କଲେ। ସେଠାରେ ଟେନିସ୍ ଭାଲି ଅଥରିଟ୍ ଆମେରିକାରେ ବିଶେଷ ତାଲିମ୍ ପାଇଥିବା ହେତୁ ତାଂକୁ ନିଜର କୃତିତ୍ୱ ଦେଖାଇବାକୁ ବିଶେଷ ସୁଯୋଗ ମିଳିଲା। ହୀରାକୁଦ ବଂଧ ନିର୍ମାଣ ସମୟରେ କଠିନଶ୍ରମ, କର୍ମତତ୍ପରତା ଓ ବିଭାଗୀୟ ନିର୍ମାଣ କୌଶଳ ଦେଖାଇବାରେ ସେ ସମସ୍ତଂକର ଆଦର୍ଶ ହୋଇଥିଲେ।

୧୯୫୬ରେ ଓଡ଼ିଶାରେ ପ୍ରଥମ ଇଂଜିନିୟରିଂ କଲେଜ ସ୍ଥାପିତ ହେଲା। ଭୁବନେଶ୍ୱର ନିଜର ଉଚ୍ଚ ଏମ୍‌ସ ଡିଗ୍ରି ଥିବାରୁ ଅଧ୍ୟାପକ ହେବାକୁ ଦରଖାସ୍ତ କଲେ। ହୀରାକୁଦ ବଂଧର ଚିଫ୍ ଇଂଜିନିୟର ଥିଲେ ପ୍ରଖ୍ୟାତ ଇଂଜିନିୟର ଥିରୁମଲ୍ଲ ଆୟଂଗାର। ବଂଧ ବାନ୍ଧ ନିର୍ମାଣରେ ବିଶେଷ ତାଲିମ ହାସଲ କରିଥିବା ଭୁବନେଶ୍ୱରଂକୁ ହୀରାକୁଦ କାମ ସରିବା ପର୍ଯ୍ୟଂତ ରଖିବାକୁ ସେ ସବୁପ୍ରକାର ଉଦ୍ୟମ କରୁଥିଲେ। ତାଂକ ଦରଖାସ୍ତ ସୁପାରିସ କଲେନାହିଁ। ମାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପରିଜା ଇଂଜିନିୟରିଂ କଲେଜରେ ତାଂକ ପ୍ରତିଭାର ବିକାଶ ନିମିତ୍ତ ସଂପୂର୍ଣ୍ଣ ସୁଯୋଗ ସୃଷ୍ଟି କରିବାକୁ ଓ ଭବିଷ୍ୟତ ପିଢ଼ିର ଇଂଜିନିୟରମାନଂକୁ ପ୍ରେରଣା ଦେବାକୁ ସେ ଦରଖାସ୍ତର ଆଗୁଆ ନକଲ ଉପରେ ତାଂକୁ ସ୍ପେଶାଲ ଅଫିସର ଭାବରେ ନିଯୁକ୍ତି ଦେଲେ। କଲେଜ ଆରଂଭର ସମସ୍ତ ପ୍ରାଥମିକ ଦାୟିତ୍ୱ ତାଂକ ଉପରେ ପଡ଼ିଲା। ତାହା ସେ ସୁଚାରୁ ରୂପେ ତୁଲାଇଲେ। ପରେ ସେ ସିଭିଲ୍ ଇଂଜିନିୟରିଂ ବିଭାଗର ଅଧ୍ୟାପକ ଓ ମୁଖ୍ୟ ହେଲେ। ୧୯୬୨ରେ ସେ ରାଉରକେଲା ଆଂଚଳିକ ଇଂଜିନିଅରିଂ କଲେଜ ଖୋଲାଯିବାରୁ ସେଠାକୁ ଗଲେ। ଭୁବନେଶ୍ୱର ପାଟଣାରେ ପଢୁଥିବା ବେଳେ ସେଠାରେ ଜଣେ ଅଧ୍ୟାପକ ଥିଲେ ଓ ରାଉରକେଲା ଆଂଚଳିକ ଇଂଜିନିୟରିଂ କଲେଜର ସେ ଅଧ୍ୟକ୍ଷ ହେଲେ। ଶିକ୍ଷା କ୍ଷେତ୍ରରେ କୃତିତ୍ୱ ଦେଖାଇବାକୁ ସେ ଭୁବନେଶ୍ୱରଂକୁ ଉତ୍ସାହିତ କରୁଥିଲେ ଓ ଜଣେ ଛାତ୍ରବତ୍ସଳ, ଲୋକପ୍ରିୟ, କୁଶଳୀ, କର୍ମଠ ଇଂଜିନିୟରିଂ ଅଧ୍ୟାପକ ଭାବରେ ଭୁବନେଶ୍ୱର ସମଗ୍ର ରାଜ୍ୟରେ ପ୍ରଶଂସିତ ହେଲେ। ଇଂଜିନିୟରିଂ କଲେଜର ଅଧ୍ୟକ୍ଷ ପଦରୁ ଅବ୍ୟାହିତ ନେଇ ସେ ନୂତନ ସଂବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ତୁଲାଇ ୧୯୭୧ରୁ ୧୯୭୬ ପର୍ଯ୍ୟଂତ କାର୍ଯ୍ୟ କଲେ। ନିଜର ବୈଷୟିକ କୃତି ବ୍ୟତୀତ ସେ ସାହିତ୍ୟରେ ମଧ୍ୟ ଆଗ୍ରହୀ ଥିଲେ। ହାଇସ୍କୁଲରେ

ପଢ଼ିବା ସମୟରେ ଡକ୍ଟର ମାୟାଧର ମାନସିଂହ, ରାଜକିଶୋର ରାୟଂକ ପରି ସାହିତ୍ୟ ରଥୀମାନେ ତାଂକର ଶିକ୍ଷକ ଥିଲେ ଓ ସେମାନଂକଠାରୁ ପ୍ରେରଣା ପାଇ ସାମୟିକ ପତ୍ରପତ୍ରିକାରେ ସେ ନିଜର ଲେଖାମାନ ପ୍ରକାଶ କରୁଥିଲେ । ବିଶ୍ୱବିଦ୍ୟାଳୟରେ ତାଂକର ସାହିତ୍ୟିକ ପ୍ରତିଭା ବିକଶିତ ହେବାର ସୁଯୋଗ ମିଳିଲା । ବିଶ୍ୱବିଦ୍ୟାଳୟ ତରଫରୁ 'ସପ୍ତର୍ଷି' ନାମକ ଏକ ଉଚ୍ଚକୋଟିର ସାହିତ୍ୟ ପତ୍ରିକା ତାଂକ ଉଦ୍ୟମରେ ପ୍ରକାଶିତ ହେଲା । କୁଳପତି ଭାବରେ ମୁଖ୍ୟ ସଂପାଦକ ଥାଇ ସଂପାଦକୀୟ ଲେଖିବାର ଦାୟିତ୍ୱ ସେ ନେଲେ । ଏହି ପ୍ରବଂଧଗୁଡ଼ିକ ଲୋକପ୍ରିୟ ହେଲା ଓ ରମ୍ୟ ରଚନା ସୃଷ୍ଟି କରିବାରେ ସେ ସଫଳ ହେଲେ । ଓଡ଼ିଆ ସାହିତ୍ୟରେ ଗଳ୍ପ, ପ୍ରବଂଧ, ରମ୍ୟରଚନା ଓ ଭ୍ରମଣ କାହାଣୀ ରଚନା କରି ସେ ନିଜ ସାହିତ୍ୟ କୃତିର ପରିଚୟ ଦେଲେ । ତାଂକ ଲିଖିତ ପୁସ୍ତକମାନ ହେଲା 'ଶୁଣ ପରୀକ୍ଷ' 'କଥା ଓ ଲଥା', 'ସହାବସ୍ଥାନ', 'ଫରଫର ଉଡ଼େ' ପଶ୍ଚିମ ଆଫ୍ରିକାରେ ଢିଂକି, ଆତ୍ମଜୀବନୀ 'ଗାଁର ଡାକ' । ତାଂକ ପୁସ୍ତକ 'ଶୁଣ ପରୀକ୍ଷ' ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ମାନ ପାଇଅଛି । ଅତୀତର ବହୁ ସ୍ମୃତିକୁ ନେଇ ତାଂକ ରଚନା ଋଦ୍ଧିମଂତ । ତାଂକ ରଚନା ମଧ୍ୟରୁ କେତେକ ପ୍ରବଂଧ ଓଡ଼ିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଂକରେ କଲେଜ ଶିକ୍ଷାର ବିଭିନ୍ନ ସ୍ତରରେ ପାଠ୍ୟ ରୂପେ ଗୃହୀତ । ଓଡ଼ିଶାର ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ ଦ୍ୱାରା ମଧ୍ୟ ସେ ସମ୍ମାନିତ ହୋଇଛଂତି । ତାଂକର ପ୍ରବଂଧ 'ନାଚର ଗୋବର୍ଧନ' ଓଡ଼ିଆ ସାହିତ୍ୟର ବିଂଶ ଶତାବ୍ଦୀର ଶ୍ରେଷ୍ଠ ପ୍ରବଂଧ ସଂକଳନରେ ସ୍ଥାନ ପାଇଅଛି । ଆତ୍ମଜୀବନୀ 'ଗାଁର ଡାକ' ମଧ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ । ନିଜର ବୈଷୟିକ ଜ୍ଞାନର କୃତି ହୀରାକୁଦ ବଂଧ, ଆଂଚଳିକ ରାଉରକେଲା କଲେଜ, ବୁର୍ଲା ଇଂଜିନିୟରିଂ କଲେଜରେ ସେ ଦେଖାଇ ପାରିଛଂତି । ଗବେଷଣା ଲବ୍ଧ ତାଂକର ଜ୍ଞାନ ଅନେକ ବୈଷୟିକ ପ୍ରବଂଧରେ ପ୍ରତିଫଳିତ । ଭାରତ ସରକାରଂକ ପକ୍ଷରୁ ଉଚ୍ଚକୋଟୀର ନିବଂଧ ପାଇଁ ତାଂକୁ ସ୍ୱର୍ଣପଦକ ଦିଆଯାଇଛି । ୧୯୭୯ରେ ସଂବଲପୁର ବିଶ୍ୱବିଦ୍ୟାଳୟ ତାଂକୁ ଦ୍ୱାଦଶ ସମାବର୍ତନ ଉତ୍ସାହରେ ମାର୍ଚ ସତର ତାରିଖରେ ସମ୍ମାନସୂଚକ ଡି.ଏସ୍‌ସି. ଉପାଧିରେ ଭୂଷିତ କରିଥିଲେ । କୁଳପତି ଦାୟିତ୍ୱ ନିର୍ବାହ କରିସାରିବାପରେ ୧୯୭୭ ରେ ଭାରତ ସରକାର ତାଂକୁ ବୈଷୟିକ ଶିକ୍ଷା ବିଷୟରେ ପରାମର୍ଶ ଦେବାକୁ ଆଫ୍ରିକାର ଲିବିୟା ଗଣରାଜ୍ୟକୁ ପଠାଇଥିଲେ । ୧୯୭୮ରେ ସେଠାରୁ ଫେରି ସେ କେଂନ୍ଦ୍ରୀୟ ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ ଭାବରେ ନିଯୁକ୍ତି ପାଇଥିଲେ । ଅବସର ଗ୍ରହଣ ପରେ ସେ ନିଜଗ୍ରାମ ମୁଂଡରାଗୁଡ଼ା ଫେରିଯାଇ ସେଠାରେ ଅବସର ଯାପନ କରୁଥିଲେ ଓ ଏହି ସମୟରେ ସେଠାରେ ସେ ନିଜର ଆତ୍ମଜୀବନୀ ରଚନା ସଂପୂର୍ଣ କରିବା ପରେ ୨୦୦୧ ଏପ୍ରିଲ୍ ମାସରେ ଇହଲୀଳା ସାଂଗ କଲେ । ଭୁବନେଶ୍ୱରଂକର ଜୀବନ ମୂଲ୍ୟବୋଧଯୁକ୍ତ ଏକ ସଫଳ ଜୀବନର ପ୍ରତିଫଳନ ।



# ପଂଡିତ
# ଗଣେଶ୍ୱର ବିଦ୍ୟାବାଚସ୍ପତି

କଳାହାଂଡି ଜିଲ୍ଲାରେ ସଂସ୍କୃତ ଓ ଓଡ଼ିଆ ଭାଷା ଶିକ୍ଷା ଓ ପ୍ରସାର ଦିଗରେ ପଂଡିତ ଗଣେଶ୍ୱର ରଥଂକର ଭୂମିକା ସର୍ବଦା ସ୍ମରଣୀୟ। ୧୮୯୭ ଡିସେଂବର ୧୫ ତାରିଖରେ ସେ ଗଂଜାମ ଜିଲ୍ଲା ଖଲ୍ଲିକୋଟ ଜମିଦାରିର ଶ୍ରୀକୃଷ୍ଣ ଶରଣପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ପଂଡିତ ଲିଂଗରାଜ ରଥ ଓ ହୀରାଦେବୀଂକର ସେ ଏକମାତ୍ର ପୁତ୍ର ଥିଲେ। ଲିଂଗରାଜ ଖଲିକୋଟର ଜଣେ ଜଣାଶୁଣା ପଂଡିତ ଥିଲେ। ସାହିତ୍ୟ ବ୍ୟାକରଣ କର୍ମକାଂଡରେ ତାଂକର ପାଂଡିତ୍ୟ ସର୍ବଜନ ସ୍ୱୀକୃତ ଥିଲା। ଖଲିକୋଟର ଗୁଣଗ୍ରାହୀ ରାଜା ରାମଚଂଦ୍ର ମର୍ଦରାଜ ଦେବ ତାଂକୁ ପ୍ରହରାଜ ଉପାଧି ଦେଇ ସମ୍ମାନିତ କରି ଭରଣ ପୋଷଣ ନିମିତ୍ତ କିଛି ନିଷ୍କର ଭୂସଂପତ୍ତି ଦାନକରିଥିଲେ। ଗଣେଶ୍ୱର ପିତାଂକ ପାଖରେ ବାଲ୍ୟଶିକ୍ଷା ଆରଂଭ କଲେ। ପ୍ରାଥମିକ ଶିକ୍ଷା ପରେ ସେ ଗଂଜାମର ବିଖ୍ୟାତ ପଂଡିତ ଲୋକନାଥ ରଥ ତର୍କଭୂଷଣଂକଠାରୁ ତାଂକର ଟୋଲରେ ସଂସ୍କୃତ ଶିକ୍ଷା ଆରଂଭ କଲେ। ଦଶବର୍ଷ ଅଧ୍ୟୟନ କରି ସେଠାରୁ ସେ ସାହିତ୍ୟ ଓ ବ୍ୟାକରଣରେ ଉପାଧି ଅର୍ଜନ କଲେ। ଉଚ୍ଚତର ଶିକ୍ଷାନିମିତ୍ତ ସେ ସଂସ୍କୃତ ଭାଷା ଓ ସାହିତ୍ୟ ଅଧ୍ୟୟନରେ ଓଡ଼ିଶାର ଶ୍ରେଷ୍ଠ କେଂଦ୍ରପୀଠ ପୁରୀକୁ ଆସିଲେ। ଶଂକରାନଂଦ ମଠରେ କର୍ମକାଂଡ ବିଦ୍ୟାଳୟରୁ ସେ କର୍ମକାଂଡ ପ୍ରଥମ ଶ୍ରେଣୀରେ ପାସ୍ କଲେ। ପରେ ପଂଡିତ ଦାମୋଦର ମହାପାତ୍ରଂକ ଟୋଲରେ ସାହିତ୍ୟର ମଧ୍ୟମା ମଧ୍ୟ ପାସ୍ କଲେ।

ଓଡ଼ିଶାରୁ ବିଖ୍ୟାତ ପଂଡିତ ମଧୁସୂଦନ ତର୍କ ବାଚସ୍ପତି ସେ ସମୟରେ ଶ୍ରୀମଂଦିରର ଉତ୍ତର ପାର୍ଶ୍ୱ ମଠର ଗୋବିଂଦ ରାମନୁଜ ଟୋଲର ପ୍ରଧାନ ଆଚାର୍ଯ ଥାଆଂତି। ଗଣେଶ୍ୱର ତାଂକ ପାଖରେ ମଧ୍ୟ ଶିକ୍ଷାଲାଭ କଲେ। ସାହିତ୍ୟ, ବ୍ୟାକରଣ, ସାଂଖ୍ୟ, ନ୍ୟାୟ, ବେଦାଂତ ଓ ମୀମାଂସା ଆଦି ବିଭିନ୍ନ ବିଭାଗର ସେ ସୁଦକ୍ଷ ଅଧ୍ୟାପକମାନଂକ ତତ୍ତ୍ୱାବଧାନରେ ଅଧ୍ୟୟନ କରି ୧୯୨୧ରେ ପ୍ରକ୍ରିୟା କୌମୁଦୀ ବ୍ୟାକରଣ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ନିଜ ବିଦବତ୍ତାର ପରିଚୟ ପ୍ରଦାନ କଲେ। ତା ପରବର୍ଷ ସେ ସାହିତ୍ୟରେ ଉପାଧ୍ୟାୟ ପାସକରି ନିଜର ଆନୁଷ୍ଠାନିକ ଶିକ୍ଷା ସମାପ୍ତ କଲେ। ୧୯୧୯ରେ ପିତୃବିୟୋଗ ହେତୁ ତାଂକୁ ପରିବାରର ଭରଣ ପୋଷଣ ଚିଂତାଗ୍ରାସ କଲା। ଅଧ୍ୟୟନ ସମାପ୍ତ ହେଲା। ଆଂଧ୍ରପ୍ରଦେଶର ବିଶାଖାପାଟଣାରେ ଆଂଧ୍ର ବିଶ୍ୱବିଦ୍ୟାଳୟ ଅବସ୍ଥିତ। ସେଠାରେ ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ ପଦ ପୂରଣ ହେବାର ଥିଲା। ବିଶ୍ୱବିଦ୍ୟାଳୟର ପ୍ରୋ – ଚାନ୍‌ସେଲର ଥିଲେ ଜୟପୁରର ମହାରାଜା କଳାପ୍ରପନ୍ନ ବିକ୍ରମଦେବ ବର୍ମା ଡି.ଲିଟ୍ ସାହିତ୍ୟ ସମ୍ରାଟ। ଓଡ଼ିଆ ସାହିତ୍ୟର ସେ ପୃଷ୍ଠପୋଷକ ଥାଇ ମାଂଦ୍ରାଜ ବିଧାନସଭାର ସଭ୍ୟ ପରବର୍ତୀ କାଳରେ ଓଡ଼ିଶାର ମୁଖ୍ୟମଂତ୍ରୀ ବିଶ୍ୱନାଥ ଦାସଂକୁ ଜଣେ ଅଧ୍ୟାପକ ସୁପାରିସ୍ କରିବାକୁ ପତ୍ର ଦେଲେ ଓ ସେ ପଂଡିତ ଗଣେଶ୍ୱରଂକୁ ନିର୍ବାଚିତ କରି ତାଂକୁ ବିଶାଖା ପାଟଣା ପଠାଇବାର ବ୍ୟବସ୍ଥା କଲେ। ମାତ୍ର ସେଠାକୁ ଯିବାର ସୁବିଧା ତାଂକର ହେଲା ନାହିଁ। ସେ ବିଜୟନଗରରୁ ଫେରିଆସି କଳାହାଂଡି ରାଜ୍ୟ ରାଜଧାନୀରେ ରାଜା ବ୍ରଜମୋହନ ଦେବଂକୁ ସାକ୍ଷାତ କଲେ। ନିଜର ଯୋଗ୍ୟତା ଜଣାଇ ବୃତ୍ତିଗତ ବ୍ୟବସ୍ଥା ନିମିତ୍ତ ଅନୁରୋଧ କଲେ। ରାଜା ବ୍ରଜମୋହନ ଏକ ସଂସ୍କୃତ ଟୋଲ ଖୋଲିବାର ବ୍ୟବସ୍ଥା କଲେ ଓ ଗଣେଶ୍ୱର ଉକ୍ତ ସଂସ୍କୃତ ବିଦ୍ୟାଳୟର ପ୍ରଧାନ ଆଚାର୍ଯ ଭାବେ ନିଯୁକ୍ତି ପାଇଲେ। କିଛିଦିନ ସେଠାରେ କାର୍ଯ କଲାପରେ ସ୍ଥାନୀୟ ହାଇସ୍କୁଲର ସଂସ୍କୃତ ହେଡପଂଡିତ ପଦ ଖାଲି ପଡିଲା ଓ ସେଠାରେ ସେ ନିଯୁକ୍ତ ପାଇ ଅବଶିଷ୍ଟ କର୍ମମୟ ଜୀବନ ସେହିଠାରେ କଟାଇଲେ। ସଂସ୍କୃତ ପଂଡିତମାନେ ହାଇସ୍କୁଲରେ ପାରଂପରିକ ରୀତିରେ ଧାତୁରୂପ ଶବ୍ଦରୂପ, ଲିଂଗ, ବଚନ କାରକ, ବିଭକ୍ତି କିଂବା ପଂଚତଂତ୍ର ଆଦି ପାଠ୍ୟକ୍ରମ ସ୍ୱୀକୃତ ବିଦ୍ୟାଦାନ କରି ନିଜର ଦାୟିତ୍ୱ ନିର୍ବାହ କରୁଥିଲେ। ମାତ୍ର ଗଣେଶ୍ୱର ନିଜର ପ୍ରଜ୍ଞା ଓ ଅଧ୍ୟୟନକୁ ଏଥିରେ ସଂକୁଚିତ ନ ରଖି ରାଜସଭାର ପଂଡିତ ଓ ଆଗନ୍ତୁକ ବିଦ୍ୱାନମାନଂକ ସହିତ ଶାସ୍ତ୍ରାଳାପ ଓ ସାହିତ୍ୟ ଚର୍ଚା କରି ନିଜର ପ୍ରତିଷ୍ଠା ଅର୍ଜନ କଲେ। ତାଂକର ଗୋରା ତକତକ ଶରୀର, ଓସାରିଆ ଛାତି, ଲଂଡାମୁଂଡ, ଶାଣଦିଆ ଆଖି, ଚଉଡ଼ା କପାଳ ପିଠି, ହାତ, ପେଟ, ଛାତିରେ ଚଂଦନଛିଟା, କାଂଧରେ ନ ସରିଆ ଅଧା ମଇଳା ମୋଟାସୁତା ପଇତା, ଦରସଫା ଧଳା ଲୁଗା ଓ ଚଦର ଦେଖି ଯେ କେହି ଆଗଂତୁକ ତାଂକୁ ବିଦ୍ୟା ବୁଦ୍ଧିଦୀପ୍ତ ପଂଡିତ ଭାବରେ ଗ୍ରହଣ କରିବାକୁ କୁଂଠାବୋଧ କରୁ ନ ଥିଲେ। ଭବାନୀପାଟଣା ହାଇସ୍କୁଲ୍‌ରେ ଲୋକନାଥ ମହାପାତ୍ର, ରାଜକିଶୋର ରାୟ, ମାୟାଧର ମାନସିଂହ ଓ ଅନ୍ୟ ସାହିତ୍ୟିକ ବିଭିନ୍ନ ସମୟରେ ଶିକ୍ଷକ ଭାବରେ

ଯୋଗଦାନ କରିଥିଲେ। ସେମାନେ ତାଂକୁ କେବଳ କର୍ମକାଂଡ ଚର୍ଚାରେ ନିଜ ପ୍ରତିଭାକୁ ସୀମିତ ନ ରଖିବାକୁ ସୂଚାଇଥିଲେ। ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ କରାଇଲେ। ଫଳରେ ବଂଗଳାଶ୍ରୀ ରାଗରେ ସାତଗୋଟି ସର୍ଗରେ ଗଣେଶ୍ୱର, ପଦ୍ମାବତୀ ପରିଣୟ କାବ୍ୟ ଓଡ଼ିଆରେ ରଚନା କରି ୧୯୫୬ରେ ପ୍ରକାଶିତ କରାଇଲେ। ବିଷୟବସ୍ତୁ ଓ ବର୍ଣନା ଶୈଳୀ ଦୃଷ୍ଟିରୁ ରୀତି ଯୁଗର କାବ୍ୟାଦର୍ଶ ସହିତ ଏହାର ଘନିଷ୍ଟ ସଂପର୍କ ରହିଛି। ଗୋଟିଏ ମାତ୍ର ରାଗରେ ସମଗ୍ର କାବ୍ୟଟିର ରଚନା ପଛରେ ମହାକାବ୍ୟର ଆଦର୍ଶ ଓ ଆଧୁନିକ ବିଶିଷ୍ଟ ଓଡ଼ିଆ କବି ମାନଂକର ପ୍ରଭାବ ଏଥିରେ ଲକ୍ଷିତ ହୁଏ। ଅଧ୍ୟାପକ ଆର୍ତବଲ୍ଲଭ ଓ ଡକ୍ଟର କୁଂଜବିହାରୀ ତ୍ରିପାଠୀଂକ ପରି ବହୁ ବିଦ୍ୱାନ୍ ଏହି ଗ୍ରଂଥର ଉଚ୍ଚ ପ୍ରଶଂସା କରିଅଛଂତ। ଏହା ବ୍ୟତୀତ ସେ ସଂସ୍କୃତ ଭାଷାରେ ପୁରୁଷୋତ୍ତମ ଚରିତମ ନାମକ ଏକ ମହାକାବ୍ୟ ଓ ଲିଂଗରାଜାୟନମ୍ ନାମକ ଏକ ଖଂଡକାବ୍ୟ ମଧ୍ୟ ରଚନା କରିଥିଲେ। ୧୯୬୦ ପୂର୍ବରୁ ରଚିତ ଏହି ଦୁଇ କାବ୍ୟ ୧୯୭୦ ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ପ୍ରକାଶିତ ହୋଇଅଛି। ଓଡ଼ିଆ କାବ୍ୟ ପଦ୍ମାବତୀ ପରିଣୟ ଓ ସଂସ୍କୃତ ମହାକାବ୍ୟ ଶ୍ରୀ ପୁରୁଷୋତ୍ତମ ଚରିତମ ମଧ୍ୟରେ ବିଶେଷ କିଛି ବିଷୟଗତ ପ୍ରାର୍ଥକ୍ୟ ନାହିଁ। ଇତିହାସ ଓ କିଂବଦଂତିକୁ ଆଧାର କରି ଦୁଇ ଗ୍ରନ୍ଥର ସୃଷ୍ଟି । କାବ୍ୟରେ ବୀର ରସ ମୁଖ୍ୟସ୍ଥାନ ଲାଭ କରିଅଛି। ଲିଂଗରାଜାୟନମ କାବ୍ୟ ଶିବକ୍ଷେତ୍ର ଭୁବନେଶ୍ୱରର ବିଭିନ୍ନ ଲିଂଗ ସରୋବର ଓ ମଂଦିର ଆଦିର ବର୍ଣନା। କିଂବଦଂତୀ ପୁରାଣ ଇତିହାସ ଓ ଧର୍ମଶାସ୍ତ୍ରକୁ ପୃଷ୍ଠଭୂମି ଭାବରେ ଗ୍ରହଣ କରି ଶିବ ଉପାସନା ଶୈବଧର୍ମ ଓ ଶିବସ୍ୱରୂପ ଏହି କାବ୍ୟରେ ବର୍ଣ୍ଣନା କରାଯାଇଅଛି। କାବ୍ୟଟିକୁ ସେ ଜ୍ଞାନକାଂଡ ଓ ବିଜ୍ଞାନକାଂଡ ନାମରେ ଦୁଇଭାଗରେ ବିଭକ୍ତ କରିଅଛଂତି। ଆଉ ମଧ୍ୟ ନୀତିବାଦୀ ଦୃଷ୍ଟିକୋଣରୁ ମାତ୍ର ୧୬ ପୃଷ୍ଠାର ଏକ କ୍ଷୁଦ୍ର ପୁସ୍ତିକା କଲ୍ୟାଣୀ ମଧ୍ୟ ପଂଡିତ ଗଣେଶ୍ୱରଂକର ଆଦ୍ୟ ରଚନା। ନିଜର ପ୍ରଜ୍ଞା ଓ ଅଧ୍ୟବସାୟ ନିମିତ୍ତ ସେ ବହୁ କ୍ଷେତ୍ରରେ ସମ୍ମାନିତ ହୋଇଥିଲେ। କଳାହାଂଡି ମହାରାଜା ତାଂକୁ ୧୯୪୭ରେ ବାଚସ୍ପତି ଉପାଧିରେ ସମ୍ମାନିତ କରିଥିଲେ। ଅଯୋଧ୍ୟାର ବେଦାଂତ ସଭା ତାଂକୁ ବେଦାଂତ ଅଳଂକାର ଉପାଧି ମଧ୍ୟ ପ୍ରଦାନ କରିଥିଲେ। ରାଜ୍ୟସରକାର ତାଂକର ସାମଗ୍ରିକ କୃତି ପାଇ ୧୯୬୫ରେ ପୁରସ୍କୃତ କରିଥିଲେ। ପୁରୀର ସଦାଶିବ ସଂସ୍କୃତ ବିଦ୍ୟାପୀଠ, ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ମଧ୍ୟ ତାଂକ ପ୍ରତିଭାର ସ୍ୱୀକୃତି ପ୍ରଦାନ କରିଅଛଂତି। ସ୍ୱର୍ଗତ କଳାହାଂଡି ମହାରାଜା ପ୍ରତାପ କେଶରୀ ଦେଓ ସମେତ ବଲାଂଗିର ଓ କଳାହାଂଡିର ଜିଲ୍ଲାର ବହୁ ପ୍ରତିଷ୍ଠିତ ବ୍ୟକ୍ତି ପ୍ରଶାସକ ଅଧ୍ୟାପକ ଡାକ୍ତର ଇଂଜିନିୟର ତାଂକ ଛାତ୍ର ଭାବରେ ନିଜକୁ ଗର୍ବିତ ମନେକରିଥାଂତି। ପରିଣତ ବୟସରେ ତାଂକର ମୃତ୍ୟୁ ହୁଏ।





# ପ୍ରଥମ ଆଦିବାସୀ ସାଂସଦ
# ଗିରିଧାରୀ ଭୋଇ

ଓଡ଼ିଶା ସହିତ ଗଡ଼ଜାତମାନଂକର ମିଶ୍ରଣ ସମୟରେ ୧୯୪୮ରେ କଳାହାଂଡି – ବଲାଂଗିରକୁ ପ୍ରଥମେ ଗୋଟିଏ ଜିଲ୍ଲା ରୂପେ ରଖାଯାଇଥିଲା । ପରେ ୧୯୫୦ରେ କଳାହାଂଡି ଜିଲ୍ଲାର ଆସିଥିବା ନୂଆପଡ଼ା (ଖଡ଼ିଆଳ) ସବଡିଭିଜନ ସହିତ ମିଶାଇ କଳାହାଂଡି ଜିଲ୍ଲା ସୃଷ୍ଟି ହେଲା । ତେଣୁ ୧୯୫୨ ପ୍ରଥମ ସାଧାରଣ ନିର୍ବାଚନ ସମୟରେ ବଲାଂଗିର କଳାହାଂଡି ମିଶି ଗୋଟିଏ ଯୁଗ୍ମ ନିର୍ବାଚନ ମଂଡଳୀ ଥିଲା । ଏଥିରୁ ଗୋଟିଏ ସ୍ଥାନ ଆଦିବାସୀଂକ ପାଇଁ ସଂରକ୍ଷିତ ଥିଲା । ପାଟଣା ମହାରାଜା ସାଧାରଣ ସ୍ଥାନରୁ ଓ କଳାହାଂଡିର ଗିରିଧାରୀ ଭୋଇ କଳାହାଂଡିର ପ୍ରଥମ ଲୋକସଭାକୁ ଗଣତଂତ୍ର ଟିକେଟରେ ନିର୍ବାଚିତ ହୋଇଥିଲେ । ଗଣତଂତ୍ର ପରିଷଦର ପ୍ରାର୍ଥୀ ଥାଇ ସେ ନିଜ ଆଦିବାସୀ କଂଗ୍ରେସ ପ୍ରତିଦ୍ୱଂଦ୍ୱୀ ଯୋଗେଶ୍ୱର କୁଂଭାର ୮୮, ୬୮୯ ଭୋଟ ପାଇଥିବା ସ୍ଥଳରେ ୧,୯୮,୩୭୨ ଭୋଟ ପାଇ ଜିତିଥିଲେ । ଗିରିଧାରୀଂକ ଜନ୍ମ ରୁପ୍ରାରୋଡ ନିକଟ କୋକସରା ଥାନାର ଚିଆ ପଦର ଗ୍ରାମରେ । ବାପାଂକ ନାମ ଥିଲା ଝୁରା ଭୋଇ । ୧୯୨୫ରେ ସେ ରଂଭା ଦେବୀଂକୁ ବିବାହ କରିଥିଲେ ।

ତାଂକର ଶିକ୍ଷା ପ୍ରାଥମିକ ସ୍ତର ପର୍ଯ୍ୟଂତ ଥିଲେ ମଧ୍ୟ ସେ ଲୋକମାନଂକ ମଧ୍ୟରେ ଜଣେ ପରୋପକାରୀ ମଣିଷ ଭାବରେ ପରିଚିତ ଥିଲେ। ନିଜେ ଜଣେ କୃଷକ ଥିଲେ ମଧ୍ୟ ଆଦିବାସୀ ମାନଂକ ଭିତରୁ ସେ ଜଣେ ହୋଇଥିବାରୁ ଓ ସେମାନଂକର ଦାରିଦ୍ର୍ୟ ଅଭାବ ସହିତ ଘନିଷ୍ଠ ଭାବରେ ପରିଚିତ ଥିବାରୁ ସେ ସେମାନଂକର ସେବା କରିବାକୁ ଦରବାର ଅମଳରେ ମଧ୍ୟ ବାହାରି ପଡିଥିଲେ। କଳାହାଂଡିର ମହାରାଜା ଜଣେ ସାଧାରଣ ମଣିଷ ଭଳିଆ ଲୋକଂକ ସାଂଗରେ ମିଶୁଥିଲେ। ଗରିଧାରୀଂକର ତାଂକ ପାଖକୁ ପ୍ରବେଶ ସହଜ ଥିଲା। ତେଣୁ ଗଣତଂତ୍ର ପରିଷଦ ଜନ୍ମ ହେବାପରେ ଏହାର ଜଣେ ଅଗ୍ରଗାମୀ ନେତା ଥାଇ ମହାରାଜା ତାଂକୁ ଲୋକସଭା ପାଇଁ ପ୍ରାର୍ଥୀ ବାଛିଥିଲେ। ସେ ଲକ୍ଷାଧିକ ଭୋଟରେ ପ୍ରତିପକ୍ଷଂକୁ ପରାସ୍ତ କରିଥିଲେ। ସେ ଦିଲ୍ଲୀ ଦରବାରର ସବୁ ଖବର ଲୋକମାନଂକୁ ଜଣାଉଥିଲେ ଓ ଏଥିପାଇଁ ସେ ବଡ଼ ବଡ଼ ଗାଁମାନଂକରେ ଘୁମୁରା ନାଚ କରାଇ ଲୋକଂକୁ ଦେଶର୍ ସବୁକଥା ବୁଝାଉଥିଲେ।

ପୂରା ପାଂଚ ବରଷ ଏକ ବିରାଟ ନିର୍ବାଚନ ମଂଡଳୀର ପ୍ରତିନିଧି ଥାଇ ସେ ଲୋକମାନଂକର ସେବା କରିଥିଲେ। ତାଂକର ସରଳ ଜୀବନ ଯାପନ ପ୍ରଣାଳୀ ତାଂକୁ ସବୁ ଶ୍ରେଣୀର ଲୋକମାନଂକର ପ୍ରିୟ କରାଇ ପାରିଥିଲା।



ଯେତେବେଳେ ଜ୍ୟେଷ୍ଠ ଜାତି ହୋଇ ଦୁରାଚାର
କନିଷ୍ଠ ଉପରେ କରେ ନାନା ଅତ୍ୟାଚାର
ଧର୍ମାଧର୍ମ ନ ବିଚାରି ଦେଖାଏ ସ୍ୱବଳ
ସ୍ୱାର୍ଥପାଇଁ ନିଜେ ସୃଜେ ବିବିଧ କୌଶଳ
ଈଶ୍ୱର ନଗଣି ମଣେ ନିଜକୁ ଈଶ୍ୱର
ବିସ୍ମରେ ଜୀବନ ହିତ ସାଧନ ବିଶ୍ୱର
ସେତେବେଳେ ହରାଏ ତା ଜ୍ୟେଷ୍ଠତା ଗୌରବ
କନିଷ୍ଠର ଧର୍ମବଳେ ପାଏ ପରାଭବ
ଏହିରୂପେ ପୂର୍ବଦେବ ପୁଣ୍ୟଜନମାନେ
ଅପଧର୍ମେ ଘୃଣ୍ୟ ହେଲେ ରାକ୍ଷସାଭିଧାନେ

(ଅର୍ଘ୍ୟଥଳୀ) –ଗଂଗାଧର



# ବିକଳ୍ପ ରାଜନୀତିର ଚିଂତକ
# କିଶନ ପଟନାୟକ

୨୦୦୪ ମସିହା ସେପ୍ଟେଂବର ମାସ ସତେଇଶ ତାରିଖରେ ଭୁବନେଶ୍ବରରେ ମୃତ୍ୟୁବରଣ କରିଥିବା ୭୫ ବର୍ଷୀୟ ସଂବଲପୁରର ପୂର୍ବତନ ସାଂସଦ କିଶନ ପଟ୍ଟନାୟକ ଥିଲେ ଗାଂଧି-ଲୋହିଆ-ଜୟପ୍ରକାଶ ବିଚାରଧାରାର ସମାଜବାଦୀ ନେତା। କଳାହାଂଡି ଜିଲ୍ଲାର ଭବାନୀପାଟଣା ସହରରେ ୧୯୨୯ ଜୁନ୍ ୨୯ ତାରିଖରେ ତାଂକର ଜନ୍ମ। ତାଂକର ପିତା ଚିଂତାମଣି ଜଣେ ରାଜକର୍ମଚାରୀ ଥିଲେ। ମା ଥିଲେ ସତ୍ୟବତୀ ଦେବୀ। ଜଣେ ଭାଇ ଗିରିଜାଶଂକର ଅବସରପ୍ରାପ୍ତ ଜିଲାଜଜ୍ ଓ ଅନ୍ୟ ଜଣେ ଜଗନ୍ନାଥ ପୁରାତନ କଂଗ୍ରେସ ନେତା ଓ ପୂର୍ବତନ ମଂତ୍ରୀ।

ସହରରେ ପ୍ରାଥମିକ ଶିକ୍ଷା ପରେ ସେ ବ୍ରଜମୋହନ ହାଇସ୍କୁଲରୁ ମାଟ୍ରିକ୍ ପାସ୍ କଲେ। ଉଚ୍ଚଶିକ୍ଷା ପାଇଁ ନାଗପୁର ଗଲେ। ସେଠରେ ଅର୍ଥଶାସ୍ତ୍ରରେ ଉପାଧ୍ୟୁତ୍ତର ଡିଗ୍ରି ହାସଲ କରି ଫେରିଲେ। ୧୯୫୧ରେ ସେ ରାଜନୀତିରେ ଯୋଗଦେଲେ। କଟକରୁ ବାହାରୁଥିବା ସୋସିଆଲିଷ୍ଟି ପାର୍ଟିର ମୁଖପାତ୍ର 'କୃଷକ' ସଂପାଦନା ସହିତ ସେ ସଂଶ୍ଳିଷ୍ଟ ହେଲେ, ମାତ୍ର ଯୋଜନାବଦ୍ଧ ବିକାଶ ପରିବର୍ତେ ବିପ୍ଳବାତ୍ମକ ରାଜନୀତି ତାଂକୁ ବେଶି

ଆକୃଷ୍ଟ କଲା । ଭୂସଂସ୍କାର ଶିଳ୍ପପ୍ରତିଷ୍ଠାନ, ଶିକ୍ଷାର ପ୍ରସାର ଅପେକ୍ଷା ଶେଷ ଜୀବନ ପର୍ଯ୍ୟନ୍ତ ସେ ସମାଜବାଦୀ ଆଂଦୋଳନକୁ ବେଶି ଗୁରୁତ୍ୱ ଦେଲେ । ଆଂଦୋଳନ ସହିତ ପୂର୍ଣକାଳୀନ ସାମାଜିକ କାର୍ଯକର୍ତା ହେବା ତାଂକ ଜୀବନର ଦୀକ୍ଷା ହୋଇ ରହିଗଲା । ଘର ପରିବାର ମୋହରେ କାଳେ ସମାଜବାଦର ଗୁରୁ ଦାୟିତ୍ୱ ବହନ ବାଧାପ୍ରାପ୍ତ ହେବ ଏହି ଆଶଂକାରେ ସେ ବହୁଦିନ ଅବିବାହିତ ଓ ପରିବାରରୁ ବିଚ୍ୟୁତ ହୋଇ ରହିଲେ । ପରେ ସେ ବାଣୀମଂଜରୀ ଦାସଂକୁ ବିବାହ କଲେ, ମାତ୍ର ପରିବାରର ମୋହ ତାଂକୁ ବାଂଧି ପାରି ନ ଥିଲା । ସେମାନଂକର ମଧ୍ୟ କୌଣସି ସଂତାନ ସଂତତି ନ ଥିଲେ । ସେବା ଓ ତ୍ୟାଗ ଉଦ୍ଦେଶ୍ୟରେ ଜୀବନ ଯାପନ ଲକ୍ଷ୍ୟରେ ସେ ଜୀବନ ସଂଗ୍ରାମରେ ପ୍ରବୃତ୍ତ ହେଲେ । ବିଶାଳ ସମାଜ ଭିତରେ ନିଜକୁ ସମାହିତ କରି ପାରିଲେ । ବ୍ୟକ୍ତିଗତ ସ୍ତରରେ ଆଉ ଏକ ପରିବାର ଓ ତାର ପରିବୃଦ୍ଧି ପାଇଁ ସମାଜବାଦୀ କର୍ମୀ ଚିଂତା କରିବ କାହିଁକି ? ବଂଚିବା ପାଇଁ ଆୟର ସ୍ଥାୟୀ ସ୍ରୋତ ନାହିଁ । ଜୀବନର ସୁରକ୍ଷା ପାଇଁ ଜୀବନ ବୀମା ନାହିଁ । ନିଜର ଘର ନାହିଁ, ଗାଡି ଘୋଡା ନାହିଁ । ଆୟ ପଂଥା ନିର୍ଣୟ ନିମିତ୍ତ ଆବଶ୍ୟକ ନିଜର ଶିକ୍ଷାଗତ ଯୋଗ୍ୟତା ମଧ୍ୟ ସେ ହରାଇଦେଇଥିଲେ ନିଜର ସମସ୍ତ ସାର୍ଟିଫିକେଟମାନ ଚିରିଦେଇ ।

ସମାଜବାଦୀ ଭାବରେ ଯୁବାବସ୍ଥାରେ ସେ ସମାଜବାଦୀ ଆଂଦୋଳନର ଯୁବ ସଂଗଠନ ସମାଜବାଦୀ ଯୁବ ଜନସଭାର ରାଷ୍ଟ୍ରୀୟ ସଭାପତି ଥିଲେ । ୧୯୭୨ରେ ସମାଜବାଦୀ ଦଳ ଭାଂଗିଯିବା ପରେ ମଧ୍ୟ ସେ କ୍ଷମତା ରାଜନୀତି ପ୍ରତି ଆକୃଷ୍ଟ ହୋଇନାହାଂତି । ଓଡ଼ିଶାର ପ୍ରତିଷ୍ଠିତ ସମାଜବାଦୀମାନେ ଶାସକଦଳଭୁକ୍ତ ହୋଇଛଂତି, କ୍ଷମତା ଉପଭୋଗ କରିଛଂତି । ଲୋକପ୍ରିୟ ହୋଇଛଂତି, ଲୋକ ସେବା ବିକାଶମୁଖୀ ଯୋଜନା କାର୍ଯକାରୀ କରିବାରେ ସକ୍ରିୟ କର୍ତା ଥାଇ ସଫଳତାର ଆନଂଦ ପାଇଛଂତି ମାତ୍ର କିଶନ ଏ ଦିଗକୁ ଦୃଷ୍ଟି ଦେଇନାହାଂତି । ନିଜର ସୀମିତ ଶକ୍ତି ଓ କତିପୟ ସହଯୋଗୀଂକୁ ଧରି ସେ ୧୯୭୨ ରେ ଲୋହିଆ ବିଚାର ମଂଚ ସ୍ଥାପନ କରିଥିଲେ । ଜରୁରୀ ପରିସ୍ଥିତି ଜାରି ହେବା ଆଗରୁ ଲୋକନାୟକ ଜୟପ୍ରକାଶ ଯେତେବେଳେ ତାଂକର ସଂପୂର୍ଣ କ୍ରାଂତି ଆଂଦୋଳନକୁ ତେଜୀୟାନ କଲେ ସେତେବେଳେ ତାଂକର ନିକଟତମ ସହଯୋଗୀମାନଂକ ମଧ୍ୟରୁ ଜଣେ ଥିଲେ ଏହି କିଶନ ପଟ୍ଟନାୟକ । ଜରୁରୀ ପରିସ୍ଥିତି ବେଳେ ସେ ଜେଲ୍ ଗଲେ । ତା ପୂର୍ବରୁ ମଧ୍ୟ ତାଂକୁ ଅନେକ ସାମାଜିକ ସମସ୍ୟାରେ ସ୍ୱର ଦେଇ ଆଂଦୋଳନ କରିବାକୁ ପଡ଼ିଥିଲା, ଓ ବଂଦୀ ଜୀବନ ସେ ମଧ୍ୟ ଅତିବାହିତ କରିଥିଲେ । କ୍ଷମତା ରାଜନୀତି ପଛରେ ନ ଧାଇଁ ସେ ବୈପ୍ଳବିକ ଓ ବୈଚାରିକ ରାଜନୀତିର ପରିନିର୍ମାଣ ପାଇଁ ଭିତ୍ତି ତିଆରିରେ ଲାଗିଛଂତି । ଆଂଚଳିକ ସ୍ତରରେ ବିଭିନ୍ନ ଅଂଚଳରେ ଜଳ, ଜମି, ଜଂଗଲରେ ମୌଳିକ ଅଧିକାର ନିମିତ୍ତ ଗଢ଼ିଉଠୁଥିବା ଜନ ଆଂଦୋଳନଗୁଡ଼ିକୁ ଗୋଟିଏ ସୂତ୍ରରେ ବାଂଧିବା ପାଇଁ ସେ ନିରଂତର ପ୍ରୟାସ କରିଛଂତି । ସେହି କ୍ରମରେ ୧୯୮୦ରେ ସମତା ସଂଗଠନ, ୧୯୯୦ରେ ଅନେକ ଛୋଟ ଛୋଟ ଆଂଦୋଳନକାରୀ ଗୋଷ୍ଠୀ ମିଶି ଜନ ଆଂଦୋଳନ ସମନ୍ୱୟ ସମିତି ଓ

୧୯୯୫ରେ ଉକ୍ତ ସମିତି ସହ ଆଉ କେତୋଟି ଗୋଷ୍ଠୀ ମିଶି ନିର୍ମାଣ କଲେ ସମାଜବାଦୀ ଜନ ପରିଷଦ। ପୁଣି ୧୯୯୪ରେ ଜନ ଆଂଦୋଳନର ରାଷ୍ଟ୍ରୀୟ ସମିତି ମଧ୍ୟ ସ୍ଥାପିତ ହୋଇଥିଲା। ପ୍ରତି ଅନୁଷ୍ଠାନ ଗଠନ ମୂଳରେ କିଶନଙ୍କର ଅବଦାନ ସ୍ମରଣୀୟ ତଥାପି ନିଜକୁ ସେ ସ୍ଥାପକ ବୋଲି କେବେ ଦାବି କରିନାହାଂତି। ଏହାର କୌଣସି ସୁଫଳ ମଧ୍ୟ ଜନମାନସରେ ପ୍ରତିଫଳିତ ହୋଇନାହିଁ।

୧୯୬୨ରେ ମାତ୍ର ୩୩ ବର୍ଷ ବୟସରେ କିଶନ ପଟ୍ଟନାୟକ ନିର୍ବାଚନ ଲଢ଼ି ସଂଯୁକ୍ତ ସମାଜବାଦୀ ଦଳ ପ୍ରାର୍ଥୀ ଭାବେ ସଂବଲପୁରରୁ ଲୋକ ସଭାକୁ ନିର୍ବାଚିତ ହୋଇଥିଲେ। କଂଗ୍ରେସ ପ୍ରାର୍ଥୀ ବିନୋଦ ବିହାରୀ ଦାସ ଓ ଗଣତଂତ୍ର ପରିଷଦ ପ୍ରାର୍ଥୀ ଗଂଗାଭୂଷଣ ପଂଡାଂକୁ ସେ ବହୁମୁଖୀ ପ୍ରତିଦ୍ୱଂଦ୍ୱିତାରେ ପରାଜିତ କରିଥିଲେ। ଦଳୀୟ ପ୍ରାର୍ଥୀ ଭାବରେ ଧନବଳ ଓ ଜନବଳର ସ୍ୱଚ୍ଛତା ସେ ଉପଲବ୍ଧି କରିଥିଲେ। ତେଣୁ ଏହାପରେ ଅନ୍ୟ କୌଣସି ନିର୍ବାଚନରେ ଭାଗ୍ୟଲକ୍ଷ୍ମୀ ତାଂକ ପ୍ରତି ସୁପ୍ରସନ୍ନ ହୋଇ ନାହାଂତି। ୧୯୬୭ ଓ ୧୯୭୧ରେ ସେ ସେହି ନିର୍ବାଚନ ମଂଡଳୀରେ ପ୍ରତିଦ୍ୱଂଦ୍ୱିତା କରି କଂଗ୍ରେସ ପ୍ରାର୍ଥୀ ଶ୍ରଦ୍ଧାକର ସୂପକାର ଓ ବନମାଳୀ ବାବୁଂକ ହାତରେ ପରାଜିତ ହୋଇଥିଲେ। ବ୍ୟୟ ବହୁଳ ନିର୍ବାଚନ ପ୍ରତିଦ୍ୱଂଦ୍ୱିତା ଫଳରେ ଆର୍ଥୀକ ଅସ୍ୱଚ୍ଛଳତା ତାଂକର ଚିରସ୍ଥାୟୀ ହୋଇ ରହିଯାଇଛି। ସାଂସଦ ଭାବରେ ପାଉଥିବା ଭତ୍ତା ଓ ଆନୁସଂଗିକ ସୁବିଧା ବ୍ୟତୀତ ତାଂକ ଜୀବନରେ ସେ ଅନ୍ୟ କୌଣସି ସୁବିଧା ବା ସୁଯୋଗ ଉପଭୋଗ କରିନାହାଂତି। ୧୯୬୨ରୁ ୧୯୬୭ ପର୍ଯ୍ୟଂତ ସାଂସଦ ଥାଇ ଦୀକ୍ଷାଗୁରୁ ଡକ୍ଟର ରାମମନୋହର ଲୋହିଆଂକର ସହକର୍ମୀ ହେବାର ସୁଯୋଗ ତାଂକୁ ମିଳିଥିଲା। ସ୍ୱାଧୀନତା ପରବର୍ତ୍ତୀ ଭାରତର ଗଣତଂତ୍ର ବ୍ୟବସ୍ଥାରେ ସଂସଦକୁ ତାର୍କିକ ଓ ବୈଚାରିକ ଅଭିବ୍ୟକ୍ତିର ମାଧ୍ୟମ ରୂପେ ଗଢ଼ିତୋଳିବାର ଯେଉଁ କେତେଜଣ ନିରଳସ ସଭ୍ୟ ଥିଲେ ସେମାନଂକ ମଧ୍ୟରେ କିଶନ ଅନ୍ୟତମ। ନିର୍ବାଚନ ମଂଡଳୀର ବୁଭୁକ୍ଷୁ ଜନତାର ମୌଳିକ ସମସ୍ୟା ସେ ସାଂସଦରେ ଉପସ୍ଥାପନ କରି ନିଜର ବଳିଷ୍ଠ ଯୁକ୍ତିଦ୍ୱାରା ଏହା ବୁଦ୍ଧିଜୀବୀ ମହଲରେ ବିଚାରକୁ ଛାଡ଼ି ଦେଉଥିଲେ, ମାତ୍ର ଜଣେ ନିଷ୍ପାପର ବିଚାରବଂତ ସାଂସଦ ଭାବରେ ତାଂକର ରାଜ୍ୟପ୍ରତି ଅବଦାନ ଶୂନ୍ୟ ରହିଗଲା ।

ରାଜନେତା ଓ ପ୍ରଖର ବୁଦ୍ଧିଜୀବୀ କିଶନ ନିଜର ଚିଂତାଧାରା ଦ୍ୱାରା ଜନମାନସରେ ଆଲୋଡ଼ନ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ। ତାଂକର ରଚନା 'ଭାରତ ଶୁଦ୍ରୋଁକା ହୋଗା' (୧୯୫୫) 'ବିକଳ୍ପ ହୀନ ନାହିଁହେ ଦୁନିଆ' (୨୦୦୦) ଭାରତୀୟ ବୁଦ୍ଧିଜୀବୀର ସଂକଟ ଓ ଅନ୍ୟାନ୍ୟ ପ୍ରବଂଧ ଭବିଷ୍ୟତ ବଂଶଧରଂକୁ ତାଂକ ଚିଂତାଧାରାର ଝଲକ ଦେଖାଇବ। ସାମ୍ରାଜ୍ୟବାଦୀ ଉପଭୋକ୍ତାବାଦୀ ଆଧୁନିକ ସଭ୍ୟତାର ଅଭ୍ୟଂତରୀଣ ଚିତ୍ର ସେ ନିଜ ରଚନାରେ ଦେଖାଇଛଂତି। ସାହିତ୍ୟ କଳା ଓ ଦର୍ଶନରେ ଆଗ୍ରହୀ ଥାଇ କିଶନ ପଟ୍ଟନାୟକଂକର ହିଂଦି ଓଡ଼ିଆ ଓ ଇଂରେଜିରେ ଲିଖିତ ପ୍ରତ୍ୟେକ ଲେଖା କେବଳ ବିଷୟବସ୍ତୁ

ଦୃଷ୍ଟିରୁ ନୁହେଁ ଭାଷା ଓ ଭାବ ଦୃଷ୍ଟିରୁ ମଧ୍ୟ ଅନନ୍ୟ ସାଧାରଣ। ଆସାମରୁ କେରଳ ଓ ଓଡ଼ିଶାରୁ ଗୁଜୁରାଟ ଯାଏ ନିରଂତନ ଯାତ୍ରା କରଂତି ବୋଲି ତାଂକ ସାଂଗରେ ତାଂକ ରଚନା ମଧ୍ୟକୁ ବିଭିନ୍ନ ଭାଷା ଓ ସାହିତ୍ୟର ଶବ୍ଦ ଉପମା ଓ ଅଳଂକାର ଆସିଛଂତି। ସଂବଳହୀନ କିଶନ କେବଳ ବିକଳ୍ପ ରାଜନୀତିକୁ ବଳ ଦେଇନାହାଂତି ଅଜାଣତରେ ହେଉ ପଛେ ହିଂଦି ଓ ଓଡ଼ିଆ ପରି ଦୁଇଟି ଭାରତୀୟ ଭାଷା ମଧ୍ୟରେ ଥିବା ଶାଶ୍ୱତ ସଂପର୍କକୁ ମଧ୍ୟ ବଳିଷ୍ଠ କରିଛଂତି ବୋଲି ତାଂକର ଜଣେ ସମାଲୋଚକ କହିଛଂତି। ତାଂକର ସାହିତ୍ୟ ଚର୍ଚ୍ଚା ଓ ସାଂବାଦିକତା ବିଷୟ କହିବାକୁ ଗଲେ ସେ ଷାଠିଏ ଦଶକରେ ଡକ୍ଟର ଲୋହିଆଂକ ସାଂଗରେ ମିଶି ମେନଲାଂଡ ଓ ଜନ ପତ୍ରିକାର ସଂପାଦନା କରିଛଂତି। ଲୋହିଆଂକ ମୃତ୍ୟୁ ପରେ ସେ ଏକାକୀ ଏହାର ସଂପାଦନା ଦାୟିତ୍ୱ ବହନ କରିଛଂତି। ବିଗତ ୨୭ ବର୍ଷ ଧରି ସେ ମାସିକ ହିଂଦି ପତ୍ରିକା 'ସାମୟିକ ବାର୍ତ୍ତା'ର ସଂପାଦନା କରିଛଂତି। ଓଡ଼ିଆରେ ପୂର୍ବରୁ 'ସାଥୀ' ଓ 'ଭୂମିପୁତ୍ର' ଓ ମୃତ୍ୟୁର କିଛି ବର୍ଷ ପୂର୍ବରୁ 'ବିକଳ୍ପ ବିଚାର' ତାଂକ ସଂପାଦନାରେ ପ୍ରକାଶ ପାଉଥିଲା। ତାଂକର ନିଜ ପତ୍ରିକାମାନଂକରେ ପ୍ରକାଶିତ ରଚନା ଓ ସାମୟିକ ଭାବେ 'ଧର୍ମ ଯୁଗ' 'ରବିବାର' 'ଦିନମାନ' 'ସେମିନାର' ଆଦି ପତ୍ରିକାରେ ପ୍ରକାଶିତ ଲେଖାଗୁଡ଼ିକ ବିକଳ୍ପ ରାଜନୀତିର ଇସ୍ତାହାର ରୂପେ ପରିଭାଷିତ କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ରତିଟି ଲେଖାର ସହଜ ଅଭିବ୍ୟକ୍ତି, ସରଳ ଭାଷା, ସଠିକ ଶବ୍ଦ ଚୟନ ଓ କଳ୍ପନାଶୀଳତାକୁ ଦେଖିଲେ ମନେହୁଏ ନିଷ୍ଠା, ତ୍ୟାଗ, ନିଷ୍କପଟତା ଓ ସବୁ କଥାକୁ ଖୋଲି କରି ପ୍ରକାଶ କରିବାର ଅଭ୍ୟାସ ବିନା ସେପରି ରଚନା ସୃଷ୍ଟି ହୋଇ ନ ପାରେ। ନିଷ୍ଠା ଓ ତ୍ୟାଗକୁ ବ୍ରତ କରି ଉତ୍କଟ ନିରାଶା ମଧ୍ୟରେ ଆଶାବାଦୀ ହୋଇ ଆଗେଇ ଚାଲିଥିଲେ କିଶନ ପଟ୍ଟନାୟକ ଓ ଏହା ଉତ୍ତର କାଳରେ ଅନ୍ୟମାନଂକୁ ପ୍ରେରଣା ଯୋଗାଇବାରେ ସକ୍ଷମ ହେବ।

ଶ୍ରୀ ପ୍ରୀତୀଶ ଆଚାର୍ଯଂକର ୨୦୦୪ ଅକ୍ଟୋବର ୧ ତାରିଖ 'ସମ୍ବାଦ'ରେ 'କିଶନ ପଟ୍ଟନାୟକ ଏକ ବ୍ୟକ୍ତିତ୍ୱ, ଏକ ଚିଂତନ' ପ୍ରବଂଧ ଉପରେ ଆଧାରିତ।



ମହାପୁରୁଷ୍ କାଁୟ ଇଟାମନ୍, ଜବ୍‌କର୍ ହାତେ ଥିବାଧନ୍
ଖାୟ୍‌ବା ସେ ଭାତ୍ ଥାଲି ଥାଲି
(ଭାଇରେ) ଗିନା ଗିନା ଦାଏଲ୍ ତୁନ୍ ଢାଲି
ଆଉର୍ ଯେତେ ଯେତେ ଲୋକ୍‌ରେ
ଆଉର୍ ଯେତେ ଯେତେ ଲୋକ୍ ସହି ଯେତେ ଶୋଷ୍ ଭୋକ୍,
ପୁରୁଥିବେ ତାର୍ ପଁଢ଼େଇର୍ ବାଲି
(ଭାଇରେ) ମୁଣ୍ଡର୍ ଝାଲ୍ ମେଲା ମୁହେଁ ଡାଲି।

(ରସକବିତା) ଶଶିଭୂଷଣ ମିଶ୍ର

ଗ୍ରଂଥ ମଂଦିର କଟକ ଆନୁକୂଲ୍ୟରେ ୧୯୮୬ରେ ପଂଡିତ ଶ୍ରୀଧର ମହାପାତ୍ର ଶର୍ମାଂକ ସଂପାଦିତ ଓ ପ୍ରକାଶିତ ''ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ'' ଗ୍ରଂଥ ଓ କଳାହାଂଡି ଗେଜେଟିଅର୍‌ରୁ ଏହି ବିସ୍ମୃତ ରଚୟିତାମାନଂକର ନାମ ଓ ରଚନାବଳୀ ଗୃହୀତ ।

## ସୋମେଶ୍ୱର ବେହେରା

ସୋମେଶ୍ୱର ବେହେରାଂକ ଜନ୍ମ ୧୯୧୧ରେ କଳାହାଂଡିର ଜୁନାଗଡ଼ରେ । ପ୍ରକାଶିତ ପୁଷ୍ପପରାଗ, ଭକ୍ତ ସୁମନମାଳା (କବିତା) ଜାତିର ଜନକ, ସରୋଜ ସୁଂଦରୀ, ଯୁଗ ଜ୍ୟୋତି ଜବାହାର (କାବ୍ୟ) ଅଂଧାର ଘର କଥା (ଉପନ୍ୟାସ) ବାଲ୍ମିକୀ ରାମାୟଣ ଓ ପ୍ରାକ ରାମାୟଣ (କାବ୍ୟ) ତାଂକ ରଚନା ।

## ମନୋହର ମେହେର

ମନୋହର ମେହେର କଳାହାଂଡିରେ ଥାଇ ଗୋବିଂଦ ଚଂଦ୍ର ଲୀଳା, ଦ୍ୱାରାବତୀ ସୁଆଙ୍ଗ ଅହଲ୍ୟାସ୍ତବ, ଦୃଷ୍ଟି ବିଜ୍ଞାନ ଆଦି ଶତାଧିକ ପୁସ୍ତକ ରଚନା କରିଥିଲେ ।

# ଯୁଗଳ କିଶୋର ଯୋଷୀ

ଯୁଗଳି କିଶୋର ଯୋଷୀ କଳାହାଂଡିର ଅଧିବାସୀ। କବିତା ଗୁଚ୍ଛ ନାମକ ପୁସ୍ତକର ରଚୟିତା ଥିଲେ।

# ରାମକୃଷ୍ଣ ରଥ

କଳାହାଂଡିର ରାମକୃଷ୍ଣ ରଥ, ବିବିଧ ଭାବନା ନାମକ ପୁସ୍ତକର ରଚୟିତା।

# ଦୁର୍ଗାମାଧବ ପ୍ରସାଦ ଦେବ

କଳାହାଂଡିର ଦୁର୍ଗାମାଧବ ପ୍ରସାଦ ଦେବ ଜ୍ୟୋସ୍ନାବାଈ ଓ ଅନୁତପ୍ତ ନାଟକ ରଚନା କରିଥିଲେ।

# ଅର୍ଜୁନ ଯୋଷୀ

ଅର୍ଜୁନ ଯୋଷୀ ଅସୀମର ଅହ୍ୱାନ ବ୍ୟତୀତ ଓଡ଼ିଶାର ସଂସ୍କୃତି ଓ ଐତିହ୍ୟ ପୁସ୍ତକର ରଚୟିତା।

# ରାଜକୁମାର ରାମଚଂଦ୍ର

କଳାହାଂଡିର ରାଜକୁମାର ରାମଚଂଦ୍ର ସାହୁ ୧୮୮୮ରେ ତତ୍ତ୍ୱବୋଧ ନାମକ ଏକ ଗ୍ରଂଥ ରଚନା କରି ପ୍ରକାଶ କରିଥିଲେ।

# ପରଶୁରାମ ମୁଂଡ

୧୯୧୭ରେ ଭବାନୀପାଟଣା ନିକଟ ଏକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ଶିକ୍ଷାପରେ ସେ ସହରର ବ୍ରଜମୋହନ ହାଇସ୍କୁଲର ଶିକ୍ଷକ ଥିଲେ। 'ମୂଲିଆ ପିଲା', 'ମୁକ୍ତିପଥର ଦୁଇଟି ଯାତ୍ରୀ', 'ବସୁଂଧରାର ମାଟି' ନାମରେ ତିନିଗୋଟି ଉପନ୍ୟାସ ସେ ରଚନା କରିଥିଲେ। କଳାହାଂଡିର ମହାରାଜା, ବ୍ରଜମୋହନ ଦେଓଂକ ଜୀବନୀ ମଧ୍ୟ ସେ ରଚନା କରିଥିଲେ। ସବ୍ୟସାଚୀର ଦାନ ନାମରେ ଏକ କାବ୍ୟ ସେ ପ୍ରଣୟନ କରିଥିଲେ। ଉତ୍କଳେ ସାରଳା ତାଂକର ଅନ୍ୟ ଏକ ରଚନା। କୋଶଳୀ ଭାଷାରେ ସେ 'ମିଗ୍ନିନା' ନାମରେ ଏକ ଗଳ୍ପଗୁଚ୍ଛ ମଧ୍ୟ ରଚନା କରିଥିଲେ। ତାଂକର ସଂପାଦନାରେ ୧୯୫୫ରେ ଭବାନୀପାଟଣାରୁ 'ଦାବାନଳ' ନାମରେ ଏକ ମାସିକ ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା।

ତାଂକୁ ଓଡ଼ିଶା ସାହିତ୍ୟ ଏକାଡେମୀ ଜୀବନର ଶେଷ ପର୍ଯ୍ୟାୟରେ ମାନପତ୍ର ଓ ଉପାୟନ ଦ୍ୱାରା ସଂବର୍ଧିତ କରିଥିଲେ। ୧୯୮୫ରେ ତାଂକର ଦେହାଂତ ହୋଇଥିଲା।

# କୁଶ ବେହେରା

ଭବାନୀପାଟଣାର ବାସିଂଦା। ସେ ୧୯୧୭ରେ ଜନ୍ମଗ୍ରହଣ କରିଥିଲେ। ଉପନ୍ୟାସ ଗଳ୍ପ ପ୍ରବଂଧ ଆଦି ସେ ଲେଖୁଥିଲେ। ଭାବତରଂଗ, କପାଳର ଦାଗ, ନିୟମିତ ବଳ, କଥାଟିଏ କହୁଁ, ହସ୍ତରେଖା ଆଦି ମୋଟ ୧୪ ଖଂଡ ବହି ତାଂକର ପ୍ରକାଶିତ ହୋଇଅଛି।

୧୯୮୦ରେ ରାଜ୍ୟସରକାରଂକ ଆନୁକୂଲ୍ୟରେ ପ୍ରକାଶିତ କଳାହାଂଡି ଜିଲ୍ଲା ଗେଜେଟିଅରରେ ନିମ୍ନୋକ୍ତ କବି ଓ ଲେଖକମାନେ ବର୍ଣ୍ଣିତ।

# ପାଟରାଜା ପଦ୍ମନ ସିଂହ

ଖୁଆମୂଳ ରାଜପରିବାର ନାଗବଂଶୀୟ ବୋଲି କୁହାଯାଏ। ସେ ନାଗବଂଶର ପ୍ରଥମ ନରପତି ଛୋଟନାଗପୁରର ଫଣୀମୁକୁଟ ରାୟଂକ ଠାରୁ ଆରଂଭ କରି ଫତେ ନାରାୟଣ ଦେବ ୧୮୩୧-୧୮୫୩ କଳାହାଂଡି ରାଜାଂକ ପର୍ଯଂତ ସମସ୍ତ ଶାସକମାନଂକର ଇତିହାସ ବର୍ଣ୍ଣନା କରି ଐତିହାସିକ କାବ୍ୟ ନାଗବଂଶ ଚରିତଂ ରଚନା କରିଥିଲେ। ପାଟରାଜା ରାମଚଂଦ୍ର ସିଂହ ପଦ୍ମନ ସିଂହଂକର ପୁତ୍ର ଥିଲେ। ସେ ନାଗବଂଶ ଚରିତକୁ ସରଳ ଓଡ଼ିଆ ଭାଷାରେ ଲୋକବୋଧ୍ୟ କରି ପ୍ରକାଶ କରିଥିଲେ। ମାତ୍ର ଏହି ଗ୍ରଂଥ ମଧ୍ୟ ସଂପୂର୍ଣ ହୋଇପରିନଥିଲା।

# ମହାରାଜ ଉଦିତ ପ୍ରତାପ

ମହାରାଜ ଉଦିତ ପ୍ରତାପ ଓଡ଼ିଆ ମହାଭାରତ ଲେଖକ ଧରାକୋଟ ରାଜା କୃଷ୍ଣସିଂହଂକ ପରି ଜଣେ ପଂଡିତ ଥିଲେ। ସମଗ୍ର ଶୀମଦ ଭାଗବତକୁ ସେ ଚତୁର୍ଦଶାକ୍ଷରୀ ବୃତ୍ତରେ ଓଡ଼ିଆରେ ଅନୁବାଦ କରିଥିଲେ। ମାତ୍ର ଏହାର ଅନୁବାଦ ସଂପୂର୍ଣ ହେବା ପୂର୍ବରୁ ସେ ପ୍ରାଣତ୍ୟାଗ କଲେ।

# ମହାରାଣୀ ଆଶାକୁମାରୀ ଦେବୀ

ମହାରଣୀ ଆଶାକୁମାରୀ ଦେବୀ ମହାରାଜା ଉଦିତ ପ୍ରତାପଂକର ପାଟରାଣୀ ଥିଲେ। ଖଡ଼ିଆଳରେ ରାଜାଂକ ରଚିତ ଭାଗବତର ୧୨ଶ ସ୍କଂଧ ସେ ରଚନା କରି ଶେଷ କରିଥିଲେ। ସୂର୍ଯବଂଦନା, ଚମତ୍କାର ଚଂଦ୍ର ନାମକ ଏକ ଅନ୍ୟ କାବ୍ୟ ମଧ୍ୟ ସେ ରଚନା କରିଥିଲେ।

# ରାମଚଂଦ୍ର ରାଜଗୁରୁ

ରାମଚଂଦ୍ର ରାଜଗୁରୁ ମହାରାଜା ଉଦିତ ପ୍ରତାପ ଦେବଂକ ରାଜସଭାର ପଂଡିତ ଥିଲେ। ଅନେକ ଘୁମୁରା ଗୀତ ସେ ରଚନା କରିଥିଲେ। କଳାହାଂଡିର ପ୍ରସିଦ୍ଧ ଲୋକନୃତ୍ୟ ଘୁମୁରାରେ ପାଇକମାନେ ବୋଲୁଥିବା ଅଧିକାଂଶ ଗୀତ ସେ ରଚନା କରିଥିଲେ। ଏହା ବ୍ୟତୀତ କଳାମେଘ ଚଉତିଶା, କାମକଳା ଚଉତିଶା, ମୋହନ ଚଉତିଶା, ସୀତା ବିଳାପ, ରାମ ବିଳାପ ଆଦି ପୁସ୍ତକ ସେ ରଚନା କରିଥିଲେ।

# ପ୍ରଭାକର ଗାୟକରତ୍ନ

ପ୍ରଭାକର ଗାୟକରତ୍ନ ମହାରାଜା ଉଦିତ ପ୍ରତାପଂକର ସମସାମୟିକ କବି ଥିଲେ। ସେ ଜଣେ ବିଖ୍ୟାତ ସଂଗୀତଜ୍ଞ ଭାବରେ ଖ୍ୟାତି ଅର୍ଜନ କରିଥିଲେ। ରାଜା ତାଂକୁ ଗାୟକରତ୍ନ ଉପାଧି ପ୍ରଦାନ କରିଥିଲେ। ରାଜ୍ୟର ରାଜସ୍ୱବିଭାଗର ନଥିପତ୍ରରୁ ତାଂକ ପ୍ରତିଭାର ସ୍ୱୀକୃତି ସ୍ୱରୁପ ୧୮୭୯-୮୦ରେ ମହାରାଜା ଉଦିତ ପ୍ରତାପ ଓ ୧୮୮୩ରେ ମହାରାଣୀ ଆଶାକୁମାରୀ ତାଙ୍କୁ ନିଷ୍କରଭୂମି ଦାନ କରିଥିଲେ ବୋଲି ଜଣାପଡ଼େ।



# ପତ୍ରିକା ପ୍ରବାହ

ଡଗରର ସଂପାଦକ ବରିଷ୍ଠ ସାହିତ୍ୟସେବୀ ଶ୍ରୀ ନିତ୍ୟାନଂଦ ମହାପାତ୍ରଂକ ମତରେ ସଂବାଦପତ୍ରକୁ ଛାଡ଼ିଦେଲେ ସାହିତ୍ୟର ଅନ୍ୟ ଏକ ବାହକ ସାମୟିକ ପତ୍ରପତ୍ରିକା । ସାହିତ୍ୟିକ ଜନ୍ମ ନିଏ ପ୍ରଥମେ ଏହି ପତ୍ରପତ୍ରିକାରେ । ସେହି ବିଚାରରେ ଗଣରାଜ୍ୟ ପ୍ରତିଷ୍ଠା ପର୍ଯଂତ ପଶ୍ଚିମ ଓଡ଼ିଶାରୁ ପ୍ରକାଶିତ ପତ୍ରପତ୍ରିକାର ନାମ ନିମ୍ନରେ ପ୍ରଦର୍ଶିତ । ଏଗୁଡ଼ିକ ବହୁ ଲେଖକ ସୃଷ୍ଟିରେ ସହାୟକ ହୋଇଥିଲେ ।

| | |
|---|---|
| ୧୮୮୯ | ସଂବଲପୁର ହିତୈଷିଣୀ / ସାପ୍ତାହିକ ସଂବାଦ ଓ ସାହିତ୍ୟ ପତ୍ର / ସଂପାଦକ ପଂଡିତ ନୀଳମଣି ବିଦ୍ୟାର୍ / ୧୯୨୩ ରେ ପ୍ରକାଶନ ବଂଦ ହେଲା । ବାମଂଡା ଦରବାର ଏହାର ପୃଷ୍ଠପୋଷକ ଥିଲେ । |
| ୧୮୯୩ | ବିଜୁଳି / ଦେବଗଡ଼ରୁ ଭଂଜବିରୋଧୀ ଓ ରାଧାନାଥ ଯୁଗ ସପକ୍ଷବାଦୀ ପତ୍ରିକା ଦାଶରଥି ରାଉତଂକ ସଂପାଦନାରେ ମାତ୍ର କେତେମାସ 'ଇଂଦ୍ରଧନୁ'ର ପ୍ରତିଦ୍ୱଂଦୀ ଭାବରେ ପ୍ରକାଶିତ ହୋଇ ବଂଦ ହେଲା । |
| ୧୯୦୦ | ଆଲୋଚନା / ଦେବଗଡ଼ / ସଂପାଦକ ଜଳଂଧର ଦେବ / ମାସିକ |
| ୧୯୦୦ | ଉତ୍କଳ ମଧୁପ / ଦେବଗଡ଼ / ସଂପାଦକ ନୀଳମଣି ବିଦ୍ୟାରତ୍ନ / ମାସିକ |
| ୧୯୦୫ | ଉତ୍କଳ ଦର୍ପଣ / ସଂବଲପୁର / ସଂପାଦକ ଶ୍ରୀପତି ମିଶ୍ର / ସାପ୍ତାହିକ ୧୯୦୮ରେ ବଂଦ ହୁଏ / ବାଲେଶ୍ୱରର ରାଜା ବୈକୁଂଠନାଥ ପୃଷ୍ଠପୋଷକ ଥିଲେ । |
| ୧୯୦୬ | ସନାତନ ଧର୍ମ /ପ୍ରେଜର ପ୍ରେସ, ସଂବଲପୁର/ସଂପାଦକ ବିଦ୍ୟାରତ୍ନ ମିଶ୍ର / ପୀତାଂବର ଦେ / ବ୍ରଜବଂଧୁ ମିଶ୍ର । |

| | |
|---|---|
| ୧୯୧୩ | ଉତ୍କଳ ସେବକ / ସଂପାଦକ ସ୍ୱପ୍ନେଶ୍ୱର ଦାସ / ବିଶ୍ୱକେସନ ବହିଦାର / ନିତ୍ୟାନଂଦ ବହିଦାର / ଶଂକରପ୍ରସାଦ ପାଢ଼ି । |
| ୧୯୧୯ | ହୀରାଖଂଡ/ ସଂବଲପୁର / ସଂପାଦକ ସ୍ୱପ୍ନେଶ୍ୱର ଦାସ । |
| ୧୯୨୧ | ସେବା / ସଂବଲପୁର/ ସଂପାଦକ ପଂଡିତ ନୀଳକଂଠ ଦାସ / ସାପ୍ତାହିକ । |
| ୧୯୨୧ | ସାଧନା /ସଂବଲପୁର / ସାପ୍ତାହିକ / ସଂପାଦକ ସ୍ୱପ୍ନେଶ୍ୱର ଦାସ । |
| ୧୯୨୮ | ନବଯୁଗ / ସଂବଲପୁର / ସଂପାଦକ ଦୟାନିଧି ମିଶ୍ର / ମାସିକ । |
| ୧୯୩୨ | ଉତ୍କଳ ସେବକ / ସଂବଲପୁର / ସଂପାଦକ ନିତ୍ୟାନଂଦ ବହିଦାର । |
| ୧୯୩୩ | ଉପହାର / ସାହିତ୍ୟିକ ପ୍ରବଂଧ / ଦେବଗଡ଼ / ସଂପାଦକ ସାଧୁଚରଣ ଜଗଦେବ/ପ୍ରାଥମିକ ଶିକ୍ଷକ ସଂଘର ମୁଖପତ୍ର । |
| ୧୯୩୬ | ହୀରାଖଂଡ / ବଲାଂଗିର / ସଂପାଦକ ଶଂକର ପ୍ରସାଦ ମିଶ୍ର । ସମାଚାର / କଳାମଂଡପ ପ୍ରେସ |
| ୧୯୩୬ | ଜାଗରଣ / ସଂବଲପୁର / ସଂପାଦକ ନିତ୍ୟାନଂଦ ବହିଦାର, ନୃସିଂହ ଗୁରୁ । |
| ୧୯୩୬ | ଶୁଭବାର୍ତା / ସଂବଲପୁର / ସଂପାଦକ ଶଂକର ପ୍ରସାଦ ପାଢ଼ି । |
| ୧୯୪୨ | ପାଟଣା ଦୀପିକା / ବଲାଂଗିର / ସଂପାଦକ ନିତ୍ୟାନଂଦ ବହିଦାର |
| ୧୯୪୫ | ଶଂଖ / ଦେବଗଡ଼ / ମାସିକ / ସାହିତ୍ୟିକ / ସଂପାଦକ ମାୟାଧର ମାନସିଂହ ଓ ପରେ ଜଳଂଧର ଦେବ । |
| ୧୯୪୫ | ଚତୁରଂଗ / ବଲାଂଗିର / ସୃଷ୍ଟି ଓ ଗବେଷଣାଧର୍ମୀ / ମାସିକ / ସଂପାଦକ ବ୍ରଜେଂଦ୍ର ପ୍ରତାପ ସିଂହଦେଓ । |
| ୧୯୫୦ | ସେବା / ସଂବଲପୁର / ସଂପାଦକ ରାଜେଂଦ୍ର ପଂଡା / ସମସ୍ୟାମୂଳକ ସାପ୍ତାହିକ । |



# ଅବିଭକ୍ତ ସଂବଲପୁର, ବଲାଂଗିର, କଳାହାଂଡି ଜିଲ୍ଲାର ବିଧାୟକବୃଂଦ ୧୯୩୭ - ୨୦୦୪

## ସ୍ୱାଧୀନତା ପୂର୍ବ ନିର୍ବାଚନ

| ୧୯୩୭ ସଂବଲପୁର | ୧୯୪୬ |
|---|---|
| ନୃପଲାଲ ସିଂହ | ବୋଧରାମ ଦୁବେ ସଦର |
| ବୋଧରାମ ଦୁବେ ସଦର ଜେନେରାଲ | ମୋହନ ସିଂହ |
| ପ୍ରହଲାଦ ରାୟ ଲାଠ ପଶ୍ଚିମ ବରଗଡ | ଲାଲ ରଣଜିତ ସିଂହ ବରିହା |
| ଫକୀର ବେହେରା ପୂର୍ବ ବରଗଡ | ଲକ୍ଷ୍ମୀ ନାରାୟଣ ମିଶ୍ର |
| ବିଶି ଗଂଡା ପୂର୍ବବରଗଡ (ତଫସିଲଜାତି) | ବିଶିଗଂଡା |
| ଲାଲ ଅର୍ତତ୍ରାଣ ଦେଓ ଖଡିଆଳ | ରାଜା ଆର୍ତତ୍ରାଣ ଦେଓ |
| ଅବଦୁଲ ଶୋଭାନ ଖାଁ | ଖାଁ ସାହେବ ମହମ୍ମଦ ଖାଁ |
| ବାଲେଶ୍ୱର ସଂବଲପୁର ମୁସଲମାନ | ଘନଶ୍ୟାମ ଦାସ ଥିଡାନି ବାଣିଜ୍ୟ ଓ ଶିଳ୍ପ (ବ୍ରଜରାଜନଗର) |

ତା ୧.୧.୧୯୪୮ରେ ଓଡ଼ିଶାରେ ପୂର୍ବତନ ଦେଶୀୟ ରାଜ୍ୟ ମାନଂକର ମିଶ୍ରଣ ଫଳରେ ନୂତନ ସଂବିଧାନ କାର୍ଯକାରୀ ହେବା ପର୍ଯଂତ ନିମ୍ନୋକ୍ତ ବ୍ୟକ୍ତିମାନଂକୁ କେଂଦ୍ର ସରକାର ରାଜ୍ୟ ବିଧାନ ସଭାର ସଭ୍ୟରୂପେ ମନୋନୀତ କରିଥିଲେ ।

ବାମଂଡା - ଜଳଂଧର ଦେବ

କଳାହାଂଡି - ଉତ୍ସବ ପ୍ରଧାନ
ଥାଟରାଜ ରୁଦ୍ରପ୍ରତାପ ସିଂହଦେଓ
କାଳୀପ୍ରସାଦ ବାବୁ
ଗଜାନନ ନାୟକ

ପାଟଣା - ଦିବାକର ବହିଦାର
ନିମାଇଁ ଚରଣ ପାଣିଗ୍ରାହୀ
କପିଳେଶ୍ୱର ପ୍ରସାଦ ନଂଦ
କପୂର ଚାଂଦ ନାୟକ

ସୋନପୁର - ଶଶିଭୂଷଣ ପ୍ରଧାନ

ଯୁଗ୍ମ ନିର୍ବାଚନ ୧୯୭୧ ଯାଏ ଥିଲା । ଏହାପରେ ୧୯୭୧ରୁ ୨୦୦୪ ପର୍ଯ୍ୟନ୍ତ ବିଧାୟକମାନଙ୍କର ନାମ ଅଲଗା ଦିଆଗଲା ।

## ୧୯୫୧-୫୨

ଭବାନୀପାଟଣା ଯୁଗ୍ମ - ଜନାର୍ଦ୍ଦନ ମାଝି
- ଯୋଗେଶ ଚନ୍ଦ୍ର ସିଂହଦେଓ

ଜୟପାଟଣା - ଝାଙ୍କୁରୁ ଝୁଡିଆ

ଖୁନାଗଡ଼ ଯୁଗ୍ମ - ପିକେ ଦେଓ
- ଦୟାନିଧି ନାୟକ

ନୂଆପଡ଼ା - ଅନୂପସିଂହ ଦେଓ
- ଚୈତନ୍ୟ ମାଝି

ଟିଟିଲାଗଡ ଯୁଗ୍ମ - ରମେଶ ଚନ୍ଦ୍ର ଭୋଇ
- ମୂରଲିଧର ପଣ୍ଡା

ପାଟଣାଗଡ଼ ଯୁଗ୍ମ - ଅର୍ଜୁନ ଦାସ
- ଗଣେଶରାମ ବରିହା

ବଲାଂଗିର ଯୁଗ୍ମ - ନନ୍ଦକିଶୋର ମିଶ୍ର
- ଅଚ୍ୟୁତାନନ୍ଦ ମହାନନ୍ଦ

ସୋନପୁର - ଅନନ୍ତରାମ ନନ୍ଦ

ବିନିକା - ବୈକୁଣ୍ଠନାଥ ମେପାକ

ବୀରମହାରାଜପୁର - ଅଚ୍ୟୁତାନନ୍ଦ ମହାକୁଡ଼

ପଦ୍ମପୁର - ଲାଲ ରଣଜିତସିଂହ ବରିହା

ବରଗଡ଼ - ତୀର୍ଥବାସୀ ପ୍ରଧାନ

ଅତାବିରା - ବିପିନ ବିହାରୀ ଦାସ

ସୋହେଲା ଯୁଗ୍ମ - ଭିକାରୀ ସାହୁ/ବିଶିବିଭାର

ମୁରା ଆଂବାଭୋନା - ମକରଧ୍ୱଜ ପ୍ରଧାନ

ସଂବଲପୁର ରେଢାଖୋଲ ଯୁଗ୍ମ
- ଭିକାରି ଘାସି
- ଶ୍ରଦ୍ଧାକର ସୁପକାର

ଝାରସୁଗୁଡା ରଂପେଲା ଯୁଗ୍ମ
- ବିଜୟ କୁମାର ପାଣି
- ମନୋହର ନାୟକ

ବାମଣ୍ଡା ଯୁଗ୍ମ - ହରପ୍ରସାଦ ଦେବ
- ଜୟଦେବ ଠାକୁର

## ୧୯୫୭ (୨ୟ)

ଭବାନୀପାଟଣା ଯୁଗ୍ମ - ପ୍ରତାପକେଶରୀ ଦେଓ
- କରୁଣାକର ଭୋଇ

କାଶୀପୁର ଯୁଗ୍ମ - କିଶୋର ଚନ୍ଦ୍ର ଦେଓ
- ମାଣିକରାୟ ନାୟକ

ଧରମଗଡ଼ ଯୁଗ୍ମ - ଜିତେନ୍ଦ୍ର ମାଝି
- ବୀରକିଶୋର ଦାସ

ନୂଆପଡ଼ା ଯୁଗ୍ମ - ଅନୁପ ସିଂହ ଦେଓ
- ଘାସିରାମ ମାଝି

ଟିଟିଲାଗଡ଼ ଯୁଗ୍ମ - ରାଜେନ୍ଦ୍ର ନାରାୟଣ ସିଂହଦେଓ
- ଅଚ୍ୟୁତାନନ୍ଦ ମହାନନ୍ଦ

ପାଟଣାଗଡ ଯୁଗ୍ମ - ଅଇଁଠୁ ସାହୁ
- ଆଶ୍ରମ ଭୋଇ

ଲୋଇସିଂହା - ରାମପ୍ରସାଦ ମିଶ୍ର

ବଲାଂଗିର ଯୁଗ୍ମ - ନନ୍ଦକିଶୋର ମିଶ୍ର
- ରମେଶ ଚନ୍ଦ୍ର ଭୋଇ

ସୋନପୁର ଯୁଗ୍ମ - ଅନନ୍ତରାମ ନନ୍ଦ
- ଦୌଲତ ଗଣ୍ଡା

ପଦ୍ମପୁର ଯୁଗ୍ମ - ବୀରବିକ୍ରମ ସିଂହବରିହା
- ଲାଲ ମିତ୍ରୋଦୟ ସିଂହବରିହା

ବରଗଡ଼ ଯୁଗ୍ମ - ନିକୁଞ୍ଜ ବିହାରୀ ସିଂହ
- ମହାନନ୍ଦ ବାହାଦୁର

ଭଟଲି – ନଟବର ବାଂଛୋର
ସଂବଲପୁର ଯୁଗ୍ମ – ଭୀକାରି ଘାସି
– ଲକ୍ଷ୍ମୀପ୍ରସାଦ ମିଶ୍ର
କରେବଗା – ପୁରୁଷୋତ୍ତମ ପଂଡା
ଦେବଗଡ଼ ଯୁଗ୍ମ – ଜୟଦେବ ଠାକୁର
– ରାଣୀ ଜ୍ୟୋତିର୍ମଂଜରୀ ଦେବୀ
ଝାରସୁଗୁଡ଼ା ଯୁଗ୍ମ – ମନୋହର ନାୟକ
– ବିଜୟ କୁମାର ପାଣି

## ୧୯୬୧ ମଧ୍ୟବର୍ତୀକାଳୀନ

ମଦନପୁର ରାମପୁର – ବୀରକେଶରୀ ଦେଓ
ଭବାନୀପାଟଣା – ଅଂଚଳ ମାଝି
କାଶୀପୁର – ନବକୁମାରୀ ଦେବୀ
କୋକସରା – ଦୟାନିଧି ନାୟକ
ଜୁନାଗଡ଼ – ମହେଶ୍ୱର ନାୟକ
ଧରମଗଡ଼ – ମୁକୁନ୍ଦ ନାୟକ
ଖଡିଆଳ – ଅନୁପ ସିଂହଦେଓ
ନୂଆପଡା – ଘାସିରାମ ମାଝି
କଣ୍ଟାବାଂଝି – ରାଜେନ୍ଦ୍ର ନାରାୟଣ ସିଂହଦେଓ
ଟିଟିଲାଗଡ଼ – ଅଚ୍ୟୁତାନଂଦ ମହାନଂଦ
ସଇଁତଲା – ଅଇଁଠୁ ସାହୁ
ପାଟଣାଗଡ଼ – ଶୋଭାକର ବରିହା
ଲୋଇସିଂହା – ରାମପ୍ରସାଦ ମିଶ୍ର
ତୁଷୁରା – ନଂଦକିଶୋର ମିଶ୍ର
ବିନିକା – ଅନଂତରାମ ନଂଦ
ସୋନପୁର – ଦୌଲତ ଗଂଡା
ମେଲଛାମୁଂଡା – ସଚ୍ଚିଦାନଂଦ ପାଢୀ
ପଦ୍ମପୁର – ବୀର ବିକ୍ରମାଦିତ୍ୟ ସିଂହ ବରିହା
ବରଗଡ଼ – ଗଣନାଥ ପ୍ରଧାନ

ବିଜେପୁର – ମୋହନ ନାଗ
ଭଟଲି – ସରସ୍ୱତୀ ପ୍ରଧାନ
ସଂବଲପୁର – ବନମାଳୀ ବାବୁ
ଅତାବିରା – ଦଳଗଂଜନ ଛୁରିଆ
କତରବଗା – ବିଷ୍ଣୁପ୍ରସାଦ ମିଶ୍ର
ଦେବଗଡ଼ – ଜୟଦେବ ଠାକୁର
ରେଢ଼ାଖୋଲ – ରାଜା ଭାନୁଗଙ୍ଗ ତ୍ରିଭୁବନ ଦେଓ
ବ୍ରଜରାଜନଗର – ପ୍ରସନ୍ନ କୁମାର ପଂଡା
ଝାରସୁଗୁଡ଼ା – ବିନୋଦ ବିହାରୀ ବରିହା

## ୧୯୬୭

ନୂଆପଡ଼ା – ଓଁକାରସିଂହ ମାଝି
ଖଡ଼ିଆଳ – ଅନୁପସିଂହ ଦେଓ
ଧରମଗଡ଼ – ଲୋଚନ ଧାଂଗଡ଼ ମାଝି
କୋକସରା – ରଘୁନାଥ ପ୍ରହରାଜ
ଜୁନାଗଡ଼ – ମହେଶ୍ୱର ନାୟକ
ଭବାନୀପାଟଣା – ଦୟାନିଧି ନାୟକ
ନରଲା – ଅଂଚଳ ମାଝି
କେଶିଂଗା – ଭଗବାନ ଭୋଇ
ସୋନପୁର – ନୀଳାଂବର ରାଜଗୁରୁ
ବିନିକା – ନରସିଂହ ଚରଣ ମିଶ୍ର
ତୁଷୁରା – ରାଧାମୋହନ ମିଶ୍ର
ବଲାଂଗିର – ରାଜେନ୍ଦ୍ର ନାରାୟଣ ସିଂହଦେଓ
ଲୋଇସଂହା – ନଂଦକିଶୋର ମିଶ୍ର
ପାଟଣାଗଡ଼ – ଅଇଁଠୁ ସାହୁ
ସଇଁତଲୋ – ରମେଶ ଚଂଦ୍ର ଭୋଇ
ଟିଟିଲାଗଡ଼ – ଅଚ୍ୟୁତାନଂଦ ମହାନଂଦ
କଂଟାବାଂଜି – ଲୋକନାଥ ରାୟ
ପଦ୍ମପୁର – ବୀରବିକ୍ରମାଦିତ୍ୟ ସିଂହବରିହା

| | |
|---|---|
| ମେଲଛାମୁଂଡା | - ବୀରେଂଦ୍ର କୁମାର ସାହୁ |
| ବିଜେପୁର | - ମୋହନ ନାଗ |
| ଭଟଲି | - ସରସ୍ୱତୀ ପ୍ରଧାନ |
| ବରଗଡ଼ | - ଭରତଚଂଦ୍ର ହୋତା |
| ସଂବଲପୁର | - ବନମାଳୀ ବାବୁ |
| ବ୍ରଜରାଜନଗର | - ପ୍ରସନ୍ନ କୁମାର ପଂଡା |
| ଝାରସୁଗୁଡ଼ା | - ମୁରାରି ପ୍ରସାଦ ମିଶ୍ର |
| ଲଇକେର | - ଲାଲ ରାଜେଂଦ୍ର ସିଂହ |
| କୁଚିଂଡା | - କହ୍ନେଇ ସିଂହ |
| ରେଢ଼ାଖୋଲ | - ଭିକାରୀ ସୁନା |
| ଦେବଗଡ଼ | - ରାଜା ଭାନୁଗଂଗ ତ୍ରିଭୁବନ ଦେବ |

## ୧୯୭୧

| | |
|---|---|
| ନୂଆପଡ଼ା | - ଘାସିରାମ ମାଝି |
| ଖଡିଆଳ | - ଅନୁପସିଂହ ଦେଓ |
| ଧରମଗଡ଼ | - ଲୋଚନ ଧାଂଗଡ ମାଝି |
| କୋକସରା | - ବୀରକେଶରୀ ଦେଓ |
| ଜୁନାଗଡ | - ତ୍ରିନାଥ ସରାବ |
| ଭବାନିପାଟଣା | - ଦୟାନିଧି ନାୟକ |
| ନରଲା | - ଧନେଶ୍ୱର ମାଝି |
| କେଶିଂଗା | - ଭଗବାନ ଭୋଇ |
| ସୋନପୁର | - ନୀଳଂବର ରାଜଗୁରୁ |
| ବିନିକା | - ନୃସିଂହ ଚରଣ ମିଶ୍ର |
| ତୁଷରା | - ରାଧାମୋହନ ମିଶ୍ର |
| ଲୋଇସିଂହା | - ନଂଦକିଶୋର ମିଶ୍ର |
| ପାଟଣାଗଡ଼ | - ଅଇଁଠୁ ସାହୁ |
| ସଇଁତଲା | - ରମେଶଚଂଦ୍ର ସିଂହଭୋଇ |
| ଟିଟିଲାଗଡ଼ | - ତାପି ଜାଲ |
| କଣ୍ଟାବାଂଜି | - ଅଚ୍ୟୁତାନଂଦ ମହାନଂଦ |

| | |
|---|---|
| ପଦ୍ମପୁର | - କୃପାସିଂଧୁ ଭୋଇ |
| ମେଲଛାମୁଂଡା | - ବୀରେଂଦ୍ର କୁମାର ସାହୁ |
| ବିଜେପୁର | - ତ୍ରିବିକ୍ରମ ମଲିକ |
| ଭଟଲି | - ନଟବର ବଂଛୋର |
| ବରଗଡ଼ | - ଚିତ୍ତରଂଜନ କର |
| ସଂବଲପୁର | - ଶ୍ରୀବଲ୍ଲଭ ପାଣିଗ୍ରାହୀ |
| ବ୍ରଜରାଜନଗର | - ଉପେଂଦ୍ର ଦୀକ୍ଷିତ |
| ଝାରସୁଗୁଡା | - ଝସ କେତନ ସାହୁ |
| ଲଇକେରା | - ରାମେଶ୍ୱର ନାୟକ |
| କୁଚିଂଡା | - ଜଗତେଶ୍ୱର ମିର୍ଦ୍ଧା |
| ରେଢ଼ାଖୋଲ | - ଅଭିମନ୍ୟୁ କୁଂଭାର |
| ଦେବଗଡ଼ | - ଭାନୁଗଂଗ ତ୍ରିଭୁବନଦେବ |

## କଳାହାଂଡି

| | |
|---|---|
| ନୂଆପଡ଼ା | ୧୯୭୪-ଜଗନ୍ନାଥ ପଟ୍ଟନାୟକ |
| | ୧୯୭୭-ଘାସିରାମ ମାଝି |
| | ୧୯୮୦-ଭାନୁପ୍ରକାଶ ଯୋଷୀ |
| | ୧୯୮୫-ଘାସିରାମ ମାଝି |
| | ୧୯୯୦-ଘାସିରାମ ମାଝି |
| | ୧୯୯୫-ଘାସିରାମ ମାଝି |
| | ୨୦୦୦-ବସଂତ କୁମାର ପଂଡା |
| | ୨୦୦୪-ରାଜେଂଦ୍ର ଢ଼ୋଲକିଆ |
| ଖଡ଼ିଆଳ | ୧୯୭୪-ଅନୁପ ସିଂହଦେଓ |
| | ୧୯୭୭-କପିଳନାରାୟଣ ତେୱାରୀ |
| | ୧୯୮୦-ଅନୁପ ସିଂହଦେଓ |
| | ୧୯୮୫-ଅନୁପ ସିଂହଦେଓ |
| | ୧୯୯୦-ଦୁର୍ଯୋଧନ ମାଝି |

୧୯୯୫-ଦୁର୍ଯୋଧନ ମାଝି
୨୦୦୦-ଦୁର୍ଯୋଧନ ମାଝି
୨୦୦୪-ଦୁର୍ଯୋଧନ ମାଝି

ଧର୍ମଗଡ଼ ୧୯୭୪-ଦୟାନିଧି ନାୟକ
୧୯୭୭-ଗଜାନନ ନାୟକ
୧୯୮୦-ଗଜାନନ ନାୟକ
୧୯୮୫-ଜୁଗରାଜ ବେହେରା
୧୯୯୦-ଭରତ କୁମାର ବେମଲ
୧୯୯୫-ବୀର ସିପିକା
୨୦୦୦-ବୀର ସିପିକା
୨୦୦୪-ବୀର ସିପିକା

କୋକସରା ୧୯୭୪-ଚନ୍ଦ୍ରଭାନୁ ସିଂଦେଓ
୧୯୭୭-ରାସ ବିହାରୀ ବେହେରା
୧୯୮୦-ମନମୋହନ ମାଥୁର
୧୯୮୫-ରାସବିହାରୀ ବେହେରା
୧୯୯୦-ସୁରେନ୍ଦ୍ର ପାଟଯୋଷୀ
୧୯୯୫-ରୋସନି ସିଂହଦେଓ
୨୦୦୦-ରୋସନି ସିଂହଦେଓ
୨୦୦୪-ପୁଷ୍ପେନ୍ଦ୍ର ସିଂହଦେଓ

ଜୁନାଗଡ଼ ୧୯୭୪-ଉଦ୍ଦିତ ପ୍ରତାପ ଦେଓ
୧୯୭୭-ମହେଶ୍ୱର ବରାଡ଼
୧୯୮୦-ମହେଶ୍ୱର ବରାଡ଼
୧୯୮୫-ବିକ୍ରମ କେଶରୀ ଦେଓ
୧୯୯୦-ବିକ୍ରମ କେଶରୀ ଦେଓ
୧୯୯୫-ବିକ୍ରମ କେଶରୀ ଦେଓ
୨୦୦୦-ହିମାଂଶୁ ଶେଖର ମେହେର
୨୦୦୪-ହିମାଂଶୁ ଶେଖର ମେହେର

ଭବାନୀପାଟଣା
୧୯୭୪-ଜଗମୋହନ ନାୟକ
୧୯୭୭-ଦୟାନିଧି ନାୟକ
୧୯୮୦-ଦୟାନିଧି ନାୟକ
୧୯୮୫-ଭକ୍ତଚରଣ ଦାସ
୧୯୯୦-ଅଜିତ ଦାସ
୧୯୯୫-ପ୍ରଦୀପ କୁମାର ମାଝି
୨୦୦୦-ପ୍ରଦୀପ କୁମାର ନାୟକ
୨୦୦୪-ପ୍ରଦୀପ କୁମାର ନାୟକ

ନରଲା ୧୯୭୪-ଧନେଶ୍ୱର ମାଝି
୧୯୭୭-ତେଜରାଜ ମାଝି
୧୯୮୦-ତେଜରାଜ ମାଝି
୧୯୮୫-କୁମରମଣି ଶବର
୧୯୯୦-ବଳଭଦ୍ର ମାଝି
୧୯୯୫-ବଳଭଦ୍ର ମାଝି
୨୦୦୦-ବଳଭଦ୍ର ମାଝି
୨୦୦୪-ବଳଭଦ୍ର ମାଝି

କେଶିଂଗା ୧୯୭୪-ଶରତଚନ୍ଦ୍ର ସିଂହଦେଓ
୧୯୭୭-ନଗେନ୍ଦ୍ର ନାଥ ଚୌଧୁରୀ
୧୯୮୦-ଭୁପିନ୍ଦର ସିଂହ
୧୯୮୫-ଭୁପିନ୍ଦର ସିଂହ
୧୯୯୦-କିରଣ ଚନ୍ଦ୍ର ସିଂହଦେଓ
୧୯୯୫-ଭୁପିନ୍ଦର ସିଂହ
୨୦୦୦-ଧନେଶ୍ୱର ମାଝି
୨୦୦୪-ଧନେଶ୍ୱର ମାଝି

# ବଲାଂଗିର

କଂଟାବାଂଜି ୧୯୭୪-ରାମପ୍ରସାଦ ମିଶ୍ର
୧୯୭୭-ପ୍ରସନ୍ନ କୁମାର ପାଲ
୧୯୮୦-ପ୍ରସନ୍ନ କୁମାର ପାଲ
୧୯୮୫-ଚୈତନ୍ୟ ପ୍ରଧାନ
୧୯୯୦-ପ୍ରସନ୍ନ କୁମାର ପାଲ
୧୯୯୫-ସଂତୋଷସିଂହ ସାଲୁଜା
୨୦୦୦-ସଂତୋଷସିଂହ ସାଲୁଜା
୨୦୦୪-ହାଜିମହମଦ ଆୟୁବଖାଁ

ଟିଟିଲାଗଡ଼ ୧୯୭୪-ତାପି ଢାଲ
୧୯୭୭-ଲଳିତମୋହନ ଗାଂଧି
୧୯୮୦-ଲଳିତମୋହନ ଗାଂଧି
୧୯୮୫-ପ୍ରଫୁଲ୍ଲଚଂଦ୍ର ମହାନଂଦ
୧୯୯୦-ଯୋଗେଂଦ୍ର ବେହେରା
୧୯୯୫-ଯୋଗେଂଦ୍ର ବେହେରା
୨୦୦୦-ଯୋଗେଂଦ୍ର ବେହେରା
୨୦୦୪-ଯୋଗେଂଦ୍ର ବେହେରା

ସଇଁତଲା ୧୯୭୪-କୃଷ୍ଣଚଂଦ୍ର ପଂଡା
୧୯୭୭-ସୁବାସଚଂଦ୍ର ନାଗ
୧୯୮୦-ରମେଶଚଂଦ୍ର ସିଂହଭୋଇ
୧୯୮୫-ରାଧାକାଂତ ପଂଡା
୧୯୯୦-ଯୋଗେଶ୍ୱର ବାବୁ
୧୯୯୫-ସୁରେଂଦ୍ରସିଂହ ଭୋଇ
୨୦୦୦-ସୁରେଂଦ୍ରସିଂହ ଭୋଇ
୨୦୦୪-କାଳିକେଶ ନାରାୟଣ ସିଂହଦେଓ

ପାଟଣାଗଡ଼ ୧୯୭୪-ଅଇଁଠୁ ସାହୁ
୧୯୭୭-ବିବେକାନଂଦ ମେହେର
୧୯୮୦-ବ୍ରଜମୋହନ ଠାକୁର
୧୯୮୫-ଡଃ ସୁଶୀଲ କୁମାର ପୃଷ୍ଟି
୧୯୯୦-ବିବେକାନଂଦ ମେହେର
୧୯୯୫-କନକବର୍ଦ୍ଧନ ସିଂହଦେଓ
୨୦୦୦-କନକବର୍ଦ୍ଧନ ସିଂହଦେଓ
୨୦୦୪-କନକବର୍ଦ୍ଧନ ସିଂହଦେଓ

ଲୁଇସିଂହା ୧୯୭୪-ଅନଂଗ ଉଦୟ ସିଂହଦେଓ
୧୯୭୭-ରାମପ୍ରସାଦ ମିଶ୍ର
୧୯୮୦-ବାଲଗୋପାଳ ମିଶ୍ର
୧୯୮୫-ବାଲଗୋପାଳ ମିଶ୍ର
୧୯୯୦-ନରସିଂହ ମିଶ୍ର
୧୯୯୫-ବାଲଗୋପାଳ ମିଶ୍ର
୨୦୦୦-ବାଲଗୋପାଳ ମିଶ୍ର
୨୦୦୪-ନରସିଂହ ମିଶ୍ର

ବଲାଂଗିର ୧୯୭୪-ରାଜେଂଦ୍ର ନାରାୟଣ ସିଂଦେଓ
୧୯୭୭-ମୁରଲିଧର ଗୁରୁ
୧୯୮୦-ମହମ୍ମଦ ମୁଜାଫର ହୁସେନ ଖାଁ
୧୯୮୫-ମହମ୍ମଦ ମୁଜାଫର ହୁସେନ ଖାଁ
୧୯୯୦-ଅନଂଗ ଉଦୟ ସିଂହଦେଓ
୧୯୯୫-ଅନଂଗ ଉଦୟ ସିଂହଦେଓ
୨୦୦୦-ଅନଂଗ ଉଦୟ ସିଂହଦେଓ
୨୦୦୪-ଅନଂଗ ଉଦୟ ସିଂହଦେଓ

ବିନିକା ୧୯୭୪-ରାଧାମୋହନ ମିଶ୍ର
୧୯୭୭-ପରିକ୍ଷିତ କରଣ
୧୯୮୦-ପ୍ରଦୀପ ହୋତା

୧୯୮୫-ଚିତ୍ତରଂଜନ ମିଶ୍ର
୧୯୯୦-ପଂଚାନନ ମିଶ୍ର
୧୯୯୫-ନରସିଂହ ମିଶ୍ର
୨୦୦୦-ନିରଂଜନ ପୁଜାରୀ
୨୦୦୪-ନିରଂଜନ ପୁଜାରୀ

ସୋନପୁର ୧୯୭୪-ଦଉଲତ ବାଗ
୧୯୭୭-ଦେବରାଜ ସେଠୀ
୧୯୮୦-ଧନେଶ୍ୱର କୁମ୍ଭାର
୧୯୮୫-ଅଚ୍ୟୁତ ବିଶ୍ୱାଳ
୧୯୯୦-କୁନ୍ଦରୁ କୁଶଳ
୨୦୦୦-କୁଂଦରୁ କୁଶଳ
୨୦୦୪-ବିନୋଦ ପାତ୍ର

ବୀରମହାରାଜପୁର
୧୯୭୪-ହୃଷିକେଶ ହୋତା
୧୯୭୭-ସୁରେଂଦ୍ର ପ୍ରଧାନ
୧୯୮୦-ହୃଷିକେଶ ହୋତା
୧୯୮୫-କାର୍ତ୍ତିକ ପ୍ରସାଦ ତରିଆ
୧୯୯୦-ରବିନାରାୟଣ ପାଣିଗ୍ରାହୀ
୧୯୯୫-ରାମଚଂଦ୍ର ପ୍ରଧାନ
୨୦୦୦-ବୈଷ୍ଣବ ପ୍ରଧାନ
୨୦୦୪-ସଂଜୀବ ସାହୁ

## ସଂବଲପୁର

ବିଜେପୁର
୧୯୭୪-ଗଣନାଥ ପ୍ରଧାନ
୧୯୭୭-ନିତ୍ୟାନଂଦ ଗଡ଼ତିଆ
୧୯୮୦-ରାଜୀବ ଲୋଚନ ହୋତା

୧୯୮୫-ନିକୁଂଜ ବିହାରି ସିଂହ
୧୯୯୦-ନିକୁଂଜ ବିହାରି ସିଂହ
୧୯୯୫-ରିପୁନାଥ ସେଠ
୨୦୦୦-ଅଶୋକ କୁମାର ପାଣିଗ୍ରାହୀ
୨୦୦୪-ସୁବଳ ସାହୁ

ମେଲଛାମୁଂଡା
୧୯୭୪-ପ୍ରକାଶ ଚଂଦ୍ର ଦେବତା
୧୯୭୭-ବୀରେଂଦ୍ର କୁମାର ସାହୁ
୧୯୮୦-ପ୍ରକାଶ ଚଂଦ୍ର ଦେବତା
୧୯୮୫-ପ୍ରକାଶ ଚଂଦ୍ର ଦେବତା
୧୯୯୦-ମୁରାରି ପ୍ରସାଦ ମିଶ୍ର
୧୯୯୫-ପ୍ରକାଶ ଚଂଦ୍ର ଦେବତା
୨୦୦୦-ପ୍ରକାଶ ଚଂଦ୍ର ଦେବତା
୨୦୦୪-ରଫିକ ଅହମ୍ମଦ

ପଦ୍ମପୁର ୧୯୭୪-କୃପାସିନ୍ଧୁ ଭୋଇ
୧୯୭୭-ବୀରବିକ୍ରମାଦିତ୍ୟ ସିଂହ ବରିହା
୧୯୮୦-ସତ୍ୟଭୂଷଣ ସାହୁ
୧୯୮୫-ସତ୍ୟଭୂଷଣ ସାହୁ
୧୯୯୦-ବିଜୟ ରଂଜନସିଂହ ବରିହା
୧୯୯୫-ପ୍ରକାଶ ଚଂଦ୍ର ଦେବତା
୨୦୦୦-ବିଜୟ ରଂଜନ ସିଂହ ବରିହା
୨୦୦୪-ସତ୍ୟଭୂଷଣ ସାହୁ

ବରଗଡ଼ ୧୯୭୪-ନବୀନ କୁମାର ପ୍ରଧାନ
୧୯୭୭-ନବୀନ କୁମାର ପ୍ରଧାନ
୧୯୮୦-ଯଦୁମଣି ପ୍ରଧାନ

୧୯୮୫-ଯଦୁମଣି ପ୍ରଧାନ
୧୯୯୦-ପ୍ରସନ୍ନ ଆଚାର୍ଯ
୧୯୯୫-ପ୍ରସନ୍ନ ଆଚାର୍ଯ
୨୦୦୦-ଆନନ୍ଦ ଆଚାର୍ଯ
୨୦୦୪-ଆନନ୍ଦ ଆଚାର୍ଯ

ଭଟଲି ୧୯୭୪-ମୋହନ ନାଗ
୧୯୭୭-ବିଂବାଧର କୁଅଁର
୧୯୮୦-ମୋହନ ନାଗ
୧୯୮୫-ମୋହନ ନାଗ
୧୯୯୦-କୁମର ବେହେରା
୧୯୯୫-ମୋହନ ନାଗ
୨୦୦୦-ବିଂବାଧର କୁଅଁର
୨୦୦୪-ବିଂବାଧର କୁଅଁର

ସଂବଲପୁର
୧୯୭୪-ଶ୍ରୀ ବଲ୍ଲଭ ପାଣିଗ୍ରାହୀ
୧୯୭୭-ଡ. ଯଶ କେତନ ସାହୁ
୧୯୮୦-ଅଶ୍ୱିନୀ କୁମାର ଗୁରୁ
୧୯୮୫-ଶ୍ରଦ୍ଧାକର ସୂପକାର
୧୯୯୦-ଦୁର୍ଗାଶଙ୍କର ପଟ୍ଟନାୟକ
୧୯୯୫-ଦୁର୍ଗାଶଙ୍କର ପଟ୍ଟନାୟକ
୨୦୦୦-ଜୟ ନାରାୟଣ ମିଶ୍ର
୨୦୦୪-ଜୟ ନାରାୟଣ ମିଶ୍ର

କୁଚିଣ୍ଡା ୧୯୭୪-ଜଗଦୀଶ୍ୱର ମିର୍ଦ୍ଧା
୧୯୭୭-ଜଗଦୀଶ୍ୱର ମିର୍ଦ୍ଧା
୧୯୮୦-ଜଗଦୀଶ୍ୱର ମିର୍ଦ୍ଧା
୧୯୮୫-ଜଗଦୀଶ୍ୱର ମିର୍ଦ୍ଧା
୧୯୯୦-ବୃନ୍ଦାବନ ମାଝି
୧୯୯୫-ପୂର୍ଣ୍ଣଚନ୍ଦ୍ର ନାୟକ
୨୦୦୦-ରବି ନାରାୟଣ ନାୟକ
୨୦୦୪-ରବି ନାରାୟଣ ନାୟକ

ଲାଇକେରା ୧୯୭୪-ହେମାନନ୍ଦ ବିଶ୍ୱାଳ
୧୯୭୭-ରାମେଶ୍ୱର ସିଂହ ନାୟକ
୧୯୮୦-ହେମାନନ୍ଦ ବିଶ୍ୱାଳ
୧୯୮୫-ହେମାନନ୍ଦ ବିଶ୍ୱାଳ
୧୯୯୦-ହେମାନନ୍ଦ ବିଶ୍ୱାଳ
୧୯୯୫-ହେମାନନ୍ଦ ବିଶ୍ୱାଳ
୨୦୦୦-ହେମାନନ୍ଦ ବିଶ୍ୱାଳ
୨୦୦୪-ବୃନ୍ଦାବନ ମାଝି

ଦେବଗଡ଼ ୧୯୭୪-ରାଜାଭାନୁଗଂଗ ଦେବ
୧୯୭୭-ରାଜାଭାନୁଗଂଗ ଦେବ
୧୯୮୦-ଅଶ୍ୱିନୀ କୁମାର ବେହେରା
୧୯୮୫-ରାଜ କିଶୋର ପ୍ରଧାନ
୧୯୯୦-ରାଜ କିଶୋର ପ୍ରଧାନ
୧୯୯୫-ରାଜ କିଶୋର ପ୍ରଧାନ
୨୦୦୦-ସୁବାସ ଚନ୍ଦ୍ର ପାଣିଗ୍ରାହୀ
୨୦୦୪-ନିତେଶ ଗଂଗଦେବ

ରେଢ଼ାଖୋଲ
୧୯୭୪-ବସନ୍ତ କୁମାର ମହାନନ୍ଦ
୧୯୭୭-ବସନ୍ତ କୁମାର ମହାନନ୍ଦ
୧୯୮୦-ଅଭିମନ୍ୟୁ କୁମ୍ଭାର

୧୯୮୫-ଅଭିମନ୍ୟୁ କୁଁଭାର
୧୯୯୦-ଅଭିମନ୍ୟୁ କୁଁଭାର
୧୯୯୫-ଅଭିମନ୍ୟୁ କୁଁଭାର
୨୦୦୦-ଦୁର୍ଯୋଧନ ସୋହେଲ
୨୦୦୪-ସନାତନ ବିଶି

ବ୍ରଜରାଜ ନଗର

୧୯୭୪-ପ୍ରସନ୍ନ କୁମାର ପଂଡା
୧୯୭୭-ଉପେନ୍ଦ୍ର ଦୀକ୍ଷିତ
୧୯୮୦-ଉପେନ୍ଦ୍ର ଦୀକ୍ଷୀତ
୧୯୮୫-ପ୍ରସନ୍ନ କୁମାର ପଂଡା
୧୯୯୦-ପ୍ରସନ୍ନ କୁମାର ପଂଡା
୧୯୯୫-ଅଭିମନ୍ୟୁ କୁମ୍ଭାର
୨୦୦୦-ଅନୁପ କୁମାର ସାଏ
୨୦୦୦-ଅନୁପ କୁମାର ସାଏ

ଝାରସୁଗୁଡ଼ା

୧୯୭୪-ସୈରିଂଧ୍ରୀ ନାୟକ
୧୯୭୭-ସୈରିଂଧ୍ରୀ ନାୟକ
୧୯୮୦-ବୀରେନ୍ଦ୍ର ପାଂଡେ
୧୯୮୫-ବୀରେନ୍ଦ୍ର ପାଂଡେ
୧୯୯୦-କିଶୋର କୁମାର ମହାଂତି
୧୯୯୫-ବୀରେନ୍ଦ୍ର ପାଂଡେ
୨୦୦୦-କିଶୋର କୁମାର ମହାଂତି
୨୦୦୪-କିଶୋର କୁମାର ମହାଂତି

## ଓଡ଼ିଶା ମଂତ୍ରୀମଂଡଳ ସଭ୍ୟ ଅବିଭକ୍ତ ସଂବଲପୁର, ବଲାଂଗିର, କଳାହାଂଡି ଜିଲ୍ଲା

୧୯୩୭-ବୋଧରାମ ଦୁବେ
୧୯୪୮-ଲାଲ ରଣଜିତ ସିଂହବରିହା
୧୯୫୦-ଲାଲ ରଣଜିତ ସିଂହବରିହା
୧୯୫୪-ତୀର୍ଥବାସୀ ପ୍ରଧାନ
-ଅନୁପ ସିଂହଦେଓ
୧୯୫୭-ଅନୁପ ସିଂହଦେଓ

୨ୟ ବିଧାନ ସଭା

୧୯୫୭-ବୀର ବିକ୍ରମ ସିଂହବରିହା
୧୯୫୯-ରାଜେନ୍ଦ୍ର ନାରାୟଣ ସିଂହଦେଓ
-ଲକ୍ଷ୍ମୀପ୍ରସାଦ ମିଶ୍ର
-ରାମପ୍ରସାଦ ମିଶ୍ର

୩ୟ ବିଧାନ ସଭା

୧୯୬୧-ସରସ୍ୱତୀ ପ୍ରଧାନ
-ବୀରବିକ୍ରମସିଂହ ବରିହା
୧୯୬୩-ବନମାଳୀ ବାବୁ
ଉପମଂତ୍ରୀ-ସରସ୍ୱତୀ ପ୍ରଧାନ



ପୁନର୍ଗଠିତ ସଦାଶିବ ତ୍ରିପାଠୀଙ୍କ ମଂତ୍ରୀମଂଡଳରେ ବନମାଳୀବାବୁ ରାମପ୍ରସାଦ ମିଶ୍ର, ଉପମଂତ୍ରୀ ସରସ୍ୱତୀ ନାୟକ, ଅନୁପ ସିଂହଦେଓ।

### ୪ର୍ଥ ବିଧାନ ସଭା

୧୯୪୭-ରାଜେଂଦ୍ର ନାରାୟଣ ସିଂହଦେଓ
-ମୁରାରି ପ୍ରସାଦ ମିଶ୍ର
-ଦୟାନିଧି ନାୟକ

### ୫ମ ବିଧାନ ସଭା

୧୯୭୧ -ରାଜେଂଦ୍ର ନାରାୟଣ ସିଂହଦେଓ
-ଦୟାନିଧି ନାୟକ
-ଅଇଁଠୁ ସାହୁ
ଉପମନ୍ତ୍ରୀ-ଘାସିରାମ ମାଝି,
-ଭାନୁଗଂଗ ତ୍ରିଭୁବନ ଦେବ
୧୯୭୨-ଶ୍ରୀବଲ୍ଲଭ ପାଣିଗ୍ରାହୀ
-ଅଚ୍ୟୁତାନଂଦ ମହାନଂଦ
ରାଜ୍ୟମନ୍ତ୍ରୀ-କୃପାସିଂଧୁ ଭୋଇ

### ୬ଷ୍ଠ ବିଧାନ ସଭା

୧୯୭୪-ଶ୍ରୀବଲ୍ଲଭ ପାଣିଗ୍ରାହୀ
ରାଜ୍ୟମନ୍ତ୍ରୀ-କୃପାସିଂଧୁ ଭୋଇ
ଉପମଂତ୍ରୀ-ଜଗନ୍ନାଥ ପଟ୍ଟନାୟକ

### ୭ମ ବିଧାନ ସଭା

୧୯୭୭-ରାମପ୍ରସାଦ ମିଶ୍ର
-ଝସକେତନ ସାହୁ
ରାଜ୍ୟମଂତ୍ରୀ-ଘାସିରାମ ମାଝି
-ମୁରଲିଧର ଗୁରୁ

### ୮ମ ବିଧାନ ସଭା

୧୯୮୦-ଉପେଂଦ୍ର ଦୀକ୍ଷିତ
-ଦୟାନିଧି ନାଏକ
-ରାଜ୍ୟମଂତ୍ରୀ,
ଲଳିତମୋହନ ଗାଂଧି

### ୯ମ ବିଧାନ ସଭା

୧୯୮୫- ଅନୁପସିଂହଦେଓ, ରାମବିହାରୀ ବେହେରା, ରାଜ୍ୟମନ୍ତ୍ରୀ- ହେମାନଂଦ ବିଶ୍ୱାଳ, ମୁଜାଫର ହୋସେନ ଖାଁ, ମୋହନ ନାଗ, ଭୂପିଂଦର ସିଂହ, ପ୍ରକାଶ ଚଂଦ୍ର ଦେବତା।

### ୧୦ମ ବିଧାନ ସଭା

୧୯୯୦ - ଘାସିରାମ ମାଝି, ନରସିଂହ ମିଶ୍ର, ରାଜ୍ୟମନ୍ତ୍ରୀ-ପ୍ରସନ୍ନ ଆଚାର୍ଯ୍ୟ, କିରଣ ଚଂଦ୍ର ସିଂହ ଦେଓ, ବସଂତ କୁମାର ମହାନଂଦ।

୧୯୯୫-ହେମାନଂଦ ବିଶ୍ୱାଳ, ଭୂପିଂଦର ସିଂହ, ରାଜ୍ୟମଂତ୍ରୀ-ପ୍ରକାଶଚଂଦ୍ର ଦେବତା।

୧୯୯୮-ଭୂପିଂଦର ସିଂହ, ଜଗନ୍ନାଥ ପଟ୍ଟନାୟକ, ଦୁର୍ଗାଶଂକର ପଟ୍ଟନାୟକ, ରାଜ୍ୟମନ୍ତ୍ରୀ ମୋହନନାଗ, ପ୍ରକାଶ ଚଂଦ୍ର ଦେବତା, ରିପୁନାଥ ସେଠ୍, ସୁରେଂଦ୍ର ସିଂହ ଭୋଇ।

୨୦୦୦-ଅନଂଗ ଉଦୟ ସିଂହଦେଓ, କନକ ବର୍ଦ୍ଧନ ସିଂହଦେଓ, ରାଜ୍ୟମଂତ୍ରୀ-ଦୁର୍ଯୋଧନ ମାଝି, ବିଂବାଧର କୁଅଁର, ହିମାଂଶୁ ଶେଖର ମେହେର, ବଳଭଦ୍ର ମାଝି, ଆନଂଦ ଚଂଦ୍ର ଆଚାର୍ଯ୍ୟ।

୨୦୦୪-ଅନଂଗ ଉଦୟ ସିଂହଦେଓ, କନବର୍ଦ୍ଧନ ସିଂହଦେଓ, ଜୟନାରାୟଣ ମିଶ୍ର, ବଳଭଦ୍ର ମାଝି, ପ୍ରଦୀପକୁମାର ନାୟକ।

# ସହାୟକ ଗ୍ରଂଥସୂଚୀ


୧. ଉପେକ୍ଷିତ ବରପୁତ୍ର ଓଡ଼ିଶା ସାଂସ୍କୃତିକ ସମାଜ ସଂବଲପୁର-୧ମ ଓ ୨ୟ ଭାଗ (ଖ୍ରୀ ୧୯୯୨ ଓ ୨୦୦୨)

୨. ଗାଂଧି ସ୍ମୃତି ପାଠାଗାର ପକ୍ଷରୁ ପ୍ରକାଶିତ - ବରଗଡ଼ ବରପୁତ୍ର ୫ମ ଓ ୬ଷ୍ଠରୁ ୧୧ଶ ସଂଖ୍ୟା-ଏକ କବି ଦିବ୍ୟ କିଶୋର ସାହୁ- ଆର୍ଯପଦ୍ମ ବୀରବର ଦାସ।

୩. ଭାଷା ଆଂଦୋଳନର ଇତିହାସ - ଡଃ ଶ୍ରଦ୍ଧାକର ସୂପକାର/ଶଂକର ପ୍ରସାଦ ପାଢ଼ୀ।

୪. ଅମର ଜୀବନ - ଶ୍ରଦ୍ଧାକର ସୂପକାର।

୫. ଆର୍ତବଂଧୁ ଆଇଜାକ - ଶ୍ରଦ୍ଧାକର ସୂପକାର।

୬. ମଧ୍ୟମ ପୁରୁଷ ଅସ୍ତରାଗ - ଶ୍ରଦ୍ଧାକର ସୂପକାର।

୭. ଲୌହମାନବ - ଗୋକୁଳ ଚଂଦ୍ର ବାବୁଲେଶଂକର ପ୍ରସାଦ ପାଢ଼ୀ

୮. ମୋ ନିଜକଥା - ବନମାଳୀ ବାବୁ।

୯. Dictionary of National Biography Institute of Historical Studies Vol - 1, Calcutta.

୧୦. ସମଲପୁରି ଓଡ଼ିଆ ଶବ୍ଦକୋଷ - ଡ. ପ୍ରଫୁଲ୍ଲ କୁମାର ତ୍ରିପାଠୀ।

୧୧. District Gazetter, Orissa Govt., Ed. N. Senapati, Sambalpur 1971 - Bolangir 1968 - Kalahandi 1980.

୧୨. Who's Who Orissa Legislative Assembly (Periodic)

୧୩. Who's Who Indian Parliament - Lok Sabha - Rajya Sabha - Periodic.

୧୪. ବୃହତ ବିବିଧ ରତ୍ନ ସଂଗ୍ରହ - ୧୯୩୬ ଭାଗିରଥି ମହାପାତ୍ର।

୧୫. କବିଶେଖର ଚିଂତାମଣି ଗ୍ରଂଥାବଳୀ - ଉକ୍ରଳ ମିଳନ ଓ ପାଟଣା କାବ୍ୟ।

୧୬. ଗଂଗାଧର ଗ୍ରଂଥାବଳୀ – ନିଉ ଷ୍ଟୁଡେଂଟସ୍ ଷ୍ଟୋର୍ କଟକ (୧୯୮୫)।

୧୭. Sardar Patel's - Selected Correspondence - Vo. II (1945-50) Nav Jeevan Publishing House, Ahmedabad 1977.

୧୮. ପଥ ଓ ପୃଥିବୀ ଆତ୍ମଜୀବନୀ – ସୁରେଂଦ୍ର ମହାଂତି।

୧୯. ସପ୍ତ ସୌରଭ – ଉତ୍କଳ ପାଠକ ସଂସଦ ୧୯୯୧।

୨୦. ଶତାବ୍ଦୀର ସୂର୍ଯ – ସୁରେଂଦ୍ର ମହାଂତି।

୨୧. ଦେଶକାଳ ପାତ୍ର – ଜଗନ୍ନାଥ ପ୍ରସାଦ ଦାସ।

୨୨. The Voice of Silence - Dr. P. M. Nayak.

୨୩. ସାର ବାସୁଦେବ ସୁଢ଼ଳ ଦେବ – ଅଧ୍ୟାପକ ରାମଚଂଦ୍ର ବ୍ରହ୍ମା – (ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୩)

୨୪. ଜଳଂଧର ଦେବ – ଅ. ରାମଚଂଦ୍ର ବ୍ରହ୍ମା – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୯।

୨୫. ଜଳଂଧର ଦେବ – ଡଃ ଉପେଂଦ୍ର ନାଥ ମହାଂତି – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୫।

୨୬. ଜଳଂଧର ଦେବ ରଚନାବଳୀ ସଂକଳନ – ଅ. ରାମଚଂଦ୍ର ବ୍ରହ୍ମା – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୬

୨୭. ଖଗେଶ୍ୱର ଗ୍ରଂଥାବଳୀ – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୫୮।

୨୮. ବଳଭଦ୍ର ଗ୍ରଂଥାବଳୀ – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୬୧।

୨୯. ବ୍ରଜରାଜ ସିଂହ ଗ୍ରଂଥାବଳୀ – ଓଡ଼ିଶା ସାହିତ୍ୟ ଏକାଡେମୀ।

୩୦. ପ୍ରବଂଧ : ବୃଂଦାବନ ନାଥ ଶର୍ମା – ଅ. ରାମଚଂଦ୍ର ବ୍ରହ୍ମା।

୩୧. ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ (ପ୍ରବଂଧ) – ଡ. ଗୋପୀନାଥ ମହାପାତ୍ର ଓ ଭାଗୀରଥି ନେପାକ।

୩୨. ସଂବଲପୁର ହିତୈଷିଣୀ ଏକ ଅଧ୍ୟୟନ – ଡଃ ଫଣୀଂଦ୍ର ଭୂଷଣ ନଂଦ–୨୦୦୨।

୩୩. ରୁଦ୍ର ଆହ୍ୱାନ ୨୦୦୨–୨୦୦୩ – ସଂପାଦକ – ସାଂବାଦିକ ଗୌରବ ଶିବପ୍ରସାଦ ପାଂଡିଆ ବଲାଂଗିର।

୩୪. ବିଶ୍ୱକେସନ ମିଶ୍ର (ଜୀବନୀ) – ଅଧ୍ୟାପକ ଡକ୍ଟର ମୀନକେତନ ପୁରୋହିତ।

୩୫. ଓଡ଼ିଶାରେ ଆମ ନିର୍ବାଚନ–ପରମାନଂଦ ମହାଂତି ୧୯୭୧।

୩୬. ପ୍ରକାଶନ ଓ ପ୍ରସାରଣର ଇତିହାସ – ଶ୍ରୀଧର ମହାପାତ୍ର , ଗ୍ରଂଥ ମଂଦିର, କଟକ ୧୯୮୬।

୩୭. Memories of a byegone Era - 2000 A.D.- Maharaj, P.K. Deo - Minerva Press 13, Palam Marg, Vasant Vihar, New Delhi.

୩୮. Orissa 2002 - Basant Das.

୩୯. Thesarus of Events - and dates of Orissa - Er. G. Dora, 2003.

୪୦. ବିଘ୍ନରାଜ ପଟେଲ ସ୍ମରଣୀକା।

୪୧. ଆଇନ ବଲାଂଗିର ବିଶେଷାଂକ, ଜାନୁଆରୀ ୨୦୦୪।

୪୨. ସପ୍ତର୍ଷି ୧୯୭୨/୧୯୯୭।

୪୩. ରାଧାନାଥ ଗ୍ରଂଥାବଳୀ, ପୁସ୍ତକ ଭଂଡାର, ବ୍ରହ୍ମପୁର ୧୯୮୦।

୪୪. ସରଗମଲ୍ଲୀ, ଶ୍ରୀପତି ପାଣିଗ୍ରାହୀ, ୧ମ ଓ ୨ୟ।

୪୫. ରସ କବିତା, ଶଶିଭୂଷଣ ମିଶ୍ରଶର୍ମା, ୨୦୦୨।

୪୬. ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ, ବୀରବର ଦାସ।



# କୃତଜ୍ଞତା ଜ୍ଞାପନ

ନିମ୍ନୋକ୍ତ ବଂଧୁ ଓ ଶୁଭେଚ୍ଛୁମାନେ ସଂକଳନ ନିମିତ୍ତ ନାନା ପ୍ରକାର ତଥ୍ୟ ଓ କେତେକ ଦୁର୍ଲଭ ଫଟୋଚିତ୍ର ଯୋଗାଇ ଦେଇଥିବାରୁ ସଂକଳକ ସେମାନଂକଠାରେ ଚିରଋଣୀ।

| | |
|---|---|
| ସଂବଲପୁର | ସ୍ୱର୍ଗତ ଜଷ୍ଟିସ ନିରାକାର ପୁରୋହିତ |
| | ଶରତ ଚଂଦ୍ର ପୂଜାରୀ |
| | ଇଂ କରୁଣାକର ସୂପକାର |
| | ନୃସିଂହ ଚରଣ ସାହୁ 'ଏକାଂତ ଷ୍ଟୁଡିଓ' |
| | ଭାଗିରଥି ପ୍ରସାଦ ନଂଦ |
| | ଅରବିଂଦ ମହାପାତ୍ର |
| | ଶରତ ନାରାୟଣ ବେହେରା |
| | ଶୈଳେଶ ଚଂଦ୍ର ପଟ୍ଟନାୟକ |
| | ପ୍ରଣତି ପଟ୍ଟନାୟକ |
| ବରଗଡ଼ | ଡକ୍ଟର ମୀନକେତନ ପୁରୋହିତ |
| | ପ୍ରସନ୍ନ କୁମାର ଦାସ |
| | କଷ୍ଟ ଚରଣ ପ୍ରଧାନ |
| | ପଂଡିତ ଦୟାଲାଲ ଯୋଷୀ |
| ବଲାଂଗିର | ଶିବପ୍ରସାଦ ପାଂଡିଆ |
| | ଭକ୍ତ ପ୍ରସାଦ ସ୍ୱାଇଁ (ଟିଟିଲାଗଡ଼) |
| | ପ୍ରଦୀପ୍ତ କୁମାର ପାଣିଗ୍ରାହୀ |
| ଦେବଗଡ଼ | ପୁରୁଷୋତ୍ତମ ନାଥ ଶର୍ମା |
| | ଗିରିଧାରୀ ନଂଦ |
| | ଭାଗିରଥି ନେପାକ |
| ଭୁବନେଶ୍ୱର | ଅଓ୍ୱଧ ନାରାୟଣ ତିଓ୍ୱାରୀ |
| | ଦେବେଂଦ୍ର କୁମାର ମିଶ୍ର |
| | ଶୈଳବାଳା ମିଶ୍ର |
| ଗୋପାଳପୁର–ଗଂଜାମ ଜିଲ୍ଲା | ସୁରସିଂହ ପଟ୍ଟନାୟକ |

